# ସେକ୍ସପିୟର ରଚନାବଳୀ

[କୋଡ଼ିଏଟି କମେଡ଼ି, ଟ୍ରାଜେଡ଼ି ଓ ଐତିହାସିକ ନାଟକର
ସୁଖପାଠ୍ୟ କାହାଣୀରୂପ]

ଡକ୍ଟର ହେମନ୍ତ କୁମାର ଦାସ

ବିଦ୍ୟାପୁରୀ

SHAKESPEARE RACHANABALI
Adopted by Dr. Hemant Kumar Das
Published by Vidyapuri, Cuttack 753002

ISBN 81-7411-564-1

ପ୍ରଥମ ପ୍ରକାଶ
ମାର୍ଚ୍ଚ ୨୦୦୬

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ମଡର୍ଣ୍ଣ ଇନ୍‌ଫୋଟେକ୍

ପ୍ରଚ୍ଛଦ
ଶଶିକାନ୍ତ ରାଉତ

ମୁଦ୍ରଣ
ସଂଗୀତା ପ୍ରିଣ୍ଟର୍ସ, କଟକ - ୨

ମୂଲ୍ୟ ଟ ୨୮୦.୦୦

# ଉପୋଦ୍‌ଘାତ

ଉଇଲିୟମ୍ ସେକ୍ସପିୟର ବିଶ୍ୱନାଟ୍ୟ ସାହିତ୍ୟର ଏକ ପ୍ରଚଣ୍ଡ ବିସ୍ମୟ । ଷୋଡ଼ଶ ଶତକରେ ଇଂରାଜୀ ନାଟ୍ୟସାହିତ୍ୟକୁ ଆବେଗ-ସର୍ବସ୍ୱତା ଏବଂ ଶସ୍ତା ମନୋରଞ୍ଜନର ଗଣ୍ଡି ମଧ୍ୟରୁ ଉଦ୍ଧାର କରି ସେ ଏହାକୁ ଯେଉଁଭଳି ଗଭୀର ଚିନ୍ତାଶୀଳତା ଏବଂ ବୌଦ୍ଧିକତାର ବଳୟ ମଧ୍ୟରେ ନେଇ ସ୍ଥାପନ କଲେ, ତାହାହିଁ ତାଙ୍କର ଅନନ୍ୟ ପ୍ରତିଭାଦୀପ୍ତ ନାଟ୍ୟପ୍ରାଣତାର ସ୍ମାରକୀ ହୋଇ ରହିଛି । ମନର ଏଭଳି ଦରଦୀ ଭାଷ୍ୟକାର, ସମାଜ ଜୀବନର ଏଭଳି ସମ୍ବେଦନଶୀଳ ରୂପକାର କେବଳ ତାଙ୍କ ସମୟର ଇଂଲଣ୍ଡରେ କାହିଁକି ପରବର୍ତ୍ତୀ ଦୀର୍ଘ ସମୟ ପର୍ଯ୍ୟନ୍ତ ବିଶ୍ୱନାଟ୍ୟ ସାହିତ୍ୟରେ ସୁଦ୍ଧା ବିରଳ ଥିଲେ । ମନର ଗଭୀରତାରେ ପ୍ରତିନିୟତ ଆନ୍ଦୋଳିତ ଆବେଗ, ଅନୁଭୂତି ଏବଂ ଦ୍ୱନ୍ଦ୍ୱ ସଂଘାତର ବିଶ୍ଳେଷଣ ସେ କରିଛନ୍ତି ଗଭୀର ଅନୁଭୂତି ଶାଣିତ ମନନଶୀଳତା ତଥା ନିପୁଣ ମନସ୍ତାତ୍ତ୍ୱିକତା ନେଇ । ତାଙ୍କର ବିସ୍ତୃତ ଏବଂ ବ୍ୟାପକ ଚରିତ୍ର ଚିତ୍ରଶାଳା ତେଣୁ ବୈଚିତ୍ର୍ୟ ଓ ବୈବିଧ୍ୟରେ ଯଥାର୍ଥରେ ଅତୁଳନୀୟ ।

ଏହାଙ୍କର ଜନ୍ମ ହୁଏ ୧୫୬୪ ଖ୍ରୀ. ଏପ୍ରିଲ ୨୩ ତାରିଖରେ ୱାର୍‌ଉଇକଶାୟାରରେ ଏଭନ୍ ନଦୀ ତୀରରେ ଅବସ୍ଥିତ ଷ୍ଟ୍ରାଟ୍‌ଫୋର୍ଡ଼ଠାରେ । ତାଙ୍କ ପିତାଙ୍କର ନାମ ଜନ ସେକ୍ସପିୟର୍ ଏବଂ ମାତା ହେଉଛନ୍ତି ମେରି ଆର୍ଡ୍ରେନ୍ । ଜନ୍ ସେକ୍ସପିୟରଙ୍କ ବୃତ୍ତି ସମ୍ପର୍କରେ ବିଭିନ୍ନ ଆଲୋଚକ ଭିନ୍ନ ଭିନ୍ନ ମତ ପୋଷଣ କରୁଥିଲେ ମଧ୍ୟ ସାଧାରଣତଃ ସେ ଜଣେ ଦସ୍ତାନା ପ୍ରସ୍ତୁତକାରକ ଚମଡ଼ା ବ୍ୟବସାୟୀ ଥିଲେ ବୋଲି ବିଶ୍ୱାସ କରାଯାଏ । ଜନ୍‌ଙ୍କର ସନ୍ତାନ ଭାଗ୍ୟ ଗ୍ରହଣ ଗ୍ରସ୍ତ ଥିଲା । ସାତୋଟି ସନ୍ତାନ ମଧ୍ୟରୁ ଏକମାତ୍ର ଉଇଲିୟମ୍ ହିଁ ଜୀବିତ ଥିଲେ ।

ଉଇଲିୟମ୍‌ଙ୍କର ଶୈଶବ ଓ ବାଲ୍ୟ ଜୀବନ ସମ୍ପର୍କରେ ବିଶେଷ କିଛି ଜଣାଯାଏ ନାହିଁ । ତେବେ ସେ ଯେ ଉଚ୍ଚ ଶିକ୍ଷାର ସୁଯୋଗ ପାଇ ନ ଥିଲେ ଏଥିରେ ସନ୍ଦେହ ନାହିଁ । କିଛି ଗ୍ରୀକ୍ ଆଉ ଲାଟିନ୍ ଶିଖିଥିଲେ । ପରେ ଫରାସୀ ଭାଷାରେ ମଧ୍ୟ ବ୍ୟୁତ୍ପତ୍ତି ହାସଲ କରିଥିଲେ । ୧୫୮୨ ଖ୍ରୀ.ଅ.ରେ ସେ ତାଙ୍କଠାରୁ ବୟସରେ ଆଠବର୍ଷ ବଡ଼ ଆଲହାଥାୱେଙ୍କର ପାଣି ଗ୍ରହଣ କରିଥିଲେ ମାତ୍ର ଅଠରବର୍ଷ ବୟସରେ ଏବଂ ବିବାହର ଛଅ ମାସ ପରେ ସନ୍ତାନର ପିତା ମଧ୍ୟ ହୋଇଥିଲେ । ପରେ ସଂସାରର ଦାୟିତ୍ୱ ବଢ଼ିବାରୁ ସେ ଷ୍ଟ୍ରାଟ୍‌ଫୋର୍ଡ଼ ଛାଡ଼ି ଲଣ୍ଡନ ଚାଲିଆସନ୍ତି । ଏଠାରେ ସେ ପ୍ରଥମେ ଏକ ନାଟକ ଦଳରେ ଯୋଗ ଦିଅନ୍ତି । ସମ୍ଭବତଃ ସେଠାରେ ସେ ନାନା ଛୋଟ ଛୋଟ କାମ କରନ୍ତି ଏବଂ ପରେ ଅଭିନୟ ମଧ୍ୟ କରନ୍ତି ସେଇ ଛୋଟ ଭୂମିକାରେ । ଅଭିନୟରୁ ତାଙ୍କର ନାଟକ ଲେଖିବାର ସ୍ପୃହା ସୃଷ୍ଟି ହୁଏ ଏବଂ ଏହିଭଳି ବିଶ୍ୱନାଟକ ପାଏ ଜଣେ ସ୍ମରଣୀୟ ନାଟ୍ୟକାରଙ୍କୁ । ପ୍ରଥମେ ୧୫୯୯ ଖ୍ରୀ.ଅ.ରେ ସେ ଲେଖନ୍ତି 'Love's Labour Lost' ପ୍ରଭୃତି ଦଶ ଖଣ୍ଡି ନାଟକ । ତା'ପରେ ୧୬୦୩ ଖ୍ରୀ.ଅ. ମଧ୍ୟରେ ସେ 'Hamlet, Much Ado About Nothing' ପ୍ରଭୃତି ନାଟକ ଲେଖନ୍ତି । ୧୬୦୪ ରୁ ୧୬୦୯ ଖ୍ରୀ.ଅ.

ମଧ୍ୟରେ ସେ 'Othello, Macbeth, King Lear, Antony and Cleopatra' ପ୍ରଭୃତି ତାଙ୍କର ଶ୍ରେଷ୍ଠ ଟ୍ରାଜେଡ଼ିଗୁଡ଼ିକ ଲେଖନ୍ତି । 'Cymbeline, The Winter's Tale , The Tempest' ପ୍ରଭୃତି ସୁଖାନ୍ତ ନାଟକଗୁଡ଼ିକ ତାଙ୍କର ଶେଷ ବୟସର (୧୬୧୦-୧୬୧୨) ରଚନା ବୋଲି କୁହାଯାଉଛି ।

ସେ ସମୟରେ ଜଣେ ସଫଳ ନାଟ୍ୟକାର ରୂପେ ସେ ପ୍ରଭୂତ ଯଶ ଓ ବିତ୍ତର ଅଧିକାରୀ ହୁଅନ୍ତି । ୧୫୯୭ ଖ୍ରୀ.ଅ.ରେ ସେ ନିଜର ଜନ୍ମଭୂମି ଷ୍ଟ୍ରାଟ୍‌ଫୋର୍ଡ଼ଠାରେ ନ୍ୟୁପ୍ଲେସ୍ ନାମକ ଏକ ବିଶାଳ ପ୍ରାସାଦ କ୍ରୟ କରନ୍ତି ଏବଂ ଜୀବନର ଶେଷ କେଇ ବର୍ଷ ଏହିଠାରେ କଟାଇ ଦିଅନ୍ତି । ଏହାଛଡ଼ା ଦୁଇଟି ପ୍ରସିଦ୍ଧ ରଙ୍ଗମଞ୍ଚ ଗ୍ଲୋବ ଏବଂ ବ୍ଲାକ ଫ୍ରେୟାର୍‌ସ ଥିଏଟରରେ ମଧ୍ୟ ତାଙ୍କର ଅଂଶ ଥିଲା । ପ୍ରଧାନତଃ, ଜଣେ ନାଟ୍ୟକାର ରୂପେ ପରିଚିତ ହୋଇଥିଲେ ମଧ୍ୟ ତାଙ୍କ ରଚିତ କାବ୍ୟସମ୍ଭାର ସୁଦ୍ଧା ଚର୍ଚ୍ଚାର ପରିସରକୁ ଆସିଥାଏ । ତାଙ୍କ ରଚିତ ଭେନସ୍ ଆଣ୍ଡ ଏଡ଼ୋନିସ୍' ଏବଂ 'ରେପ୍ ଅଫ୍ ଲିକ୍ରସ୍' ତଥା ଦେଢ଼ଶହରୁ ଉର୍ଦ୍ଧ୍ୱ ଚତୁର୍ଦ୍ଦଶ-ପଦୀ କବିତା ଭିତରେ ଗୋଟିଏ ଆବେଗୋଚ୍ଛଳ କବି ସତ୍ତାର ପରିଚୟ ମିଳେ । ଏହି ମହାନ୍ ମାନବଦରଦୀ କବି ଓ ନାଟ୍ୟକାରଙ୍କର ପରଲୋକ ଘଟେ ମାତ୍ର ବାଉନ ବର୍ଷ ବୟସରେ ୧୬୧୬ ଖ୍ରୀ.ଅ. ଏପ୍ରିଲ ତେଇଶ ତାରିଖରେ ନିଜର ଜନ୍ମଭୂମିରେ । ତାଙ୍କର ସେଇ ଜନ୍ମସ୍ଥାନ ଆଜି ବିଶ୍ୱବାସୀଙ୍କପାଇଁ ପବିତ୍ର ତୀର୍ଥ କ୍ଷେତ୍ର ହୋଇଛି ।

ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ଲଗ୍ନରୁ ଏହି ମହାନ୍ ନାଟ୍ୟକାର ଓଡ଼ିଆ ପାଠକ ତଥା ଲେଖକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଛନ୍ତି । ନାଟ୍ୟକାର ରାମଶଙ୍କର ପ୍ରଥମେ ବନବାଳା(୧୮୮୨) ନାମ ଦେଇ ସେକ୍ସପିୟରଙ୍କର ବହୁଚର୍ଚ୍ଚିତ ନାଟକ 'Tempest'ର ଛାୟାନୁସରଣ କରନ୍ତି । ତାହା ପରେ ଆଉ ଦୀର୍ଘଦିନ ଧରି ସେକ୍ସପିୟର୍‌ଙ୍କର କୌଣସି ନାଟକ ଓଡ଼ିଆରେ ଅନୂଦିତ ହୋଇ ନାହିଁ , ଯଦିଓ ଓଡ଼ିଆ ନାଟ୍ୟକାରମାନେ ପ୍ରଥମରୁ ହିଁ ତାଙ୍କରି ନାଟ୍ୟାଦର୍ଶଦ୍ୱାରା ଅନୁପ୍ରାଣିତ ହୋଇ ଆସିଛନ୍ତି । ମାସିକ ସାହିତ୍ୟ ପତ୍ରିକା 'ମୁକୁର'(୧୯୦୬) ଦୀର୍ଘ ଏଗାର ବର୍ଷ ଧରି ସେକ୍ସପିୟର୍‌ଙ୍କର ସାତୋଟି ନାଟକର ଗଦ୍ୟାନୁବାଦ କାହାଣୀ ଆକାରରେ ପ୍ରକାଶ କରିଥିଲେ । ସେକ୍ସପିୟରଙ୍କ ଚର୍ଚ୍ଚିତ ଦୁଃଖାନ୍ତ ନାଟକ 'Romeo and Juliet' 'ପ୍ରେମିକ-ପ୍ରେମିକା' ନାମରେ 'ମୁକୁର'ର ପ୍ରଥମ ବର୍ଷ/ ଚତୁର୍ଥ ସଂଖ୍ୟାରେ ଗଦ୍ୟାକାରରେ ପ୍ରକାଶ ପାଏ । ଏହାର ଅନୁଲେଖକ ଥିଲେ ଜଗତବଲ୍ଲଭ ଘୋଷ । ଘୋଷ ମହାଶୟ ତାହା ପରେ ସେକ୍ସପିୟରଙ୍କର 'କମେଡ଼ି ଅଫ୍ ଏରରସ୍', 'ପେରିକ୍ଲିସ ଦି ପ୍ରିନ୍ସ ଅଫ ଟାୟାର', 'ମିଡ଼ ସମର ନାଇଟ୍‌ସ ଡ୍ରିମ', 'ଅଲସ ୱେଲ ଦାଟ୍ ଏଣ୍ଡସ୍ ୱେଲ୍' ଏବଂ 'ଆଜ୍ ୟୁ ଲାଇକ୍ ଇଟ୍ ' ପ୍ରଭୃତି ସାତୋଟି ସେକ୍ସପିୟରୀୟ ନାଟକର କାହାଣୀ ରୂପ ସୂଚିତ ପତ୍ରିକାରେ ପ୍ରକାଶ କରନ୍ତି । ଏହାହିଁ ହେଉଛି ଏ ଧରଣର ପ୍ରଥମ ଉଦ୍ୟମ ।

ସହକାରର ସମ୍ପାଦକ ବାଳକୃଷ୍ଣ କର 'ଶିବଦାସ' (୧୯୩୭) ନାମ ଦେଇ ସେକ୍ସପିୟରଙ୍କ ନାଟକ 'King Lear'ର ଅନୁଲେଖନ କରନ୍ତି । ସେହିଭଳି ଅକ୍ଷୟକୁମାର ବନ୍ଦୋପାଧ୍ୟାୟ 'ହାମଲେଟ' (୧୯୩୪) ଏବଂ ମାୟାଧର ମାନସିଂହ 'ଅଥେଲୋ' (୧୯୫୧) ନାଟକର ଅନୁବାଦ କରନ୍ତି । ଏ ସମସ୍ତ ହେଉଛି ପାଠ୍ୟ ନାଟକ ଏବଂ ଏହାର କୌଣସି ମଞ୍ଚାୟନ ଘଟିଥିବାର ସମ୍ବାଦ ମିଳେ ନାହିଁ । ଏହାଛଡ଼ା ସେକ୍ସପିୟରଙ୍କର ଅନ୍ୟ କୌଣସି ନାଟକର ଅନୁବାଦ ଓଡ଼ିଆରେ ହୋଇଥିବାର ଜଣାଯାଉ ନାହିଁ ।

ମାଟ୍ରିକ୍ କ୍ଲାସରେ ଅଧ୍ୟୟନ କରୁଥିବାବେଳେ ଚାର୍ଲସ୍ ଲାମ୍ବଙ୍କ ଲିଖିତ ସେକ୍ସପିୟର୍ କାହାଣୀର ଭାବାନୁବାଦ ସେଇ କିଶୋର ବୟସରେ ମଣିଷ ଚରିତ୍ରର ରହସ୍ୟ ଗମ୍ଭୀର ଅନ୍ତର୍ଲୋକର ଯେଉଁ ବିଚିତ୍ର ଚିତ୍ର ସହିତ ପରିଚିତ କରାଇଥିଲା ତାହାହିଁ ସେକ୍ସପିୟର୍‌ଙ୍କ ସହିତ ମାନସିକ ସ୍ତରରେ ଯୋଗାଯୋଗ ସ୍ଥାପନ କରିବା ନିମନ୍ତେ ମୋତେ ପ୍ରେରଣା ଯୋଗାଇଥିଲା । ଇତିମଧ୍ୟରେ ଅର୍ଦ୍ଧଶତକ ଅତିକ୍ରାନ୍ତ ହୋଇଯାଇଥିଲେ ମଧ୍ୟ ଭାବରାଜ୍ୟର ସେଇ ତନ୍ମୟତା ତଥାପି ଶେଷ ହୋଇ ନାହିଁ । ଲାମ୍ବଙ୍କ ଲେଖାଭଳି ଓଡ଼ିଆରେ ଅନ୍ତତଃ ଯଦି ସେକ୍ସପିୟର ନାଟକାବଳୀର କାହାଣୀ ରୂପ ପ୍ରକାଶିତ ହୋଇପାରନ୍ତା, ତେବେ ଓଡ଼ିଆ ପାଠକମାନେ ମଧ୍ୟ ଏହି ବିଚିତ୍ରକର୍ମା ନାଟ୍ୟକାରଙ୍କ ସାହିତ୍ୟ କର୍ମ ସହିତ ପରିଚିତ ହୋଇ ପାରନ୍ତେ, ଏହିଭଳି ଏକ ଚିନ୍ତା ଦୀର୍ଘକାଳରୁ ମନରେ ଥିଲା । ଆଶା ଥିଲା. ଅନ୍ୟ କୌଣସି ସୁଯୋଗ୍ୟ ହସ୍ତରେ ଏହି କର୍ମଟି ସୁଚାରୁରୂପେ ସମ୍ପନ୍ନ ହୋଇପାରିବ । ମାତ୍ର ତାହା ହୋଇ ନାହିଁ ।

ଓଡ଼ିଶାର ସ୍ୱନାମଧନ୍ୟ ପ୍ରକାଶକ ବନ୍ଧୁ ଶ୍ରୀ ପୀତାମ୍ବର ମିଶ୍ର ଯେତେବେଳେ ଏହି କାର୍ଯ୍ୟଟିର ଦାୟିତ୍ୱ ମୋତେ ଦେବାକୁ ଚାହିଲେ, ସେତେବେଳେ ତେଣୁ ମୁଁ ଆଉ ମନା କରି ପାରିଲି ନାହିଁ । ସେକ୍ସପିୟର ବଞ୍ଚିଛନ୍ତି ଏବଂ ବଞ୍ଚିବେ ମଧ୍ୟ ନିଜ ଯୋଗ୍ୟତାରେ । ତାଙ୍କର ବକ୍ତବ୍ୟକୁ ମୁଁ ଓଡ଼ିଆରେ କିଭଳି ପ୍ରକାଶ କରିପାରିଛି, ତାହାହିଁ ବିଚାର କରିବାର କଥା । ଯଦି ଏହା ତା'ର ଲକ୍ଷ୍ୟରେ ସଫଳ ହୁଏ, ତେବେ ମୋର ଅହଙ୍କାର କରିବାର କିଛି ନାହିଁ । ଗଙ୍ଗା ଜଳରେ ଗଙ୍ଗାଙ୍କୁ ଉପାସନା କରାଗଲେ ତହିଁରେ ପୂଜକର କୃତିତ୍ୱ କିଛି ନ ଥାଏ । ଯଦି କୌଣସି କାରଣରୁ ଏହା ପାଠକୀୟ ବିଶେଷକରି ତରୁଣ ପାଠକମାନଙ୍କର ଶ୍ରଦ୍ଧା ଆକର୍ଷଣ କରି ନ ପାରେ, ତେବେ ତାହା ମୋର ଦୁର୍ବଳତା । ସେଥିପାଇଁ ମୁଁ କ୍ଷମାପ୍ରାର୍ଥୀ ।

ସେକ୍ସପିୟର ପ୍ରାୟ ଚାଳିଶରୁ ଊର୍ଦ୍ଧ୍ୱ ଗ୍ରନ୍ଥର ରଚୟିତା । ଏଥିରୁ କେବଳ ନାଟକର ସଂଖ୍ୟା ୩୭ । ତହିଁରୁ କୋଡ଼ିଏଟି ମାତ୍ର ବାଛି ଏହି ସଂକଳନରେ ତାହାର ଗଦ୍ୟରୂପ ପରିବେଷିତ ହୋଇଛି । ଅବଶିଷ୍ଟ ନାଟକ, କାବ୍ୟାଦିକୁ ନେଇ ସେକ୍ସପିୟରଙ୍କର ଏକ ପୂର୍ଣ୍ଣାଙ୍ଗ ରଚନାବଳୀ ପ୍ରକାଶ କରିବା ଏହି ସଂକଳନର ସଫଳତା ଉପରେ ନିର୍ଭର କରେ । ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ମୁଁ ବିଦ୍ୟାପୁରୀର ପ୍ରାଣସତ୍ତା ଶ୍ରୀ ପୀତାମ୍ବର ମିଶ୍ରଙ୍କୁ କୃତଜ୍ଞତା ଜଣାଉଛି ।

କଟକ
ତା ୧୦।୧୨।୨୦୦୫

**ହେମନ୍ତ କୁମାର ଦାସ**

# ସୂଚୀପତ୍ର

## କମେଡ଼ି



## ଟ୍ରାଜେଡ଼ି



## ଐତିହାସିକ

# କମେଡ଼ି



ଦି ଟେମ୍ପେଷ୍ଟ



ମଚ୍ ଏଡୋ ଏବାଉଟ ନଥିଂ



ଦି ଟେମିଂ ଅଫ ଦି ଶ୍ରୁ



ଟ୍ୱେଲଫ୍ଥ ନାଇଟ୍



ଦି ଉଇଣ୍ଟର୍ସ ଟେଲ୍



ସିମ୍‌ବେଲିନ୍



ଆଜ୍ ୟୁ ଲାଇକ୍ ଇଟ୍



ଦି ମର୍‌ଚାଣ୍ଟ ଅଫ୍ ଭେନିସ୍

# ଦି ଟେମ୍ପେଷ୍ଟ

॥ ୧ ॥

ସମୁଦ୍ର ବୁକୁରେ ଝଡ଼ ଉଠିଛି । ଦୁର୍ଦ୍ଧାନ୍ତ ଆଉ ଦୁର୍ଦ୍ଧମନୀୟ ତା'ର ଦୁର୍ବାର ଗତି ଆଗରେ ଠିଆହେବ, ଏଭଳି ଶକ୍ତି କାହାରି ନାହିଁ । ରୁଦ୍ଧ ଆକ୍ରୋଶରେ ଫୁଲି ଫୁଲି ଉଠୁଛି ସମୁଦ୍ରର ଛାତି । ଆହତ-ନାଗ ଭଳି ଗର୍ଜନ କରି ବେଳାଭୂମିରେ ଆସି କଚାଡ଼ି ହୋଇ ପଡୁଛି ।

ରହି ରହି ଶୁଣାଯାଉଛି ମେଘର ଗର୍ଜନ-ଘୋଷ । ଆକାଶର ଛାତି ଚିରି ଦେଖା ଯାଉଛି ଶାଣିତ ଇସ୍ପାତର ଖଡ୍ଗ ଭଳି ଝଲସି ଉଠୁଥିବା ବିଦ୍ୟୁତ୍ ରେଖା । କ୍ରୁଦ୍ଧା ଜେଉଁ ଡାକିନୀର ବକ୍ର ହାସ୍ୟଲେଖା ଭଳି ସେଇ ପାଣ୍ଡୁର ଝଲକ ଦର୍ଶକଙ୍କ ବୁକୁରେ ସୃଷ୍ଟି କରୁଛି କମ୍ପନ ।

ଝଡ଼ ଆଉ ବର୍ଷାର ଏଇ ପ୍ରଳୟ ତାଣ୍ଡବର ଘୂର୍ଣ୍ଣି ଭିତରେ ପଡ଼ିଯାଇଛି ଖଣ୍ଡିଏ ଜାହାଜ । ଆକାଶକୁ ଛୁଇଁବାର ସ୍ପର୍ଦ୍ଧା ରଖୁଥିବା ବିଶାଳ ଢେଉ ମୁହୂର୍ତ୍ତକରେ ତାକୁ ସ୍ୱର୍ଗର ସୀମା ଛୁଆଁଇ ପରମୁହୂର୍ତ୍ତରେ ପାତାଳଗାମୀ କରିଦେଉଛି । ପାତଳ କାଗଜର ଛୋଟ ଏକ ଡଙ୍ଗା ଭଳି ନାଚୁଛି ଏଇ ଅସହାୟ ପୋତ ...

ଭିତରର ଯାତ୍ରୀମାନେ ଜୀବନର ଆଶା ଛାଡ଼ି ଦେଇ ଈଶ୍ୱରଙ୍କ ନାମ ସ୍ମରଣ କରୁଛନ୍ତି । ସମସ୍ତଙ୍କ ମନରେ ଆଶଙ୍କା । ପୋତରେ ଅଛନ୍ତି ନେପଲସ୍‌ର ରାଜା ଆଲାନ୍‌ସୋ, ରାଜକୁମାର ତରୁଣ ଫର୍ଡ଼ିନାଣ୍ଡ, ରାଜଭ୍ରାତା ସେବାଷ୍ଟିଆନ୍, ମିଲନର ଡିଉକ୍ ଆଣ୍ଟୋନିଓ, ପ୍ରବୀଣ ମନ୍ତ୍ରୀ ଗଞ୍ଜାଲୋ ଏବଂ ଆହୁରି ଏମିତି କିଛି ରାଜକୀୟ ଯାତ୍ରୀ ।

ଜଳଯାନର କ୍ୟାପଟେନ୍ ନିଜ ଦାୟିତ୍ୱର ଗୁରୁତ୍ୱ ବୁଝନ୍ତି । ସମୁଦ୍ରର ରୁଦ୍ରରୂପ ଦର୍ଶନରେ ସେ ମଧ୍ୟ ଆତଙ୍କିତ । ଚାଳକମାନଙ୍କର ସର୍ଦ୍ଦାରକୁ ଡାକି ଶୀଘ୍ର ଶୀଘ୍ର ଆହୁଲା ପକାଇବାକୁ ଆଦେଶ ଦେଉଥାନ୍ତି । ଆକାଶର ଯେଉଁ ଅବସ୍ଥା, ଝଡ଼ର ପ୍ରକୋପରେ ଜାହାଜ ଯେକୌଣସି ମୁହୂର୍ତ୍ତରେ ତୀରରେ ଯାଇ କଚାଡ଼ି ହୋଇପଡ଼ିବାର ସମ୍ଭାବନା ବହୁତ । ଏମିତି ଯଦି ହୁଏ, ଭଗବାନ୍ ରକ୍ଷା କରନ୍ତୁ ତାହାହେଲେ ଏତେଗୁଡ଼ିଏ ମହାମୂଲ୍ୟ ଜୀବନକୁ ଆଉ ବଞ୍ଚାଇ ରଖିହେବ ନାହିଁ । ବେଳା ଭୂମି ଏଠି କଙ୍କରିଳ-ନାନା ଆକୃତିର ଶିଳାଖଣ୍ଡରେ ପୂର୍ଣ୍ଣ । ତହିଁରେ ପିଟି ହୋଇ ଜାହାଜ ତ ଚୂରମାର ହୋଇଯିବ ... ତା' ସହିତ ସଲିଳସାମାଧି ନେବେ ଏଇ ସବୁ ଯାତ୍ରୀ ।

ସର୍ଦ୍ଦାର ମାଝି ବି ନିଜର ଦାୟିତ୍ୱ ବୁଝେ । ପାଲ ଟାଣିଦେଇ ଶୀଘ୍ର ଶୀଘ୍ର ଆହୁଲା ମାରିବାକୁ ଅନ୍ୟ ମାଝିମାନଙ୍କୁ କହେ ... ଆକାଶ ଆଡ଼କୁ ଅନାଇ ତାର ଭ୍ରୂକୁଟୀ ଦେଖାଦିଏ... ଗତି କିଛି ସୁବିଧାର ନୁହେଁ, ଯେକୌଣସିମତେ ଜାହାଜକୁ କୂଳଠାରୁ ଯଥାସମ୍ଭବ ଦୂରରେ ରଖିବାକୁ ହେବ । ସମୁଦ୍ର ଭିତରେ ଥିଲେ ଝଡ଼ ଯେତେ ଆସ୍ଫାଳନ କରୁନା କାହିଁକି ସମ୍ପୂର୍ଣ୍ଣ ନ ହେଲେ ମଧ୍ୟ ଜାହାଜ ଅନେକ ନିରାପଦ ରହିବ ...

ରାଜା ଆଲାନ୍‌ସୋ ବଡ଼ ବିବ୍ରତ ହୋଇ ପଡ଼ିଛନ୍ତି । ସର୍ଦ୍ଦାର-ମାଝି ହାତରେ ସେ କ୍ୟାପଟେନ୍‌ଙ୍କୁ ଡକାଇ ପଠାନ୍ତି । ଡିଉକ୍ ଆଣ୍ଟୋନିଓ ମଧ୍ୟ କ୍ୟାପଟେନ୍‌ଙ୍କୁ ଖୋଜି ଖୋଜି ସେଇଠି ପହଞ୍ଚିଯାଆନ୍ତି । ସର୍ଦ୍ଦାର ରାଜା ଆଉ ଡିଉକ୍‌ଙ୍କୁ ଅନୁରୋଧ ଜଣାଇ କହନ୍ତି "ଆପଣମାନେ ଅନୁଗ୍ରହ କରି ତଳକୁ ଚାଲିଯାଆନ୍ତୁ । ଝଡ଼ ରାଜାଙ୍କର ଆଦେଶ ମାନିବ ନାହିଁ... ଏ କଥା ଆପଣମାନେ ଜାଣନ୍ତି । ତେଣୁ ବୃଥାରେ ଏଠି ପାଟିତୁଣ୍ଡ ନ କରି ଆମମାନଙ୍କୁ କାମ କରିଯିବାକୁ ଦିଅନ୍ତୁ । ତଳେ ଚୁପ୍‌ଚାପ୍ ଅପେକ୍ଷା କରନ୍ତୁ ...

ମନ୍ତ୍ରୀ ଗଞ୍ଜାଲୋ ବୁଝିଲେ ରାଜପୁରୁଷମାନେ ନିଜକୁ ଅପମାନିତ ମନେ କରୁଛନ୍ତି । ସେମାନଙ୍କର ମନର ଅବସ୍ଥା ଏମାନେ ବୁଝିବେ କାହିଁକି ? ଅଗତ୍ୟା ଗଞ୍ଜାଲୋ ସର୍ଦ୍ଦାର ମାଝିକୁ ଗୋଟାଏ କଡ଼ା ଧମକ୍ ଦେଇ କହିଲେ-ଜାଣିଚ, ତମେ ଜାହାଜରେ କାହାକୁ ନେଇ ଯାଉଛ ?

ନିର୍ଲିପ୍ତ ଭାବରେ ମାଝି ଉତ୍ତର ଦିଏ, "ଜାଣିଛି ହୋ-ଜାହାଜରେ ବଡ଼ ବଡ଼ ରାଜା ମହାରାଜାମାନେ ଯାଉଛନ୍ତି । ଆଉ ତମେ ହେଉଚ ତାଙ୍କର ମନ୍ତ୍ରୀ । ତେବେ ତମେମାନେ ଥରକୁ ଥର ଏମିତି ଆମ କାମରେ ବାଧା ଦଉଚ କାହିଁକି ? ଶୁଣ, ଆମ କାମ ଆମେ ଭଲ ଭାବରେ ବୁଝୁ । ଚେଷ୍ଟା ବି କରୁଚୁ ପ୍ରାଣପ୍ରାଣେ । ଯଦି କ୍ଷମତା ଅଛି, ତେବେ ଏ ଝଡ଼କୁ ବନ୍ଦକରି ଦଉନ । ଆମେ ଆମର ଚୁପ୍‌ଚାପ୍ ବସିବୁ । ଏତେ ବେଳଯାଏ ଯେ ବଂଚି ବର୍ତ୍ତିଅଛ ସେଥିପାଇଁ ଭଗବାନ୍‌ଙ୍କୁ ଧନ୍ୟବାଦ ଦିଅ । ଆଉ ଯଦି କିଛି ଅଘଟଣ ଘଟିଯାଏ, ତେବେ ସେଥିପାଇଁ ତିଆର ହୋଇ ରହ ।

ଗଞ୍ଜାଲୋ ମନେ ମନେ ମାଝି ଉପରେ ରାଗିଯାଆନ୍ତି । ଗୁଣୁଗୁଣୁ ହୋଇ କହନ୍ତି, 'ଲୋକଟାର ଚେହେରାଟା ଯେମିତି ଡକାୟତ ଭଳି କଥା ବି ସେମିତି ଅମାର୍ଜିତ ଆଉ କଟୁ । ଡରଭୟ ବୋଲି କିଛି ନାହିଁ । ଯାହା ଜଣାଯାଉଛି, ଏଇଟା ନ ମଲେ ଆମର ବଞ୍ଚିବାର କୌଣସି ସମ୍ଭାବନା ନାହିଁ ।'

ଝଡ଼ର ବେଗ ବଢ଼ିଯାଏ । ଉତ୍ତାଳ ଢେଉ ଜାହାଜକୁ ଧରି ପେଣ୍ଡୁ ଭଳି ଉପରକୁ ଫିଙ୍ଗି ପୁଣି ତଳକୁ ନେଇଆସିବା ଆରମ୍ଭ କରିଦିଏ । ଯାତ୍ରୀମାନେ ଆତଙ୍କରେ ଚିତ୍କାର କରିଉଠନ୍ତି । ସର୍ଦ୍ଦାର ହୁଙ୍କାର ଛାଡ଼ି କହିଉଠେ, ପାଲ ଟାଣି ଦିଅ,ବତାସ ବିରୋଧରେ ଯିବାକୁ ଟିକିଏ ବି ଚେଷ୍ଟା କର ନାହିଁ । ତେଣିକି ଯାହା ହେବ ଦେଖାଯିବ ।

ଏତିକିବେଳେ ସେବାଷ୍ଟିୟାନ୍ ଆଣ୍ଟୋନିଓ ଆଉ ଗଞ୍ଜାଲୋ ପୁଣି ଡେକ୍ ଉପରକୁ ଉଠିଆସନ୍ତି । ତାଙ୍କୁ ଦେଖି ସର୍ଦ୍ଦାରର ମୁଣ୍ଡ ଗରମ ହୋଇଯାଏ । ସେ ଗର୍ଜନ କରିଉଠେ, ପୁଣି ତମେମାନେ ଉପରକୁ ଆସିଲ ? ତଳେ ଚୁପ୍‌ଚାପ୍ ବସିପାରୁନ ? ଯାତ୍ରୀମାନଙ୍କର ଚିତ୍କାରରେ ଆମେ ଅତିଷ୍ଠ ହୋଇ ପଡ଼ିଲୁଣି, ଠିକ୍ ଭାବେ କାମ କରିପାରୁ ନାହୁଁ । ଚିତ୍କାର ବନ୍ଦ ନ କଲେ କହିଦଉଚି, ଆମେ ହାତବନ୍ଦ କରି ବସିଯିବୁ । ସେମିତି ହେଲେ ଜାହାଜକୁ କିନ୍ତୁ ଆଉ ବଞ୍ଚେଇ

ହେବ ନାହିଁ । ସେତେବେଳେ ଆମକୁ ଆଉ ଦୋଷ ଦେବ ନାହିଁ । ଭଲ ଗତି ଅଛିତ ତଳକୁ ଯାଇ ଚୁପ୍‌ଚାପ୍ ବସିରହି ଈଶ୍ୱରଙ୍କୁ ଡାକ ।

ତିନିଜଣ ଯାକ ନୀରବରେ ତଳକୁ ଓହ୍ଲାଇ ଯାଆନ୍ତି । ନିଜକୁ ଭଗବାନ୍‌ଙ୍କ ହାତରେ ସମର୍ପିଦେଇ ଚୁପ୍‌ଚାପ୍ ବସିଯାଆନ୍ତି ।

ବତାସର ତୋଡ଼ରେ ଶୁଖିଲାପତ୍ରଟିଏ ଭଳି ଜାହାଜ ଭାସିଯାଉଥାଏ ।

॥ ୨ ॥

ବାରବର୍ଷ ପୂର୍ବର ଘଟଣା । ପ୍ରସ୍ପେରୋ ସେତେବେଳେ ମିଲନ୍‌ର ସମ୍ମାନନୀୟ ଡିଉକ୍ । ଛୋଟଭାଇ ଆଣ୍ଟୋନିଓ ଉପରେ ତାଙ୍କର ଅଗାଧ ବିଶ୍ୱାସ, ଭାରି ଭଲ ବି ପାଆନ୍ତି । ଝିଅ ମିରନ୍ଦାର ଜନ୍ମ ହେବା ପରେ ସେ ହୋଇଉଠିଲା ତାଙ୍କ ନୟନର ମଣି । ଏଥିରେ ଆଣ୍ଟୋନିଓ ରାଗିଯିବା ସ୍ୱାଭାବିକ ।

ଏ ମଧ୍ୟରେ ପ୍ରସ୍ପେରୋଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହୋଇଯିବାରୁ ସଂସାରରୁ ତାଙ୍କର ମନ ଛାଡ଼ିଯାଏ । ସମ୍ପତ୍ତିବାଡ଼ି ବୁଝିବାର ଦାୟିତ୍ୱ ଆଣ୍ଟୋନିଓ ଉପରେ ଛାଡ଼ିଦେଇ, ସେ ଲେଖାପଢ଼ା ନେଇ ବ୍ୟସ୍ତ ରୁହନ୍ତି । ତାଙ୍କର ପ୍ରିୟ ବିଷୟ ହୁଏ ଯାଦୁବିଦ୍ୟା । ଏହା ଉପରେ ନାନା ଦୁର୍ଲଭ ପୋଥିସବୁ ସଂଗ୍ରହ କରି ସେ ସେଇଆଡ଼କୁ ନେଇ ସମୟ କାଟନ୍ତି ।

ଆଣ୍ଟୋନିଓ ସ୍ୱଭାବରେ ଧୂର୍ତ୍ତ...ତା ଉପରେ ପ୍ରସ୍ପେରୋଙ୍କର ଯେଉଁ ବିଶ୍ୱାସ ସେ ତାର ମର୍ଯ୍ୟାଦା ରଖିପାରେ ନାହିଁ । ବାପ ଓ ଝିଅଙ୍କ ବିରୋଧରେ ଚକ୍ରାନ୍ତ ଆରମ୍ଭ କରିଦିଏ ।

ପ୍ରସ୍ପେରୋଙ୍କର ଉଦାସୀନତା ତାକୁ ଏ ଦିଗରେ ବହୁତ ସାହାଯ୍ୟ କରେ । ଆଣ୍ଟୋନିଓ କୌଶଳ କରି ପ୍ରସ୍ପେରୋଙ୍କ ପକ୍ଷର ସମସ୍ତ ଅନୁଗତ କର୍ମଚାରୀଙ୍କୁ ଧୀରେ ଧୀରେ ନିଜ ଆଡ଼କୁ ଟାଣିନିଏ । ଆପଣାର ଶକ୍ତି ବଢ଼ାଇବାରେ ଲାଗେ । ପ୍ରଶାସନ ବ୍ୟବସ୍ଥା ଏବଂ ରାଜକର୍ମଚାରୀ - ଦୁଇଟିକୁ କରଗତ କରିନିଏ ।

କ୍ରମେ ସେ ନିଜକୁ ଡିଉକ୍ ବୋଲି ପ୍ରଚାର କରିବାକୁ ଆରମ୍ଭ କରେ । ରାଜନୀତିକ ଶକ୍ତି ବଢ଼ାଇବା ପାଇଁ ସେ ନେପଲସ୍‌ର ରାଜାଙ୍କ ନିକଟରେ ମିଲନ୍‌ର ସ୍ୱାଧୀନତାକୁ ବଳି ଦେଇଦିଏ ଏବଂ ନେପଲସ୍‌ର ରାଜା ତାକୁ ହିଁ ମିଲନ୍‌ର ପ୍ରକୃତ ଶାସକର ସ୍ୱୀକୃତି ଦେଇଦିଅନ୍ତି । ଆଣ୍ଟୋନିଓର ଉଦ୍ଦେଶ୍ୟ ହାସଲ ହୁଏ ।

ଅସତ୍ ଉଦ୍ଦେଶ୍ୟ ସିଦ୍ଧ କରିବା ପାଇଁ ଦିନେ ଅଧରାତିରେ ଆଣ୍ଟୋନିଓ ମିଲନ୍ ନଗରର ଗଡ଼ଦ୍ୱାର ଚିର ଶତ୍ରୁ ନେପଲସ୍ ସୈନ୍ୟବାହିନୀ ନିମନ୍ତେ ଖୋଲିଦିଏ । ରାତିର ଘନ ଅନ୍ଧାର ଭିତରେ ବିଦ୍ରୋହୀମାନେ ଡିଉକ୍ ଆଉ ତାଙ୍କର ଶିଶୁ କନ୍ୟାକୁ ବନ୍ଦୀ କରନ୍ତି । ଆଣ୍ଟୋନିଓର ସେମାନଙ୍କୁ ହତ୍ୟା କରିବା ପାଇଁ ଇଚ୍ଛା ଥିଲେ ମଧ୍ୟ ସାହସ କରିପାରେ ନାହିଁ । ପ୍ରସ୍ପେରୋଙ୍କର

ମୃତ୍ୟୁରେ ପ୍ରଜାମାନେ ବିଦ୍ରୋହ କରିବାର ଯେଉଁ ଆଶଙ୍କା ଥାଏ, ଭୀରୁ ଆଣ୍ଟୋନିଓ ତାଙ୍କୁ ସାମ୍ନା କରିବାଭଳି ସାହସ ସଂଗ୍ରହ କରିପାରି ନ ଥାଏ। ତେଣୁ ସେମାନେ ଖୁବ୍ ଶୀଘ୍ର ଗୋପନରେ ଡିଉକ୍ ଏବଂ ତାଙ୍କର ଶିଶୁକନ୍ୟାକୁ ଡଙ୍ଗାରେ ସମୁଦ୍ର ଭିତରେ ଅନେକ ଦୂରକୁ ନେଇ ଯାଆନ୍ତି। ସେଇଠାରେ ଗୋଟାଏ ଅଧାଭଙ୍ଗା କାଠଭେଳାରେ ଦୁଇଜଣଙ୍କୁ ବସାଇଦେଇ ନିଜେ କୂଳକୁ ଫେରିଯାଆନ୍ତି।

ଭେଳାରେ ଦରକାରୀ ଜିନିଷ ବୋଲି କିଛି ନ ଥିଲା। ନେପଲସ୍‌ର ଜଣେ ସାଧୁ ପ୍ରକୃତିର ମଣିଷ ସେଇ ଦଳରେ ଥିଲେ। ସେ ଦୟାକରି କିଛି ଖାଦ୍ୟ, ପାନୀୟ, ଦରକାରୀ ପୋଷାକ ଆଉ ଡିଉକ୍‌ଙ୍କର ପ୍ରିୟ ସେଇ ମୂଲ୍ୟବାନ୍ ପୋଥିପତ୍ର ଭେଳାରେ ରଖି ଦେଇଥିଲେ। ଈଶ୍ୱରଙ୍କର ଅପାର କରୁଣାରୁ ଡିଉକ୍ ଆଉ ତାଙ୍କର ଝିଅ ବଞ୍ଚିଯାଇ କୌଣସିମତେ ଗୋଟିଏ ଦ୍ୱୀପରେ ଆଶ୍ରୟ ନେଇଥିଲେ। ସେଇଦିନଠୁଁ ଦୁହେଁ ଏଇ ଦ୍ୱୀପର ଅଧିବାସୀ। ମିରନ୍ଦାର ଯାହା କିଛି ଶିକ୍ଷାଦୀକ୍ଷା ସବୁ ସେଇ ବାପାଙ୍କ ନିକଟରୁ।

ବାରବର୍ଷ ଏହା ମଧ୍ୟରେ କଟିଯାଇଛି। ଧୀରେ ଧୀରେ ବାପାଙ୍କ ପାଖରୁ ମିରନ୍ଦା ତା' ଅତୀତ ଜୀବନର କାହାଣୀ ସବୁ ଶୁଣିଛି। ପ୍ରସ୍ପେରୋ ସେଇ ଦିନଠୁଁ କେମିତି ବଦଳିଯାଇଛନ୍ତି। ମୁହଁରେ ସବୁବେଳେ ବିଷଣ୍ଣତାର ଛାପ। ମଣିଷକୁ ବିଶ୍ୱାସ କରିବାର ସେ ଯେଉଁ ପ୍ରତିଦାନ ପାଇଛନ୍ତି, ତାହାହିଁ ତାଙ୍କୁ ସ୍ତବ୍ଧ କରିଦେଇଛି।

ମିରନ୍ଦା ପ୍ରଶ୍ନ କରେ; ତେବେ ତମେ କହୁଛ, ମୋର ବାପା ଥିଲେ ମିଲନ୍‌ର ଡିଉକ୍? ପ୍ରସ୍ପେରୋ କହନ୍ତି, ସନ୍ଦେହ କରିବାର କିଛି ନାହିଁ। ସତରେ ସେ ସେଇଆ ଥିଲେ।

ମିରନ୍ଦା ପୁଣି କହେ; ତମେ ତେବେ ମୋର ବାପା ନୁହେଁ?

ମ୍ଳାନ ହସି ପ୍ରସ୍ପେରୋ କହନ୍ତି, ତୋ'ର ସତୀସାଧ୍ୱୀ ମା ମୋତେ ସେଇ କଥା କହି ଯାଇଛନ୍ତି।

ବାପାଙ୍କ କୋଳରେ ମୁହଁ ଲୁଚାଇ ଛୋଟ ପିଲାଭଳି ଗେଲ ହେଉ ହେଉ ମିରନ୍ଦା କହେ, ବାରବର୍ଷ ପୂର୍ବର ସେଇ ଦୟାଳୁ ଲୋକଟିକୁ ଦେଖିବାକୁ ମୋର ଖୁବ୍ ଇଚ୍ଛା ହେଉଛି ବାପା... ସମୁଦ୍ରରେ ଏ ଯେଉଁ ଝଡ଼ ସୃଷ୍ଟି କରିଛ, ତା'ର କାରଣ ଜାଣିବାକୁ ଚାହୁଁଛି ମୁଁ।

ଦୂରରୁ ଭାସିଆସେ ବହୁଲୋକଙ୍କର ଚିତ୍କାର। ତାହା ଶୁଣି ମିରନ୍ଦା ଚମକି ଉଠେ। ସସ୍ନେହେ ଝିଅ ପିଠିରେ ହାତ ବୁଲାଉ ବୁଲାଉ ପ୍ରସ୍ପେରୋ ଅଶାନ୍ତ ସମୁଦ୍ର ଆଡ଼େ ଅନାଇ ରହନ୍ତି। ତା'ପରେ ଝିଅ ଆଡ଼େ ଅନାଇ କହନ୍ତି, ମା ବର୍ତ୍ତମାନ ଆଉ କିଛି ଅଧିକ ଜାଣିବାକୁ ମନ କର ନାହିଁ। ଦୈବଗତିରୁ ଭାଗ୍ୟ ମୋର ଶତ୍ରୁମାନଙ୍କୁ ଏଇ ଦ୍ୱୀପ ପାଖକୁ ଟାଣି ଆଣିଛି। ଯାଦୁବିଦ୍ୟାର ପ୍ରଭାବରୁ ମୁଁ ଜାଣିପାରିଛି ଯେ, ଗୋଟିଏ ଶୁଭ ନକ୍ଷତ୍ରର ପ୍ରଭାବରେ ମୋର ଭାଗ୍ୟର ପରିବର୍ତ୍ତନ

ହେବାକୁ ଯାଉଛି । ମୁଁ ଏଇ ସୁଯୋଗ ହାତଛଡ଼ା କରିବାକୁ ଚାହେଁ ନାହିଁ । ତୁ ଏବେ କ୍ଲାନ୍ତ ହୋଇପଡ଼ିଚୁ, ଯା ଟିକିଏ ବିଶ୍ରାମ ନେବୁ । ଭଲ ଲାଗିବ । ପ୍ରସ୍ପେରୋ ଗୁମ୍ଫା ବାହାରକୁ ଆସନ୍ତି । ଆକାଶରେ ଠୁଳ ହୋଇଥିବା ପୁଞ୍ଜ ପୁଞ୍ଜ କଳାମେଘ ଆଡ଼କୁ ଅନାଇ ହାତ ଟେକନ୍ତି । ବତାସର ଗୋଟାଏ କୁଣ୍ଡଳୀ ତାଙ୍କ ଆଗକୁ ଆସି ଘୂରିବାରେ ଲାଗେ । ସେଇଆଡ଼କୁ ଅନାଇ ପ୍ରସ୍ପେରୋ କହନ୍ତି, ଅଶରୀରୀ ଏରିଅଲ୍, ତମକୁ ଯାହା କରିବାକୁ ଆଦେଶ ଦେଇଥିଲି, ଝଡ଼ ଦ୍ୱାରା ତମେ କ'ଣ ସେଇ ସବୁ କାମ କରିପାରିଛ ?

କୁଣ୍ଡଳୀ ଭିତରୁ ଧୀରେ ଧୀରେ ଶରୀରଧାରୀ ଏରିଅଲ୍ ଆତ୍ମପ୍ରକାଶ କରେ । ପ୍ରସ୍ପେରୋଙ୍କୁ ନମସ୍କାର ଜଣାଇ କୁହେ, ଆପଣଙ୍କ ଆଦେଶ ଅନୁସାରେ ସବୁ କାମ ହୋଇଯାଇଛି ହଜୁର । ମୁଁ ଜାହାଜ ଉପରକୁ ଉଠି ସେଠାର ପ୍ରତିଟି ସ୍ଥାନରେ ଭୟଙ୍କର ତାଣ୍ଡବ ସୃଷ୍ଟି କରି ଶେଷରେ ନିଆଁ ଲଗାଇ ଦେଇଛି । ସେଥିରେ ଜାହାଜର ମାସ୍ତୁଲ, ପାଲ, ଖୁଣ୍ଟ ଇତ୍ୟାଦି ସବୁ ପୋଡ଼ିଯାଇଛି ।

ଏରିଅଲ୍‌କୁ ପ୍ରଶଂସା କରି ପ୍ରସ୍ପେରୋ କହନ୍ତି, ବାଃ.. ତମେ ତ ଖୁବ୍ ଭଲ କାମ କରିଛ । ଜାହାଜ ଭିତରେ କ'ଣ ବର୍ତ୍ତମାନ ଏଭଳି କେହି ଅଛନ୍ତି, ଯାହାଙ୍କର ବୁଦ୍ଧି ଭ୍ରଂଶ ହୋଇ ନାହିଁ ?

ନା ହଜୁର, ଜାହାଜର କୌଣସି ଯାତ୍ରୀ ସ୍ୱାଭାବିକ ଅବସ୍ଥାରେ ନ ଥିଲେ । ଭୟ ଆଉ ଆତଙ୍କରେ ସେମାନେ ପାଗଳ ପରି ହୋଇଯାଇଛନ୍ତି । ସେଇ ଅବସ୍ଥାରେ ସେମାନେ ଜୀବନ ବିକଳରେ ବାତ୍ୟା ବିକ୍ଷୁବ୍ଧ ସମୁଦ୍ର ଭିତରକୁ ଡେଇଁ ପଡ଼ିଛନ୍ତି । ଅବଶ୍ୟ କାହାରି କିଛି କ୍ଷତି ହୋଇ ନାହିଁ । କାହାରି ପୋଷାକରେ ସାମାନ୍ୟ କାଦୁଅ ଟିକିଏ ବି ଲାଗିବାକୁ ଦେଇ ନାହିଁ ମୁଁ । ଜାହାଜଟିକୁ ନିରାପଦରେ ନାବିକମାନଙ୍କ ସହ ବାରମୁଡ଼ା ଦ୍ୱୀପର ଗୋଟିଏ ନିର୍ଜନ ଉପକୂଳରେ ଲୁଚାଇ ଦେଇଛି । ନାବିକମାନେ ଡେକ୍ ଉପରେ ଲଗାଲଗି ହୋଇ ଶୋଇ ପଡ଼ିଛନ୍ତି । ଯେଉଁ ଯାତ୍ରୀମାନେ କୂଳକୁ ଉଠି ପାରିଛନ୍ତି ଆପଣଙ୍କ ଆଦେଶ ଅନୁସାରେ ମୁଁ ସେମାନଙ୍କୁ ଛୋଟ ଛୋଟ ଦଳରେ ବିଭକ୍ତ କରି ଏଇ ଦ୍ୱୀପର ନାନା ଆଡ଼େ ଖେଳାଇ ଦେଇଛି । ରାଜକୁମାର ଫର୍ଡ଼ିନାଣ୍ଡଙ୍କୁ ମୁଁ ନିଜେ କୂଳକୁ ଆଣିଛି । ସମୁଦ୍ର ସହିତ ଲଢ଼ି ଲଢ଼ି ସେ ବର୍ତ୍ତମାନ ବେଶ୍ କ୍ଳାନ୍ତ... ଏବେ କୂଳରେ ବସି ରହିଛନ୍ତି । ତାଙ୍କୁ ଦେଖିଲେ ଦୁଃଖୀ ହେଉଛି ।

ଏରିଅଲ୍‌ର ବର୍ଣ୍ଣନା ଶୁଣି ପ୍ରସ୍ପେରୋ ବେଶ୍ ଖୁସି ହେଲେ । ପ୍ରଶଂସାରେ ଏରିଅଲ୍‌କୁ ପୋତି ପକାଇଲେ ।

ଅଶରୀରୀ ଏରିଅଲ୍ କହିଲା, ହଜୁର କାମରେ ପଠାଇବା ପୂର୍ବରୁ ଆପଣ ମୋତେ ଗୋଟାଏ ପ୍ରତିଶ୍ରୁତି ଦେଇଥିଲେ । ତାହା କିନ୍ତୁ ଆପଣ ଏପର୍ଯ୍ୟନ୍ତ ବି ପାଳନ କରି ନାହାନ୍ତି ।

ପ୍ରସ୍ପେରୋ କହନ୍ତି, ସେ କଥା ମୋର ମନେ ଅଛି । ତେବେ କାମ ତ ଏ ପର୍ଯ୍ୟନ୍ତ ଶେଷ ହୋଇ ନାହିଁ । ଶେଷ ହୋଇଗଲେ ମୁଁ ମୋର ପ୍ରତିଶ୍ରୁତି ପାଳନ କରିବି । ତମକୁ ନିଶ୍ଚୟ ମୁକ୍ତି

ଦେବି । ଏରିଅଲ୍, ତମେ କ'ଣ ସେଇ ନିଦାରୁଣ ଯନ୍ତ୍ରଣା କଥା ସବୁ ଭୁଲିଗଲଣି ? ସେଥିରୁ ମୁଁ ତମକୁ ରକ୍ଷା କରିଛି । ଦୁଷ୍ଟ ଡାହାଣୀ ସାଇକୋରାକ୍ସକୁ ତମେ ଏତେ ଶୀଘ୍ର ଭୁଲିଗଲ ?

ଡାହାଣୀର ନାମ ଶୁଣି ଏରିଅଲ୍ ଶିହରି ଉଠେ । ଗୋଟିଏ ସମୟରେ ଏଇ ଡାହାଣୀ ତାକୁ ଅନେକ କଷ୍ଟ ଦେଇଛି ।

ଏଇ ଡାହାଣୀର ଜନ୍ମ ହୋଇଥିଲା ଆଲଜିୟାର୍ସରେ । ତା'ର ଭୟଙ୍କର କାମ ପାଇଁ ଲୋକେ ତାକୁ ଡରୁଥିଲେ । ଶେଷକୁ ସେଠାର ଲୋକେ ଏକାଠି ହୋଇ ତାକୁ ଦେଶରୁ ବାହାର କରିଦେଲେ । ହୁଏତ ତାକୁ ମାରି ଦେଇଥାନ୍ତେ । ତେବେ ତା'ର ପିଲାଟିଏ ଥିବାରୁ ଦୟାକରି ଛାଡ଼ିଦେଲେ । ନାବିକମାନେ ତାକୁ ଆଣି ଏଇ ଦ୍ୱୀପରେ ନିର୍ବାସିତ କରିଥିଲେ ।

ସାଇକୋରାକ୍ସ ଆସି ଏଠାରେ ଆଶ୍ରୟ ନେବା ପୂର୍ବରୁ ଏଠି ବହୁ ଅଶରୀରୀ ଆତ୍ମା ବାସ କରୁଥିଲେ । ସେମାନେ କେବେବି କାହାରି କିଛି ଅନିଷ୍ଟ କରୁ ନ ଥିଲେ । ଖୁବ୍ ନିରୀହ ଥିଲେ ସେମାନେ । ସାଇକୋରାକ୍ସ ସେମାନଙ୍କୁ ଗୋଟାଏ ଗଛର କୋରଡ଼ରେ ବନ୍ଦୀ କରି ରଖିଥିଲା । ଯନ୍ତ୍ରଣାରେ ସେମାନେ ଆର୍ତ୍ତନାଦ କରୁଥିଲେ । ତାହା ଶୁଣି ଡାହାଣୀ ନିର୍ମମ ଆନନ୍ଦରେ ଉର୍ଦ୍ଧ୍ୱବାହୁ ହୋଇ ନୃତ୍ୟ କରୁଥିଲା ।

ପ୍ରସ୍ପେରୋ ଏଇ ଦ୍ୱୀପରେ ପ୍ରବେଶ କରି ସେଇ ଅସହାୟ ବନ୍ଦୀମାନଙ୍କୁ ଦେଖିଲେ । ସେମାନଙ୍କ ବିକଳ କାନ୍ଦଣାରେ ବ୍ୟସ୍ତ ହୋଇପଡ଼ି ନିଜର ଯାଦୁବିଦ୍ୟାର ପ୍ରଭାବରେ ସେମାନଙ୍କୁ ମୁକ୍ତ କରି ଦେଲେ । ଫଳରେ ସେମାନେ ସମସ୍ତେ ପ୍ରସ୍ପେରୋଙ୍କର ବଡ଼ ଅନୁଗତ ହୋଇ ପଡ଼ିଲେ ।

ସେଇ ଅଶରୀରୀମାନଙ୍କର ନେତା ହେଉଛି ଏରିଅଲ୍ । ସେ ଖୁବ୍ ବୁଦ୍ଧିମାନ୍, କ୍ଷିପ୍ର ଏବଂ ଖୁସିବାସିଆ । କାହାରି କିଛି ଅନିଷ୍ଟ କରେ ନାହିଁ । ତା'ର ରାଗ ଥିଲା କେବଳ ଡାହାଣୀ ସାଇକୋରାକ୍ସ ଉପରେ । ଏ ଭିତରେ ସେ ତ ମରିଗଲାଣି, ରହିଛି ତା'ର ପୁଅ କାଲିବାନ୍ । ସୁଯୋଗ ପାଇବା ମାତ୍ରେ ଏରିଅଲ୍ କାଲିବାନ୍ ପଛରେ ଲାଗିଯାଏ... ତାକୁ ଚିଡ଼ାଏ, ରଗାଏ... କାଲିବାନ୍ ଯେତେ ରାଗେ, ଏରିଅଲ୍ ସେତେ ଖୁସି ହୁଏ... ଏଇଥିରେ ତା'ର ଆନନ୍ଦ ।

ଏରିଅଲ୍ ପ୍ରସ୍ପେରୋଙ୍କୁ ନିଜର ମୁକ୍ତି ବିଷୟରେ କହିଥିଲା । ଏତେଦିନ ବନ୍ଦୀହୋଇ ରହିବା ପରେ ସେ ସ୍ୱାଧୀନ ହୋଇ ବଞ୍ଚିବାକୁ ଚାହେଁ । ପ୍ରସ୍ପେରୋ ମଧ୍ୟ ସମୟ ଆସିଲେ ତାକୁ ଛାଡ଼ିଦେବେ ବୋଲି କହିଛନ୍ତି ।

ପ୍ରସ୍ପେରୋଙ୍କ କଥାରୁ ଏରିଅଲ୍ ବୁଝିପାରେ ଯେ, ତା'ର କାମ ଏବେବି ଶେଷ ହୋଇ ନାହିଁ । କେବେ ସରିବ କାମ ? କେବେ ଆସିବ ତା'ର ବହୁ ପ୍ରତୀକ୍ଷିତ ମୁକ୍ତି ? ଏରିଅଲ୍ ପ୍ରସ୍ପେରୋଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରେ ।

ପ୍ରସ୍ପେରୋ କହନ୍ତି, ଶୀଘ୍ର ତମେ ଜଳପରୀ ବେଶରେ ମୋ ପାଖକୁ ଆସ । ଏଇ ରୂପରେ ମୁଁ କେବଳ ତମକୁ ଦେଖିପାରିବି । ଅନ୍ୟ କେହି ଯେମିତି ତମର ଦର୍ଶନ ପାଇ ନ ପାରନ୍ତି । ଧୈର୍ଯ୍ୟ ଧରି ମାତ୍ର ଆଉ ଦୁଇଟା ଦିନ ଅପେକ୍ଷା କର । ତା'ଭିତରେ ମୋର କାମ ଶେଷ ହୋଇଯିବ । ତା'ପରେ ତମର ମୁକ୍ତି ଚିରକାଳ ପାଇଁ...

ପ୍ରସ୍ପେରୋଙ୍କ ଆଦେଶ ପାଳନ କରିବାକୁ ଏରିଅଲ୍ ଖୁସି ହୋଇ ଚାଲିଯାଏ । ଆସନ୍ନ ମୁକ୍ତିର କଳ୍ପନାରେ ତାର ମନ ଆନନ୍ଦରେ ପୂର୍ଣ୍ଣ ।

ପ୍ରସ୍ପେରୋ ପରବର୍ତ୍ତୀ କାର୍ଯ୍ୟପନ୍ଥା ସ୍ଥିର କରିବାରେ ଲାଗନ୍ତି ।

॥ ୩ ॥

ସଇତାନ୍ ଠାରୁ କାଲିବାନ୍‌ର ଜନ୍ମ । ମା ଡାହାଣୀ ସାଇକୋରାକ୍ସ । ଚେହେରା ଖୁବ୍ ଅସୁନ୍ଦର କାଲିବାନ୍‌ର । ମୁହଁଟା ହନୁମାଙ୍କଡ଼ ମୁହଁଭଳି, ସ୍ୱଭାବ ଚରିତ୍ର ବି ସେମିତି...

ପ୍ରଥମେ ପ୍ରସ୍ପେରୋ ତାକୁ ନିଜ ଗୁମ୍ଫାରେ ଆଶ୍ରୟ ଦେଇଥିଲେ । ମାତୃହରା ଏଇ ଅନାଥ ସନ୍ତାନ ପ୍ରତି ତାଙ୍କର ସମବେଦନାର ଅଭାବ ନ ଥିଲା । ମାତ୍ର କାଲିବାନ୍‌ଟା ହେଲା ଏକବାରେ ଅକୃତଜ୍ଞ । ସେ ମିରନ୍ଦା ସହିତ ଖରାପ ବ୍ୟବହାର କଲା । ରାଗିପାଇ ପ୍ରସ୍ପେରୋ ତାକୁ ନିଜ ଗୁମ୍ଫାରୁ ବାହାର କରିଦେଲେ ।

ପ୍ରସ୍ପେରୋ ତା'ର ଆଚାର ବ୍ୟବହାର ବଦଳାଇବାକୁ ଅନେକ ଚେଷ୍ଟା କରନ୍ତି । ମାତ୍ର ସବୁ ବୃଥା ହୁଏ । କାଲିବାନ୍ ବଦଳେ ନାହିଁ । ତା'ର ରକ୍ତରେ ଥିଲା ଡାହାଣୀମାଆର ପ୍ରକୃତି ଆଉ ସଂକୀର୍ଣ୍ଣତା...

ପ୍ରସ୍ପେରୋ ତାକୁ ଭାଷା ଶିକ୍ଷା ଦେବାକୁ ମଧ ଉଦ୍ୟମ କରନ୍ତି । କାଲିବାନ୍ କିଛି ବୁଝେ ନାହିଁ । ଭଲମନ୍ଦ ଭିତରେ ତଫାତ୍‌ଟା ବି ଧରିପାରେ ନାହିଁ । ଗାଳିଦେବା ଆଉ ଅନ୍ୟକୁ ବିନା କାରଣରେ ଅଭିସମ୍ପାତ ଦେବା କଥାଟା କିନ୍ତୁ ସେ ଭଲ ଭାବରେ ଶିଖିଯାଏ । ପ୍ରସ୍ପେରୋ ତାକୁ ଭୟ ଦେଖାନ୍ତି-କହନ୍ତି-ମୋ କଥା ନ ମାନିଲେ ତୋତେ ବାତ ବ୍ୟାଧିରେ ଏକବାରେ ପଙ୍ଗୁ କରିଦେବି । ତୋର ଚିତ୍କାରରେ ଜଙ୍ଗଲର ଗଛଲତା, ପଶୁପକ୍ଷୀ ବି କାନ୍ଦିବେ ।

କାଲିବାନ୍ ଭୟ ପାଇଯାଏ । ପ୍ରସ୍ପେରୋଙ୍କର ଅବାଧ ନ ହେବାକୁ ତାଙ୍କୁ କଥାଦିଏ । କେତେ ଦିନ ତାଙ୍କ କଥା ମାନି ଚଳିବେ । ମାତ୍ର ସେ କେବଳ କିଛି ଦିନ ପାଇଁ । ତା'ପରେ ଯୋଉ କଥାକୁ ସେଇ କଥା-ଯଥା ପୂର୍ବଂ, ତଥା ପରଂ । ପ୍ରସ୍ପେରୋ ଏଥର ତାକୁ ତା ନିଜ ବାଟରେ ଛାଡ଼ି ଦିଅନ୍ତି । ଜାଣନ୍ତି ଏଇ ବଦ୍‌ମାସ୍‌ଟା ହେଉଛି କୁକୁରର ଲାଙ୍ଗୁଳ, ଶହେବର୍ଷ ଲାଗିଲେ ମଧ ତାକୁ ସିଧା କରି ହେବ ନାହିଁ ।

ତେବେ କାଲିବାନ୍ ନ ବଦଳିଲେ ବି ପ୍ରସ୍ପେରୋ ତାକୁ ମୁକ୍ତି ଦେଲେ ନାହିଁ। କାଠହଣା, ପାଣିଅଣା, ନିଆଁଜଳା ଆଉ ଏମିତି ସବୁ ମୋଟାକାମ ତା'ରି ହାତରେ କରାଇ ନେଲେ । କାଳେ ସେ କାମରେ ଢିଲା କରିବ, ଏଇଥିପାଇଁ ଏରିଅଲ୍‌କୁ ତାକୁ ଜଗିବାର ଦାୟିତ୍ୱ ଦେଲେ । ସୁଯୋଗ ପାଇବା ମାତ୍ରେ କାଲିବାନ୍ କାମରେ ଫାଙ୍କିଦିଏ ।

ଏରିଅଲ୍ ବି ତାକୁ ଛାଡ଼େ ନାହିଁ। କେତେବେଳେ ଚିମୁଟି, କେତେବେଳେ ପାଣିକାଦୁଅ ଭିତରକୁ ଠେଲିଦେଇ ଏରିଅଲ୍ ତାକୁ ସାଧ କରେ । ମନ ହେଲେ ମାଙ୍କଡ଼ ହୋଇ ତାକୁ ଖତେଇ ହୁଏ । ହଠାତ୍ ଝିଙ୍କ ରୂପ ଧରି କାଲିବାନ୍ ଆଡ଼କୁ ମାଡ଼ି ଆସେ । ଝିଙ୍କର ମୁନିଆଁ କଣ୍ଟାରେ ଫୋଡ଼ି ହୋଇ ଯିବାର ଭୟରେ କାଲିବାନ୍ ଚିତ୍କାର କରିଉଠେ। ଏମିତି ତାକୁ ହଇରାଣ କରିବାକୁ ଏରିଅଲ୍ ନିତ୍ୟନୂତନ ଫନ୍ଦିମାନ ବାହାର କରୁଥାଏ। ଏଇସବୁ କାମରେ ତା'ର ଭାରି ଆନନ୍ଦ।

ଅନୁଗତ ଅଶରୀରୀମାନଙ୍କର ସାହାଯ୍ୟ ପାଇ ପ୍ରସ୍ପେରୋଙ୍କ ଶକ୍ତି ବହୁତ ବଢ଼ିଯାଏ । ଏମାନଙ୍କ ସାହାଯ୍ୟରେ ସେ ସମୁଦ୍ର, ବାୟୁ, ଚନ୍ଦ୍ର, ସୂର୍ଯ୍ୟ ସମସ୍ତଙ୍କ ଉପରେ କର୍ତ୍ତୃତ୍ୱ ବିସ୍ତାର କରିପାରନ୍ତି । ଇଚ୍ଛା କଲେ ସମୁଦ୍ରରେ ଝଡ଼ ସୃଷ୍ଟି କରିପାରନ୍ତି । ମନ ହେଲେ ପବନର ଗତି ବଦଳାଇ ଦେଇପାରନ୍ତି ।

ସେଦିନ ପିଠିରେ କାଠବୋଝ ଲଦି ଜଙ୍ଗଲରୁ ଫେରୁଥାଏ କାଲିବାନ୍ । ପ୍ରସ୍ପେରୋକୁ ଗାଳି ଦେବାରେ ତା'ର ବିରାମ ନ ଥାଏ । ସେ ଜାଣେ ଏ ଦ୍ୱୀପ ହେଉଛି ତା'ମାଆର ସମ୍ପତ୍ତି, ଯାହା ସେ ତାକୁ ଦେଇ ଯାଇଛନ୍ତି । କୁଆଡୁ ଆସି ପ୍ରସ୍ପେରୋ ଏହାକୁ ଅଧିକାର କରିବସିଛି । ତାକୁ ଚାକର ଭଳି ଖଟାଉଛି । ସେ ବି ଛାଡ଼ିବ ନାହିଁ । ସୁଯୋଗ ପାଇଲେ ନିଶ୍ଚୟ ପ୍ରତିଶୋଧ ନେବ । ଦେଖିନେବ ପ୍ରସ୍ପେରୋର ଏଇ ଚାଟୁକାର ଏରିଅଲ୍‌କୁ । ପ୍ରସ୍ପେରୋ କଥାରେ ସେ ଯେତିକି ହଇରାଣ ତାକୁ କରୁଛି ବା କରିଛି, ସେ ସବୁ ଗୋଟି ଗୋଟି ହୋଇ ତା'ର ମନେ ଅଛି । ସୁଯୋଗ ଆସିଲେ ସେ ତାକୁ ମଧ ଦେଖିନେବ । ମାତ୍ର ସେ ସୁଯୋଗ ଆସିବ କେବେ ?

॥ ୪ ॥

ଦ୍ୱୀପର ଗୋଟିଏ ନିର୍ଜନ ଅଂଶରେ ବସିଥିଲେ ରାଜକୁମାର ଫର୍ଡିନାଣ୍ଡ, ଏକାକୀ ଆତ୍ମୀୟସ୍ୱଜନଙ୍କ ବିଚ୍ଛେଦ ତାଙ୍କୁ ଖୁବ୍ ବାଧୁଥିଲା । ମାତ୍ର କ'ଣ ବା କରିବେ ? ସେ ତ କହିବାକୁ ଗଲେ ଏଇ ଜନମାନବଶୂନ୍ୟ ଦ୍ୱୀପରେ ଏକପ୍ରକାର ବନ୍ଦୀ ଜୀବନଯାପନ କରୁଛନ୍ତି ।

ହଠାତ୍ ସୁମଧୁର ସଙ୍ଗୀତର ଧ୍ୱନିରେ ଆକୃଷ୍ଟ ହୋଇ ଫର୍ଡ଼ିନାଣ୍ଡ ସେଇଆଡ଼େ କାନ ଦିଅନ୍ତି । ଜଳପରୀ ବେଶୀ ଏରିଅଲ୍ ତା'ର ଚମତ୍କାରିତା ଦେଖାଇବାକୁ ଆରମ୍ଭ କରି ଦେଇଥିଲା ।

ଆବେଗପୂର୍ଣ୍ଣ ଭାବସମ୍ପନ୍ନ ସୁମଧୁର ସଙ୍ଗୀତ ତ ଶୁଣାଯାଉଛି, ମାତ୍ର ଗାୟକ ଦେଖାଯାଉ ନାହିଁ । ଫର୍ଡିନାଣ୍ଡ ଚାରିଆଡ଼େ ଅନାନ୍ତି । କାହାକୁ ନ ଦେଖି ଭୟ ପାଇଯାଆନ୍ତି । ତେବେ କ'ଣ ଏ କୌଣସି ଅଶରୀରୀର କାଣ୍ଡ ? ଏ ଦ୍ୱୀପ କ'ଣ ତେବେ... ?

ସୁମଧୁର ସଂଗୀତର ଧ୍ୱନିରେ ଫର୍ଡ଼ିନାଣ୍ଡ କିଛି ସମୟ ପାଇଁ ତାଙ୍କର ପିତୃଶୋକ ଭୁଲି ଯାଇଥିଲେ । ତାଙ୍କର ବିଶ୍ୱାସ ପିତା ଏଇ ଦୁର୍ଘଟଣାରେ ମୃତ । ସଂଗୀତର କଥାରୁ ତା'ର ଇଙ୍ଗିତ ମଧ୍ୟ ମିଳୁଛି । କୌତୂହଳୀ ହୋଇ ଫର୍ଡିନାଣ୍ଡ ସ୍ୱରକୁ ଅନୁସରଣ କରି ଦ୍ୱୀପର ଆଭ୍ୟନ୍ତରୀଣ ଅଞ୍ଚଳଆଡ଼େ ଚାଲିଲେ ।

ପ୍ରସ୍ପେରୋ ଏବଂ ମିରନ୍ଦା ଗୋଟିଏ ଗଛଛାଇରେ ବସିଥିଲେ । ଗୀତକୁ ଅନୁସରଣ କରୁ କରୁ ଫର୍ଡ଼ିନାଣ୍ଡ ଯାଇ ତା'ର ଆଖପାଖରେ ପହଞ୍ଚିଗଲେ ।

ପ୍ରଥମେ ଦୃଷ୍ଟି ପଡ଼ିଲା ପ୍ରସ୍ପେରୋଙ୍କର । ସେ ଝିଅକୁ କହିଲେ- ଦେଖ୍‌ତ, ଏ ଆଡ଼କୁ କିଏ ଜଣେ ନୂଆଲୋକ ଆସିଲାଭଳି ଲାଗୁଛି ।

ମିରନ୍ଦା ସେଇଆଡ଼େ ଅନାଇ ଆଶ୍ଚର୍ଯ୍ୟ ହୋଇଗଲା । ଦ୍ୱୀପରେ ଇତିପୂର୍ବରୁ ସେ ପ୍ରସ୍ପେରୋଙ୍କୁ ଛାଡ଼ିଦେଲେ ଦ୍ୱିତୀୟ ପୁରୁଷ ଦେଖି ନ ଥିଲା । ତା'ର ଧାରଣା ହେଲା, ଇଏ ନିଶ୍ଚେ ଜଣେ ଅଶରୀରୀ । କହିଲା ଦେଖ ବାପା, ଯଦିଓ ଏଇ ଆଗନ୍ତୁକଙ୍କର ଶରୀର ଅଛି, ତେବେ ମୋର ମନେ ହେଉଛି, ସେ ଜଣେ ଅଶରୀରୀ । ସେମାନେ କ'ଣ ଏତେ ସୁନ୍ଦର ହୁଅନ୍ତି ?

ପ୍ରସ୍ପେରୋ ଉତ୍ତର ଦେଲେ, 'ନା'ରେ ମାଆ, ସେ ମୋଟେ ଅଶରୀରୀ ନୁହେଁ । ଆମରି ଭଳି ରକ୍ତମାଂସଧାରୀ ଜଣେ ମଣିଷ । ଯେଉଁ ଜାହାଜଟି ସମୁଦ୍ରରେ ଝଡ଼ କବଳରେ ପଡ଼ିଥିଲା, ଇଏ ତାହାରି ଜଣେ ଯାତ୍ରୀ ଭଳି ମନେ ହେଉଛି, ସେ ନିଜର ଆତ୍ମୀୟମାନଙ୍କୁ ଖୋଜୁଛି ।'

ମିରନ୍ଦା ଏଥର ଆଉଥରେ ଆଗନ୍ତୁକଙ୍କ ଆଡ଼େ ଅନାଇଲା । ବାପାଙ୍କର ଦାଢ଼ିନିଶ ଭରା ବିଷଣ୍ଣ ମୁହଁ ଅପେକ୍ଷା ଏହାଙ୍କର ମୁହଁଟି ତା'ର ମନେହେଲା କୌଣସି ଦେବତାଙ୍କ ମୁହଁ ଭଳି । ପୁରୁଷ ଏତେ ସୁନ୍ଦର ହୁଏ ?

ଫର୍ଡ଼ିନାଣ୍ଡକୁ ଦେଖି ମିରନ୍ଦା ମୁଗ୍ଧ ହୋଇଗଲା ।

ଫର୍ଡ଼ିନାଣ୍ଡଙ୍କର ମଧ୍ୟ ବିସ୍ମୟର ଶେଷ ନାହିଁ । ମିରନ୍ଦାଆଡ଼େ ଚାହିଁ ସେ ଚିନ୍ତା କରିବାକୁ ଲାଗିଛନ୍ତି । ନିଶ୍ଚୟ ଏଇ ସୁତନୁଜା ସ୍ୱର୍ଗର ଜଣେ ଦେବୀ । ସେ ଏଇ ଦ୍ୱୀପର ରାଣୀ । ଭକ୍ତ ଦେବୀଙ୍କ ବନ୍ଦନା ପଢ଼ିଲାଭଳି ଫର୍ଡ଼ିନାଣ୍ଡ ମିରନ୍ଦାର ବନ୍ଦନା ଆରମ୍ଭ କରିଦିଅନ୍ତି ।

ମିରନ୍ଦା ଏ ସବୁ ଶୁଣି ସଙ୍କୁଚିତ ହୋଇପଡ଼ିଲା । ପ୍ରତିବାଦ କରି କହିଲା - ଏ ଆପଣ କଣ କରୁଛନ୍ତି ? ମୁଁ ଦେବୀ ନୁହେଁ କି ରାଣୀ ନୁହେଁ । ରକ୍ତମାଂସଧାରୀ ଜଣେ ସାଧାରଣ ନାରୀ...

ଫର୍ଡ଼ିନାଣ୍ଡଙ୍କ ମୁହଁରୁ କଥା ବାହାରୁ ନାହିଁ । ମନରେ ଭାବି ନେଉଛନ୍ତି - ଆରେ ଏ ଅପରୂପା ତ କଥା କହୁଛି, ତା' ପୁଣି ଆମରି ଭାଷାରେ !

ଅଭିଜ୍ଞ ପ୍ରସ୍ପେରୋ ଜାଣିଗଲେ, ପ୍ରଥମ ଦର୍ଶନରୁ ହିଁ ଦୁହେଁ ପରସ୍ପର ପ୍ରତି ଆକୃଷ୍ଟ ହୋଇଛନ୍ତି । ଏହାକୁ ବି କୁହାଯାଇପାରେ ପ୍ରେମ । ତେବେ ପ୍ରଥମରୁ ସେମାନଙ୍କୁ ଏଇ ବ୍ୟାପାରରେ ଆଦୌ ପ୍ରଶ୍ରୟ ଦିଆଯିବା ଉଚିତ ହେବ ନାହିଁ । ସେମାନଙ୍କର-ବିଶେଷକରି ଫର୍ଡ଼ିନାଣ୍ଡର ପ୍ରେମର ଗଭୀରତାଟା ପ୍ରଥମେ ପରୀକ୍ଷା କରିନେବା ଉଚିତ । ଗମ୍ଭୀର ହୋଇ ପ୍ରସ୍ପେରୋ ଦୁଇପାଦ ଆଗେଇଯାଇ ଫର୍ଡ଼ିନାଣ୍ଡର ଉଦ୍ଦେଶ୍ୟରେ କହିଲେ, ତୁମେ କିଏ ଯୁବକ ? କେଉଁଠୁ ବା ଆସିଛ ?

ଫର୍ଡ଼ିନାଣ୍ଡ କହିଲେ - ଆପଣଙ୍କ ତୁଣ୍ଡରୁ ନେପଲସ୍‌ର ଭାଷା ଶୁଣି ଅବାକ୍ ହେଉଛି । ମୁଁ ସେଇ ଦେଶର ରାଜକୁମାର । ସମୁଦ୍ରରେ ଆମର ଜାହାଜ ଦୁର୍ଘଟଣାର ସମ୍ମୁଖୀନ ହୋଇଛି । ତହିଁରେ ଥିଲେ ମୋର ବାପା, ତାଙ୍କ ଭାଇ, ମିଲନ୍‌ର ଏବର ଡିଉକ୍ । ମନ୍ତ୍ରୀ ଗଞ୍ଜାଲୋ, କିଛି ରାଜପାରିଷଦ ଏବଂ ଏମିତି ଆହୁରି ଅନେକେ । ମୁଁ ବି ସେଇ ଜାହାଜରେ ଥିଲି । ଅନ୍ୟ ଯାତ୍ରୀମାନଙ୍କର ସଲିଳ ସମାଧି ହୋଇଛି । ଏକମାତ୍ର ମୁଁ କୌଣସିମତେ ବଞ୍ଚିଯାଇ ବୁଲୁ ବୁଲୁ ଏଠି ଆସି ପହଞ୍ଚିଛି ।

ପ୍ରସ୍ପେରୋ କହନ୍ତି, ଯଦି ତମର ଯୋଗ୍ୟତା ଥାଏ, ତେବେ ଏଇ ଦ୍ୱୀପରେ ତମକୁ ଦେଖାଶୁଣା କରିବେ ମିଲନ୍‌ର ପ୍ରକୃତ ଡିଉକ୍ ଆଉ ତାଙ୍କର କନ୍ୟା...

ଦୀର୍ଘଶ୍ୱାସ ପକାଇ ମିରନ୍ଦା କହେ - ବାପା, ଏ ଆଗନ୍ତୁକ ଦ୍ୱୀପରେ ନବାଗତ । ତମେ ତାଙ୍କୁ ଉପହାସ କରୁଛ କାହିଁକି ?

ଫର୍ଡ଼ିନାଣ୍ଡ କହିପକାନ୍ତି... ତମେ ଯଦି ବିବାହିତା ହୋଇ ନ ଥାଅ କିମ୍ବା ତମର ମନ କାହାରିକୁ ଦେଇ ନ ଥା'ଅ - ତେବେ ମୁଁ ତମକୁ ନେପଲସ୍‌ର ଯୁବରାଣୀ କରିବି ।

ପ୍ରସ୍ପେରୋ ଗମ୍ଭୀର ହୋଇ ପୁଣି କହନ୍ତି, ଯୁବକ ! ତମର ପରିଚୟ ଆମେ ଏ ପର୍ଯ୍ୟନ୍ତ ପାଇ ନାହୁଁ । ତମର ଜାଣି ରଖିବା ଉଚିତ ଯେ ମୁଁ ହେଉଛି ଏଇ ଦ୍ୱୀପର ରାଜା । ତମେ କେଉଁଥିପାଇଁ ଏଠାକୁ ଆସିଛ, ତା' ବି ମୁଁ ଜାଣେ । ତମେ ହେଉଛ ମୋର ଶତ୍ରୁ ପକ୍ଷର ଚର । ଏଇ ଦ୍ୱୀପକୁ ମୋ ଠୁଁ ଛଡ଼ାଇ ନେବା ପାଇଁ ଚକ୍ରାନ୍ତ କରୁଛ । ପୁଣି ମୋର ଏକମାତ୍ର କନ୍ୟା... ଏଇ ମିରନ୍ଦାକୁ ମଧ ମୋଠୁଁ ଛଡ଼ାଇ ନେବାକୁ ଷଡ୍‌ଯନ୍ତ୍ର କରୁଛ । ଏଥିପାଇଁ ତମକୁ ଶାସ୍ତି ଦିଆଯିବ...

ଫର୍ଡ଼ିନାଣ୍ଡ ଛାତିଫୁଲାଇ ଦୃପ୍ତ କଣ୍ଠରେ କହିଲେ, ମୁଁ ସତକଥା କହୁଛି । ନେପଲସ୍‌ର ରାଜକୁମାର ମିଛକଥା କହିବାକୁ ଶିଖି ନାହିଁ ।

ମିରନ୍ଦା ଅନୁନୟ କରି କହେ, 'ବାପା, ଏଡ଼େ ସୁନ୍ଦର ମୁହଁ ଯାହାର, ସେ କେବେ ଅପରାଧୀ ହୋଇ ନ ପାରନ୍ତି । ତମେ...

ମିରନ୍ଦାକୁ ଭର୍ତ୍ସନା କରି ପ୍ରସ୍ପେରୋ କହନ୍ତି - ତତେ ଆଉ ଏଇ ଯୁବକ ପକ୍ଷରୁ ଓକିଲାତି କରିବାକୁ ହେବ ନାହିଁ । ଏଇ ଗୁପ୍ତଚରର ହାତଗୋଡ଼ ବାନ୍ଧି ରଖିବାକୁ ହେବ । ତାକୁ ଖାଇବାକୁ ଦିଆଯିବ, ବଣୁଆ ଗଛର ମୂଳ ଆଉ ଗେଣ୍ଡା ଶାମୁକା । ପିଇବାକୁ ଦିଆଯିବ ସମୁଦ୍ରର ଲୁଣିପାଣି... ବ୍ୟଙ୍ଗପୂର୍ଣ୍ଣ କଣ୍ଠରେ ଫର୍ଡ଼ିନାଣ୍ଡ କହନ୍ତି... ଆପଣ ଏମିତି କିଏ ଯେ, ଆପଣଙ୍କ ଶାସ୍ତିକୁ ମୁଁ ମଥାପାତି ଗ୍ରହଣ କରିନେବି ?

ଆଦେଶ ଦେବା କଣ୍ଠରେ ପ୍ରସ୍ପେରୋ କହନ୍ତି... ମୁଁ ଏ ଦ୍ୱୀପର ରାଜା । ମୁଁ ଯାହା ଦଣ୍ଡ ଦେବି, ତା' ଗ୍ରହଣ କରିବାକୁ ତମେ ବାଧ୍ୟ ।

ଫର୍ଡ଼ିନାଣ୍ଡ ପଚାରୁଛି - ମୋର ଅପରାଧ କ'ଣ ?

ତମେ ମୋ ଦ୍ୱୀପରେ ଅନଧିକାର ପ୍ରବେଶ କରିଛ - ପ୍ରସ୍ପେରୋ ଜଣାଇଦିଅନ୍ତି । ତରବାରିକୁ କୋଷମୁକ୍ତ କରୁ କରୁ ଫର୍ଡ଼ିନାଣ୍ଡ ଜବାବ୍ ଦିଅନ୍ତି - ଆଚ୍ଛା ! ତା' ହେଲେ ଏଥର ମୋ ଶକ୍ତିଟା ବି ଥରେ ଦେଖି ନିଅନ୍ତୁ ।

ତଡ଼ିତ୍ ଗତିରେ ପ୍ରସ୍ପେରୋ ନିଜର ଯାଦୁଦଣ୍ଡ ଉପରକୁ ଉଠାନ୍ତି । ତା' ସହିତ ବୋଲିବାକୁ ଆରମ୍ଭ କରନ୍ତି କ'ଣ ସବୁ ମନ୍ତ୍ର ।

ଫର୍ଡ଼ିନାଣ୍ଡଙ୍କର ଦେହ ଅବଶ ହୋଇଯାଏ । ସେ ଆଉ ହଲିବି ପାରନ୍ତି ନାହିଁ । ପଥର ମୂର୍ତ୍ତିଟିଏ ଭଳି ଅସହାୟ ଭାବରେ ଠିଆ ହୋଇ ରହନ୍ତି ।

ମିରନ୍ଦା ପୁଣି ଅନୁନୟଭରା କଣ୍ଠରେ କହେ... ବାପା, ତମେ ଏତେ ନିର୍ଦ୍ଦୟ ହେଉଛ କାହିଁକି ? ଆଗରୁ ତମକୁ ତ କେବେ ବି ଏମିତି ଅବସ୍ଥାରେ ଦେଖି ନାହିଁ । କାହିଁକି ବା ତମେ ଏଭଳି ଏକ ସୁନ୍ଦର ମଣିଷକୁ ଦଣ୍ଡ ଦେଉଛ ? ତାଙ୍କୁ ତମେ କ୍ଷମା କରିଦିଅ... ମୁଁ ତାଙ୍କ ପାଇଁ ଦାୟୀ ରହୁଛି । ତମକୁ ଛାଡ଼ି ମୁଁ ଆଜି ପ୍ରଥମେ ଦ୍ୱିତୀୟ ମଣିଷ ଦେଖିଲି । ଏଭଳି ମଣିଷ କ'ଣ କେବେ ଅନ୍ୟାୟ କରିପାରନ୍ତି ?

ପ୍ରସ୍ପେରୋ କ୍ରୁଦ୍ଧ ସ୍ୱରରେ ମିରନ୍ଦାକୁ ଧମକ ଦେଇ କହନ୍ତି, ତୁ ଚୁପ୍ କର । ଏଇ ଭଣ୍ଡ ଲୋକଟାକୁ ତୁ ଏତେ ଦରଦ ଦେଖାଉଛୁ କାହିଁକି ? ସଂସାର କଥା ତୁ କ'ଣ ଜାଣୁ ? ମଣିଷ ଦେଖି ନାହୁଁ ତ, ତେଣୁ ଭାବୁଛୁ, ପୃଥିବୀରେ ଏହା ଛଡ଼ା ସୁନ୍ଦର ଆଉ କେହି ନାହିଁ । ତୋର ଧାରଣା କିନ୍ତୁ ସମ୍ପୂର୍ଣ୍ଣ ଭୁଲ୍ ।

ମିରନ୍ଦା ସରଳ ଭାବରେ କହେ - ମୋର ପୃଥିବୀ ନିଶ୍ଚୟ ଛୋଟ । ମୋର ଧାରଣା ବି ସୀମିତ । ଏହା ଅପେକ୍ଷା ସୁନ୍ଦର ମଣିଷ ମୁଁ ଦେଖିବାକୁ ବି ଚାହେଁନା...

ପ୍ରକୃତରେ ପ୍ରସ୍ପେରୋ ନିଜ ଝିଅର ମନୋଭାବ ପରୀକ୍ଷା କରିନେବାକୁ ଚାହୁଁଥିଲେ । ଫର୍ଡ଼ିନାଣ୍ଡକୁ ନିନ୍ଦା କରିବା କି ତାକୁ ଶାସ୍ତି ଦେବା କଥା କହିବା ଥିଲା ତାଙ୍କର ଛଳନା ।

ଏଥର ଫର୍ଡ଼ିନାଣ୍ଡ ଆଡ଼କୁ ଅନାଇ ସେ କଠୋର କଣ୍ଠରେ କହିଲେ - ଯୁବକ, ମୋତେ ଅନୁସରଣ କର । ଦେଖିଲ ତ, ମୋ ବିରୋଧରେ ଯିବାର ସାମର୍ଥ୍ୟ ତମର ନାହିଁ ।

ଫର୍ଡ଼ିନାଣ୍ଡ କହେ - ଏ ଦୁର୍ବଳତା ସାମୟିକ । ଆତ୍ମୀୟସ୍ୱଜନଙ୍କୁ ହରାଇ ହଠାତ୍ ମୁଁ ଦୁର୍ବଳ ହୋଇପଡ଼ିଛି । ତେବେ ଜାଣିରଖନ୍ତୁ, ଆପଣଙ୍କର ଏ କ୍ରୋଧ - ଏ ରକ୍ତଚକ୍ଷୁ ଏସବୁକୁ ମୁଁ ମୋଟେ ଭୟ କରେନା । ବନ୍ଦୀ ଦଶାରେ ଏଇ ରୂପବତୀ କନ୍ୟାଙ୍କର ସାହଚର୍ଯ୍ୟ କ୍ଷଣକ ପାଇଁ ମିଳିଲେ ବି ମୁଁ ତହିଁରେ ଉପଭୋଗ କରିବି ମୁକ୍ତିର ଆନନ୍ଦ ।

ମିରନ୍ଦା ଫର୍ଡ଼ିନାଣ୍ଡକୁ ଆଶ୍ୱାସନା ଦେଇ କହେ-ଆଗନ୍ତୁକ, ତମେ ନିଶ୍ଚିନ୍ତ ରୁହ । ଜାଣେନା ବାପା ତମ ସହିତ ହଠାତ୍ ଏପରି କଦର୍ଯ୍ୟ ବ୍ୟବହାର କରୁଛନ୍ତି କାହିଁକି ? ତେବେ ମୋର ବିଶ୍ୱାସ, ଖୁବ୍ ଅଳ୍ପ ସମୟରେ ତାଙ୍କର ବ୍ୟବହାର ବଦଳିଯିବ । ତମେ ଚିନ୍ତା କରନା... ମୁଁ ତମ ପାଖରେ ଅଛି ଆଉ ରହିବି ।

॥ ୫ ॥

ଦ୍ୱୀପର ଅନ୍ୟ ପ୍ରାନ୍ତରେ ଅଛନ୍ତି ନେପଲସ୍‌ର ରାଜା ଆଲେନ୍‌ସୋ, ରାଜଭ୍ରାତା ସେବାଷ୍ଟିଆନ୍, ମିଲନ୍‌ର ବର୍ତ୍ତମାନର ଡିଉକ୍ ଆଣ୍ଟୋନିଓ ଏବଂ ମନ୍ତ୍ରୀ ଗଞ୍ଜାଲୋ । ଆହୁରି ଅଛନ୍ତି ଦୁଇଜଣ ସାମନ୍ତ ଆଡ୍ରିୟାନ୍ ଏବଂ ଫ୍ରାନ୍‌ସିସ୍‌କୋ ତଥା କେତେଜଣ ଯାତ୍ରୀ ।

ରାଜା ଏକମାତ୍ର ପୁତ୍ରର ବିଚ୍ଛେଦରେ କାତର । ତାଙ୍କର ଧାରଣା ବିଚରା ଫର୍ଡ଼ିନାଣ୍ଡର ଜଳସମାଧି ହୋଇଯାଇଛି । ସମସ୍ତେ ଶୋକାହତ ରାଜାଙ୍କୁ ସାନ୍ତ୍ୱନା ଦେବାରେ ବ୍ୟସ୍ତ ।

ଗଞ୍ଜାଲୋ କହନ୍ତି - ମହାରାଜ, ଆପଣ ଏମିତି ଭାଙ୍ଗିପଡ଼ନ୍ତୁ ନାହିଁ । ବରଂ ଖୁସି ହୁଅନ୍ତୁ ଯେ, ଆମେ ସବୁ ନିରାପଦରେ ଏଠି ପହଞ୍ଚିଯାଇଛୁ । ବଞ୍ଚିବା ପାଇଁ ଯାହା ଦରକାର, ଦେଖୁଛି, ଏ ଦ୍ୱୀପରେ ସବୁ ରହିଛି । ଲକ୍ଷ୍ୟ କରିଛନ୍ତି, ଏତେ ବଡ଼ ବିପଦରେ ଆମର ପୋଷାକପତ୍ର ଟିକିଏ ବି ମଇଳା ହୋଇ ନାହିଁ । ଆଫ୍ରିକାରେ ଟ୍ୟୁନିସ୍‌ର ରାଜାଙ୍କ ସହିତ ଆପଣଙ୍କ କନ୍ୟାର ବିବାହ ସମୟରେ ଆମେ ସବୁ ଯେଉଁ ପୋଷାକ ପିନ୍ଧିଥିଲୁ, ସେସବୁ ସେମିତି ରହିଛି । ଝଡ଼ ଆମକୁ ଏକେବାରେ ବାଟରେ ବସାଇ ଦେଇ ଯାଇ ନାହିଁ ।

ପୁତ୍ରଶୋକରେ କାତର ପିତାର ମନ ବା ଏସବୁ ସାନ୍ତ୍ୱନାରେ ସନ୍ତୁଷ୍ଟ ହୁଅନ୍ତା କିପରି ?

ସେ କାତର କଣ୍ଠରେ କହନ୍ତି, ସବୁ ବୁଝୁଛି ଗଞ୍ଜାଲୋ । କିନ୍ତୁ ମୋ ମନ ବୁଝୁ ନାହିଁ । ଏତେ ଦୂରରେ ଝିଅର ବିବାହ ଦେବାଟା ହିଁ ମୋର ଭୁଲ୍ ହୋଇଛି । ଝିଅକୁ ତ ଏକପ୍ରକାର ନିର୍ବାସନ ଦେଲି । ଏଣେ ପୁଅକୁ ବି ହରାଇଲି ।

ଫ୍ରାନ୍‌ସିସ୍‌କୋ ରାଜାଙ୍କର ଆଶଙ୍କା ଦୂର କରିବାକୁ କହନ୍ତି-"ମହାରାଜ, ମୁଁ ଯୁବରାଜଙ୍କୁ ଢେଉ ଉପରେ ଭାସୁଥିବାର ଦେଖିଛି । ପହଁରି ପହଁରି ସେ କୂଳଆଡ଼କୁ ଯାଉଥିଲେ । ମୋର ବିଶ୍ୱାସ, ସେ ବଞ୍ଚିଛନ୍ତି ।"

ଏ କଥାରେ ରାଜାଙ୍କର ବିଶ୍ୱାସ ହେଲା ନାହିଁ । ସେ କହିଲେ- "ମୁଁ ଜାଣେ ଫର୍ଡ଼ିନାଣ୍ଡ ଚିରକାଳ ପାଇଁ ସମୁଦ୍ରଗର୍ଭରେ ହଜିଯାଇଛି ।"

ରାଜଭ୍ରାତା ସେବାଷ୍ଟିଆନ୍ କହନ୍ତି..."ନେପଲସ୍‌ର ରାଜକନ୍ୟାଙ୍କୁ ହରାଇବାର ଦୁଃଖ ମୋତେ ବେଶି ବାଧୁଛି । କାହିଁ କେତେ ଦୂରରେ ଆଫ୍ରିକାର ଟ୍ୟୁନିସ୍ । ଏଥିରେ ଆମର ସମ୍ମାନ ବା କୋଉ ବଢ଼ିଚି ? ରାଜକୁମାରୀ ଅନିଚ୍ଛାସତ୍ତ୍ୱେ ପିତାଙ୍କର ଇଚ୍ଛାକୁ ସମ୍ମାନ ଜଣାଇବା ପାଇଁ ଏ ବିବାହରେ ରାଜି ହୋଇଛନ୍ତି ।"

ଆଡ୍ରିୟାନ୍ କହନ୍ତି - "ଟ୍ୟୁନିସ୍ ଏହା ପୂର୍ବରୁ ଏମିତି ସୁନ୍ଦରୀରାଣୀ ପାଇବାର ସୌଭାଗ୍ୟ କେବେ ପାଇ ନାହିଁ ବୋଲି ମୋର ବିଶ୍ୱାସ ।"

ରାଜାଙ୍କ ଆଡ଼କୁ ଅନାଇ ସେବାଷ୍ଟିଆନ୍‌ଙ୍କର ଅନୁତାପ ହେଲା । ଏଇଭଳି ଶୋକସନ୍ତପ୍ତ ମୁହୂର୍ତ୍ତରେ ଝିଅକଥା କହିବାଟା ବୋଧହୁଏ ଉଚିତ ହେଲା ନାହିଁ ।

ସମସ୍ତେ କ୍ଳାନ୍ତ । ଆଖିରେ ନିଦ ଭରି ଆସୁଛି । ରାଜା, ତାଙ୍କ ଭାଇ ଏବଂ ଆଣ୍ଟୋନିଓଙ୍କୁ ଛାଡ଼ି ଜଣକ ପରେ ଜଣେ ସମସ୍ତେ ଶୋଇ ପଡ଼ିଲେ । କିଛି ସମୟ ପରେ ରାଜା ବି ଶୋଇଗଲେ ।

ସେବାଷ୍ଟିଆନ୍‌ଙ୍କ ଆଡ଼କୁ ଅନାଇ ଆଣ୍ଟୋନିଓ କହିଲେ - ବନ୍ଧୁ, ମୁଁ ସ୍ପଷ୍ଟ ଭାବରେ ଦେଖିପାରୁଛି, ନେପଲସ୍‌ର ରାଜମୁକୁଟ ଆପଣଙ୍କ ମଥାରେ ଶୋଭା ପାଉଛି । ମୋର ଏଇ କଥା ପଦକୁ ହାଲ୍‌କା ଭାବରେ ନେବେ ନାହିଁ । ଗମ୍ଭୀର ଭାବରେ ଗ୍ରହଣ କଲେ ଭବିଷ୍ୟତ୍‌ରେ ଆପଣ ହିଁ ଉପକୃତ ହେବେ ।

ସେବାଷ୍ଟିଆନ୍ ସତର୍କ ହୋଇଗଲେ । କହିଲେ... ଡିଉକ୍, ଆପଣଙ୍କ କଥା ଶୁଣି ମନେହେଉଛି, ମୁଁ ବୋଧହୁଏ ସ୍ୱପ୍ନ ଦେଖୁଛି !

ଆଣ୍ଟୋନିଓ ବୁଝିଲେ, ଯେଉଁ ଥୋପଟି ସେ ପକାଇଛନ୍ତି, ତାହା ଠିକଣା ଜାଗାରେ ଲାଗିଛି । ସେ ଉତ୍ସାହିତ ହୋଇ କହିଲେ - ମୋ କଥାକୁ ହସରେ ଉଡ଼ାଇ ଦିଅନ୍ତୁ ନାହିଁ । ଆପଣଙ୍କ ମନର୍ ଗୋପନ ଇଚ୍ଛାର ଖବର, ମନେହେଉଛି ଆପଣ ନିଜେ ବି ରଖନ୍ତି ନାହିଁ । ବୁଡନ୍ତ-ମଣିଷ ବେଳେ ବେଳେ କୂଳକୁ ଆସି ବି ପୁନର୍ବାର ଗଭୀର ଜଳ ଆଡ଼କୁ ଟାଣି ହୋଇଯାଏ । ଏହାର କାରଣ କ'ଣ ଜାଣନ୍ତି ? କାରଣ ହେଉଛି, ଦୃଢ଼ ଇଚ୍ଛାଶକ୍ତି ଆଉ ଉଦ୍ୟମର ଅଭାବ । ଯୁବରାଜ ଯେ ଆଉ ଜୀବିତ ନାହାନ୍ତି, ଏ କଥା ସମସ୍ତେ ଜାଣନ୍ତି । ଆପଣମାନେ ବୃଥାରେ ରାଜାଙ୍କୁ ସାନ୍ତ୍ୱନା ଦେଉଛନ୍ତି ।

ସେବାଷ୍ଟିଆନ୍ ଦୀର୍ଘନିଃଶ୍ୱାସ ପକାଇ କହନ୍ତି - ଫର୍ଡ଼ିନାଣ୍ଡ ତା'ହେଲେ ପ୍ରକୃତରେ ସମୁଦ୍ରଗର୍ଭରେ ହଜିଯାଇଛି ! ତେବେ ତ...

ତାଙ୍କର କଥା ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା ନ କରି ସ୍ଥିର ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇ ଆଣ୍ଟୋନିଓ ପାଲଟା ପ୍ରଶ୍ନ କରନ୍ତି - ଏଥର ତେବେ କୁହନ୍ତୁ । ନେପଲସ୍ ସିଂହାସନର ପରବର୍ତ୍ତୀ ଉତ୍ତରାଧିକାରୀ କିଏ ?

ଯୁବରାଜଙ୍କ ଅବର୍ତ୍ତମାନରେ ରାଜକନ୍ୟା - ଆଉ କିଏ ? - ସେବାଷ୍ଟିଆନ୍ ତତ୍‌କ୍ଷଣାତ୍ ଉତ୍ତର ଦିଅନ୍ତି ।

ଆଣ୍ଟୋନିଓ କହନ୍ତି - ତା'ସମ୍ଭବ ନୁହେଁ । ରାଜକନ୍ୟା ଏବେ ଟ୍ୟୁନିସ୍‌ର ରାଣୀ । ବାସସ୍ଥାନ ନେପଲସ୍ ଠାରୁ ବହୁ ଦୂର । ତାଙ୍କର ବିବାହରେ ଯୋଗ ଦେବାକୁ ଆସି ଆମର ଏଇ ଦୁର୍ଦ୍ଦଶା । ଏତେ ବାଟରୁ ଆସି ରାଜକନ୍ୟା ନେପଲସ୍‌ର ଭାର ଗ୍ରହଣ କରିବା ସମ୍ଭବ ନୁହେଁ । ସେ ଏବେ ଅତୀତ । ଆମେ ଦୁଇଜଣ ମିଶି ଗଢ଼ିବା ନେପଲସ୍‌ର ବର୍ତ୍ତମାନ ଏବଂ ଭବିଷ୍ୟତ୍ ।

ସେବାଷ୍ଟିଆନ୍ ଦୁର୍ବଳ ସ୍ୱରରେ କହନ୍ତି, ଡିଉକ୍, ଆପଣ ଠିକ୍ କଥା କହୁ ନାହାନ୍ତି । ଯେତେ ଦୂରରେ ଥିଲେ ବି ରାଜକନ୍ୟା ହିଁ ସିଂହାସନର ଆଇନ୍‌ସମ୍ମତ ଉତ୍ତରାଧିକାରିଣୀ ।

ଆଣ୍ଟୋନିଓ ଦୃଢ଼ କଣ୍ଠରେ କହନ୍ତି - ଆପଣ କିନ୍ତୁ ଭୁଲ୍ କରୁଛନ୍ତି ରାଜଭ୍ରାତା । ମୋ କଥା ଟିକିଏ ଭଲଭାବରେ ବିଚାର କରନ୍ତୁ । ସମସ୍ତେ ନିଦରେ ଅଚେତ୍ - ଏଇ ଅବସ୍ଥା ହିଁ ଆଣି ଦେଇଛି ଆପଣଙ୍କ ପାଇଁ ଏକ ବିରାଟ ସୁଯୋଗ -

ସେବାଷ୍ଟିଆନ୍ କହନ୍ତି - ବୁଝିଲି । ଅତୀତରେ ଆପଣ ଆପଣଙ୍କର ବଡ଼ଭାଇ ପ୍ରସ୍ପେରୋଙ୍କୁ ଡିଉକ୍ ପଦରୁ ହଟାଇ ଦେଇଥିଲେ । ଏବେ ଆପଣ ଚାହୁଁଛନ୍ତି, ମୁଁ ବି ସେମିତି ମୋ ବଡ଼ଭାଇଙ୍କୁ ସିଂହାସନରୁ ବିଦା କରିଦିଏ - ନୁହେଁ ? ଆଚ୍ଛା, ବଡ଼ଭାଇଙ୍କୁ ହଟାଇବାରେ ଆପଣଙ୍କର ବିବେକ ଆପଣଙ୍କୁ ବାଧା ଦେଇ ନାହିଁ ?

ଆଣ୍ଟୋନିଓ ନିରୁତ୍ତାପ କଣ୍ଠରେ କହନ୍ତି, "ସେଇ ଶବ୍ଦଟି ମୋ ଅଭିଧାନରେ ଆଦୌ ନାହିଁ । ଦେଖନ୍ତୁ, ନେପଲସ୍‌ର ରାଜା ଏବେ ଭୂମିଶଯ୍ୟାରେ ଘୋର ନିଦ୍ରାରେ ଆଚ୍ଛନ୍ନ । ମିଲନ୍‌ର ଭୂତପୂର୍ବ ଡିଉକ୍ ପ୍ରସ୍ପେରୋ ମଧ୍ୟ ଏହା ଅପେକ୍ଷା କୌଣସି ଭଲ ସ୍ଥାନରେ ଦିନ କଟାଉ ନ ଥିବେ । ଇଚ୍ଛା କଲେ, ତରବାରିର ଗୋଟାଏ ଆଘାତରେ ମୁଁ ତାଙ୍କୁ ଶେଷ କରି ଦେଇପାରେ । ଆପଣ ବି ଚାହିଁଲେ ଏଇ କାର୍ଯ୍ୟଟି ଅନାୟାସରେ କରିପାରିବେ ।"

ନିଜ ଅଜ୍ଞାତସାରରେ ସେବାଷ୍ଟିଆନ୍ ଧୀରେ ଧୀରେ କୁଚକ୍ରୀ ଆଣ୍ଟୋନିଓର ଜାଲରେ ଛନ୍ଦି ହୋଇଯାଆନ୍ତି ।

ସେବାଷ୍ଟିଆନ୍ କହନ୍ତି - ଆପଣ ଯେଉଁ ଉପାୟରେ ମିଲନ୍‌ର ଗାଦି ହାସଲ୍ କରିଛନ୍ତି, ମୁଁ ବି ସେଇ ଉପାୟ ଗ୍ରହଣ କରିବି । ରାଜାଙ୍କୁ ହଟାଇ ମୁଁ ହେବି ନେପଲସ୍‌ର ନୂଆ ରାଜା । ରାଜମୁକୁଟ ମୋରି ମଥାରେ ଶୋଭାପାଇବ । ମୁଁ ରାଜା ହେଲେ ମିଲନ୍‌କୁ ଆଉ ନେପଲସ୍‌ର ରାଜାଙ୍କୁ କୌଣସି କର ଦେବାକୁ ପଡ଼ିବ ନାହିଁ । ମିଲନ୍ ଚିରକାଳ ପାଇଁ ନେପଲସ୍‌ର ଅଧୀନତାରୁ ମୁକ୍ତ ହେବ । ବନ୍ଧୁ ଆସନ୍ତୁ, ଆମେ ମିତ୍ରତାର ବନ୍ଧନରେ ବାନ୍ଧିହୋଇଯିବା -

ଆଣ୍ଟୋନିଓର ଉଦ୍ଦେଶ୍ୟ ସଫଳ ହୁଏ । ସେ କହେ - ଏଇ ତ ଆପଣଙ୍କ ମୁହଁରୁ ପୁରୁଷୋଚିତ କଥା ବାହାରିଲା । ସୁଯୋଗକୁ ହାତଛଡ଼ା ନ କରିବା ହେଉଛି ପ୍ରକୃତ ପୁରୁଷର କାର୍ଯ୍ୟ ।

ଉଭୟେ ତରବାରି କୋଷମୁକ୍ତ କରନ୍ତି ।

ଆଣ୍ଟୋନିଓ କହେ... ମୁଁ ହାତ ଟେକିବା ମାତ୍ରେ ଆପଣ ଗଞ୍ଜାଲୋଙ୍କୁ ଆଘାତ କରିବେ । ଦେଖିବେ, ଗୋଟିଏ ଥରକେ ଯେମିତି କାର୍ଯ୍ୟ ଶେଷ ହୁଏ ।

ପ୍ରସ୍ପେରୋଙ୍କ ନିର୍ଦ୍ଦେଶରେ ଏରିଅଲ୍ ଅଦୃଶ୍ୟ ଭାବରେ ଏମାନଙ୍କର କ୍ରିୟାକଳାପ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲା । ସେ ଘୁମନ୍ତ ଗଞ୍ଜାଲୋଁର କାନରେ କହିଦେଲା... ଉଠନ୍ତୁ, ଏଠି ଆପଣଙ୍କୁ ହତ୍ୟା କରିବାର ଚକ୍ରାନ୍ତ ଚାଲିଛି । ଶୋଇରହିଲେ ସର୍ବନାଶ ହୋଇଯିବ । ଉଠି ଆତ୍ମରକ୍ଷା କରନ୍ତୁ ।

ଗଞ୍ଜାଲୋ ଧଡ଼ପଡ଼ ହୋଇ ଉଠିପଡ଼ି ରାଜାଙ୍କୁ ଡାକପକାଇଲେ । ରାଜାଙ୍କର ନିଦ ଭାଙ୍ଗିଗଲା । ସେ ଦେଖିଲେ, ମୁକ୍ତ କୃପାଣ ହାତରେ ଠିଆ ହୋଇଥିବା ଦୁଇ ମୂର୍ତ୍ତିଙ୍କୁ । ଅବାକ୍ ହୋଇ ପଚାରିଲେ - କଥା କ'ଣ ? ତମେ ଦୁହେଁ ଏଭଳି ଖୋଲା ତରବାରି ହାତରେ ଧରି ଠିଆ ହୋଇଛ କାହିଁକି ? ଦୁହିଁଙ୍କୁ ଖୁବ୍ ଉତ୍ତେଜିତ ମନେ ହେଉଛି । ତା'ର କାରଣ କ'ଣ ?

ଇତସ୍ତତଃ କରି ସେବାଷ୍ଟିଆନ୍ କହନ୍ତି-ମହାରାଜ, ଆପଣ ଶୋଇ ପଡ଼ିଥିଲେ । ସମସ୍ତେ ଶୋଇ ପଡ଼ିବାର ଦେଖି ଆମେ ଦୁହେଁ ଏଠି ପହରା ଦେଉଥିଲୁ । ହଠାତ୍ ଶୁଣାଗଲା ଗୋଟାଏ ବୀଭତ୍ସ ଗର୍ଜନ । ଅଜଣା ଜାଗା, ରାତିସମୟ । କେତେବେଳେ କ'ଣ ଘଟିଯିବ, ଏଇ ଆଶଙ୍କାରେ ଆମେ ତରବାରି ହାତରେ ଠିଆ ହୋଇଚୁ ।

ରାଜା କହିଲେ - ବିକଟ ଗର୍ଜନ ! କାଇଁ, ସେମିତି କିଛି ତ ମୋ କାନରେ ପଡ଼ି ନାହିଁ । ମନ୍ତ୍ରୀ, ତମେ କ'ଣ ଏମିତି କିଛି ଶୁଣିଛ ?

ଗଞ୍ଜାଲୋ ମନା କରନ୍ତି । କହନ୍ତି - ଆସନ୍ନ ବିପଦର କଥା କହି ମତେ ଯେମିତି କିଏ ସତର୍କ କରିଦିଏ । ସେଇଥିରେ ମୋ ନିଦ ଭାଙ୍ଗିଯାଏ, ଆଉ ମୁଁ ଆପଣଙ୍କୁ ନିଦରୁ ଉଠାଇ ଦିଏ ।

ରାଜା କହନ୍ତି - ଏଠି ଆଉ ଅପେକ୍ଷା କରିବାର କୌଣସି କାରଣ ନାହିଁ । ଆସନ୍ତୁ, ରାଜକୁମାରଙ୍କୁ ଖୋଜିବା ଆରମ୍ଭ କରିବା -

ସମସ୍ତେ ସେଇ ଉଦ୍ଦେଶ୍ୟରେ ସ୍ଥାନ ତ୍ୟାଗ କରନ୍ତି ଏବଂ ଏରିଅଲ୍ ଏ ସମ୍ବାଦ ପ୍ରସ୍ପେରୋଙ୍କ ପାଖରେ ପହଞ୍ଚାଇ ଦିଏ ।

॥ ୬ ॥

ଦ୍ୱୀପର ଅନ୍ୟ ଏକ ପ୍ରାନ୍ତ ।

ହଠାତ୍ ଶୁଣାଯାଏ, ମେଘର ଗୁରୁ ଗୁରୁ ଗର୍ଜନ ।

କାଠ ବୋଝ ମୁଣ୍ଡରେ ବୋହି କାଲିବାନ୍ ଆସେ ଏବଂ ଯଥାରୀତି ପ୍ରସ୍ପେରୋଙ୍କୁ ଗାଳି ଦେଇ ଚାଲିଥାଏ । ପ୍ରସ୍ପେରୋର ଅତ୍ୟାଚାରରେ ସେ କିଭଳି ଅତିଷ୍ଠ ହୋଇ ପଡ଼ିଲାଣି, ତାହା ଗାଇ ଯାଉଥାଏ ।

ଏକ ଅଦ୍‌ଭୁତ ପରିସ୍ଥିତିରେ ତା'ସହିତ ରାଜବିଦୂଷକ ତ୍ରିନ୍‌କୁଲୋ ଏବଂ ରାଜ-ସୂପକାର ଷ୍ଟେଫାନୋର ସାକ୍ଷାତ୍ ହୁଏ । ତ୍ରିନ୍‌କୁଲୋ ଏବଂ ଷ୍ଟେଫାନୋ ପରସ୍ପରକୁ ଦେଖି ଆଶ୍ଚର୍ଯ୍ୟ ହୋଇଯାଆନ୍ତି । କାରଣ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ମୃତ ବୋଲି ଧରି ନେଇଥିଲେ । ଗୋଟିଏ ମଦବାକ୍ସକୁ ଧରି ଷ୍ଟେଫାନୋ କୂଳରେ ଲାଗିଛି ବୋଲି ଜଣାଏ । ବାକ୍ସରେ ଏବେ ମଧ୍ୟ ପ୍ରଚୁର ମଦବୋତଲ ରହିଛି... ଏଠି ଥିବା ପର୍ଯ୍ୟନ୍ତ ତା' ସରିବ ନାହିଁ ବୋଲି ସେ ଜଣାଇଦିଏ ।

ଏମାନଙ୍କୁ ଦେଖି କାଲିବାନ୍ ଭୟରେ କମ୍ପିବାକୁ ଲାଗେ । ତା'ର କମ୍ପ ବନ୍ଦ କରିବାକୁ ଷ୍ଟେଫାନୋ ତାକୁ କିଛି ମଦ ପିଆଇ ଦିଏ । କାଲିବାନ୍ ନିଜ ଭିତରେ ଅନୁଭବ କରେ ଏକ ଅଦ୍‌ଭୁତ ପରିବର୍ତ୍ତନ ଏବଂ ପ୍ରସ୍ପେରୋ ପ୍ରତି ଥିବା ତାର ଭୟ ଦୂର ହୋଇଯାଏ । ଏଇ ଶକ୍ତିଶାଳୀ ଔଷଧକୁ କାଲିବାନ୍ ଅମୃତ ବୋଲି ମନେକରେ ଏବଂ ସ୍ୱେଚ୍ଛାରେ ଏହାର ଅଧିକାରୀ ଷ୍ଟେଫାନୋର ଦାସତ୍ୱ ବରଣ କରିନିଏ ।

ଷ୍ଟେଫାନୋ ବି ଏଭଳି ଗୋଟିଏ ଦାସ ପାଇ ଖୁସି ହୋଇଯାଏ ।

କାଲିବାନ୍ ସେମାନଙ୍କୁ ବାଟ ଦେଖାଇ ପ୍ରସ୍ପେରୋ ରହୁଥିବା ସ୍ଥାନଆଡ଼କୁ ନେଇଯାଏ ।

ପରୀକ୍ଷା କରିବାକୁ ପ୍ରଥମ କେଇଦିନ ପ୍ରସ୍ପେରୋ ଫର୍ଡ଼ିନାଣ୍ଡକୁ ଗୁମ୍ଫା ଭିତରେ ବନ୍ଦୀକରି ରଖିଲେ । ତା'ପରେ ତା' ଦ୍ୱାରା କଠିନ କାମ ସବୁ କରାଇଲେ । ନିଜ ପଢ଼ାଘରୁ ସେ ଫର୍ଡ଼ିନାଣ୍ଡ ଆଉ ମିରନ୍ଦା ଉପରେ ନଜର ରଖିଥାଆନ୍ତି । ସେମାନଙ୍କ କଥାବାର୍ତ୍ତା ଶୁଣିବାକୁ କାନ ଡେରି ଥାଆନ୍ତି ।

ସେ ଫର୍ଡିନାଣ୍ଡକୁ ମୋଟା ମୋଟା କାଠଗଡ଼ ବୋହି ଆଣିବାକୁ ଆଦେଶ ଦେଇଥିଲେ । କହିଥିଲେ - କାଠଗଣ୍ଡି ସବୁକୁ ଥାକମାରି ସଜାଇ ରଖ । କାମରେ ଫାଙ୍କି ଦେବା ମୁଁ ମୋଟେ ପସନ୍ଦ କରେ ନାହିଁ ।

ତେବେ ଫର୍ଡ଼ିନାଣ୍ଡ ରାଜାପୁଅ । ସେ କେବେ ବି ଏମିତି ଝାଳବୁହା କାମ କରି ନାହିଁ । କିଛି ସମୟ କାମକଲା ପରେ ସେ ଥକିଯାଏ । ତା'ଆଡ଼କୁ ଅନାଇ ମିରନ୍ଦାର ଆଖିରେ ପାଣି ଆସିଯାଏ । ସେ ଗୋପନରେ ତାକୁ ସାନ୍ତ୍ୱନା ଦିଏ । ତା'ପାଇଁ ତାଜା ଫଳ, ମିଠାପାଣି ନେଇ ଆସେ । ମିରନ୍ଦାକୁ ଦେଖିଲେ ଫର୍ଡ଼ିନାଣ୍ଡ ତା'ର ସମସ୍ତ ଦୁଃଖକଷ୍ଟ ଭୁଲିଯାଏ ।

ଦୁଃଖ କରି ମିରନ୍ଦା କହେ - ତମେ ଏଥର ଟିକିଏ ବିଶ୍ରାମ କର । ବାପା ତ ଏବେ ପଢ଼ାଘରେ ଅଛନ୍ତି । ସେ ତମ କାମ ତଦାରଖ କରିବାକୁ ଆସିବେ ନାହିଁ ।

କ୍ଲାନ୍ତ ଫର୍ଡ଼ିନାଣ୍ଡ ଉତ୍ତର ଦିଏ... ତା' ତ ସମ୍ଭବ ନୁହେଁ । ଏବେବି ଅନେକ କାମ ବାକି । ତାକୁ ଯେମିତି ହେଲେ ସାରିବାକୁ ପଡ଼ିବ ।

ମିରନ୍ଦା କହେ... ସେତିକି ଥାଉ । ଆଜି ତମେ ବହୁତ ଥକିଯାଇଛ । ଟିକିଏ ବିଶ୍ରାମ ନିଅ । ମୁଁ ବରଂ ତମ କାମ କିଛି କରିଦେଉଛି ।

ଫର୍ଡ଼ିନାଣ୍ଡ କହେ... ନା ନା.. ତମେ ପାରିବ ନାହିଁ । ଏ ସବୁ କାମ ତମକୁ କରିବାକୁ ମୁଁ ଦେବି ନାହିଁ ।

କଥାବାର୍ତ୍ତାରେ ଅନେକ ସମୟ କଟିଯାଏ । କାମ ପଛେଇ ଯାଏ । ପ୍ରସ୍ପେରୋ ତାଙ୍କ ପଢ଼ାଘରେ ନ ଥା'ନ୍ତି । ଯାଦୁବଳରେ ନିଜକୁ ଅଦୃଶ୍ୟ କରି ଆସି ଠିଆ ହୋଇଛନ୍ତି, ଫର୍ଡ଼ିନାଣ୍ଡ ଆଉ ମିରନ୍ଦାଙ୍କ ପାଖରେ । ଚୁପ୍‌ଚାପ୍ ଦୁହିଁଙ୍କ କଥା ଶୁଣନ୍ତି । ଦୁହେଁ ଏକଥା ଜାଣିପାରନ୍ତି ନାହିଁ ।

କାମ କରୁ କରୁ ଫର୍ଡ଼ିନାଣ୍ଡ ପଚାରେ... ପ୍ରଥମ ଦେଖାରୁ ତମକୁ ଭଲପାଇଛି । ଆଜିଯାଏ କିନ୍ତୁ ତମର ନାଆଁଟି ଜାଣିପାରି ନାହିଁ ।

ନିଜର ନାମଟି ତାକୁ ଜଣାଇଦେବା ପରେ ମିରନ୍ଦା ଜିଭ କାମୁଡ଼ିପକାଇ କହେ- ବାପା କିନ୍ତୁ ତମକୁ ମୋ ନାଆଁ ଜଣାଇବାକୁ ମନା କରିଥିଲେ । ତାଙ୍କ କଥା ରଖିପାରିଲି ନାହିଁ ।

ପ୍ରସ୍ପେରୋ ଏଥିପାଇଁ ମିରନ୍ଦା ଉପରେ ମୋଟେ ରାଗନ୍ତି ନାହିଁ, ବରଂ ଖୁସି ହୁଅନ୍ତି । ଫର୍ଡ଼ିନାଣ୍ଡ ପ୍ରତି ଝିଅର ଅନୁରାଗ ତାଙ୍କୁ ଯଥେଷ୍ଟ ଆନନ୍ଦିତ କରିଛି ।

ଫର୍ଡ଼ିନାଣ୍ଡର କଥା ଶୁଣି ମଧ ସେ ଖୁସି ହୋଇଯାଆନ୍ତି । ଦୁହିଁଙ୍କର ପ୍ରେମର ଗଭୀରତାକୁ ସେ ଅନୁଭବ କରିପାରନ୍ତି । ଏହାହିଁ ତ ତାଙ୍କର ଲକ୍ଷ୍ୟ । ଏଇଥିପାଇଁ ତ ସମୁଦ୍ରରେ ଏ ଅକାଳ ଝଡ଼ର ସୃଷ୍ଟି ଆଉ ଜାହାଜକୁ ଏଠାକୁ ଆଣିବା ।

ଫର୍ଡ଼ିନାଣ୍ଡ ଭାବ ଗଦ୍‌ଗଦ କଣ୍ଠରେ କହେ - ଝିଅ ମୁଁ ଅନେକ ଦେଖିଛି । କିନ୍ତୁ ତମଭଳି ଦ୍ୱିତୀୟଟି କାହାକୁ ଏ ପର୍ଯ୍ୟନ୍ତ ଭେଟି ନାହିଁ ।

ମିରନ୍ଦା କହେ - ଦର୍ପଣରେ ମୁଁ ନିଜ ମୁହଁ ଦେଖିଚି । ଅବଶ୍ୟ ନିଜ ଛଡ଼ା ଆଉ କେଉଁ ଝିଅକୁ ମୁଁ ବା ଦେଖିଛି ? ବାପାଙ୍କ ଛଡ଼ା ଅନ୍ୟ ପୁରୁଷ ମଧ ଦେଖି ନାହିଁ । ତମେ ହେଉଛ ମୋ ଦେଖା ଭିତରେ ଦ୍ୱିତୀୟ ପୁରୁଷ । ଆଉ କାହାକୁ ଦେଖିବାକୁ ଚାହେଁନି - ସଙ୍ଗୀ ହିସାବରେ ତ କଦାପି ନୁହେଁ ।

ଫର୍ଡ଼ିନାଣ୍ଡ କହେ - ମିରନ୍ଦା, ମୁଁ ଯେ ଜଣେ ରାଜକୁମାର, ସେ କଥା ଏଠି କହି ଲାଭ କ'ଣ ? ଏ କାଠ ବୋହିବାର କଷ୍ଟ ମୁଁ ଆଉ ସହିପାରୁ ନାହିଁ । ତମକୁ ପ୍ରତିଦିନ ଦେଖିବାକୁ ପାଉଛି, ଏତେ କଷ୍ଟ ଭିତରେ ଏଇ ମୋର ଆନନ୍ଦ ।

ମିରନ୍ଦା ସେମିତି ଆବେଗପୂର୍ଣ୍ଣ କଣ୍ଠରେ କହେ - ତମେ କ'ଣ ସତରେ ମୋତେ ଭଲ ପାଅ ?

ତା'ର ସୁନ୍ଦର ମୁହଁଟି ଆଡ଼କୁ ଅନାଇ ଫର୍ଡ଼ିନାଣ୍ଡ କହେ - ଦୁନିଆରେ ଏମିତି ଭଲ ମୁଁ ଆଉ କାହାରିକୁ ପାଇ ନାହିଁ ।

ଆନନ୍ଦରେ ମିରନ୍ଦାର ଦୁଇ ଆଖି ଲୁହରେ ଭରିଯାଏ । କୋମଳ କଣ୍ଠରେ ଫର୍ଡ଼ିନାଣ୍ଡ କହେ... ଏ କ'ଣ ମିରନ୍ଦା, ତମେ କାନ୍ଦୁଚ ?

ହସିପକାଇ ମିରନ୍ଦା କହେ... ଏ ମୋର ଆନନ୍ଦର ଅଶ୍ରୁ । ତମେ ମୋତେ ବାହା ହେଲେ ମୋ ଜୀବନ ଧନ୍ୟ ହୋଇଯିବ । ବିବାହ ହୋଇ ନ ପାରିଲେ ବି ସାରା ଜୀବନ ମୁଁ ତମର ସେବା କରିଯିବି ।

ଫର୍ଡ଼ିନାଣ୍ଡ କହେ - ମତେ ବିବାହ କଲେ ତମେ ହେବ ନେପଲସ୍‌ର ଯୁବରାଣୀ ।

ମିରନ୍ଦା ଖୁସି ହୋଇଯାଏ, ନେପଲସ୍‌ର ରାଣୀ ହେବାର କଳ୍ପନାରେ ନୁହେଁ, ଫର୍ଡ଼ିନାଣ୍ଡକୁ ନିଜର କରିପାରିବାର ଆନନ୍ଦରେ ତା'ର ମନ ଭରିଯାଏ ।

କିଛି କ୍ଷଣ କଟିଯାଏ । ଦୁହେଁ ଦୁହିଁଙ୍କ ଆଡ଼େ ମୁଗ୍ଧ ଦୃଷ୍ଟିରେ ଅନାଇ ରହନ୍ତି । ହଠାତ୍ ଚମକିପଡ଼ି ମିରନ୍ଦା କହେ - ମନେ ହେଉଚି, ବାପାଙ୍କର ପଢ଼ା ଶେଷ ହୋଇଗଲାଣି । ସେ ଏବେ ବାହାରି ଆସିବେ । ମୋତେ ଏଠି ଏମିତି ଦେଖିଲେ ମୋଟେ ଖୁସି ହେବେ ନାହିଁ । ମୁଁ ତେବେ ଯାଏଁ ।

ଯିବାକୁ ମନ କହୁ ନ ଥାଏ, ତଥାପି ମିରନ୍ଦାକୁ ବିଦାୟ ନେବାକୁ ହୁଏ ।

॥ ୭ ॥

ଷ୍ଟେଫାନୋ ଆଉ ଟ୍ରିନ୍‌କୁଲୋ ମଦଖାଇ ଘୂରି ବୁଲୁଥାଆନ୍ତି । ସତେ ଯେମିତି ପ୍ରତିଜ୍ଞା କରିଥାଆନ୍ତି, ମଦ ମିଳୁଥିବା ଯାଏ ମୋଟେ ପାଣି ପିଇବେ ନାହିଁ ।

ମାତାଲ ଟ୍ରିନ୍‌କୁଲୋ ପଚାରି ବସେ - ଆରେ ଦାସ, ଶୁଣିଚି ଏଇ ଦ୍ୱୀପର ବାସିନ୍ଦା ମୋଟେ ପାଞ୍ଚଜଣ । ତିନିଜଣ ତ ହେଲୁ ଆମେ । ବାକି ଦୁଇଜଣ କିଏ ? ମଦରେ ଚୂର୍ ହୋଇ କାଲିବାନ୍ କହେ - ଏତେଦିନ ଯାଏ ମୁଁ ଥିଲି ଜଣେ ଅତ୍ୟାଚାରୀ ଯାଦୁକରର ଦାସ । ଯାଦୁବିଦ୍ୟା ବଳରେ ସେ ଏଇ ଦ୍ୱୀପ ମୋଠୁ ଛଡ଼ାଇ ନେଇଛି । ଆଜିଠାରୁ ମୁଁ ଆପଣଙ୍କର ସେବକ ।

ଏହା ଭିତରେ ଏରିଅଲ୍ ସେଠାକୁ ଆସିଯାଏ । ମାତ୍ର ସେ ଅଦୃଶ୍ୟ ଥିବାରୁ ଏମାନେ କେହି ତାକୁ ଦେଖିପାରନ୍ତି ନାହିଁ । ସେ କାଲିବାନ୍‌କୁ କହେ - ହେ ଏ - ତୁ ମିଛ କଥା କହୁଚୁ...

କାଲିବାନ୍ ରାଗିଯାଇ ଉତ୍ତର ଦିଏ - ମୁଁ ମିଛ କହୁଚି ନା ତୁ ? ମାଙ୍କଡ଼ କୋଉଠିକାର ! ଏଠି ବି ତୁ ତୋର ବଦ୍‌ମାସୀ ଦେଖେଇବାକୁ ପହଞ୍ଚିଗଲୁଣି ? ଜାଣୁ, ମୋର ଏଇ ବୀରମାଲିକ ଯଦି ଚାହିଁବେ, ଗୋଟାଏ ମୁହୂର୍ତ୍ତରେ ତତେ ଧ୍ୱଂସ କରିଦେବେ ।

ଷ୍ଟେଫାନୋ ବୁଝେ, ଟ୍ରିନ୍‌କୁଲୋ କାଲିବାନ୍ ପଛରେ ଲାଗିଛି । ସେ ତାକୁ ସାବଧାନ କରିଦିଏ । ଟ୍ରିନ୍‌କୁଲୋ ପ୍ରତିବାଦ କରି କହେ - ମୁଁ ତ ତାକୁ କିଛି କହି ନାହିଁ ।

ଷ୍ଟେଫାନୋ କହେ - ତେବେ ଚୁପ୍ କର । ଆଉ ପଦେ କଥା କହିବୁ ନାହିଁ ।

ପୂର୍ବ କଥାର ଖିଅ ଧରି କାଲିବାନ୍ କହିଯାଏ - କ'ଣ କହୁଥିଲି କି, ଯାଦୁଶକ୍ତିଦ୍ୱାରା ସେଇ ବଦ୍‌ମାସ୍ ମୋଠୁଁ ଏଇ ଦ୍ୱୀପକୁ ଛଡ଼ାଇ ନେଇଛି । ମତେ ମୋର ଉତ୍ତରାଧିକାରରୁ ବଞ୍ଚିତ କରିଚି । ମୁଁ ତମର ଅନୁଗତ ସେବକ । ମୋ ପାଇଁ ତମେ ତା' ଉପରେ ପ୍ରତିଶୋଧ ନିଅ । ସେଇ ଯାଦୁକର ବିରୋଧରେ ଠିଆ ହେବାର ଶକ୍ତି ମୋର ନାହିଁ । ତେବେ ତମେ ବୀରପୁରୁଷ - ଆଉ ସାହସୀ... ତମେ ଠିକ୍ ଏ କାମ କରିପାରିବ ।

ଖୁସି ହୋଇ ଷ୍ଟେଫାନୋ କହେ - ତୁ ଠିକ୍ କଥା କହୁଚୁ ।

କାଲିବାନ୍ କହେ... ତମେ ହେବ ଏଇ ଦ୍ୱୀପର ମାଲିକ । ମୁଁ ତମର ସେବା କରିବି ।

ଷ୍ଟେଫାନୋ କହେ... କିନ୍ତୁ ସେଇ ଯାଦୁକର ପାଖରେ ମୁଁ ପହଞ୍ଚିବି କେମିତି ? ଦ୍ୱୀପରେ କୋଉଠି ସେ ରହୁଛି, ତା' ତ ମତେ ଜଣା ନାହିଁ ।

-ମୁଁ ତମକୁ ବାଟ ଦେଖାଇ ନେଇଯିବି । ଯାଦୁକର ଯେତେବେଳେ ଶୋଇଥିବ, ସେତିକିବେଳେ ତମେ ସେଠି ପହଞ୍ଚିଯିବ । ତା'ମୁଣ୍ଡ ଭିତରେ ଗୋଟାଏ ମୋଟା କଣ୍ଟା ଢୁକାଇ ଦେବ । ସେଇଥିରେ ସେ ଶେଷ ହୋଇଯିବ । କାଲିବାନ୍ କହେ ।

ଅଦୃଶ୍ୟ ଏରିଅଲ୍ ପାଟି ଖୋଲି କହେ... ମିଛୁଆ... ଚୋର । ଏ କାମ ତୁ କେବେହେଲେ କରିପାରିବୁ ନାହିଁ ।

କାଲିବାନ୍ ଧରିନିଏ ଟ୍ରିନ୍‌କୁଲୋ ନିଶ୍ଚୟ ତାକୁ ଗାଳି ଦେଉଛି । ସେ ଷ୍ଟେଫାନୋ ପାଖରେ ଫେରାଦ ହୁଏ । କହେ... ଦେଖୁଚ, ଦେଖୁଚ ତମେ ଏ ଲୋକଟାର ସାହସ ! ତମ ଆଗରେ ସେ ମୋତେ ମିଛୁଆ କହୁଚି । ମାଲିକେ, ତମେ ତାକୁ ଗୋଟାଏ ଘୁଷି ମାର । ତା' ମନ ଥଣ୍ଡା ହୋଇଯାଉ...

ଷ୍ଟେଫାନୋ କହେ, ଦେଖ ଟ୍ରିନ୍‌କୁଲୋ, ଆଉ ବୃଥା ଝାମେଲା କର ନାହିଁ । ଯଦି ମୋ କଥା ନ ମାନି ତମେ ଝାମେଲା ବଢ଼ାଅ, ତେବେ ମୁଁ କଠୋର ହେବାକୁ ବାଧ ହେବି । ତମକୁ ଗୋଟାଏ ମାଛ କରିଦେଇ ସେଇଆକୁ ମୁଁ ଖଣ୍ଡ ଖଣ୍ଡ କରି କାଟିବି ।

ଟ୍ରିନ୍‌କୁଲୋ କହେ - କି ଆଶ୍ଚର୍ଯ୍ୟ, ମୋ ଉପରେ ଏତେ ରାଗୁଛ କାହିଁକି ? ମୁଁ କ'ଣ କଲି ?

ଷ୍ଟେଫାନୋ କହେ - ତମେ ତାକୁ ମିଛୁଆ କହିଲ... ଅଦୃଶ୍ୟ ଏରିଅଲ୍ କହେ - ତମେ ନିଜେ ମିଛୁଆ...

ଷ୍ଟେଫାନୋ ଧରିନିଏ, ଟ୍ରିନ୍‌କୁଲୋ ତାକୁ ମିଛୁଆ କହୁଛି । ସେ ରାଗିଯାଇ ଟ୍ରିନ୍‌କୁଲୋକୁ ମାଡ଼ ବସାଏ । ବିଚରା ଟ୍ରିନ୍‌କୁଲୋ ଜାଣିପାରେ ନାହିଁ, ତା'ର ଅପରାଧ କ'ଣ । ସେ ପ୍ରତିବାଦ କରେ । ନିଶା ଘୋରରେ ଷ୍ଟେଫାନୋ ଭୁଲ୍ ଶୁଣିଛି ବୋଲି କହେ ।

କାଲିବାନ୍ କିନ୍ତୁ ଖୁସି ହୋଇଯାଏ । ଷ୍ଟେଫାନୋକୁ ଟିହାଇ କହେ - ମାର - ମାରି ମାରି ତାକୁ ବେଦମ୍ କରିଦିଅ । ଟିକିଏ ପରେ ମୁଁ ବି ତମ ସହିତ ହାତ ଲଗାଇବି... ଏରିଅଲ୍ ପୁଣି ସେଇଆ କହେ । ଷ୍ଟେଫାନୋ ଭୁଲ୍ ବୁଝି ଟ୍ରିନ୍‌କୁଲୋକୁ ପୁଣି ମାଡ଼ ଚଢ଼ାଏ ।

ଥକିଯାଇ ଏଥର କାଲିବାନ୍ ଆଡ଼କୁ ଅନାଇ କହେ 'ହଁ, ତୁ ଯାହା କହୁଥିଲୁ କହ'-

କାଲିବାନ୍ ଆରମ୍ଭ କରେ - ସେଇ ଯାଦୁକରଟା ରୋଜ ସଞ୍ଜବେଳୁ ଶୋଇପଡ଼େ । ତା' ଆସ୍ତାନାକୁ ଯାଇ ପ୍ରଥମେ ତା'ର ବହିପତ୍ରଗୁଡ଼ାକୁ ଦଖଲ କରିନେବାକୁ ପଡ଼ିବ । ତା'ପରେ ଇଚ୍ଛା ହେଲେ କାଠର ଗୋଟାଏ ମୋଟା କୀଳା ତା' ଦେହରେ ଭୁକାଇ ଦେବ କିମ୍ବା ତମ ଛୁରୀରେ ତା' ଗଳାଟାକୁ ଦୁଇଖଣ୍ଡ କରିଦେବ । ତେବେ ମନେକରି ପ୍ରଥମେ ତା' ବହିଗୁଡ଼ାକୁ ଦଖଲ କରିନେବାକୁ ହେବ । ସେତକ ନ ଥିଲେ ସେ ଆମଠୁ'ବି ଆହୁରି ହୀନ ।

କାଲିବାନ୍ କହିଚାଲେ - ଜୀବନରେ ମାତ୍ର ଦୁଇଜଣ ସ୍ତ୍ରୀ ଲୋକ ମୁଁ ଦେଖିଛି । ଜଣେ ମୋ ମାଆ ସାଇକୋରାକ୍ସ... ଆରଜଣକ ଏଇ ଗୁଣିଆର ଝିଅ ମିରନ୍ଦା - ମାଲିକେ, ତମେ ଯଦି ଏଇ ମିରନ୍ଦାକୁ ହାତେଇପାରିବ, ତେବେ ନିଶ୍ଚୟ ତମର ସୁନ୍ଦର ସୁନ୍ଦର ପିଲାଛୁଆ ହେବେ...

ଲୋଭରେ ଷ୍ଟେଫାନୋର ଆଖି ଚକ୍‌ଚକ୍ କରିଉଠେ । ସେ କହେ - ଠିକ୍ ଅଛି... ମୁଁ ତୋରି କଥା ମାନି ପ୍ରଥମେ ବହିଗୁଡ଼ାକ ପୋଡ଼ିଦେବି । ଗୁଣିଆକୁ ହତ୍ୟା କରିବି । ତା'ପରେ ମୁଁ ହେବି ଏଇ ଦ୍ୱୀପର ରାଜା, ଆଉ ଗୁଣିଆର ଝିଅ ହେବ ମୋର ରାଣୀ... ଟ୍ରିନ୍‌କୁଲୋ ତମକୁ ମୁଁ ମୋର ଦୂତ କରିବି.. କ'ଣ ମୋ ଯୋଜନାଟା ତମ ମନକୁ ପାଉଛି ତ ?

ଟ୍ରିନ୍‌କୁଲୋ କହେ... ଭଲ...

କାଲିବାନ୍ କହେ... ସବୁଦିନ ଭଳି ଆଉ ଅଧଘଣ୍ଟା ଭିତରେ ଗୁଣିଆ ଶୋଇପଡ଼ିବ । ସେତିକିବେଳେ ତାକୁ ମାରିବା ନିରାପଦ-

ଷ୍ଟେଫାନୋ କହେ... ନିଶ୍ଚୟ...

ଅଦୃଶ୍ୟ ଏରିଅଲ୍ କଣ୍ଠରୁ ଶୁଣାଯାଏ - ମୁଁ ମୋ ମାଲିକଙ୍କୁ ତମମାନଙ୍କର ଷଡ଼ଯନ୍ତ୍ର କଥା ଜଣାଇଦେବି...

ତେବେ ସେମାନେ ବୋଧହୁଏ ଏରିଅଲ୍ କଥା ଶୁଣିପାରିଲେ ନାହିଁ । ମନ ଖୁସିରେ ତିନିଜଣଯାକ ସେତେବେଳେ ଗୀତ ଗାଇବାରେ ବ୍ୟସ୍ତ । ଏରିଅଲ୍ ଗୀତ ସହିତ ସୁର ମିଶାଇ ଚମତ୍କାର ବଂଶୀ ଧ୍ୱନି ସୃଷ୍ଟି କରେ । ତିନିଜଣଯାକ ଉତ୍କର୍ଣ୍ଣ ହୋଇ ସେଇଆଡ଼େ କାନ ଡେରନ୍ତି । ଷ୍ଟେଫାନୋ ଭୟ ପାଇଯାଏ । ତେବେ କାଲିବାନ୍ ତାକୁ ଆଶ୍ୱସ୍ତ କରି କହେ ଯେ, ଏଇ ଦ୍ୱୀପରେ ସେମାନେ ଏଭଳି ଶୂନ୍ୟ ସ୍ୱର ଶୁଣିବାରେ ଅଭ୍ୟସ୍ତ । ଏମାନେ କାହାରି କିଛି ଅନିଷ୍ଟ କରନ୍ତି ନାହିଁ । କ୍ରମଶଃ ସ୍ୱର ଦୂରେଇ ଯାଏ ଏବଂ ଏମାନେ କାଲିବାନ୍‌ର ନେତୃତ୍ୱରେ ତାକୁ ଅନୁସରଣ କରନ୍ତି ।

॥ ୮ ॥

ଫର୍ଡ଼ିନାଣ୍ଡକୁ ଖୋଜି ଖୋଜି ରାଜାଙ୍କର ଦଳ ଦ୍ୱୀପର ଏଣେତେଣେ ଘୂରି ଘୂରି ବେଶ୍ କ୍ଲାନ୍ତ ହୋଇପଡ଼ନ୍ତି । ବେଶି ଥକିପଡ଼ନ୍ତି ମନ୍ତ୍ରୀ ଗଞ୍ଜାଲୋ । ତାଙ୍କର ବୟସ ହେଲାଣି । ଶେଷରେ ରାଜା ଆଜି ପାଇଁ ବିଶ୍ରାମ ନେବାକୁ ଆଦେଶ ଦିଅନ୍ତି । କ୍ଲାନ୍ତ କଣ୍ଠରେ କହନ୍ତି, ମୁଁ ଆଶା ଛାଡ଼ି ଦେଇଛି । ଆମେ ବୋଧହୁଏ ବୃଥାରେ ରାଜକୁମାରଙ୍କୁ ଖୋଜି ବୁଲୁଛୁ । ଯାହାକୁ ସମୁଦ୍ର ଗ୍ରାସ କରିଛି, ମାଟିରେ ତାକୁ ଖୋଜିଲେ ପାଇବା କୋଉଠୁ ? ଆମର ଖୋଜାଖୋଜି ଦେଖି ସମୁଦ୍ର ହୁଏତ ଆମକୁ ଉପହାସ କରୁଛି ।

ନିମ୍ନ ସ୍ୱରରେ ଆଣ୍ଟୋନିଓ ସେବାଷ୍ଟିଆନ୍‌କୁ କହେ, ରାଜା ଯେ ଆଶା ଛାଡ଼ି ଦେଲେଣି, ସେଥିରେ ମୁଁ ଖୁବ୍ ଖୁସି । ତେବେ ମୁହୂର୍ତ୍ତକ ପାଇଁ ହେଲେ ବି ଆମର ପରିକଳ୍ପନାର କଥା ଭୁଲିଗଲେ ଚଳିବ ନାହିଁ । ଆଜି ରାତିରେ ସମସ୍ତେ ଯେତେବେଳେ କ୍ଲାନ୍ତ ହୋଇ ଗଭୀର ନିଦ୍ରାରେ ଶୋଇଥିବେ, ସେତିକିବେଳେ ଆମର କାର୍ଯ୍ୟ ଶେଷ କରିବାକୁ ହେବ ।'

ଏତିକିବେଳେ ଶୁଣାଯାଏ, ଭାବଗମ୍ଭୀର ଏକ ଅଦ୍ଭୁତ ସଙ୍ଗୀତ । କେତେଜଣ ବିଚିତ୍ର ଦର୍ଶନ ମୂର୍ତ୍ତି ନାନାଧରଣର ଖାଦ୍ୟସମ୍ଭାର ନେଇ ପ୍ରବେଶ କରନ୍ତି । ସେମାନେ ଘୂରି ଘୂରି ନୃତ୍ୟଗୀତ କରିବାରେ ଲାଗନ୍ତି । ସେମାନେ ପ୍ରଥମେ ରାଜାଙ୍କୁ ଅଭିବାଦନ ଜଣାନ୍ତି ଏବଂ ତା'ପରେ ସମସ୍ତଙ୍କୁ ଖାଇବାପାଇଁ ନିମନ୍ତ୍ରଣ କରନ୍ତି । ଟିକିଏ ପରେ ସମସ୍ତେ ଯେମିତି ପବନରେ ମିଳାଇଯାଆନ୍ତି ।

ସମସ୍ତେ ଅବାକ୍ । ନୀରବତା ଭଙ୍ଗକରି ରାଜା କହନ୍ତି - ଏ ସବୁ ଖାଦ୍ୟପେୟ - ଏ ନାଚଗୀତ - ଏ ସବୁର ଉପଲକ୍ଷ୍ୟ କ'ଣ ?

ଗଞ୍ଜାଲୋ କହନ୍ତି - କି ମଧୁର ସଙ୍ଗୀତ ! ଏଠି ଯାହା ଦେଖିଲେ କି ଶୁଣିଲେ ନେପଲସ୍‌ରେ ସେସବୁ କଥା କ'ଣ କେହି ବିଶ୍ୱାସ କରିବେ ? ଜଣାଯାଉଛି, ଏମାନେ ହିଁ ହେଉଛନ୍ତି ଏଇ ଦ୍ୱୀପର ପ୍ରକୃତ ବାସିନ୍ଦା । ଦେଖିବାକୁ ସିନା ଦାନବ ଭଳି, ତେବେ ସେମାନଙ୍କର ଆଚାରବ୍ୟବହାର ଖୁବ୍ ଭଲ । ମଣିଷଠୁ' ତ ନିଶ୍ଚୟ ଭଲ । ଏମାନଙ୍କର ଦୟାମାୟା ଅଛି । ଦେଖନ୍ତୁ ଆମ ପାଇଁ କେତେ ରକମର ଖାଇବାର ନେଇ ଆସିଛନ୍ତି !

ପ୍ରସ୍ପେରୋ ନିଜେ ସେଠାରେ ଅଦୃଶ୍ୟ ଅବସ୍ଥାରେ ଉପସ୍ଥିତ ଥିଲେ । ଗଞ୍ଜାଲୋଙ୍କର କଥା ଶୁଣି ସେ ଖୁସି ହେଲେ । ମନେ ମନେ କହିଲେ, ତୁମେ ଠିକ୍ କଥା କହିଛ ମନ୍ତ୍ରୀ । ଏଠି ଏଭଳି କେଇଜଣ ମଣିଷ ଅଛନ୍ତି, ଯେଉଁମାନେ ସୟତାନ୍ ଠୁଁ ବି ଅଧମ ।

ରାଜା କହିଲେ - ଏମାନେ ଆମ ପାଇଁ କଷ୍ଟ କରି ଏତେ ପ୍ରକାରର ଖାଇବାଦ୍ରବ୍ୟ ନେଇଆସିଲେ, ଅଭିନୟ ଦେଖାଇଲେ । ତେବେ ଆମ ସହିତ ପଦେ ବି ତ କଥାବାର୍ତ୍ତା ହେଲେ ନାହିଁ । ଆମେ ଯାହା ଦେଖିଲେ ସେ ସବୁ କ'ଣ ସତ୍ୟ ?

ଗଞ୍ଜାଲୋ କହିଲେ - ମହାରାଜ, ପିଲାଦିନରୁ ମୁଁ କେତେ ଦୈତ୍ୟଦାନବଙ୍କର କଥା ଶୁଣିଆସିଛି । ସେସବୁ ଭିତରେ କିଛି ସତ୍ୟ ଥାଇପାରେ । ତେବେ ବୃଥା କଥାରେ କ'ଣ ପ୍ରୟୋଜନ ? ଆଗରେ ଖାଦ୍ୟ, ଆମେ ବି କ୍ଷୁଧାର୍ତ୍ତ । କେବଳ ଆପଣ ଆଦେଶ ଦେଲେ, ଆମେ ଖାଇବା ଆରମ୍ଭ କରିପାରୁ ।

ରାଜାଙ୍କର ଅନୁମତି ପାଇ ସମସ୍ତେ ଖାଇବା ଟେବୁଲ୍ ଆଡ଼କୁ ଅଗ୍ରସର ହୁଅନ୍ତି ।

ମାତ୍ର ଖାଇବା କ'ଣ ସେମାନଙ୍କ ଭାଗ୍ୟରେ ଅଛି ?

ହଠାତ୍ ଶୁଣାଯାଏ ବଜ୍ରର ଗମ୍ଭୀର ଗର୍ଜନ । ବିଜୁଳିର ଚମକରେ ସାରା ଆକାଶ ଝଲସିଯାଏ । ଅଦୃଶ୍ୟ ଏରିଅଲ୍ ଏଥର ଦୃଶ୍ୟମାନ ହୁଏ, ପୁରାଣର ରାକ୍ଷସୀ ହାର୍‌ପୀର ବେଶରେ । ଏହା ଦେହର ଅର୍ଦ୍ଧାଂଶ ନାରୀ, ଅପରାର୍ଦ୍ଧ ପକ୍ଷୀ ଭଳି । ଏଇ ଅର୍ଦ୍ଧପକ୍ଷୀ-ନାରୀ ଦୁଇ ଡେଣା ମେଲାଇ ଖାଇବା ଟେବୁଲ୍‌କୁ ଆବୋରି ବସେ... ଏବଂ ମୁହୂର୍ତ୍ତକ ମଧ୍ୟରେ ଖାଦ୍ୟସମ୍ଭାର ସବୁ ଅଦୃଶ୍ୟ ହୋଇଯାଏ । ଶୁଣାଯାଏ ଏରିଅଲ୍‌ର ଦାନବୀୟ କଣ୍ଠ- ଶୁଣ ନେପଲସ୍‌ର ନାଗରିକଗଣ ! ତମ ଭିତରେ ଅଛନ୍ତି ତିନିଜଣ ମହାପାପୀ । ନିୟତି ସେମାନଙ୍କୁ ଟାଣି ଆଣିଛି ଏଇ ପାତାଳପୁରୀକୁ । ଏଇଠି ସେମାନେ ନିଜ କୃତ ମହାପାପର ଶାସ୍ତି ଭୋଗ କରିବେ । ଶୁଣ ଦୁଷ୍ଟ ପାପୀମାନେ, ତମେ ସବୁ ମଣିଷ ସମାଜରେ ବାସ କରିବାପାଇଁ ଅଯୋଗ୍ୟ । ସମୁଦ୍ର ମଧ୍ୟ ତମମାନଙ୍କୁ ଗ୍ରହଣ କରିବା ନିମନ୍ତେ ଅନିଚ୍ଛୁକ । ମୁଁ ତମମାନଙ୍କୁ ଶାସ୍ତି ଦେବି । ତମକୁ ଏଭଳି ଅବସ୍ଥାକୁ ନେଇଯିବି ଯେ, ତମେମାନେ ଆତ୍ମହତ୍ୟା କରିବାକୁ ବାଧ୍ୟ ହେବ ।

ମୂର୍ଖ, ତଥାପି ନିଜ ଶକ୍ତି ଉପରେ ତମମାନଙ୍କର ଏତେ ବିଶ୍ୱାସ ? ତରବାରି ବାହାର କରୁଛ ! କିଛି ଲାଭ ହେବ ନାହିଁ । ତରବାରି ଚଳାଇବାର ଶକ୍ତି ମୁଁ ଅପହରଣ କରିଛି । ତମେ ତିନି ପାପୀ, ମିଲନ୍‌ରୁ ଡିଉକ୍ ପ୍ରସ୍ପେରୋ ଆଉ ତାଙ୍କର ଶିଶୁକନ୍ୟା ମିରନ୍ଦାକୁ ବିତାଡ଼ିତ କରିଛ । ପିତା ଆଉ କନ୍ୟାଙ୍କୁ ଭଙ୍ଗା ଏକ ନୌକାରେ ଅସହାୟ ଭାବରେ ସମୁଦ୍ରରେ ଭସାଇ ଦେଇଛ । ଈଶ୍ୱରଙ୍କର କରୁଣାରୁ ପିତାପୁତ୍ରୀ ଏଇ ଦ୍ୱୀପରେ ଆଶ୍ରୟ ପାଇଛନ୍ତି । ପ୍ରସ୍ପେରୋଙ୍କର ଅଭିଶାପରେ ତମ ଭଳି ପାପୀମାନଙ୍କର ଜୀବନ ରାହୁଗ୍ରସ୍ତ । ଅସହଣୀୟ ଯନ୍ତ୍ରଣା ଭୋଗିବ ତମେମାନେ । ଏଥର ଅନୁତାପର ମୁହୂର୍ତ୍ତ ଆସିଛି । ଯଦି ପାରୁଛ, ସେଇଥିରେ ନିଜକୁ ଶୁଦ୍ଧ କର... ହୁଏତ ତମର ପାପର ଭାର କିଛି କମିଯାଇପାରେ-

ଆକାଶରେ ଘନ ଘନ ବିଦ୍ୟୁତ୍‌ର ଚମକ ଆଉ ବଜ୍ରର ଗୁରୁ ଗର୍ଜନ । ହାର୍‌ପୀ-ରୂପୀ ଏରିଅଲ୍ ଅଦୃଶ୍ୟ ହୋଇଯାଏ । ପୁଣି ଶୁଣାଯାଏ ମଧୁର ସଙ୍ଗୀତ...

ପ୍ରସ୍ପେରୋ ଏରିଅଲ୍‌କୁ ଧନ୍ୟବାଦ ଦିଅନ୍ତି । ଚମତ୍କାର ଅଭିନୟ କରିଛି ସେ । ତା'ର ଅପୂର୍ବ କୌଶଳରେ ହିଁ ଶତ୍ରୁମାନେ ଏଠାକୁ ଅଣାଯାଇପାରିଛନ୍ତି । ସେମାନଙ୍କୁ ଠିକ୍ ମାନସିକ ଯନ୍ତ୍ରଣା ବି ଦିଆଯାଇଛି । ଏଇ ତିନିଜଣଙ୍କ ଭଳି ମହାପାପୀଙ୍କୁ ଦୟା ଦେଖାଇବାର କୌଣସି ପ୍ରଶ୍ନ ନାହିଁ ।

ରାଜା ଆଲେନ୍‌ସୋ ହତାଶ ଭାବରେ କହନ୍ତି, ବଜ୍ରଗର୍ଜନ ଭିତରେ ମୁଁ ଶୁଣିଲି ଡିଉକ୍ ପ୍ରସ୍ପେରୋଙ୍କ ନାମ । ଶୁଣିଲି ପୁଣି ମୋର ଅତୀତ ପାପର କାହାଣୀ । ମହାପାପର ମହାପଙ୍କରେ ମୁଁ ଆଜି ନିମଜ୍ଜିତ । ତେବେ ମୋ ପୁଅକୁ ମୁଁ ଯେମିତି ହେଲେ ଖୋଜି ବାହାର କରିବି । ଯଦି ଜୀବିତ ଅବସ୍ଥାରେ ତାକୁ ନ ପାଏ, ତେବେ ତା'ର ମୃତଦେହ ପାର୍ଶ୍ୱରେ ହିଁ ରଚିତ ହେବ ମୋର ଶେଷ ଶଯ୍ୟା ।

ସେବାଷ୍ଟିଆନ୍ ଦମ୍ଭର ସହିତ ଘୋଷଣା କରେ.. ଥରକୁ ଯଦି ଜଣେ ରାକ୍ଷସ ଆସେ, ତେବେ ମୁଁ ଜଣ ଜଣ କରି ଅନେକଙ୍କ ସହିତ ଲଢ଼େଇ କରିପାରେ ।

ଆଣ୍ଟୋନିଓ ତାକୁ ସମର୍ଥନ କରି କହେ, ରାଜଭ୍ରାତା, ସେତେବେଳେ ଆପଣଙ୍କ ପାଖରେ ଥିବି ମୁଁ ।

ରାଜା, ସେବାଷ୍ଟିଆନ୍ ଏବଂ ଆଣ୍ଟୋନିଓ ସେଠାରୁ ଚାଲିଯାଆନ୍ତି ।

ଗଞ୍ଜାଲୋ ମନ୍ତବ୍ୟ ଦିଅନ୍ତି, ଏଇ ତିନିଜଣଯାକ ଦେଖୁଛି ବେପରୁଆ ହୋଇ ଉଠିଛନ୍ତି । ସେମାନଙ୍କର ମହାପାପର ବିଷକ୍ରିୟା ଆରମ୍ଭ ହୋଇଯାଇଛି । ଏବେ ସେମାନେ କ'ଣ ନାହିଁ କ'ଣ କରି ବସିବେ କିଏ ଜାଣେ ? ସେମାନଙ୍କୁ ଅନୁସରଣ କରିବାକୁ ହେବ, ନିବୃତ୍ତ କରିବାକୁ ହେବ ସମସ୍ତ ପ୍ରକାର କୁକାର୍ଯ୍ୟରୁ ।

ଆଡ୍ରିୟାନ୍ କହନ୍ତି— ଆସନ୍ତୁ ତେବେ, ସେମାନଙ୍କ ପଛେ ପଛେ ଯିବା ।

॥ ୯ ॥

ପ୍ରସ୍ପେରୋଙ୍କ ଗୁମ୍ଫାର ସମ୍ମୁଖ । ଦୃଶ୍ୟରେ ଅଛନ୍ତି ପ୍ରସ୍ପେରୋ ସ୍ୱୟଂ, ଫର୍ଡ଼ିନାଣ୍ଡ ଆଉ ମିରନ୍ଦା ।

ପ୍ରସ୍ପେରୋଙ୍କ ମୁହଁରେ ଅପୂର୍ବ ପ୍ରଶାନ୍ତି । ଫର୍ଡ଼ିନାଣ୍ଡକୁ ସମ୍ବୋଧନ କରି ସେ କହନ୍ତି—କୁମାର, ମୁଁ ତମକୁ ଅନେକ କଷ୍ଟ ଦେଇଛି । କଠୋର ବ୍ୟବହାର କରିଛି ତମ ସହିତ । ବହୁତ କଠିନ କଥା କହିଛି । ଯାହା କରିଛି, ସେସବୁ କରିଛି କେବଳ ତମକୁ ପରୀକ୍ଷା କରିବା ପାଇଁ । ଏ ସବୁ ମୁଁ କରିଛି ମିରନ୍ଦା ପାଇଁ । ସେ ମୋର ଅନେକ ଆଦରର ସନ୍ତାନ, ବହୁ କଷ୍ଟରେ ତାକୁ ମୁଁ ବଢ଼ାଇଛି । ଯାହା ତାହା ହାତରେ ମୁଁ ତାକୁ ଟେକି ଦେଇ ନ ପାରେ । ସ୍ୱୀକାର କରିବାରେ ଲଜ୍ଜା ନାହିଁ ଯେ, ତମେ ଏଇ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛ । ଏଥର ମୁଁ ନିଶ୍ଚିନ୍ତ ହୋଇ ତମ ହାତରେ ମିରନ୍ଦାକୁ ଟେକି ଦେଇପାରିବି । ମୋର ଝିଅ ବୋଲି କହୁ ନାହିଁ, ପ୍ରକୃତରେ ତା'ଭଳି ସ୍ତ୍ରୀ ପାଇବା ଯେକୌଣସି ପୁରୁଷ ପକ୍ଷରେ ସୌଭାଗ୍ୟର ବିଷୟ । ଭବିଷ୍ୟତ୍‌ରେ ତମେ ନିଜେ ତା' ବୁଝିପାରିବ ।

ଏଥର ପ୍ରସ୍ପେରୋ ଏରିଅଲ୍‌କୁ ସ୍ମରଣ କରନ୍ତି । ରାଜା ଏବଂ ତାଙ୍କ ଦଳର ଅନ୍ୟ ସମସ୍ତଙ୍କୁ ସେଠାକୁ ନେଇ ଆସିବାକୁ ତାକୁ ଆଦେଶ ଦିଅନ୍ତି । ନିଜ ଯାଦୁବିଦ୍ୟାର ପ୍ରଭାବରେ ମିରନ୍ଦା ଏବଂ ଫର୍ଡ଼ିନାଣ୍ଡଙ୍କ ସମ୍ମୁଖରେ ଦେବୀଦେବତାମାନଙ୍କର ଅଲୌକିକ ନୃତ୍ୟଗୀତର ଆସର ବସାନ୍ତି ।

ସେସବୁ ଶେଷ ହୋଇଗଲା ପରେ ଦୁହିଁଙ୍କୁ ବିଦା କରିଦେଇ ସେଇଠି ପଦଚାରଣା ଆରମ୍ଭ କରନ୍ତି ।

କାଲିବାନ୍‌କୁ ଆଗରେ ରଖି ଷ୍ଟେଫାନୋ ଏବଂ ଟ୍ରିନ୍‌କୁଲୋ ସେଇଠି ଆସି ପହଞ୍ଚିଯାଆନ୍ତି । ତିନିଜଣଯାକ ପ୍ରଚୁର ମଦ ଖାଇଥାଆନ୍ତି ।

ଗୁହା ନିକଟରେ ପହଞ୍ଚିବା ପରେ କାଲିବାନ୍ ଷ୍ଟେଫାନୋକୁ ଭିତରକୁ ଯାଇ ଶୀଘ୍ର କାର୍ଯ୍ୟ ଶେଷ କରି ଫେରିଆସିବାକୁ କହେ । ବିଳମ୍ବରେ କାର୍ଯ୍ୟ ନାଶ ହେବାର ଆଶଙ୍କା ପ୍ରକାଶ କରେ ।

ଷ୍ଟେଫାନୋ କିନ୍ତୁ ତା'କଥା ନ ମାନି ଅନ୍ୟ ଆଡ଼େ ଆଗେଇଯାଏ । ଗୋଟିଏ ଗଛରେ ସୁନ୍ଦର ସୁନ୍ଦର ପୋଷାକ ସବୁ ଝୁଲୁଥିବାର ଦେଖାଯାଏ । ଷ୍ଟେଫାନୋ ଏବଂ ଟ୍ରିନ୍‌କୁଲୋ ପୋଷାକକୁ ଦେଖି ଉନ୍ମତ୍ତ ହୋଇ ଉଠୁଥିବାବେଳେ କାଲିବାନ୍ ସେମାନଙ୍କୁ ଶୀଘ୍ର ପ୍ରଧାନ କାମଟିକୁ ଶେଷ କରି ଆସିବା ନିମନ୍ତେ କହେ । ତେବେ ତା'କଥାରେ କେହି କାନ ଦିଅନ୍ତି ନାହିଁ ।

ଏତିକିବେଳେ ଦେଖାଦିଅନ୍ତି ଦଳେ ଅଶରୀରୀ ଶିକାରୀ । ସେମାନଙ୍କ ସହିତ ଦଳେ କୁକୁର । ଅନ୍ତରାଳରୁ ପ୍ରସ୍ପେରୋ ଏବଂ ଏରିଅଲ୍ ସେମାନଙ୍କୁ ଏଇ ଦଳ ପଛରେ ଲଗାଇଦିଅନ୍ତି ।

କୁକୁର ଆଉ ଶିକାରୀମାନଙ୍କ ଆକ୍ରମଣରେ ତିନିଜଣଯାକ ପ୍ରାଣପଣେ ଛୁଟନ୍ତି । ମାତ୍ର କିଛି ଦୂର ଯିବା ପରେ ସେମାନଙ୍କ ଦେହରେ ଅସହ୍ୟ ଯନ୍ତ୍ରଣା ଆରମ୍ଭ ହୋଇଯାଏ । କେହି ଯେମିତି ସେମାନଙ୍କୁ ଚିମୁଟିବାରେ ଲାଗିଛି ।

ଯନ୍ତ୍ରଣାରେ ସେମାନେ ଆର୍ତ୍ତନାଦ କରି ଉଠନ୍ତି ।

ପ୍ରସ୍ପେରୋର ଆଦେଶରେ ଏରିଅଲ୍ ସେମାନଙ୍କୁ ଅନୁସରଣ କରେ । ପ୍ରସ୍ପେରୋ ଜଣାଇଦିଅନ୍ତି ଯେ, ତାଙ୍କର କାମ ପ୍ରାୟ ଶେଷ ହୋଇ ଆସିଲାଣି । ଏହାପରେ ଏରିଅଲ୍ ପାଇବ ତା'ର ବହୁ ପ୍ରତୀକ୍ଷିତ ମୁକ୍ତି । ସେ ବି ତାଙ୍କର ପ୍ରିୟ ଯାଦୁଦଣ୍ଡ ଏବଂ ଯାଦୁବିଦ୍ୟାର ସମସ୍ତ ପୋଥିପତ୍ର ମାଟିତଳେ ପୋତି ଦେବେ । ସେସବୁର ପ୍ରୟୋଜନ ତାଙ୍କ ଜୀବନରୁ ଚିରକାଳ ନିମନ୍ତେ ଶେଷ ହୋଇଯିବ ।

॥ ୧୦ ॥

ପ୍ରସ୍ପେରୋ ଏରିଅଲ୍‌କୁ ଡାକି ପଚାରିଲେ, ମୋ ଭାଇ ଆଉ ନେପଲସ୍‌ର ରାଜାଙ୍କର ଖବର କ'ଣ ? ସେମାନେ କେଉଁଠି ? କ'ଣ କରୁଛନ୍ତି ?

ଏରିଅଲ୍ ହସି ହସି କହିଲା... ସେମାନଙ୍କର ବୁଦ୍ଧିବୃତ୍ତି ପ୍ରାୟ ଲୋପ ପାଇଲାଣି । ଭୋକ ଶୋଷ ଆଉ କ୍ଲାନ୍ତିରେ ସେମାନେ ଦରମଲା ଅବସ୍ଥାକୁ ଆସିଗଲେଣି । ତାଙ୍କ ଆଗରେ ମୁଁ ନାନାପ୍ରକାରର ସୁସ୍ୱାଦୁ ଖାଦ୍ୟଦ୍ରବ୍ୟ ବାଢ଼ି ଦେଇଥିଲି । ଯେମିତି ସେମାନେ ଖାଇବାକୁ ଗଲେ, ଖାଇବା ପଦାର୍ଥ ସବୁ ଅଦୃଶ୍ୟ ହୋଇଗଲା । ମୁଁ ହାର୍‌ପୀ ବେଶରେ ସେଠି ପହଞ୍ଚି ସେମାନଙ୍କୁ ସେମାନଙ୍କର ଅତୀତର କୁକାର୍ଯ୍ୟ ସବୁ ମନେପକାଇ ଦେଲି । ସେଇଥିପାଇଁ ଯେ ସେମାନେ ଦଣ୍ଡ ପାଉଛନ୍ତି ଏ କଥା ବି କହିଦେଲି । ସେତେବେଳେ ସେମାନଙ୍କର ଯାହା ଅବସ୍ଥା ହେଲା ନା, ତାହା ଦେଖିବାର କଥା । ଅତୀତର ଦୁଷ୍କର୍ମ ପାଇଁ ଏବେ ସେମାନଙ୍କର ଅନୁତାପ ହେଉଛି । ସେମାନଙ୍କର ଅବସ୍ଥା ଦେଖି ମୋର ବି ଦୟା ଆସିଯାଉଛି ।

ତୋର ଯଦି ସେମାନଙ୍କ ପାଇଁ ଏତେ ଦୁଃଖ, ତେବେ ମୁଁ ତ ମଣିଷଟାଏ, ଯାହା ହେଉ; ହୁଏତ ସେମାନଙ୍କର କଷ୍ଟର ସମୟ ଶେଷ ହୋଇ ଯାଉଛି । ଯାଆ, ସେମାନଙ୍କୁ ଏଇଠାକୁ ନେଇଆ - ପ୍ରସ୍ପେରୋ ଆଦେଶ ଦେଲେ ।

ଏରିଅଲ୍‌ର ସୁମଧୁର ସଙ୍ଗୀତ ଧ୍ୱନିରେ ଆକୃଷ୍ଟ ହୋଇ ସେମାନେ ଆସିଲେ । ଅନୁତପ୍ତ, ପରାଜିତ ମଣିଷଗୁଡ଼ିଏ, କ୍ଷୁଧାତୃଷାରେ କାତର, ଆଉ ବିଷଣ୍ଣ - ପ୍ରସ୍ପେରୋଙ୍କ ଗୁମ୍ଫା ଆଗରେ ଆସି ମୁଣ୍ଡ ନୁଆଁଇ ଠିଆ ହେଲେ । ସେମାନଙ୍କ ସହିତ ଆସିଲେ ଗଞ୍ଜାଲୋ... ଦୟାଳୁ ଆଉ ବିବେକୀ । ପ୍ରସ୍ପେରୋଙ୍କର ମନେ ପଡ଼ିଲା- ବାରବର୍ଷ ପୂର୍ବେ ତାଙ୍କର ଯେତେବେଳେ ଚରମ ବିପଦ- ସେତେବେଳେ ଏଇ ଗଞ୍ଜାଲୋ ତାଙ୍କ ଆଡ଼କୁ ସାହାଯ୍ୟର ହାତ ବଢ଼େଇ ଦେଇଥିଲେ ।

ସେମାନେ କିନ୍ତୁ ପ୍ରସ୍ପେରୋଙ୍କୁ ଚିହ୍ନିପାରିଲେ ନାହିଁ । ପ୍ରସ୍ପେରୋଙ୍କ ପରିଧାନରେ ଯାଦୁକରର ପୋଷାକ, ମୁହଁରେ ଲମ୍ବା ଦାଢ଼ି, ପ୍ରସ୍ପେରୋ ଗଞ୍ଜାଲୋଙ୍କୁ ଧନ୍ୟବାଦ ଜଣାଇ କହିଲେ- ମୋତେ ଚିହ୍ନି ପାରୁଛନ୍ତି ? ଦିନେ ଆପଣ, ମୋର ଆଉ ମୋ ଶିଶୁକନ୍ୟାର ପ୍ରାଣରକ୍ଷା କରିଥିଲେ । ଯେଉଁ ଭଙ୍ଗା ଭେଳାରେ ମୋତେ ଆଉ ମୋର ଝିଅକୁ ଭସାଇ ଦିଆଯାଇଥିଲା, ସେଥିରେ ଆପଣ ରଖିଦେଇଥିଲେ କିଛି ଖାଦ୍ୟ,ବହିପତ୍ର ଆଉ ଅନ୍ୟାନ୍ୟ ଜିନିଷ । ସେଇ ସାମାନ୍ୟ ଜିନିଷ ହିଁ ଆମ ଦୁହିଁଙ୍କର ପ୍ରାଣ ବଞ୍ଚେଇଥିଲା ।

ଏଥର ସମସ୍ତେ ପ୍ରସ୍ପେରୋଙ୍କୁ ଚିହ୍ନିଲେ । ଆଣ୍ଟୋନିଓ ତତ୍‌କ୍ଷଣାତ୍ ପ୍ରସ୍ପେରୋଙ୍କୁ କ୍ଷମା ମାଗିଲେ । ତାଙ୍କୁ ଅନୁସରଣ କଲେ ନେପଲସ୍‌ର ରାଜା । ପ୍ରସ୍ପେରୋ ତାଙ୍କୁ କ୍ଷମା ଦେଲେ ।

ଆଣ୍ଟୋନିଓ ଏବଂ ଆଲେନ୍‌ସୋ କହିଲେ, ଆପଣଙ୍କ ପ୍ରତି ଅନେକ ଅବିଚାର ହୋଇଛି । ଏଥର ଆପଣ ଅନୁଗ୍ରହ କରି ଆପଣଙ୍କ ରାଜ୍ୟ ଫେରାଇ ନିଅନ୍ତୁ ।

ପ୍ରସ୍ପେରୋ କହିଲେ - ପ୍ରତିଦାନରେ ମୋର ମଧ ଆପଣମାନଙ୍କୁ କିଛି ଦେବାର ଅଛି । ରାଜା ଆଲେନ୍‌ସୋ, ମୁଁ ଆପଣଙ୍କୁ ଗୋଟିଏ ମୂଲ୍ୟବାନ୍ ଉପହାର ଦେବାକୁ ଚାହେଁ । ଏହା କହି ସେ ଗୋଟିଏ ଦରଜା ଖୋଲି ଦେଲେ । ଦେଖାଗଲା ଫର୍ଡ଼ିନାଣ୍ଡ ମିରନ୍ଦା ସହିତ ବସି ନ୍ୟାୟବଳ ଖେଳୁଛି !

ଏଭଳି ଏକ ଅପ୍ରତ୍ୟାଶିତ ଦୃଶ୍ୟ ଦେଖି ରାଜା ଆନନ୍ଦ ଓ ବିସ୍ମୟରେ ମୂକ ପାଲଟିଗଲେ । ଫର୍ଡ଼ିନାଣ୍ଡ ମଧ ବାପାଙ୍କୁ ଦେଖି ବିହ୍ୱଳ ହୋଇପଡ଼ିଲା । ଉଭୟେ ଉଭୟଙ୍କୁ ମୃତ ବୋଲି ଧରି ନେଇଥିଲେ । ରାଜା ଆନନ୍ଦରେ ପୁଅକୁ କୁଣ୍ଢେଇ ପକାଇଲେ ।

ଏତେ ଲୋକଙ୍କୁ ଏକାଠି ଦେଖିବା ମିରନ୍ଦା ଜୀବନରେ ପ୍ରଥମ । ସେ ମନେ ମନେ ଭାବୁଥାଏ, ଏମାନେ ସବୁ କିଏ ? କୁଆଡୁ ଆସିଲେ ? ଏମାନେ କ'ଣ କୌଣସି ସ୍ୱତନ୍ତ୍ର ଇଲାକାର ମଣିଷ ?

ମିରନ୍ଦାର ସରଳ ସୌନ୍ଦର୍ଯ୍ୟ ରାଜାଙ୍କୁ ମୁଗ୍ଧ କଲା । ମଣିଷର ଦେହରେ ଯେ ଏତେ ସୌନ୍ଦର୍ଯ୍ୟ ଥାଇପାରେ, ସେ କଥା ଆଖିରେ ଦେଖି ମଧ ସେ ତଥାପି ଏହାକୁ ବିଶ୍ୱାସ କରିପାରୁ ନ ଥିଲେ । ସେ ଧରି ନେଇଥିଲେ, ଇଏ ନିଶ୍ଚୟ ସ୍ୱର୍ଗର କୌଣସି ଦେବୀ । ଏହାଙ୍କର ଅପାର କରୁଣାରୁ ପୁଅ ସହିତ ମୋର ମିଳନ ଘଟିଛି ।

ତାଙ୍କର ଭୁଲ୍ ଭାଙ୍ଗିଦିଏ ଫର୍ଡ଼ିନାଣ୍ଡ । ସେ ବୁଝାଏ, 'ଏକଥା ସତ ଯେ, ରୂପରେ ଗୁଣରେ ମିରନ୍ଦା କୌଣସି ଦେବୀଙ୍କଠାରୁ କମ୍ ନୁହେଁ । ପ୍ରକୃତରେ ସେ କିନ୍ତୁ ରକ୍ତମାଂସଧାରୀ ଜଣେ ସାଧାରଣ ମଣିଷ, ଠିକ୍ ଆମରିପରି । ସେ ହେଉଛି ଡିଉକ୍ ପ୍ରସ୍ପେରୋଙ୍କର ଏକମାତ୍ର କନ୍ୟା' ।

ରାଜା କହିଲେ, 'ଅତୀତରେ ତା' ପ୍ରତି ଯେଉଁ ଅନ୍ୟାୟ କରାଯାଇଛି, ସେଥିପାଇଁ ମିରନ୍ଦାଠାରୁ ପୁଣିଥରେ କ୍ଷମା ମାଗି ନେଉଛି । ମୁଁ ତାକୁ ମୋର ଝିଅ ଭାବରେ ଗ୍ରହଣ କରି ନେଉଛି ।'

ପ୍ରସ୍ପେରୋ ସାମାନ୍ୟ ରସିକତା କରି କହନ୍ତି, 'ତା'ହେଲେ କ'ଣ ମୁଁ ମୋର ଝିଅକୁ ହରାଇବି ?

ରାଜା ଉତ୍ତର ଦିଅନ୍ତି, ରାଜ୍ୟକୁ ଫେରିଗଲା ପରେ ରାଜକୀୟ ମର୍ଯ୍ୟାଦାରେ ଫର୍ଡ଼ିନାଣ୍ଡ ସହିତ ମିରନ୍ଦାର ବିବାହ ଦେବି ।

ପ୍ରସ୍ପେରୋ କହନ୍ତି, ଈଶ୍ୱରଙ୍କ ଇଚ୍ଛା ପୂର୍ଣ୍ଣ ହେଉ । ଦିନେ ତାଙ୍କରି ଇଚ୍ଛାରେ ମୁଁ ମିଲନ୍‌ରୁ ନିର୍ବାସିତ ହୋଇ ଏଠାକୁ ଆସିଥିଲି । ଏଇ ଦ୍ୱୀପରେ ଫର୍ଡ଼ିନାଣ୍ଡ ଆଉ ମିରନ୍ଦାର ସାକ୍ଷାତ୍ ହେବା... ଏହା ମଧ୍ୟ ତାଙ୍କରି ନିର୍ଦ୍ଦେଶ । ସେମାନେ ପରସ୍ପରକୁ ଭଲ ପାଇବା ଆଉ ଭବିଷ୍ୟତ୍‌ରେ ବିବାହ କରିବା... ଏସବୁ ହେଉଛି ତାଙ୍କରି ଇଚ୍ଛା । ଆସନ୍ତୁ, ଆମେ ସମସ୍ତେ ସେଇ ସର୍ବଶକ୍ତିମାନ୍ ଈଶ୍ୱରଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରିବା । ଅତୀତକୁ ଅତୀତରେ ରହିଯିବା ପାଇଁ ଦେବା ।

ଲଜ୍ଜା ଏବଂ ଦୁଃଖରେ ରାଜାଙ୍କର ଆଖିକୁ ଲୁହ ଆସିଗଲା । ଗଞ୍ଜାଲୋ ଆନନ୍ଦରେ କାନ୍ଦି ପକାଇଲେ । ମିରନ୍ଦା ଏବଂ ଫର୍ଡ଼ିନାଣ୍ଡର ସୁଖୀ ବୈବାହିକ ଜୀବନ ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କଲେ ।

ଏଥର ପ୍ରସ୍ପେରୋ ତାଙ୍କର ଅତିଥିମାନଙ୍କୁ ଆହୁରି ଗୋଟିଏ ଚମକପ୍ରଦ ଖବର ଦେଲେ । ଜଣାଇଦେଲେ - ଆପଣମାନଙ୍କ ଜାହାଜଟି ନିରାପଦରେ ଅଛି । ନାବିକମାନେ ମଧ୍ୟ ସମସ୍ତେ ସୁସ୍ଥ ଆଉ କର୍ମକ୍ଷମ ଅଛନ୍ତି । ଆମେ ସବୁ ଆସନ୍ତାକାଲି ନେପଲସ୍ ଯାତ୍ରା କରିବା । ସେଠି ପ୍ରଥମେ ମୁଁ ମୋ ଜୀବନର ସବୁଠାରୁ ଆନନ୍ଦପୂର୍ଣ୍ଣ କାର୍ଯ୍ୟଟି କରିବି । ଫର୍ଡ଼ିନାଣ୍ଡ ସହ ମିରନ୍ଦାର ବିବାହଦେବା ହେଉଛି ବର୍ତ୍ତମାନ ମୋର ପ୍ରଧାନ କର୍ତ୍ତବ୍ୟ । ତା' ପୂର୍ବରୁ ମୋର ଏଇ ଗୁମ୍ଫାରେ ଆପଣମାନଙ୍କୁ ମୋର ଆତିଥ୍ୟ ଗ୍ରହଣ କରିବା ପାଇଁ ନିମନ୍ତ୍ରଣ କରୁଛି ।

କାଲିବାନ୍‌କୁ ଡାକି ନିର୍ଦ୍ଦେଶ ଦିଅନ୍ତି, ''ଯଥାଶୀଘ୍ର ଏଇ ଗୁମ୍ଫାକୁ ପରିଷ୍କାର କରି ଏଥିରେ ଅତିଥିମାନଙ୍କର ରହିବାର ବ୍ୟବସ୍ଥା କରିଦେ । ସେ କାମ ସରିଗଲେ, ଏମାନଙ୍କ ପାଇଁ ରନ୍ଧାରନ୍ଧି କରିବାକୁ ପଡ଼ିବ ।''

ଖାଇବା ଟେବୁଲ୍‌ରେ ପରିବେଷଣରତ କାଲିବାନ୍‌କୁ ଅତିଥିମାନେ ପ୍ରଥମେ ଦେଖିଲେ । ଦେଖିବାକୁ ଏଡ଼େ କୁତ୍ସିତ, ଅଥଚ ପରିବେଷଣ କରୁଛି ଚମତ୍କାର ।

ଅତିଥିମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

॥ ୧୧ ॥

ଯେଉଁ କାର୍ଯ୍ୟପାଇଁ ପ୍ରସ୍ପେରୋ ଏତେଦିନ ଧରି ଅପେକ୍ଷା କରିଥିଲେ, ଦୁଶ୍ଚିନ୍ତାର ବହୁ ଉନ୍ନିଦ୍ର ପ୍ରହର କଟାଇଥିଲେ, ସେ କାର୍ଯ୍ୟ ମୋଟାମୋଟି ଭାବରେ ଶେଷ ହୋଇଛି । ସବୁ ହୋଇଛି ତାଙ୍କର ଯୋଜନା ପ୍ରକାରେ । ବାକି ରହିଲା ଫର୍ଡ଼ିନାଣ୍ଡ - ମିରନ୍ଦାର ବିବାହ । ତା' ବି ହୋଇଯିବ । କାହା ବିରୋଧରେ ତାଙ୍କର ଆଉ କିଛି ଅଭିଯୋଗ କରିବାର ନାହିଁ ।

ଆଉ ଗୋଟିଏ କାମ ତାଙ୍କର ବାକି ରହିଛି । ଯାଦୁବିଦ୍ୟା ସମ୍ପର୍କୀୟ ତାଙ୍କର ଅଜସ୍ର ଦୁର୍ଲଭ ପୋଥି ଆଉ ଏଇ ଯାଦୁଦଣ୍ଡ । ଅନେକ ଦିନରୁ ସେ ଏଗୁଡ଼ିକୁ ଯତ୍ନର ସହିତ ରଖି ଆସୁଛନ୍ତି । ଜୀବନର ଶେଷ ପ୍ରାନ୍ତରେ ପହଞ୍ଚି ଆଜି ଯଦି ସେ ସାମାନ୍ୟ ସୁଖଶାନ୍ତି ପାଇଛନ୍ତି, ସେସବୁ ସମ୍ଭବ ହୋଇଛି ଏଇମାନଙ୍କ କଲ୍ୟାଣରୁ । ଏବେ ସେସବୁର ଗୋଟାଏ କିଛି ବ୍ୟବସ୍ଥା କରିବାକୁ ହେବ ।

ସ୍ଥିର କରନ୍ତି, ଏ ସବୁକୁ ପୋତିଦେବେ । ତାଙ୍କ ଜୀବନରୁ ଏହାର ପ୍ରୟୋଜନ ଶେଷ ହୋଇଛି ।

ଯାଦୁବିଦ୍ୟାର ପ୍ରୟୋଗ ଆଉ ସେ କରିବେ ନାହିଁ । କ'ଣ ପାଇଁ ବା କରିବେ ? ଯାହା ସେ ଚାହିଁଥିଲେ, ଆଜି ସେସବୁ ତାଙ୍କ ହାତ ପାଆନ୍ତାରେ । ଆଣ୍ଟୋନିଓ ଅନୁତପ୍ତ । ନେପଲସ୍‌ର ରାଜା ଲଜ୍ଜିତ । ମିଲନ୍‌ର ଡିଉକ୍ ପଦ ସେ ଫେରିପାଇଛନ୍ତି । ସବୁଠାରୁ ବଡ଼ କଥା - ନେପଲସ୍‌ର ରାଜକୁମାର ସହିତ ତାଙ୍କର କନ୍ୟା ମିରନ୍ଦାର ବିବାହ ହେଉଛି । ମିରନ୍ଦା ହେବ ନେପଲସ୍‌ର ଯୁବରାଣୀ । ଏତେ କାଳର ଶତ୍ରୁ ହେବେ ଘନିଷ୍ଠ ବନ୍ଧୁ !

ତାଙ୍କର ଆନନ୍ଦ ଷୋଳକଳାରେ ପୂର୍ଣ୍ଣ ହୋଇଛି ।

ସବୁଆଡୁ ନିଶ୍ଚିନ୍ତ ହୋଇ ଏଥର ସେ ଏରିଅଲ୍ ଆଡ଼କୁ ଅନାଇଲେ । ତାଙ୍କ ମୁହଁରେ ଦୁଃଖର ଛାଇ ପଡ଼ିଲା । ଭାବ ଗଦ୍‌ଗଦ କଣ୍ଠରେ କହିଲେ - ତୋ'ର ଅଭାବ ମୋତେ ଖୁବ୍ ବାଧିବ । ତଥାପି ମୁଁ ତୋତେ ମୁକ୍ତି ଦେଉଛି । ତୁ ମୁକ୍ତ । ସମ୍ପୂର୍ଣ୍ଣ ସ୍ୱାଧୀନ । ନିଜ ଇଚ୍ଛାରେ ଯୁଆଡ଼େ ଯିବାକୁ ଚାହିଁବୁ ଯାଇପାରିବୁ ।

ଏରିଅଲ୍ ଖୁବ୍ ଖୁସି ହୁଏ । ଏଇ ତା'ର ସ୍ୱପ୍ନ... ବହୁକାଳରୁ ଏଇ ଗୋଟିଏ କଥା ପାଇଁ ସେ କେତେ ଭାବିଛି ! ଆଜି ତା' ସତ ହୋଇଛି । ଆଜି ଦୁନିଆରେ ତା'ଠୁ ସୁଖୀ କିଏ ?

ପ୍ରସ୍ପେରୋଙ୍କୁ ଅଭିବାଦନ ଜଣାଇ ସେ ତାଙ୍କଠାରୁ ବିଦାୟ ନିଏ । ସୁନ୍ଦର ଗୋଟିଏ ଗୀତ ଗାଉ ଗାଉ ସେ ମୁକ୍ତ ବିହଙ୍ଗ ଭଳି ମହାଶୂନ୍ୟକୁ ଉଡ଼ିଯାଏ । ସେ ମୁକ୍ତ, ସେ ସ୍ୱାଧୀନ ।

# ଦି ଟୁ ଜେଣ୍ଟଲମେନ୍ ଅଫ ଭେରୋନା

॥ ୧ ॥

ଇଟାଲୀର ପ୍ରସିଦ୍ଧ ସହର ଭେରୋନାରେ ରହୁଥିଲେ ଦୁଇ ତରୁଣ ବନ୍ଧୁ ଭାଲେଣ୍ଟାଇନ୍ ଏବଂ ପ୍ରୋଟିଆସ୍ । ଦୁଇଜଣଯାକ ଧନବାନ୍ ଏବଂ ଅଭିଜାତ ପରିବାରର ସନ୍ତାନ । ପିଲାଦିନରୁ ସେମାନଙ୍କର ବନ୍ଧୁତା । ସେମାନେ ଏକାଠି ପଢ଼ାଶୁଣା କରିଥିଲେ । ଖେଳାବୁଲା, ଛୁଟି କଟାଇବା ସବୁ ଏକା ସାଙ୍ଗରେ । ଦୁହିଁଙ୍କର ବନ୍ଧୁତ୍ୱରେ କୌଣସି ଫାଙ୍କ ନ ଥିଲା । ତେବେ କିଛିଦିନ ହେଲା ଏଥିରେ କିଛି ବ୍ୟତିକ୍ରମ ଦେଖାଦେଇଥିଲା । ପ୍ରୋଟିଆସ୍ ଆଉ ଆଗଭଳି ଭାଲେଣ୍ଟାଇନ୍ ସହିତ ଯୋଗାଯୋଗ ରଖିପାରୁ ନ ଥିଲା । ବିଚରା ପ୍ରେମରେ ପଡ଼ିଯାଇଥିଲା, ଆଉ ବେଳ ପାଇଲେ ତା'ର ପ୍ରେମିକା ସହିତ ଦେଖା କରିବାକୁ ଚାଲିଯାଉଥିଲା । ଝିଅଟି ସୁନ୍ଦରୀ, ଅନ୍ତତଃ ପ୍ରୋଟିଆସ୍ ଆଖିରେ ତା' ଭଳି ସୁନ୍ଦରୀ ସେତେବେଳେ ଭେରୋନାରେ ଆଉ କେହି ନ ଥିଲେ । ତା'ର ନାମ ଜୁଲିଆ । ଅନ୍ୟ ସବୁ କଥାରେ ଦୁଇବନ୍ଧୁଙ୍କ ମଧ୍ୟରେ ମତପାର୍ଥକ୍ୟ ନ ଥିଲା । ତେବେ ଏ ଜୁଲିଆ ସମ୍ପର୍କରେ ଭାଲେଣ୍ଟାଇନ୍‌ର ମତ ଥିଲା ସମ୍ପୂର୍ଣ୍ଣ ଅଲଗା । ପ୍ରେମ ବ୍ୟାପାରରେ ଭାଲେଣ୍ଟାଇନ୍ ଥିଲା ଉଦାସୀନ । ପ୍ରୋଟିଆସ୍‌ଠାରୁ ଜୁଲିଆ କଥା ଶୁଣି ଶୁଣି ସେ ବେଳେବେଳେ କ୍ଳାନ୍ତ ହୋଇପଡୁଥିଲା । ବନ୍ଧୁର କଥା ଶୁଣି କେବେ କେମିତି ଥଟ୍ଟା କରୁଥିଲା । କହୁଥିଲା - ବୁଝିଲ, ବନ୍ଧୁ, ପ୍ରେମ ହେଉଛି ଅଳସ ମନର ଏକ ବିଳାସ । ମୁଁ କେବେ ବି ତା' ଫାନ୍ଦରେ ପାଦ ଦେବି ନାହିଁ । ମୋର ଭଲ ଏଇ ମୁକ୍ତ ଆଉ ସ୍ୱାଧୀନ ଜୀବନ । ଖାଅ ପିଅ ଆଉ ଆନନ୍ଦରେ ବୁଲ । ଘଣ୍ଟା ଘଣ୍ଟା ଧରି କାହା କଥା ଭାବି ଭାବି ସମୟ ନଷ୍ଟ କରିବା କି କାହା ସହିତ ନିରୋଳାରେ ଟିକିଏ ଦେଖା କରିବାପାଇଁ ଉତ୍କଣ୍ଠାରେ ଚାହିଁ ବସିବା... ସେସବୁ ମୋ ଦ୍ୱାରା ହେବ ନାହିଁ ।

ଦିନେ ସକାଳେ ଭାଲେଣ୍ଟାଇନ୍ ଆସେ ପ୍ରୋଟିଆସ୍ ପାଖକୁ । କିଛି ସମୟ ଏଣୁତେଣୁ ଗପିବା ପରେ କହେ, ବନ୍ଧୁ କିଛିଦିନ ଆଉ ଆମର ଦେଖାହେବ ନାହିଁ ।

ପ୍ରୋଟିଆସ୍ ଆଶ୍ଚର୍ଯ୍ୟ ହୁଏ । ପଚାରେ - କାହିଁକି ?

'ମୋତେ ମିଲନ୍ ଯିବାକୁ ହେବ' - ଭାଲେଣ୍ଟାଇନ୍ ଉତ୍ତର ଦିଏ ।

କିନ୍ତୁ ତମେ ମିଲନ୍ ଯିବ କାହିଁକି ? - ପ୍ରୋଟିଆସ୍ ଜାଣିବାକୁ ଚାହେଁ । ଏଠି ତ ବେଶ୍ ଆରାମରେ ଅଛ । ଆମ ଏଇ ସହରଟା କ'ଣ ଖରାପ ଲାଗୁଛି ?

'ସେସବୁ ନୁହେଁ ଯେ... ମୋତେ ଯେମିତି ହେଲେ ଯିବାକୁ ହେବ ।' ଭାଲେଣ୍ଟାଇନ୍ ଜଣାଏ ।

ତମେ ଚାଲିଗଲେ ମୁଁ କିନ୍ତୁ ଏଠି ଖୁବ୍ ଏକୁଟିଆ ହୋଇଯିବି - ପ୍ରୋଟିଆସ୍ କହେ ।

ତା' କଥା ଶୁଣି ଭାଲେଣ୍ଟାଇନ୍ ହସିଦିଏ । କହେ - କାହିଁକି, ତମକୁ ସଙ୍ଗଦାନ କରିବାକୁ ତ ରହିଚି ତମର ଜୁଲିଆ... ସେ ଥାଉଁ ଥାଉଁ...

ପ୍ରୋଟିଆସ୍ କହେ... ତମର ଅଭାବ ଆଉ କେହି ଦୂର କରିପାରିବେ ନାହିଁ । ତମେ ଯାଅ ନାହିଁ ।

କଥା କ'ଣ ଜାଣ ? ଭାଲେଣ୍ଟାଇନ୍ ଆରମ୍ଭ କରେ - ଏଠାର ଏଇ ଗତାନୁଗତିକ ଜୀବନ ମୋତେ ଆଉ ଭଲ ଲାଗୁ ନାହିଁ । ଜୀବନ ତ ନୁହେଁ - ସତେ ଯେମିତି ବଦ୍ଧ ଜଳାଶୟର ନିସ୍ତରଙ୍ଗ ଜଳ ! ଏଠି ଏଇ ଅଳସ ଜୀବନ ଭିତରେ ମୋତେ ଅଣନିଃଶ୍ୱାସୀ ଲାଗୁଛି । ଭାବୁଛି, ଏମିତି ଆଉ କିଛି ଦିନ ରହିଗଲେ ମୋର ଜୀବନ ନଷ୍ଟ ହୋଇଯିବ । ଆଉ ପୁଣି ଘରେ ଖାଲି ବସି ବସି ଜୀବନ କଟାଇଲେ, ବୁଦ୍ଧିବୃତ୍ତି ସବୁ ଧାରହୀନ ହୋଇଯାଏ । ଦୃଷ୍ଟିକୋଣ ସଂକୀର୍ଣ୍ଣ ହୋଇଯାଏ । କୂପମଣ୍ଡୂକ ଭଳି ବାହାର ଦୁନିଆ ସହିତ କୌଣସି ଯୋଗାଯୋଗ ରଖିହୁଏ ନାହିଁ । ତମକୁ ମୋ ସାଙ୍ଗରେ ଯିବାକୁ କହନ୍ତି, ହେଲେ ତମର ବର୍ତ୍ତମାନ ଯେଉଁ ଅବସ୍ଥା, ତମେ ଜୁଲିଆକୁ ଛାଡ଼ି ସ୍ୱର୍ଗକୁ ବି ଯାଇପାରିବ ନାହିଁ । ତେଣୁ ମୋତେ ଏକୁଟିଆ ଯିବାକୁ ହେବ । ତେବେ ଯାଇଥିଲେ, ତମର ଉପକାର ହୋଇଥାଆନ୍ତା । ବାହାର ଦୁନିଆ ସମ୍ପର୍କରେ କେତେ କଥା ଜାଣିଥାଆନ୍ତା । କେତେ ନୂଆ କଥା ଦେଖିଥାଆନ୍ତା । ତମେ ତ ଜଣେ ପ୍ରେମିକ । ଏଠି ରହି ପ୍ରେମ କରୁଥାଅ । ଦିନକୁ ଦିନ ତମର ପ୍ରେମ ଆହୁରି ସମୃଦ୍ଧ ହେଉ ।

ପ୍ରୋଟିଆସ୍ ବିଦେଶ ଯିବା ବିରୋଧରେ ନାନା କଥାର ଅବତାରଣା କରେ । ଏଣେ ତେଣେ ବୁଲିଲେ ଯେ ପ୍ରକୃତରେ କିଛି ହେବ ନାହିଁ, ଏଇ କଥା ସେ ବାରମ୍ବାର ଭାଲେଣ୍ଟାଇନ୍‌କୁ ବୁଝାଏ । ତାକୁ ବିଦେଶ ନ ଯିବାକୁ ଅନୁରୋଧ କରେ । ମାତ୍ର ଭାଲେଣ୍ଟାଇନ୍ ସେତେବେଳେ ନୂଆ କଳ୍ପନାରେ ମସ୍‌ଗୁଲ୍ । ସବୁ କଥାର ପ୍ରଭାବ ତା'ଉପରେ ପଡ଼ନ୍ତା କାହିଁକି ?

ଶେଷରେ ବିଦାୟର ସେଇ ମୁହୂର୍ତ୍ତ ଆସିଯାଏ । ପ୍ରୋଟିଆସ୍ କହେ - ବନ୍ଧୁ, ବିଦେଶରେ ଯଦି ତମେ ପ୍ରକୃତରେ କୌଣସି ଦୁର୍ଲ୍ଲଭ ଆଉ ଦର୍ଶନୀୟ ବସ୍ତୁ ଦେଖି ଆନନ୍ଦ ପାଅ, ତେବେ ଧରିନେବ, ସେଥିରେ ମୋର ମଧ ଭାଗ ଅଛି ।

ଦୁଇ ବନ୍ଧୁ ଭାରୀ ହୃଦୟରେ ପରସ୍ପରଠାରୁ ବିଦାୟ ନିଅନ୍ତି ।

॥ ୨ ॥

ଭାଲେଣ୍ଟାଇନ୍ ଚାଲିଗଲା ପରେ ପ୍ରୋଟିଆସ୍ ଏକା ହୋଇଯାଏ । ସମୟ ତା'ର ଯେମିତି କଟେ ନାହିଁ । ବନ୍ଧୁ ତା'ଜୀବନର କେତେ ସ୍ଥାନ ଅଧିକାର କରିବସିଥିଲା, ତାହା ତାକୁ ଜଣାଯାଏ । ସାରା ସଂସାର ତାକୁ ଶୂନ୍ୟ ମନେହୁଏ । କିଛି ଭଲ ଲାଗେ ନାହିଁ । ବସି ବସି ସେ ଜୁଲିଆକୁ ଚିଠି ଲେଖେ ।

ଚିଠିଟି ଜୁଲିଆର ପରିଚାରିକା ହାତରେ ତା' ପାଖକୁ ପଠାଇ ଦିଏ । ଆଉ ଯେମିତି କେହି ଏ କଥା ନ ଜାଣନ୍ତି, ସେ ବିଷୟରେ ତାକୁ ବାରମ୍ବାର ସତର୍କ କରିଦିଏ ।

ଜୁଲିଆ ପ୍ରୋଟିଆସ୍‌କୁ ଭଲପାଉଥିଲା ସତ୍ୟ, ତେବେ ତା' ମନରେ ଥିଲା ପ୍ରଚଣ୍ଡ ମର୍ଯ୍ୟାଦାବୋଧ । ସହଜରେ ଧରାଦେଇ ସେ ନିଜକୁ ଶସ୍ତା କରିଦେବାକୁ ଚାହୁଁ ନ ଥିଲା । ତେଣୁ ପ୍ରୋଟିଆସ୍ ପ୍ରତି ସେ କିଛିଟା ଉଦାସୀନ ରହୁଥିଲା, ଅନ୍ତତଃ ବାହାରୁ ଦେଖିଲେ ସେଇଆ ଜଣାପଡୁଥିଲା । ବିଚରା ପ୍ରୋଟିଆସ୍ ପ୍ରେମ ସମ୍ପର୍କରେ ପଢ଼ି ବା ଶୁଣି ସେ ଯେଉଁ କଳ୍ପନାର ଚିତ୍ର ଆଙ୍କିଥିଲା, ଜୁଲିଆର ଉଦାସୀନତାରେ ସେ ସବୁ କେମିତି ଫିକା ପଡ଼ି ଯାଇଥିଲା । ମନକଥା କହିବାପାଇଁ ଏତେବେଳେ ଭାଲେଣ୍ଟାଇନ୍ ବି ତା' ପାଖରେ ନ ଥିଲା ।

ମନମରା ହୋଇ ବୁଲିବା ଛଡ଼ା ତା' ଆଗରେ ଆଉ ଅନ୍ୟ ବାଟ ନ ଥିଲା ।

ପରିଚାରିକା ଯେତେବେଳେ ପ୍ରୋଟିଆସ୍‌ର ଚିଠି ଜୁଲିଆକୁ ଦେଲା ସେ ତାକୁ ଗ୍ରହଣ କରିବାକୁ ରାଜିହେଲା ନାହିଁ । ବରଂ ତାକୁ ଭର୍ତ୍ସନା କରି କହିଲା - ଏମିତି ଚିଠି ତୁ କାହାକୁ ପଚାରି ପ୍ରୋଟିଆସ୍‌ଠୁ ଆଣିଛୁ ? ତୁ ଜାଣୁ - ଏ ସବୁ ମୁଁ ପସନ୍ଦ କରେ ନାହିଁ । ଯା, ସାଙ୍ଗେ ସାଙ୍ଗେ ମୋ ଆଗରୁ ଦୂର ହୋଇ ଯା'...

ଚିଠିରେ କ'ଣ ସବୁ ଲେଖା ହୋଇଛି, ସେ କଥା ଜାଣିବାପାଇଁ ତା'ମନରେ କିନ୍ତୁ ପ୍ରଚଣ୍ଡ ଆଗ୍ରହ ଥିଲା । କିଛି ସମୟ ପରେ ସେ ପରିଚାରିକାକୁ ଡାକେ... ସମୟ କେତେ ହୋଇଛି, ଜାଣିବାକୁ ଚାହେଁ ।

ପରିଚାରିକା ନିଜର ମାଲିକାଣୀକୁ ଭଲ ଭାବେ ଜାଣେ । ସମୟ ପଚାରିବା ଯେ, ନିଛକ ଏକ ବାହାନା ଏ କଥା ବୁଝିନେବାକୁ ତାକୁ ମୁହୂର୍ତ୍ତେ ଲାଗେ । ସେ ଚୁପ୍‌ଚାପ୍ ଚିଠିଖଣ୍ଡି ତା' ହାତକୁ ବଢ଼ାଇଦିଏ ।

ଏଥିରେ ଜୁଲିଆର ରାଗ ଦୁଇଗୁଣ ବଢ଼ିଯାଏ । ତା'ର ଗୋପନ ଇଚ୍ଛା ସାମାନ୍ୟ ଗୋଟାଏ ପରିଚାରିକା ପାଖରେ ପ୍ରକଟ ହୋଇଯାଇଛି, ଏଇ କଥା ଭାବି ତାକୁ ଖୁବ୍ ଅପମାନିତ ଲାଗେ । ତତ୍‌କ୍ଷଣାତ୍ ଚିଠିଖଣ୍ଡକ ନେଇ ସେ ତାକୁ ଚିକିଚିକି କରି ଛିଣ୍ଡେଇ ଚାରିଆଡ଼େ ପକାଇଦିଏ । ପରିଚାରିକା ଆଡ଼କୁ ଅନାଇ କହେ - ହେଲା ତ, ଯା ଏଠୁ ବାହାର !

ବିଚାରୀ ଦାସୀ ! କ'ଣ ଆଉ କରିବ ? ଘରୁ ବାହାରିଯିବା ଆଗରୁ ତା'ଦୃଷ୍ଟି ବିକ୍ଷିପ୍ତ ହୋଇ ପଡ଼ିଥିବା କାଗଜ ଟୁକୁରା ଉପରେ ପଡ଼ିଲା । ଘରର ଚଟାଣ କାହିଁକି ମଇଳା ହୋଇଛି, ଏଇଥିପାଇଁ ପୁଣି କେତେବେଳେ ଗାଳି ପଡ଼ିପାରେ... ଏଇ କଥା ଭାବି ସେ କାଗଜର ଟୁକୁରାଗୁଡ଼ିକ ଗୋଟାଇ ନେବାପାଇଁ ନଇଁ ପଡ଼ିଲା...

ଜୁଲିଆ କିନ୍ତୁ ଟୁକୁରାଗୁଡ଼ିକୁ ହାତଛଡ଼ା କରିବାକୁ ଚାହୁଁ ନ ଥିଲା । ତେଣୁ ଏଥର ସେ ରାଗର ଛଳନା କରି କହିଲା - ଏତେ ବେଳଯାଏ ଯାଇ ନାହୁଁ ? କାଗଜ ସେଇଠି ପଡ଼ିଥାଉ ।

ଉଠାଇବାକୁ ହେବ ନାହିଁ । ତୋ ଆଡ଼କୁ ଅନାଇଲେ ମୋ ଦେହ ଜଳିଯାଉଛି । ଯାଉଚୁ ନା ଦେଖିବୁ ?

ବିଚାରୀ ଚାକରାଣୀଟି ଚୁପ୍‌ଚାପ୍ ବାହାରିଗଲା । ଚାରିଆଡ଼କୁ ଅନାଇ ଏଥର ଜୁଲିଆ ଛିଣ୍ଡାକାଗଜତକ ଗୋଟାଇନେଲା । ତାକୁ ଯୋଡ଼ି ପଢ଼ିବାକୁ ଚେଷ୍ଟା କଲା । ଖଣ୍ଡିକରେ ଲେଖା ଅଛି— 'ତମ ପ୍ରେମରେ ପ୍ରତାରିତ ପ୍ରୋଟିଆସ୍' । ଅନ୍ୟ ଖଣ୍ଡମାନଙ୍କରେ ବହୁତ ମିଠାମିଠା କଥା ଲେଖାଯାଇଛି । ଏଭଳି ଏକ ଚିଠିକୁ ଛିଣ୍ଡାଇ ଦେଇଥିବାରୁ ତା' ମନରେ କଷ୍ଟ ହେଲା । ମନ ତା'ର ବିଳାପ କରି ଉଠିଲା । କରୁଣ ଦୃଷ୍ଟିରେ ସେ କାଗଜଖଣ୍ଡ ଆଡ଼କୁ ଅନାଇଲା... ତା' ଭିତରୁ ତାକୁ ଦେଖାଗଲା ପ୍ରୋଟିଆସ୍‌ର ଆହତ ମୁହଁ... ସେ ଠିକ୍‌କଲା ସେଇସବୁ କାଗଜ ଟୁକୁରାକୁ ସେ ନିଜର ଛାତିପାଖରେ ରଖିଦେବ । ଅସୁସ୍ଥ ମଣିଷକୁ ଯେମିତି ଖୁବ୍ ଯତ୍ନରେ ବିଛଣାରେ ଶୁଆଇ ରଖାଯାଏ, ସେ ସେମିତି ଏ ସବୁକୁ ରଖିବ । କ୍ଷତସ୍ଥାନରେ ମଲମର ପ୍ରଲେପ ଦେଲାଭଳି ସେ ଚୁମ୍ବନର କୋମଳ ଛୁଆଁରେ ଏଇ ନିର୍ଜୀବ କାଗଜଖଣ୍ଡକୁ ଭରିଦେବ । ସେଇଥିରେ ହୁଏତ ତା'ର କଷ୍ଟ ଦୂର ହେବ । ଏଭଳି ଏକ ଚିଠି ପ୍ରତି ସେ ଯେଉଁ ଅନ୍ୟାୟ କରିଛି, ହୁଏତ ତାହାର ପ୍ରାୟଶ୍ଚିତ୍ତ ଏମିତି ହୋଇପାରିବ ।

ଜୁଲିଆ ନିଜ ମନକୁ ବୁଝାଇବାକୁ ଲାଗିଲା । ଛିଣ୍ଡା ଟୁକୁରାଗୁଡ଼ିକୁ ଯୋଡ଼ିବାକୁ ଯେତେ ଚେଷ୍ଟା କଲା, ସେଥିରେ ସଫଳ ହୋଇପାରିଲା ନାହିଁ । ମନ ତାର ଭାରାକ୍ରାନ୍ତ ହୋଇ ଉଠିଲା ।

ପ୍ରୋଟିଆସ୍ ଚିଠିର ଉତ୍ତର ବସି ବସି ଲେଖିଲା । ଆଗରୁ ସେ ଯେତେ ଚିଠି ଲେଖିଥିଲା, ଏଥର ଚିଠିର ଭାଷା ହେଲା ସବୁଠାରୁ ନିଆରା... ମନର ସବୁ ଆବେଗ ସେ ସେଥିରେ ଢାଳିଦେଲା । ବାରମ୍ବାର ତାକୁ ପଢ଼ି ମଧ୍ୟ ତା'ର ଅଶାନ୍ତ ମନ ଶାନ୍ତ ହେଲା ନାହିଁ ।

ଠିକ୍ ସମୟରେ ସେ ଚିଠି ପ୍ରୋଟିଆସ୍ ପାଖରେ ପହଞ୍ଚିଗଲା । ସେ ତାକୁ ପଢ଼ିଲା - ଥରେ ନୁହେଁ - ଅନେକ ଥର । ଚିଠିର ଭାଷାରେ ମୁଗ୍ଧ ହେଲା । ଚିଠି ନେଇ ଆସିଛି ମଧୁର ଜୀବନର ସନ୍ଦେଶ । ଜୀବନ କେତେ ମଧୁମୟ ! ତା'ର ଜୀବନକୁ ଆନନ୍ଦରେ ଭରି ଦେଇଛି ଜୁଲିଆର ଏଇ ଚିଠି... ସେ କ'ଣ କେବଳ ନିର୍ଜୀବ କାଗଜଖଣ୍ଡେ ?

ପଢୁ ପଢୁ ପ୍ରୋଟିଆସ୍ ଆବିଷ୍ଟ ହୋଇପଡ଼େ । ହଠାତ୍ ସେଥିରେ ବାଧା ପଡ଼େ । ତା'ର ବାପା ସେଠାକୁ ଆସନ୍ତି । ପଚାରନ୍ତି, 'ଏତେ ମନଦେଇ କ'ଣ ପଢ଼ା ହେଉଛି ? କାହାର ସେ ଚିଠି ?'

ପ୍ରୋଟିଆସ୍ ଅସ୍ୱସ୍ତିରେ ପଡ଼ିଯାଏ । କୌଣସିମତେ ନିଜକୁ ସମ୍ଭାଳିନେଇ କହେ... ଭାଲେଣ୍ଟାଇନ୍ ଚିଠି ଲେଖିଛି ।

ବୃଦ୍ଧ କହନ୍ତି, 'ସତେ ନା କ'ଣ ? ସେ ତ ବାହାରକୁ କୁଆଡ଼େ ଯାଇଚି ନା କ'ଣ । ଦେଖିବା - ଚିଠିଖଣ୍ଡ ଦେଲୁ - କ'ଣ ସବୁ ଲେଖିଚି, ମୁଁ ବି ଟିକିଏ ଦେଖେ...'

ଏଥର ପ୍ରୋଟିଆସ୍ ଅସୁବିଧାରେ ପଡ଼ିଯାଏ । ଚିଠି ତ ବାପାଙ୍କ ହାତରେ ଦେଇ ହେବ ନାହିଁ । ସେ ଇତସ୍ତତଃ ହୋଇ କହେ... ନା... ଏଥିରେ ସେମିତି ବିଶେଷ କିଛି ଖବର ନାହିଁ । ଭାଲେଣ୍ଟାଇନ୍ ଲେଖିଛି, ସେ ମିଲାନ୍‌ର ଡିଉକ୍‌ଙ୍କର ଖୁବ୍ ଆପଣାର ହୋଇଯାଇଛି । ଡିଉକ୍ ପ୍ରତ୍ୟେକଦିନ ତାକୁ କିଛି ନା କିଛି ଅନୁଗ୍ରହ ଦେଖାଉଛନ୍ତି । ଖୁବ୍ ଭଲ ଅଛି ସେ । ସେଠି ଡିଉକ୍‌ଙ୍କ ପାଖରୁ ଭଲ ଅର୍ଥ ବି ସଂଗ୍ରହ କରୁଛି । ସେ ଲେଖିଛି, ମୁଁ ବି ଯେମିତି ଖୁବ୍ ଶୀଘ୍ର ତା'ପାଖକୁ ଚାଲିଯାଏ ।

ବୃଦ୍ଧ ପଚାରନ୍ତି, 'ଏ ତ ଖୁବ୍ ଭଲ କଥା । ଏ ବିଷୟରେ ତୁ କ'ଣ ଚିନ୍ତା କରିଛୁ ?

ପ୍ରୋଟିଆସ୍ ତତ୍‌କ୍ଷଣାତ୍ ଉତ୍ତର ଦିଏ - ଆପଣ ଯାହା କହିବେ ସେଇଆ କରିବି । ଭାଲେଣ୍ଟାଇନ୍‌ର ପ୍ରସ୍ତାବ ଅପେକ୍ଷା ଆପଣଙ୍କର ଇଚ୍ଛା ହିଁ ମୋ ପକ୍ଷରେ ଅଧିକ ମୂଲ୍ୟବାନ୍ ।'

ପୁଅର କଥା ଶୁଣି ବାପା ମହାଖୁସି । ଟିକିଏ ଆଗରୁ ସେ ଜଣେ ବନ୍ଧୁଙ୍କ ସହିତ ପୁଅର ଭବିଷ୍ୟତ୍ ସମ୍ପର୍କରେ କଥାବାର୍ତ୍ତା କରିଛନ୍ତି । ବନ୍ଧୁ କହିଲେ - ଗୋଟାଏ କଥା ଭାବି ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଛି । ଆପଣ ଆପଣଙ୍କର ଯୁବକ ପୁଅକୁ ଘରେ ବସାଇ ରଖିଛନ୍ତି କାହିଁକି ? ଏ ବୟସଟା ହେଉଛି ତା'ର କାମ କରିବାର ବୟସ । କିଛି କରି ନିଜର ଭବିଷ୍ୟତ୍ ଗଢ଼ିବାର ସମୟ । ଘରେ ବସି ହସଖୁସିରେ ସମୟ କଟାଇଦେଲେ, ଏ ସମୟ ଆଉ ଆସିବ ? ଅଧିକାଂଶ ଲୋକ ଏଇ ବୟସରେ ସେମାନଙ୍କର ପୁଅମାନଙ୍କୁ ଭାଗ୍ୟର ସନ୍ଧାନରେ ବିଦେଶ ପଠାନ୍ତି । କିଏ ଯୁଦ୍ଧକୁ ଯାଏ, କିଏ ଅବା ନୂଆ କିଛି ଖୋଜିବାକୁ ଦୂରଦୂରାନ୍ତକୁ ଚାଲିଯାଏ । କିଏ ପୁଣି ଉଚ୍ଚଶିକ୍ଷା ପାଇଁ ଦୂରର କେଉଁ ବିଶ୍ୱବିଦ୍ୟାଳୟକୁ ଯାଏ । ଏଇ ଆପଣଙ୍କର ପୁଅର ବନ୍ଧୁ ଭାଲେଣ୍ଟାଇନ୍‌ର କଥା ନିଅନ୍ତୁ । ସେ ତ ଚୁପ୍‌ଚାପ୍ ଘରେ ସମୟ ନଷ୍ଟ ନ କରି ଭାଗ୍ୟର ସନ୍ଧାନରେ ମିଲାନ୍‌ର ଡିଉକ୍‌ଙ୍କ ପାଖକୁ ଯାଇଛି । ସେମିତି ଆପଣଙ୍କ ପୁଅ ବି ବୃଥାରେ ସମୟ ନଷ୍ଟ ନ କରି କିଛି ଗୋଟାଏ କରିପାରିବ । ଅଳ୍ପ ବୟସରେ ଦେଶବିଦେଶ ବୁଲି ଅଭିଜ୍ଞତା ସଞ୍ଚୟ ନ କଲେ, ପରିଣତ ବୟସରେ ନାନା ଅସୁବିଧା ଭୋଗିବାକୁ ପଡ଼େ । ମୋ କଥା ମାନି ପୁଅକୁ ବିଦେଶ ପଠାଇଦିଅନ୍ତୁ ।

ବନ୍ଧୁଙ୍କ ପ୍ରସ୍ତାବଟି ପ୍ରୋଟିଆସ୍‌ର ବାପାଙ୍କ ମନକୁ ବେଶ୍ ପାଇଛି । ବନ୍ଧୁ ଠିକ୍ କଥା କହିଛନ୍ତି । ଭାଲେଣ୍ଟାଇନ୍ ମଧ ତା'ପାଖକୁ ଯିବାପାଇଁ ପ୍ରୋଟିଆସ୍ ପାଖକୁ ପ୍ରସ୍ତାବ ପଠାଇଛି । ଯାଉ ତେବେ ସେ ତା'ପାଖକୁ ।

ପ୍ରୋଟିଆସ୍‌ର ବାପା ମନ ସ୍ଥିର କରିନେଲେ ।

ଆଉ ଅଧିକ ଆଲୋଚନା ଭିତରକୁ ନ ଯାଇ ସେ ଘୋଷଣା କଲେ, ଭାଲେଣ୍ଟାଇନ୍ ଯାହା କହିଛି ଠିକ୍ କହିଛି । ତତେ ମିଲାନ୍ ଯିବାକୁ ପଡ଼ିବ ।

ଆଉ ଅଧିକ ଆଲୋଚ଼ନାର ବା ଦରକାର କ'ଣ ? ଏତେଦିନଯାଏ ସେ ଆଦେଶ ଦେଇଛନ୍ତି, ପୁଅ ତା' ପାଳନ କରିଛି । ପୁଅ ସହିତ ଆଲୋଚ଼ନା କରି କେବେ କିଛି ସିଦ୍ଧାନ୍ତ ନେଇ ନାହାନ୍ତି । ଏବେ ବା ତା'ର ପ୍ରୟୋଜନ କ'ଣ ?

ବାପାଙ୍କ କଥା ଶୁଣି ପ୍ରୋଟିଆସ୍ ମଥାରେ ସତେଯେମିତି ଆକାଶ ଛିଡ଼ିପଡ଼ିଲା । ସେ ମିଲନ୍ ଯିବ ଏଠି ଜୁଲିଆକୁ ଛାଡ଼ି ?

ବୃଦ୍ଧ କହିଲେ, 'ଏମିତି ବୋକାଙ୍କ ଭଳି ଚାହିଁଛୁ କ'ଣ ? ଭାବୁଛୁ କି ମୁଁ ହଠାତ୍ ଏମିତି ସିଦ୍ଧାନ୍ତ ନେଲି କାହିଁକି ? ତେବେ କଥାଟା ଯେତେବେଳେ ସ୍ଥିର କରାଯାଇଛି, ତାକୁ ମାନିବାକୁ ପଡ଼ିବ । କାଲି ହିଁ ତୋତେ ମିଲନ୍ ଯିବାକୁ ହେବ । ଆଉ କିଛି ଓଜର ଆପତ୍ତି ଶୁଣାଯିବ ନାହିଁ । ମୋର ସିଦ୍ଧାନ୍ତ ଚୂଡ଼ାନ୍ତ' । ପ୍ରୋଟିଆସ୍ ଜାଣେ, ପ୍ରତିବାଦ କରି କୌଣସି ଲାଭ ନାହିଁ । ବାପାଙ୍କ ଇଚ୍ଛାର ବିରୋଧ କରିବାର କୌଣସି ସୁଯୋଗ ସେ କେବେ ତାକୁ ଦେଇ ନାହାନ୍ତି । ସେ ବି କେବେ ଏମିତି ଭାବି ନାହିଁ । ସେ ସାହସ ତା'ର ନାହିଁ । ତେଣୁ ମିଲନ୍ ତାକୁ ଯିବାକୁ ହିଁ ହେବ । ଇଚ୍ଛା ନ ଥିଲେ ବି ସେ ଯିବ ।

ସବୁ ଗଣ୍ଡଗୋଳ ଏଇ ଚିଠିଟା ପାଇଁ । ଇଚ୍ଛା ନ ଥିଲେ ବି ମିଛକଥା କହି ସେ ଜାଣିଜାଣି ଏଇ ଅସୁବିଧାଟି ସୃଷ୍ଟି କରିଛି । ତା'ର ଫଳ ଏବେ ଭୋଗ କରିବାକୁ ହିଁ ପଡ଼ିବ । ପ୍ରୋଟିଆସ୍ ନିଜକୁ ଦୋଷ ଦେବାକୁ ଲାଗିଲା ।

ଜୁଲିଆ ଜାଣିପାରିଲା ନାହିଁ ଯେ ପ୍ରୋଟିଆସ୍ ତାକୁ ଛାଡ଼ି ଦୀର୍ଘକାଳ ପାଇଁ ବିଦେଶ ଯାଉଛି ।

ଦୁଇଜଣଙ୍କର ଯେତେବେଳେ ଦେଖାହେଲା, ସେତେବେଳେ ପ୍ରୋଟିଆସ୍‌ଠୁ ଏକଥା ଶୁଣି ଜୁଲିଆ ମୁଣ୍ଡରେ ଯେମିତି ଆକାଶ ଭାଙ୍ଗିପଡ଼ିଲା । ତା'ର ସବୁ ଉଦାସୀନତା କୁଆଡ଼େ ଉଡ଼ିଗଲା । ସେ କାନ୍ଦିବାକୁ ଲାଗିଲା ।

ଭାରୀ ମନରେ ଦୁହେଁ ଦୁହିଁଙ୍କଠାରୁ ବିଦାୟ ନେଲେ । ଦୁହେଁ ଶପଥ କଲେ ଚିରକାଳ ସେମାନେ ପରସ୍ପରର ହୋଇ ରହିବେ । ସେମାନଙ୍କ ପ୍ରେମର କୌଣସି ଅନ୍ତ ଘଟିବ ନାହିଁ । ଆଖିର ଆଢୁଆଳ ହୋଇଗଲେ ବି ଦୁହେଁ ଦୁହିଁଙ୍କର ମନକୁ ପରସ୍ପର ପାଇଁ ଖୋଲା ରଖିବେ ।

ବିଦାୟ ଲଗ୍ନରେ ସେମାନେ ମୁଦି ବଦଳାଇଲେ । ପ୍ରତିଶ୍ରୁତି ଦେଲେ, ପରିସ୍ଥିତି ଯାହା ହେଉନା କାହିଁକି ଏଇ ମୁଦି ଚିରକାଳ ସେମାନଙ୍କର ପ୍ରେମର ସ୍ମାରକୀ ହୋଇ ରହିବ । କେବେବି କେହି ତାହାକୁ ହାତଛଡ଼ା କରିବେ ନାହିଁ ।

ପ୍ରୋଟିଆସ୍ ମିଲନ୍ ଯାତ୍ରା କରେ । ଆପାତତଃ ଭାଲେଣ୍ଟାଇନ୍ ପାଖରେ ହିଁ ରହିବ ବୋଲି ସ୍ଥିର କରେ ।

॥ ୩ ॥

ପ୍ରୋଟିଆସ୍ ଭାଲେଣ୍ଟାଇନ୍ ସମ୍ପର୍କରେ ବାପାଙ୍କୁ ଯେଉଁ ମିଛକଥା କହିଥିଲା, ଦୈବାତ୍ ଘଟଣା ମଧ୍ୟ ସେହିଭଳି ଥିଲା । ଭାଲେଣ୍ଟାଇନ୍ ପ୍ରକୃତରେ ଏ ଭିତରେ ମିଲନ୍‌ର ଡିଉକ୍‌ଙ୍କର ଅତି ପ୍ରିୟ ହୋଇ ପଡ଼ିଥିଲା । ତା'ଜୀବନରେ ଆଉ ଗୋଟିଏ ଘଟଣା ବି ଘଟିଯାଇଥିଲା । ଭାଲେଣ୍ଟାଇନ୍ ଜୀବନରେ ମଧ୍ୟ ପ୍ରେମ ଆସିଥିଲା ।

ଏତେ ଦିନ ଧରି ଯେଉଁ ବସ୍ତୁଟିଠାରୁ ସେ ଶତହସ୍ତ ଦୂରରେ ରହିଥିଲା, ଶେଷକୁ ସେଇ ହଠାତ୍ ଆତ୍ମପ୍ରକାଶ କରି ତାକୁ କାବୁ କରିପକାଇଥିଲା । ସେଇ ଅସାଧ୍ୟ କାର୍ଯ୍ୟଟି ସମ୍ଭବ ହୋଇଥିଲା ସୁନ୍ଦରୀ ଲେଡି ସିଲଭିଆ ପାଇଁ ।

ସିଲଭିଆ ସାଧାରଣ ଝିଅ ନୁହେଁ । ସେ ହେଉଛି ସ୍ୱୟଂ ଡିଉକ୍‌ଙ୍କର କନ୍ୟା । ସେ ଭଲ ପାଇ ବସିଲା ତରୁଣ ଭାଲେଣ୍ଟାଇନ୍‌କୁ । ଏ କଥା କିନ୍ତୁ ଡିଉକ୍ ଜାଣି ନ ଥିଲେ । ଏକଥା ସତ ଯେ ଡିଉକ୍ ଭାଲେଣ୍ଟାଇନ୍‌କୁ ଖୁବ୍ ଭଲ ପାଉଥିଲେ । ପ୍ରାୟ ପ୍ରତିଦିନ ତାକୁ ନିଜ ପ୍ରାସାଦକୁ ନିମନ୍ତ୍ରଣ ମଧ୍ୟ କରୁଥିଲେ । ତେବେ ଝିଅର ବିବାହ ସେ ସ୍ଥିର କରିଥିଲେ ଅନ୍ୟଜଣକ ସହିତ । ମନୋନୀତ ପାତ୍ରଟି ହେଲା ତାଙ୍କ ରାଜସଭାର ଜଣେ ତରୁଣ ସଭାସଦ୍ । ତା'ର ନାମ ଥୁରିଓ । ସିଲଭିଆ କିନ୍ତୁ ତାକୁ ମୋଟେ ପସନ୍ଦ କରୁ ନ ଥିଲା । ବରଂ ତାକୁ ପାରୁପର୍ଯ୍ୟନ୍ତ ଉପେକ୍ଷା କରୁଥିଲା । ଭାଲେଣ୍ଟାଇନ୍ ଭଳି ବୋଧବୁଦ୍ଧି ଏଇ ତରୁଣଟିର ନ ଥିଲା ।

ଦିନେ ଦୁଇ ପ୍ରତିଦ୍ୱନ୍ଦ୍ୱୀ ଏକା ସମୟରେ ସିଲଭିଆ ସହିତ ଦେଖାକରିବାକୁ ପହଞ୍ଚିଯାଆନ୍ତି । ସଭାସଦ୍‌ଟି ଯାହା କହିଲା, ଭାଲେଣ୍ଟାଇନ୍ ତାକୁ ହସରେ ଉଡ଼ାଇ ଦେଲା । ବିଦ୍ରୂପ କରି ତାକୁ ଅପଦସ୍ଥ କରିବାକୁ ଲାଗିଲା । ଏଥିରେ ସିଲଭିଆ ବେଶ୍ ଖୁସି ।

ଏତିକିବେଳେ ସେଠାକୁ ଆସିଲେ ନିଜେ ଡିଉକ୍ । କହିଲେ- ଜଣେ ନୂଆଲୋକ ଆଜି ଆସିଛନ୍ତି । ତାଙ୍କର ନାମ ପ୍ରୋଟିଆସ୍ । ସେ ଭେରୋନାରୁ ଆସିଛନ୍ତି । ଭାଲେଣ୍ଟାଇନ୍, ତୁମେ କ'ଣ ତାଙ୍କୁ ଚିହ୍ନ ?

ଭାଲେଣ୍ଟାଇନ୍ କହେ, ପ୍ରୋଟିଆସ୍ ହେଉଛି ମୋର ବାଲ୍ୟବନ୍ଧୁ । ଆମେ ପରସ୍ପରର ଖୁବ୍ ଘନିଷ୍ଠ । ସେ ଏଠାକୁ ଆସିଥିବାରୁ ମୁଁ ଖୁବ୍ ଖୁସି । ମୁଁ ଏଇଆ ହିଁ ଚାହୁଁଥିଲି ।

ଏହା ପରେ ସେ ଡିଉକ୍‌ଙ୍କ ପାଖରେ ପ୍ରୋଟିଆସ୍‌ର ବହୁତ ପ୍ରଶଂସା କରେ । କହେ- ମହାମାନ୍ୟ ଡିଉକ୍, ମୁଁ କେବେ କେମିତି କାମରେ ଫାଙ୍କି ଦେଇଛି, କେତେ ସମୟ ନଷ୍ଟ କରିଛି । କିନ୍ତୁ ମୋର ବନ୍ଧୁ ମୋଟେ ସେମିତି ନୁହେଁ, ସମୟର କିଭଳି ସଦ୍‌ବ୍ୟବହାର କରିବାକୁ ହୁଏ, ଏକଥା ତାକୁ ବେଶ୍ ଜଣା । ଦେହରେ ଆଉ ମନରେ ସେ ହେଲା ଜଣେ ପରିପୂର୍ଣ୍ଣ ମଣିଷ । ଅନ୍ୟ ସହିତ ତା'ର ବ୍ୟବହାର ମଧ୍ୟ ଖୁବ୍ ଭଲ । ମୋଟ ଉପରେ ମୋଠୁଁ ସେ ଅନେକ ଗୁଣରେ ଭଲ ।

ଡିଉକ୍ କହନ୍ତି... ଏମିତି ଜଣେ ଗୁଣୀଯୁବକକୁ ମୁଁ ତେବେ ମୋର ସଭାକୁ ସ୍ୱାଗତ ଜଣାଇବି । ସିଲଭିୟା ଆଉ ଥୁରିଓ, ତମେଦୁହେଁ ଯାଇ ପ୍ରୋଟିଆସ୍‌କୁ ଅଭ୍ୟର୍ଥନା କରି ନେଇଆସ ।

ପ୍ରୋଟିଆସ୍ ନିଜେ ସେଠାକୁ ଆସେ ।

ଭାଲେଣ୍ଟାଇନ୍ ପରିଚୟ କରାଇଦିଏ- ଏ ହେଉଛି ମୋର ଅନ୍ତରଙ୍ଗ ବନ୍ଧୁ ପ୍ରୋଟିଆସ୍ । ମହାମାନ୍ୟ, ଆଜିଠୁଁ ଏ ମଧ ମୋ ଭଳି ଆପଣଙ୍କର ଦାସ ।

ତା'ପରେ ପ୍ରୋଟିଆସ୍ ଆଡ଼େ ଅନାଇ କହେ... ବନ୍ଧୁ, ମାନ୍ୟବର ଡିଉକ୍‌ଙ୍କୁ ତ ତୁ ଭେଟିସାରିଛୁ । ଇଏ ହେଲେ ତାଙ୍କର କନ୍ୟା ଲେଡି ସିଲଭିୟା ।

ସିଲଭିୟା ଏବଂ ପ୍ରୋଟିଆସ୍ ସୌଜନ୍ୟ ବିନିମୟ କରନ୍ତି ।

ପରିଚୟପର୍ବ ଶେଷ ହେବା ପରେ ସେମାନେ ବିଦାୟ ନିଅନ୍ତି । ରହିଯାଆନ୍ତି କେବଳ ଦୁଇବନ୍ଧୁ । ଅନେକ ଦିନ ପରେ ଦୁହିଁଙ୍କର ଦେଖା । ପ୍ରାଣ ଖୋଲା କଥାବାର୍ତ୍ତା ଆରମ୍ଭ ହୁଏ ।

ଭାଲେଣ୍ଟାଇନ୍ ପଚାରେ- ଆଉ ଭେରୋନାର ଖବର କ'ଣ ? କେମିତି ଅଛି ତୋ'ର ସେଇ ଜୁଲିଆ ? ଦୁହିଁଙ୍କର ସମ୍ପର୍କ ବର୍ତ୍ତମାନ କେଉଁ ସ୍ଥିତିରେ ?

ପ୍ରୋଟିଆସ୍ ଉତ୍ତର ଦିଏ, ମୋ ପ୍ରେମକାହାଣୀ ଶୁଣିଲେ ତୁ ତ ଆଗେ କ୍ଳାନ୍ତ ହୋଇ ପଡୁଥିଲୁ । ମୁଁ ଜାଣେ, ଏ ଧରଣର କଥାରୁ ତୁ କୌଣସି ଆନନ୍ଦ ପାଉ ନ ଥିଲୁ । ଆଜି ହଠାତ୍ ସେଇ ପ୍ରସଙ୍ଗ ଉଠାଉଛୁ କାହିଁକି ? ସେସବୁକଥା କ'ଣ ତୋତେ ଭଲ ଲାଗିବ ?

ଭାଲେଣ୍ଟାଇନ୍ କହେ... ଏବେ ମୋର ଜୀବନ ସମ୍ପୂର୍ଣ୍ଣ ବଦଳିଯାଇଛି ବନ୍ଧୁ ! ଏତେଦିନ ଧରି ଯେଉଁ ପ୍ରସଙ୍ଗକୁ ମୁଁ ବ୍ୟଙ୍ଗ କରୁଥିଲି, ବର୍ତ୍ତମାନ ତା'ପାଇଁ ପ୍ରାୟଶ୍ଚିତ୍ତ କରିବାର ସମୟ ଆସିଛି । ପ୍ରେମ ଶେଷରେ ମୋତେ ଜୟ କରିନେଇଛି । କ'ଣ ଆଉ କହିବି ? ମୋ ଆଖିରୁ ନିଦ ହରିନେଇଛି ଏଇ ପ୍ରେମ । ମୁଁ ସ୍ୱୀକାର କରୁଛି ବନ୍ଧୁ, ସେ ହେଉଛି ଏକ ବଳବାନ୍ ପ୍ରଭୁ । ତା'ରି ପାଖରେ ମୁଁ ଏବେ ନତମସ୍ତକ । ଏବେ ପ୍ରେମର ଦେବତାଙ୍କୁ ସେବା କରିବାଭଳି ଆନନ୍ଦ ମୋର ଆଉ କିଛି ନାହିଁ । କେବଳ ସେଇ ଆଲୋଚ଼ନା ବ୍ୟତୀତ ଆଉ ଅନ୍ୟ କୌଣସି କଥାରେ ମୋର ଆଗ୍ରହ ନାହିଁ । ପ୍ରେମ ହିଁ ମୋପାଇଁ ଜୀବନ, ପ୍ରେମ ହିଁ ମରଣ ।

ଦୀର୍ଘ ଭାଷଣ ଶୁଣି ପ୍ରୋଟିଆସ୍ ମନେ ମନେ ଉଲ୍ଲସିତ । ବାବୁ ଏତେ ଦିନ ପରେ ବାଟକୁ ଆସିଛନ୍ତି ।

ତେବେ ଇତି ମଧ୍ୟରେ ଗୋଟିଏ ବିଚିତ୍ର ଘଟଣା ଘଟିଯାଇଛି । ଯେଉଁ ଆସନରେ ପ୍ରୋଟିଆସ୍ ଏତେଦିନ ଯାଏ ଜୁଲିଆକୁ ବସାଇଥିଲା, ସେଠି ସେ ଆଉଜଣକୁ ଦେଖିବାକୁ ପାଉଛି । ସେ ଆଉ କେହି ନୁହେଁ - ସିଲଭିୟା ! ଜୁଲିଆ ପ୍ରତି ତା'ର ଏତେ ସ୍ନେହ, ଏତେ ମମତା- ସବୁ କୁଆଡ଼େ କର୍ପୂର ଭଳି ଉଡ଼ିଯାଇଛି ।

ପ୍ରୋଟିଆସ୍ ବୁଝିଥିଲା ସିଲଭିୟା ପ୍ରତି ଭାଲେଣ୍ଟାଇନ୍‌ର ମନୋଭାବ । ବର୍ତ୍ତମାନ ଭିକ୍ଷାପାତ୍ର ଧରି ସିଲଭିୟାର ସିଂହାସନ ତଳେ ଠିଆ ହୋଇଗଲେ, ସେ ଯେ ବନ୍ଧୁ ସହିତ ପ୍ରତାରଣା କରିବ, ଏ କଥା ସେ ଭୁଲିଗଲା । ଭୁଲିଗଲା ଯେ, ସୁଦୂର ଭେରୋନା ନଗରୀରେ ଦୁଇଟି ପ୍ରେମପୂର୍ଣ୍ଣ ଉତ୍ସୁକ ଆଖି ଏବେ ମଧ ତା'ର ଫେରିବା ବାଟକୁ ଅନାଇ ବସିଛି । ସେ ତାକୁ ଅନେକ ପ୍ରତିଶ୍ରୁତି ଦେଇ ଆସିଛି ! ତା'ର ପ୍ରେମର ସ୍ମାରକ - ଏଇ ମୁଦି ଏବେ ମଧ ତା'ହାତରେ ରହିଛି ।

ପ୍ରୋଟିଆସ୍ ସ୍ୱଭାବରେ ଜଟିଳ ନୁହେଁ । ପ୍ରକୃତିରେ ଏତେ ସ୍ୱାର୍ଥପର ମଧ ନୁହେଁ । ବର୍ତ୍ତମାନ ସେ ଯାହା କରିବାକୁ ଯାଉଛି, ସେଥିଲାଗି ତା'ମନରେ ଯେ ଦ୍ୱିଧା ଦେଖା ଦେଇ ନାହିଁ, ଏଭଳି ମଧ ନୁହେଁ । ମାତ୍ର ସେ ତାକୁ ଜୋର୍‌କରି ନିଜ ମନଭିତରୁ ବାହାର କରିଦେଇଛି । ଭାଲେଣ୍ଟାଇନ୍ ହିଁ ହେବ ଏଣିକି ତା'ର ପ୍ରତିଦ୍ୱନ୍ଦ୍ୱୀ । ଏତେଦିନର ବନ୍ଧୁତା ବରଂ ପାଣିରେ ଭାସିଯାଉ ।

ଭାଲେଣ୍ଟାଇନ୍ ନିଜ ପ୍ରେମର କଥା ଅକପଟ ଭାବରେ ବନ୍ଧୁ ଆଗରେ ବର୍ଣ୍ଣନା କରିଥିଲା । କହି ଦେଇଥିଲା, ସିଲଭିୟାର ତା'ପ୍ରତି ମନୋଭାବର କଥା । ଆହୁରି ଜଣାଇଥିଲା, ସେମାନଙ୍କର ଏଇ ବ୍ୟାପାରଟା ଡିଉକ୍ ଏପର୍ଯ୍ୟନ୍ତ ଜାଣି ନାହାନ୍ତି । ଜାଣିଲେ ବି ସେ ଏଇ ବିବାହରେ କେବେହେଲେ ରାଜି ହେବେ ନାହିଁ । ତାଙ୍କର ମନୋନୀତ ପାତ୍ର ହେଉଛି ଥୁରିଓ । ତାଙ୍କର ଜଣେ ସଭାସଦ୍ । ସେଇଥିପାଇଁ ଆମେ ସ୍ଥିର କରିଛୁ, ଆଜି ରାତିରେ ଏଠୁ ପଳାଇବୁ । ଚାଲିଯିବୁ ମଣ୍ଟୁଆ...

ନିଜ ପକେଟ୍‌ରୁ ଦଉଡ଼ିର ଗୋଟିଏ ସିଢ଼ି ବାହାର କରେ ଭାଲେଣ୍ଟାଇନ୍ । ପ୍ରୋଟିଆସ୍ ଆଶ୍ଚର୍ଯ୍ୟ ହୋଇ ପଚାରେ, ଏଥିରେ କ'ଣ ହେବ ?

ଭାଲେଣ୍ଟାଇନ୍ କହେ... ଏଇଟି ହିଁ ବର୍ତ୍ତମାନ ସବୁଠୁଁ ବେଶି ଦରକାର । ଏଇଥିରେ ସିଲଭିୟା ମୋ ପାଖକୁ ଆସିପାରିବ ।

ପ୍ରୋଟିଆସ୍ ଉତ୍ତେଜିତ ହୋଇପଡ଼େ । କେମିତି, କି ଉପାୟରେ ଏଇ ଦଉଡ଼ି ସେମାନଙ୍କୁ ସାହାଯ୍ୟ କରିବ, ତାହା ସେ ଜାଣିବାକୁ ଚାହେଁ...

ଭାଲେଣ୍ଟାଇନ୍ ଗପିଯାଏ... ଅନ୍ଧାରର ସୁଯୋଗ ନେଇ ମୁଁ ପ୍ରାସାଦର କୌଣସି ଝରକାରୁ ଏଇ ସିଢ଼ିଟାକୁ ଝୁଲାଇଦେବି । ସେଇଥିରେ ସିଲଭିୟା ଓହ୍ଲାଇ ଆସିବ ତଳକୁ । ମୁଁ ତଳେ ଅପେକ୍ଷା କରିଥିବି । ସିଲଭିୟା ପହଞ୍ଚିବା ମାତ୍ରେ ଆମେ ଦୁହେଁ ବିଳମ୍ବ ନ କରି ମଣ୍ଟୁଆର ରାସ୍ତା ଧରିବୁ ।

ତା'ର ଏଇ ଗୋପନ ପରିକଳ୍ପନା ଶୁଣି ପ୍ରୋଟିଆସ୍ ମନେ ମନେ ଖୁସି ହୁଏ । ତା'ର ମନ ଏକ ବୀଭତ୍ସ ଆନନ୍ଦରେ ଭରିଯାଏ । ସେ ତତ୍‌କ୍ଷଣାତ୍ ସ୍ଥିର କରିନିଏ, ଅଚିରେ ସେ ଭାଲେଣ୍ଟାଇନ୍‌ର ଏଇ ଯୋଜନା କଥା ଡିଉକ୍‌ଙ୍କୁ ଜଣାଇଦେବ ।

ଘଟଣାଟା ଘଟିଯିବା ଆଗରୁ ଜାଣିପାରିଲେ ଡିଉକ୍ ନିଶ୍ଚୟ ଏମାନଙ୍କର ଯିବାକୁ ରୋକିଦେବେ । ଭାଲେଣ୍ଟାଇନ୍ ମଧ କଠିନ ଶାସ୍ତି ପାଇବ । ପଥର କଣ୍ଟା ଦୂର ହେଲେ ସେ ମନଭରି ସିଲଭିୟା ସହିତ ପ୍ରେମ କରିପାରିବ । ଥୁରିଓଟା କିଛି କାମର ନୁହେଁ । ସେ ତାକୁ ସହଜରେ ଏଡ଼ାଇ ଦେଇପାରିବ ।

ଭାବିବା ଅନୁସାରେ କାମ । ସେ ଏଇ ମୁହୂର୍ତ୍ତରେ ଡିଉକ୍‌ଙ୍କ ସାକ୍ଷାତ୍ ପାଇଁ ଯିବ । ସିଧାସଳଖ କଥାଟା କହିଦେଲେ ଘଟଣା ଅନ୍ୟ ରୂପ ନେଇପାରେ । ବେଶ୍ ସାବଧାନ ହୋଇ ତାଙ୍କ ଆଗରେ ଏହାର ଅବତାରଣା କରିବାକୁ ହେବ । ଡିଉକ୍ ଯେମିତି ତାକୁ ତାଙ୍କର ପରମ ଶୁଭାକାଂକ୍ଷୀ ମନେ କରନ୍ତି, ସେ ଦିଗଟାକୁ ଜଗିବାକୁ ପଡ଼ିବ । ଦେଖିଶୁଣି କଥା କହିପାରିଲେ, ଏ କାର୍ଯ୍ୟରୁ ସଫଳତା ମିଳିବ ହିଁ ମିଳିବ ।

ନିଜ ଶକ୍ତି ଉପରେ ପ୍ରୋଟିଆସ୍‌ର ପ୍ରଚଣ୍ଡ ଆସ୍ଥା ।

॥ ୪ ॥

ଡିଉକ୍‌ଙ୍କୁ ସମ୍ମାନ ଜଣାଇ ଆସନ ଗ୍ରହଣ କଲା ପରେ ତାଙ୍କର ପ୍ରଥମ ପ୍ରଶ୍ନ - ତମର ଏଠି କୌଣସି ଅସୁବିଧା ହେଉ ନାହିଁ ତ ?

ସୌଜନ୍ୟରେ ବିଗଳିତ ହୋଇ ପ୍ରୋଟିଆସ୍ ଉତ୍ତର ଦିଏ... ନା ନା ମହାମାନ୍ୟ, ଆପଣଙ୍କ ସୁବ୍ୟବସ୍ଥାରେ ମୁଁ ବରଂ ପରମ ଆନନ୍ଦରେ ଅଛି । ସାମାନ୍ୟ ଇତସ୍ତତଃ କରି ସେ କହେ- ଗୋଟିଏ ବିଶେଷ କାରଣରୁ ମୁଁ ଆପଣଙ୍କୁ ବିରକ୍ତ କରିବାକୁ ଆସିଛି ମହାମାନ୍ୟ ।

ଡିଉକ୍ କହନ୍ତି - ନିଃସଙ୍କୋଚରେ କହିପାର ।

- ବନ୍ଧୁତ୍ୱର ଦାବିରେ ମୋର ଅବଶ୍ୟ ଏସବୁ କଥା କହିବା ଆଦୌ ଉଚିତ ନୁହେଁ । ତେବେ ଆପଣ ମୋତେ ଯେଉଁ ଅଯାଚିତ ଅନୁଗ୍ରହ ଦେଖାଇଛନ୍ତି, ସେଥିରେ ଆପଣଙ୍କ ପ୍ରତି ମୋର କିଛି କର୍ତ୍ତବ୍ୟ ଆସିଯାଉଛି । ତାହା ଯଦି ମୁଁ ପାଳନ ନ କରେ, ତେବେ ମୋ ବିବେକ ମୋତେ ଦଂଶନ କରିବ । ଏବେ ଆପଣ ଅନୁମତି ଦେଲେ ମୁଁ ତାହା ପାଳନ କରିବି ।

ପ୍ରୋଟିଆସ୍‌ର ବାକ୍‌ଚାତୁରୀ ଡିଉକ୍‌ଙ୍କର କୌତୂହଳ ବଢ଼ାଇଦେଲା । ସେ କହିଲେ- ତେବେ ତମର କର୍ତ୍ତବ୍ୟ ପାଳନ କରିବାକୁ ମୁଁ ଅନୁମତି ଦେଉଛି । ନିର୍ଭୟରେ ପ୍ରକାଶ କର ।

ପ୍ରୋଟିଆସ୍ କହିଲା- ଭାଲେଣ୍ଟାଇନ୍ ମୋର ବାଲ୍ୟବନ୍ଧୁ । ଅନ୍ତରଙ୍ଗ ମଧ । ତେବେ ସେ ଯେଉଁ ଯୋଜନା କରିଛି, ତହିଁରେ ସଫଳ ହେଲେ ଆପଣଙ୍କର କ୍ଷତି ହେବ । ଆପଣଙ୍କ ଶୁଭ୍ରଯଶରେ କାଳିମା ଲାଗିବ ।

ଡିଉକ୍ ବ୍ୟସ୍ତ ହୋଇ ପଡ଼ିଲେ । ପଚାରିଲେ - କ'ଣ ସେ ଏମିତି ପରିକଳ୍ପନା କରିଛି ? ତମେ ବା ସେ କଥା ଜାଣିଲ କେମିତି ?

ପ୍ରୋଟିଆସ୍ ଉତ୍ତର ଦିଏ... ସେ ନିଜେ ମୋ ଆଗରେ ବର୍ଣ୍ଣନା କରିଛି ।

ଡିଉକ୍ କହିଲେ- ତେବେ ସେଇ କଥା କହ ।

ପ୍ରୋଟିଆସ୍ କହେ... କହିବାକୁ ତ ସଙ୍କୋଚ୍ ହେଉଛି । ଗୋଟିଏ ପଟେ ବନ୍ଧୁପ୍ରୀତି ଆଉ ଅନ୍ୟପଟେ କର୍ତ୍ତବ୍ୟ ଭିତରେ ପଡ଼ି ମୁଁ ପେଷି ହୋଇଯାଉଛି । ତେବେ କର୍ତ୍ତବ୍ୟ ହିଁ ମୋତେ ଏଭଳି ପଦକ୍ଷେପ ନେବାକୁ ବାଧ କରୁଛି । ଯଦି ଅପରାଧ ହୋଇଥାଏ, ତେବେ କ୍ଷମା ଦେବେ । ଆଜି ରାତିରେ ଭାଲେଣ୍ଟାଇନ୍ ଆପଣଙ୍କ କନ୍ୟାଙ୍କୁ ନେଇ ପଳାଇଯିବାର ଯୋଜନା କରିଛି ।

ତା'ପରେ ସେ ଭାଲେଣ୍ଟାଇନ୍‌ର ପରିକଳ୍ପନାର ଏକ ସ୍ପଷ୍ଟ ଚିତ୍ର ଡିଉକ୍‌ଙ୍କ ଆଗରେ ଥୋଇଦିଏ । ଏଠୁ ଯେ ସେମାନେ ମଣ୍ଟୁଆ ଚାଲିଯିବାର ଯୋଜନା କରିଛନ୍ତି, ତାହା ଜଣାଇବାକୁ ଭୁଲେ ନାହିଁ । ଦଉଡ଼ିର ସିଡ଼ିଟା ଭାଲେଣ୍ଟାଇନ୍ କିଭଳି ନିଜ ଆଲଖାଲା ଭିତରେ ଲୁଚାଇ ରଖିଛି ଏବଂ କାହାକୁ ପଠାଇ ଖୋଜାଇଲେ ତା'କଥାର ସତ୍ୟତା ପ୍ରମାଣିତ ହେବ - ଏ କଥା ମଧ କହେ ।

ପ୍ରୋଟିଆସ୍‌ର କଥା ଶୁଣି ଡିଉକ୍ ସ୍ତମ୍ଭୀଭୂତ ହୋଇଯାଆନ୍ତି । ଯେଉଁ ଭାଲେଣ୍ଟାଇନ୍‌କୁ ସେ ଏତେ ସ୍ନେହ କରନ୍ତି, ଏଠାରେ ଯାହାକୁ ଅବାଧ ସ୍ୱାଧୀନତା ଦେଇଛନ୍ତି, ସେଇ ପୁଣି ଏମିତି ବିଶ୍ୱାସଘାତକତା କରିବାକୁ ଯାଉଛି ! ତାଙ୍କର ମନେହେଲା ସ୍ୱୟଂ ଈଶ୍ୱର ପ୍ରୋଟିଆସ୍‌କୁ ତ୍ରାଣକର୍ତ୍ତା ରୂପେ ତାଙ୍କ ପାଖକୁ ପଠାଇଛନ୍ତି । ଗୋଟାଏ ଭୟଙ୍କର ପାରିବାରିକ କଳଙ୍କ ହାତରୁ ପ୍ରୋଟିଆସ୍ ହିଁ ତାଙ୍କୁ ଉଦ୍ଧାର କରିଛି । ବନ୍ଧୁର ପରିକଳ୍ପନା କଥା ତାଙ୍କ ନିକଟରେ ପ୍ରକାଶ କରିଦେଇ ସେ ସଙ୍ଗତ କାର୍ଯ୍ୟ କରିଛି । ବନ୍ଧୁତ୍ୱ ଅପେକ୍ଷା କର୍ତ୍ତବ୍ୟ ହୋଇଛି ତା'ଭଳି ବିବେକୀ ଯୁବକ ନିକଟରେ ବଡ଼...

ଡିଉକ୍ କହିଲେ, - 'ଯେଉଁ ଉପକାର ତମେ ମୋର କଲ, ସେଥିପାଇଁ କୃତଜ୍ଞତା ଜଣାଇବାକୁ ମୋ ପାଖରେ ଭାଷା ନାହିଁ । ଆଜି ତମକୁ ମୋର ଅଦେୟ କିଛି ନାହିଁ । କହ, କ'ଣ ପୁରସ୍କାର ପାଇଲେ ଖୁସି ହେବ ?'

ଧୂର୍ତ୍ତ ପ୍ରୋଟିଆସ୍ ଜାଣେ, ସିଲଭିୟାର ପାଣି ପ୍ରାର୍ଥନା କରିବାର ସମୟ ଏବେ ମଧ ଆସି ନାହିଁ । ଧୈର୍ଯ୍ୟ ଧରି ସୁଯୋଗକୁ ଅପେକ୍ଷା କରିବାକୁ ହେବ । ପ୍ରକାଶ୍ୟରେ କହେ - ମହାମାନ୍ୟ, କେବଳ ସାମାନ୍ୟ ଅନୁଗ୍ରହ...

ଡିଉକ୍ କହନ୍ତି... କହିସାରିଚି ଯେ ତମକୁ ଅଦେୟ ମୋର କିଛି ନାହିଁ । ଯାହା ଚାହଁ, କହିପାର...

ପ୍ରୋଟିଆସ୍ ଜଣାଏ - ତେବେ ଆପଣ ଯେ ମୋଠୁ ଭାଲେଣ୍ଟାଇନ୍‌ର ଏଇ ପରିକଳ୍ପନା କଥା ଜାଣିଛନ୍ତି, ଏ କଥା ଯେମିତି ସେ ନ ଜାଣେ । ଯାହା ହେଲେ ବି ସେ ମୋର ବାଲ୍ୟବନ୍ଧୁ...

ଡିଉକ୍ କହନ୍ତି... ନିଶ୍ଚିନ୍ତ ରୁହ... ସେ ଏ କଥା ଆଦୌ ଜାଣିବ ନାହିଁ ।

ପ୍ରୋଟିଆସ୍ କିଛି ଚିନ୍ତା କରି କୁହେ... କିନ୍ତୁ ପରିକଳ୍ପନାର କଥା ଜାଣନ୍ତି ମାତ୍ର ତିନିଜଣ । ସେ ନିଜେ, ଲେଡି ସିଲଭିୟା ଆଉ ମୁଁ । ତେଣୁ ସେ ମୋତେ ହିଁ ସନ୍ଦେହ କରିବ ।

ଡିଉକ୍ ଜବାବ୍ ଦିଅନ୍ତି, ଭୟ କର ନାହିଁ । ମୁଁ ଏମିତି କୌଶଳ କରିବି ଯେ ଭାଲେଣ୍ଟାଇନ୍ ନିଜେ ସବୁ କଥା ମୋ ଆଗରେ ପ୍ରକାଶ କରିଦେବ । ନିଜ ମୁହଁରେ ନିଜ ଅପରାଧ ସ୍ୱୀକାର କରିବ । ଆଜି ସଂଧ୍ୟାରେ ତ ସେ ଆସିବ । ମୁଁ ପ୍ରସ୍ତୁତ ହୋଇ ତାକୁ ଅପେକ୍ଷା କରିବି ।

ବିନୀତ କଣ୍ଠରେ ପ୍ରୋଟିଆସ୍ ନିବେଦନ କରେ- ତେବେ ଏଥର ମୋତେ ଯିବା ପାଇଁ ଅନୁମତି ମିଳୁ ।

ଗମ୍ଭୀର କଣ୍ଠରେ ଡିଉକ୍ କହନ୍ତି, ହଁ ହଁ ତମେ ଆସିପାର । ମୋତେ ବି ମୋର କର୍ମପନ୍ଥା ସ୍ଥିର କରିବାକୁ ହେବ ।

॥ ୫ ॥

ଧୀରେ ଧୀରେ ପୃଥିବୀବକ୍ଷକୁ ସଂଧ୍ୟା ନଇଁ ଆସେ । ଡିଉକ୍ ଭାଲେଣ୍ଟାଇନ୍‌ର ଆସିବା ବାଟକୁ ଚାହିଁ ବସିଥାଆନ୍ତି । ଶେଷରେ ତାଙ୍କର ପ୍ରତୀକ୍ଷାର ଅନ୍ତ ଘଟାଇ ଭାଲେଣ୍ଟାଇନ୍‌କୁ ପ୍ରାସାଦ ଆଡ଼କୁ ଆସିବାର ଦେଖାଯାଏ । ଡିଉକ୍ ତୀକ୍ଷ୍ଣ ଦୃଷ୍ଟିରେ ଅନାଇ ଦେଖନ୍ତି ଯେ, ତା' ଆଲଖାଲାର ଗୋଟିଏ ସ୍ଥାନ ବେଶ୍ ଉଚ୍ଚ ଦେଖାଯାଉଛି । ସେ ବୁଝିପାରନ୍ତି ଯେ, ଦଉଡ଼ିର ସିଢ଼ିଟା ସେଇଠି ରହିଛି ।

ତାକୁ ଅଟକାଇବା ପାଇଁ ଡିଉକ୍ ଡାକଛାଡ଼ନ୍ତି - ଆରେ ଆରେ, ଭାଲେଣ୍ଟାଇନ୍ ନା କ'ଣ ! ଯାଉଛ କୁଆଡ଼େ ? ଏଇଆଡ଼କୁ ଆସ...

ଭାଲେଣ୍ଟାଇନ୍ କହେ - ମହାମାନ୍ୟ, ଯଦି ଅନୁମତି ଦିଅନ୍ତି, ତେବେ ଗୋଟାଏ ଜରୁରୀ କାମ ସାରି ଦେଇ ଆସିବି ।

ଡିଉକ୍ ପଚାରନ୍ତି - କ'ଣ ଏମିତି ଜରୁରୀ କାମ ? ଭାଲେଣ୍ଟାଇନ୍ ଅପ୍ରସ୍ତୁତ ହୋଇପଡ଼ିଲା ଭଳି ଜଣାଯାଏ । ସେ ଥତମତ ହୋଇଯାଇ କହେ.. ମାନେ... ମାନେ... ବ୍ୟାପାର ହେଉଛି ଜଣେ ପତ୍ରବାହକ ବାହାରେ ଅପେକ୍ଷା କରୁଛି । ମୁଁ ତା'ହାତରେ କେତେଟା ଚିଠି ପଠାଇବି । ଚିଠି ସବୁ ବନ୍ଧୁମାନଙ୍କ ପାଖକୁ ଲେଖିଛି ।

ଜୁଲିଆ ଚିଠି ବିଷୟରେ ନିଜ ବାପାଙ୍କୁ ମିଛ କହି ପ୍ରୋଟିଆସ୍ ଯେମିତି ଝାମେଲାରେ ପଡ଼ିଥିଲା, ଡିଉକ୍‌ଙ୍କୁ ଚିଠି କଥା କହି ଭାଲେଣ୍ଟାଇନ୍ ଠିକ୍ ସେମିତି ଅସୁବିଧାରେ ପଡ଼ିଲା ।

ଡିଉକ୍ ପ୍ରଶ୍ନ କରନ୍ତି - ଚିଠିଗୁଡ଼ିକ କ'ଣ ଖୁବ୍ ଜରୁରୀ ?

ଭାଲେଣ୍ଟାଇନ୍ ରହିଯାଇ କହେ... ନା ନା, ସେମିତି କିଛି ଜରୁରୀ ନୁହେଁ । ଆପଣଙ୍କର ଆଶ୍ରୟରେ ମୁଁ ଏଠି କେତେ ଆନନ୍ଦରେ ରହିଛି, ସେଇ କଥା ମୋର ବାପାଙ୍କୁ ଜଣାଇଦେବାକୁ ବନ୍ଧୁମାନଙ୍କୁ ଲେଖୁଛି ।

- ଓ, ଏଇ କଥା ! ତେବେ ତ ତମେ କିଛିକ୍ଷଣ ମୋ ସାଙ୍ଗରେ ଖୁସିରେ କଟାଇପାର । କେତେଗୁଡ଼ିଏ ବିଷୟକୁ ନେଇ ମୁଁ ଖୁବ୍ ଚିନ୍ତିତ ହୋଇପଡ଼ିଛି । ଏ ବ୍ୟାପାରରେ ତମର ପରାମର୍ଶ ଦରକାର । କାରଣ ତମର ବିଚାରବୁଦ୍ଧି ଉପରେ ମୋର ଖୁବ୍ ଭରସା ଅଛି । ମୋର ଦୃଢ଼ ବିଶ୍ୱାସ ତମେ ମୋତେ ସୁପରାମର୍ଶ ଦେଇପାରିବ । ଡିଉକ୍ କହିଯାଆନ୍ତି ।

ଭାଲେଣ୍ଟାଇନ୍ ଅଟକିଯାଇ କହେ... ମୋର ବିବେଚନା ଅନୁସାରେ ନିଶ୍ଚୟ ଆପଣଙ୍କୁ ପରାମର୍ଶ ଦେବି ।

ଭାଲେଣ୍ଟାଇନ୍ ପାଖରୁ କଥା ଆଦାୟ କରିବା ପାଇଁ ଏଥର ଡିଉକ୍ ଗୋଟିଏ କୌଶଳ ଅବଲମ୍ବନ କରନ୍ତି । କହନ୍ତି - ମୋ ଝିଅର ବାହାଘର ସ୍ଥିର ହୋଇଥିବା କଥା ତମେ ନିଶ୍ଚୟ ଶୁଣିଛ । ମନୋନୀତ ପାତ୍ରଜଣକ ହେଲେ ପାରିଷଦର ସଭ୍ୟ ଥୁରିଓ । କିନ୍ତୁ ସିଲଭିୟା ମୋର ଅବାଧ ହେଉଛି । ବାପା ହିସାବରେ ମୁଁ ତା'ର ଶ୍ରଦ୍ଧା ଓ ଭକ୍ତିର ପାତ୍ର । ସେ ତା' ମାନିବାକୁ ପ୍ରସ୍ତୁତ ନୁହେଁ । ମୋର ମନୋନୀତପାତ୍ର ବୋଧହୁଏ ତା'ର ପସନ୍ଦ ନୁହେଁ । ଏପର୍ଯ୍ୟନ୍ତ ମୁଁ ତା'ର କୌଣସି କାର୍ଯ୍ୟରେ ବାଧା ଦେଇ ନାହିଁ । ତା'ର ସ୍ୱାଧୀନତାରେ କେବେ ବି ହସ୍ତକ୍ଷେପ କରି ନାହିଁ । ସେ ତା'ର ପ୍ରତିଫଳ ଏବେ ଦେଉଛି । ମୁଁ ବି ତା'ର ପ୍ରତିରୋଧ କରିବି ନାହିଁ । ଏଇ ସ୍ୱେଚ୍ଛାଚାରିଣୀ କନ୍ୟା ପାଇଁ ମୋର ଆଉ କୌଣସି ସ୍ନେହ ନାହିଁ । ବୁଢ଼ା ହେଲିଣି - ଭାବିଥିଲି, ଏଥର ଝିଅ ଜୋଇଁ ମୋର ସେବା କରିବେ । ଝିଅର ସେଆଡ଼େ ମନ ନାହିଁ । ସେଇଥିପାଇଁ ବହୁତ ଭାବିଲା ପରେ ସ୍ଥିର କଲି, ଆଉଥରେ ବିବାହ କରିବି । ବୟସଟା ଟିକିଏ ଅଧିକ ହୋଇଯାଇଛି ସତ, ତେବେ କ'ଣ ଆଉ କରିବା ? ଯେଉଁ ତରୁଣ ମୋ ଝିଅକୁ ବାହାହେବ, ସେ କିନ୍ତୁ ଝିଅଟିକୁ ଛାଡ଼ି ଆଉ କିଛି ପାଇବ ନାହିଁ । ସେ ନିଜ ଇଚ୍ଛାରେ ବାହାହେଲେ, କାଣି କଉଡ଼ିଟିଏ ବି ଯୌତୁକ ପାଇବ ନାହିଁ କିମ୍ବା ଭବିଷ୍ୟତ୍‌ରେ ମୋର ଅବର୍ତ୍ତମାନରେ ସୁଦ୍ଧା ସେ ମୋର ବିଶାଳ ସମ୍ପତ୍ତିର ଉତ୍ତରାଧିକାରିଣୀ ହୋଇପାରିବ ନାହିଁ ।

ଭାଲେଣ୍ଟାଇନ୍ ଅଧୈର୍ଯ୍ୟ ହୋଇ ପଡୁଥିଲା । ଡିଉକ୍ ଆଉ କେତେବେଳଯାଏ ତାକୁ ଅଟକାଇ ରଖିବେ ? ତେବେ ଏ ପ୍ରଶ୍ନ ତ ସେ ଆଉ ଡିଉକ୍‌ଙ୍କୁ କହିପାରିବ ନାହିଁ । କେବଳ କହିଲା - ଏ ବ୍ୟାପାରରେ ମୁଁ ଆପଣଙ୍କୁ କି ପରାମର୍ଶ ଦେବି ?

ଡିଉକ୍ ଉତ୍ସାହିତ ହେବାର ଛଳନା କରି କହିଲେ... ନିଶ୍ଚୟ ଦେଇପାର । କଥା କ'ଣ କି, ଯେଉଁ ଝିଅଟିକୁ ମୁଁ ବିବାହ କରିବାକୁ ଚାହେଁ, ସେ ହେଉଛି ଯୁବତୀ, ସୁନ୍ଦରୀ, ନମ୍ର ଆଉ ଲାଜକୁଳୀ । ମୋଭଳି ଜଣେ ବୃଦ୍ଧର କଥାବାର୍ତ୍ତା ହୁଏତ ତାକୁ ମୁଗ୍ଧ କରିପାରୁ ନାହିଁ । ତା'ଛଡ଼ା

ପ୍ରେମ କରିବାର ଶୈଳୀ ମଧ୍ୟ ଏ ଭିତରେ ଅନେକ ବଦଳିଗଲାଣି । ଏ ଯୁଗର ରୀତିନୀତି ମୋତେ ଜଣା ନାହିଁ । ତେଣୁ ଭାବୁଛି, ତମ ଭଳି ଜଣେ ଏ ଯୁଗର ତରୁଣଠାରୁ ମୁଁ ସେସବୁ ଶିଖିନେବି । ଏ ବ୍ୟାପାରରେ ତମେ ହିଁ ହେବ ମୋର ପରାମର୍ଶଦାତା ଏବଂ ପ୍ରଶିକ୍ଷକ ।

ଏ ଯୁଗର ଯୁବକମାନଙ୍କର ପ୍ରେମ କରିବାର ଧାରା ସମ୍ପର୍କରେ ଡିଉକ୍‌ଙ୍କୁ କିଛି ସାଧାରଣ ଧାରଣା ଦେଇସାରିବା ପରେ ଭାଲେଣ୍ଟାଇନ୍ କହେ - ଏ ଯୁଗର ତରୁଣମାନେ ସେମାନଙ୍କ ପ୍ରେମିକାମାନଙ୍କ ସହିତ ପ୍ରାୟ ଦେଖାକରନ୍ତି । ମଝିରେ ମଝିରେ ସେମାନଙ୍କୁ ନାନା ଉପହାର ମଧ୍ୟ ଦିଅନ୍ତି । ଏଇ ଉପାୟରେ ସେମାନେ ତାଙ୍କର ମନପାଇବାକୁ ଚେଷ୍ଟା କରୁଥାଆନ୍ତି ।

ଡିଉକ୍ କହନ୍ତି - ଯେଉଁ ଝିଅଟିକୁ ମୁଁ ପସନ୍ଦ କରିଛି, ତା'ପାଖକୁ ଗୋଟିଏ ଉପହାର ପଠାଇଥିଲି । ତେବେ ସେ ଏହାକୁ ଫେରାଇ ଦେଇଛି । ଝିଅର ବାପା ତାକୁ କଡ଼ା ପହରାରେ ରଖିଛନ୍ତି । ତାଙ୍କର ନଜର ଏଡ଼ାଇ ଦିନବେଳେ କେହି ଝିଅପାଖକୁ ଯିବାର ଉପାୟ ନାହିଁ । ତେଣୁ ତା'ର ଦେଖାପାଇବା କଷ୍ଟ ।

ଭାଲେଣ୍ଟାଇନ୍ କହେ... ଦିନରେ ସୁବିଧା ନ ହେଲେ ରାତିରେ ଦେଖା କରିବେ । ଅସୁବିଧା କ'ଣ ?

ଡିଉକ୍ ଚିନ୍ତିତ ଦେଖାଯାଆନ୍ତି । କହନ୍ତି-ଅସୁବିଧା ଅଛି ଯୁବକ ! ରାତିରେ ତା'ଘରର ଦରଜା ବନ୍ଦ ଥାଏ ।

ଭାଲେଣ୍ଟାଇନ୍ ପାଟିରୁ ହଠାତ୍ ବାହାରିଯାଏ - ବନ୍ଦ ଥିଲେ କ'ଣ ହେଲା ? ଭିତରକୁ ଯିବାର କ'ଣ ଅନ୍ୟ ଉପାୟ ନାହିଁ ?

ଡିଉକ୍ ନିରୀହ ଭାବରେ ପ୍ରଶ୍ନ କରନ୍ତି - କି ଉପାୟ ?

- କାହିଁକି ? ଦଉଡ଼ିର ସିଢ଼ିଟାଏ ହେଲେ ଯଥେଷ୍ଟ । ମହାମାନ୍ୟ, ମୁଁ ଆପଣଙ୍କୁ ସେଥିରୁ ଗୋଟାଏ ଯୋଗାଡ଼ କରିଦେବି । ସେଇଥିରେ ଆପଣ ଘର ଭିତରକୁ ପ୍ରବେଶ କରିପାରିବେ । ବାହାର ଦରଜା ବନ୍ଦ ଥିଲେ ବି ଯାଏଆସେ ନାହିଁ । ମୁଁ ଏବେ ଯେମିତି ଗୋଟାଏ ଆଲଖାଲା ପିନ୍ଧିଛି, ସେମିତି ଗୋଟାଏ ପିନ୍ଧି ତା'ଭିତରେ ସିଢ଼ିଟାକୁ ଭାଙ୍ଗିଭୁଙ୍ଗି ରଖି ନେବେ - ଭାଲେଣ୍ଟାଇନ୍ ନିଜର ଯୋଜନା ବିସ୍ତୃତଭାବେ ବୁଝାଇଦିଏ ।

ଡିଉକ୍ କହନ୍ତି - ବାଃ, ଏ ତ ଚମତ୍କାର ପରିକଳ୍ପନା । ତମେ ମତେ ଭଲକରି ବୁଝାଇ ବି ଦେଇଛ । ତମର ଏଇ ଆଲଖାଲାଟା ରାତିକ ପାଇଁ ମୋତେ ଧାର ଦିଅ ।

ଏତିକି କହି ସେ ଏକପ୍ରକାର ଜୋର୍‌କରି ଭାଲେଣ୍ଟାଇନ୍‌ଠାରୁ ତା'ର ଆଲଖାଲାଟି କାଢ଼ିନେଲେ ।

ତାଙ୍କର ଉଦ୍ଦେଶ୍ୟ ପୂରଣ ହୋଇ ଯାଇଥିଲା । ବସ୍ତୁତଃ, ଏଇଥିପାଇଁ ହିଁ ସେ ତାଙ୍କ କଳ୍ପିତ ବିବାହର ମିଥ୍ୟା କାହାଣୀର ଅବତାରଣା କରିଥିଲେ ।

ଆଲଖାଲା ଭିତରୁ ବାହାରିଲା ସେଇ ଦଉଡ଼ିର ସିଢ଼ିଟି ଏବଂ ସିଲ୍‌ଭିୟାର ଖଣ୍ଡିଏ ଚିଠି । ସେଇଟିକୁ ଖୋଲି ଡିଉକ୍ ପଢ଼ିଲେ । ତହିଁରେ ଥିଲା ସିଲ୍‌ଭିୟା ଏବଂ ଭାଲେଣ୍ଟାଇନ୍‌ର ମିଲନ୍‌ରୁ ପଳାଇବାର ସମ୍ପୂର୍ଣ୍ଣ ବିବରଣୀ । ଡିଉକ୍‌ଙ୍କର ଯାହା ଜାଣିବାର ଥିଲା, ସେ ସେଥିରୁ ସବୁ ପାଇଗଲେ ।

ଭାଲେଣ୍ଟାଇନ୍‌କୁ ଭର୍ତ୍ସନା କରି ସେ କହିଲେ - ତମଭଳି ଅକୃତଜ୍ଞ ଆଉ ପୁରୁଷାଧମ, ମୁଁ ଏପର୍ଯ୍ୟନ୍ତ ଦ୍ୱିତୀୟଟି ଦେଖି ନାହିଁ । ତମର କି ଉପକାର ମୁଁ ନ କରିଛି ? କେତେ ଅନୁଗ୍ରହ ତମକୁ ଦେଖାଇ ନାହିଁ ? ତା'ର ତମେ ଏଇ ପ୍ରତିଦାନ ଦେଲ ? ତମେ ଶେଷରେ ମୋ ମୁହଁରେ କଳଙ୍କର କାଳି ଲେପି ଦେବାକୁ ଚେଷ୍ଟା କଲ ? ତମେ ଜାଣ, ଥୁରିଓ ସହିତ ମୁଁ ମୋ ଝିଅର ବିବାହ ଠିକ୍ କରିଛି । ଆଉ ତମେ ସେଇଆକୁ ନେଇ ମିଲନ୍‌ରୁ ପଳାଇବାକୁ ଷଡ଼୍‌ଯନ୍ତ୍ର କଲ ? ତମର ଏଇ ଯୋଜନା ସଫଳ ହୋଇଥିଲେ ମୋର ଆଉ ମୁହଁ ଦେଖାଇବାର ବାଟ ନ ଥାନ୍ତା । ତମଭଳି ଜଣେ ଅକୃତଜ୍ଞକୁ ମୁଁ ଏଇ ମୁହୂର୍ତ୍ତରେ ମୋ ରାଜସଭାରୁ ବିତାଡ଼ିତ କରୁଛି । ଆଉ ତମେ ତମର ଏଇ କୁତ୍ସିତ ମୁହଁ ମୋତେ ଦେଖାଇବ ନାହିଁ । ତମକୁ ମୋ ରାଜ୍ୟରୁ ନିର୍ବାସିତ କଲି । ମିଲନ୍‌ରେ ଆଉ ତମେ କେବେବି ପ୍ରବେଶ କରିପାରିବ ନାହିଁ । ଆଜି ରାତି ଭିତରେ ତମକୁ ମିଲନ୍ ଛାଡ଼ି ଚାଲିଯିବାକୁ ହେବ ।

ଆଦେଶ ଦେଇ ଡିଉକ୍ ଚାଲିଗଲେ ।

ଭାଲେଣ୍ଟାଇନ୍ ଆଉ କ'ଣ କରନ୍ତା ? ବିଚରାକୁ ମିଲନ୍ ଛାଡ଼ିଯିବାକୁ ହେଲା । ସିଲଭିୟା ସହିତ ତା'ର ଆଉ ଦେଖା ହୋଇପାରିଲା ନାହିଁ ।

॥ ୬ ॥

ପ୍ରୋଟିଆସ୍ ଯେତେବେଳେ ମିଲନ୍‌ରେ ବସି ନିଜ ପ୍ରିୟ ବନ୍ଧୁର ଏହିଭଳି ସର୍ବନାଶ କରିବାରେ ବ୍ୟସ୍ତ ଥିଲା, ସେତେବେଳେ ଭେରୋନାରେ ଜୁଲିଆ ତା'ର ବିଚ୍ଛେଦ ଦୁଃଖରେ କାତର ହୋଇ ପଡ଼ିଥିଲା । ତା'ର ବୁଦ୍ଧିବୃତ୍ତି ସବୁ ଯେମିତି ଲୋପ ପାଇଯାଇଥିଲା । ସେ ଠିକ୍ କଲା, ଏଠି ଏମିତି ଚୁପ୍‌ଚାପ୍ ବସି ଦୀର୍ଘଶ୍ୱାସ ପକାଇବାର କୌଣସି ଅର୍ଥ ହୁଏ ନାହିଁ । ପ୍ରୋଟିଆସ୍ ସହିତ ମିଳିତ ହେବା ନିମନ୍ତେ ତାକୁ ମିଲନ୍ ଯିବାକୁ ହେବ ।

ତେବେ ଏତେ ବାଟ ଏକୁଟିଆ ଯିବାଟା ଠିକ୍ ହେବ ନାହିଁ । ତେଣୁ ସେ ନିଜର ଦାସୀ ଲୁସେଟ୍ଟାକୁ ସାଙ୍ଗରେ ନେଇ ଯିବାକୁ ସ୍ଥିର କରେ । ମିଲନ୍ ଅନେକ ଦୂର । ଦୁଇଜଣ ନାରୀଙ୍କ ପାଇଁ ବାଟଘାଟରେ ବିପଦ ବି ପ୍ରଚୁର । ତେଣୁ ସେ ଆହୁରି ସ୍ଥିର କରେ ଯେ, ଦୁଇଜଣଯାକ ବେଶ ବଦଳାଇ ପୁରୁଷ ବେଶରେ ଯିବା ହିଁ ଠିକ୍ ହେବ ।

ସେହିଭଳି ଦୁଇଜଣ ଯାତ୍ରା ଆରମ୍ଭ କରନ୍ତି ।

ଭାଲେଣ୍ଟାଇନ୍ ମିଲନ୍ ଛାଡ଼ିଯିବାର ମାତ୍ର କେଇ ଦିନ ପରେ ହିଁ ଉଭୟେ ମିଲନ୍‌ରେ ପହଞ୍ଚିଯାଆନ୍ତି । ସେତେବେଳକୁ ଦିନ ଦୁଇପହର... ଚାରିଆଡ଼େ ଦିନର ଆଲୁଅ ।

ସହରଟି ଦୁହିଁଙ୍କ ପାଇଁ ନୂଆ । ଏଠାର କୌଣସି ଲୋକକୁ ବି ସେମାନେ ଚିହ୍ନନ୍ତି ନାହିଁ । କେଉଁଠି ରହିବେ ? ଶେଷ ପର୍ଯ୍ୟନ୍ତ ରହିବାପାଇଁ ଗୋଟାଏ ସରାଇଖାନା ମିଳିଯାଏ । ଜୁଲିଆ ମନରେ ସାରାକ୍ଷଣ ପ୍ରୋଟିଆସ୍‌ର ଚିନ୍ତା । ହୁଏତ ଏଇ ସରାଇଖାନାର ମାଲିକ ସେ ବିଷୟରେ କିଛି ସାହାଯ୍ୟ କରିପାରେ ଭାବି ସେ ତା'ସହିତ କଥାବାର୍ତ୍ତା ଆରମ୍ଭ କରେ ।

ମାଲିକ ବି ଏଇ ସୁଦର୍ଶନ ତରୁଣକୁ ଦେଖି ଖୁବ୍ ଖୁସି । ତରୁଣ ଆଉ ତା'ର ସଙ୍ଗୀ ଯେ ପ୍ରକୃତରେ ପୁରୁଷ ନୁହେଁ ନାରୀ, ସେ କଥା ଆଉ ସେ କେମିତି ଜାଣନ୍ତା ? ତା'ର ବିଶ୍ୱାସ ହୁଏ, ଏଇ ତରୁଣ ନିଶ୍ଚୟ କୌଣସି ଅଭିଜାତ ବଂଶର ସନ୍ତାନ । ହୋଇପାରେ ମଧ ଉଚ୍ଚପଦସ୍ଥ । ତେଣୁ ସେ ଖୁବ୍ ଭଦ୍ର ଆଉ ବିନୀତ ଭାବରେ ଜୁଲିଆ ସହିତ କଥାବାର୍ତ୍ତା କଲା ।

ଲୋକଟି ନିଜେ ଅତ୍ୟନ୍ତ ସରଳ । ଜୁଲିଆର ବିଷଣ୍ଣତା ଦେଖି ସେ ଖୁବ୍ ଦୁଃଖିତ ହେଲା । ଅତିଥିଙ୍କୁ ଉତ୍‌ଫୁଲ୍ଲିତ କରିବାକୁ ଯାଇ ସେ କହିଲା - ଆଜି ସନ୍ଧ୍ୟାରେ ମୁଁ ଆପଣଙ୍କୁ ଗୋଟାଏ ଜାଗାକୁ ନେଇଯିବି । ସେଠାକୁ ଗଲେ ଆପଣ ନିଶ୍ଚୟ ଖୁସି ହୋଇଯିବେ । ଜଣେ ଭଦ୍ରଲୋକ ତାଙ୍କର ପ୍ରେମିକାକୁ ଗୀତ ଗାଇ ଶୁଣାଇବେ । ପ୍ରେମିକାର ବାସଗୃହର ଝରକାତଳେ ଠିଆ ହୋଇ ସେ ଗୀତ ଗାଇବେ । ସେଇ ଯୁବକ ଅତି ସୁନ୍ଦର ଗୀତ ଗାଆନ୍ତି ।

ଜୁଲିଆ ବୁଝିପାରୁ ନ ଥିଲା, ମୁହୂର୍ତ୍ତକର ଉତ୍ତେଜନାରେ ସେ ଏ ଯେଉଁ କାମଟି କରି ପକାଇଛି, ପ୍ରୋଟିଆସ୍ ତାକୁ କିଭଳି ଭାବେ ନେବ । ହୁଏତ ଏମିତି ମିଲନ୍ ଚାଲି ଆସିବାଟା ତା'ପକ୍ଷରେ ଠିକ୍ ହୋଇ ନାହିଁ । ଏଇ ସବୁ ଚିନ୍ତା କରି ଜୁଲିଆ ବିଷଣ୍ଣ ହୋଇ ପଡ଼ିଥିଲା । ପ୍ରୋଟିଆସ୍‌କୁ ଆକୃଷ୍ଟ କରିଥିଲା ତା'ର ମର୍ଯ୍ୟାଦାବୋଧ ଆଉ ସ୍ୱାଭିମାନ । ଏମିତି ମିଲନ୍ ଚାଲିଆସି ସେ ହୁଏତ ପ୍ରୋଟିଆସ୍ ପାଖରେ ଛୋଟ ହୋଇଗଲା । କ'ଣ ଆଉ କରାଯିବ ? ସରାଇଖାନାର ମାଲିକ ଯେଉଁ ପ୍ରସ୍ତାବ ଦେଲା, ତାକୁ ସେ ତେଣୁ ଆନନ୍ଦରେ ଗ୍ରହଣ କରିନେଲା । କିଛି ସମୟ ବାହାରେ ବୁଲିଆସିଲେ ହୁଏତ ତା'ର ମନ ବଦଳିଯିବ । ମନତଳେ ଆହୁରି ଗୋଟିଏ ଗୋପନ ଆଶା, ହୁଏତ ବାଟରେ ପ୍ରୋଟିଆସ୍ ସହିତ ଦେଖା ହୋଇଯାଇପାରେ ।

ସେ ସରାଇଖାନା ମାଲିକ ସହିତ ନିର୍ଦ୍ଦିଷ୍ଟ ଜାଗାକୁ ଯାଇ ଯାହା ଦେଖିଲା, ତହିଁରେ ତା'ମୁଣ୍ଡ ଉପରେ ସତେ ଯେମିତି ବଜ୍ର ପଡ଼ିଗଲା । ଏ କ'ଣ ସେ ଦେଖୁଛି ? ଯାହା ଦେଖୁଛି ସତ ନା କଳ୍ପନା ? ଉଦ୍ଦିଷ୍ଟ ଜାଗାରେ ଠିଆ ହୋଇ ଗୀତ ବୋଲୁଛି ଯିଏ ସେ କିଏ ? ସେ ପ୍ରୋଟିଆସ୍ ନା ?

ଗୀତ ଶେଷ ହୋଇଗଲା ପରେ ପ୍ରୋଟିଆସ୍ ଝରକା ଆଡ଼କୁ ଅନାଇ ମିଠା ମିଠା ପ୍ରେମର କଥା କହିବାରେ ଲାଗିଥାଏ ।

ଜୁଲିଆର ମୁଣ୍ଡ କେମିତି ଗୋଳମାଳ ହୋଇଯାଏ । ଯାହାର କଥାରେ ବିଶ୍ୱାସ କରି, ସେ ନିଜର ଘରଦ୍ୱାର, ବାପା ମା, ସୁଖସ୍ୱାଚ୍ଛନ୍ଦ୍ୟ ସବୁକୁ ପାଦରେ ଆଡ଼େଇ ଦେଇ, ପଥର

ବିପଦକୁ ଖାତିର ନ କରି ଏଇ ଏତେ ବାଟ ପାଗଳ ଭଳି ଧାଇଁ ଆସିଛି, ସେ କ'ଣ ଏଇଆ ଦେଖିବାକୁ ! ବିଶ୍ୱାସଘାତକ, ନୀଚ, ଶଠ !

ନିଜର କାନ ଆଉ ଆଖିକୁ ଜୁଲିଆ ତଥାପି ବିଶ୍ୱାସ କରିପାରୁ ନ ଥାଏ । ତଥାପି କୌଣସିମତେ ନିଜକୁ ସମ୍ଭାଳି ନେଇ ସେ ସରାଇଖାନାର ମାଲିକକୁ ପଚାରେ, 'ଏ ପ୍ରାସାଦ କାହାର ? ଝରକା ଧାରରେ ଠିଆ ହୋଇଥିଲା ଯେଉଁ ଝିଅଟି, ସେ କିଏ ?'

ମାଲିକ ଉତ୍ତର ଦିଏ...'ଏ ଘର ହେଉଛି, ମିଲନ୍‌ର ଡିଉକ୍‌ଙ୍କର । ଆଉ ଏଇ ଯେ ଝିଅଟି ସେଠି ଠିଆ ହୋଇଛନ୍ତି, ସେ ହେଉଛନ୍ତି ତାଙ୍କର ଏକମାତ୍ର କନ୍ୟା ଲେଡି ସିଲଭିୟା ।'

ଏଥର ଶୁଣାଗଲା ସିଲଭିୟାର ସ୍ପଷ୍ଟ କଣ୍ଠ । ଝରକା ଧାରକୁ ଲାଗିଆସି ସେ ଭର୍ତ୍ସନା ସ୍ୱରରେ ପ୍ରୋଟିଆସ୍‌କୁ କହୁଥାଏ, ''ଆପଣ କାହିଁକି ବୃଥାରେ ଏଠାକୁ ଆସି ଗୀତ ଗାଉଛନ୍ତି ? ମୁଁ ଜାଣେ, ଆପଣ ଅନ୍ୟାୟ ଭାବରେ ଆପଣଙ୍କର ପ୍ରେମିକାକୁ ତ୍ୟାଗ କରିଛନ୍ତି । ନିଜର ଅନ୍ତରଙ୍ଗ ବନ୍ଧୁ ପ୍ରତି ଆପଣ ଯେଉଁ ବିଶ୍ୱାସଘାତକତା କରିଛନ୍ତି, ତାହା ଜଘନ୍ୟ । ଆପଣ ପ୍ରକୃତରେ ହେଉଛନ୍ତି ଜଣେ ଅକୃତଜ୍ଞ ମଣିଷ । ଆପଣଙ୍କ ସହିତ ପଦେ ବି କଥା କହିବାର ପ୍ରବୃତ୍ତି ମୋର ନାହିଁ ।'

ଏତିକି କହି ସିଲଭିୟା ଝରକା ଧାରରୁ ଭିତରକୁ ଚାଲିଯାଏ । ଜଣାଇ ଦେଇଯାଏ ଯେ, ପ୍ରୋଟିଆସ୍‌ର ଏଇ ସବୁ ଗୀତ ବା କୃତ୍ରିମ ପ୍ରେମର ମୁଖସ୍ଥ ବୋଲି କିଛି ଶୁଣିବାକୁ ତା'ର ବିନ୍ଦୁମାତ୍ର ଆଗ୍ରହ ନାହିଁ । ସେ ଏବେବି ନିର୍ବାସିତ ଭାଲେଣ୍ଟାଇନ୍ ପ୍ରତି ବିଶ୍ୱସ୍ତ । ପ୍ରୋଟିଆସ୍‌ର ଏଇ ଘୃଣ୍ୟ ଆଚରଣକୁ ସେ ଆଦୌ ପ୍ରଶ୍ରୟ ଦେବାକୁ ଚାହେଁନା...

ଜୁଲିଆର ଆଖି ଆଗରେ ଏଇ ନାଟକ ଅଭିନୀତ ହୋଇଗଲା । ସବୁ ଦେଖିଶୁଣି ସେ ଯେମିତି ପଥର ହୋଇଯାଏ । ପ୍ରୋଟିଆସ୍ ତାକୁ ପ୍ରତାରିତ କରିଛି । ସେ କିନ୍ତୁ ତଥାପି ତା'ଛଡ଼ା ଅନ୍ୟ କିଛି ଭାବିପାରୁ ନାହିଁ କାହିଁକି ?

ସେ ସେଇଠି ରହି ଏଇ କାହାଣୀର ଶେଷ ଦେଖିବାକୁ ଚାହେଁ । ଦିନେ ଶୁଣିବାକୁ ପାଏ, ପ୍ରୋଟିଆସ୍‌ର ଚାକରଟା ତାକୁ ଛାଡ଼ି ଚାଲିଯାଇଛି । ସରାଇଖାନାର ମାଲିକ ସାହାଯ୍ୟରେ ସେ ସେଇ ଚାକିରିଟା ଯୋଗାଡ଼ କରିନିଏ । ଶେଷରେ ତାକୁ ପ୍ରୋଟିଆସ୍‌ର ଚାକର ହେବାକୁ ପଡ଼ିଲା ? ଦେଖାଯାଉ, ଭାଗ୍ୟ ତାକୁ ଶେଷ ପର୍ଯ୍ୟନ୍ତ କୁଆଡ଼େ ନେଇଯାଉଛି ।

ପ୍ରୋଟିଆସ୍ ତାକୁ ଚିହ୍ନିପାରେ ନାହିଁ । ଭାଗ୍ୟର ବିଡ଼ମ୍ବନା ଆଉ କାହାକୁ କହିବା ? ପ୍ରୋଟିଆସ୍‌ର ପ୍ରେମଚିଠି ଆଉ ଉପହାର ନେଇ ଜୁଲିଆକୁ ହିଁ ସିଲଭିୟା ପାଖକୁ ଯିବାକୁ ପଡ଼େ । ଉପହାର ସହିତ ସିଲଭିୟା ପାଖକୁ ପଠାଯାଏ, ଜୁଲିଆ ପ୍ରଦତ୍ତ ସେଇ ମୁଦିଟିକୁ ଯାହା ବିଦାୟ ସମୟରେ ଜୁଲିଆ ତାକୁ ଦେଇଥିଲା ।

ଜୁଲିଆ ବହୁ କଷ୍ଟରେ ନିଜକୁ ତଥାପି ସମ୍ଭାଳି ରଖିଥାଏ । ଏଇ ମୁଦି, ଜୁଲିଆର ବହୁ ଆନନ୍ଦ ଓ ବିଷାଦ ମୁହୂର୍ତ୍ତର ଅନ୍ତରଙ୍ଗ ସାକ୍ଷୀ । ଏହା ସହିତ ବିତିଯାଇଛି ତା'ର କୈଶୋର ଆଉ ଆଦ୍ୟ ତାରୁଣ୍ୟର ବହୁ ସ୍ମରଣୀୟ ଲଗ୍ନ । ପୁଣି ସେଇ ରୋମାଞ୍ଚକର ଲଗ୍ନ, ଯେଉଁଦିନ କେତେ ଆନନ୍ଦରେ ଆଉ ପୁଣି ବହୁ ଦୁଃଖରେ ସେ ଏଇଟିକୁ ନିଜ ଆଙ୍ଗୁଳିରୁ ବାହାର କରି ତା'ର ପ୍ରଣୟାସ୍ପଦର ଆଙ୍ଗୁଳିରେ ପିନ୍ଧାଇ ଦେଇଥିଲା । ଜୀବନ ଥିବା ପର୍ଯ୍ୟନ୍ତ ତାକୁ ସେଠାରୁ ବାହାର ନ କରିବାକୁ କରୁଣ କଣ୍ଠରେ ନିବେଦନ କରିଥିଲା । କେତେ ନିର୍ଜନ ମୁହୂର୍ତ୍ତ ତା'ପରେ ଆଙ୍ଗୁଳିର ସେଇ ଶୂନ୍ୟ ସ୍ଥାନକୁ ଚାହିଁ ତା' ଆଖି ଲୁହରେ ଭରିଯାଇଛି । ପୁଣି ଭବିଷ୍ୟତ୍‌ର ଶିହରିତ ମୁହୂର୍ତ୍ତର କଳ୍ପନାରେ ସ୍ୱପ୍ନ ପରି କଟିଯାଇଛି କେତେଦିନ । ଆଜି ସେଇ ବହୁ ସୁଖଦୁଃଖର ସାଥି ନିର୍ଜୀବ ବସ୍ତୁଟିକୁ ଦେଖି ତା'ର ଛାତି ଫାଟି ଯାଉଥିଲା ।

ତଥାପି ନିଜକୁ ସ୍ୱାଭାବିକ କରି ସେ ସିଲଭିୟା ହାତକୁ ସେଇ ମୁଦିଟିକୁ ବଢ଼ାଇ ଦେଲା । ସିଲଭିୟା କିନ୍ତୁ ସେଇ ମୁଦିକୁ ଗ୍ରହଣ ନ କରି ଫେରାଇ ଦେଲା । ଜୁଲିଆର ହୃଦୟ ଆନନ୍ଦରେ ନାଚି ଉଠିଲା । ସେ ସିଲଭିୟା ସହିତ ପ୍ରୋଟିଆସ୍‌ର ପ୍ରଥମ ପ୍ରେମିକା ସମ୍ପର୍କରେ କଥାବାର୍ତ୍ତା ଆରମ୍ଭ କରିଦେଲା ।

ସେବାଷ୍ଟିଆନ୍‌ରୂପୀ ଜୁଲିଆ କହିଲା.. ମୁଁ ଜୁଲିଆକୁ ଭଲ ଭାବରେ ଜାଣେ । କହିବାକୁ ଗଲେ ନିଜକୁ ଯେତେ ଜାଣିଛି, ଜୁଲିଆକୁ ତା'ଠାରୁ କିଛି କମ୍ ଜାଣି ନାହିଁ । ଜୁଲିଆ ଏବେ ବି ଏ ସବୁ ବିଷୟରେ କିଛି ଜାଣେ ନାହିଁ, ଆଉ ମୋର ମାଲିକ ପ୍ରୋଷ୍ଟିଆସ୍‌କୁ ଆଗ ଭଳି ଭଲ ପାଉଛି । ତା'ର ଭଲ ପାଇବାରେ ଯେକୌଣସି ଫାଙ୍କ ନାହିଁ, ଏ କଥା ମୁଁ ଜୋର୍ ଦେଇ କହିପାରେ । ପ୍ରେମିକର ଏଇ ନିର୍ମମ ପ୍ରତାରଣାର କଥା ଜାଣିଲେ ସେ ନିଶ୍ଚୟ ଖୁବ୍ ଦୁଃଖ ପାଇବ ।

ସମବେଦନା ଦେଖାଇ ସିଲଭିୟା କହେ, ତା'ତ ହେବାର କଥା ।

ଏହାପରେ ଦ୍ୱିଅର୍ଥକ ଭାଷାରେ ଜୁଲିଆ କହେ ଜୁଲିଆର ଉଚ୍ଚତା ଠିକ୍ ମୋରି ଭଳି ହେବ । ଦେହର ରଙ୍ଗ, ଆଖି ଡୋଳାର ବର୍ଣ୍ଣ ଏବଂ ବାଳ ମଧ୍ୟ ମୋଠୁଁ ଅଲଗା ପ୍ରକାରର ନୁହେଁ ।

ପୁରୁଷ ବେଶରେ ସଜ୍ଜିତା ଜୁଲିଆକୁ ଗୋଟିଏ ସୁଦର୍ଶନ ତରୁଣ ଭଳି ଦେଖାଯାଉଥିଲା । ତା' ଆଡ଼କୁ ଅନାଇ ସିଲଭିୟା ଦୀର୍ଘନିଃଶ୍ୱାସ ପକାଏ । ଆହା, ଏଇଭଳି ସୁଦର୍ଶନ ତରୁଣ ଭଳି ଦେଖାଯାଉଥିବା ସୁଦର୍ଶନାକୁ ତା'ର ପ୍ରେମିକ ତ୍ୟାଗ କରିଦେଲା ! ପ୍ରୋଟିଆସ୍ ଗୋଟିଏ ନରାଧମ ବ୍ୟକ୍ତି ବୋଲି ତା'ର ଧାରଣା ହୋଇଥିଲା ।

ମୁଦିଟିକୁ ସିଲଭିୟାକୁ ଆଉ ଥରେ ଦେଖାଇ ତାକୁ ଗ୍ରହଣ କରିବାକୁ ଜୁଲିଆ ଅନୁରୋଧ କରେ ।

ସିଲଭିୟା କହେ - ଏ ମୁଦି ମୁଁ କେବେବି ନେଇପାରିବି ନାହିଁ । ପ୍ରୋଟିଆସ୍ ମୋ ପାଖକୁ ମୁଦି ପଠାଇଛି ! କି ଲଜ୍ଜାର କଥା ! ତା' ପାଖରୁ ଶୁଣିଛି ଯେ, ପ୍ରକୃତରେ ଏଇ ମୁଦି ଜୁଲିଆ ହିଁ ତା' ହାତରେ ପିନ୍ଧାଇ ଦେଇଥିଲା । ଏଇଟି ତ ତା'ର ପ୍ରେମର ସ୍ମୃତିଚିହ୍ନ ! ଛି ଛି..ଏମିତି ଗୋଟିଏ ନିରୀହ ଝିଅର ପ୍ରଥମ ପ୍ରେମର ଅମର୍ଯ୍ୟାଦା ଯିଏ କରିପାରେ, ସେ ତ ମଣିଷ ନୁହେଁ, ହୃଦୟହୀନ ପଶୁଟାଏ । ତା'ଠୁ ମୁଦି ନେବି ମୁଁ ?

ସେବାଷ୍ଟିଆନ୍‌ବେଶୀ ଜୁଲିଆ ଆଡ଼େ ଅନାଇ ସିଲଭିୟା ପୁଣି କହେ- ତମ ଉପରେ ମୁଁ ସନ୍ତୁଷ୍ଟ । ତମେ ବୁଝିପାରିଛ ଯେ, ଜୁଲିଆ ପ୍ରତି ଘୋର ଅବିଚାର କରାଯାଇଛି । ଏଇ ଟଙ୍କାଥଳିଟି ନିଅ । ଜୁଲିଆ ପାଇଁ ମୁଁ ତମକୁ ଏଇଟା ଦେଉଛି ।

ଜୁଲିଆ ପ୍ରଥମେ ଭାବିଥିଲା ଯେ, ପ୍ରେମରେ ଏଇ ସିଲଭିୟା ହିଁ ହେଉଛି ତା'ର ପ୍ରତିଦ୍ୱନ୍ଦ୍ୱିନୀ । ଏବେ ତା'ର କଥା ଶୁଣି ମନେହେଉଛି, ପ୍ରୋଟିଆସ୍‌କୁ ଭଲ ପାଇବା ତ ଦୂରର କଥା, ସେ ତାକୁ ଆଡ଼ ଆଖିରେ ଚାହିଁବାକୁ ବି ପ୍ରସ୍ତୁତ ନୁହେଁ ।

ଜୁଲିଆର ହତାଶ ମନରେ ପୁଣି ଆଶାର ଶିଖାଟିଏ ଜଳିଉଠିଲା ।

॥ ୭ ॥

ମିଲାନ୍‌ରୁ ଏଭଳି ଅପ୍ରତ୍ୟାଶିତ ଭାବରେ ନିର୍ବାସିତ ହେବା ପରେ ଭାଲେଣ୍ଟାଇନ୍ ସମ୍ପୂର୍ଣ୍ଣ ଭାଙ୍ଗିପଡ଼ିଲା । ସିଲଭିୟାକୁ ନେଇ କେତେ ସ୍ୱପ୍ନ ସେ ଦେଖିଥିଲା । କେତେ ମଧୁର ମୁହୂର୍ତ୍ତର କଳ୍ପନାରେ ଶିହରିତ ହୋଇଥିଲା । ସେସବୁ ବ୍ୟର୍ଥ ହୋଇଗଲା ।

ଏଥର ସେ ଯିବ କୁଆଡ଼େ ? କେଉଁ ବାଟ ତା' ପାଇଁ ଠିକ୍ ?

ଗୋଟାଏ ସିଦ୍ଧାନ୍ତରେ ସେ କିନ୍ତୁ ଦୃଢ଼ ଥିଲା । ଏଭଳି ଅବସ୍ଥାରେ ସେ କେବେବି ଭେରୋନା ଫେରିବ ନାହିଁ । ଜଣେ ବ୍ୟର୍ଥ, ଅପମାନିତ ଏବଂ ନିର୍ବାସିତ ମଣିଷ ରୂପରେ ସେ ତା'ର ବାପାଙ୍କ ଆଗରେ ଠିଆ ହୋଇପାରିବ ନାହିଁ । ଯେଉଁ ଭେରୋନାରେ ସେ ଏକଦା ମୁଣ୍ଡ ଉଠାଇ, ଛାତି ଫୁଲାଇ ଘୁରି ବୁଲୁଥିଲା, ସେଠି ସେ ମୁଣ୍ଡ ନୁଆଁଇ, ମୁହଁ ଛପାଇ କେବେବି ଶାନ୍ତିରେ ରହିପାରିବ ନାହିଁ ।

ଭବିଷ୍ୟତ୍‌ରେ ଯଦି କେବେ ସୁଦିନ ଆସେ, ତେବେ ଦେଖାଯିବ ।

ହଠାତ୍ ବିଦ୍ୟୁତ୍ ର ଚମକ ଭଳି ଗୋଟିଏ ଚିନ୍ତା ତା' ମନରେ ଖେଳିଯାଏ । ମଣ୍ଟୁଆକୁ ଗଲେ କେମିତି ହେବ ? ସେଇ ମଣ୍ଟୁଆ, ଯେଉଁଠି ସେ ତା'ର ପ୍ରେମାସ୍ପଦାକୁ ନେଇ ସୁଖର ଏକ ନୀଡ଼ ରଚନା କରିବ ବୋଲି ଭାବିଥିଲା, ସେଇଠି ଯାଇ ନିଜର ଏଇ ଅବସାଦର ମୁହୂର୍ତ୍ତଗୁଡ଼ିକ କଟାଇଲେ ସେ କ'ଣ ଶାନ୍ତି ପାଇବ ?

ମିଲନ୍‌ରୁ ବାହାରି ଯାଇ ସେ ପହଞ୍ଚିଯାଏ ଏକ ନିର୍ଜନ ଅରଣ୍ୟରେ । ସେ ଅରଣ୍ୟ ଅବଶ୍ୟ ମିଲନ୍‌ରୁ ବେଶି ଦୂର ନୁହେଁ । ମିଲନ୍‌ରୁ ବେଶି ଦୂରକୁ ଚାଲିଯିବାକୁ ବି ସେ ଚାହୁଁ ନ ଥିଲା । ସେଇଠି ସେ ଛାଡ଼ି ଆସିଛି ସଂସାରର ସବୁଠାରୁ ମୂଲ୍ୟବାନ୍ ସମ୍ପଦକୁ । ତାକୁ ଛାଡ଼ିଦେଇ ସେ ଦୂରକୁ ଚାଲିଯିବ କେମିତି ?

ତା'ର ଦୁର୍ଭାଗ୍ୟ - ସେଇ ବଣ ଭିତରେ ଡକାୟତ ଦଳଙ୍କ ହାବୁଡ଼ରେ ସେ ପଡ଼ିଗଲା । ସେମାନେ କହିଲେ - 'ଟଙ୍କାପଇସା ଯାହା ପାଖରେ ଅଛି, ଭଲରେ ଦେଇ ଦେ - ନଚେତ୍ ପ୍ରାଣ ଗଲା ବୋଲି ଜାଣ ।'

କରୁଣ କଣ୍ଠରେ ଭାଲେଣ୍ଟାଇନ୍ ଉତ୍ତର ଦେଲା - ମୁଁ ଜଣେ ଦୁର୍ଭାଗା ଲୋକ ଭାଇ । ରାଜ୍ୟରୁ ନିର୍ବାସିତ । ଧନସମ୍ପତ୍ତି ମୋର କିଛି ନାହିଁ । ଏଇ ପିନ୍ଧିବା ଲୁଗା ଛଡ଼ା ମୋ ପାଖରେ ଯଦି କିଛି ଥାଏ, ତେବେ ତମେମାନେ ତାହା ସ୍ୱଚ୍ଛନ୍ଦରେ ନେଇପାର ।

ଡକାୟତମାନେ ବୁଝିଲେ ଇଏ ପ୍ରକୃତରେ ଜଣେ ଭାଗ୍ୟହତ ମଣିଷ । ସେମାନେ ଭାଲେଣ୍ଟାଇନ୍‌ର ଅଭିଜାତ ଭାବଭଙ୍ଗୀ ଏବଂ କଥାବାର୍ତ୍ତା ଶୁଣି ଓ ଆଚାର ବ୍ୟବହାର ଦେଖି ଆହୁରି ବୁଝିଲେ ଯେ, ଏ ନିଶ୍ଚୟ କୌଣସି ସାମନ୍ତ ବଂଶର ସନ୍ତାନ । ବିଚରା ବିପଦରେ ପଡ଼ି ଯାଇଛି । ସେମାନେ କହିଲେ - ତେବେ ତମେ ଆମ ସହିତ ରହିଯାଅ । ତମକୁ ଆମେ ଆମର ସର୍ଦ୍ଦାର ଭାବେ ଗ୍ରହଣ କରିନେବୁ । ତମ ଆଦେଶ ମାନି ଚଳିବୁ । ଯଦି ତମେ ଆମର ଏଇ ପ୍ରସ୍ତାବ ନ ମାନ ତେବେ ତମକୁ ଏଇଠି ହତ୍ୟା କରି ଚାଲିଯିବୁ ।'

ନିଜକୁ ନେଇ ଆଉ କିଛି ଭାବିବା ଭାଲେଣ୍ଟାଇନ୍ ଛାଡ଼ି ଦେଇଥିଲା । ସୁଖର ସନ୍ଧାନରେ ସେ ମିଲନ୍ ଆସିଥିଲା । ସେଠୁ ଯାହା ମିଳିଲା, ତା' ତ ଏଇ ଅରଣ୍ୟବାସ । ଦେଖାଯାଉ, ଏଥର ଭାଗ୍ୟ ତାକୁ କୁଆଡ଼େ ନେଇଯାଉଛି ! ସେ କହିଲା - ମୁଁ ତମ ସହିତ ରହିବାକୁ ରାଜି ଅଛି । ତମମାନଙ୍କର ନେତୃତ୍ୱ ନେବାକୁ ମଧ ମୋର ଅନିଚ୍ଛା ନାହିଁ । ତେବେ ମୋର ଦୁଇଟି ସର୍ତ୍ତ ଅଛି ।'

ଜଣେ ଦସ୍ୟୁ ପଚାରିଲା - କିଭଳି ସର୍ତ୍ତ ?

-ପ୍ରଥମ ସର୍ତ୍ତ ହେଉଛି, ତମେମାନେ କୌଣସି ନାରୀ ଉପରେ ଅତ୍ୟାଚାର କରିପାରିବ ନାହିଁ । ଦ୍ୱିତୀୟ କଥା ହେଲା, କୌଣସି ଗରିବ ଲୋକକୁ ଲୁଟିବ ନାହିଁ । ଭାଲେଣ୍ଟାଇନ୍ ଜଣାଇଦେଲା ।

ଦସ୍ୟୁମାନେ ଏକସ୍ୱରରେ କହିଲେ... ଏ ସର୍ତ୍ତ ମାନିବାକୁ ଆମେ ରାଜି ।

ତାହାହେଲେ ତମ କଥା ମାନିବାକୁ ମୁଁ ବି ରାଜି । ଭାଲେଣ୍ଟାଇନ୍ କହିଲା ।

ଏହିଭଳି ଭାବରେ ସେ ରବିନ୍‌ହୁଡ୍ ଭଳି ଏକ ଦସ୍ୟୁ ଦଳପତି ହୋଇଗଲା । ତା'ର ନୂଆ ନାମ ହେଲା 'ଆଉ-ଟ୍‌ଲ' । ଯଦି କୌଣସି ବ୍ୟକ୍ତି ସରକାରୀ ଆଇନ୍ କାନୁନ୍ ବିରୋଧରେ ବିଦ୍ରୋହ ଘୋଷଣା କରେ, ତେବେ ତାକୁ ହିଁ ଏଇ ନାମଟି ଦିଆଯାଏ ।

ଏହିଭଳି ଭାବରେ ସେ ଯେତେବେଳେ ଜଙ୍ଗଲ ମଧ୍ୟରେ ବାସ କରୁଥିଲା ତା' ସହିତ ଆଶ୍ଚର୍ଯ୍ୟଜନକ ଭାବରେ ସିଲଭିୟାର ଦେଖା ହୋଇଯାଏ ।

ବ୍ୟାପାରଟା ଘଟେ ଏଇଭଳି ।

ମିଲନର ଡିଉକ୍ ତାଙ୍କର ମନୋନୀତ ପାତ୍ର ଥୁରିଓ ସହିତ ସିଲଭିୟାର ବିବାହ ଦେବା ନିମନ୍ତେ ବ୍ୟସ୍ତ ହୋଇପଡ଼ି ତା' ଉପରେ ଚାପ ଦିଅନ୍ତି । ତାଙ୍କର ଧାରଣା ଭାଲେଣ୍ଟାଇନ୍ ମିଲନ୍‌ରୁ ନିର୍ବାସିତ ହେବା ପରେ ସିଲଭିୟା ଧୀରେ ଧୀରେ ତା' କଥା ଭୁଲିଯାଇଛି ଏବଂ ଏହି କାରଣରୁ ବର୍ତ୍ତମାନ ପ୍ରସ୍ତାବିତ ପାତ୍ର ସହିତ ବିବାହରେ ତା'ର କୌଣସି ଆପତ୍ତି ରହିବ ନାହିଁ ।

ମାତ୍ର ଡିଉକ୍‌ଙ୍କର ଏହି ଧାରଣା ଯେ କେତେ ଭୁଲ୍, ତାହା ଅଚିରେ ପ୍ରମାଣିତ ହୋଇଯାଏ । ବାରମ୍ବାର ଏଇ ବିବାହ ନିମନ୍ତେ ଚାପ ସୃଷ୍ଟିରୁ ସିଲଭିୟା ଅତିଷ୍ଠ ହୋଇପଡ଼େ ଏବଂ ମିଲନ୍ ତ୍ୟାଗ କରି ଚାଲିଯିବାର ସିଦ୍ଧାନ୍ତ ନିଏ । ସେ ଠିକ୍ କରେ ସେ ଯେମିତି ହେଲେ ଭାଲେଣ୍ଟାଇନ୍‌କୁ ଖୋଜି ବାହାର କରିବ ଏବଂ ଏଥିପାଇଁ ସେ ପ୍ରଥମେ ମଣ୍ଟୁଆ ଯିବାକୁ ସ୍ଥିର କରେ ।

ଅବଶ୍ୟ ମଣ୍ଟୁଆ ଯିବା ପାଇଁ ଭାଲେଣ୍ଟାଇନ୍ ମଧ ଭାବିଥିଲା । ତେବେ ତା' ପୂର୍ବରୁ ସେ ଦସ୍ୟୁଦଳ ହାତରେ ପଡ଼ିଯାଏ । ବର୍ତ୍ତମାନ ସେ ସେଇମାନଙ୍କର ଦଳପତି ହିସାବରେ ଜଙ୍ଗଲରେ ରହୁଛି । ତେବେ ଦସ୍ୟୁମାନଙ୍କର ଲୁଟ୍ ପାଟ୍ ସମୟରେ ଉପସ୍ଥିତ ରୁହେ ନାହିଁ । ବରଂ ନିଜର ପ୍ରଭାବ ପକାଇ ସେ ସେମାନଙ୍କର ସ୍ୱେଚ୍ଛାଚାରକୁ ବହୁ ପରିମାଣରେ ନିୟନ୍ତ୍ରଣରେ ରଖିଥାଏ । କାର୍ଯ୍ୟ ଉପଲକ୍ଷରେ ଅରଣ୍ୟ ପଥରେ ମଧ ଅନେକ ସମୟରେ ଲୋକମାନଙ୍କୁ ଗତାଗତ କରିବାକୁ ପଡ଼ିଥାଏ । ଦଳପତି ଭାବେ ଭାଲେଣ୍ଟାଇନ୍ ସେହି ସମୟରେ ନିଜର ଅନୁଚରମାନଙ୍କ ଉପରେ କଡ଼ା ନଜର ରଖେ । ଫଳରେ ସେମାନେ ଏହିଭଳି ନିରୀହ ପଥଚାରୀମାନଙ୍କ ଉପରେ କୌଣସି ଜୋର୍ ଜୁଲୁମ୍ କରିପାରନ୍ତି ନାହିଁ । ତଥାପି ଯେଉଁମାନେ ଦସ୍ୟୁମାନଙ୍କ ହାତରେ ଧରା ପଡ଼ନ୍ତି, ଭାଲେଣ୍ଟାଇନ୍ ସେମାନଙ୍କୁ ଯଥାସାଧ ସାହାଯ୍ୟ କରେ । ସହାନୁଭୂତି ଦେଖାଇ ସେମାନଙ୍କର ମୁକ୍ତିର ବ୍ୟବସ୍ଥା କରିଦିଏ ଏବଂ ନିରାପଦରେ ଚାଲିଯିବାକୁ ଦିଏ ।

ଜଣେ ଦୟାଳୁ ବୃଦ୍ଧଙ୍କ ସାହାଯ୍ୟରେ ସିଲଭିୟା ମିଲନ୍ ରାଜପ୍ରାସାଦରୁ ବାହାରି ଆସିବାର ସୁଯୋଗ ପାଇଯାଏ । ଏହାଙ୍କର ନାମ ହେଉଛି ଏଗଲାମୁର । ସିଲଭିୟା ତାଙ୍କୁ ନିଜର ସାଥି ହିସାବରେ ଗ୍ରହଣ କରେ । ଅପରିଚିତ ପଥରେ ଏକା ଏକା ଯିବା ଅପେକ୍ଷା ଜଣେ ସଙ୍ଗୀ

ଥିବା ଭଲ । ବଣବାଟ ଦେଇ ତାକୁ ମଣ୍ଟୁଆ ଯିବାକୁ ହେବ । ସେଇ ବଣ ହେଉଛି ବର୍ତ୍ତମାନ ଦସ୍ୟୁଦଳପତି ଭାଲେଣ୍ଟାଇନ୍‌ର ବିହାର ସ୍ଥଳୀ ।

ସିଲଭିୟା ଆଉ ତା'ର ସାଥି ବଣବାଟ ଦେଇ ଆଗେଇ ଚାଲନ୍ତି । ମାତ୍ର କିଛିବାଟ ଗଲା ପରେ ଜଣେ ଦସ୍ୟୁ ଆସି ସିଲଭିୟାକୁ ଧରେ । ଏଗ୍‌ଲାମୁର ମଧ ଧରା ପଡ଼ିଥାନ୍ତା । ତେବେ ସେ କୌଣସି ମତେ ପଳାଇଯାଇ ଆତ୍ମରକ୍ଷା କରେ ।

ଯେଉଁ ଦସ୍ୟୁ ସିଲଭିୟାକୁ ବନ୍ଦୀ କରେ, ସେ ତା'ର ଦୟନୀୟ ଅବସ୍ଥା ଦେଖି ତାକୁ ସାନ୍ତ୍ୱନା ଦିଏ । କହେ, 'ଆପଣ ଭୟ କରନ୍ତୁ ନାହିଁ । ମୁଁ ଆପଣଙ୍କର କୌଣସି କ୍ଷତି କରିବି ନାହିଁ । ଆପଣଙ୍କୁ ନେଇଯିବି ଆମର ଦଳପତିଙ୍କ ପାଖକୁ । ସେ ଖୁବ୍ ଦୟାଳୁ । ସେ ପାଖରେ ଏକ ଗୁମ୍ଫାରେ ରହନ୍ତି । ନାରୀକୁ ସମ୍ମାନ ଏବଂ ମର୍ଯ୍ୟାଦା ଦେବାରେ ତାଙ୍କର ତୁଳନା ନାହିଁ । ଆପଣ ନିର୍ଭୟରେ ମୋ ସହିତ ଆସନ୍ତୁ ।'

ଦସ୍ୟୁ ସର୍ଦ୍ଦାର ପାଖକୁ ତାକୁ ଯିବାକୁ ହେବ.. ଏଇ କଥା ଶୁଣିବା ମାତ୍ରେ ସିଲଭିୟା ଆତଙ୍କିତ ହୋଇପଡ଼େ । ସେ ଦୁଃଖର ସହିତ ଆତ୍ମଗତ ଭାବରେ କହିପକାଏ, ''ହାୟ ଭାଲେଣ୍ଟାଇନ୍, କେବଳ ତମ ପାଇଁ ଆଜି ମୋର ଏଇ ଦୁର୍ଦ୍ଦଶା !''

ଦସ୍ୟୁ ଯେତେବେଳେ ତାକୁ ଦଳପତିଙ୍କର ଗୁମ୍ଫା ଆଡ଼କୁ ନେଇଯାଉଥିଲା, ଠିକ୍ ସେତିକିବେଳେ ସେଠାରେ ପହଞ୍ଚିଯାଏ ପ୍ରୋଟିଆସ୍ ଆଉ ଦସ୍ୟୁକୁ ଏଭଳି ନ କରିବାକୁ କୁହେ । ସିଲଭିୟାର ପଳାୟନର ଖବର ପାଇ ସେ ତାକୁ ଖୋଜିବାକୁ ବାହାରିଥାଏ ଏବଂ ତା'ର ସୌଭାଗ୍ୟକୁ ଏଇ ଜଙ୍ଗଲରେ ସିଲଭିୟାର ଦେଖାପାଇଯାଏ । ତା' ସାଙ୍ଗରେ ଥାଏ ତରୁଣ - ଭୃତ୍ୟରୂପୀ ଜୁଲିଆ । କୌଣସିମତେ ସେ ସିଲଭିୟାକୁ ଦସ୍ୟୁ ହାତରୁ ଉଦ୍ଧାର କରେ ।

କୃତଜ୍ଞ ସିଲଭିୟା ଏଥିପାଇଁ ତାକୁ ଧନ୍ୟବାଦ ଦେବାକୁ ଯାଉଥିଲା ବେଳେ ପ୍ରୋଟିଆସ୍ ତାକୁ ଆଗଭଳି ପ୍ରେମ ନିବେଦନ କରିବାକୁ ଆରମ୍ଭ କରେ । ସେ କହିଚାଲେ..ସିଲଭିୟା, ମୁଁ ତମକୁ ଜୀବନ ଦେଇ ଭଲପାଏ । ତମକୁ ନ ପାଇଲେ ମୋର ଜୀବନ ବ୍ୟର୍ଥ ହୋଇଯିବ । ତମେ ରାଜି ହୋଇଗଲେ, ଆମର ବିବାହ ହୋଇପାରିବ । ସେବାଷ୍ଟିଆନ୍‌ବେଶୀ ଜୁଲିଆ ପାଖରେ ଠିଆ ହୋଇଥାଏ । ତା' ମନରେ ଗଭୀର ଉଦ୍‌ବେଗ । ତା'ର ଛାତି ଉପରେ ସତେ ଯେମିତି କିଏ କୌଣସି ଭାରୀ ବସ୍ତୁ ରଖିଦେଇଛି ! ସେ ଭାବୁଥାଏ, ଦସ୍ୟୁ ହାତରୁ ତାକୁ ଉଦ୍ଧାର କରିଥିବାରୁ କୃତଜ୍ଞ ସିଲଭିୟା ହୁଏତ ପ୍ରୋଟିଆସ୍‌କୁ ବିବାହ କରିବାକୁ ରାଜି ହୋଇଯାଇପାରେ । ତା' ପରେ କ'ଣ ହେବ ତା'ର ଅବସ୍ଥା ?

ହଠାତ୍ ଈଶ୍ୱର ପ୍ରେରିତ ଭଳି ସେଠାରେ ପ୍ରବେଶ କରେ ଭାଲେଣ୍ଟାଇନ୍ । ତାକୁ ଦେଖି ସମସ୍ତେ ଆଶ୍ଚର୍ଯ୍ୟ । ଇଏ ଏଠିକି କେମିତି ଆସିଲା ? କୋଉଠୁ ବା ଆସିଲା ?

ପ୍ରକୃତରେ ଭାଲେଣ୍ଟାଇନ୍ ଶୁଣିବାକୁ ପାଇଥିଲା ଯେ, ତା'ର ଜଣେ ଅନୁଚର କୌଣସି ଭଦ୍ରମହିଳାଙ୍କୁ ଧରିଛି । ସେ ତାଙ୍କୁ ସାନ୍ତ୍ୱନା ଏବଂ ମୁକ୍ତି ଦେବାକୁ ଇଛା କରି ସେଠାକୁ ଆସିଥାଏ । ସେ ଯେତେବେଳେ ପ୍ରବେଶ କରେ, ସେତେବେଳେ ପ୍ରୋଟିୟାସ୍‌ର ପ୍ରେମ ନିବେଦନ ପର୍ବ ଚାଲିଥାଏ । ଏଭଳି ଏକ ସମୟରେ ହଠାତ୍ ଭାଲେଣ୍ଟାଇନ୍ କୁ ଦେଖି ସେ ସଙ୍କୁଚିତ ହୋଇଯାଏ । ତା' ମନର କେଉଁ କୋଣରେ ଅପରାଧ ବୋଧ ଜାଗିଉଠେ । କ୍ରମେ ତାହା ପରିଣତ ହୁଏ ତୀବ୍ର ଅନୁଶୋଚନାରେ ।

ଭାଲେଣ୍ଟାଇନ୍ ଆଡ଼କୁ ଅନାଇ ସେ ଭାବେ— ଏଇ ତା'ର ଅନ୍ତରଙ୍ଗ ବନ୍ଧୁ । ପିଲାଦିନରୁ ସେମାନେ ଏକାଠି ବଢ଼ିଉଠିଛନ୍ତି । ଜଣକର ସୁଖରେ ଅନ୍ୟ ଜଣେ ହସିଛି । ଜଣେ ପୋଛି ନେଇଛି ଅନ୍ୟ ଜଣକର ଆଖିର ଲୁହ । ଯେତେବେଳେ ଦରକାର ହୋଇଛି, ଏଇ ବନ୍ଧୁ ସେତେବେଳେ ଢାଲ ହୋଇ ତାକୁ ସୁରକ୍ଷା ଦେଇଛି । ବାଧାବିପଦ ଗଣି ନାହିଁ । ଝଡ଼ବତାସ ମାନି ନାହିଁ । ସବୁବେଳେ ଆସି ତା' ପାଖରେ ଠିଆ ହୋଇଛି । ଅଥଚ ଆଜି ? ନିଜର ସାମାନ୍ୟ ସୁଖ ପାଇଁ ସେ ତା' ସହିତ ପ୍ରତାରଣା କରିଛି । ଜାଣିଶୁଣି ତାକୁ ବିପଦ ମୁହଁକୁ ଠେଲି ଦେଇଛି ।

ତେବେବି ସେ କ'ଣ ଆନନ୍ଦ ପାଇଛି ? ପ୍ରୋଟିଆସ୍‌ର ମନେହୁଏ - ଜୀବନ ହେଉଛି ଆନନ୍ଦର ସନ୍ଧାନରେ ଏକ ଅସରନ୍ତି ଯାତ୍ରା, ଯାହା ସବୁବେଳେ ଶେଷ ହୁଏ ବେଦନାର ଅତଳାନ୍ତ ପାରାବାର ମଧ୍ୟରେ ।

କିଏ ଅବା କେବେ ଏଥିରୁ ମୁକ୍ତି ପାଇଛି ? ତା'ର ମନ ତୀବ୍ର ଅନୁଶୋଚନାରେ ଭରିଯାଏ ।

ବନ୍ଧୁ ସହ ଯେଉଁ ଅନ୍ୟାୟ ସେ କରିଛି, ସେଥିପାଇଁ ତା'ର ପ୍ରାୟଶ୍ଚିତ୍ତ ଲୋଡ଼ା । ନିଃସର୍ତ୍ତ କ୍ଷମା ପ୍ରାର୍ଥନା ହେଉଛି ତା'ର ଏକମାତ୍ର ପ୍ରତିକାର । ଅବଶ୍ୟ ସେ ଯେଉଁ ଅପରାଧ କରିଛି, କ୍ଷମାରେ ସେଇ କଳଙ୍କର ଦାଗ ଦୂର ହେବ ନାହିଁ । ଅନ୍ତତଃ କିଛି ହାଲୁକା ହୋଇଯିବ ନିଶ୍ଚୟ ।

ଭାଲେଣ୍ଟାଇନ୍ ଆଡ଼କୁ ଅନାଇ ନତମୁଖରେ ପ୍ରୋଟିଆସ୍ କହେ... ବନ୍ଧୁ, ମୁଁ ବିଶ୍ୱାସଘାତକ । ଜାଣେ, ତୋ'ର ଯେଉଁ କ୍ଷତି ମୁଁ କରିଛି, ସେଥିପାଇଁ କ୍ଷମା ନାହିଁ । ଶତ ଜନ୍ମ ଧରି ପ୍ରାୟଶ୍ଚିତ୍ତ କଲେ ମଧ୍ୟ ମୋତେ ସେଇ ମହାପାପରୁ ମୁକ୍ତି ମିଳିବ ନାହିଁ । ତଥାପି ତୋର ମହାନତାରେ ତୁ ମୋତେ କ୍ଷମା କରିଦେବୁ ବୋଲି ଭାବି ତୋ'ର ହାତଧରି କ୍ଷମା ମାଗୁଛି । ତୋ'ଠୁ ପଦେ ଶୁଣିପାରିଲେ ମୁଁ ଶାନ୍ତି ପାଇବି ।

ପ୍ରୋଟିଆସ୍‌ର ଆଖି ଛଳ ଛଳ ହୋଇଆସେ ।

ଭାଲେଣ୍ଟାଇନ୍ ନୀରବରେ ସବୁ ଶୁଣିଯାଏ । ଫିକା ହସ ହସି କହେ.. ଏଭଳି କୌଣସି ରାତି ନ ଥାଏ , ଯାହାର ସକାଳ ନାହିଁ । ସକଳ ପ୍ରକାର ପାପ ଧୋଇ ହୋଇଯାଏ , ଅନୁତାପର ପବିତ୍ର ବାରିରେ । ତୁ ତୋର ଭୁଲ୍ ବୁଝିପାରିଛୁ, ଏଇଥିରେ ମୋର ଖୁସି । କ୍ଷମା ଆଉ କ'ଣ ମାଗିବୁ ?

ପ୍ରୋଟିଆସ୍ ତଥାପି କହେ.. ନା ... ତୁ ଖାଲି କହ ଯେ, ତୁ ମୋତେ କ୍ଷମା କରିଚୁ.. ଭାଲେଣ୍ଟାଇନ୍ ଆଉ ପାଦେ ଆଗକୁ ବଢ଼ି କହେ – ମୁଁ ଖାଲି ତୋତେ କ୍ଷମା କରୁ ନାହିଁ, ସିଲଭିୟା ପାଇଁ ମୋର ଯେଉଁ ଦାବି ଥିଲା, ତାହା ମୁଁ ଉଠାଇ ନେଉଛି । ତୁ ସିଲଭିୟାକୁ ଗ୍ରହଣ କଲେ ମୁଁ ଖୁସି ହେବି ।'

ଭାଲେଣ୍ଟାଇନ୍ ଉଦାରତାର ଆତିଶଯ୍ୟ ଭିତରେ ସିଲଭିୟାର ମନକଥାଟିକୁ ସମ୍ପୂର୍ଣ୍ଣଭାବେ ଭୁଲିଗଲା । ଏଭଳି ବିବାହରେ ପ୍ରକୃତରେ ତା'ର ମତ ଅଛି କିମ୍ବା ନାହିଁ ସେ ବିଷୟରେ ଟିକିଏ ହେଲେ ଚିନ୍ତା କଲା ନାହିଁ ।

ପ୍ରୋଟିଆସ୍ ପାଖରେ ଠିଆ ହୋଇଥିଲା ପୁରୁଷବେଶୀ ଜୁଲିଆ । ଉତ୍କଣ୍ଠାରେ ତା'ର ଛାତି ଧଡ଼ପଡ଼ କରିବାକୁ ଲାଗିଲା । ତା'ର ଆଶଙ୍କା ହେଲା – ପ୍ରୋଟିଆସ୍ ଏଭଳି ଲୋଭନୀୟ ପ୍ରସ୍ତାବକୁ କେବେହେଲେ ହାତଛଡ଼ା କରିବ ନାହିଁ । ତା'ପରେ ସେ ରହିଯିବ ଜୀବନ ସାରା ଖାଲି କାନ୍ଦିବାକୁ । ଏମିତି ନାନା କଥା ଭାବୁ ଭାବୁ ତା'ର ମୁଣ୍ଡ ବୁଲାଇ ଦିଏ ଏବଂ ସେ ଅଜ୍ଞାନ ହୋଇ ଭୂଇଁରେ ଲୋଟିପଡ଼େ ।

ସମସ୍ତେ ବ୍ୟସ୍ତ ହୋଇ ପଡ଼ନ୍ତି ।

ସିଲଭିୟା ଏବେ ମଧ ବିଶ୍ୱାସ କରୁଥିଲା ଯେ, ଭାଲେଣ୍ଟାଇନ୍ କଦାପି ତାକୁ ଅନ୍ୟ ହାତରେ ଟେକି ଦେଇପାରିବ ନାହିଁ । ଭାଲେଣ୍ଟାଇନ୍‌ର ପ୍ରସ୍ତାବ ଶୁଣି ତେଣୁ ସେ ଆହତ ହେଲା । ତଥାପି ତା' ମନରେ କ୍ଷୀଣ ଆଶା ଥିଲା, ଭାଲେଣ୍ଟାଇନ୍ ହୁଏତ ତା'ର ମତ ବଦଳାଇବ । ବେଶି ସମୟ ଯାଏ ତାହାର ଏଇ ଔଦାର୍ଯ୍ୟ ତିଷ୍ଠି ରହିବ ନାହିଁ ।

ଇତି ମଧରେ ଜୁଲିଆର ଚେତା ଫେରିଆସେ । ଦୁର୍ବଳ କଣ୍ଠରେ ସେ କହେ, 'ମୋର ଗୋଟାଏ ଭୁଲ୍ ହୋଇଯାଇଛି । ମୋର ପ୍ରଭୁ ମୋତେ ଏଇ ମୁଦିଟା ଲେଡି ସିଲିଭିଆକୁ ଦେବାକୁ କହିଥିଲେ । ମୁଁ ଏ ପର୍ଯ୍ୟନ୍ତ ତାଙ୍କର ସେଇ ଆଦେଶ ପାଳନ କରିପାରି ନାହିଁ । '

ପ୍ରୋଟିଆସ୍ ମୁଦିଟାକୁ ଦେଖେ । କି ଆଶ୍ଚର୍ଯ୍ୟ ! ଏ ମୁଦିଟାକୁ ତ ସେ ନିଜେ ଜୁଲିଆ ଆଙ୍ଗୁଠିରେ ପିନ୍ଧାଇ ଦେଇଥିଲା । ସେବାଷ୍ଟିଆନ୍ ତାକୁ ପାଇଲା କେମିତି ?

ସେ ନିଜର ତରୁଣ ସେବକ ଆଡ଼କୁ ଅନାଇ କହିଲା ... ଏ କି ଧରଣର କଥା ? ଏ ମୁଦି ତ ଜୁଲିଆର । ତୁ ଏହାକୁ କୋଉଠୁ ପାଇଲୁ ?

ସେବାଷ୍ଟିଆନ୍‌ବେଶୀ ଜୁଲିଆ କହେ, 'ଜୁଲିଆ ନିଜେ ଏ ମୁଦି ମୋତେ ଦେଇଛି । ମୁଦିଟିକୁ ଧରି ସେ ଏଠାକୁ ଆସିଛି । '

ପ୍ରୋଟିଆସ୍ ଆଶ୍ଚର୍ଯ୍ୟ ହୋଇ ତା'ର ଏଇ ସେବକଟି ଆଡ଼କୁ ଚାହିଁ ରହେ । ତାକୁ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ନିରେଖି ଯାଏ । ହଠାତ୍ ସେ ଜୁଲିଆକୁ ଚିହ୍ନିପାରେ । ଏତେ ଦିନ ଧରି ସେବକ ରୂପରେ ଯିଏ ତା'ର ପାଖେ ପାଖେ ରହି ଅହରହ ତା'ର ସେବା କରିଛି, ସେଇ ଜୁଲିଆକୁ ସେ ଚିହ୍ନିପାରିଲା ନାହିଁ ! ଏଇ ତେବେ ତା'ର ପ୍ରେମ ! ତୀବ୍ର ଅନୁଶୋଚନାରେ ତା'ର ମନ ଭରିଯାଏ ।

ଜୁଲିଆ ତା'ର ପ୍ରେମରେ ଏକନିଷ୍ଠ । ପ୍ରୋଟିଆସ୍ ପ୍ରତି ତା'ର ପ୍ରେମରେ କୌଣସି ଖାଦ ନାହିଁ । ପ୍ରିୟଜନର ଦୀର୍ଘ ଅଦର୍ଶନ ସେ ସହ୍ୟ କରିପାରି ନାହିଁ । ଭଲପାଇବାର ତୀବ୍ର ଆକର୍ଷଣରେ ଛୁଟିଆସିଛି ସୁଦୂର ଭେରୋନାରୁ ମିଲନ୍ ପର୍ଯ୍ୟନ୍ତ । ସେ ତାକୁ ଏଇ ପ୍ରତିଦାନ ଦେଇଛି !

ପ୍ରଥମେ ସେ ଏତେଦିନର ବନ୍ଧୁ ସହିତ ଦ୍ରୋହ ଆଚରଣ କଲା । ତା'ପରେ ସେ ଭୁଲିଲା ଏକାନ୍ତ ଅନୁରକ୍ତ ପ୍ରଣୟାସ୍ପଦାକୁ, ଯିଏ ଏତେକଥା ପରେ ବି ତା'ର ଫେରିବା ବାଟକୁ ଅନାଇ ଅପେକ୍ଷା କରିଛି ।

ତା'ପରି ମହାପାତକୀ ଦୁନିଆରେ ଆଉ ଥିବେ ନା କ'ଣ !

ଧୀରେ ଧୀରେ ଜୁଲିଆ ପ୍ରତି ତା'ର ମନୋଭାବ ବଦଳିବାକୁ ଲାଗିଲା ଏବଂ ସେ ତାକୁ ପୂର୍ବ ଅପେକ୍ଷା ଆହୁରି ଅଧିକ ଭଲ ପାଇବାକୁ ଲାଗିଲା ।

ଭାଲେଣ୍ଟାଇନ୍ ଆଡ଼କୁ ଚାହିଁ ସେ କହିଲା ... ଲେଡି ସିଲଭିୟାଙ୍କ ଉପରେ ମୋର କୌଣସି ଦାବି ନାହିଁ । ମୁଁ ମୋର ଜୁଲିଆ ପାଖକୁ ଫେରିଯିବାକୁ ଚାହେଁ । ତୁ ମଧ୍ୟ ସିଲଭିୟାଙ୍କୁ ଗ୍ରହଣ କର । ସେ ଦୁଇଜଣ ଆମ ଲାଗି ଅନେକ କଷ୍ଟ ବରଣ କରିଛନ୍ତି ।

ପ୍ରୋଟିଆସ୍ ଏତିକି କହି ଭାଲେଣ୍ଟାଇନ୍‌କୁ ନିଜ ବାହୁରେ ଆବଦ୍ଧ କଲା । ଦୁଇ ବନ୍ଧୁଙ୍କର ପୁନର୍ମିଳନ ଘଟିଲା ।

ଏତିକିବେଳେ ସେଠାରେ ପ୍ରବେଶ କରନ୍ତି ମିଲନ୍‌ର ଡିଉକ୍ । ତାଙ୍କୁ ଅନୁସରଣ କରି ଆସୁଥାଆନ୍ତି ତାଙ୍କର ପାରିଷଦମାନେ । ଥୁରିଓ ମଧ୍ୟ ସେମାନଙ୍କ ସହିତ ଥାଏ । ଜଣାଯାଏ, ସେମାନେ ସିଲଭିୟାକୁ ଖୋଜି ଖୋଜି ସେଠାରେ ପହଞ୍ଚିଛନ୍ତି ।

ଦୁଇପକ୍ଷ ଦୁଇପକ୍ଷଙ୍କୁ ଅନାଇ ରହନ୍ତି ।

ବାୟୁମଣ୍ଡଳ ଉତ୍ତେଜନାରେ ଭରିଯାଏ ।

॥ ୮ ॥

ପାଦେ ପାଦେ ଆଗକୁ ବଢ଼ି ଥୁରିଓ ସିଲଭିୟା ପାଖରେ ପହଞ୍ଚିଯାଏ । ତାକୁ ଧରିବାକୁ ଚେଷ୍ଟା କରୁ କରୁ କହେ - 'ଡିଉକ୍‌ଙ୍କ ଇଚ୍ଛାରେ ମୁଁ ହିଁ ହେଉଛି ସିଲଭିୟାର ସ୍ୱାମୀ ।'

ଭାଲେଣ୍ଟାଇନ୍ ରାଗିଯାଏ । ତୀବ୍ର ଦୃଷ୍ଟିରେ ତା' ଆଡ଼କୁ ଅନାଇ କହେ - ଥୁରିଓ, ବହୁତ ହୋଇଛି । ଆଉଥରେ ଯଦି ତୁ ଏ କଥା ଉଚ୍ଚାରଣ କରୁ, ତେବେ ତୋତେ ମୃତ୍ୟୁଦଣ୍ଡ ଭୋଗିବାକୁ ହେବ । କେହି ତୋତେ ରକ୍ଷା କରିପାରିବେ ନାହିଁ । ସିଲଭିୟା ଏଇଠି ଠିଆ ହୋଇଛି । ଯଦି ସାହସ ଥାଏ, ତେବେ ତାକୁ ଛୁଇଁ ଦେଖ୍ । ଯାହାକୁ ମୁଁ ପ୍ରାଣ ଦେଇ ଭଲ ପାଇଛି, ତା'ର ସାମାନ୍ୟ ଅମର୍ଯ୍ୟାଦା ମୁଁ ସହିପାରିବି ନାହିଁ । '

ଭାଲେଣ୍ଟାଇନ୍‌ର ଏଭଳି ଧମକ ଶୁଣି ଭୀରୁ ଥୁରିଓ ଆଉ ପାଦେ ବି ଆଗେଇବାକୁ ସାହସ କଲା ନାହିଁ । ଧୀରେ ଧୀରେ ପଛକୁ ହଟିବାକୁ ଲାଗିଲା ।

କିଛିକ୍ଷଣ ପରେ ଥୁରିଓ କହେ - ସିଲଭିୟା ପାଇଁ ମୋର ଟିକିଏ ହେଲେ ଆଗ୍ରହ ନାହିଁ । ଯେଉଁ ଝିଅ ମୋତେ ଭଲପାଏ ନାହିଁ , ତାକୁ ପାଇବା ପାଇଁ ମୁଁ ବା ଲଢ଼େଇ କରିବାକୁ ଯିବି କାହିଁକି ? ମୁଁ ଏତେ ମୂର୍ଖ ନୁହେଁ ।

ମିଲନ୍‌ର ଡିଉକ୍ ନିଜେ ଜଣେ ପରାକ୍ରମୀ ପୁରୁଷ । ଥୁରିଓର ଏ କାପୁରୁଷପଣିଆ ଦେଖି ସେ ରାଗିଯାଆନ୍ତି । କହନ୍ତି, ତମ ଭଳି ଜଣେ ଭୀରୁ, କାପୁରୁଷ ଆଉ ଅପଦାର୍ଥ, ମୋ ଝିଅର ଅଯୋଗ୍ୟ । ମୁଁ କଦାପି ତମ ହାତରେ ତାକୁ ଦେଇ ନ ପାରେ ।

ତା'ପରେ ଭାଲେଣ୍ଟାଇନ୍‌କୁ ସମ୍ବୋଧନ କରି କହନ୍ତି, 'ତମର ଏଇ ତେଜସ୍ୱିତାରେ ମୁଁ ମୁଗ୍ଧ । ଏଥିପାଇଁ ତମକୁ ଯେତେ ପ୍ରଶଂସା କଲେ ବି ତାହା ତମ ପାଇଁ ଅପର୍ଯ୍ୟାପ୍ତ ହେବ । କାଞ୍ଚନ ଛାଡ଼ି ମୁଁ କାଚ଼ ଖଣ୍ଡେ କାନିରେ ବାନ୍ଧିବାକୁ ଯାଉଥିଲି । ଈଶ୍ୱରଙ୍କୁ ଧନ୍ୟବାଦ, ସେ ମୋତେ ରକ୍ଷା କରିଛନ୍ତି । ମୋର ଆଚରଣ ପାଇଁ ମୁଁ ଲଜ୍ଜିତ ।

ବର୍ତ୍ତମାନ ମୋର ଗୋଟିଏ ଅନୁରୋଧ । ତମେ ହିଁ ହେଉଛ ସିଲଭିୟାର ଯୋଗ୍ୟ । ତମେ ତାକୁ ଗ୍ରହଣ କର ।

ଭାଲେଣ୍ଟାଇନ୍ ବିନୀତ ଭାବରେ ଡିଉକ୍‌ଙ୍କୁ ସମ୍ମାନ ଜଣାଇ ତାଙ୍କର ହସ୍ତ ଚୁମ୍ବନ କରେ । କହେ - ମହାମାନ୍ୟ, ଆପଣଙ୍କର ଆଦେଶକୁ ମୁଁ ମଥାପାତି ଗ୍ରହଣ କରୁଛି । ଏହିଭଳି ଏକ ଦୁର୍ଲଭ ସମ୍ମାନ ମୋତେ ଦେଇଥିବାରୁ ମୁଁ ଆଜି ଧନ୍ୟ ହୋଇଛି ।

ଡିଉକ୍ କହନ୍ତି - 'ବତ୍ସ, ମୋ ପାଇଁ ତମେ ଅନେକ କଷ୍ଟ ସହିଛ । ମୋର ଇଚ୍ଛା, ତମେ ମୋଠୁଁ ଆଉ କିଛି ପ୍ରାର୍ଥନା କର ।'

ମୋର ଗୋଟିଏ ବିନୀତ ନିବେଦନ ଅଛି ମହାମାନ୍ୟ - ଭାଲେଣ୍ଟାଇନ୍ ବିନମ୍ର ଭାବରେ କହେ ।

- ପ୍ରକାଶ କର । କ'ଣ ତମର ପ୍ରାର୍ଥନା ? - ଡିଉକ୍ କହନ୍ତି ।

ଭାଲେଣ୍ଟାଇନ୍ କ'ଣ ଭାବିନେଇ କହେ - ଏଇ ଅରଣ୍ୟରେ ମୁଁ ଯେଉଁମାନଙ୍କ ସହିତ ଏତେ ଦିନ ରହିଲି, ଆପଣ ସେମାନଙ୍କୁ କ୍ଷମା କରନ୍ତୁ । ସେମାନେ ପ୍ରକୃତରେ ଏତେ ଖରାପ ନୁହନ୍ତି । କେହି କୌଣସି ଜଘନ୍ୟ ଅପରାଧ ମଧ କରି ନାହିଁ । ରାଜନୀତିକ କାରଣରୁ ସେମାନେ ନିର୍ବାସନ ଦଣ୍ଡ ଭୋଗୁଛନ୍ତି । ସେମାନଙ୍କୁ ଯଦି ପୁଣି ଥରେ ସାମାଜିକ ଜୀବନ ଭିତରକୁ ଫେରାଇ ନିଆଯାଏ , ତେବେ ସେମାନଙ୍କ ଭିତରୁ ଅନେକ ସତ୍ ଆଉ ଦକ୍ଷ ବ୍ୟକ୍ତି ବାହାରିବେ । ଆପଣ ଚାହିଁଲେ ସେମାନଙ୍କୁ ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ନିୟୋଗ କରିପାରିବେ । ତହିଁରେ ସେମାନଙ୍କର ତ ମଙ୍ଗଳ ହେବ ହିଁ, ରାଜ୍ୟ ମଧ ସେମାନଙ୍କ ଦ୍ୱାରା ବହୁଭାବେ ଉପକୃତ ହେବ ।

ଡିଉକ୍ ଭାଲେଣ୍ଟାଇନ୍‌ର ପ୍ରସ୍ତାବକୁ ତଳେଇ କରି ବିଚାର କରନ୍ତି । କିଛି କ୍ଷଣ ପରେ କହନ୍ତି, 'ତମର ଏଇ ପ୍ରାର୍ଥନାକୁ ମୁଁ ପୂର୍ଣ୍ଣ କରୁଛି । ସେମାନଙ୍କୁ କ୍ଷମା ଦିଆଗଲା । ଜୀବନର ମୁଖ୍ୟ ସ୍ରୋତ ଭିତରକୁ ସେମାନେ ଫେରିଆସିଲେ ମୁଁ ଖୁବ୍ ଖୁସି ହେବି ।'

ଆଉ ବାକି ରହିଲା କେବଳ ଗୋଟିଏ କାର୍ଯ୍ୟ । ତାହା ହେଉଛି ପ୍ରୋଟିଆସ୍‌ର ବିଚାର । ସେ ଯେ କେବଳ ପ୍ରେମିକା ଜୁଲିଆ ପ୍ରତି ଅବିଚାର କରିଛି ତାହା ନୁହେଁ, ବାଲ୍ୟବନ୍ଧୁ ସହିତ ମଧ ଦ୍ରୋହ ଆଚରଣ କରିଛି । ଏଥିପାଇଁ ତା'ର ଶାସ୍ତି ହେବା ଦରକାର । ନ ହେଲେ ସମାଜରେ ଅରାଜକତା ବଢ଼ିବ ।

ଶାସ୍ତି ଗ୍ରହଣରେ ପ୍ରୋଟିଆସ୍‌ର ମଧ କୌଣସି ଆପତ୍ତି ନାହିଁ ।

ଡିଉକ୍ ଆଦେଶ ଦିଅନ୍ତି - ବାସନାର ବଶବର୍ତ୍ତୀ ହୋଇ ତମେ ଯେଉଁସବୁ ଅନ୍ୟାୟ କରିଛ, ସେଥିପାଇଁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । ପ୍ରଥମେ ତମେ ଅକପଟ ଭାବରେ ମୋ ଆଗରେ ତମର ସମସ୍ତ ଅପରାଧ ସ୍ୱୀକାର କରିବ । ଏଇ ସ୍ୱୀକାରର ଲଜ୍ଜା ହିଁ ହେବ ତମର ପ୍ରକୃଷ୍ଟ ଶାସ୍ତି ।

ପ୍ରୋଟିଆସ୍ ଏଥିରେ ରାଜି ହେଲା । ଡିଉକ୍‌ଙ୍କ ଆଗରେ ସେ ତା'ର ସମସ୍ତ ଅପରାଧ ସ୍ୱୀକାର କଲା । ଡିଉକ୍‌ଙ୍କର ହୃଦ୍‌ବୋଧ ହେଲା ଯେ, ଏଥର ପ୍ରୋଟିଆସ୍‌ର ପ୍ରକୃତ ସଦ୍‌ବୁଦ୍ଧିର ଉଦୟ ହୋଇଛି ।

ସେ ତାକୁ କ୍ଷମା ଦେଲେ ।

ଦୁଇ ପ୍ରେମିକା ଏବଂ ଦୁଇ ପ୍ରେମିକ ଏହା ପରେ ଡିଉକ୍‌ଙ୍କ ସହିତ ମିଲନ୍ ଫେରିଯାଆନ୍ତି । ଡିଉକ୍ ନିଜେ ଉପସ୍ଥିତ ରହି ଭାଲେଣ୍ଟାଇନ୍ ସହିତ ସିଲଭିୟାର ଏବଂ ପ୍ରୋଟିଆସ୍ ସହିତ ଜୁଲିଆର ବିବାହ ଦିଅନ୍ତି ।

ମିଲନ୍‌ନଗରୀ ଉତ୍ସବ ମୁଖରିତ ହୋଇଉଠେ ।

# ମଚ୍ ଏଡୋ ଆବାଉଟ୍ ନଥିଂ

॥ ୧ ॥

ମେସିନାର ଶାସନକର୍ତ୍ତାଙ୍କ ପ୍ରାସାଦରେ ଫୁଲ ପରି ଫୁଟିଥିଲେ ଦୁଇଟି ତରୁଣୀ । ସେଥିରୁ ଜଣକର ନାମ ହେରୋ - ସେ ହେଉଛି ଶାସକ ଲିଓନାତୋଙ୍କର ଆତ୍ମଜା ଏବଂ ଅନ୍ୟଟି ହେଉଛି ବିଏଟ୍ରିସ୍, ତାଙ୍କର ଭ୍ରାତୁଷ୍ପୁତ୍ରୀ ।

ବିଏଟ୍ରିସ୍ ଉଚ୍ଛଳ ପ୍ରାଣଶକ୍ତିରେ ଭରପୂର ପୂର୍ଣ୍ଣଯୁବତୀ - ହେରୋ ଧୀରସ୍ଥିର ଆଉ ଗମ୍ଭୀର ପ୍ରକୃତିର । ସୁଯୋଗ ପାଇବା ମାତ୍ରେ ବିଏଟ୍ରିସ୍ ତା'ର ବାକ୍‌ଚାତୁରୀ ଦ୍ୱାରା ହେରୋକୁ ବିବ୍ରତ କରିବାକୁ ଚେଷ୍ଟା କରୁଥିଲା ଏବଂ ଏଥିରେ ଖୁବ୍ ଆନନ୍ଦ ପାଉଥିଲା । ତା'ର ମନଟା ଥିଲା ଅତ୍ୟନ୍ତ ଲଘୁ ଏବଂ ସବୁକିଛିକୁ ହାଲୁକା ରସିକତାରେ ଭରିଦେବା ତା'ର ସ୍ୱଭାବ। ହେରୋ ଅବଶ୍ୟ ନୀରବରେ ସବୁକୁ ଉପଭୋଗ କରୁଥିଲା ।

ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ଯୁଦ୍ଧ ବିଭାଗର କେଇଜଣ ଉଚ୍ଚପଦସ୍ଥ ତରୁଣ, ସଦ୍ୟ ସମାପ୍ତ ଏକ ଯୁଦ୍ଧ ପରେ ମେସିନା ଭିତର ଦେଇ ନିଜ ଦେଶକୁ ଫେରୁଥିଲେ । ଯୁଦ୍ଧକ୍ଷେତ୍ରରେ ଯଥେଷ୍ଟ ବୀରତ୍ୱ ଦେଖାଇ ସୁନାମ ଅର୍ଜନ କରିଥିଲେ । ସେମାନେ ଲିଓନାତୋଙ୍କ ସହିତ ଦେଖା କରି ତାଙ୍କୁ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ତାଙ୍କ ପ୍ରାସାଦକୁ ଆସିଲେ ।

ଏମାନଙ୍କ ଭିତରେ ଥିଲେ ଆରାଗନ୍‌ର ରାଜକୁମାର ଡନ୍‌ପେଡ୍ରୋ, ରାଜପୁତ୍ରଙ୍କ ବନ୍ଧୁ - ଫ୍ଲୋରେନ୍‌ସର ସାମନ୍ତ କ୍ଲଡିଓ ଏବଂ ପାଡୁଆର ସାମନ୍ତ ବେନେଡିକ୍ । ବେନେଡିକ୍ ସାମାନ୍ୟ ବଦ୍‌ରାଗୀ ହେଲେ ମଧ୍ୟ ବେଶ୍ ରସିକ ।

ଆଗନ୍ତୁକମାନେ ପୂର୍ବରୁ ମଧ୍ୟ ମେସିନା ଆସିଛନ୍ତି । ଲିଓନାତୋ ନିଜ କନ୍ୟା ତଥା ଭ୍ରାତୁଷ୍ପୁତ୍ରୀ ସହିତ ଏମାନଙ୍କର ପରିଚୟ କରାଇ ଦେଲେ । ତେବେ ସେମାନେ ପରସ୍ପରକୁ ଆଗରୁ ଅବଶ୍ୟ ଜାଣିଥିଲେ ।

ଘରେ ପଶିବା ମାତ୍ରେ ବେନେଡିକ୍ ଡନ୍‌ପେଡ୍ରୋ ସହିତ ନାନା ଆଲୋଚନା ଆରମ୍ଭ କରିଦିଏ । ବିଏଟ୍ରିସ୍ ସେଠାରେ ଉପସ୍ଥିତ ଥିଲା । ସେ ଯେକୌଣସି ଆଲୋଚନାରୁ ନିଜକୁ ବାଦ୍ ଦେବାକୁ ଚାହେଁ ନାହିଁ । ତତ୍‌କ୍ଷଣାତ୍ ପ୍ରଗଲ୍‌ଭ ବେନେଡିକ୍ କୁ ବାଧା ଦେଇ କହେ, 'ସିନ୍‌ର ବେନେଡିକ୍, ମୁଁ ଆଶ୍ଚର୍ଯ୍ୟ ହୋଇ ଗୋଟିଏ କଥା ଭାବୁଛି । ଆପଣ ଏବେବି ଆଲୋଚନା କରି ଚାଲିଛନ୍ତି, ଅଥଚ କେହି ମନ ଦେଇ ଆପଣଙ୍କ କଥା ଶୁଣୁ ନାହାନ୍ତି । ଏଠି କେହି ବୋଧହୁଏ ଆପଣଙ୍କୁ ବିଶେଷ ଖାତିର୍ କରନ୍ତି ନାହିଁ ।'

ଯଦିଓ ବେନେଡିକ୍ ମଧ୍ୟ ବିଏଟ୍ରିସ୍ ଭଳି ଲଘୁ ପ୍ରକୃତି ଏବଂ ଚଞ୍ଚଳ, ତଥାପି ତାକୁ ଏ ଭଳି କଥା ଆଦୌ ଭଲ ଲାଗିଲା ନାହିଁ । ସେ ଭାବିନେଲା, କୌଣସି ଅଭିଜାତ ତରୁଣୀ ଏତେ ଫାଜିଲ୍ ଆଉ ପ୍ରଗଲ୍ଭ ହେବା ଉଚିତ ନୁହେଁ । ଅନ୍ତତଃ ନିଜକୁ ସଂଯତ ରଖିବାର ଯଥେଷ୍ଟ ଶିକ୍ଷା ତା'ର ଥିବା ଉଚିତ । ତା'ର ମନେପଡ଼ିଲା, ଏହା ପୂର୍ବରୁ ସେ ଯେତେବେଳେ ଏଠାକୁ ଆସିଥିଲା, ସୁଯୋଗ ପାଇବା ମାତ୍ରେ ଏଇ ବିଏଟ୍ରିସ୍ ତାକୁ ମନଭରି ଥଟ୍ଟା କରିଛି । ମଜା କଥା ହେଉଛି, ସେ ପ୍ରାଣ ଖୋଲି ଅନ୍ୟକୁ ଥଟ୍ଟା ତାମସା କରିଯାଏ, ମାତ୍ର ତାକୁ କେହି କିଛି କହିଲେ ସେ ଖୁସି ହୁଏ ନାହିଁ । ବେନେଡିକ୍‌ର ପ୍ରକୃତି ମଧ୍ୟ ସେଇଭଳି । ତାକୁ କେହି ସାମାନ୍ୟ ଥଟ୍ଟା କଲେ ସେ ରାଗିଯାଏ ।

ବିଏଟ୍ରିସ୍ ଏବଂ ବେନେଡିକ୍ ଯେତେବେଳେ ପରସ୍ପରକୁ ଭେଟିଛନ୍ତି, ଜଣେ ଅନ୍ୟକୁ ବଛା ବଛା ବାକ୍ୟ ବାଣରେ ବିଦ୍ଧ କରିବାର ଖେଳରେ ମତ୍ତ ହୋଇ ଉଠିଛନ୍ତି । ଦେଖା ହେବା ମାତ୍ରେ ଦୁହିଁଙ୍କର ଏଇ ଖେଳ ଆରମ୍ଭ ହୋଇଯାଏ । ଶେଷରେ କ୍ଲାନ୍ତ ଆଉ କ୍ଷୁବ୍ଧ ହୋଇ ସେମାନେ ପରସ୍ପରଠାରୁ ବିଦାୟ ନିଅନ୍ତି ।

ଏଥର ତେଣୁ ବିଏଟ୍ରିସ୍ ଯେତେବେଳେ ବିଦ୍ରୂପ କରି ଆଲୋଚନା ମଝିରେ ବେନେଡିକ୍‌କୁ ଚୁପ୍ କରାଇଦେବାକୁ ଚାହିଁଲା, ସେତେବେଳେ ବେନେଡିକ୍ ବି ଛାଡ଼ିଲା ନାହିଁ । ବିଏଟ୍ରିସ୍‌କୁ ଏତେବେଳଯାଏ ଲକ୍ଷ୍ୟ କରି ନ ଥିବାର ଛଳନା କରି ସେ କହିଲା - ଆରେ ଲେଡି ଡିସ୍‌ଡେନ୍ (ଅବଜ୍ଞା) ଯେ ! ତୁମେ ଆଜିଯାଏ ବଞ୍ଚିଛ ?

ଏତିକିରେ ଆରମ୍ଭ ହୋଇଯାଏ ଦୁହିଁଙ୍କ ମଧ୍ୟରେ ବାକ୍‌ଯୁଦ୍ଧ । ଜଣେ ଅନ୍ୟଜଣକୁ ଲକ୍ଷ୍ୟକରି ବଛା ବଛା ବାକ୍-ବାଣ ପ୍ରୟୋଗ କରିବାରେ ଲାଗନ୍ତି । ଉଦ୍ଦିଷ୍ଟ ବ୍ୟକ୍ତି ସୁକୌଶଳରେ ତହିଁରୁ ଆତ୍ମରକ୍ଷା କରି ପ୍ରତିପକ୍ଷ ନିମନ୍ତେ ଆଉ ଏକ ସୁନିର୍ବାଚିତ ତୀର ନିକ୍ଷେପ କରନ୍ତି ।

ସଦ୍ୟ ସମାପ୍ତ ଯୁଦ୍ଧରେ ବେନେଡିକ୍ ଯଥେଷ୍ଟ ସାହସ ଏବଂ ବୀରତ୍ୱ ଦେଖାଇଥିବାର ଯଦିଓ ବିଏଟ୍ରିସ୍ ଜାଣେ, ତଥାପି ସେ ତାକୁ ବିଦ୍ରୂପ କରି କହେ, 'ଆପଣ ଯୁଦ୍ଧରେ ଯାହାଙ୍କୁ ନିହତ କରିଛନ୍ତି, ସେମାନଙ୍କୁ ମୁଁ ପାଦରେ ଦଳି ଦେଇପାରେ ।'

ବେନେଡିକ୍ କହେ, 'ସତରେ ନା କ'ଣ ? ତମେ ନରବାହନରେ ଯିବାଆସିବା କର, ଏ କଥା ମୋତେ ଜଣା ନ ଥିଲା ତ ।'

ବିଏଟ୍ରିସ୍ ଲକ୍ଷ୍ୟ କରେ, ଆରାଗନ୍‌ର ରାଜକୁମାର ବେନେଡିକ୍‌ର କଥା ଶୁଣି ଖୁବ୍ ମଜା ପାଉଛନ୍ତି । ତେଣୁ ସେ ପ୍ରତିପକ୍ଷକୁ ଚୁପ୍ କରାଇଦେବାକୁ ଯାଇ କହେ, 'ପାଦୁଆର ଲର୍ଡ କେବେଠୁଁ ରାଜକୁମାରଙ୍କର ବିଦୂଷକ ହେଲେଣି ?'

ଏଇଟା କିନ୍ତୁ ପ୍ରକୃତରେ ଅତିରିକ୍ତ ହୋଇଗଲା । ମନ୍ତବ୍ୟଟା ବେନେଡିକ୍‌ର ମନଭିତରେ ବର୍ଚ୍ଛା ଭଳି ଗଳିଗଲା । ସେ ଆହତ ହେଲା । ବିଏଟ୍ରିସ୍ କହୁଛି, ସେ ଯୁଦ୍ଧରେ ଯେଉଁମାନଙ୍କୁ ହତ୍ୟା

କରିଛି, ସେମାନଙ୍କୁ ସେ ପାଦରେ ଦଳି ଦେଇପାରେ । ଏ କଥାର ଅର୍ଥ କ'ଣ ? ବାଚାଳ ଝିଅଟା କ'ଣ ବୁଝାଇଦେବାକୁ ଚାହେଁ ଯେ, ବେନେଡିକ୍ ହେଉଛି ଜଣେ କାପୁରୁଷ ! ଶତ୍ରୁପକ୍ଷର ଜଣେ ହେଲେ ବୀର ସୈନିକକୁ ସେ ନିହତ କରିପାରି ନାହିଁ ? ପୁଣି ତାକୁ ବିଦୂଷକ କହିବା ! ଫାଜିଲ୍ ଝିଅଟା ଜାଣେ ନାହିଁ ଯେ, ସେ କାହାକୁ କ'ଣ କହିଯାଉଛି ! ରସିକତା ଆଉ ଭାଣ୍ଡାମି ଭିତରେ ଯେ ପାର୍ଥକ୍ୟ କେତେ ସେତକ ବି ଜଣା ନାହିଁ, ଏଇ ଅତ୍ୟନ୍ତ ଫାଜିଲ୍ ଝିଅକୁ ।

ତା' ସହିତ ଆଉ କଥା କହିବାକୁ ବେନେଡିକ୍‌ର ଘୃଣା ହେଲା ।

ବିନୟୀ ଏବଂ ମାର୍ଜିତ ସ୍ୱଭାବର ହେରୋ ଏତେବେଳଯାଏ ମାନନୀୟ ଅତିଥିମାନଙ୍କ ଗହଣରେ ନୀରବ ଥିଲା । ଭଉଣୀ ଭଳି ସେ ବାଚାଳ ନୁହେଁ । ଫ୍ଲୋରେନ୍ସର ସାମନ୍ତ କ୍ଲଡ଼ିଓ ମନୋଯୋଗର ସହ ତାକୁ ନିରୀକ୍ଷଣ କରୁଥିଲା । ହେରୋକୁ ସେ ଏହା ପୂର୍ବରୁ ମଧ ଦେଖିଛି । କିନ୍ତୁ ଏଇ କେତେଟା ବର୍ଷ ଭିତରେ ସେ କି ଅପୂର୍ବ ସୁନ୍ଦର ହୋଇ ଉଠିଛି !

କ୍ଲଡ଼ିଓ ତା'ଆଡୁ ଆଖି ଫେରାଇପାରୁ ନ ଥାଏ ।

ଆରାଗନ୍‌ର ରାଜକୁମାର ବେନେଡିକ୍ ଆଉ ବିଏଟ୍ରିସ୍‌ର କଥାବାର୍ତ୍ତାରୁ ବେଶ୍ ମଜା ପାଉଥାଆନ୍ତି । ସେ ଲିଓନାଟୋଙ୍କ କାନରେ ନିମ୍ନ କଣ୍ଠରେ କହନ୍ତି, ଦେଖୁଛି ଆପଣଙ୍କ ଝିଆରୀଟି ବେଶ୍ ଚମତ୍କାର ପ୍ରକୃତିର ଝିଅ ! ବେନେଡିକ୍ ସହିତ ବି ତାଙ୍କର ସମ୍ପର୍କଟା ଦେଖିଲା ଭଳି । ମୁଁ ଭାବୁଛି, ବେନେଡିକ୍ ସହିତ ତା'ର ବିବାହ ଦିଆଯାଇପାରିଲେ ଭଲ ହୁଅନ୍ତା ।

ଲିଓନାଟୋ କହନ୍ତି, 'ଯଦି ଏ ବିବାହ ହୁଏ, ତେବେ ଗୋଟିଏ ସପ୍ତାହ ଭିତରେ ଦୁହେଁ ଦୁହିଁଙ୍କ ସହିତ ଖାଲି ଝଗଡ଼ା କରୁ କରୁ ପାଗଳ ହୋଇଯିବେ ।'

ଏଭଳି ବିବାହ ଯେ ଆଦୌ ସୁଖକର ହେବ ନାହିଁ, ଏ ବିଷୟରେ ଲିଓନାଟୋଙ୍କର ସନ୍ଦେହ ନ ଥିଲା । ଦୁହିଁଙ୍କର ପ୍ରକୃତିରେ ଯେଉଁଠି ଏତେ ପାର୍ଥକ୍ୟ, ସେଠାରେ ବିବାହ ଆନନ୍ଦର ହେବ ବା କେମିତି ? ସଂସାରୀ ଭାବରେ ଜଣେ ଅନ୍ୟଜଣକ ସହିତ କେବେହେଲେ ବି ବୁଝାମଣା କରି ନେଇପାରିବ ନାହିଁ । ଏ ବିଷୟରେ ବୃଥା ଚିନ୍ତା କରି ଲାଭ କ'ଣ ?

ରାଜକୁମାର କିନ୍ତୁ ଏଭଳି ଦୁର୍ଲଭ ଯୋଡ଼ିକୁ ଏକ କରିଦେବାର କଳ୍ପନାରୁ ବିରତ ରହନ୍ତି ନାହିଁ ।

'ଯୋଗ୍ୟଂ ଯୋଗ୍ୟେନେ ଯୋଜୟେତ୍'-

॥ ୨ ॥

ମେସିନାର ପ୍ରାସାଦରୁ ବାହାରି ଆସନ୍ତି ରାଜକୁମାର । ସାଙ୍ଗରେ କ୍ଲଡ଼ିଓ । ନିଜର ବାସସ୍ଥାନକୁ ଫେରିଆସି ସେ ପୁଣି ଏଇ ବିଷୟଟିକୁ ନେଇ ଚିନ୍ତା କରିବାକୁ ଆରମ୍ଭ କରନ୍ତି । ତେବେ କେବଳ ଗୋଟିଏ ବିବାହ କଥା ଭାବିଲେ ହେବ ନାହିଁ । ଆଗରେ ଆଉ ଗୋଟିଏ ବିବାହର ସମ୍ଭାବନା ମଧ ଉଜ୍ଜ୍ୱଳ ହୋଇ ଉଠୁଛି ।

କ୍ଲଡ଼ିଓ ହଠାତ୍ ହେରୋର ପ୍ରଶଂସା କରିବାକୁ ଆରମ୍ଭ କରନ୍ତି । କହନ୍ତି – ଏଇ ରାଜକନ୍ୟା ଭଳି ସୁନ୍ଦରୀ ମୁଁ ଦ୍ୱିତୀୟଟି ଦେଖି ନାହିଁ । କିଭଳି ଧୀରସ୍ଥିର, କି ଗମ୍ଭୀର ଚାହାଣି ! ତାକୁ ସ୍ତ୍ରୀ ରୂପେ ପାଇବା ମହାଭାଗ୍ୟର କଥା ।

ରାଜକୁମାର ବୁଝିଗଲେ – କ୍ଲଡ଼ିଓ ମନରେ ହେରୋ ଗଭୀର ଦାଗ କାଟି ସାରିଲାଣି । ସେ ହେରୋକୁ ଭଲପାଇ ବସିଛି । ରାଜକୁମାର ଚିନ୍ତା କଲେ ମନ୍ଦ କ'ଣ ? ଦୁହେଁ ଦୁହିଁଙ୍କ ପାଇଁ ଯୋଗ୍ୟ ।

ପଚାରିଲେ, ବନ୍ଧୁ କ୍ଲଡ଼ିଓ, ତମେ କ'ଣ ହେରୋକୁ ଭଲପାଇ ବସିଛ ? ସତ କହିବ ।

ଉତ୍ତରରେ କ୍ଲଡ଼ିଓ କହେ, 'କୁମାର, ପୂର୍ବରୁ ଯେତେବେଳେ ମୁଁ ମେସିନା ଆସିଥିଲି, ସେତେବେଳେ ହେରୋକୁ ଦେଖିଥିଲି ଜଣେ ସୈନିକର ଦୃଷ୍ଟିରେ । ସୈନିକ ପସନ୍ଦ କରିପାରେ, ମାତ୍ର ତା'ର ତ ଭଲପାଇବାର ଅବକାଶ ନାହିଁ । ତେବେ ବର୍ତ୍ତମାନ ଶାନ୍ତିର ସମୟ । ଯୁଦ୍ଧର ଚିନ୍ତା ବି ନାହିଁ । ମନ ଭିତରଟା ବେଶ୍ ଫାଙ୍କା । ସେଥିରେ ବର୍ତ୍ତମାନ ସ୍ଥାନ ପାଇପାରେ ଏ ଧରଣର ଆବେଗପୂର୍ଣ୍ଣ, ନରମ ଆଉ ପ୍ରୀତିପୂର୍ଣ୍ଣ କଳ୍ପନା । ମୋର ତେଣୁ ବର୍ତ୍ତମାନ ଚିନ୍ତା ହେରୋକୁ ନେଇ । ଦେଖିବାକୁ ସୁନ୍ଦର । ଆଚରଣ ମାର୍ଜିତ । ମନେ ହେଉଛି, ଯୁଦ୍ଧକୁ ଯିବା ପୂର୍ବରୁ ଯେତେବେଳେ ମୁଁ ତାକୁ ଦେଖିଥିଲି, ବୋଧହୁଏ ସେତିକିବେଳେ ମୁଁ ତାକୁ ପସନ୍ଦ କରି ପକାଇଥିଲି । ତେବେ ଯୁଦ୍ଧର ଚିନ୍ତା ମନକୁ ଆଚ୍ଛନ୍ନ କରିଥିବାରୁ ମୁଁ ଏଆଡ଼େ ଆଉ ମନ ଦେଇପାରି ନ ଥିଲି ।'

କ୍ଲଡ଼ିଓ ଅକପଟ ଭାବରେ ନିଜର ମନକଥା କହିଯାଏ । ରାଜକୁମାର ନିଜେ ଏଇ ବିବାହ ନିମନ୍ତେ ଉଦ୍‌ଯୋଗ କରିବେ ବୋଲି ସ୍ଥିର କରନ୍ତି ଏବଂ ବିଳମ୍ବ ନ କରି ଲିଓନାଟୋଙ୍କ ନିକଟରେ ପହଞ୍ଚିଯାଆନ୍ତି ।

ଏଣୁ ତେଣୁ ଦୁଇ ଚାରି କଥା କହିସାରିଲା ପରେ କହନ୍ତି; ମାନ୍ୟବର, ମୋର ଆପଣଙ୍କୁ ଗୋଟିଏ ବିନୀତ ନିବେଦନ ଅଛି ।

ବ୍ୟସ୍ତ ହୋଇ ଲିଓନାଟୋ କହନ୍ତି, 'ଏ କି କଥା କହୁଛନ୍ତି କୁମାର, ମୋତେ ଅପରାଧୀ କରନ୍ତୁ ନାହିଁ, ଆପଣଙ୍କର କୌଣସି ଇଚ୍ଛା ପୂରଣ କରିପାରିଲେ ମୁଁ ଧନ୍ୟ ହେବି ।'

ରାଜକୁମାର କହନ୍ତି, 'ମୋର ବନ୍ଧୁ କ୍ଲଡ଼ିଓକୁ ଆପଣ ଜାଣନ୍ତି । ସେ କେମିତି ଲୋକ ବୋଲି ଆପଣଙ୍କର ଧାରଣା ?'

-ଫ୍ଲୋରେନ୍ସର ସାମନ୍ତ କ୍ଲଡ଼ିଓ ବୁଦ୍ଧିମାନ୍, ବୀର, ସାହସୀ ଏବଂ ସୁଦର୍ଶନ । ଲିଓନାଟୋ ଭାବିଚିନ୍ତି ଉତ୍ତର ଦିଅନ୍ତି ।

-ପାତ୍ର ହିସାବରେ ସେ କେମିତି ? ରାଜକୁମାର ଏଥର ସିଧାସଳଖ ପ୍ରସଙ୍ଗର ଅବତାରଣା କରନ୍ତି ।

-'ହଜାରରେ ଗୋଟିଏ'- ଲିଓନାଟୋ ଉତ୍ତର ଦିଅନ୍ତି ।

-'ତା' ହେଲେ ମୁଁ ତା'ସହିତ ଆପଣଙ୍କର କନ୍ୟା ହେରୋଙ୍କର ବିବାହ ପ୍ରସ୍ତାବ ଦେଉଛି । ଆପଣ କ'ଣ ଏ ପ୍ରସ୍ତାବରେ ରାଜି ?' ରାଜକୁମାର କହନ୍ତି ।

ଆନନ୍ଦରେ ବିଗଳିତ ହୋଇ ଲିଓନାଟୋ କହନ୍ତି, 'ରାଜକୁମାର, ଏ ତ ମୋର ପରମ ସୌଭାଗ୍ୟ ।'

-'ତା' ହେଲେ ଆପଣ ସମ୍ମତ ?' କୁମାର ପ୍ରଶ୍ନ କରନ୍ତି ।

-'ନିଶ୍ଚୟ' । କ୍ଲଡ଼ିଓଙ୍କ ଭଳି ଜାମାତା ପାଇବା ବହୁଭାଗ୍ୟର କଥା । କୁମାର, ଆପଣଙ୍କର ଏ ପ୍ରସ୍ତାବକୁ ମୁଁ ସ୍ୱାଗତ କରୁଛି । କିନ୍ତୁ...

-ଆଉ ପୁଣି କିନ୍ତୁ କାହିଁକି ? କୁମାର ପ୍ରଶ୍ନ କରନ୍ତି ।

-ଝିଅ ପ୍ରାପ୍ତବୟସ୍କା । ତା'ର ମତାମତ ତ ପୁଣି ଜାଣିବା ଦରକାର ।

-ସେ ଦାୟିତ୍ୱ ଆପଣ ମୋ ଉପରେ ଛାଡ଼ିଦିଅନ୍ତୁ । ମୁଁ ନିଜେ ତା'ର ମତାମତ ଜାଣିନେବି । ରାଜକୁମାର ଜଣାଇ ଦିଅନ୍ତି ।

ଅଚିରେ ହେରୋର ସମ୍ମତି ମଧ୍ୟ ମିଳିଯାଏ । କ୍ଲଡ଼ିଓ ଭଳି ଜଣେ ବୀରଯୁବକକୁ ଯେକୌଣସି ନାରୀ ପତିରୂପରେ ପାଇବାକୁ ନିଜର ସୌଭାଗ୍ୟ ମଣିବ ।

ଏହା ପରେ ଲିଓନାଟୋଙ୍କୁ ସାକ୍ଷାତ୍ କରି କୁମାର କହନ୍ତି, 'ଆପଣଙ୍କର ସମ୍ମତି ତ ପୂର୍ବରୁ ମିଳିଛି । ଆପଣଙ୍କର କନ୍ୟା ମଧ୍ୟ ଏ ପ୍ରସ୍ତାବରେ ରାଜି । ତା'ହେଲେ ଆଉ ବିଳମ୍ବ କରିବା ଦରକାର କ'ଣ ? ବିବାହର ଦିନକ୍ଷଣ ସ୍ଥିର କରିପକାନ୍ତୁ ।'

ବିବାହ ସ୍ଥିର ହୁଏ କେଇଦିନ ଛାଡ଼ି ।

କ୍ଲଡ଼ିଓଙ୍କୁ ସେଇ କେତେଦିନର ପ୍ରତୀକ୍ଷା ବଡ଼ କ୍ଳାନ୍ତିକର ମନେହୁଏ । ସମୟ ଯେମିତି ସରେ ନାହିଁ । ପ୍ରତୀକ୍ଷାର ଯନ୍ତ୍ରଣା ବଡ଼ ବେଦନାଦାୟକ, ବିଶେଷକରି ତରୁଣମାନଙ୍କ ପକ୍ଷରେ ।

ସମୟ କଟାଇବାକୁ ରାଜକୁମାର ଗୋଟାଏ ପରିକଳ୍ପନା କରିପକାନ୍ତି । ଯୋଜନାଟି ହୁଏ ବେଶ୍ ମଜାର ।

ଏଭଳି ଗୋଟାଏ କୌଶଳ କରିବାକୁ ହେବ, ଯାହା ଦ୍ୱାରା କି ବିଏଟ୍ରିସ୍ ଆଉ ବେନେଡିକ୍ ପରସ୍ପର ପ୍ରତି ଆକୃଷ୍ଟ ହୋଇ ପଡ଼ିବେ । ରାଜକୁମାରଙ୍କର ପରିକଳ୍ପନା ଶୁଣି କ୍ଲଡ଼ିଓ ମାତିଉଠେ । ଲିଓନାଟୋଙ୍କୁ ମଧ୍ୟ ଏହା ଭିତରକୁ ଅଣାଯାଏ । ସବୁକଥା ଶୁଣି ସେ କହନ୍ତି, ''ଏଥିରେ ମୁଁ ଆପଣଙ୍କୁ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଉଛି । ବିଏଟ୍ରିସ୍ ମୋର ବଡ଼ ଆଦରର । ଏ ଭିତରେ ତା'ର ଯଦି ଗୋଟାଏ ବ୍ୟବସ୍ଥା ହୋଇଯାଏ, ତେବେ ମୁଁ ସବୁଠୁଁ ଅଧିକ ଖୁସି ହେବି ।''

ଏଭଳିକି ହେରୋ ମଧ୍ୟ ଏ କଥା ଶୁଣି ଖୁସିରେ ଆତ୍ମହରା ହୋଇପଡ଼େ । କହେ ମୋର ଭଉଣୀ ଯଦି ଜଣେ ଯୋଗ୍ୟ ପାତ୍ର ପାଇଯାଏ, ତେବେ ଏ ବ୍ୟାପାରରେ ମୁଁ ମଧ୍ୟ ମୋର ସାଧ୍ୟମତେ ଆପଣମାନଙ୍କୁ ସାହାଯ୍ୟ କରିବି ।

ଯୋଜନା ଠିକ୍ ହୋଇଯାଏ । ସ୍ଥିର ହୁଏ ଯେ, ପୁରୁଷମାନେ ବେନେଡିକ୍‌କୁ ଏଇ ଧାରଣା ଦେବେ ଯେ ବିଏଟ୍ରିସ୍ ତା'ର ପ୍ରେମରେ ପଡ଼ିଛି । ପୁଣି ହେରୋ ବିଏଟ୍ରିସ୍‌କୁ ବୁଝାଇଦେବ ଯେ, ବେନେଡିକ୍ ତାକୁ ପ୍ରାଣଠାରୁ ବି ଅଧିକ ଭଲପାଏ ।

କୁମାର, ଲିଓନାତୋ ଏବଂ କ୍ଲଡ଼ିଓ ସେମାନଙ୍କର କାର୍ଯ୍ୟ ଆରମ୍ଭ କରିଦିଅନ୍ତି ।

ସେଦିନ ପ୍ରାସାଦ ସଂଲଗ୍ନ ଉପବନରେ ଏକୁଟିଆ ବସି ବେନେଡିକ୍ ଖଣ୍ଡେ ବହି ପଢୁଥାଏ । ରାଜକୁମାର ଏବଂ ତାଙ୍କର ସାଥୀମାନେ ପାଖାପାଖି ଗୋଟିଏ ଗଛର ଆଢୁଆଳରେ ଲୁଚିଥାଆନ୍ତି । ସେମାନେ ନିଜ ଭିତରେ ଏଭଳି ଆଲୋଚନା ଆରମ୍ଭ କରିଦିଅନ୍ତି, ଯାହା ବେନେଡିକ୍‌ର କାନରେ ପଡ଼େ ।

ଏଣୁ ତେଣୁ ନାନା କଥା ଚାଲିବା ପରେ କୁମାର କହନ୍ତି, ମହାମାନ୍ୟ ଲିଓନାତୋ, ସେଦିନ ଆପଣ କ'ଣ କହୁଥିଲେ ? କହୁଥିଲେ ନା, ଆପଣଙ୍କ ଝିଆରୀ ବିଏଟ୍ରିସ୍ ବୋଧହୁଏ ସିନର୍ ବେନେଡିକ୍‌ଙ୍କର ପ୍ରେମରେ ପଡ଼ିଯାଇଛି, ନୁହେଁ? ଏଇ ଝିଅ ଯେ କେବେ କାହାର ପ୍ରେମରେ ପଡ଼ିପାରେ, ସେ କଥା ମୁଁ ଭାବିପାରୁ ନାହିଁ ।

ଲିଓନାତୋଙ୍କ କଣ୍ଠସ୍ୱର ଶୁଣାଯାଏ । ସେ କହନ୍ତି, 'କୁମାର, ମୁଁ କ'ଣ କେବେବି ସେ କଥା ଭାବିଥିଲି ? ତା'ର ଆଚରଣରୁ ତ ଜଣାଯାଏ ଯେ ସେ ବେନେଡିକ୍‌କୁ ଅତ୍ୟନ୍ତ ଅପସନ୍ଦ କରେ ।'

ଏଥର କ୍ଲଡ଼ିଓର ସ୍ୱର । ସେ କହେ, 'ହେରୋଠୁଁ ମୁଁ କିନ୍ତୁ ଶୁଣିଲି ଯେ, ଘଟଣାଟା ସତ୍ୟ । ବିଏଟ୍ରିସ୍ ପ୍ରକୃତରେ ବେନେଡିକ୍‌ର ପ୍ରେମରେ ପଡ଼ିଛି । ବେନେଡିକ୍ ଯଦି ତାକୁ ସ୍ୱୀକାର ନ କରେ, ତେବେ ସେ ଦୁଃଖରେ ହୁଏତ ଜୀବନ ହାରି ଦେଇପାରେ ।'

ବେନେଡିକ୍‌ର କାନ ଠିଆ ହୋଇଯାଏ । ଏ କ'ଣ ସେ ଶୁଣୁଛି ?

ଲିଓନାତୋ ଏବଂ କ୍ଲଡ଼ିଓ ଏକମତ ହୋଇ କହନ୍ତି, 'ବେନେଡିକ୍ କ'ଣ ସତରେ ବିଏଟ୍ରିସ୍‌କୁ ଭଲ ପାଏ ? ଏ ତ ଅସମ୍ଭବ କଥା । ସେ ତ କୌଣସି ସୁନ୍ଦରୀ ଝିଅ ଦେଖିଲେ ଥଟ୍ଟା କରିବାକୁ ଆରମ୍ଭ କରେ । ବିଶେଷକରି ବିଏଟ୍ରିସ୍‌କୁ ଦେଖିଲେ ତ କଥା ସରିଲା'-

କୁମାର ସତେଯେମିତି ମନ ଦେଇ ସାଥୀମାନଙ୍କର ଆଲୋଚନା ଶୁଣନ୍ତି । କହନ୍ତି, 'ବିଏଟ୍ରିସ୍‌ର ମନ କଥାଟା ତ ପୁଣି ବେନେଡିକ୍ ଜାଣିବା ଦରକାର ।'

କ୍ଲଡ଼ିଓ ପ୍ରତିବାଦ କରିଉଠେ । 'ଜାଣିଲେ ବା କ'ଣ ହେବ ? ଶୁଣିବାମାତ୍ରେ ତ ବେନେଡିକ୍ ଆରମ୍ଭ କରିଦେବ ବ୍ୟଙ୍ଗ ଆଉ ବିଦ୍ରୂପ । ସେଥିରେ ବିଏଟ୍ରିସ୍‌ର ଦୁଃଖ ଆହୁରି ବଢ଼ିଯିବ ସିନା !'

କୁମାର କହନ୍ତି, 'ଏ ହେଉଛି ଗୋଟିଏ କୁମାରୀକନ୍ୟାର ଜୀବନ-ମରଣର କଥା । ବେନେଡିକ୍‌କୁ ଏହା ଜଣାଇ ଦିଆଯାଇପାରିଲେ, ଗୋଟିଏ ମହତ୍ କାମ ହେବ । ବିଏଟ୍ରିସ୍ ଜଣେ ଚମତ୍କାର ଝିଅ । ଜ୍ଞାନ, ବୁଦ୍ଧି କୌଣସିଥିରେ କମ୍ ନୁହେଁ । ଅବଶ୍ୟ ବେନେଡିକ୍‌କୁ ଭଲପାଇ ସେ ବୋକାମି କରିଛି ।' ଏହାପରେ କୁମାର ବନ୍ଧୁମାନଙ୍କୁ ଆଗେଇଯିବା ପାଇଁ ଇଙ୍ଗିତ ଦିଅନ୍ତି ।

ବେନେଡିକ୍ କାନରେ ଏମାନଙ୍କର ସବୁକଥା ପଡ଼ିଛି । ସେ ଏଥର ଏହାକୁ ନେଇ କିଛି ସମୟ ଭାବୁ ।

ପ୍ରାଥମିକ କାର୍ଯ୍ୟଟା ତ ଶେଷ ହୋଇଗଲା !

ବେନେଟିକ୍ ପ୍ରଥମେ ନିସ୍ପୃହ ଭାବରେ ଓ ପରେ ଅତ୍ୟନ୍ତ ଆଗ୍ରହରେ ଏମାନଙ୍କର କଥା ଶୁଣିଯାଏ । ମନେ ମନେ ମନ୍ତବ୍ୟ କରେ -'ବିଏଟ୍ରିସ୍ ଭଲପାଏ ମୋତେ ? ଏ କଥା କିଭଳି ସମ୍ଭବ ? ସୂର୍ଯ୍ୟ କ'ଣ ସତରେ ପଶ୍ଚିମ ଦିଗରୁ ଉଦୟ ହେବେ ?'

କୁମାର ଏବଂ ତାଙ୍କର ବନ୍ଧୁମାନେ ଇତିମଧ୍ୟରେ ଉପବନରୁ ଚାଲିଯାଇଥାଆନ୍ତି । ବେନେଡିକ୍ ଭିତରେ ଦ୍ୱନ୍ଦ୍ୱ ମନକୁ ମନ ତର୍କ ଆରମ୍ଭ କରିଦିଏ ।

ଏତେବେଳଯାଏ ଯାହା ଶୁଣିଲି, ସେ କ'ଣ ସତ୍ୟ ନା ସେମାନଙ୍କର କୌଣସି ଚାଲ୍ ? ମୋତେ ଫାନ୍ଦରେ ପକାଇବାର କୌଣସି ନୂଆ କୌଶଳ ? ଏହା କେମିତି ହେବ ? କିନ୍ତୁ ସେମାନେ ତ ବେଶ୍ ଗମ୍ଭୀର ଭାବରେ କଥାବାର୍ତ୍ତା ହେଉଥିଲେ । କ୍ଲଡ଼ିଓ କଥାରୁ ଜଣାଗଲା, ସେ ହେରୋ ପାଖରୁ କଥାଟା ଶୁଣିଛି । ତା'ଭଳି ଝିଅ ମିଛକଥା କହିବାକୁ ଯିବ କାହିଁକି ? ସେମାନଙ୍କ କଥାରୁ ଜଣାଗଲା, ବିଏଟ୍ରିସ୍ ପ୍ରତି ସେମାନେ ବେଶ୍ ସମ୍ବେଦନଶୀଳ । ବିଏଟ୍ରିସ୍ ମୋତେ ଭଲପାଏ ? ତେବେ କ'ଣ ଏଇ ଭଲପାଇବାର ପ୍ରତିଦାନ ମୋତେ ଦେବାକୁ ହେବ ? ହେଲେ ମୁଁ ତ ଏବେବି ବିବାହ ବିଷୟରେ ଚିନ୍ତା କରି ନାହିଁ । ଚିରକାଳ ଅବିବାହିତ ରହିବି ବୋଲି ସ୍ଥିର କରିଛି । ମୋତେ କିଏ ଭଲପାଇବ ବୋଲି ସେତେବେଳେ କ'ଣ ଜାଣିଥିଲି ? ସେମାନେ କହୁଛନ୍ତି, ବିଏଟ୍ରିସ୍ ସୁନ୍ଦରୀ - ତା'ର ବୋଧବୁଦ୍ଧି ବେଶ୍ ଭଲ । ସେ କଥା ଅବଶ୍ୟ ସତ । ବିଏଟ୍ରିସ୍, ସୁଦର୍ଶନା, ସୁତନୁକା । ତା'ର ଅନେକ ଭଲ ଗୁଣ ଅଛି । କୁମାର କହିଲେ, ମୋତେ ଭଲପାଇ ବିଏଟ୍ରିସ୍ ବୋକାମି କରିଛି । ଏଥିରେ ବୋକାମି ରହିଲା କୋଉଠି ? ପାତ୍ର ହିସାବରେ ମୁଁ କ'ଣ ଏତେ ଅଯୋଗ୍ୟ ?

ବିଏଟ୍ରିସ୍ ତ ଏଇଆଡ଼େ ଆସୁଛି । ଆଜି ପୁଣି ସେ ଆଗ ଅପେକ୍ଷା ଅଧିକ ସୁନ୍ଦରୀ ଦେଖାଯାଉଛି । ତା' ଚେହେରାରେ କେମିତି ଗୋଟାଏ ଉଦାସ ଉଦାସ ଭାବ । କବିମାନେ କହନ୍ତି, ପ୍ରେମରେ ପଡ଼ିଲେ ଏମିତି ହୁଏ । ମୋର ଭୁଲ୍ ହେଉ ନାହିଁ ତ ! ସତରେ କ'ଣ ବିଏଟ୍ରିସ୍ ମୋ ପ୍ରେମରେ ପଡ଼ିଛି ?

ବିଏଟ୍ରିସ୍ ଏ ଭିତରେ ବେନେଡିକ୍‌ର ମୁହାଁମୁହିଁ ହୋଇଯାଏ । ଯଥାରୀତି ତାଙ୍କ କଣ୍ଠରେ କହେ, 'ନିଜ ଇଚ୍ଛା ବିରୋଧରେ ଅଗତ୍ୟା ମୋତେ ଏଠାକୁ ଆସିବାକୁ ହେଲା । ସେମାନେ ମୋତେ ବାଧ କଲେ । ଖାଇବା ସମୟ ହୋଇଛି । କେବଳ ଆପଣଙ୍କ ଛଡ଼ା ଅନ୍ୟ ସମସ୍ତେ ଆସିଗଲେଣି । ଆପଣ ଏଥର ଉଠନ୍ତୁ । ଆପଣଙ୍କୁ ଡାକିବାକୁ ମୋତେ ଏତେ ବାଟ ଆସିବାକୁ ହେଲା ।'

ବେନେଡିକ୍ କହେ, 'ସୁନ୍ଦରୀ ବିଏଟ୍ରିସ୍, ତମେ ମୋତେ ଡାକିବାକୁ ଆସିଛ ! ତମକୁ ଧନ୍ୟବାଦ । ଆହା, ମୋପାଇଁ ଅଯଥାରେ ତମକୁ କେତେ କଷ୍ଟ ହେଲା !'

ବେନେଡିକ୍ ଆଶ୍ଚର୍ଯ୍ୟ ହୁଏ । ତା' କଣ୍ଠ କୋମଳ ହୋଇଯାଉଛି ନା କ'ଣ !

ବିଏଟ୍ରିସ୍ ଗର୍ଜି ଉଠେ -'ଥାଉ ଥାଉ, ଆଉ ଏତେ ଦରଦ ଦେଖାଇବାକୁ ହେବ ନାହିଁ । ଆପଣ କି ଧରଣର ମଣିଷ, ତା' ମୁଁ ଭଲ ଭାବରେ ଜାଣେ । ଏବେ ଦୟା କରି ଚାଲନ୍ତୁ ।'

ବିଏଟ୍ରିସ୍ ବେନେଡିକ୍‌କୁ ଆଉ କେତେଟା କଡ଼ାକଥା ବି କହିଯାଏ । କିନ୍ତୁ ବେନେଡିକ୍ ସେସବୁକୁ ଦେହକୁ ନିଏ ନାହିଁ । ତା'ରି ଭିତରୁ ବରଂ ତାକୁ ଶୁଣାଯାଏ ମଧୁର ସ୍ୱରଝଙ୍କାର । ମନେ ମନେ ସେ କହେ - ମୁଁ ଯଦି ତାକୁ ଦୁଇପଦ ମିଠା କଥା ନ କହେ, ତେବେ ମୋ ଭଳି ଦୁଷ୍ଟଲୋକ ଦୁନିଆରେ ନ ଥିବେ । ସେ ମୋତେ ଭଲ ପାଉଛି, ତେଣୁ ମୋତେ ବି ତାକୁ ଭଲ ପାଇବାକୁ ହେବ । ଏଥର ତା'ର ଗୋଟିଏ ଛବି ଯୋଗାଡ଼କରି ସବୁବେଳେ ପାଖରେ ରଖିବାକୁ ହେବ ।

କୁମାର ଏବଂ ତାଙ୍କର ବନ୍ଧୁମାନେ ଯେଉଁ ଜାଲ ପକାଇଥିଲେ, ଏହିଭଳି ବେନେଡିକ୍ ସେଥିରେ ପଡ଼ିଯାଏ ।

॥ ୩ ॥

ଏଥର କନ୍ୟା-ପର୍ବ ।

ଏଥିପାଇଁ ହେରୋ ନିଜକୁ ପ୍ରସ୍ତୁତ କରିନିଏ । ତାକୁ ବିଏଟ୍ରିସ୍ ଉପରେ ଜାଲ ପକାଇବାକୁ ହେବ । ବସି ବସି ସେ ନିଜର ଯୋଜନା ପ୍ରସ୍ତୁତ କରେ । ନିଜର ସହଚରୀ ଉର୍ଶୁଲା ଆଉ ମାର୍ଗାରେଟ୍‌କୁ ଡକାଏ । କହେ, ଶୁଣ ମାର୍ଗାରେଟ୍ ! ତୁ ବୈଠକଖାନାକୁ ଯାଆ । ଦେଖିବୁ, ସେଠି ବିଏଟ୍ରିସ୍ , ରାଜକୁମାର ଆଉ କ୍ଲଡ଼ିଓ ବସି ଗପସପ ହେଉଛନ୍ତି । ବିଏଟ୍ରିସ୍ କାନରେ ଚୁପ୍‌କରି

ଗୋଟାଏ କଥା କହିବୁ । କହିବୁ, ମୁଁ ଆଉ ଉର୍ଶୁଲା ବଗିଚାଆଡ଼େ ଯାଉଛୁ । ସେଠି ଆମେ ବିଏଟ୍ରିସ୍ ସମ୍ପର୍କରେ ଗୋଟାଏ ଗୁପ୍ତ ଆଲୋଚ଼ନା କରିବୁ । ତାକୁ ଜଣାଇ ଦେବୁ , ସେ ଯେମିତି ହେଲେ ଲୁଚି ଲୁଚି ବଗିଚାକୁ ଯିବ । ଗଲେ ନିଜ କାନରେ ସବୁକଥା ଶୁଣିପାରିବ । ବଗିଚାରେ ନିଜକୁ ଲୁଚାଇ ରଖିବାର ଅନେକ ଜାଗା ରହିଛି । କୌଣସି ଜାଗାରେ ଲୁଚ଼ି ସେ ସବୁକଥା ଜାଣି ନେଇପାରିବ ।'

ମାର୍ଗାରେଟ୍ କହେ, 'ତମେମାନେ ଯାଅ । ମୁଁ ଯେମିତି ହେଲେ ଲେଡି ବିଏଟ୍ରିସ୍‌କୁ ସେଠାକୁ ପଠାଇଦେବି ।'

ଦୁଇପକ୍ଷ ଦୁଇଆଡ଼େ ଚାଲିଯାଆନ୍ତି ।

ବଗିଚାକୁ ଆସି ହେରୋ କହେ, ଶୁଣ୍ ଉର୍ଶୁଲା, ବିଏଟ୍ରିସ୍ ବର୍ତ୍ତମାନ ଆସିଯିବ । ସେତେବେଳକୁ ଆମେ ଏଇଠି ଛାଇରେ ବୁଲାବୁଲି କରୁଥିବା । ବୁଲୁବୁଲୁ ଆମେ ବିଏଟ୍ରିସ୍ ସମ୍ପର୍କରେ ଆଲୋଚ଼ନା କରୁଥିବା । ମୁଁ ଯେତେବେଳେ ବେନେଡିକ୍‌ର ନାଆଁ ଧରିବି ସେତେବେଳେ ତୁ ତାକୁ ଖୁବ୍ ପ୍ରଶଂସା କରିବୁ । ମୁଁ କହିବି, ବେନେଡିକ୍ ବିଏଟ୍ରିସ୍‌ର ପ୍ରେମରେ ପଡ଼ିଛି । କ'ଣ ବୁଝିଲୁ ତ ?

ଉର୍ଶୁଲାକୁ ବେଶି ବୁଝାଇବାକୁ ପଡ଼ିଲା ନାହିଁ । ସେ ତତ୍‌କ୍ଷଣାତ୍ ତା'ର ଦାୟିତ୍ୱ ବୁଝିନେଇ କଥାବାର୍ତ୍ତା ଆରମ୍ଭ କରିଦେଲା ।

ଇତିମଧ୍ୟରେ ବିଏଟ୍ରିସ୍ ଆସି ନିଜକୁ ଗୋଟିଏ ବୁଦାଭିତରେ ଲୁଚାଇରଖିବା କଥା ଦୁହେଁ ଲକ୍ଷ୍ୟ କରିଥିଲେ ।

ଉର୍ଶୁଲାର ପ୍ରଶ୍ନର ଉତ୍ତର ଦେଲାଭଳି ହେରୋ କହୁଥାଏ, ବାହାରୁ ସିନା ତୁ ବିଏଟ୍ରିସ୍‌କୁ ଏମିତି ରୁକ୍ଷ ଆଉ କଠୋର ଦେଖୁଛୁ, ପ୍ରକୃତରେ ସେ କିନ୍ତୁ ବେଶ୍ ଲାଜକୁଳୀ ଆଉ ବିନୀତ ବି । ମୋର ଭଉଣୀକୁ କ'ଣ ମୋଠୁ ତୁ ଅଧିକ ଜାଣିଛୁ ?

ଉର୍ଶୁଲା କହେ, 'ଲେଡି ଯେ ପ୍ରକୃତରେ ସାମନ୍ତ ବେନେଡିକ୍‌ଙ୍କ ପ୍ରେମରେ ପଡ଼ିଛନ୍ତି, ଏ ବିଷୟରେ କ'ଣ ଆପଣ ନିଶ୍ଚିତ ?'

- ଏ କଥା ମୁଁ କୁମାର ଏବଂ କ୍ଲଡିଓଙ୍କ ମୁହଁରୁ ଶୁଣିଛି । ସେ ଦୁଇଜଣ ହେଉଛନ୍ତି ବେନେଡିକ୍‌ଙ୍କର ଘନିଷ୍ଠ ବନ୍ଧୁ । ଏଇ ପ୍ରେମକଥାଟା ବିଏଟ୍ରିସ୍‌କୁ ଜଣାଇବାପାଇଁ ସେମାନେ ମୋତେ ଅନୁରୋଧ କରିଛନ୍ତି । ମୁଁ କିନ୍ତୁ ସେମାନଙ୍କୁ ଜଣାଇ ଦେଇଛି, ଯଦି ସେମାନେ ବେନେଡିକ୍‌କୁ ପ୍ରକୃତରେ ଭଲ ପାଆନ୍ତି, ତାହାହେଲେ ତା'ର ଏଇ ପ୍ରେମକଥାଟି ଯେମିତି ବିଏଟ୍ରିସ୍ ମୋଟେ ନ ଜାଣେ । ହେରୋ ଜଣାଏ ।

ଉର୍ଶୁଲା କଥାଟାକୁ ଟିକିଏ ତେଜିଦେଇ କହେ, ତମେ ସତ କହୁଛ ଲେଡି ହେରୋ । ଯଦି ଲେଡି ବିଏଟ୍ରିସ୍‌ଙ୍କ କାନରେ ଏକଥା ପଡ଼େ, ତେବେ ସେ ଯେ କ'ଣ କରିବସିବେ, ତା'କହିବା କଷ୍ଟ । ସାମନ୍ତ ବେନେଡିକ୍‌ଙ୍କର ଏଠି ରହିବା ମୁସ୍କିଲ୍ ହୋଇଯିବ ।

ହେରୋ କହିଚାଲେ, 'ସତକଥା କହିବାକୁ ଗଲେ ବେନେଡିକ୍‌ଙ୍କ ଭଳି ଜଣେ ଗୁଣଧର ତରୁଣ ଏ ଯୁଗରେ ମିଳିବା ମୁସ୍କିଲ୍ । ଯେମିତି ରସିକ, ସେମିତି ବୁଦ୍ଧିମାନ୍ । ଦେଖିବାକୁ ସୁନ୍ଦର । ଜନ୍ମ ବି ଅଭିଜାତ ପରିବାରରେ । ବିଏଟ୍ରିସ୍ ଏ ସବୁ କିଛି ଦେଖେ ନାହିଁ । ଖାଲି ନିନ୍ଦା କରିବା ଜାଣିଛି ।'

ଉର୍ଶୁଲା ତାକୁ ସମର୍ଥନ କରି କହେ, 'ତମେ ଠିକ୍ କହୁଛ । ତେବେ ମୁଁ ବି ତମକୁ ସ୍ପଷ୍ଟ କହୁଛି, ଏମିତି ନାକଟେକା ପ୍ରକୃତି ମୋଟେ ଭଲ ନୁହେଁ । ଏଥିରେ ବହୁତ ଦୁଃଖ ଭୋଗ କରିବାକୁ ପଡ଼େ ।'

- ତୁ ଯାହା କହୁଛୁ ତା' ପୂରାପୂରି ଠିକ୍ । ବର୍ତ୍ତମାନ ସମସ୍ୟା ହେଉଛି, ବିଏଟ୍ରିସ୍‌କୁ ଏଇ ପ୍ରେମକଥାଟା ଜଣାଇବ କିଏ ? ମୁଁ ଯଦି କହେ, ତେବେ ସେ ମୋତେ ହସରେ ଉଡ଼ାଇ ଦେବ ।' - ହେରୋ କହିଯାଏ ।

ଉର୍ଶୁଲା କହେ, ଲେଡି, ତମେ ବୋଧହୁଏ ତମ ଭଉଣୀ ପ୍ରତି ଅନ୍ୟାୟ କରୁଛ । ତାଙ୍କର ବୁଦ୍ଧିବିବେଚନା ଯଥେଷ୍ଟ । ସିନର ବେନେଡିକ୍‌ଙ୍କ ଭଳି ଜଣେ ବୁଦ୍ଧିମାନ୍, ସୁଦର୍ଶନ ଏବଂ ଅଭିଜାତ, ଭଦ୍ରପାତ୍ରକୁ ସେ କଦାପି ପ୍ରତ୍ୟାଖ୍ୟାନ କରିବେ ନାହିଁ ।'

ହେରୋ କହେ, 'ସିନର୍‌ଙ୍କ ନାମଟି ଯେମିତି ସୁନ୍ଦର, କାମ ବି ସେମିତି ପରିଚ୍ଛନ୍ନ । ମୋ ଆଖିରେ କ୍ଲଡିଓକୁ ଛାଡ଼ିଦେଲେ ସେ ହିଁ ହେଉଛନ୍ତି ଇଟାଲୀର ଏକ ନମ୍ବର ମଣିଷ ।'

ଏଥର ହେରୋ ଉର୍ଶୁଲାକୁ ପ୍ରସଙ୍ଗ ବଦଳାଇବା ନିମନ୍ତେ ସୂଚନା ଦିଏ । ଜାଲ ମେଲାଇ ଦିଆଗଲା । ଶିକାର ତା'ର ତା'ବାଟରେ ଆସି ସେଥିରେ ପଡ଼ିବ । ତା' ପରେ ଖାଲି ଟାଣିବା କଥା ।

ଉର୍ଶୁଲା ପ୍ରଶ୍ନ କରେ, 'ମାଡାମ୍, ତମର ବାହାଘର କେବେ ?'

ହେରୋ କହେ, ତୁ ଜାଣି ନାହୁଁ ? କାଲି ତ, କାଲି ହିଁ କ୍ଲଡ଼ିଓର ଭାଗ୍ୟ ସହିତ ମୋ ଭାଗ୍ୟ ବାନ୍ଧି ଦିଆଯିବ । ଏଥର ଚାଲ୍, ଭିତରକୁ ଯିବା । କାଲିପାଇଁ ମୋର ଗୋଟାଏ ପୋଷାକ ବାଛିଦେବୁ । କାଲି ମୁଁ ସେଇଆକୁ ପିନ୍ଧିବି ।

ଏତେବେଳଯାଏ ଲୁଚିରହି ବିଏଟ୍ରିସ୍ ନିଃଶ୍ୱାସ ବନ୍ଦକରି ଦୁହିଁଙ୍କ କଥା ଶୁଣୁଥିଲା । ସେମାନେ ଭିତରକୁ ଚାଲିଗଲାପରେ ଚକିତ ହୋଇ କହିଲା-ମୁଁ ଯାହା ଶୁଣୁଥିଲି, ସେସବୁ କ'ଣ ସତ୍ୟ ? ବେନେଡିକ୍ ସତରେ ମୋତେ ଭଲପାଉଛି ? ମୁଁ ଏବେ କ'ଣ କରିବି ? ବଦଳରେ ତାକୁ ଭଲପାଇବି ?

ବେନେଡିକ୍ ଯଦି ପ୍ରକୃତରେ... ହେରୋର କଥା ସତ - ବେନେଡିକ୍ ଭଦ୍ର, ସୁଦର୍ଶନ ଆଉ ବୁଦ୍ଧିମାନ୍, ତା'ପରି ସାହସୀ ବର୍ତ୍ତମାନ ଇଟାଲୀରେ କେତେଜଣ ଅଛନ୍ତି ? ଆଉ ପ୍ରକୃତିଟି କି ସରଳ ! ଯେତେ ଯାହା କହିଲେ ଟିକିଏ ହେଲେ ଛଳ କରେ ନାହିଁ । ସେ ଯଦି ମୋପାଇଁ... ମୋତେ ନିଜକୁ ବଦଳାଇବାକୁ ପଡ଼ିବ । ସେ ମୋତେ ଭଲପାଉଛି, ମୋତେ ମଧ ତାକୁ ଭଲପାଇବାକୁ ପଡ଼ିବ । ପ୍ରେମର ପ୍ରତିଦାନ ପ୍ରେମ...

ଏମିତି ଦୁଇ ମେରୁ ଏକ ହୋଇଗଲେ । ଏତେ କାଳର ଶତ୍ରୁ ହେଲା ମିତ୍ର ... ନିଜ ଅଜ୍ଞାତସାରରେ ଦୁଇଟି ହୃଦୟ ପରସ୍ପରର ଖୁବ୍ ନିକଟକୁ ଆସିଗଲେ ।

ଏହା ପରେ ବେନେଡିକ୍ ଆଉ ବିଏଟ୍ରିସ୍‌ଙ୍କର ଯେତେବେଳେ ଦେଖା ହେଲା, ସେ ଦୃଶ୍ୟଟି ହେଲା ଚିରକାଳ ପାଇଁ ଗୋଟିଏ ଦେଖିବାର ଘଟଣା ।

ଇତିମଧ୍ୟରେ ହେରୋର ଭାଗ୍ୟାକାଶ ଦୁର୍ଯୋଗର ଘନଘଟାରେ ଆଚ୍ଛନ୍ନ ହୋଇପଡ଼ିଲା । ବିବାହର ଦିନ ହିଁ ହେରୋ ଆଉ ତା'ର ପିତା ପ୍ରଚଣ୍ଡ ମାନସିକ ଆଘାତ ପାଇଲେ ।

॥ ୪ ॥

ଘଟଣାଟା ଜାଣିବାକୁ ହେଲେ ଟିକିଏ ପଛକୁ ଫେରିବାକୁ ପଡ଼ିବ । ରାଜକୁମାରଙ୍କର ଥିଲା ଜଣେ ସାବତଭାଇ । ତା'ର ନାମ ଡନ୍ ଜନ୍ । ଯୁଦ୍ଧ ଶେଷ ହୋଇଯିବା ପରେ ସେ ବି କୁମାରଙ୍କ ସହିତ ମେସିନା ଆସିଥିଲା । ଲୋକଟି ଖଳ ପ୍ରକୃତିର । ସବୁଥିରେ ତା'ର ଅସନ୍ତୋଷ । ସେ ରାଜକୁମାରଙ୍କୁ ଘୃଣା କରିବା ସହିତ କ୍ଲଡ଼ିଓକୁ ମଧ ସହ୍ୟ କରିପାରୁ ନ ଥିଲା । ବିଚରା କ୍ଲଡ଼ିଓ କୁମାରଙ୍କର ଘନିଷ୍ଠ ବନ୍ଧୁ ହୋଇଥିବାରୁ ତା'ର ରୋଷର ପାତ୍ର ହୋଇଥିଲା । ଜନ୍ ସ୍ଥିର କରିନିଏ, ଯେକୌଣସି ଉପାୟରେ ହେରୋ ସହିତ କ୍ଲଡ଼ିଓର ବିବାହକୁ ରୋକିବାକୁ ପଡ଼ିବ ।

କାରଣ ଆଉ କିଛି ନାହିଁ । ବିବାହ ହୋଇ ନ ପାରିଲେ ଉଭୟ କ୍ଲଡ଼ିଓ ଏବଂ ରାଜକୁମାର ଦୁହେଁ ଦୁଃଖ ପାଇବେ । ସେଇଥିରେ ହିଁ ଜନ୍‌ର ପରମ ଆନନ୍ଦ ।

ନିଜର ଏଇ ମନ୍ଦ ଉଦ୍ଦେଶ୍ୟକୁ ଚରିତାର୍ଥ କରିବାକୁ ଯାଇ ସେ ବୋରାସିଓ ନାମକ ଆଉଜଣେ ଦୁଷ୍ଟବୁଦ୍ଧିର ଲୋକକୁ କାମରେ ଲଗାଇଦେଲା । ତାକୁ କହିଦେଲା - ଦେଖ, ଯଦି ତମେ କ୍ଲଡ଼ିଓ ଆଉ ହେରୋର ଏଇ ବିବାହକୁ କୌଣସିମତେ ବନ୍ଦ କରାଇ ଦେଇପାରିବ, ତେବେ ମୁଁ ତମକୁ ପ୍ରଚୁର ପୁରସ୍କାର ଦେବି ।

ଲୋଭରେ ପଡ଼ି ବୋରାସିଓ ତା'ର ଯୋଜନା ଆରମ୍ଭ କରିଦେଲା । ପ୍ରଥମେ ସେ ଯାଇ ବନ୍ଧୁତା ଜମେଇଲା ହେରୋର ପରିଚାରିକା ମାର୍ଗାରେଟ ସହିତ । ଏ କଥା ଶୁଣି ମହାଉଲ୍ଲାସରେ ଜନ୍ କହିଲା - 'ବାଃ, ତମେ ତ ଦେଖୁଛି ବେଶ୍ ପାରିବାର । ଅଧାଅଧି କାମ ତ ତମେ ପ୍ରାୟ ଶେଷକରି ଆଣିଛ । ଏଥର ତମକୁ କ'ଣ କରିବାକୁ ହେବ, କହୁଛି । ମନ ଦେଇ

ଶୁଣ । ମାର୍ଗାରେଟ୍‌କୁ ରାଜି କରାଇବ ଯେ ହେରୋ ଶୋଇପଡ଼ିବା ପରେ ସେ ଯେମିତି ତା' ଘରର ଝରକା ପାଖରେ ଠିଆହୋଇ ତମ ସହିତ କଥାବାର୍ତ୍ତା କରେ । ଆଉ ସେ ଯେମିତି ହେରୋର ପୋଷାକ ପିନ୍ଧିଥାଏ । କ'ଣ ହେବ ଜାଣିଛ ? ଦୂରରୁ ଦେଖିଲେ ସମସ୍ତେ ଧରିନେବେ ଯେ, ହେରୋ ହିଁ ଏତେ ରାତିରେ ଝରକା ପାଖରେ ଠିଆହୋଇ ଜଣେ ଅପରିଚିତ ପୁରୁଷ ସହିତ କଥାବାର୍ତ୍ତା କରୁଛି । ଆଉ ଡେରି ନ କରି ତମେ ଶୀଘ୍ର ଯାଇ ମାର୍ଗାରେଟ୍‌କୁ ରାଜି କରାଅ ।'

ଏହାପରେ ଜନ୍ ଯାଏ କୁମାର ଆଉ କ୍ଲଡ଼ିଓଙ୍କ ସହିତ ଦେଖା କରିବାକୁ । ଦୁଇଜଣ ଏକାଠି ଥିଲେ । ଜନ୍ ସେଠି ପହଞ୍ଚି ଏକାବେଳକେ ଆରମ୍ଭ କରିଦିଏ-ବିବାହଟା ତେବେ କାଲି ନିଶ୍ଚୟ ହେଉଛି ?'

କୁମାର କହନ୍ତି - ସନ୍ଦେହ କ'ଣ ?

ଟିକିଏ ଇତସ୍ତତଃ କରିବା ପରେ ଜନ୍ କହେ - ବିବାହ ନ ହେଲେ ବୋଧହୁଏ ଭଲ ହୁଅନ୍ତା !

- କାହିଁକି ? ଏ କଥା କହୁଚ଼ କାହିଁକି ? କୁମାର ଏବଂ କ୍ଲଡ଼ିଓ ସମସ୍ୱରରେ ପ୍ରଶ୍ନ କରନ୍ତି ।

ଜନ୍ ରହି ରହି କହେ -'ପାତ୍ରୀ ହିସାବରେ ହେରୋ ଆଦୌ ଭଲ ନୁହେଁ । ଯେଉଁ ନାରୀ ଅଧରାତିରେ ଝରକା ପାଖରେ ଠିଆହୋଇ ପରପୁରୁଷ ସହିତ କଥାବାର୍ତ୍ତା ଚଳାଏ, ତାକୁ କ'ଣ ଆମେ ଆଦର୍ଶପାତ୍ରୀ କହିବା ? ପୁଣି ଆଜି ଛାଡ଼ି କାଲି ଯାହାର ବିବାହ, ତା' ପକ୍ଷରେ ଏମିତି କରିବା କ'ଣ ଭଲ ? ଖବର ପାଇଛି, ଆଜି ରାତିରେ ବି ସେ ସେଇଆ କରିବ ।'

କ୍ଲଡ଼ିଓ ରାଗିଯାଇ କହେ - 'ମୁଁ ଏକଥା ବିଶ୍ୱାସ କରେ ନାହିଁ ।'

- ମୁଁ ମଧ କରେ ନାହିଁ - କୁମାର ଜୋର୍ ଦେଇ କହନ୍ତି ।

- ବିଶ୍ୱାସ ନ କଲେ ମୋର ଆଉ କରିବାର କ'ଣ ଅଛି ? ତେବେ ମୁଁ ଖାଲି ଏ କଥା କହୁ ନାହିଁ । ଚାହିଁଲେ ପ୍ରମାଣ ମଧ କରିଦେଇପାରେ । ମୁଁ ଠିକ୍ ଖବର ପାଇଛି । ରାତିରେ ଉଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଗଲେ, ସତମିଛ ଆପେ ଆପେ ଜଣାପଡ଼ିଯିବ । ଜନ୍ ଏକା ନିଃଶ୍ୱାସକେ କହିଯାଏ ।

ଦୁଇଜଣଯାକ କହନ୍ତି - 'ବେଶ୍ ସେଇଆ ତେବେ କରିବା ।'

ରହିଯାଇ କ୍ଲଡ଼ିଓ କହେ - ରାତିରେ ଯଦି ପ୍ରକୃତରେ ହେରୋକୁ ସନ୍ଦେହ କଲାଭଳି କିଛି ଦେଖେ, ତେବେ ମୁଁ ଚୁପ୍ ରହିବି ନାହିଁ । କାଲି ଗିର୍ଜାରେ ସମବେତ ଅତିଥିମାନଙ୍କ ନିକଟରେ ମୁଁ ହେରୋର କୀର୍ତ୍ତି ବର୍ଣ୍ଣନା କରିଦେବି । ସମସ୍ତଙ୍କ ଆଗରେ ତାକୁ ଅପଦସ୍ଥ କରିବି ମୁଁ ।

କୁମାର କହନ୍ତି - 'ଯେହେତୁ ଏ ବିବାହରେ ମୁଁ ହିଁ ଉଦ୍‌ଯୋଗୀ ହୋଇଥିଲି, ତେଣୁ ହେରୋକୁ ଅପମାନ ଦେବା ସମୟରେ ମୁଁ ମଧ ତମ ପାଖରେ ଥିବି ।'

ଘଟଣାଟି ସେଇ ରାତିରେ ଘଟିଲା । ଆଉ ଘଟିଲା ବି ଠିକ୍ ଜନ୍‌ର ଯୋଜନା ପ୍ରକାରେ । ଉଦ୍ଦିଷ୍ଟ ସମୟରେ କୁମାର ଏବଂ କ୍ଲଡ଼ିଓ ଜନ୍ ସହିତ ଠିକଣା ସ୍ଥାନରେ ଉପସ୍ଥିତ ହୁଅନ୍ତି । ପୂର୍ବ ପରିକଳ୍ପନା ଅନୁସାରେ ବୋରାସିଓ ଝରକାତଳେ ଠିଆ ହୋଇଥାଏ । ମାର୍ଗାରେଟ୍ ହେରୋର ପୋଷାକ ପିନ୍ଧି ତା' ସହିତ କଥାବାର୍ତ୍ତା କରୁଥାଏ । କୁମାର ଓ କ୍ଲଡ଼ିଓଙ୍କର ଆଉ ଦେଖିବାର କିଛି ନ ଥିଲା ।

ଯାହା ବୁଝିବାର ସେମାନେ ବୁଝିନେଲେ ।

ଜନ୍‌ର ଚକ୍ରାନ୍ତରେ ଏହିଭଳି ନିରୀହା ହେରୋ ଚରିତ୍ରହୀନା ସାବ୍ୟସ୍ତ ହୋଇଗଲା ।

ସ୍ୱାଭାବିକ କାରଣରୁ କ୍ଲଡ଼ିଓ କ୍ରୁଦ୍ଧ ହୁଏ । ହେରୋ ପ୍ରତି ତା'ର ପ୍ରେମ ଗୋଟିଏ ମୁହୂର୍ତ୍ତରେ ତୀବ୍ର ଘୃଣାରେ ପରିଣତ ହୁଏ । ସେ ବାରମ୍ବାର ଭାବୁଥାଏ, ଏଇ ତେବେ ତା'ର ପ୍ରଣୟ ପ୍ରତିମା ! ଏଇଆକୁ ସେ ଜୀବନ ଦେଇ ଭଲ ପାଇଥିଲା ? ଛିଃ...

ସେ ଠିକ୍ କରିନିଏ - ଗିର୍ଜାରେ ସେ ସମସ୍ତଙ୍କ ଆଗରେ ହେରୋର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ କରିବ । କୁମାର ମଧ ତାକୁ ଏଥିପାଇଁ ସମର୍ଥନ କରନ୍ତି । ଯେମିତି ହେଲେ ଏଇ ନଷ୍ଟ ଚରିତ୍ରର ଝିଅଟାକୁ ଶାସ୍ତି ଦେବାକୁ ପଡ଼ିବ । କ୍ଲଡ଼ିଓ ଏଥିପାଇଁ ଯେଉଁ ସିଦ୍ଧାନ୍ତ ନେଇଛି, ତା' ପୂରାପୂରି ଠିକ୍ । ସେ ତାକୁ ଶେଷପର୍ଯ୍ୟନ୍ତ ମାନସିକ ସମର୍ଥନ ଯୋଗାଇ ଦେବେ । କ୍ଲଡ଼ିଓ ଭଳି ଶ୍ରେଷ୍ଠ ଆଉ ଗୁଣବାନ୍ ପାତ୍ର ସହିତ ଯାହାର ବିବାହ ଠିକ୍ ହୋଇଛି, ସେ ପୁଣି ବିବାହର ଠିକ୍ ପୂର୍ବରାତିରେ ଗପ କରୁଛି, ଜଣେ ଅପରିଚିତ ଯୁବକ ସହିତ !

ପ୍ରବଞ୍ଚନା ହେଉଛି ନାରୀର ଅନ୍ୟ ନାମ ।

ବିବାହର ଲଗ୍ନ ଉପସ୍ଥିତ ହୁଏ । ଅତିଥିମାନେ ସବୁ ଗିର୍ଜାରେ ସମବେତ ହୁଅନ୍ତି । କ୍ଲଡ଼ିଓ ଏବଂ ହେରୋ ଯାଇ ଠିଆ ହୁଅନ୍ତି 'ଫ୍ରାୟାର୍' ବା ପୁରୋହିତଙ୍କ ସାମ୍ନାରେ । ପୁରୋହିତ ଯେତେବେଳେ ବିବାହର ପବିତ୍ର ମନ୍ତ୍ର ଉଚ୍ଚାରଣ କରିବାକୁ ଆରମ୍ଭ କରନ୍ତି, ତାଙ୍କୁ ରୁହାଇ କ୍ଲଡ଼ିଓ ନିରୁତ୍ତାପ କଣ୍ଠରେ ହେରୋର କାର୍ଯ୍ୟକଳାପ ସମ୍ପର୍କରେ ବର୍ଣ୍ଣନା କରିଯାଏ । ହେରୋର ନିଷ୍କଳଙ୍କ ଶୁଭ୍ର ଚରିତ୍ର ଗୋଟିଏ ମୁହୂର୍ତ୍ତରେ କଳଙ୍କିତ ହୋଇଯାଏ ।

ହେରୋର ମୁଣ୍ଡରେ ସତେଯେମିତି ବଜ୍ରପାତ ହୁଏ । ବିସ୍ମୟ ଓ ଦୁଃଖରେ ସେ ସ୍ତମ୍ଭୀଭୂତ ହୋଇଯାଏ । ତଥାପି ନିଜକୁ ସମ୍ଭାଳି ନେଇ ସେ କୌଣସିମତେ କହେ - ତମର ଦେହ ଠିକ୍ ଅଛି ତ ? ଏସବୁ କ'ଣ କହୁଛ ?

ଆତଙ୍କିତ ଏବଂ ବିବ୍ରତ ଲିଓନାଟୋ କହନ୍ତି - ଏ କ'ଣ କୁମାର, ତମେ କିଛି କହୁ ନାହଁ କାହିଁକି ?

କୁମାର କହନ୍ତି, 'କ'ଣ ଆଉ କହିବି ? ମୁଁ ନିଜେ ଅପମାନିତ । ଗୋଟାଏ ଦୁଷ୍ଟଚରିତ୍ରା ଝିଅ ସହିତ ମୁଁ ମୋର ବନ୍ଧୁର ବିବାହ ଦେବାକୁ ଯାଉଥିଲି । ଈଶ୍ୱର ମୋତେ ଏ ମହାପାପରୁ ରକ୍ଷା କରିଛନ୍ତି ।'

ଲିଓନାଟୋଙ୍କୁ ଚାରିଆଡ଼ ଅନ୍ଧାର ଦେଖାଯାଏ । ହତବୁଦ୍ଧି ହୋଇ ସେ କହନ୍ତି, ତମେ ଏ କ'ଣ କହୁଛ କୁମାର ? ଏସବୁ କଥାରୁ ବିନ୍ଦୁ କି ବିସର୍ଗ - ମୁଁ କିଛି ବୁଝିପାରୁ ନାହିଁ ।

କୁମାର କହନ୍ତି, 'ବେଶ୍ ତେବେ, ମୁଁ ବୁଝାଇ ଦେଉଛି । କାଲି ରାତିରେ ମୁଁ ଏବଂ ମୋର ଏଇ ବନ୍ଧୁ -ଗୋଟାଏ ଦୃଶ୍ୟ ଦେଖିଛୁ ।'

ଲିଓନାଟୋ ପଚାରନ୍ତି - କ'ଣ ସେ ଦୃଶ୍ୟ ?

- କାଲି ଆମେ ଦେଖିଲୁ, ଆପଣଙ୍କ ଝିଅ ତା'ର ଝରକା ପାଖରେ ଠିଆହୋଇ ଜଣେ ଅଚିହ୍ନା ଯୁବକ ସହିତ ଗପସପ କରୁଛି । ଦୃଶ୍ୟଟା କ'ଣ ପ୍ରୀତିକର ? ଆପଣ କୁହନ୍ତୁ ।

ବେନେଡିକ୍ ଏପର୍ଯ୍ୟନ୍ତ ଚୁପ୍ ଥିଲା । ହଠାତ୍ କହିଉଠିଲା - ବିବାହ ସହିତ ଏସବୁର ସମ୍ପର୍କ କ'ଣ ?

ହାୟ ଈଶ୍ୱର ! ଏତିକି ମାତ୍ର କହୁ କହୁ ବଜ୍ରାହତ ଭଳି ହେରୋ ଅଜ୍ଞାନ ହୋଇ ଭୂଇଁରେ ଲୋଟିପଡ଼େ । ଜଣାଯାଉଥିଲା, ତା'ର ଦେହରୁ କେବଳ ଚେତନା ନୁହେଁ , ପ୍ରାଣ ମଧ୍ୟ ବାହାରିଯାଇଛି ।

କୁମାର ଏବଂ କ୍ଲଡ଼ିଓ ଗିର୍ଜାରୁ ବାହାରିଆସନ୍ତି । ହେରୋର ପରିଣତି ଦେଖିବାପାଇଁ ସେମାନଙ୍କ ମନରେ କୌଣସି ଆଗ୍ରହ ନ ଥିଲା । ରାଗିଗଲେ ମଣିଷ କାଣ୍ଡଜ୍ଞାନ ହରାଏ । ନଚେତ୍ ଏହି ମୁହୂର୍ତ୍ତରେ ସେମାନେ ସଂଜ୍ଞାହୀନା ହେରୋ ଏବଂ ଆତଙ୍କିତ ଲିଓନାଟୋଙ୍କ କଥା ନିଷ୍ଚୟ ଭାବିଥାଆନ୍ତେ ।

ବେନେଡିକ୍ କିନ୍ତୁ ଗିର୍ଜାରେ ରହିଗଲେ । ବିଏଟ୍ରିସ୍ ହେରୋର ଚେତା ଫେରାଇ ଆଣିବା ନିମନ୍ତେ ଚେଷ୍ଟା କରିବାକୁ ଲାଗିଲା । ବେନେଡିକ୍ ତାକୁ ସାହାଯ୍ୟ କରୁଥାଏ ।

ଗୋଟିଏ ସମୟରେ ବେନେଡିକ୍ ପଚାରିଦିଏ- ଲେଡି ହେରୋଙ୍କର ଅବସ୍ଥା ବର୍ତ୍ତମାନ କେମିତି ?

ବେଦନାମଥିତ କଣ୍ଠରେ ବିଏଟ୍ରିସ୍ ଉତ୍ତର ଦିଏ, ତା'ର ଜ୍ଞାନ ବୋଧହୁଏ ଆଉ ଫେରିବ ନାହିଁ । ହୁଏତ ସେ ମରିଯିବ ।

ଭଉଣୀକୁ ବିଏଟ୍ରିସ୍ ବହୁତ ଭଲପାଉଥିଲା । ହେରୋ ଚରିତ୍ରର ନାଡ଼ିନକ୍ଷତ୍ର ସବୁ ତାକୁ ଭଲରୂପେ ଜଣା । ତେଣୁ ଏଠି ଯାହାସବୁ କୁହାଗଲା- ତା'ର ବିନ୍ଦୁ ମାତ୍ର ସେ ବିଶ୍ୱାସ କରୁ ନ ଥିଲା ।

ବୟସ ହେଲେ ମଣିଷ ଦୁର୍ବଳ ହୋଇଯାଏ । ତା'ର ମାନସିକ ଦୃଢ଼ତା ରୁହେ ନାହିଁ । ନ ହେଲେ ଲିଓନାତୋ ଅନ୍ୟ କଥାରେ ନିଜ ଝିଅକୁ ସନ୍ଦେହ କରି ବସିଥାଆନ୍ତେ ? ତଥାପି ଯାହାହେଲେ ବି ନିଜର ରକ୍ତ ତ ! ହେରୋ ପାଇଁ ତାଙ୍କର ଛାତି ଫାଟିଗଲା ଭଳି ଲାଗୁଥାଏ । ତାହାରି ଭିତରେ ସେ ଭାବୁଥାଆନ୍ତି, ଏଭଳି କଳଙ୍କିତ ଜୀବନ ଅପେକ୍ଷା ମୃତ୍ୟୁ ବରଂ ଭଲ । ହେରୋର ଚେତା ନ ଫେରିଲେ ସେ ଖୁସି ହେବେ ।

ତେବେ ପୁରୋହିତ ଥିଲେ ଯଥାର୍ଥରେ ଜଣେ ଜ୍ଞାନୀ ବ୍ୟକ୍ତି । ତାଙ୍କର ବି ବୟସ ହୋଇଛି । ଦେଖି ଦେଖି ସେ ମଣିଷ ଚରିତ୍ର ସମ୍ପର୍କରେ ବେଶ୍ ଭଲଧାରଣା କରିପାରିଛନ୍ତି । ହେରୋ ବିରୋଧରେ ଯେତେବେଳେ ଚରିତ୍ରହୀନତାର ଅଭିଯୋଗ ଅଣାଗଲା, ସେତେବେଳେ ସେ ତାକୁ ଭଲଭାବରେ ନିରୀକ୍ଷଣ କରୁଥିଲେ । ସେ ଲକ୍ଷ୍ୟ କରିଥିଲେ, ଅଭିଯୋଗ ଶୁଣି ଝିଅଟିର ମୁହଁ ଅପମାନରେ ରଙ୍ଗା ପଡ଼ିଯାଇଥିଲା । ଧୀରେ ଧୀରେ ତାହା ବଦଳିଯାଇ ପାଣ୍ଡୁର ବର୍ଣ୍ଣ ଧାରଣ କଲା । ଏଭଳି ନିଷ୍ପାପ ଶୁଚି ସୁନ୍ଦର ମୁହଁ ଯାହାର - ସେ କ'ଣ କୌଣସି ପାପ କରିପାରେ ? ସେ ନିଶ୍ଚୟ ଅପାପବିଦ୍ଧା ।

ଲିଓନାତୋଙ୍କ ଆଡ଼କୁ ଅନାଇ ପୁରୋହିତ ଦୃଢ଼କଣ୍ଠରେ କହିଲେ- ମୋର ବିଶ୍ୱାସ - ଏ ଝିଅ କୌଣସି ଅନ୍ୟାୟ ବା ପାପ କରି ନାହିଁ । ମୋର ଧାରଣା ଯଦି ଭୁଲ୍ ହୁଏ, ତେବେ ଆପଣ ମୋତେ ନିର୍ବୋଧ ଭାବିପାରନ୍ତି । ମୋତେ ଦଣ୍ଡ ଦେଇପାରନ୍ତି । ମୋର ବୟସ ବା ପୋଷାକକୁ ସମ୍ମାନ ଜଣାଇ ନ ପାରନ୍ତି । ମୁଁ ଆହୁରି ବିଶ୍ୱାସ କରେ - ନିଶ୍ଚୟ କେଉଁଠି କିଛି ଗୋଟାଏ ଗୁରୁତର ତ୍ରୁଟି ହୋଇଯାଇଛି । ତା'ରି ଶିକାର ହୋଇଛି ଆପଣଙ୍କର ଏଇ ନିଷ୍ପାପ କନ୍ୟା ।

ହେରୋର ଚେତା ଫେରିଆସିଲା । ତାକୁ ସମ୍ବୋଧନ କରି ପୁରୋହିତ ସ୍ନେହ କୋମଳ କଣ୍ଠରେ କହନ୍ତି, 'ମା ! କୌଣସି ଏକ ଯୁବକକୁ ନେଇ ତମ ବିରୋଧରେ ଅଭିଯୋଗ କରାଯାଇଛି ।'

କ୍ଳାନ୍ତକଣ୍ଠରେ ହେରୋ ଉତ୍ତର ଦିଏ... ଯେଉଁମାନେ ଏ ଅଭିଯୋଗ ଉଠାଇଛନ୍ତି, ସେମାନେ ତାକୁ ଜାଣିଥିବେ । ମୁଁ ତା' ବିଷୟରେ ବିନ୍ଦୁବିସର୍ଗ ଜାଣେନା ।

ପରେ ଲିଓନାତୋଙ୍କ ଆଡ଼କୁ ଅନାଇ ସେ କହେ - ବାପା, କାଲି ରାତିରେ ମୁଁ କୌଣସି ଯୁବକ ସହିତ କଥାବାର୍ତ୍ତା କରିଛି, ଏ କଥା ଯଦି ଆପଣ ପ୍ରମାଣ କରିପାରନ୍ତି, ତେବେ କନ୍ୟା

ହିସାବରେ ମୋତେ ଆପଣ ଅସ୍ୱୀକାର କରିପାରନ୍ତି । ମୋତେ ଘୃଣା କରିପାରନ୍ତି, ଏଭଳିକି ପ୍ରାଣଦଣ୍ଡ ଦେଇପାରନ୍ତି । ଯେଉଁ ଶାସ୍ତି ଦେବେ, ମୁଁ ମଥାପାତି ଗ୍ରହଣ କରିନେବି ।

ପୁରୋହିତ କହିଲେ- କୁମାର ଏବଂ କ୍ଲଡ଼ିଓ ଯେ ଭୁଲ୍‌କରି ବସିଛନ୍ତି, ଏ ଧାରଣା ମୋର ଆହୁରି ଦୃଢ଼ ହୋଇଛି । ଭୁଲ୍ ମଣିଷ କରେ - ସେଥିରେ ଦୁଃଖ ନାହିଁ । ତେବେ ଏହାକୁ ଯେକୌଣସିମତେ ସଂଶୋଧନ କରିବାକୁ ହେବ ।

ଲିଓନାଟୋ ଦୁର୍ବଳ କଣ୍ଠରେ ଜାଣିବାକୁ ଚାହାନ୍ତି - ଏହା କିଭଳି ସମ୍ଭବ ?

ପୁରୋହିତ କହନ୍ତି - ମୋର ଗୋଟିଏ ପ୍ରସ୍ତାବ ଅଛି । ହେରୋର ମୃତ୍ୟୁ ହୋଇଛି ବୋଲି ସେମାନଙ୍କ ପାଖକୁ ଖବର ପଠାଇଦିଅନ୍ତୁ । ତାକୁ ସେମାନେ ଯେଉଁ ଅବସ୍ଥାରେ ଦେଖିଯାଇଛନ୍ତି, ସେଥିରେ ସେମାନେ ଏ କଥା ବିଶ୍ୱାସ କରିଯିବେ । ଆପଣ ଶୋକ ପୋଷାକ ପିନ୍ଧିବେ ଆଉ ଝିଅ ପାଇଁ ନିର୍ମାଣ କରିବେ ଏକ ସ୍ମୃତି ସ୍ତମ୍ଭ । କବର ଦେବା ଆଗରୁ ଯେଉଁସବୁ ଆଚାର ଅନୁଷ୍ଠାନ କରାଯାଏ, ସେସବୁ ମଧ୍ୟ ନିଷ୍ଠାପର ଭାବରେ କରାଯିବ ।

ସେଥିରୁ କ'ଣ ଫଳ ମିଳିବ ? ବିମୂଢ଼ ଲିଓନାଟୋଙ୍କର ଏଇ ପ୍ରଶ୍ନର ଉତ୍ତରରେ ପୁରୋହିତ କହନ୍ତି, ମୋର ସ୍ଥିର ବିଶ୍ୱାସ ଏଇ ମୃତ୍ୟୁସମ୍ବାଦ ଅଭିଯୋଗକାରୀଙ୍କର ହୃଦୟ ପରିବର୍ତ୍ତନ ଘଟାଇବ । ସେମାନଙ୍କର ଘୃଣା ବଦଳିଯିବ କରୁଣାରେ । ମୁଁ ଆହୁରି କିଛି ବି ଏଥିରୁ ଆଶା କରୁଛି । କ୍ଲଡ଼ିଓ ଯେତେବେଳେ ଶୁଣିବ ଯେ, ତା'ର ଅଭିଯୋଗ ଶୁଣି ହେରୋର ମୃତ୍ୟୁ ଘଟିଛି, ସେତେବେଳେ ହେରୋ କଥା ତା'ର ମନେପଡ଼ିବ । ସେତେବେଳେ ସେ ଜାଣିବ କି ମୂଲ୍ୟବାନ୍ ରତ୍ନ ସେ ହରାଇଛି । ଯଦି ସେ ପ୍ରକୃତରେ ହେରୋକୁ ଭଲ ପାଇଥାଏ, ତେବେ ତା'ପାଇଁ ସେ ନିଶ୍ଚୟ କାନ୍ଦିବ । ତା'ର ମନେହେବ, ଅଭିଯୋଗ କରିବାର କାରଣ ଥିଲେ ମଧ୍ୟ ହେରୋକୁ ଏହିଭଳି ସର୍ବସମକ୍ଷରେ ଲଜ୍ଜିତ କରିବା ତା' ପକ୍ଷରେ ଉଚିତ ହୋଇ ନାହିଁ ।

ବେନେଡିକ୍ ନିବେଦନ କରେ, 'ମହାମାନ୍ୟ, ଆପଣ ସମ୍ମାନନୀୟ ପୁରୋହିତ ମହାଶୟଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରନ୍ତୁ । ଆପଣ ଭଲ କରି ଜାଣନ୍ତି, ମୁଁ କୁମାର ଏବଂ କ୍ଲଡ଼ିଓଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରେ । ତଥାପି ଆପଣଙ୍କୁ କଥା ଦେଉଛି ଯେ, ଏଇ ଗୁପ୍ତକଥା ମୁଁ କଦାପି ସେମାନଙ୍କ ଆଗରେ ପ୍ରକାଶ କରିବି ନାହିଁ ।

ଲିଓନାଟୋ ପୁରୋହିତଙ୍କର ପରାମର୍ଶ ମାନିନିଅନ୍ତି । ଖିନ୍ନ ସ୍ୱରରେ କହନ୍ତି, 'ମୁଁ ବର୍ତ୍ତମାନ ଦୁଃଖରେ ଏଭଳି କାତର ହୋଇପଡ଼ିଛି ଯେ, ମୋର ଭଲମନ୍ଦର ଜ୍ଞାନ ରହୁ ନାହିଁ । ଆପଣମାନଙ୍କର ପରାମର୍ଶକୁ ମୁଁ ଗ୍ରହଣ କରି ନେଉଛି ।

ପୁରୋହିତ ହେରୋ ଆଉ ଲିଓନାଟୋଙ୍କୁ ସାନ୍ତ୍ୱନା ଦେଉ ଦେଉ ସେଠାରୁ ନେଇଯାଆନ୍ତି ।

ରହିଯାଆନ୍ତି କେବଳ ବେନେଡିକ୍ ଆଉ ବିଏଟ୍ରିସ୍ ।

॥ ୫ ॥

ନୀରବତା ଭାଙ୍ଗେ ବେନେଡିକ୍ । ସେ ସମବେଦନାପୂର୍ଣ୍ଣ କଣ୍ଠରେ କହେ, 'ଲେଡି ବିଏଟ୍ରିସ୍ ! ତମେ କ'ଣ ଏତେବେଳଯାଏ କାନ୍ଦୁଥିଲ ?'

କୋହଭରା କଣ୍ଠରେ ବିଏଟ୍ରିସ୍ କହେ, 'ହଁ ,କାନ୍ଦୁଥିଲି ଏବଂ ଆହୁରି କାନ୍ଦିବି ।

ବେନେଡିକ୍ କହେ - 'ମୋର ସ୍ଥିର ବିଶ୍ୱାସ, ତମ ଭଉଣୀଙ୍କ ପ୍ରତି ସେମାନେ ଅନ୍ୟାୟ କରିଛନ୍ତି ।'

ବିଏଟ୍ରିସ୍ ତା' ଆଡ଼କୁ ପ୍ରତ୍ୟାଶାପୂର୍ଣ୍ଣ ନେତ୍ରରେ ଅନାଇ କହେ - 'ଯିଏ ଏଇ ଅନ୍ୟାୟର ପ୍ରତିକାର କରିପାରିବ, ମୁଁ ଆଜୀବନ ତା' ପାଦତଳର ଦାସୀ ହୋଇ ରହିବି ।'
ବେନେଡିକ୍ ଚିନ୍ତିତ ଦେଖାଯାଏ । ଏ ଅନ୍ୟାୟର ପ୍ରତିକାର ପାଇଁ କ'ଣ କୌଣସି ବାଟ ଅଛି ? ତମପାଇଁ ମୁଁ ଯେକୌଣସି କାମ କରିପାରେ ।'

- ସତରେ ପାରିବ ? ଆବେଗପୂର୍ଣ୍ଣ କଣ୍ଠରେ ବିଏଟ୍ରିସ୍ ପଚାରେ ।

ଅଭିମାନଭରା କଣ୍ଠରେ ବେନେଡିକ୍ ଉତ୍ତର ଦିଏ, ''ସତକଥାଟା ତେବେ ତମର ଜାଣିବା ଉଚିତ । ବର୍ତ୍ତମାନ ମୋପାଇଁ ଦୁନିଆର ସବୁଠୁଁ ପ୍ରିୟ ହେଉଛ ତମେ । ଅଦ୍ଭୁତ ଶୁଣାଗଲେ ମଧ କଥାଟା ସତ ।''

ବିଏଟ୍ରିସ୍ କହିଲା - ''ମୁଁ ମଧ ତମକୁ ଭଲପାଏ, ବେନେଡିକ୍ । ମୋପାଇଁ ତମେ ହିଁ ହେଉଛ ସଂସାରର ଶ୍ରେଷ୍ଠ ପୁରୁଷ । ତମେ ହୁଏତ ଏକଥା ବିଶ୍ୱାସ କରି ନ ପାର । ତେବେ ଏହା ସତ୍ୟ । ହେରୋ ପାଇଁ ମୋର ଦୁଃଖର ସୀମା ନାହିଁ ।'

ବେନେଡିକ୍ ଉଦ୍ଦୀପ୍ତ କଣ୍ଠରେ କହେ - ଏଇ ତରବାରିର ଶପଥ ନେଇ କହୁଛି, 'ମୁହଁରେ ଯେତେ ପ୍ରତିବାଦ କଲେ ମଧ ତମେ ହିଁ ହେଉଛ ମୋ ଜୀବନର ପ୍ରିୟତମ ନାରୀ । ତମପାଇଁ କିଛି କରିବାକୁ ମୋତେ କହ । ତମେ ଯାହା କହିବ, ମୁଁ ତା' ନିଶ୍ଚୟ କରିବି । ତମେ ଥରେ ଖାଲି ପାଟି ଖୋଲି କହ ।'

ବିଏଟ୍ରିସ୍ ଗମ୍ଭୀର କଣ୍ଠରେ କହେ - 'ମୋ କଥାରେ କାମ କରିବ ତମେ ? ତା' ହେଲେ ମୁଁ କହୁଚି, କ୍ଲଡ଼ିଓକୁ ତମେ ହତ୍ୟାକର ।'

ବିଷଣ୍ଣ କଣ୍ଠରେ ବେନେଡିକ୍ କହେ - 'ସଂସାରର ସମସ୍ତ ସମ୍ପଦର ବିନିମୟରେ ମଧ ମୁଁ ମୋର ପ୍ରିୟବନ୍ଧୁ କ୍ଲଡ଼ିଓର କୌଣସି କ୍ଷତି କରିପାରିବି ନାହିଁ । ତମେ ବରଂ ମୋତେ କ୍ଷମା କର ।'

- କିନ୍ତୁ ତମର ଏଇ ପ୍ରିୟ ବନ୍ଧୁ କ'ଣ ଜଣେ ଖଳପ୍ରକୃତିର ବ୍ୟକ୍ତି ନୁହେଁ ? ବ୍ୟଙ୍ଗପୂର୍ଣ୍ଣ କଣ୍ଠରେ ବିଏଟ୍ରିସ୍ କହେ - ସେ ଯେଉଁଭଳି ଭାବରେ ହେରୋର ଜୀବନକୁ ନେଇ ଖେଳିଛି,

ତାକୁ କ'ଣ କେବେହେଲେ କ୍ଷମା ଦିଆଯାଇପାରିବ ? ମୁଁ ଯଦି ପୁରୁଷ ହୋଇଥାଆନ୍ତି, ତେବେ ହେରୋର ଏଇ ଅପମାନର ପ୍ରତିଶୋଧ ନିଜେ ନେଇଥାଆନ୍ତି -

ବେନେଡିକ୍ କହେ - ମୋ କଥା ଶୁଣ ବିଏଟ୍ରିସ୍ ...

- ନା, କ୍ଲଡ଼ିଓ ସମ୍ପର୍କରେ ଆଉ କୌଣସି କଥା ଶୁଣିବାକୁ ଚାହେଁନା ମୁଁ-ବିଏଟ୍ରିସ୍ କହିଚାଲେ - ଯଦି ପାରୁଚ ହେରୋର ଏଇ ଅପମାନର ପ୍ରତିଶୋଧ ନିଅ । ସେ କୁଆଡ଼େ ତା'ର ଶୋଇବାଘରର ଝରକାପାଖରେ ଠିଆହୋଇ ଜଣେ ଅପରିଚିତ ପୁରୁଷ ସହିତ କଥାବାର୍ତ୍ତା କରିଛି । ତା'ଭଳି ଏକ ସଚ୍ଚରିତ୍ରା-ଝିଅ ବିରୋଧରେ ଏଭଳି କୁତ୍ସିତ ଅଭିଯୋଗ ଆଣିବା କ'ଣ ସଙ୍ଗତ ହୋଇଛି ? ମୁଁ ପୁଣି କହୁଚି, ହେରୋ ପ୍ରତି ଅନ୍ୟାୟ କରାଯାଇଛି । ତାକୁ ଚରମ ଅପମାନ ଭିତରକୁ ଠେଲି ଦିଆଯାଇଛି । ଭଉଣୀ ମୋର ଲଜ୍ଜା ଆଉ ଅପମାନରେ ମୁଣ୍ଡ ଟେକିପାରୁ ନାହିଁ । ଭାଙ୍ଗି ପଡ଼ିଛି ପୂରାପୂରି । ଏଥିପାଇଁ କିଏ ଦାୟୀ ? ଦାୟୀ ହେଉଛି ଏଇ ଦୁଷ୍ଟ କ୍ଲଡ଼ିଓ । ମୋର ଯଦି ପ୍ରକୃତରେ କୌଣସି ବନ୍ଧୁ ଥାଆନ୍ତା, ତେବେ ସେ ଯଥାର୍ଥ ପୁରୁଷ ଭଳି କାର୍ଯ୍ୟ କରିଥାଆନ୍ତା । ଆଉ ତମେ କ'ଣ କରୁଛ ? କୁଆଡ଼େ ଗଲା ତମର ସେ ସାହସ ଆଉ ବୀରତ୍ୱ ! ଗଦ୍‌ଗଦ କଣ୍ଠରେ ଅନ୍ୟର ସ୍ତୁତି ଆଉ ପ୍ରଶଂସା ଗାନକରି ତମେ ଧନ୍ୟ । ମୁଁ ତ ଆଉ ଯେତେ ଯାହା କଲେ ବି ପୁରୁଷ ହୋଇପାରିବି ନାହିଁ । ତେଣୁ ପ୍ରତିଶୋଧ ନେଇ ନ ପାରିବା ଦୁଃଖ ନେଇ ମୋତେ ଏ ସଂସାରରୁ ବିଦାୟ ନେବାକୁ ପଡ଼ିବ ।

'ଟିକିଏ ଅପେକ୍ଷା କର ବିଏଟ୍ରିସ୍ , ମୁଁ ପୁଣିଥରେ ଶପଥ କରି କହୁଛି ଯେ ମୁଁ ତମକୁ ପ୍ରକୃତରେ ଭଲପାଏ ।' ବେନେଡିକ୍ କହେ ।

- ଯଦି ପ୍ରକୃତରେ ଭଲ ପାଇଥାଅ, ତେବେ ମୋର ଇଚ୍ଛାପୂର୍ଣ୍ଣ କର ।' ବିଏଟ୍ରିସ୍ ପୁଣି କହେ ।

ବେନେଡିକ୍ ପଚାରେ, 'ତମେ କ'ଣ ପ୍ରକୃତରେ ବିଶ୍ୱାସ କର ଯେ, କ୍ଲଡ଼ିଓ ହେରୋ ପ୍ରତି ଅନ୍ୟାୟ କରିଛି ?'

'ନିଶ୍ଚୟ' - ବିଏଟ୍ରିସ୍ ଦୃଢ଼ଭାବରେ ଉତ୍ତର ଦିଏ ।

- ଠିକ୍ ଅଛି ତେବେ । ଏତିକି ଯଥେଷ୍ଟ । ମୁଁ କ୍ଲଡ଼ିଓକୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କରିବି । ତମଠୁ ବିଦାୟ ନେଇ ମୁଁ ବର୍ତ୍ତମାନ ଯାଉଛି । ମୋର ଏଇ ଦୁଇହାତର ଶକ୍ତିର ପରିଚୟ କ୍ଲଡ଼ିଓ ଅଚିରେ ପାଇବ । ମୋ କଥା ତ ଶୁଣିଲ । ମତେ ମନେରଖ । ଏବେ ଯାଇ ହେରୋକୁ ସାନ୍ତ୍ୱନା ଦିଅ । ଆପାତତଃ, ବିଦାୟ -

ବେନେଡିକ୍ ଚାଲିଯାଏ ।

॥ ୬ ॥

ବିଏଟ୍ରିସ୍ ଯେତେବେଳେ ଏହିଭଳି ବେନେଡିକ୍‌କୁ ଉତ୍ତେଜିତ କରୁଥିଲା, ସେତେବେଳେ ଲିଓନାଟୋ କୁମାର ଏବଂ କ୍ଲଡ଼ିଓ- ଦୁଇଜଣଙ୍କୁ ଅସି ଯୁଦ୍ଧନିମନ୍ତେ ଆହ୍ୱାନ କରିଥିଲେ ।

ଲିଓନାଟୋ କହିଲେ - 'ତମେ ଦୁଇଜଣ ମୋ ଝିଅର ଯେଉଁ ଚରମ କ୍ଷତି କରିଛ ସେଇ ଅପମାନର ପ୍ରତିଶୋଧ ନେବାପାଇଁ ମୋତେ ଦ୍ୱନ୍ଦ୍ୱଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ହିଁ ପଡ଼ିବ । ଦୁଃଖ ଆଉ ଅପମାନରେ ମୋ ଝିଅର ମୃତ୍ୟୁ ହୋଇଯାଇଛି । ତା' ମୃତ୍ୟୁର ପ୍ରତିଶୋଧ ନେବି ।'

ତେବେ ଲିଓନାଟୋଙ୍କର ବୟସ ଏବଂ ତାଙ୍କର ସାମ୍ପ୍ରତିକ ମାନସିକ ସ୍ଥିତି ବିଚାର କରି ସେମାନେ କହିଲେ, 'ଆପଣଙ୍କର ବୟସ ହୋଇଛି । ଯୁବକମାନଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧରେ ଅବତୀର୍ଣ୍ଣ ହେବା ଶୋଭନୀୟ ନୁହେଁ ।'

ଏହି ସମୟରେ ବେନେଡିକ୍ ସେଠାରେ ପହଞ୍ଚିଯାଏ । କ୍ଲଡ଼ିଓକୁ ଅସି ଯୁଦ୍ଧ ନିମନ୍ତେ ଆହ୍ୱାନ କରେ । କହେ, 'ତୁ ହେରୋ ସହିତ ଯେଉଁ ଅନ୍ୟାୟ କରିଛୁ, ତାର ପ୍ରତିଶୋଧ ନେବାପାଇଁ ମୋତେ ଏଇ ଯୁଦ୍ଧ ଡାକରା ଦେବାକୁ ପଡୁଛି ।'

ରାଜକୁମାର କ୍ଲଡ଼ିଓ ଆଡ଼କୁ ଅନାଇ କହନ୍ତି, 'ନିଶ୍ଚୟ ବିଏଟ୍ରିସ୍ ତାକୁ ଏଇ ଯୁଦ୍ଧ ପାଇଁ ଏଠାକୁ ପଠାଇଛି ।'

କ୍ଲଡ଼ିଓ ନିଶ୍ଚୟ ବେନେଡିକ୍‌ର ଏଇ ସ୍ପର୍ଦ୍ଧାର ପ୍ରତ୍ୟୁତ୍ତର ଦେଇଥାଆନ୍ତା । ତେବେ ଯୁଦ୍ଧ ଆଉ କରିବାକୁ ପଡ଼ିଲା ନାହିଁ । ଈଶ୍ୱରଙ୍କର ଅପାର କରୁଣାରୁ ହେରୋର ନିର୍ଦ୍ଦୋଷିତାର ପ୍ରମାଣ ମିଳିଗଲା ।

କୁମାର ଏବଂ କ୍ଲଡ଼ିଓ ଯେତେବେଳେ ବେନେଡିକ୍ ସହିତ ଦ୍ୱନ୍ଦ୍ୱଯୁଦ୍ଧର ସର୍ତ୍ତ ବିଷୟରେ ଆଲୋଚନା କରୁଥିଲେ, ସେତେବେଳେ ଜଣେ ବିଚାରପତି ବୋରାସିଓକୁ ବନ୍ଦୀକରି ଆଣି ସେଠାରେ ପହଞ୍ଚିଲେ ।

କୁମାର ତାଙ୍କୁ ଆସିବାର କାରଣ ପଚାରିଲେ ।

ମାଜିଷ୍ଟ୍ରେଟ୍ କହିଲେ - ଏଇ ଲୋକଟା ଅହଙ୍କାର କରି ନିଜର ଜଣେ ସଙ୍ଗୀକୁ ତା'ର ଦୁଷ୍କର୍ମର ବିବରଣୀ ଦେଉଥିଲା । କହୁଛି, ଏ କାମ କରିବା ପାଇଁ ଡନ୍ ଜନ୍ ତାକୁ ନିଯୁକ୍ତ କରିଥିଲେ । ଲେଡି ହେରୋଙ୍କର ବିବାହ କେମିତି ସେ ଭାଙ୍ଗି ଦେଇଛି, ତାହା ଗର୍ବର ସହିତ ଅନ୍ୟମାନଙ୍କ ଆଗରେ ବର୍ଣ୍ଣନା କରୁଥିଲା । ମୋ ଲୋକମାନେ ଏ ସବୁ କଥା ଶୁଣି ତାକୁ ଗିରଫ କରି ମୋ ପାଖକୁ ନେଇଆସନ୍ତି । ମୁଁ ତାକୁ ଧରି ଆପଣମାନଙ୍କ ପାଖକୁ ଆସିଛି ।'

ସବୁକଥା ସେମାନଙ୍କ ଆଗରେ ସ୍ୱୀକାର ନ କରି ବୋରାସିଓର ଉପାୟ ନ ଥିଲା । ସେ କହେ - 'ମୁଁ ହିଁ ଲେଡି ହେରୋଙ୍କ ଝରକାତଳେ ଠିଆ ହୋଇଥିଲି । ଲେଡି ମୋ ସହିତ କଥାବାର୍ତ୍ତା

ହୋଇ ନାହାନ୍ତି । ତାଙ୍କ ପୋଷାକ ପିନ୍ଧି ମାର୍ଗାରେଟ୍ ହିଁ ମୋ ସାଙ୍ଗରେ ଗପୁଥିଲା । ଅନ୍ଧାର ଭିତରେ ଆପଣମାନେ ତାକୁ ଲେଡି ହେରୋ ବୋଲି ଧରି ନେଇଛନ୍ତି । ଲେଡି କୌଣସି ପାପ କରି ନାହାନ୍ତି । ମୋରି ପାଇଁ ତାଙ୍କର ବାହାଘର ଭାଙ୍ଗିଲା - ସେ ମୃତ୍ୟୁବରଣ କଲେ ।'

ଏଥର ଅନୁତାପ କରିବାର ପାଳି କୁମାର ଏବଂ କ୍ଲଡ଼ିଓଙ୍କର । ବୋରାସିଓର ସ୍ୱୀକାରୋକ୍ତି ଫଳରେ ସବୁକଥା ସେମାନଙ୍କ ଆଗରେ ଦିବାଲୋକ ଭଳି ସ୍ପଷ୍ଟ ହୋଇଯାଏ । ସେମାନେ ବୁଝନ୍ତି, ହେରୋ ପ୍ରତି ପ୍ରକୃତରେ ଅନ୍ୟାୟ କରାଯାଇଛି । ସେ ନିଷ୍ପାପ ।

ଏତିକିବେଳେ ଖବର ମିଳେ ଯେ, ଡନ୍ ଜନ୍ କୁଆଡ଼େ ପଳାଇଯାଇଛି । ସତ୍ୟ ପ୍ରକାଶ ହୋଇଯିବା ପରେ ଦଣ୍ଡ ଭୟରେ ତା'ର ପଳାଇବା ଛଡ଼ା ଅନ୍ୟ ଉପାୟ ନ ଥିଲା । କୁମାର ଓ କ୍ଲଡ଼ିଓଙ୍କ ମନରେ ତଥାପି ଯଦିଚ ସନ୍ଦେହର କିଛି କଳାମେଘ ରହିଯାଇଥିଲା, ଜନ୍‌ର ଏହି କାର୍ଯ୍ୟରେ ତାହା କାହିଁ କୁଆଡ଼େ ଉଡ଼ିଗଲା ।

ସେମାନେ ବୁଝିଗଲେ, ଜନ୍ ହିଁ ହେଉଛି ପ୍ରକୃତ ଖଳନାୟକ । ପ୍ରାଣ ଭୟରେ ସେ ମେସିନା ଛାଡ଼ି ପଳାଇଯାଇଛି ।

ସବୁକଥା ଜାଣିଯିବା ପରେ କ୍ଲଡ଼ିଓର ମନ ଦୁଃଖ ଆଉ ଅନୁଶୋଚନାରେ ଭରିଯାଏ । ଭଲଭାବେ ନ ବିଚାରି, ହେରୋ ବିରୋଧରେ ଏଭଳି ଅଭିଯୋଗ ଉଠାଇବା ତା' ପକ୍ଷରେ ଉଚିତ ହୋଇ ନାହିଁ । ତା'ରି ଅବିମୃଷ୍ୟକାରିତାରୁ ବିଚାରୀ ନିର୍ଦ୍ଦୋଷ ହେରୋ ଅକାଳରେ ପ୍ରାଣ ବିସର୍ଜନ କରିଛି । ସେ ଯେଉଁ କଠୋର କଥାଗୁଡ଼ିକ କହିଗଲା, ଯେକୌଣସି ସ୍ୱାଭିମାନୀ ଲୋକ ତହିଁରେ କ୍ଷୁଣ୍ଣ ଏବଂ ଅପମାନିତ ହେବା ସ୍ୱାଭାବିକ । ସେଇ ଦୁଃଖରେ ହେରୋ ଆତ୍ମହତ୍ୟା କରିଛି । ଏ ଦୁଃଖ କ୍ଲଡ଼ିଓ ରଖିବ କେଉଁଠି ?

ହେରୋ କଥା ଭାବି ତା'ର କୋମଳ ଏବଂ ଭାବପୂର୍ଣ୍ଣ ମୁହଁଟିକୁ ସ୍ମରଣ କରି କ୍ଲଡ଼ିଓର ଚକ୍ଷୁ ସଜଳ ହୋଇ ଉଠିଲା ।

କୁମାରଙ୍କ ଆଡ଼କୁ ଅନାଇ ସେ କହେ.. ବୋରାସିଓର କଥା ଶୁଣି ମୋର ମନେ ହେଉଥିଲା, ନିଜ ହାତରେ ସତେଯେମିତି ମୁଁ ବିଷପାନ କରୁଛି !

ତା' ପରେ ଅବସନ୍ନ ଓ ମ୍ରିୟମାଣ ଲିଓନାଟୋଙ୍କୁ ସମ୍ବୋଧନ କରି ସେ କାତର କଣ୍ଠରେ କହିଯାଏ - 'ମୁଁ ଯେଉଁ ଗୁରୁତର ଅପରାଧ କରିଛି, ତା' ପାଇଁ କ୍ଷମା ନାହିଁ । ଆପଣଙ୍କର ଓ ଆପଣଙ୍କ ଝିଅର ଯେଉଁ ବିପୁଳ କ୍ଷତି ମୋଦ୍ୱାରା ହୋଇଛି, ସେଥିପାଇଁ ଯେଉଁ ପ୍ରାୟଶ୍ଚିତ୍ତ କରିବାକୁ ମୋତେ କହିବେ, ମୁଁ ସେଥିପାଇଁ ପ୍ରସ୍ତୁତ ଅଛି । ଯାହା ଦଣ୍ଡ ଦେବେ, ତା' ଗ୍ରହଣ କରିବି ।'

ଲିଓନାଟୋ କହନ୍ତି -'ପ୍ରାୟଶ୍ଚିତ୍ତ ତ ତମକୁ କରିବାକୁ ପଡ଼ିବ । କାଲି ସକାଳେ ହେରୋର ଏକ ଜ୍ଞାତି-ଭଉଣୀ ସହିତ ତମକୁ ବିବାହ କରିବାକୁ ହେବ । ବର୍ତ୍ତମାନ ହେରୋର ଅବର୍ତ୍ତମାନରେ ସେଇ ହେଉଛି ମୋର ପ୍ରକୃତ ଉତ୍ତରାଧିକାରିଣୀ । ଦେଖିବାକୁ ସେ ଠିକ୍ ହେରୋ ଭଳି ।'

କ୍ଲଡ଼ିଓ କହେ - 'ଯଦି ଏଥିରେ ଆପଣ ଶାନ୍ତି ପାଆନ୍ତି, ତେବେ ମୁଁ ନିଶ୍ଚୟ ଏ ବିବାହ କରିବି । ଏଇ ଝିଅଟି ଦେଖିବାକୁ ଯଦି ଇଥିଓପିଆର ଝିଅଙ୍କ ଭଳି କୃଷ୍ଣାଙ୍ଗୀ ହୋଇଥାଏ, ତେବେବି ମୋର ଆପତ୍ତି ନାହିଁ ।'

କ୍ଲଡ଼ିଓର ମନ ଦୁଃଖ ଆଉ ବେଦନାରେ ପୂର୍ଣ୍ଣ । କେତେ କଥା ସେ ଭାବିଥିଲା, ଆଉ କ'ଣ ହେବାକୁ ଯାଉଛି ! ହେରୋକୁ ନେଇ ତା'ର ଯେଉଁ ମଧୁର କଳ୍ପନା ସବୁ ଥିଲା, ସେ ସବୁ ଶେଷ ହୋଇଯାଇଛି ।

ରାତିସାରା ସେ ଶୋଇପାରିଲା ନାହିଁ । ହେରୋର ସମାଧି ନିକଟରେ ବସି ସେ କାନ୍ଦିଲା । ଯେଉଁ ଭୁଲ୍ ସେ କରିଛି, ଏ ଜୀବନରେ ଆଉ ତାକୁ ସଂଶୋଧନ କରାଯାଇପାରିବ ନାହିଁ ।

॥ ୭ ॥

ଯଥାରୀତି ସକାଳ ହୋଇଛି ।

ନିର୍ଦ୍ଧାରିତ ସମୟରେ କୁମାର କ୍ଲଡ଼ିଓକୁ ନେଇ ଗିର୍ଜାରେ ପହଞ୍ଚନ୍ତି । ପ୍ରସ୍ତାବିତ ପାତ୍ରୀ ସହିତ ଏଇଠି କ୍ଲଡ଼ିଓର ବିବାହ ହେବ । ପୁରୋହିତ, ଲିଓନାତୋ, ବିଏଟ୍ରିସ୍ ଏବଂ ବେନେଡିକ୍ ପ୍ରଭୃତି ସେଠାରେ ପୂର୍ବରୁ ଉପସ୍ଥିତ ଥିଲେ ।

ଲିଓନାତୋ ଝିଅଟିକୁ କ୍ଲଡ଼ିଓ ପାଖକୁ ନେଇଆସନ୍ତି । ଝିଅ ଉପରେ ଗୋଟିଏ ଓଢ଼ଣୀ ପଡ଼ିଥାଏ । କ୍ଲଡ଼ିଓ ତା'ର ମୁହଁ ଦେଖିପାରୁ ନ ଥାଏ ।

ତା' ଆଡ଼କୁ ଅନାଇ କ୍ଲଡ଼ିଓ କହେ, ପୁରୋହିତ ମହାଶୟଙ୍କ ଆଗରେ ତମର ହାତ ମୋ ହାତ ଉପରେ ରଖ । ତମେ ଯଦି ମୋତେ ବିବାହ କର, ତେବେ ମୁଁ ହେବି ତମର ସ୍ୱାମୀ ।

ଓଢ଼ଣୀ ଭିତରୁ ଝିଅଟି କହେ - ମୁଁ ଯେତେବେଳେ ବଞ୍ଚିଥିଲି, ସେତେବେଳେ ମଧ ମୁଁ ତମର ସ୍ତ୍ରୀ ଥିଲି ।

ଏତିକି କହି ଝିଅଟି ତା' ମୁହଁଉପରୁ ଓଢ଼ଣୀ ହଟାଇଦିଏ । ଅବାକ୍ ହୋଇ କ୍ଲଡ଼ିଓ ଲକ୍ଷ୍ୟ କରେ, ଏ ତ ହେରୋର କୌଣସି ଭଉଣୀ ନୁହେଁ, ବରଂ ସ୍ୱୟଂ ହେରୋ ।

ନିଜର ଆଖିକୁ କ୍ଲଡ଼ିଓ ବିଶ୍ୱାସ କରିପାରେ ନାହିଁ । କୁମାର ମଧ କମ୍ ଅବାକ୍ ହୁଅନ୍ତି ନାହିଁ । ସେ କହନ୍ତି, ଏ କିଏ ? ଏ ଯେ ପ୍ରକୃତରେ ଲେଡି ହେରୋ ! ସେ ତେବେ ପ୍ରକୃତରେ ମରି ନାହାନ୍ତି ।

ଲିଓନାତୋ କହନ୍ତି, 'ଯେତେଦିନଯାଏ ତା' ଚରିତ୍ରରେ କଳଙ୍କର ଦାଗ ଲାଗିଥିଲା, ସେତେଦିନଯାଏ ସେ ଥିଲା ମୃତା । ଏବେ ସେହି କାଳିମା ଅପସୃତା; ତେଣୁ ହେରୋ ପୁଣି ବଞ୍ଚି ଉଠିଛି ।'

ହେରୋଙ୍କୁ ଫେରିପାଇ କ୍ଲଡ଼ିଓର ମନ ଆନନ୍ଦରେ ପୂର୍ଣ୍ଣ ହୁଏ ।

ପୁରୋହିତ କହନ୍ତି , ଘଟଣାଟି ବେଶ୍ ଅଲୌକିକ ମନେହେଉଛି ନୁହେଁ ? ଆଗ ବିବାହଟା ହୋଇଯାଉ । ତା' ପରେ ମୁଁ ସବୁକଥା ବୁଝାଇଦେବି ।

ପୁରୋହିତ ମନ୍ତ୍ର ଉଚ୍ଚାରଣ କରିବାକୁ ଆରମ୍ଭ କରନ୍ତି । ହଠାତ୍ ତାଙ୍କୁ ବାଧା ଦେଇ ବେନେଡିକ୍ କହିଉଠେ, 'ଟିକିଏ ଅପେକ୍ଷା କରନ୍ତୁ ଫାଦର୍ । ଆପଣଙ୍କୁ ଏକାସାଙ୍ଗରେ ଆଉ ଗୋଟିଏ ବିବାହ ଦେବାକୁ ପଡ଼ିବ । ମୋ ସହିତ ବିଏଟ୍ରିସ୍‌ର ବିବାହ ମଧ ହେବ, ଏହି ଲଗ୍ନରେ । ତାକୁ ମୁଁ ଏତେ ଭଲପାଏ ଯେ, ତାକୁ ଛାଡ଼ି ଆଉ ବେଶିଦିନ ରହିବା ମୋ ପକ୍ଷରେ ସମ୍ଭବ ହେଉ ନାହିଁ ।'

ବିଏଟ୍ରିସ୍ ଇତସ୍ତତଃ କରିବାକୁ ଲାଗେ ।

ବେନେଡିକ୍ କହେ - 'ତମେ ବାଧା ଦେଉଛ କାହିଁକି ? ମତେ ଭଲପାଅ ଯେତେବେଳେ, ବିବାହରେ ଆପତ୍ତି କାହିଁକି ?'

ଉତ୍ତର ଦେଲା ହେରୋ । ସେ ଜଣାଇଲା ଯେ, ଅତୀତରେ କେବଳ ମଜା କରିବାକୁ ହିଁ ସେ ବିଏଟ୍ରିସ୍ ମନରେ ବେନେଡିକ୍ ପ୍ରତି ଆଉ ବେନେଡିକ୍ ମନରେ ବିଏଟ୍ରିସ୍ ପ୍ରତି ପ୍ରେମ ଭାବନାର ସୃଷ୍ଟି କରାଇଥିଲା । ତେବେ ଫଳ ହୋଇଛି ଅନ୍ୟ ପ୍ରକାର । ଏବେ ସେମାନେ ପ୍ରକୃତରେ ପରସ୍ପରକୁ ଗଭୀର ଭାବରେ ଭଲ ପାଇଯାଇଛନ୍ତି । ଏବେ ତେଣୁ ସେମାନେ ଯଥାର୍ଥରେ ପ୍ରେମିକ-ପ୍ରେମିକା ।

ତେବେ ପ୍ରକୃତ କଥାଟା ଜଣାପଡ଼ିଯିବା ପରେ ମଧ ଦୁହିଁଙ୍କର ମନୋଭାବରେ ତିଳେମାତ୍ର ପରିବର୍ତ୍ତନ ହେଲା ନାହିଁ । ସେମାନେ ବରଂ ପୂର୍ବ ଅପେକ୍ଷା ପରସ୍ପରକୁ ଅଧିକ ନିବିଡ଼ ଭାବରେ ଭଲ ପାଇବାକୁ ଲାଗିଲେ ।

ବେନେଡିକ୍ ଯେତେବେଳେ ଠିକ୍ କରିଛି ଯେ ସେ ବିଏଟ୍ରିସ୍‌କୁ ବାହା ହେବ, ସେତେବେଳେ ଏ ବ୍ୟାପାରରେ କିଏ କ'ଣ କହୁଛି ବା କହିବ, ସେ ବିଷୟରେ ମୁଣ୍ଡ ଖେଳାଇବାକୁ ସେ ଆଦୌ ରାଜି ନୁହେଁ । ପୁଣି ବିଏଟ୍ରିସ୍ ତାକୁ ଭଲପାଏ । ଏହାର ଅନେକ ପ୍ରମାଣ ସେ ପାଇଛି । ତେଣୁ ଏଥିରେ ଅନ୍ୟ କିଏ କ'ଣ କହିଲା, ସେ କଥାର ଗୁରୁତ୍ୱ କ'ଣ ?

ବିବାହ ସେ ବିଏଟ୍ରିସ୍‌କୁ ହିଁ କରିବ ।

ତଥାପି ସେ ରସିକତା କରିବାକୁ ଭୁଲେ ନାହିଁ । ବିଏଟ୍ରିସ୍ ଆଡ଼କୁ ଅନାଇ ଛଦ୍ମ ଗାମ୍ଭୀର୍ଯ୍ୟରେ କହେ, ନିତାନ୍ତ ଦୟାପରବଶ ହୋଇ ମୁଁ ତମକୁ ନିଜର ସ୍ତ୍ରୀ ରୂପେ ଗ୍ରହଣ କରୁଛି । କାହିଁକି ନା ମୁଁ ଶୁଣିଲି ଯେ, ମୋତେ ଭଲପାଇବାକୁ ତମେ କୁଆଡ଼େ ପାଗଳ ହୋଇ ଉଠିଛ । ପୁଣି ମୋତେ ନ ପାଇଲେ, ତମେ ମରିଯାଇପାର ।

ବିଏଟ୍ରିସ୍ ମଧ ଛାଡ଼େ ନାହିଁ, ସେ ପ୍ରତିବାଦରେ ଫାଟିପଡ଼େ । କହେ-ଓଃ, ଭଲପାଇବା ନା ନିଆଁ ପାଉଁଶ । ଏମାନେ କହିଲେ ଯେ, ମୋତେ ନ ପାଇଲେ ତମେ କୁଆଡ଼େ ଦୁରାରୋଗ୍ୟ ବ୍ୟାଧିରେ ପଡ଼ିଯିବ ! ସେଇଥିପାଇଁ, ବୁଝିଲ କେବଳ ଜଣେ ମଣିଷର ଜୀବନ ବଞ୍ଚାଇବା ପାଇଁ ମୁଁ ଶେଷ ପର୍ଯ୍ୟନ୍ତ ତମକୁ ବିବାହ କରିବାକୁ ରାଜି ହୁଏ । ମୋ ପାଇଁ କାହାର ଯଦି ମୃତ୍ୟୁ ହୋଇଯାଏ, ତେବେ ସେ ପାପ କାହାକୁ ଲାଗନ୍ତା ? ମୋତେ ନା ?

ବେନେଡିକ୍ କହେ -ସତରେ ନା କ'ଣ ?

ବିଏଟ୍ରିସ୍ ଗର୍ଜନ କରି କହେ... 'ଅକ୍ଷରେ ଅକ୍ଷରେ ସତ । ମୁଁ ଦୟାକରି ତମର ଜୀବନଟା ରକ୍ଷା କରିଦେବାକୁ ଆସିଛି ।'

ଦୁଇଜଣଙ୍କର ବାକ୍ୟୁଦ୍ଧ ହୁଏତ ଆହୁରି କିଛି ସମୟ ପର୍ଯ୍ୟନ୍ତ ଚାଲିଥାଆନ୍ତା । ତେବେ ପୁରୋହିତ ଆଉ ବିଳମ୍ବ ନ କରି ହେରୋ ଆଉ କ୍ଲଡ଼ିଓକୁ ବିବାହ ବନ୍ଧନରେ ବାନ୍ଧିବାର ଉଦ୍‌ଯୋଗ କରି ମନ୍ତ୍ର ଉଚ୍ଚାରଣ କରିବାକୁ ଆରମ୍ଭ କରନ୍ତି । ସେମାନଙ୍କର ବିବାହ ଶେଷ ହୋଇଯାଏ ।

ତା'ପରେ ବେନେଡିକ୍ ସହିତ ବିବାହ ହୁଏ ବିଏଟ୍ରିସ୍‌ର ।

ଖୁସିର ବନ୍ୟା ବହିଯାଏ ।

ଲିଓନାଟୋଙ୍କର ପ୍ରାସାଦରେ ଉତ୍ସବ ଆରମ୍ଭ ହୁଏ ।

ବିରାଟ ଭୋଜିର ଆୟୋଜନ କରାଯାଏ । ଭୂରି ଭୋଜନରେ ଆପ୍ୟାୟିତ ହୋଇ ନିମନ୍ତ୍ରିତମାନେ ଧନ୍ୟ ଧନ୍ୟ କରିବାରେ ଲାଗନ୍ତି ।

ଗୋଟିଏ ଦିନରେ ଯୋଗ୍ୟ ପାତ୍ରଙ୍କ ହାତରେ ଦୁଇ ଭଉଣୀଙ୍କର ସମ୍ପ୍ରଦାନ । ଏ ତ କିଛି କମ୍ ଆନନ୍ଦର କଥା ନୁହେଁ !

॥ ୮॥

କାହାଣୀର ଆଉ ସାମାନ୍ୟ ଅଂଶ ବାକି ରହିଯାଇଛି । ଷଡ଼୍‌ଯନ୍ତ୍ରକାରୀ ଡନ୍ ଜନ୍ ମେସିନାରୁ ପଳାଇଥିଲା । ତେବେ ସେ ବେଶି ବାଟ ଯାଇପାରେ ନାହିଁ । ଅଧା ବାଟରେ ଧରା ପଡ଼ିଯାଏ । ତାକୁ ଅଣାଯାଏ ମେସିନାକୁ । ନିଜ ଆଖିରେ ସେ ଦେଖେ ଉତ୍ସବମୁଖର ନଗରର ଆନନ୍ଦକୁ । ଦୁଇ ଦୁଇଟା ବିବାହ ଉତ୍ସବରେ ନଗର ସତେ ଯେମିତି ଉଲ୍ଲାସରେ ପ୍ରମତ୍ତ ହୋଇ ଉଠିଛି !

ଦେଖି ଦେଖି ଈର୍ଷାରେ ତା'ର ଦେହ ମନ ଜଳିଯାଏ ।

ବଞ୍ଚିଥିବା ପର୍ଯ୍ୟନ୍ତ ତାକୁ ଏହିଭଳି ଜଳିବାକୁ ହେବ ।

ଏହା ଅପେକ୍ଷା କଠିନ ଶାସ୍ତି ତା'ପାଇଁ ଆଉ କ'ଣ ହୋଇ ପାରିଥାଆନ୍ତା ?

# ଦି ଟେମିଂ ଅଫ ଦି ଶ୍ରୁ

॥ ୧ ॥

ଇଟାଲୀରେ ରହିଛି ପାଡୁଆ ନାମକ ନଗର । ସେଠାରେ ରହନ୍ତି ବାପ୍ତିସ୍ତା ମିନୋଲା ନାମକ ଜଣେ ଧନୀ । କାଥେରିନ୍ ଆଉ ବିୟେଙ୍କା ନାମକ ଦୁଇ ସୁନ୍ଦରୀ କନ୍ୟାର ପିତା ସେ । କନିଷ୍ଠା ବିୟେଙ୍କା ସ୍ୱଭାବରେ ମଧୁର । ବହୁ ତରୁଣ ଏଇ ସୁନ୍ଦରୀକୁ ଅର୍ଦ୍ଧାଙ୍ଗିନୀ ରୂପରେ ପାଇବା ପାଇଁ ବ୍ୟାକୁଳ । ବିବାହ ତ ତା'ର ବହୁ ପୂର୍ବରୁ ହୋଇଯିବାର କଥା । ତେବେ ...

ଅସୁବିଧା ଗୋଟିଏ ଅଛି । ବାପ୍ତିସ୍ତା ସ୍ଥିର କରିଥାଆନ୍ତି ପ୍ରଥମେ ଜ୍ୟେଷ୍ଠା , ତା'ପରେ... । ଜ୍ୟେଷ୍ଠାଟି ସୁନ୍ଦରୀ ଅବଶ୍ୟ । ତେବେ ପ୍ରକୃତିରେ ଅତ୍ୟନ୍ତ ରୁକ୍ଷ । ଶରୀରର ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ ଭିତରେ ତା'ର ଜିହ୍ୱା ନାମକ ବାଚକ ଇନ୍ଦ୍ରିୟଟି ଅତ୍ୟନ୍ତ ଶାଣିତ । ପ୍ରାୟ ତା'ର ସଂସ୍ପର୍ଶରେ ଆସୁଥିବା ଅନେକେ ଏହାର ପରାକ୍ରମ ଭୋଗିଛନ୍ତି । ଏପରିକି ବୟସ୍କମାନେ ମଧ ବାଦ୍ ପଡ଼ନ୍ତି ନାହିଁ । ଏହିଭଳି ସ୍ୱଭାବ ଯୋଗୁଁ ସହଜରେ କେହି ତା'ର ପାଖ ପଶିବାକୁ ଚାହାନ୍ତି ନାହିଁ । ବାପ୍ତିସ୍ତାଙ୍କର ଗୃହର ଆଖପାଖ ଦେଇ ମଧ ଯିବାକୁ ଇଚ୍ଛା କରନ୍ତି ନାହିଁ । ସାରା ନଗରରେ ଏହି କଥାଟି ପ୍ରଚାରିତ ହୋଇଯାଇଛି । କାଥେରିନ୍‌ର ନାମ ପଡ଼ିଯାଇଛି - 'କାଥେରିନ୍ ଦି ଶ୍ରୁ' ।

ଏଭଳି ଚଣ୍ଡୀ ଝିଅର ପାତ୍ର ଜୁଟିବ କେମିତି ? ତା'ର ବିବାହ ନିକଟ ଭବିଷ୍ୟତ୍‌ରେ ହେବାର କୌଣସି ସମ୍ଭାବନା ଦେଖାଯାଉ ନାହିଁ । ଆଉ ସେଇଥିପାଇଁ ବିଚାରୀ ସାନଝିଅର ବିବାହ ମଧ ଅଟକି ରହିଛି ।

ଗ୍ରେମିଓ ଏବଂ ହର୍ଟେନସିଓ ହେଉଛନ୍ତି ପାଡୁଆର ଦୁଇଜଣ ଧନୀ ଯୁବକ । ଦୁଇଜଣ ଯାକ ବିୟେଙ୍କାକୁ ବାହା ହେବାକୁ ଚାହାନ୍ତି । ସେଥିପାଇଁ ଦୁହିଁଙ୍କ ଭିତରେ ସମ୍ପର୍କ ଭଲ ନୁହେଁ । ବାପ୍ତିସ୍ତା ତ ପଣ କରି ବସିଛନ୍ତି, ଆଗେ ବଡ଼, ତା'ପରେ ଯାଇ ...

ଦିନେ ରାସ୍ତାରେ ବାପ୍ତିସ୍ତାଙ୍କ ସହିତ ଗ୍ରେମିଓ ଆଉ ହର୍ଟେନସିଓଙ୍କର ଦେଖା ହୋଇଯାଏ । ବାପ୍ତିସ୍ତାଙ୍କ ସାଙ୍ଗରେ ଥାଆନ୍ତି ତାଙ୍କର ଦୁଇଝିଅ । ବାପ୍ତିସ୍ତା ମଧ ଜାଣନ୍ତି ଏ ଦୁଇ ଯୁବକଙ୍କର ମନୋଭାବ । କହନ୍ତି 'ତମ ଦୁଇଜଣଙ୍କ ଭିତରୁ ଜଣେ ମୋର ବଡ଼ ଝିଅଟିକୁ ବିବାହ କରୁ ନାହଁ କାହିଁକି ? ସେ ବି ସୁନ୍ଦରୀ । ଯଦି ତା' ନ କରିବ, ତେବେ ଗୋଟିଏ ଭଲ ପାତ୍ରର ସନ୍ଧାନ କର । ତା'ର ବିବାହ ହୋଇଗଲେ ତେଣିକି ବିୟେଙ୍କାର ବିବାହରେ ଆଉ କୌଣସି ପ୍ରତିବନ୍ଧକ ରହିବ ନାହିଁ ।

କାଥେରିନ୍ ଏଥିରେ ନିଜକୁ ବଡ଼ ଉପେକ୍ଷିତ ଆଉ ଅପମାନିତ ମନେକରେ । ତେବେ ନୀରବ ନ ରହି ସେ ଦୁଇ ଯୁବକଙ୍କୁ ତା'ର ସ୍ୱଭାବ ସୁନ୍ଦର ତୀକ୍ଷ୍ଣ ବାକ୍ୟ ବାଣରେ ଆଘାତ କରିବାକୁ ଭୁଲେ ନାହିଁ ।

କଥାଟାର ସମାଧାନ କରିଦିଏ ବିୟେଙ୍କା । ସେ କହେ - ବର୍ତ୍ତମାନ ବିବାହ କରିବାକୁ ମୋର ଆଦୌ ଇଚ୍ଛା ନାହିଁ । ମୋର ପଢ଼ାପଢ଼ି ସରି ନାହିଁ । ଗୀତନାଚ଼ ବି ଭଲ କରି ଶିଖା ହୋଇ ନାହିଁ । ମୁଁ ଏବେ ସେଇଆକୁ ନେଇ ବ୍ୟସ୍ତ ।

ବାପ୍ତିସ୍ତା ଦୁଇ ଯୁବକକୁ ଜଣାଇ ଦିଅନ୍ତି-ଦେଖ, ମୁଁ ବିୟେଙ୍କା ପାଇଁ ଜଣେ ଭଲ ଶିକ୍ଷକ ଖୋଜୁଚି । ଯଦି ସେଭଳି କାହାକୁ ପାଅ, ତେବେ ମୋ ପାଖକୁ ପଠାଇଦେବ ।

ବିୟେଙ୍କାକୁ ପାଇବାର କୌଣସି ଆଶୁ ଆଶା ନ ଥିବାର ଦେଖି ସେମାନେ ନିଜ ମଧରେ ସ୍ଥିର କରିନିଅନ୍ତି ଯେ, ଆପାତତଃ ପାରସ୍ପରିକ ଦ୍ୱନ୍ଦ୍ୱକୁ ମୁଲତବି ରଖିବାକୁ ହେବ । କାଥେରିନ୍ ପାଇଁ ଗୋଟିଏ ଯୋଗ୍ୟ ପାତ୍ର ନିମନ୍ତେ ଉଭୟେ ଚେଷ୍ଟା କରିବେ । ଥରେ ସେ ରାସ୍ତାରୁ ହଟିଗଲେ ତା'ପରେ ବିୟେଙ୍କା ପାଇଁ ଦୁହିଁଙ୍କର ପ୍ରତିଦ୍ୱନ୍ଦ୍ୱିତା ପୁଣି ଆରମ୍ଭ ହୋଇପାରେ ।

ଏତିକିବେଳେ ଲୁସେନସିଓ ନାମକ ଜଣେ ଧନୀ ଯୁବକ ସାଙ୍ଗରେ ତା'ର ଭୃତ୍ୟ ତ୍ରନିଓକୁ ନେଇ ପାଡୁଆ ଆସେ । ତା'ର ଘର ପିସା ନଗରୀରେ । ତା'ର ପିତା ଭିନସେନସିଓ ସେଠାକାର ଜଣେ ଧନୀ ଓ ମାନୀ ବଣିକ । ଲୁସେନସିଓ ତାଙ୍କର ଏକମାତ୍ର ସନ୍ତାନ । ପାଡୁଆରେ ବ୍ୟବସାୟ ସଂକ୍ରାନ୍ତ କିଛି ଦାୟିତ୍ୱ ଦେଇ ପିତା ଲୁସେନସିଓକୁ ସେଠାକୁ ପଠାଇ ଥାଆନ୍ତି । ଏଠି ବି ତାଙ୍କର କିଛି ବ୍ୟବସାୟ ରହିଛି ।

ଭାଗ୍ୟର ବିଡ଼ମ୍ବନା - ବିୟେଙ୍କା ଉପରେ ନଜର ପଡ଼ିବା ମାତ୍ରେ ଲୁସେନସିଓ ଏକେବାରେ ମୁଗ୍ଧ ହୋଇଯାଏ । ସେ ସ୍ଥିର କରି ନିଏ -'ବିବାହ ଯଦି କରିବାକୁ ହୁଏ, ତେବେ ଏଇ ଝିଅକୁହିଁ କରିବି -' ତ୍ରନିଓକୁ ନେଇ ସେ ଆଢୁଆଳରୁ ଏମାନଙ୍କର କଥାବାର୍ତ୍ତା ଶୁଣେ ।

ସେମାନେ ଚାଲିଯିବା ପରେ ସେ ତ୍ରନିଓ ସହିତ ପରାମର୍ଶ କରି ସ୍ଥିର କରେ ଗୃହ ଶିକ୍ଷକ ହୋଇ ସେ ବାପ୍ତିସ୍ତାଙ୍କ ଘରେ ପ୍ରଥମେ ଢୁକିବାକୁ ଚେଷ୍ଟା କରିବ । ଛଦ୍ମନାମ ନେଇ ସେ ଗୃହଶିକ୍ଷକ ରୂପେ ତାକୁ ରଖିବାକୁ ବାପ୍ତିସ୍ତାଙ୍କୁ ଅନୁରୋଧ କରିବ । ତା'ପରେ ଥରେ ଘର ଭିତରକୁ ପ୍ରବେଶର ଛାଡ଼ପତ୍ର ପାଇଗଲେ ବିୟେଙ୍କାର ମନ ପାଇବାକୁ ଚେଷ୍ଟା ଆରମ୍ଭ କରିବ ।

ସମସ୍ୟା ହେଉଛି, ସେ ଏହିଭଳି ଭାବରେ ବାପ୍ତିସ୍ତାଙ୍କ ଘରେ ରହିଗଲେ, ତା'ର ବାପାଙ୍କର ବ୍ୟବସାୟ ସଂକ୍ରାନ୍ତୀୟ କାମଦାମ କରିବ କିଏ ? ସମାଧାନ ମଧ ବାହାରିପଡ଼େ । ଠିକ୍ ହୁଏ ତ୍ରନିଓ ଲୁସେନସିଓ ବେଶରେ ସେ ଦାୟିତ୍ୱ ତୁଲାଇବ । କେବଳ ସେତିକି ନୁହେଁ । ଦରକାର ହେଲେ ତ୍ରନିଓ ବାପ୍ତିସ୍ତାଙ୍କ ସହିତ ଲୁସେନସିଓର ବିବାହ ସଂକ୍ରାନ୍ତରେ କଥାବାର୍ତ୍ତା ମଧ କରିବ । ଦୁନିଆରେ ଚେଷ୍ଟାର ଅସାଧ କ'ଣ ଅଛି ?

ବ୍ୟବସ୍ଥା ହୋଇଗଲା । ତ୍ରନିଓ ବ୍ୟବସାୟ ଦେଖାଦେଖି କରିବାର ଦାୟିତ୍ୱ ନେଇ କାମରେ ଲାଗିଗଲା । ଏଣେ ଲୁସେନସିଓ କାମିଓ ନାମରେ ବାପ୍ତିସ୍ତାଙ୍କ ସହିତ ଯୋଗାଯୋଗ କରିବାର ଚେଷ୍ଟାରେ ରହିଲା । ସେ ବିୟେଙ୍କାକୁ ସାହିତ୍ୟ ପଢ଼ାଇବ ।

ନିଜ ଘର ଆଗରେ ପହଞ୍ଚି ହର୍ଟେନସିଓ ଦେଖିଲା ଫାଟକ ପାଖରେ କ'ଣ ଗୋଟିଏ ଗଣ୍ଡଗୋଳ ଚାଲିଛି । ଜଣେ ଭଦ୍ରଲୋକ ତାଙ୍କର ସେବକକୁ ନିର୍ଧୂମ୍ ପିଟିବାରେ ଲାଗିଛନ୍ତି । ପାଖକୁ ଆସି ହର୍ଟେନସିଓ ଦେଖିଲା ଭଦ୍ରଲୋକ ଆଉ କେହି ନୁହେଁ-ତାର ପୁରୁଣାବନ୍ଧୁ ପେଟ୍ରୁସିଓ ।

ପେଟ୍ରୁସିଓ ପାଡୁଆର ବାସିନ୍ଦା ନୁହେଁ । ତା'ର ଘର ଭେରୋନାରେ । ବିଚରା ଚାକରଟିକୁ କୌଣସିମତେ ତା'ର ମାଲିକ ହାତରୁ ଉଦ୍ଧାର କରି ହର୍ଟେନସିଓ ଦୁଇଜଣଙ୍କୁ ନେଇ ଘର ଭିତରକୁ ଆସିଲା ।

କ୍ରୋଧ ଶାନ୍ତ ହେବାରୁ ସେ ବନ୍ଧୁଟିକୁ ପଚାରିଲା-ପାଡୁଆ କେବେ ଆସିଲ ? କେଉଁ ପବନ ବା ତମକୁ ଭେରୋନାରୁ ପାଡୁଆ ନେଇ ଆସିଲା ?

ମୃଦୁହସି ପେଟ୍ରୁସିଓ କହିଲା— ଯେଉଁ ପବନ ଯୁବକମାନଙ୍କୁ ଉଡ଼େଇ ନିଏ ଦେଶରୁ ଦେଶାନ୍ତରକୁ - ସେଇଥିରେ ଉଡ଼ିଆସିଛି । ଭାଗ୍ୟ ଅନ୍ୱେଷଣରେ ଦୁଃସାହସିକ ଅଭିଯାନ ତ ବୟସର ଧର୍ମ ।

- ଆଉ, ଘରର ସବୁ ମଙ୍ଗଳ ତ ?

- ସବୁ ଆଉ କ'ଣ ? ଘରେ ତ କେବଳ ବାପା ଥିଲେ । କିଛିଦିନ ହେଲା ସେ ବି ମୋତେ ଛାଡ଼ି ଚାଲିଗଲେ । ବିଶାଳ ପ୍ରାସାଦ, ପ୍ରଚୁର ସମ୍ପଦ, ଯଥେଷ୍ଟ ଜମିବାଡ଼ି, ପଲେ ଦାସଦାସୀ, ଗାଡ଼ିଘୋଡ଼ା- ଏ ସବୁର ବର୍ତ୍ତମାନ ମାଲିକ ହେଉଛି ମୁଁ । ଆପାତତଃ ବାହାରିଛି ଦେଶ ଭ୍ରମଣରେ । ତା'ପରେ ମନୋନୀତ ପାତ୍ରୀଟିଏ ପାଇଲେ ବିବାହ କରି ସଂସାରୀ ହେବାର ଇଚ୍ଛା ବି ଅଛି - ପେଟ୍ରୁସିଓ ନିଜର ବିସ୍ତୃତ ବିବରଣୀ ବନ୍ଧୁ ଆଗରେ ପେଶ୍ କରେ ।

ବିଦ୍ୟୁତ୍‌ର ଚମକ ଭଳି ହର୍ଟେନସିଓ ମୁଣ୍ଡରେ ଗୋଟିଏ ଚିନ୍ତା ଖେଳିଯାଏ । ପେଟ୍ରୁସିଓ ବିବାହ କରିବାକୁ ଚାହେଁ । ଯଦି ବାପ୍ଟିସ୍ତାଙ୍କ ଜ୍ୟେଷ୍ଠା କନ୍ୟାଟି ... ସେ ରହି ରହି ତା' ଆଡ଼କୁ ଅନାଇ କହେ - କିନ୍ତୁ ତମର ଯେଉଁ ଭଳି ମିଜାଜ୍, ସେଥିରେ ସେଇଭଳି ଝିଅଟିଏ ଜୁଟିଲେ ସିନା ! ତମ ଆଖି ଆଗରେ କେହି ଅଛନ୍ତି ନା କ'ଣ ?'

ପେଟ୍ରୁସିଓ କହେ -'ସମୟ ଆଉ ମିଳିଲା କେଉଠୁ ? ଦେଖ, ତମର ଯଦି କେହି ଚିହ୍ନା ଥାଆନ୍ତି, ତେବେ ମୋତେ କହିବ ।'

ହର୍ଟେନସିଓ ଚିନ୍ତାର ଛଳନା କରି କହେ - ଭଲ ପାତ୍ରୀଟିଏ ତ ଅଛି । ଦେଖିବାକୁ ସୁନ୍ଦର ! ତମ ସହିତ ଭଲ ବି ମାନିବ । ଖାଲି ତା'ର ପାଟିଟା ଟିକିଏ ...

ପେଟ୍ରୁସିଓ ମୁହଁରେ ବିରକ୍ତିର ଚିହ୍ନ ଫୁଟିଉଠେ ।

ସେଇଆଡ଼କୁ ଚାହିଁ ଟିକିଏ ହସି ହର୍ଟେନସିଓ କହେ... ତମେ ମୋର ଏତେ ଦିନର ବନ୍ଧୁ । ତମକୁ ତ ସବୁ ଜଣାଇବାକୁ ହେବ । ପାତ୍ରୀ ସ୍ୱଭାବରେ ଟିକିଏ ଖର ହେଲେ ବି ତା'

ବାପାଙ୍କର କିନ୍ତୁ ଅମାପ ଧନସମ୍ପତ୍ତି । ଠିକ୍ ଅଛି, ଯଦି ତମର ଇଚ୍ଛା ନ ଥାଏ,ତେବେ ଥାଉ । ଇଚ୍ଛା ବିରୋଧରେ ବାହା ହେବାକୁ ମୁଁ ତମକୁ କେବେ ବି ବାଧ କରିବି ନାହିଁ ।

ହର୍ତ୍ତେନସିଓ ଜାଣେ, ସେ ଯେଉଁ ଥୋପ ପକାଇଛି, ଶିକାର ନିଶ୍ଚୟ ତାକୁ ଗିଳିବ । ଧନସମ୍ପଦ ବିଷୟରେ ବନ୍ଧୁର ଦୁର୍ବଳତା ସେ ଜାଣେ, ଶିକାର ଏବେ ଟିକିଏ ଖେଳୁଛି । ଖେଳୁ କେତେବେଳ ଯାଏ ଖେଳିବ ।

ଚିନ୍ତିତ ଆଉ କୌତୂହଳୀ ହୋଇ ପେଟ୍ରୁସିଓ କହେ - 'ପାତ୍ରୀ ବାପାଙ୍କର ପ୍ରଚୁର ଧନସମ୍ପତ୍ତି - ଏଇଆନା ? ତା'ହେଲେ ତ ବଡ଼ ଚିନ୍ତାରେ ପକାଇଲ । ଠିକ୍ ଅଛି, ତେବେ ସେଇ ପାତ୍ରୀ ବିଷୟରେ ଶୁଣାଯାଉ । ଆଉ ଶୁଣ, ପାତ୍ରୀ ଧନବତୀ ହେଉ, ଏ କଥା କୋଉ ଯୁବକ ନ ଚାହେଁ ? ତମରି କଥା ଅନୁସାରେ ସେ ଯଦି ଟିକିଏ ଉଗ୍ର-ସ୍ୱଭାବର ହୋଇଥାଏ, ତେବେ କ'ଣ ଆଉ କରାଯିବ ? ଅର୍ଥ ହିଁ ହେଉଛି ପରମାର୍ଥ - ବୁଝିଲ ?'

ହର୍ତ୍ତେନସିଓ କହେ, ତେବେ ଠିକ୍ ଅଛି ।

ପେଟ୍ରୁସିଓର ସେବକ କହେ - ମୋର ମାଲିକ ବୁଝନ୍ତି କେବଳ ଟଙ୍କାର କଥା - ଟଙ୍କା ମିଳିଗଲେ ସେ ପିଲାରୁ ବୁଢ଼ା- ଏମିତିକି ଗୋଟାଏ କାଠ କଣ୍ଢେଇ ସାଙ୍ଗରେ ବାହା ହେବାକୁ ତାଙ୍କର ଟିକିଏ ବି ଆପତ୍ତି ହେବ ନାହିଁ ।

ସେବକକୁ ଗୋଟାଏ କଡ଼ା ଧମକ ଦେଇ ପେଟ୍ରୁସିଓ କହେ - ତୁ ଚୁପ୍ କର । ହଁ ହେ ବନ୍ଧୁ, ସତରେ କୌଣସି ମାଲଦାର ପାର୍ଟି ତମର ସନ୍ଧାନରେ ଅଛି ନା କ'ଣ ? ଶେଷ କଥା ତକ ସେ ହର୍ତ୍ତେନସିଓ ଉଦ୍ଦେଶ୍ୟରେ କହେ ।

ହର୍ତ୍ତେନସିଓ କହେ - ମୁଁ ଆଉ ତେବେ କ'ଣ କହୁଥିଲି ! ଝିଅଟି କିନ୍ତୁ ପ୍ରକୃତରେ ମୁଖରା ।

ଆଉ ଦେଖିବାକୁ ? ପେଟ୍ରୁସିଓ ଉଦ୍‌ବିଗ୍ନ ହୋଇ ପଚାରେ ।

ସେ ଦିଗରୁ ଟିକିଏ ବି ଖୁଣ ନାହିଁ... ଝିଅଟି ପ୍ରକୃତରେ ସୁନ୍ଦରୀ । ବୟସ ବି ବେଶି ନୁହେଁ । ତେବେ ସୁନାମୁଣ୍ଡା ଦେଲେ ବି ମୁଁ ଏମିତି ଝିଅକୁ ବାହା ହେବି ନାହିଁ ...

ପେଟ୍ରୁସିଓ କହେ - ମୋର କିନ୍ତୁ ଆପତ୍ତି ନାହିଁ । ସୁନାର ମହିମା ବୁଝି ନାହଁ ତ - ତେଣୁ ଏମିତି କଥା କହୁଚ଼ । ଏଥର କହ - ଝିଅଟିର ବାପାଙ୍କ ନାମ କ'ଣ ?

ହର୍ତ୍ତେନସିଓ ଉତ୍ତର ଦିଏ - ବାପ୍ତିସ୍ତା ମିନୋଲା ।

- ଆଉ ଝିଅର ନାମ ?

- କାଥେରିନ୍ ମିନୋଲା ।

- ଶୁଣ ବନ୍ଧୁ, ଝିଅଟିକୁ ଦେଖିବାକୁ ମୋର ମନ ବ୍ୟାକୁଳ ହେଲାଣି । ତମେ ବିଳମ୍ବ ନ କରି ମୋତେ ବାପ୍ତିସ୍ତାଙ୍କ ପାଖକୁ ନେଇଚାଲ - ପେଟ୍ରୁସିଓ କହେ ।

- ନେଇଯିବି । ଏତେ ବ୍ୟସ୍ତ କାହିଁକି ? ତା' ପୂର୍ବରୁ ତମକୁ ବି ମୋର ଗୋଟାଏ ଉପକାର କରିବାକୁ ହେବ - ହର୍ତେନସିଓ ଜଣାଇଦିଏ ।

ପେଟ୍ରୁସିଓ କହେ - କି ଉପକାର ?

— ମୁଁ ସିନର ବାପ୍ତିସ୍ତାଙ୍କ ଛୋଟ ଝିଅଟିକୁ ବାହା ହେବାକୁ ଚାହୁଁଛି । ତାକୁ ବାହା ହେବାକୁ ଆହୁରି ବି ପ୍ରାର୍ଥୀ ଅଛନ୍ତି । ତେବେ ବାପ୍ତିସ୍ତା କାହାରି କଥା ଶୁଣିବାକୁ ରାଜି ନୁହନ୍ତି । ସ୍ପଷ୍ଟ କହି ଦେଇଛନ୍ତି - ପ୍ରଥମେ ବଡ଼ଝିଅ ବାହାଘର ନ ସାରିବା ପର୍ଯ୍ୟନ୍ତ ସେ ସାନଝିଅ କଥା ଚିନ୍ତା କରିବେ ନାହିଁ । ସେଥିପାଇଁ ନିଜ ସ୍ୱାର୍ଥରେ ମୋତେ ଏଭଳି ଏକ କଳିହୁଡ଼ୀ ଝିଅ ପାଇଁ ପାତ୍ର ଖୋଜିବାକୁ ପଡୁଛି । ସାନଝିଅ ବିୟେଙ୍କା ପାଖକୁ ଯିବା ପାଇଁ ମୁଁ ଗୋଟାଏ ସୁଯୋଗ ଖୋଜୁଛି, ତମେ ଚାହିଁଲେ ତାହା ସମ୍ଭବ ହୋଇପାରେ ।

ପେଟ୍ରୁସିଓ ଅବାକ୍ ହୋଇ ପଚାରେ - ଏ କାମ ମୋ ଦ୍ୱାରା କିପରି ... ?

'ତମେ ତ କାଥେରିନ୍ ସହ ବିବାହ ପ୍ରସ୍ତାବ ନେଇ ସିନର ବାପ୍ତିସ୍ତାଙ୍କୁ ଭେଟୁଛ, ନୁହେଁ ?'

- 'ହଁ, ତା' ତ ଭେଟିବାକୁ ହେବ'— ପେଟ୍ରୁସିଓ କହେ ।

- ସିନର ବାପ୍ତିସ୍ତା ବିୟେଙ୍କା ପାଇଁ ଜଣେ ଘରୋଇଶିକ୍ଷକ ଖୋଜୁଛନ୍ତି । ସେ ତ ମୋତେ ଭଲ କରି ଜାଣନ୍ତି । ସେଥିପାଇଁ ଭାବୁଛି ଏଇ ଘରୋଇଶିକ୍ଷକ ବେଶ ଧରି ପ୍ରଥମେ ବିୟେଙ୍କା ସହିତ ସମ୍ପର୍କ ସ୍ଥାପନା କରିବି । ତମେ ଯଦି କଥାରେ କଥାରେ ବାପ୍ତିସ୍ତାଙ୍କ ପାଖରେ ମୋର ଏଇ ଘରୋଇଶିକ୍ଷକ ଭାବରେ ନିଯୁକ୍ତି କଥାଟା ପକ୍କା କରିଦିଅ, ତାହାହେଲେ ମୋର ବଡ଼ ଉପକାର ହେବ । ବିଶ୍ୱାସ, ତମ କଥା ସେ ନିଶ୍ଚୟ ରଖିବେ ।

- ଇଏ ଏମିତି ଆଉ ବଡ଼ କଥାଟାଏ କ'ଣ ? ମୁଁ ତୁମରି ନାମହିଁ ସୁପାରିସ କରିବି ।

- ଆରେ ନା ନା, ମୋତେ ନୁହେଁ, ମୋର ଛଦ୍ମ ନାମକୁ ।

- ତମେ କ'ଣ ମୋତେ ଏତେ ବୋକା ଭାବୁଛ ? ମୁଁ ରାଗୀ ହୋଇପାରେ, ମାତ୍ର ନିର୍ବୋଧ ନୁହେଁ । ତମର ଛଦ୍ମନାମ ହିଁ ସୁପାରିସ କରିବି ।

ଦୁଇବନ୍ଧୁ ଏଥର ସିନ୍ର ବାପ୍ତିସ୍ତାଙ୍କ ଘର ଆଡ଼କୁ ଯାଆନ୍ତି । ବାଟରେ ଗ୍ରେମିଓ ଆଉ ଛଦ୍ମବେଶୀ ଲୁସେନସିଓ ସହିତ ଦେଖା ହୋଇଯାଏ । ଟିକିଏ ପୂର୍ବରୁ ଲୁସେନସିଓ ଗ୍ରେମିଓ ସହିତ ପରିଚିତ ହୋଇ ତା' ପାଇଁ ଗୋଟିଏ କାମ ଖୋଜିଦେବା ଲାଗି ଅନୁରୋଧ କରିଛି । ଜଣାଇ ଦେଇଛି ଘରୋଇଶିକ୍ଷକ କାମଟିଏ ପାଇଲେ ଚଳିବ । ଏ କାମରେ କିଛି ଝାମେଲା ନାହିଁ । ଗ୍ରେମିଓ ତାକୁ ନେଇ ବାପ୍ତିସ୍ତାଙ୍କ ପାଖକୁ ବାହାରିଛି । ଯାଉ ଯାଉ ବିୟେଙ୍କାକୁ କି ଧରଣର

ପାଠ ପଢ଼ାଇବାକୁ ହେବ ଗ୍ରେମିଓ ତାକୁ ବୁଝାଉଛି । କହୁଛି, ବିୟେଙ୍କାକୁ ଏମିତି ପାଠପଢ଼ାଇବାକୁ ହେବ,ଯେଉଁଥିରେ ବି ତା' ମନଟା ଗ୍ରେମିଓ ଆଡ଼କୁ ଢଳିବ ।

ଲୁସେନସିଓ କହୁଛି, ମୁଁ ଯାହା ପଢ଼ାଏ ନା କାହିଁକି ତମ କଥା ନିଷ୍ଟୟ ମୋ ଛାତ୍ରୀକୁ କହିବି ।

ଏ କଥା ଶୁଣି ଗ୍ରେମିଓ ମହାଖୁସି ।

ହର୍ଟେନସିଓ ଏମାନଙ୍କୁ ଦେଖି ପଚାରେ, ଏଇ ଯେ ଗ୍ରେମିଓ, କୁଆଡ଼େ ବାହାରିଲ ?

- ଯାଉଛୁ ସିନର ବାପ୍ତିସ୍ତାଙ୍କ ଘରକୁ । ବିୟେଙ୍କାଙ୍କ ପାଇଁ ଜଣେ ଘରୋଇଶିକ୍ଷକ ଖୋଜୁଥିଲି । ଭାଗ୍ୟକୁ ଜଣେ ଜୁଟିଛନ୍ତି । ମୋ ସାଙ୍ଗର ଏଇ ଭଦ୍ରଲୋକ ହେଉଛନ୍ତି ସେଇ— ତାଙ୍କ ନାମ କାମିଓ । ସେ ବିୟେଙ୍କାକୁ ସାହିତ୍ୟ ପଢ଼ାଇବେ ।

ହର୍ଟେନସିଓ କହେ, ମୁଁ ବି ଜଣେ ଭଲ ଶିକ୍ଷକ ପାଇଛି । ସେ ବିୟେଙ୍କାକୁ ସଂଗୀତ ଶିଖାଇବାକୁ ରାଜି ହୋଇଛନ୍ତି । ସିନର ବାପ୍ତିସ୍ତା ରାଜି ହୋଇଗଲେ ସେ ସାଙ୍ଗେ ସାଙ୍ଗେ କାମରେ ଯୋଗ ଦେବେ ।

ଗ୍ରେମିଓ ପଚାରେ, ତମ ସାଙ୍ଗର ଏଇ ଭଦ୍ରଲୋକଜଣକ କିଏ ? ଇଏ କ'ଣ ସେଇ ସଙ୍ଗୀତ ଶିଳ୍ପୀ ?

- ନା ନା, ସେ ନୁହେଁ । ଏହାଙ୍କ ସାଙ୍ଗରେ ହଠାତ୍ ପରିଚୟ ହୋଇଛି । ସେ ଭଲ ଯୌତୁକ ପାଇଲେ କାଥେରିନ୍‌କୁ ବାହା ହେବାକୁ ରାଜି । ତାଙ୍କୁ ନେଇ ବାପ୍ତିସ୍ତାଙ୍କ ପାଖକୁ ଯାଉଛି । ସେଠି ସେ ନିଜେ ଏ ବିଷୟରେ କଥାବାର୍ତ୍ତା ହେବେ ।

ଗ୍ରେମିଓ କହେ - ତମେ କାଥେରିନ୍‌ର ସ୍ୱଭାବ ଚରିତ୍ର କଥା ଏହାଙ୍କୁ ଭଲ କରି ବୁଝାଇ ଦେଇଛ ତ ?

ଏଥର ଉତ୍ତର ଦେଇ ପେଡ୍ରୁସିଓ କହେ- ଶୁଣିଲି ଝିଅଟି କୁଆଡ଼େ ଟିକିଏ ବଦ୍‌ରାଗୀ ଆଉ କଳହପ୍ରିୟା । ମୁଁ ଭାବୁଛି, ଏଥିରେ କ୍ଷତିଟା ବା କ'ଣ ? ମୁଁ ଠିକ୍ ବୁଝାମଣା କରିନେଇ ପାରିବି । ମୁଁ ନିଜେ ବି ତ ଖୁବ୍ ଗୋଟିଏ ଶାନ୍ତଶିଷ୍ଟ ମଣିଷ ନୁହେଁ -

ଗ୍ରେମିଓ କହେ - ଚମତ୍କାର ! ଆପଣ ତ କିନ୍ତୁ ଏଇ ପାଡୁୟା ସହରର ଲୋକ ନୁହନ୍ତି । ଘର କେଉଁଠି ?

- ମୋ ଘର ଭେରୋନାରେ । ମୋ ବାପା ଆନ୍ତୋନିଓ ସେଠାର ଜଣେ ଧନୀ ଲୋକ । କିଛି ଦିନ ହେବ ତାଙ୍କର ଦେହାନ୍ତ ହୋଇଛି । ମୋ ପାଇଁ ବିଶାଳ ସମ୍ପତ୍ତି ଛାଡ଼ି ଯାଇଛନ୍ତି । ସଂସାରୀ ହେବା ଆଗରୁ ମୁଁ ଟିକିଏ ଦେଶ ଭ୍ରମଣରେ ବାହାରିଛି । ଏଠି ଆସି ଏଇ ପାତ୍ରୀଟି ବିଷୟ ଶୁଣିଲି । ଭାବିଲି ମନ୍ଦ କ'ଣ ? ଏବେ କଥାବାର୍ତ୍ତା କରିବାକୁ ବାହାରିଛି ।

ଗ୍ରେମିଓ କହିଲା - ଆପଣ କିନ୍ତୁ ଗୋଟିଏ ବଣ-ବିଲେଇ ସଙ୍ଗେ ଘର କରିବାକୁ ମନ କରିଛନ୍ତି ।

- ଯେତେ ଦୁର୍ଦ୍ଦାନ୍ତ ବିଲେଇ ହଉ ନା କାହିଁକି ତାକୁ ପୋଷା ମନାଇବାର ବିଦ୍ୟା ମୋତେ ଜଣା ।

ପେତ୍ରୁସିଓ କଥାରେ ସମସ୍ତେ ଖୁସି । ଦେଖାଯାଉ, ଶେଷ ପର୍ଯ୍ୟନ୍ତ ସେ କାଥେରିନ୍‌କୁ ବାହା ହୋଇପାରୁଛି କି ନାହିଁ ! ତେବେ ତା'ର କଥାବାର୍ତ୍ତା ଶୁଣି ମନେ ହେଉଛି, ମଣିଷଟି ବହୁ ଘାଟର ପାଣି ପିଇ ବିଲକୁଲ ପକ୍କା ଖେଲୁଓ୍ୱାଡ଼ ହୋଇ ଯାଇଛି ।

ଚାରିଜଣଯାକ ମିଶି ବାପ୍ତିସ୍ତାଙ୍କ ଘର ଆଡ଼କୁ ଆଗେଇ ଚାଲନ୍ତି । ଘରର ପାଖାପାଖି ଆସି ଦେଖା ହୋଇଯାଏ ଲୁସେନସିଓବେଶୀ ତ୍ରନିଓ ସହିତ । ତା'ସହିତ ଅଛି ଲୁସେନସିଓର କିଶୋର-ସେବକ ବିୟୋନ୍ଦେଲୋ । ତା'ର ଗୋଟିଏ ହାତରେ ବେହେଲା, ଅନ୍ୟ ହାତରେ କେତେଖଣ୍ଡ ବହି । ସେବକଟିକୁ ପୂର୍ବରୁ ପରିକଳ୍ପନା କଥା ବୁଝାଇ ଦିଆଯାଇଥିଲା । ସେ ଏମିତି ଛଳନା କରେ, ଯେମିତି ସେ ପ୍ରକୃତ ଲୁସେନସିଓକୁ ଏହା ପୂର୍ବରୁ କେବେ ଦେଖି ନାହିଁ! ତ୍ରନିଓ ହିଁ ହେଉଛି ତା'ର ମୁନିବ!

ଏ ଚାରିଜଣଙ୍କ ସହିତ ଦେଖା ହେବା ମାତ୍ରେ ଲୁସେନସିଓବେଶୀ ତ୍ରନିଓ ପଚାରେ - ଏଇ ଯେ ଆଜ୍ଞା, ସିନର ବାପ୍ତିସ୍ତାଙ୍କ ଘରକୁ ବାଟ କେଉଁଟା କହିପାରିବେ ?

ବିୟୋନ୍ଦେଲୋ ଯୋଗ କରେ - ସେଇ ଯେ, ଯାହାଙ୍କର ଦୁଇଟି ବେଶ୍ ସୁନ୍ଦରୀ ଝିଅ ଅଛନ୍ତି !

ଗ୍ରେମିଓ କହେ - ଆପଣ ସିନର ବାପ୍ତିସ୍ତାଙ୍କ ସହିତ ଦେଖା କରିବେ ?

ତ୍ରନିଓ ଜଣାଇ ଦିଏ - ମୁଁ ବାପ ଝିଅ - ସମସ୍ତଙ୍କୁ ଭେଟିବାକୁ ଚାହେଁ ।

ପେତ୍ରୁସିଓ କହେ - ଆପଣ କିନ୍ତୁ ସେଇ ବଦ୍‌ରାଗୀ ଝିଅଟି ଉପରେ ନଜର ପକାଇବେ ନାହିଁ ।

ତ୍ରନିଓ କହେ - ନା ବାବା ନା... ବଦ୍‌ମିଜାଜୀ ଝିଅମାନଙ୍କୁ ମୁଁ ମୋଟେ ସହ୍ୟ କରିପାରେ ନାହିଁ ।

ହର୍ଟେନସିଓ ପଚାରେ - ଆପଣ କ'ଣ କୌଣସି ବିବାହ ପ୍ରସ୍ତାବ ନେଇ ଯାଉଛନ୍ତି ?

ତ୍ରନିଓ ଟିକିଏ ରାଗିଯାଇ କହେ - ଯଦି ଯାଏ, ଆପତ୍ତି ଅଛି ?

ଗ୍ରେମିଓ କହେ - ଅଛି । ସେମିତି ହେଲେ ମୁଁ ଜଣାଇ ଦେବାକୁ ଚାହେଁ ... ଏ ବାଟ ଛାଡ଼ନ୍ତୁ ।

- ବାଟ ଛାଡ଼ିବି ? କାହିଁକି, ବାଟ କ'ଣ ଆପଣଙ୍କର କିଣା ଖର୍ଦ୍ଦି ?

- ଦେଖୁଛି, ଆପଣ ମୋର କଥା ବୁଝିପାରୁ ନାହାନ୍ତି । ହର୍ଟେନସିଓ କହେ ଶୁଣନ୍ତୁ ଆଜ୍ଞା, ଏଠି କିଛି ସୁବିଧା କରିପାରିବେ ନାହିଁ । ସିନର ବାପ୍ତିସ୍ତାଙ୍କର ସାନ ଝିଅ ବିୟେଙ୍କା ହେଉଛି ମୋର ... ମାନେ ସିନର ହର୍ଟେନସିଓର ମନୋନୀତା ।

ସାଙ୍ଗେ ସାଙ୍ଗେ ଗ୍ରେନିଓ କହିଉଠେ - ବିୟେଙ୍କା ସିନର ଗ୍ରେମିଓଙ୍କୁ ଭଲ ପାଏ ।

ତ୍ରନିଓ କହେ ... ଯଦି ଝିଅଟି ସୁନ୍ଦରୀ ଆଉ ଗୁଣବତୀ ହୋଇଥାଏ, ତେବେ ତାକୁ ପାଇବାକୁ ଏମିତି ଅନେକ ତରୁଣ ତ ପ୍ରସ୍ତାବ ନେଇ ତା' ବାପାଙ୍କ ପାଖକୁ ଆସିବେ । ଧରିନିଅନ୍ତୁ ମୁଁ ବି ସେମିତି ଆସିଛି । ଶେଷକୁ ହୁଏତ ଦେଖାଯିବ, ଭାଗ୍ୟଦେବୀ ମୋରି ଉପରେ ପ୍ରସନ୍ନ ହୋଇଛନ୍ତି !

ଗ୍ରେମିଓ କହେ - ଆରେ ଏତ ଦେଖୁଛି ମହା ଖଲିପା ଲୋକ । ହୁଏତ କଥାର ଜାଲ ବୁଣି ଆମ ସମସ୍ତଙ୍କୁ ମାତ୍ ଦେବ ।

ହର୍ଟେନସିଓ କହେ - ଆପଣ କ'ଣ ସିନର ବାପ୍ତିସ୍ତାଙ୍କ ଝିଅମାନଙ୍କୁ ଦେଖିଛନ୍ତି ?

- ଦେଖି ତ ନାହିଁ -ତେବେ ଶୁଣିଛି ଦୁଇ ଝିଅ ଭିତରୁ ବଡ଼ଟି ଚାଳରେ କୁଆ ବସେଇ ଦିଏ ନାହିଁ, ଆଉ ସାନଟି ବେଶ୍ ଭଦ୍ର ।

ପେଟ୍ରୁସିଓ ପୁଣି କହେ - ଆପଣ କିନ୍ତୁ ଭୁଲରେ ସୁଦ୍ଧା ବଡ଼ଟି ଉପରେ ଆଖି ପକାଇବେ ନାହିଁ । ସେ ମୋର ଏକପ୍ରକାର ମନୋନୀତା ।

ଗ୍ରେମିଓ ଥଟ୍ଟା କରି କହେ - ହଁ ହଁ, ବଡ଼ଟି ଆମର ଏଇ ମହାବୀର ହରକୁଲେସ୍‌ଙ୍କ ପାଇଁ ସଂରକ୍ଷିତ ଥାଉ ।

ପେଟ୍ରୁସିଓ କହେ - ଶୁଣିଲି ବଡ଼ଟିର ବିବାହ ନ ହେଲେ ସିନର ବାପ୍ତିସ୍ତା ସାନଟି ପାଇଁ କୌଣସି ପ୍ରସ୍ତାବ ବିଚାରକୁ ନେବେ ନାହିଁ । ମୁଁ ଆଗ ବଡ଼ଟିକୁ ବାହା ହେଲେ ତ ଯାଇ ସାନଟି ପାଇଁ ବାଟ ଫିଟିବ !

ତ୍ରନିଓ କହେ - ତେବେ ଆପଣ ଅନୁଗ୍ରହ କରି ସେଇ କାମଟିକୁ କରନ୍ତୁ । ତା'ପରେ ବାଟ ଫିଟିଗଲେ ସାନପାଇଁ ଆମ ଆମ ଭିତରେ ପ୍ରତିଦ୍ୱନ୍ଦ୍ୱିତା ହେଉ । ଦେଖାଯାଉ ଭାଗ୍ୟ କାହାକୁ ଦୟା କରୁଛି !

ପେଟ୍ରୁସିଓ କହେ - ଏ ପର୍ଯ୍ୟନ୍ତ ଆପଣଙ୍କ ପରିଚୟଟା ପାଇପାରିଲି ନାହିଁ ।

- ମୋ ପରିଚୟ ? ମୁଁ ହେଲି ଲୁସେନସିଓ । ଘର ପିସାନଗରୀ । ମୋ ବାପା ଭିନସେନସିଓ ସେଠାର ଜଣେ ଧନୀ ଆଉ ମାନୀ ବ୍ୟବସାୟୀ, ଏଇ ସହରରେ ବି ଆମର ଗଦି ଅଛି । ବ୍ୟବସାୟ କାମରେ ବାପା ମୋତେ ଏଠାକୁ ପଠାଇଛନ୍ତି । ବାପ୍ତିସ୍ତାଙ୍କ ସାନଝିଅର ରୂପ-ଗୁଣ କଥା ଶୁଣି ତା' ସହିତ ନିଜର ବିବାହ ପ୍ରସ୍ତାବ ନେଇ ଆସିଛି ।

ମୋର ଗୋଟିଏ ପ୍ରସ୍ତାବ ଅଛି । ବାପ୍ତିସ୍ତାଙ୍କ ପାଖକୁ ଯିବା ଆଗରୁ ଆସନ୍ତୁ ସମସ୍ତେ ମିଶି ଟିକିଏ ଖିଆପିଆ କରିବା ।

ସମସ୍ତେ ଖୁସିରେ ରାଜି ହୋଇଯାଆନ୍ତି ।

॥ ୨ ॥

ବାପ୍ତିସ୍ତାଙ୍କ ଘରେ ସେମାନେ ପହଞ୍ଚନ୍ତି । ପରିଚୟ ଆଉ ସୌଜନ୍ୟ ବିନିମୟର ପର୍ବ ଶେଷ ହେବା ପରେ ପେଟ୍ରୁସିଓ ବାପ୍ତିସ୍ତାଙ୍କୁ କହନ୍ତି, ଶୁଣିଛି, ଆପଣଙ୍କ ବଡ଼ଝିଅ ଟି କୁଆଡ଼େ ବେଶ୍ ସୁନ୍ଦରୀ, ଆଉ ସ୍ୱଭାବ ଚରିତ୍ର ବି ବେଶ୍ ଭଲ ।

ବାପ୍ତିସ୍ତା କେବଳ କହନ୍ତି—ତା'ର ନାମ କାଥେରିନ୍ ।

ପେଟ୍ରୁସିଓ କହନ୍ତି -ମୁଁ ଭେରୋନାର ଲୋକ । ଆପଣଙ୍କର ବଡ଼ଝିଅର ରୂପ ଗୁଣ କଥା ଶୁଣି ତା' ସହିତ ନିଜର ବିବାହ ପ୍ରସ୍ତାବ ନେଇ ଆସିଛି । ମୋର ଏଇ ସହଚରୀଙ୍କ ନାମ ଲିସିଓ । ସେ ଭଲ ଗୀତ ଜାଣନ୍ତି । ତା'ଛଡ଼ା ଗଣିତ ଆଉ ବିଜ୍ଞାନରେ ବି ତାଙ୍କର ସମାନ ଦକ୍ଷତା । ଶୁଣିଲି ଆପଣଙ୍କ ସାନଝିଅ ପାଇଁ ଜଣେ ଘରୋଇଶିକ୍ଷକ ଖୋଜୁଛନ୍ତି । ସେଥିପାଇଁ ଏହାକୁ ନେଇ ଆସିଛି । ମନେ ହେଉଛି, ଲିସିଓଙ୍କୁ ରଖିଲେ ଆପଣ ଠକିବେ ନାହିଁ ।

- ଶିକ୍ଷକ ? ବେଶ୍ ବେଶ୍, ମୁଁ ତାଙ୍କୁ ସ୍ୱାଗତ କରୁଛି । କିନ୍ତୁ ଆପଣ ମୋ ବଡ଼ଝିଅକୁ ବାହା ହୋଇପାରିବେ ନାହିଁ ।

- କାହିଁକି ? ପାତ୍ର ହିସାବରେ ମୁଁ କ'ଣ ପ୍ରକୃତରେ ଏତେ ଖରାପ ? କିମ୍ବା ଆପଣ ଝିଅର ବିବାହ ଦେବାକୁ ଚାହାନ୍ତି ନାହିଁ ? ପେଟ୍ରୁସିଓ ପଚାରେ ।

- ଆପଣ ମୋତେ ଭୁଲ ବୁଝିବେ ନାହିଁ । ପାତ୍ର ହିସାବରେ ଆପଣ ଅପୂର୍ବ । ଆଉ ଝିଅକୁ ବାହାଦେଇ ମୁଁ ତ ମୁଣ୍ଡର ବୋଝ ହାଲ୍‌କା କରିବାକୁ ଚାହେଁ—ବାପ୍ତିସ୍ତା କହନ୍ତି ।

- ତା' ହେଲେ ? ପେଟ୍ରୁସିଓର ଭ୍ରୂକୁଞ୍ଚିତ ହୋଇଯାଏ ।

- ଆପଣଙ୍କର ନାମଟି କ'ଣ ? - ବାପ୍ତିସ୍ତା ପଚାରନ୍ତି ।

- ପେଟ୍ରୁସିଓ । ମୋ ଘର ଭେରୋନା ... ବାପାଙ୍କ ନାମ ... ପେଟ୍ରୁସିଓ ଏକା ନିଃଶ୍ୱାସରେ କହିଯାଏ ।

- ଆରେ ଥାଉ ଥାଉ । ମୁଁ ତ ତମ ବାପାଙ୍କୁ ଜାଣେ । ସେ ଯେ ଜଣେ ଧନୀ ଆଉ ଖାନ୍ଦାନି ମଣିଷ, ତା' ବି ଜାଣେ । ତାଙ୍କରି ପୁଅ ତମେ, ମୋର ସ୍ନେହର ପାତ୍ର । ତମ ପାଇଁ ମୋ ଘର ସବୁବେଳେ ଖୋଲା । ତମ ବାପା କେମିତି ଅଛନ୍ତି ? ବାପ୍ତିସ୍ତା କହନ୍ତି ।

- ତାଙ୍କର ନିକଟରେ ଦେହାନ୍ତ ହୋଇଯାଇଛି ।

ଏଥର ଗ୍ରେମିଓ ଛଦ୍ମବେଶୀ ଲୁସେନସିଓଙ୍କୁ ଦେଖାଇ କହେ - ଆପଣ ବିୟେଙ୍କା ପାଇଁ ଜଣେ ଭଲ ଘରୋଇଶିକ୍ଷକ ଖୋଜିଥିଲେ । ତେଣୁ ମୋର ଏଇ ବନ୍ଧୁ କାମିଓଙ୍କୁ ନେଇଆସିଛି । ସେ ଗ୍ରୀକ୍, ଲାଟିନ୍ ଆଉ ଅନେକ ଭାଷା ବି ଜାଣନ୍ତି । ତା' ଛଡ଼ା ଗା୍ଉଣା- ବାଜଣାରେ ବି ଦକ୍ଷତା ଅଛି । ଗୁଣୀ ଲୋକ । ମୋ ବିଚାରରେ ଏହାଙ୍କ ଦ୍ୱାରା ବିୟେଙ୍କା ଯଥେଷ୍ଟ ଉପକୃତ ହେବ ।

ଏଥିପାଇଁ ବାପ୍ତିସ୍ତା ଗ୍ରେମିଓଙ୍କୁ ଧନ୍ୟବାଦ ଜଣାଇ କାମିଓଙ୍କୁ ସ୍ୱାଗତ କରନ୍ତି । ତା'ପରେ ତ୍ରନିଓ ଆଡ଼କୁ ଜିଜ୍ଞାସୁ ଦୃଷ୍ଟିରେ ଅନାଇ ପଚାରନ୍ତି, ଆପଣଙ୍କ ପରିଚୟଟି ତ ଏ ପର୍ଯ୍ୟନ୍ତ ପାଇପାରିଲି ନାହିଁ, ଆପଣ କେଉଁ ଉଦ୍ଦେଶ୍ୟରେ ମୋ ପାଖକୁ ଆସିଛନ୍ତି, ତା' ବି ପଚାରିପାରି ନାହିଁ ।

ତ୍ରନିଓ କହେ - ମୋ ଘର ପିସା ସହରରେ । ଆପଣଙ୍କ ସାନଝିଅଟିର ରୂପ ଆଉ ଗୁଣ କଥା ଶୁଣି ତା'ର ପାଣିପ୍ରାର୍ଥୀ ହୋଇ ମୁଁ ଆସିଛି ।

- କିନ୍ତୁ ମୁଁ ପ୍ରତିଜ୍ଞା କରିଛି, ବଡ଼ଝିଅର ବିବାହ ନ ହେଲା ପର୍ଯ୍ୟନ୍ତ ସାନଝିଅର ବିବାହ କଥା ଚିନ୍ତା ବି କରିବି ନାହିଁ ।

- ଏ କଥା ମୁଁ ଶୁଣିଛି । ମୋ ପରିଚୟ ପାଇଲେ ଆପଣ ହୁଏତ ମୋତେ ପାତ୍ର ହିସାବରେ ନିତାନ୍ତ ଅଯୋଗ୍ୟ ମନେ କରି ନ ପାରନ୍ତି । ଆହୁରି ଶୁଣିଲି ଯେ, ଆପଣଙ୍କ ସାନଝିଅ ପଢ଼ାଶୁଣା, ଆଉ ଗୀତବାଦ୍ୟ ଶିକ୍ଷା ଚଳାଇ ଯିବାକୁ ଚାହେଁ । ତା'ପାଇଁ ମୁଁ ଏଇ କେତେଖଣ୍ଡି ମୂଲ୍ୟବାନ୍ ପ୍ରାଚୀନ ଗ୍ରୀକ୍ ଆଉ ଲାଟିନ୍ ପୋଥି ନେଇଆସିଛି । ଆହୁରି ବି ଆଣିଛି ଏଇ ବୀଣାଟି । ଆପଣଙ୍କ ଝିଅ ଏଇ ତୁଚ୍ଛ ଉପହାରକୁ ଗ୍ରହଣ କଲେ ଖୁସି ହେବି ।

ମୋର ନାମ ଲୁସେନସିଓ । ବାପାଙ୍କ ନାମ ଭିନସେନସିଓ ।

- ହଁ ହଁ, ମୁଁ ତାଙ୍କ ନାମ ଶୁଣିଛି । ସେ ଜଣେ ଧନୀ ଆଉ ମାନୀ ବଣିକ, ଏକଥା ବି ଜାଣେ । ମୋ ଘରକୁ ତମକୁ ସ୍ୱାଗତ ଜଣାଉଛି - ବାପ୍ତିସ୍ତା କହନ୍ତି ।

ବିବାହର ପ୍ରସ୍ତାବ ଦେବାପାଇଁ ହିଁ ତ୍ରନିଓ ଏଠାକୁ ଆସିଥିଲା । ସେ କାମ ଶେଷ ହୋଇଯିବା ପରେ ଏଠାରେ ଆଉ ରହିବାର କୌଣସି କାରଣ ନ ଥିଲା । ରହିଲେ କଥାବାର୍ତ୍ତା ଭିତରୁ ଯଦି କିଛି ଅଖାଡୁଆ କଥା ବାହାରିପଡ଼େ ତେବେ ପରିସ୍ଥିତି ଖରାପ ହୋଇଯିବାର ସମ୍ଭାବନା । ତେଣୁ ସେ ବିଦାୟ ନେବା ପାଇଁ ତତ୍ପର ହୋଇଉଠି ଜଣାଏ - ମୋ କାମ ଶେଷ ହୋଇଛି । ଏଥର ମୁଁ ଉଠୁଛି ତେବେ । ଜରୁରି କାମ ଗୋଟାଏ ବି ରହିଛି - ପରେ ସୁବିଧା କରି ଆଉ କେବେ ଦେଖା କରିବି ।

ତ୍ରନିଓ ବିୟୋନ୍ଦେଲୋ କୁ ସାଙ୍ଗରେ ନେଇ ବିଦାୟ ନିଏ । ତା'ପରେ ଯାଏ ଗ୍ରେମିଓ । ଘରେ ରହିଯାଆନ୍ତି ବାପ୍ତିସ୍ତା ଓ ପେତ୍ରୁସିଓ ।

ବଡ଼ଝିଅ କାଥେରିନ୍‌କୁ ବିବାହ କରିବା ପାଇଁ ପାତ୍ର ନିଜେ ଆସିଛି । ଯାହାପାଇଁ ଚିନ୍ତାରେ ତାଙ୍କର ନିଦ ହେଉ ନ ଥିଲା, ସେଇ ପାତ୍ର ଆଜି ଆପେ ଆସି ତାଙ୍କ ଦ୍ୱାରରେ ଉପସ୍ଥିତ ହୋଇଛି ! ବାପ୍ତିସ୍ତା ଆନନ୍ଦରେ ଆତ୍ମହରା ହୋଇ ପଡ଼ିଛନ୍ତି ।

ତେବେ ସେ ଜଣେ ସତ୍ ପ୍ରକୃତିର ମଣିଷ । କାଥେରିନ୍‌ର ସ୍ୱଭାବ ଚରିତ୍ର ସମ୍ପର୍କରେ ସେ ସବୁକଥା ଯୁବକଟିକୁ ଖୋଲି କହିବେ, କିଛି ଲୁଚାଇବେ ନାହିଁ । ତେଣିକି କାଥେରିନ୍‌ର ଭାଗ୍ୟ ...

ଟିକିଏ ଇତସ୍ତତଃ ହୋଇ ସେ ଆରମ୍ଭ କଲେ - ଦେଖ ବାପା, କାଥେରିନ୍ ବିଷୟରେ ତମେ କ'ଣ ଶୁଣିଚ, ତା' ମୁଁ ଜାଣେ ନାହିଁ । ତେବେ ମୋର ତମକୁ ସବୁକଥା ଜଣାଇଦେବା ଉଚିତ । ସେ ଆଉ ପାଞ୍ଚଟାଙ୍କ ପରି ସ୍ୱାଭାବିକ ନୁହେଁ । ମଝିରେ ମଝିରେ ...

ତାଙ୍କ ପାଟିର କଥା ଅଧା ରହିଗଲା । ଘର ଭିତରୁ ଦୌଡ଼ି ବାହାରି ଆସିଲେ ଝିଅର ନୂଆ ଗୀତଶିକ୍ଷକ । ସେ ଛଦ୍ମବେଶୀ ହର୍ତ୍ତେନସିଓ । ତା' ମୁଣ୍ଡରେ ଆଘାତ ଲାଗିଛି ।

ବାପ୍ତିସ୍ତା ବ୍ୟସ୍ତ ହୋଇପଡ଼ି ପଚାରିଲେ - କ'ଣ ହେଲା ? ଘଟଣା କ'ଣ ?

- ଆଉ ଘଟଣା ! ଶୁଣିଥିଲି ଆପଣଙ୍କ ଝିଅଟି ଦୁର୍ଦ୍ଧାନ୍ତ । କିନ୍ତୁ ସେ ଯେ ଏମିତି କଥା କଥାକେ ହାତ ଉଠାଏ, ତା' ଜାଣି ନ ଥିଲି । ଦେଖନ୍ତୁ ମୋ ଅବସ୍ଥା, ମୁଣ୍ଡ ଫାଟି ରକ୍ତ ବୋହୁଛି - ହର୍ତ୍ତେନସିଓ ଧଇଁସଇଁ ହୋଇ ଜଣାଏ ।

ଲାଜ ଆଉ ଦୁଃଖରେ ବାପ୍ତିସ୍ତାଙ୍କ ମୁଣ୍ଡ ନଇଁଗଲା । ସେ କହିଲେ ଦେଖନ୍ତୁ ତ, କି ଅନ୍ୟାୟ । ସତରେ, କେତେ ରକ୍ତ ବୋହୁଛି ! କେମିତି ଏସବୁ ହେଲା ?

- ଆପଣଙ୍କ ଝିଅ ବେହେଲାରେ ପିଟିଦେଲାରୁ ।

- ହଠାତ୍ ସେ ଏମିତି ରାଗିଗଲା କାହିଁକି ?

ଶିକ୍ଷକ ଉତ୍ତର ଦେଲେ -ବେହେଲା ବଜାଇବା ଶିଖାଉଥିଲି । ବଜାଇବାରେ କାଥେରିନ୍ ବାରମ୍ବାର ଭୁଲ୍ କରୁଥିଲା । ସେଥିପାଇଁ ତା' ହାତ ଧରି ଶିଖାଇବାକୁ ଯେମିତି ଚେଷ୍ଟା କରିଛି... ମୁଁ ଆଉ ଯାଏ କୁଆଡ଼େ ! ବେହେଲାଟା ଧରି ଧାଇଁ କରି ମୋ ମୁଣ୍ଡରେ ଦେଲା ପିଟି । ଛାତ୍ରୀ ହାତରେ ଏଇ ମାଡ଼ ଖାଇ ମୋ ବୁଦ୍ଧି ତ ବଣା । ଶିଖାଇବି ଆଉ କ'ଣ ? ତେଣେ ଝିଅ ମୁହଁରୁ ଯେଉଁ ଭାଷାର ଗାଳି ସବୁ ବାହାରୁଛି ... ନାଃ... ସେକଥା ମୁଁ ...

ପେତ୍ରୁସିଓ ସବୁ ମନ ଦେଇ ଶୁଣୁଥିଲା । କହିଲା ବାଃ... ଝିଅ ହିସାବରେ ହୀରାଖଣ୍ଡେ ତା ! ଏ କଥା ଶୁଣି ମୋ ଶ୍ରଦ୍ଧା ତ ଆହୁରି ବଢ଼ିଗଲା ...

ବାପ୍ତିସ୍ତା ନିଜ ଝିଅକୁ ଭଲଭାବେ ଜାଣନ୍ତି । କେବଳ ଏଇଥିପାଇଁ ଏତେ ଦିନ ପର୍ଯ୍ୟନ୍ତ ବିବାହ ହୋଇପାରୁ ନାହିଁ । ଶେଷକୁ ଜୁଟିଛି ଏଇ ପାତ୍ର । ଘଟଣା ସବୁ ଯାହା ଘଟିଯାଉଛି, ସେ ଯଦି ତା'ର ମତ ବଦଳାଇ ଦିଏ, ତେବେ ତ କଥାଟା ସରିଲା । ସେଥିପାଇଁ କଥାର ଗତି ବଦଳାଇ ସେ ହର୍ଟେନସିଓକୁ କହିଲେ - ଠିକ୍ ଅଛି, କାଥେରିନ୍‌କୁ ଆଉ କିଛି ଶିଖାଇବାର ଦରକାର ନାହିଁ । ଆପଣ ବରଂ ବିୟେଙ୍କାକୁ ଶିଖାନ୍ତୁ ...

ଦେଖାଗଲା ଗୀତଶିକ୍ଷକଙ୍କର ସେଥିରେ ଆଦୌ ଆପତ୍ତି ନାହିଁ । ସେ ଭଙ୍ଗା ବେହେଲାଟାକୁ ନେଇ ଘର ଭିତରକୁ ଚାଲିଗଲେ । ବିୟେଙ୍କା ପାଖକୁ ଯିବାର ସୁଯୋଗ ମିଳିଛି ଯେତେବେଳେ ଏହାକୁ କ'ଣ ହାତଛଡ଼ା କରି ହୁଏ ?

ଭିତରେ ହର୍ଟେନସିଓ ଦେଖେ - ଆଉ ଜଣେ ଶିକ୍ଷକ ବିୟେଙ୍କାକୁ କାବ୍ୟ ପଢ଼ାଇବାରେ ବ୍ୟସ୍ତ ।

ପେଟ୍ରୁସିଓ କହେ - ସିନର ବାପ୍ତିସ୍ତା, ଚିନ୍ତା କରନ୍ତୁ ନାହିଁ । ଆପଣଙ୍କର ଝିଅ ମୋର ବେଶ୍ ପସନ୍ଦ ହୋଇଛି । ବିବାହଟା ଖୁବ୍ ଶୀଘ୍ର ଶେଷ କରିନେବାକୁ ଚାହେଁ । ଏଥର କହନ୍ତୁ, ଝିଅକୁ ଆପଣ କ'ଣ କ'ଣ ଯୌତୁକ ଦେବେ ।

ତରୁଣ-ପାତ୍ରର ଏଇ ତରବରିଆ ଭାବ ବାପ୍ତିସ୍ତାଙ୍କର ମୋଟେ ପସନ୍ଦ ହେଲା ନାହିଁ । ମାତ୍ର ଝିଅପାଇଁ ପାତ୍ର ଯୋଗାଡ଼ କରିବା ଯେ କିଭଳି କଷ୍ଟକର ତା' ସେ ବୁଝିଥିଲେ । ନିଜେ ଆସି ଉପସ୍ଥିତ ହୋଇଥିବା ଏଇ ପାତ୍ରକୁ ସେ ହାତଛଡ଼ା କରିବାକୁ ଚାହୁଁ ନ ଥିଲେ । ତେଣୁ ନିଜର ମନର ଭାବକୁ ମନରେ ରଖି ସେ କହିଲେ - ଯୌତୁକ ରୂପେ ସେ ପାଇବ କୋଡ଼ିଏ ହଜାର କ୍ରାଉନ । ତା'ଛଡ଼ା ମୋ ମୃତ୍ୟୁ ପରେ ଏ ସମ୍ପତ୍ତିର ଅର୍ଦ୍ଧେକ ହେବ ତା'ର ।

ଏ କଥା ଶୁଣି ପେଟ୍ରୁସିଓ ମହାଖୁସି ।

ବାପ୍ତିସ୍ତା କହନ୍ତି - ଏଥର ତେବେ ଭିତରକୁ ଚାଲ । ଝିଅ ସାଙ୍ଗରେ ତମର ପରିଚୟ ହେବା ଦରକାର ।

ପେଟ୍ରୁସିଓ କହେ - 'ନା ମୁଁ ଭିତରକୁ ଯାଉ ନାହିଁ । ଆପଣ ବରଂ ଝିଅକୁ ଏଇଠାକୁ ପଠାଇ ଦିଅନ୍ତୁ ।'

- ଠିକ୍ ଅଛି । ପଠାଇ ଦେଉଛି । ବାପ୍ତିସ୍ତା ଭିତର ଆଡ଼େ ଚାଲିଯାଆନ୍ତି । ପେଟ୍ରୁସିଓ ବସି ରହେ ଏକା ଏକା ।

ମନରେ ତା'ର ନାନା ଚିନ୍ତା । କାଥେରିନ୍ ସହିତ ତା'ର ପ୍ରଥମ ଆଳାପଟା କିଭଳି ହେବା ଉଚିତ ? ଏହାରି ସଫଳତା ଉପରେ ନିର୍ଭର କରୁଛି ତା'ର ଭବିଷ୍ୟତ୍ ଜୀବନର ସୁଖସମୃଦ୍ଧି ।

ସେ ମନେ ମନେ ଗୋଟାଏ ପରିକଳ୍ପନା କରିନିଏ । ଠିକ୍ କରେ କାଥେରିନ୍ ଯଦି ରାଗିଯାଇ କଥା ଆରମ୍ଭ କରେ, ତେବେ ମୋର କହିବା ଉଚିତ ଯେ, ତା'ର ସ୍ୱରଟି କୋଇଲିର ସ୍ୱର ଭଳି ମିଠା । କଥା ତ ନୁହେଁ, କଣ୍ଠରୁ ଯେମିତି ମଧୁର ସ୍ୱର ଝଙ୍କାର ସୃଷ୍ଟି ହେଉଛି ! ସେ ଯଦି ବିରୂପ ଦୃଷ୍ଟିରେ ମୋ ଆଡ଼କୁ ଅନାଏ, ତେବେ କହିବି - କି ସୁନ୍ଦର ! ସତେ ଯେମିତି ବର୍ଷା ଭିଜା ସକାଳର ସଜ ଗୋଲାପ ଫୁଲଟି ! ଯଦି ମୋତେ କଥା ନ କହେ - ତଥାପି ମୁଁ କହିବି କି ଚମତ୍କାର ତମର ସ୍ୱର ! କି ଚମତ୍କାର ଭାଷା ଆଉ ବାକ୍ୟ ବିନ୍ୟାସ ! ଯଦି ରାଗିଯାଇ ଘରୁ ବାହାରିଯିବାକୁ କହେ, ତେବେ ଏ ଘରକୁ ଦୟାକରି ଆମନ୍ତ୍ରଣ ଜଣାଇଥିବାରୁ ମୁଁ ତାକୁ ଧନ୍ୟବାଦ ଦେବି । କହିବି ଏଠି ମୋତେ ଗୋଟିଏ ସପ୍ତାହ ରହିବାକୁ କହୁଛି । ଯଦି ମୋତେ ବିବାହ କରିବାକୁ ରାଜି ନ ହୁଏ, ତଥାପି ମୁଁ ପଚାରିବି ବିବାହଟା କେବେ ହେବ ?

ଏଇ ତ ଶ୍ରୀମତୀ ଆସୁଛନ୍ତି ! ଦେଖାଯାଉ, ଏଇ ଭୟଙ୍କର ବଣବିରାଡ଼ିଟିକୁ ମୁଁ ପୋଷା ମନାଇପାରୁଛି କି ନାହିଁ !

କାଥେରିନ୍ ପ୍ରବେଶ କରେ ।

ପେଟ୍ରୁସିଓ କହେ ସୁପ୍ରଭାତ କେଟ୍, ଶୁଣିଛି ତାହାହିଁ ତମର ଡାକ ନାମ । ଉପରେ ପଡ଼ି ଏଭଳି ସମ୍ଭାଷଣରେ କାଥେରିନ୍ ମୋଟେ ଖୁସି ହେଲା ନାହିଁ । ସେ ଦମ୍ଭର ସହିତ କହିଲା - ଯେଉଁମାନେ ମୋ ସହିତ କଥାବାର୍ତ୍ତା ହୁଅନ୍ତି, ସେମାନେ ମୋତେ କାଥେରିନ୍ ନାମରେ ହିଁ ଡାକନ୍ତି ।

- ତମେ ମିଛ କହୁଚ - ଆକର୍ଣ୍ଣ ହସ ହସି ପେଟ୍ରୁସିଓ କହେ-ତୁମକୁ କେଟ୍ ବୋଲି ଡକାଯାଏ । ସୁନ୍ଦରୀ କେଟ୍ । ଅବଶ୍ୟ ପଛରେ କେହି କେହି ତମକୁ ଉଗ୍ରଚଣ୍ଡୀ ବୋଲି ମଧ କହନ୍ତି । ତମେ କୁଆଡ଼େ ଭୟଙ୍କର କଳିହୁଡ଼ୀ, ଯିଏ ଯାହା କହୁ ମୋ ପାଇଁ ତମେ ସୁନ୍ଦରୀ କେଟ୍ । ଦୁନିଆର ଶ୍ରେଷ୍ଠ ସୁନ୍ଦରୀ । ତମର ଭଦ୍ର ଆଚାରବ୍ୟବହାର କଥା ଚାରିଆଡ଼େ ଶୁଣିଚି । ଏଇ ସବୁ ଶୁଣି ତ ମୁଁ ତମକୁ ବିବାହ କରିବାକୁ ଛୁଟି ଆସିଛି ।

ଗର୍ଜିଉଠି କାଥେରିନ୍ କହେ - ଆସିଛ ତ ! ବେଶ୍ ଏଥର ତା'ହେଲେ ବାହାର, ବାହାରିଯାଅ କହୁଛି ...

ପେଟ୍ରୁସିଓ ବୁଝିଯାଏ ... ପ୍ରକୃତରେ ଏଇ ଝିଅ ଦୁର୍ଦ୍ଦାନ୍ତ, ଭୟଙ୍କର ...

ତେବେ ଆଶ୍ଚର୍ଯ୍ୟ ହେବା ଭଳି କହେ - ବାହାରିଯିବି ? ମାନେ

- ଏଇ ସାଧାରଣ କଥାଟାର ମାନେ ବୁଝିପାରୁ ନାହଁ ? ଏତେ ନିର୍ବୋଧ ତମେ !

- କିନ୍ତୁ ମୁଁ ତ ଖାଲି ହାତରେ ଫେରିଯିବାକୁ ଆସି ନାହିଁ । ଆଗେ ବିବାହ କଥାଟା ପକ୍କା ହୋଇଯାଉ । ତା' ପରେ ଧୀରେ ସୁସ୍ଥେ ଯିବି ।

କାଥେରିନ୍ ଅଗ୍ନିଶର୍ମା ହୋଇ କହେ - ତମ ଭଳି ନିର୍ଲଜ୍ଜକୁ କିଭଳି ବାହାର କରି ଦେବାକୁ ହୁଏ, ତା' ମୋତେ ଭଲ ଭାବେ ଜଣାଅଛି ।

- ଏ କଥାର ଅର୍ଥ ?

- ପୁଣି ଅର୍ଥ! ଏ ଲୋକଟା ତ ଦେଖୁଛି ମହା ନିର୍ବୋଧ । ସିଧାକଥାର ଅର୍ଥ ବୁଝିବାକୁ ଟୀକା ଖୋଜୁଚି ! ଶୁଣ - ତମେ ହଉଚ୍ ଗୋଟାଏ ଟୁଲ -ଟୁଲ ବୁଝୁଛ ତ! ଏଇ ଯାହା ଉପରେ ବସନ୍ତି - ଗୋଟାଏ ଧକ୍କାରେ ତମକୁ ଚିତ୍‌ପଟାଂ କରିବାକୁ ହୁଏ ।

- ବାଃ ବାଃ... ଭାରି ଚମତ୍କାର କଥା କହି ଜାଣ ତ, - ମହା ଉଲ୍ଲାସରେ ପେଟ୍ରୁସିଓ କହିଉଠେ - ମୁଁ ଗୋଟାଏ ଟୁଲ୍! ଭଲ,ଭଲ, କେଟ୍, ତମେ ଏଇ ଟୁଲ ଉପରେ ବସିପଡ଼ି ମତେ ଧନ୍ୟ କରନା ।

- ତମର ଆସ୍ପର୍ଦ୍ଧା ତ କମ୍ ନୁହଁ ; କାହା ସାଙ୍ଗରେ କଥା କହୁଚ୍ ଜାଣ ?

- ଜାଣେ । କହୁଚି ମୋ କେଟ୍ ସାଙ୍ଗେ...

- ତମେ - ତମେ - ଗୋଟାଏ ଭାରବାହୀ ଗର୍ଦ୍ଦଭ! କାଥେରିନ୍ ରାଗରେ ଫାଟିପଡ଼େ ।

- ଭାର ତ ଝିଅମାନଙ୍କୁ ବି ବୋହିବାକୁ ପଡ଼େ । ତମେ ବି ତ ଝିଅ, କିନ୍ତୁ ବେଶ୍ ହାଲ୍‌କା ।

- ତମଭଳି ମହାମୂର୍ଖ ଆଉ ଚରମ ନିର୍ବୋଧ ପାଇଁ ମୁଁ ହାଲ୍‌କା - ଭାର ମୋର ମଧ ଅଛି । ତେବେ ସେ କଥା ବୁଝିବା ଭଳି ବୁଦ୍ଧି ତମର ନାହିଁ ।

- ଆରେ ଆରେ, ତମେ ତ ଦେଖୁଚି ସତକୁ ସତ ରାଗିଗଲଣି ।

- ରାଗିବି ନାହିଁ ? କାଥେରିନ୍ ଗର୍ଜି ଉଠି କହେ ।

- ତମେ , ତମେ ଗୋଟିଏ ବିରୁଡ଼ି । ପେଟ୍ରୁସିଓ ହସି ହସି କହେ ।

- ମନେରଖ , ବିରୁଡ଼ିର ନାହୁଡ଼ ଥାଏ । ତମେ ତାକୁ ଭୟ କର ନାହିଁ ?

- ନାହୁଡ଼ ମୁଁ କାଢ଼ି ଦେବି ।

- କୋଉଠି ନାହୁଡ଼ ଥାଏ, ତା'ଜାଣ ?

- ଜାଣିବି ନାହିଁ କାହିଁକି ? ନାହୁଡ଼ ଥାଏ ବିରୁଡ଼ିର ଲାଞ୍ଜରେ...

- ଜିଭରେ ବି ଥାଇପାରେ ।

- ଜିଭରେ ? ନାଃ ସେଠି ରହିବ କେମିତି ? ପେଟ୍ରୁସିଓ ପ୍ରଶ୍ନ କରେ ।

- ତମ ଭଳି ପାଗଳର ଜିଭରେ ଥିଲେ ଅବା ଥାଇପାରେ ।

- ନା ନା ମୁଁ ପାଗଳ ନୁହେଁ । ମୁଁ ଜଣେ ସୁସ୍ଥସବଳ ଭଦ୍ରଲୋକ ।

- ଭଦ୍ରଲୋକ ? ସତରେ ନା କ'ଣ ? ଏଥର ତେବେ ବାହାର ଏଠୁ...

- ବାହାଘର କଥାଟା ପକ୍କା ନ ହେବା ପର୍ଯ୍ୟନ୍ତ ତ ଯାଇପାରୁ ନାହିଁ । କାଥେରିନ୍‌ର ମିଜାଜ୍ ଏଥର ସପ୍ତମରେ । ସେ କିଛି ନ ବିଚାରି ଠାଏ କରି ଗୋଟିଏ ଚଟକଣା ପେଟ୍ରୁସିଓର ଗାଲରେ ବସାଇଦେଲା ।

ଏଥର ପେଟ୍ରୁସିଓର ପାଳି । ସେ ତରାଟି ଅନାଇ କହିଲା, ତମେ ! ତମେ ମୋତେ ଥାପ୍ପଡ଼ ମାରିଲ ? ମୁଁ ତମକୁ ଘୁଷି ମାରିବି...

- ଏଃ ଭଦ୍ରଲୋକ ହୋଇ ତମେ ଝିଅପିଲା ଦେହରେ ହାତ ଦେବ ? ବ୍ୟଙ୍ଗପୂର୍ଣ୍ଣ କଣ୍ଠରେ କାଥେରିନ୍ କହେ ।

- କେଟ୍, ତମର ଏଇ ସ୍ୱଭାବର ପ୍ରେମରେ ପଡ଼ିଯାଇଛି ମୁଁ । ମୋତେ ତମର ସ୍ୱାମୀ ରୂପରେ ଗ୍ରହଣ କରିନିଅନା..

- ତମର ପରିଚ୍ୟ କ'ଣ ?

- ମୁଁ, ମୁଁ ଜଣେ ଭଦ୍ରଲୋକ ।

- କେତେ ଭଦ୍ର, ତା'ତ ମୁଁ ଦେଖୁଛି ।

- ନା-ସତ କହୁଛି ...

- ଯଥେଷ୍ଟ ହୋଇଟି... ଆଉ ପଦେବି କଥା ଶୁଣିବି ନାଇଁ... ମୁଁ ଏଥର ଯାଏଁ... ବାଟ ଓଗାଳି କରୁଣ କଣ୍ଠରେ ପେଟ୍ରୁସିଓ କହେ- ତମେ ଚାଲିଯାଅ ନା କେଟ୍ । ତମାକୁ ମୁଁ ଏମିତି ଯିବାକୁ ଦେବି ନାହିଁ । ତମକୁ ଭଲ ପାଇଛି । ତମେ ଯେମିତି, ସେମିତି ...ସେଇ ରୂପର ପ୍ରେମରେ ମୁଁ ପଡ଼ିଛି - କିଏ କ'ଣ କହୁଛି ସେଥିକି ମୋର ଖାତିର୍ ନାହିଁ... ତମେ -ତମେ ହିଁ ମୋର ପ୍ରାଣ...

ତାକୁ ଯେ କେହି ଏମିତି କଥା କହିପାରେ, ଏକଥା କାଥେରିନ୍ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା । କ୍ରୋଧରେ ଅନ୍ଧ ହୋଇ ସେ ଚିତ୍କାର କରିଉଠେ- ନିର୍ବୋଧ, ବାହାର -ଏଇ ମୁହୂର୍ତ୍ତରେ ମୋ ଆଗରୁ ଦୂର ହୋଇଯାଆ ...

ହସି ହସି ପେଟ୍ରୁସିଓ କହେ-ବାଃ ବାଃ- ରାଗିଗଲେ ତମେ ତ ଆହୁରି ସୁନ୍ଦରୀ ଦେଖାଯାଉଛ କେଟ୍ ।

କାଥେରିନ୍‌ର ରାଗ ପଞ୍ଚମରେ ।

ମଧୁର କଣ୍ଠରେ ଏଥର ପେଟ୍ରୁସିଓ କାଥେରିନ୍‌ର ସ୍ତୁତିଗାନ କରିବାକୁ ଆରମ୍ଭ କରେ । କବିତ୍ୱପୂର୍ଣ୍ଣ ଭାଷାରେ ତାକୁ ବୁଝାଇ ଦିଏ ଯେ, ଏଭଳି ସୁନ୍ଦରୀ ଏବଂ ଗୁଣବତୀ ନାରୀକୁ ସେ ଯଦି ନ ପାଏ, ତେବେ ଜୀବନ ଦେଇଦେବ । ପ୍ରାଣ ଥିବା ପର୍ଯ୍ୟନ୍ତ ଏ ତୀର୍ଥ ଛାଡ଼ି ଅନ୍ୟ କାହିଁ ଯିବ ନାହିଁ । ପ୍ରଣୟ ତୀର୍ଥରେ ମୃତ୍ୟୁରେ ହିଁ ତା'ର ମୁକ୍ତି ।

କହନ୍ତି, ତୋଷାମୋଦ ହେଉଛି ଏଭଳି ଏକ ଚମତ୍କାର ସିଢ଼ି, ଯାହା ବକ୍ତାକୁ ଅନାୟାସରେ ସପ୍ତମ ସ୍ୱର୍ଗରେ ପହଞ୍ଚାଇ ଦିଏ । କାଥେରିନ୍‌ର ରାଗଟା ଏଥର ନିମ୍ନମୁଖୀ । ସେ ଗମ୍ଭୀର କଣ୍ଠରେ ପଚାରେ - ଏଭଳି କଥା କାହୁଁ ଶିଖିଛ ?

- ମୋ ମା'ଙ୍କଠୁଁ । ଠିକ୍ ସମୟରେ ଠିକ୍ କଥାଟି ହିଁ ମୋ ମୁହଁରୁ ବାହାରିଆସେ ।

- ନିଶ୍ଚୟ ତମର ମା ବୁଦ୍ଧିମତୀ, କିନ୍ତୁ ତମ ଘଟରେ ତିଳେ ମାତ୍ର ବୁଦ୍ଧି ନାହିଁ ।

- ଏ କଥା ତମକୁ କିଏ କହିଲା ? ପେଟ୍ରୁସିଓ ପ୍ରଶ୍ନ କରେ ।

- କିଏ ଆଉ ? ତମର ଆଚରଣ ।

ଏଥର ଗମ୍ଭୀର ହୋଇ ପେଟ୍ରୁସିଓ କହେ-ଏସବୁ କଥା ଥାଉ । ଏଥର କେତେଟା ଦରକାରୀ କଥା କହିଦିଏ । ଶୁଣ କେଟ୍, ସିନର ବାପ୍ତିସ୍ତା ତମ ସହିତ ମୋର ବିବାହ ଦେବା ନିମନ୍ତେ ରାଜି । ଏ ବିବାହରେ ଯୌତୁକ ରୂପେ କୋଡ଼ିଏହଜାର କ୍ରାଉନ୍ ଦେବେ । ତମର ମତ ମିଳୁ ବା ନ ମିଳୁ -ତମକୁ ମୁଁ ନିଶ୍ଚୟ ବାହାହେବି । ଏ ମୋର ସିଦ୍ଧାନ୍ତ । ମୋତେ ଛାଡ଼ି ତମେ ଆଉ କାହାକୁ ବାହା ହୋଇପାରିବ ନାହଁ । ତମେ ଭୟଙ୍କରୀ, ତମେ ଦୁର୍ଦ୍ଧାନ୍ତ-ତଥାପି ତମେ ମୋର..ମୁଁ ତମକୁ .. ।

ବାପ୍ତିସ୍ତା କହନ୍ତି - ଦୁଇଜଣଙ୍କର ଆଳାପ ବେଶ ଜମିଯାଇଛି ଦେଖୁଛି । ବାପ୍ତିସ୍ତା ଆଉ ଗ୍ରେମିଓ ଭିତରକୁ ଆସନ୍ତି ।

- ଆପଣଙ୍କ ଝିଅ-ଖାଲି ସୁନ୍ଦରୀ ନୁହେଁ ସିନର୍ - ଅତ୍ୟନ୍ତ ଗୁଣବତୀ - ହସି ହସି ପେଟ୍ରୁସିଓ କହେ ।

- ତା'ହେଲେ ଆଶା କରୁଛି ଏ ଭିତରେ ପ୍ରସ୍ତାବଟା ମଧ କରିସାରିଥିବ ।

- ସେ କଥା ଆଉ ବାକି ଅଛି ? ଆପଣଙ୍କ ଝିଅ ରାଜି ବି ହୋଇଛନ୍ତି ।

- କ'ଣ କହିଲ ? କାଥେରିନ୍ ଗୋଟିଏ ଗଗନଭେଦୀ ଚିତ୍କାର ଛାଡ଼େ । ବାପ୍ତିସ୍ତା ଚମକି ପଡ଼ନ୍ତି । ରାଗରେ ଗର୍ଜୁ ଗର୍ଜୁ କାଥେରିନ୍ କହିଯାଏ- ବାବା, କୋଉଠୁ ଗୋଟିଏ ମୂର୍ଖ ଆଉ ପାଗଳକୁ ଧରି ଆଣିଛ ମୋ ସାଙ୍ଗରେ ଛନ୍ଦି ଦେବାକୁ? ଆଉ କ'ଣ ପାତ୍ର ଜୁଟିଲା ନାହିଁ ? ଆଏଁ ?

ସିନର୍ ବାପ୍ତିସ୍ତା ହତବୁଦ୍ଧି ହୋଇ ପେଟ୍ରୁସିଓ ଆଡ଼େ ଅନାନ୍ତି ।

ପେଟ୍ରୁସିଓ ଆଖିବୁଜି କହିଯାଏ ...ତାଙ୍କ କଥା ଶୁଣି ଭୁଲ ବୁଝିବେ ନାହିଁ । ଏ ରାଗ ହେଉଛି ପ୍ରକୃତରେ ଏକ ଛଳନା । ବିବାହର ପ୍ରସ୍ତାବ ଦେଇଛି । ସେ ରାଜି ବି ହୋଇଛନ୍ତି । ଆମ ଭିତରେ କଥାବାର୍ତ୍ତା ଏକେବାରେ ସ୍ଥିର । ଆସନ୍ତା ରବିବାର ଦିନ ବିବାହ...

କାଥେରିନ୍ ରାଗିଯାଇ ପୁଣି ଚିତ୍କାର କରିଉଠେ । କହେ - ଆସନ୍ତା ରବିବାର ଦିନ ତମେ ଶୂଳିରେ ଚଢ଼ିବ ।

ବାଃ-ବାଃ ଭାବୀସ୍ୱାମୀଙ୍କ ସମ୍ପର୍କରେ ଭାବୀକନ୍ୟାଙ୍କର କି ଚମତ୍କାର ସଦିଚ୍ଛା ! ଏଇ ତାହାହେଲେ କଥାବାର୍ତ୍ତା ସ୍ଥିର ହେବାର ନମୁନା ! ଗ୍ରେମିଓ ବ୍ୟଙ୍ଗ ସ୍ୱରରେ କହେ ।

- ଏ ବ୍ୟାପାରରେ ଆପଣ କିଛି ମନ୍ତବ୍ୟ ନ ଦେଲେ ଖୁସି ହେବି । ଆମ ଭିତରେ ଆଳାପଆଲୋଚନା ହୋଇ ସବୁ ଠିକ୍ ହୋଇଯାଇଛି । ବିବାହର ଦିନସମୟ ବି ସ୍ଥିର । ସିନର୍, ଆପଣ ଚିନ୍ତା କରନ୍ତୁ ନାହିଁ । ଆପଣଙ୍କ ଝିଅ ଅନ୍ୟ ଆଗରେ ଭୟଙ୍କରୀ ହେଲେ ମଧ ମୋ ସହିତ ତାଙ୍କର ବ୍ୟବହାର ଖୁବ୍ ଶାଳୀନ । ପେଟ୍ରୁସିଓ କହେ ।

ବାପ୍ତିସ୍ତା କହନ୍ତି- ଏ ତ ଖୁବ୍ ଭଲ କଥା ।

- ଆପଣ ବିବାହର ବ୍ୟବସ୍ଥା କରନ୍ତୁ ସିନର୍ । ବଡ଼ଝିଅର ବିବାହ ! ଭୋଜିଟାତ ନିଶ୍ଚୟ ଭଲ ଭାବରେ କରିବାକୁ ହେବ । ଏବେ ମୁଁ ଯାଉଛି । ବିବାହର ଜିନିଷପତ୍ର, ଲୁଗାପଟା କିଣିବାକୁ ମୋତେ ପୁଣି ଭେନିସ୍ ଯିବାକୁ ପଡ଼ିବ । ରବିବାର ବାହାଘର । ହାତରେ ଆଉ ସମୟ ନାହିଁ । ପେଟ୍ରୁସିଓ କହିଯାଏ ଏବଂ ବିଦାୟ ନେଇ ଚାଲିଯାଏ ।

ସେପଟେ ବିୟେଙ୍କାକୁ ପାଇବା ପାଇଁ ଦୁଇ ଛଦ୍ମବେଶୀ ଶିକ୍ଷକ ଲୁସେନସିଓ ଆଉ ହର୍ଟେନସିଓଙ୍କ ଭିତରେ ଆରମ୍ଭ ହୋଇଯାଏ ପ୍ରତିଯୋଗିତା । ଶିକ୍ଷା ଦେଉ ଦେଉ ଦୁହେଁ ବିୟେଙ୍କା ସହିତ ମନ ବିନିମୟ କରିବା ପାଇଁ ଲାଗିପଡ଼ନ୍ତି ।

॥ ୩ ॥

ରବିବାର ଆସିଯାଏ । ଭୋଜିର ବ୍ୟବସ୍ଥା ହୁଏ । ଅତିଥିମାନେ ଆସିଯାଆନ୍ତି । ତେବେ ବର କାହାନ୍ତି ? ସେ ଆସିବା ପରେ ତ ସମସ୍ତେ ମିଶି ଗିର୍ଜାକୁ ଯିବେ !

ଅପେକ୍ଷା କରି କରି ଅତିଥିମାନେ ଅଧୈର୍ଯ୍ୟ । ସେମାନେ ଏଣୁ ତେଣୁ କଥା କହିବାରେ ଲାଗନ୍ତି । ଯେଉଁ ପାଦ୍ରୀ ବିବାହ ଦେବେ ତାଙ୍କର ବି ଧୈର୍ଯ୍ୟଚ୍ୟୁତି ହେଲାଣି । ବାପ୍ତିସ୍ତା ବିଚରା ମହାବ୍ୟସ୍ତ । ତାଙ୍କର ଆଶଙ୍କା - ଶେଷରେ କ'ଣ କୂଳକୁ ଆସି ଡଙ୍ଗା ବୁଡ଼ିବ ! ଏତେ ଲୋକଙ୍କ ଆଗରେ ସେ ଅପଦସ୍ତ ହେବେ ! ରାଗରେ ଆଉ କ୍ଷୋଭରେ କାଥେରିନ୍ କାନ୍ଦିବାରେ ଲାଗେ, ଜୀବନରେ ସେ ଏଭଳି ଅପମାନିତ କେବେ ହୋଇ ନାହିଁ । ଲୋକଟା ତା' ସହିତ ଏମିତି ଥଟ୍ଟା କଲା ।

ଶେଷରେ ପେଟ୍ରୁସିଓର ଦେଖା ମିଳେ । ମାତ୍ର ଏ କି ବେଶରେ ସେ ଆସିଛି ! ଏ କ'ଣ ବିବାହର ବର ନା କେଉଁ ଏକ ପାଗଳ ! କି ଅଦ୍ଭୁତ ପୋଷାକ ସେ ପିନ୍ଧିଛି ! ସାଙ୍ଗରେ ପୁଣି କେହି ବରଯାତ୍ରୀ ନାହାନ୍ତି । ଜଣେ ମାତ୍ର ପରିଚାରକ । ଦେଖାଯାଉଛି ଯେମିତି ରାସ୍ତାର ଗୋଟିଏ

ଭିକାରି ଭଳି । ଆଉ ବାହନର ଅଶ୍ୱ ଦୁଇଟି... ମନେ ହେଉଛି ବର୍ଷ ବର୍ଷ ଧରି ସେମାନଙ୍କୁ ମୁଠାଏ ଦାନା ମିଳି ନାହିଁ - ହାଡ଼ ଗଣି ହୋଇଯାଉଛି ।

ବାପ୍ତିସ୍ତା ଶୁଖିଲା ହସ ହସି କହନ୍ତି-ତମର ଏଇ ପୋଷାକ ବଦଳାଇ ନିଅ । ଆଜି ତମର ବିବାହ । ଏଭଳି ଦିନରେ କ'ଣ ଏମିତି ପୋଷାକ ସାଜେ ?

ପୋଷାକ ବଦଳାଇବାକୁ ପେଟ୍ରୁସିଓ ମୋଟେ ରାଜି ହୁଏ ନାହିଁ । ହସି ହସି କହେ... କେଟ୍ ତ ମୋ ପୋଷାକକୁ ବାହା ହେଉ ନାହିଁ...ବାହା ହେଉଛି ମୋତେ ...

କ'ଣ ଆଉ କରାଯିବ । ସମସ୍ତେ ବୁଝେଇ ବୁଝେଇ ଥକିଗଲେ । ଯାହାହେଉ, ବାହାଘରଟା ତ ଆଗେ ହୋଇଯାଉ କୌଣସିମତେ ।

ସମସ୍ତେ ଗିର୍ଜାକୁ ଯାଆନ୍ତି । ସେଠି ପହଞ୍ଚି ପେଟ୍ରୁସିଓ ବଦ୍ଧପାଗଳ ଭଳି ବ୍ୟବହାର କରିବାକୁ ଆରମ୍ଭ କରେ ।

ପୁରୋହିତ କାଥେରିନ୍‌କୁ ପ୍ରଶ୍ନ କରନ୍ତି- ତମେ କ'ଣ ପେଟ୍ରୁସିଓର ପତ୍ନୀ ହେବାକୁ ରାଜି ଅଛ ?

କାଥେରିନ୍ କିଛି କହିବା ଆଗରୁ ପେଟ୍ରୁସିଓ ଚିତ୍କାର କରି କହିଉଠେ - ହଁ - ହଁ ରାଜି ଅଛି-ଖୁସିରେ ରାଜି ଅଛି ।

ତା'ର ଅଦ୍‌ଭୁତ ଚିତ୍କାରରେ ପାଦ୍ରି ଚମକି ପଡ଼ନ୍ତି । ତାଙ୍କ ହାତରୁ ବାଇବେଲ୍ ଖସିପଡ଼େ । ସେ ନଇଁପଡ଼ି ତାକୁ ଉଠାଇବାକୁ ଗଲାବେଳକୁ ପେଟ୍ରୁସିଓ ତାଙ୍କୁ ଧକ୍କା ମାରେ । ପାଦ୍ରି ଭୁଷ୍ କରି ପଡ଼ିଯାଆନ୍ତି ।

କୌଣସିମତେ ଉଠିପଡ଼ି ସେ ତରତରରେ ବାକି ଅନୁଷ୍ଠାନଗୁଡ଼ିକୁ ସାରିବାରେ ଲାଗନ୍ତି । ଯେତେବେଳଯାଏ ଏ ସବୁ ଚାଲିଥାଏ ପେଟ୍ରୁସିଓ ଗୋଡ଼ କଚାଡୁ ଥାଏ । ଚିତ୍କାର କରି ହଠାତ୍ ସମସ୍ତଙ୍କୁ ଗାଳିଦେବାକୁ ଆରମ୍ଭ କରେ । କାଥେରିନ୍ ଭୟରେ ଠକ୍ ଠକ୍ କରି କମ୍ପିବାରେ ଲାଗେ । ଜୀବନରେ ଏଇ ପ୍ରଥମ ସେ ଭୟ ପାଉଛି !

ଏମିତି ହଟ୍ଟଗୋଳ ଭିତରେ ବିବାହ ଶେଷ ହୋଇଯାଏ ।

ବର-ମହାଶୟ ଏହା ପରେ ମଦ୍ୟପାତ୍ର ଆଣିବାକୁ ଆଦେଶ ଦିଅନ୍ତି । ରୀତି ଅନୁସାରେ ସେ ଏଥର ସମସ୍ତଙ୍କର ସୁସ୍ୱାସ୍ଥ୍ୟ କାମନା କରି ମଦ ପିଇବେ । ଗିର୍ଜା ଭିତରେ ମଦପିଇ ସେ ଶେଷତକ ପାଖରେ ଠିଆ ହୋଇଥିବା ଭଦ୍ରଲୋକଙ୍କ ମୁହଁକୁ ଛାଟିଦିଏ । କହେ - ବନ୍ଧୁ ତମର ଦାଢ଼ିଟା ବଡ଼ ପାତଳା ମନେହେଉଛି । ତାକୁ ହୁଏତ ଖୁବ୍ ଭୋକ ହେଉଛି । ମଦ ଭଳି ଖତସାର ନ ପଡ଼ିଲେ ଦାଢ଼ି ଘଞ୍ଚ ହେବ କେମିତି ? ଆଜିର ଏଇ ଶୁଭଦିନରେ ମୁଁ ସେଇ ସାର ଦେଇଦେଲି ।

ବରକୁ ନେଇ ସମସ୍ତେ ଗିର୍ଜାରୁ ବାହାରି ଆସନ୍ତି । ସମସ୍ତଙ୍କ ଆଗରେ ଏଇ ଅଦ୍‌ଭୁତ ବର ଆଉ ଭୟରେ ଦରମରା କନ୍ୟା । ସହରର ପ୍ରଧାନ ରାସ୍ତା ଦେଇ ଶୋଭାଯାତ୍ରା ବାପ୍ତିସ୍ତାଙ୍କ ଘର ଆଡ଼କୁ ଆଗେଇଯାଏ । ବାଟ ସାରା ବରର ସେଇ ପାଗଳ ଭଳି ଆଚରଣ-ସ୍ୱାମୀର ଏଇ ଅଦ୍‌ଭୁତ ବ୍ୟବହାରରେ କାଥେରିନ୍‌ର ମୁଣ୍ଡ ଲଜ୍ଜା ଆଉ ଦୁଃଖରେ ତଳକୁ ନଇଁଯାଏ । ସମସ୍ତେ ବାପ୍ତିସ୍ତାଙ୍କ ଘରେ ପହଞ୍ଚିଯାଆନ୍ତି ।

ବଡ଼ଝିଅର ବାହାଘର ଭୋଜିର ଆୟୋଜନଟା ବି ସେମିତି ବିଶାଳ । ପେଟ୍ରୁସିଓ ହଠାତ୍ ଅତିଥିମାନଙ୍କୁ ଲକ୍ଷ୍ୟ କରି କହେ -ଆପଣମାନେ ଖିଆପିଆ କରନ୍ତୁ । ମୋର ଖାଇବାର ନାହିଁ । ଆଉ ନଷ୍ଟ କଲା ଭଳି ସମୟ ବି ମୋ ହାତରେ ନାହିଁ । ମୋତେ ବର୍ତ୍ତମାନ ବାହାରିବାକୁ ହେବ । ଘରେ ଅତ୍ୟନ୍ତ ଜରୁରୀ କାମ ପଡ଼ିରହିଛି । କେଟ୍ ବି ମୋ ସାଙ୍ଗରେ ଯିବ...

ଗୁଞ୍ଜନ ଆରମ୍ଭ ହୋଇଯାଏ । ଭୋଜିରେ ବରକନ୍ୟା ଉପସ୍ଥିତ ରହିବେ ନାହିଁ, ଏ କିଭଳି କଥା ? ଖାଇବାର ଆନନ୍ଦ କେଉଁଠୁ ମିଳିବ ସେମାନେ ନ ଥିଲେ ?

ବୟସ୍କମାନେ ପେଟ୍ରୁସିଓକୁ ବୁଝାଇବାରେ ଲାଗନ୍ତି । ତା'ର ସେଇ ଗୋଟିଏ କଥା. ସ୍ତ୍ରୀକୁ ନେଇ ତାକୁ ବାହାରିବାକୁ ପଡ଼ିବ ଏଇ ସାଙ୍ଗେ ସାଙ୍ଗେ ।

କାଥେରିନ୍ ରାଗରେ ଅଗ୍ନିଶର୍ମା । ସେ ପେଟ୍ରୁସିଓକୁ ଭର୍ତ୍ସନା କରିବାରେ ଲାଗେ । ମାତ୍ର ପେଟ୍ରୁସିଓ ଏକାବେଳକେ ନିର୍ବିକାର । ସ୍ତ୍ରୀକୁ ମିଠା କଥା କହି ତୁଷ୍ଟ କରିବାରେ ଲାଗିଥାଏ ।

ଅଗତ୍ୟା ସମସ୍ତେ କାଥେରିନ୍‌କୁ ପେଟ୍ରୁସିଓ ସହିତ ଯିବା ଲାଗି ଉପଦେଶ ଦିଅନ୍ତି । ବାହାଘର ଯେତେବେଳେ ହୋଇଯାଇଛି, ସ୍ୱାମୀ ସହିତ ନ ଗଲେ ତାହା ଦେଶକୁଳକୁ ନିନ୍ଦା । ବିଚାରୀ କାଥେରିନ୍ ରାଜି ନ ହୋଇ ତା'ର ଆଉ ଚାରା କ'ଣ ?

ପେଟ୍ରୁସିଓ ଚାକରକୁ ତିନୋଟି ଘୋଡ଼ା ଶୀଘ୍ର ପ୍ରସ୍ତୁତ କରିବାପାଇଁ ଆଦେଶ ଦିଏ । ସେଗୁଡ଼ିକୁ ଘୋଡ଼ା ନିଶ୍ଚୟ କୁହାଯିବ । ତେବେ କେବଳ ହାଡ଼ ଆଉ ଚମକୁ ଛାଡ଼ିଦେଲେ ଦେହରେ ଆଉ କିଛି ନାହିଁ । ପାଦେ ଚାଲିବାର ଶକ୍ତି ବି ନାହିଁ । ସେଇଭଳି ଘୋଡ଼ାରେ ଚଢ଼ି ସେମାନେ ଯାତ୍ରା ଆରମ୍ଭ କରନ୍ତି । ପଦ ପଦକେ ଘୋଡ଼ା ଆଣ୍ଠେଇ ପଡୁଥାଆନ୍ତି । ଚାବୁକ ମାଡ଼ ଆଉ ଭର୍ତ୍ସନା ସମାନ ତାଳରେ ଚାଲିଥାଏ । ସେମାନେ ଜୀବନ ବିକଳରେ ପ୍ରାଣପଣେ ଧାଇଁଥାଆନ୍ତି । ମନେ ହେଉଥାଏ, ଏଇଥର ପଡ଼ିଲେ ଆଉ ଉଠିବେ ନାହିଁ । ତଥାପି ସେମାନେ ଆଗେଇ ଚାଲିଥାଆନ୍ତି ।

ଶେଷରେ ସେଇ ଅସରନ୍ତି ପଥ ଶେଷ ହୁଏ । କୌଣସିମତେ ତିନିଜଣଯାକ ପେଟ୍ରୁସିଓର ଘରେ ପହଞ୍ଚନ୍ତି । ପେଟ୍ରୁସିଓ ଠିକ୍ କରେ, ସେଦିନ ରାତିରେ ସେ ସ୍ତ୍ରୀକୁ ଖାଇବାକୁ କିମ୍ବା ଶୋଇବାକୁ ଦେବ ନାହିଁ ।

ଘରେ ପାଦ ଦେଉ ଦେଉ ସେ ଚିତ୍କାର କରି ସେବକମାନଙ୍କୁ ଡାକେ । ସେମାନଙ୍କୁ ଶୀଘ୍ର ଖାଦ୍ୟ ପରିବେଷଣ କରିବାକୁ କୁହେ । ସ୍ତ୍ରୀ ପାଇଁ ଛଦ୍ମ ସମବେଦନା ପ୍ରକାଶ କରେ । ତା'ରି ପାଇଁ ଏଡ଼େ ସୁନ୍ଦର ଭୋଜିଟା ମାଟି ହେଇଗଲା ବୋଲି ଦୁଃଖ କରେ ।

ଅଚିରେ ଆଦେଶ ପାଳିତ ହୋଇଯାଏ । ନାନାରକମର ସୁସ୍ୱାଦୁ ଖାଦ୍ୟ ଆସି ମେଜ ଉପରେ ସଜା ହୋଇଯାଏ । ପେଟ୍ରୁସିଓ ବି ପ୍ରସ୍ତୁତ ଥାଏ । ପ୍ରତିଟି ଭୋଜ୍ୟର ନାନା ତ୍ରୁଟି ବାହାର କରି ପରିଚାରକମାନଙ୍କୁ ଗାଳି ଦେବାକୁ ଆରମ୍ଭ କରେ । ମାଂସ ପାତ୍ରଟିକୁ ମାଟିରେ କଚାଡ଼ିଦେଇ ଗର୍ଜନ କରେ - ଏଭଳି ଅଖାଦ୍ୟ ପୋଡ଼ା ମାଂସ ମଣିଷ ଖାଆନ୍ତି ? ଏଇ ମୁହୂର୍ତ୍ତରେ ଏସବୁ ଅଖାଦ୍ୟ ଏଠାରୁ ନେଇଯାଅ । ମୋର ସ୍ତ୍ରୀ ପ୍ରଥମଥର ପାଇଁ ମୋ ଘରେ ପାଦ ରଖିଛନ୍ତି । ତାଙ୍କରି ପାଇଁ ତମେମାନେ ପରଷି ଦେଇଛ ଏଭଳି ଜଘନ୍ୟ ଖାଦ୍ୟ !

ତା'ପରେ କାଥେରିନ୍ ଆଡ଼କୁ ଅନାଇ ନରମ ସ୍ୱରରେ କହେ, ବ୍ୟସ୍ତ ହୁଅ ନାହିଁ, ସୁନାଟି ପରା । ତମକୁ ଭଲ ପାଏ, ଜୀବନଠାରୁ ବି ତମେ ମୋର ଅଧିକ ପ୍ରିୟ । ତମକୁ ତ ଆଉ ଯାହାତାହା ଖାଇବାକୁ ଦେଇପାରିବି ନାହିଁ !

ଖାଦ୍ୟରେ କାଥେରିନ୍ କିନ୍ତୁ କୌଣସି ଦୋଷ ପାଏ ନାହିଁ । ଭୋକରେ ପେଟ ଜଳୁଛି, ଖରାପ ଭଲ କିଏ ପଚାରୁଛି, ତଥାପି ସେ କିଛି କହେ ନାହିଁ । ନିଜର ଅହଙ୍କାର ନେଇ ନୀରବ ରୁହେ । କେବଳ କୁହେ ... ମୁଁ କ୍ଲାନ୍ତ ଆଉ ଶ୍ରାନ୍ତ - ବିଶ୍ରାମ କରିବାକୁ ଚାହେଁ -

ପେଟରେ ଭୋକ, କାନ-ପାଖରେ ଲୋକଟାର ଅଶ୍ରାବ୍ୟ ଗର୍ଜନ-ବିଛଣା ପାଖରେ ପହଞ୍ଚି ବି ବିଚାରୀକୁ ମୁକ୍ତି ମିଳେ ନାହିଁ । ସେଥିରେ ନାନା ଦୋଷ ବାହାରିପଡ଼େ ।

ହାହାକାର ସହିତ ସମାନ ତାଳରେ ଚାଲିଥାଏ ଭର୍ତ୍ସନାର ଧାରାପ୍ରବାହ-ଏହାରି ନାମ ବିଛଣା ! ଛ୍ୟା-ଛ୍ୟା - ଏ-ଚାଦର କେବେ ସଫା ହେଇଥିଲା ? ତକିଆ ନା ଏ ପଥର ? ଆଏଁ ? ନୂଆ ବାହାହୋଇ ଆସିଥିବା ଝିଅଟିଏ ଶୋଇବ ଏଇ ବିଛଣାରେ ! ଘରେ ପଲପଲ ଦାସଦାସୀ, କାହାରି ହେଲେ ଟିକିଏ କାଣ୍ଡ ଜ୍ଞାନ ନାହିଁ ! ହାୟ ବିଧାତା !

ଦାମୀ ବିଛଣା ଖଟରୁ ଘୋଷଡ଼ା ଯାଇ ଚଟାଣରେ ପକାଇ ଦିଆଯାଏ । କାଥେରିନ୍ ଗୋଟିଏ ଶକ୍ତ କାଠ ଚୌକି ଉପରେ ବସିଥାଏ, ସେଠି ଯଦି ଟିକିଏ ଘୁମେଇ ପଡ଼ିବାର ସୁବିଧା ମିଳିଯାଏ ! କାନ ପାଖରେ ଫଟାଢୋଲଟାଏ ଅହରହ ବାଜି ଚାଲିଲେ ନିଦ ବା ଆସିବ କେମିତି ! ସାରା ରାତି ଧରି ଏଇ ପର୍ବ ଚାଲିଲା...

ପରଦିନ ବି ଅବସ୍ଥାରେ କିଛି ଉନ୍ନତି ହେଲା ନାହିଁ । ସେଇ ଭଲ ପାଇବା ପ୍ରସଙ୍ଗର ପୁନରାବୃତ୍ତି... ଖରାପ ଜିନିଷ ଖାଇବାକୁ ଦେଲେ ମଣିଷପଣିଆ ଅପମାନିତ ହେବ... ଏଇ ଦୋହିରେ ସକାଳ ଜଳଖିଆର ଚମତ୍କାର ବ୍ୟବସ୍ଥାକୁ ମଧ ପଣ୍ଡ କରିଦିଆଯାଏ ।

ଭୋକଶୋଷରେ କାତର ବିଚାରୀ କାଥେରିନ୍ ଭୁଲିଯାଏ ନିଜର ଗର୍ବ ଦମ୍ଭ ଆଉ ଅହଙ୍କାରକୁ । ଲାଜର ମୁଣ୍ଡ ଖାଇ ଚାକରମାନଙ୍କୁ କିଛି ଖାଇବାର ଯୋଗାଇ ଦେବାପାଇଁ ଅନୁରୋଧ କରେ । ମାତ୍ର ସେମାନେ ବା ଦିଅନ୍ତେ କିପରି ! ମୁନିବ ତ କଡ଼ା ଆଦେଶ ଦେଇଛନ୍ତି । ତାଙ୍କୁ ନ ପଚାରି ନବବଧୂକୁ ଯେମିତି ଦାନାଟିଏ ମଧ ଦିଆ ନ ଯାଏ ...

ଅନାହାରରେ ଦୁଇଦିନ ବିତିଯାଏ । କେତେ ସମ୍ଭାଳିବ ଦେହ ?

କାଥେରିନ୍ ମନରେ ଏକା ସାଙ୍ଗରେ ରାଗ ଆଉ ଦୁଃଖ - ଲୋକଟା କ'ଣ ଖାଇବାକୁ ନ ଦେଇ ମୋତେ ମାରିବ ବୋଲି ବିବାହ କରିଛି ! ରାସ୍ତାର ଭିକାରି ଠୁଁ ବି ମୋ ଅବସ୍ଥା ଏଠି ଦୟନୀୟ ହେଲାଣି । ଖିଆ ନାହିଁ, ଶୁଆ ନାହିଁ - କେତେଦିନ ଚାଲିବ ଏ ଫାର୍ସ ! ଆଖି ପତା ଟିକିଏ ମାଡ଼ିପଡ଼ିଲେ, କାନ ପାଖରେ ଯେଉଁ ଷଣ୍ଢଗର୍ଜନ, ସେଥିରେ ନିଦର ସାଧ କାହିଁ ପାଖ ପଶିବ । ଏ ସବୁ କରାଯାଉଛି ଭଲ ପାଇବାର ଦୁହାଇଦେଇ... ଭଲ ପାଇବାର ଯାହା ନମୁନା ଦେଖୁଛି, ସେଥିରେ ଜୀବନଟା ବଞ୍ଚିଲେ ହୁଏ ।

ହଠାତ୍ ହାତର ପ୍ଲେଟରେ ଛୋଟ ମାଂସଖଣ୍ଡିଏ ଥୋଇ ପେଟ୍ରୁସିଓ ଘର ଭିତରକୁ ଆସେ । ହସି ହସି ପଚାରେ ... କେମିତି ଅଛ ରାଣୀ ? ଏଠି ତମର କିଛି ଅସୁବିଧା ହେଉ ନାହିଁ ତ ?

କାଥେରିନ୍ ବା କ'ଣ କହନ୍ତା ? ତା' ମୁହଁ ବିକୃତ ହୋଇଯାଏ । ସେଆଡ଼କୁ ନ ଅନାଇ ପେଟ୍ରୁସିଓ ହାତର ପ୍ଲେଟକୁ ତା' ଆଡ଼କୁ ବଢ଼ାଇ ଦେଉ ଦେଉ କହେ - ଦେଖ ସୁନା, ତମକଥା ଅହରହ ଭାବେ ବୋଲି ନିଜ ହାତରେ ମାଂସ ରାନ୍ଧି ତମକୁ ଖୋଇବାକୁ ଆସିଛି । ଖାଇଦେଖ, ନିଶ୍ଚୟ ଭଲ ଲାଗିବ ।

କ୍ରୋଧ ଆଉ ଦୁଃଖରେ କାଥେରିନ୍ ପାଟିରୁ କଥା ବାହାରୁ ନ ଥାଏ ।

ପେଟ୍ରୁସିଓ ତାକୁ କିଛି କହିବାର ସୁଯୋଗ ନ ଦେଇ କହେ — ଭୋକ ନାହିଁ ବୋଧେ. ମିଛରେ ଏତେ ପରିଶ୍ରମ କଲି... ଏତିକି କହି ଜଣେ ଚାକରକୁ ଡାକି ପ୍ଲେଟଟା ସେଠୁ ନେଇ ଯିବାକୁ କହେ ।

ପେଟରେ ଦୁଇଦିନର କ୍ଷୁଧା । କେତେ ଆଉ ନିଜକୁ ସମ୍ଭାଳିବ ? ରାଗ, ଦୁଃଖ, ଗର୍ବ, ଅହଙ୍କାର ସବୁ ଭୁଲିଯାଇ କାଥେରିନ୍ କହିଉଠେ - ଦୟାକରି ପ୍ଲେଟଟା ଏଠୁ ନିଅ ନାହିଁ ।

ଏଥର ବୋଧହୁଏ ପେଟ୍ରୁସିଓର ମନରେ ଦୟା ଆସିଲା । ସେ ଜଣେ ଚାକରକୁ ଡାକି ସାମାନ୍ୟ କିଛି ଖାଇବାର ଆଣିବାପାଇଁ ଆଦେଶ ଦେଲା -ସାମାନ୍ୟ ଖାଦ୍ୟ,... ଅଥଚ ତାକୁ ପାଇ ମନରେ କି ଉଲ୍ଲାସ । କ'ଣ ଟିକିଏ ଉଠାଇ ମୁହଁରେ ଦେଇଛି କି ନାହିଁ ପୁଣି ବଜ୍ରପାତ ! ଚାକରକୁ କଡ଼ା ନିର୍ଦ୍ଦେଶ -ବାସ୍ ନେଇଯା- ତା'ପରେ ବିମୂଢ଼ କାଥେରିନ୍ ଆଡ଼କୁ ଅନାଇ ସେଇ ହାଡ଼ଥରା ନିର୍ଲଜ ହସ-ଆଉ କଥା-ପ୍ରିୟେ, ଦେଖୁଛି ତମର ମୋଟେ ଭୋକ ନାହିଁ ।

ଠିକ୍ ଅଛି, ତମକୁ ଏଥର ଗୋଟାଏ ଚମତ୍କାର ଜିନିଷ ଦେଖାଉଛି ... ତମ ପାଇଁ ଗୋଟାଏ ଚମତ୍କାର ଟୋପି ଆଉ ପୋଷାକ ପାଇଁ କହିଥିଲି । ଆସ ଦେଖିବା ...

ଟୋପି ଦେଖି କିନ୍ତୁ ରାଗରେ ଗର୍ଜନ କରିଉଠେ ପେଟ୍ରୁସିଓ-ଏଇ ଟୋପି ! ଏଇଟା ଟୋପି ନା ଗୁଆ ଖୋଳ ? ଏଇ ଟୋପି ମଣିଷ ପିନ୍ଧନ୍ତି ?ଯାଅ... ଏଇଟାକୁ ଆଉ ବଡ଼ କରି ଆଣ... ଲାଜ ସରମ ଛାଡ଼ି କାଥେରିନ୍ କହିପକାଏ - ନା, ମୁଁ ଏଇ ଟୋପିଟାହିଁ ନେବି । ଆଜିକାଲି ସମସ୍ତେ ଏଇ ଧରଣର ଟୋପି ପିନ୍ଧୁଛନ୍ତି ।

ପିନ୍ଧୁଛନ୍ତି ଯେ, ସେମାନେ ସବୁ ଭଦ୍ରମହିଳା । ତମେ ଯେତେବେଳେ ସେମିତି ହେଇପାରିବ ସେତେବେଳେ ପିନ୍ଧିବ । ତା' ପୂର୍ବରୁ ନୁହେଁ-ପେଟ୍ରୁସିଓ ଉତ୍ତର ଦିଏ ।

ଅଳ୍ପ ହେଲେ ବି ପେଟକୁ କିଛି ଯାଇଛି । ଶକ୍ତି ତେଣୁ ଫେରିଆସିଛି । କାଥେରିନ୍ ଦୃପ୍ତ କଣ୍ଠରେ କହେ... ମୁଁ ଚାଲେ ମୋ ଖୁସିରେ । ବୁଝିଲ, ତମକୁ ଯଦି ଭଲ ନ ଲାଗୁଛି , ଆଖି ବନ୍ଦ କରିଦିଅ ।

ନ ଶୁଣିଲା ଭଳି ହୋଇ ପେଟ୍ରୁସିଓ କହେ- ତମେ ଠିକ୍ କହିଛ - ଟୋପିଟା ନିହାତି ବାଜେ । ତମ ରୁଚିକୁ ପ୍ରଶଂସା କରିବା କଥା । ତମ ପ୍ରତି ମୋର ଶ୍ରଦ୍ଧା ଆହୁରି ବଢ଼ିଗଲା-ବୁଝିଲ ?

ଶ୍ରଦ୍ଧା କର ବା ନ କର-ଯାଏ ଆସେ ନାହିଁ । ଟୋପି ମୋର ପସନ୍ଦ । ମୁଁ ଏଇଟାକୁ ହିଁ ନେବି । - କାଥେରିନ୍ କହିପକାଏ ।

ପେଟ୍ରୁସିଓ ସେ କଥାରେ କାନ ଦିଏ ନାହିଁ। କହେ - ଏଥର ତେବେ ତମର ବରାଦଦିଆ ପୋଷାକଟା ଦେଖାଯାଉ । ପୋଷାକ ଆସିବା ମାତ୍ରେ ତହିଁରେ ତ୍ରୁଟି ଖୋଜା ଆରମ୍ଭ ହୋଇଯାଏ ।

ଏଇ ଶସ୍ତା କନାର ପୋଷାକ! ଏଇଆକୁ ପିନ୍ଧିବ ମୋ ସ୍ତ୍ରୀ ! ହାୟ ଈଶ୍ୱର, ଆଜିକାଲି ଦର୍ଜିମାନଙ୍କର ଯେ କ'ଣ ହୋଇଛି ! ପେଟ୍ରୁସିଓ କହେ ।

ପୋଷାକଟା ସୁନ୍ଦର ଆଉ ହାଲ ଫେସନର - କାଥେରିନ୍ ବୁଝାଏ ।

କିଏ କାହା କଥା ଶୁଣୁଛି ! ଆରମ୍ଭ ହୋଇଯାଏ ଗର୍ଜନ ତର୍ଜନ । ତେବେ ଗୋପନରେ ସେ ଟୋପି ଆଉ ପୋଷାକବାଲା ଦୁହିଁଙ୍କୁ ସେମାନଙ୍କର ପାରିଶ୍ରମିକ ଦେଇଦିଏ । ନିଜର ରୂଢ଼ ବ୍ୟବହାର ଲାଗି କିଛି ବକ୍‌ସିସ୍ ମଧ୍ୟ ସେମାନଙ୍କର ହାତରେ ଗୁଞ୍ଜିଦିଏ । ସେମାନେ ଖୁସିହୋଇ ବିଦାୟ ନିଅନ୍ତି । ଘଟଣାଗୁଡ଼ିକ ଯେ ପୂର୍ବ ପରିକଳ୍ପିତ ଏବଂ କୃତ୍ରିମ ତାହା ଜଣାଯାଏ ।

ଏଥର କାଥେରିନ୍ ଆଡ଼କୁ ଅନାଇ ମଧୁଝରା କଣ୍ଠରେ ପେଟ୍ରୁସିଓ କହେ - ନାଃ, ନୂଆ ପୋଷାକ ଆଉ ତମ ଭାଗ୍ୟରେ ନାହିଁ । ଯାହା ପିନ୍ଧିଛ, ସେଇଆକୁ ପିନ୍ଧି ତମ ଘରକୁ ଯିବା । ମୁଁ ଚାକରକୁ ଘୋଡ଼ା ପ୍ରସ୍ତୁତ କରିବାକୁ କହୁଛି ।

ଶେଷରେ ଘର ! ସେ ଠିକ୍ ଶୁଣିଛି ତ ! ଏଇ ନରକରୁ ସତେ ମୁକ୍ତି ମିଳିବ ! କାଥେରିନ୍ ଆନନ୍ଦରେ ଆତ୍ମହରା ହୋଇ ସାଙ୍ଗେ ସାଙ୍ଗେ ପ୍ରସ୍ତୁତ ହୋଇଯାଏ ।

ବର୍ତ୍ତମାନ ବାହାରିପଡ଼ିଲେ ଠିକ୍ ଖାଇବା ପୂର୍ବରୁ ସେଠି ପହଞ୍ଚିଯିବା । ବେଳବି ଏମିତି କିଛି ହୋଇ ନାହିଁ, ଖୁବ୍ ବେଶିରେ ସାତଟା ହେବ - ନା କ'ଣ କହୁଚ ? ପେଟ୍ରୁସିଓ କହେ ।

ସକାଳ ସାତଟା ! ଲୋକଟା ପାଗଳ ନା କ'ଣ ? ଦିନ ଆସି ଶେଷହେବାକୁ ବସିଲାଣି । ଇଏ କହୁଛି... କାଥେରିନ୍ ଅବାକ୍ । ତା' ପାଟିରୁ କଥା ବାହାରେ ନାହିଁ । କୌଣସିମତେ ନିଜକୁ ସମ୍ଭାଳି ନେଇ କୁହେ - ବେଳ ଆସି ଦୁଇଟା ହେଲାଣି - ତମ ପାଇଁ ସାତଟା ବାଜିଛି ! ଏବେ ବାହାରିଲେ ରାତିର ଖିଆପିଆ ଆଗରୁ ପହଞ୍ଚହେବ ।

କାଥେରିନ୍ କଥା ଶୁଣି ପେଟ୍ରୁସିଓ ବୁଝିପାରେ - ଏବେବି ତା'ର ସ୍ତ୍ରୀ ଠିକ୍ ବାଟକୁ ଆସି ନାହିଁ । ଯାହା କହିବ, ଯେତେବେଳେ ବିନା ଦ୍ୱିଧାରେ କାଥେରିନ୍ ତା' ମାନିନେବ ସେତେବେଳେ ଯାଇ ସେ ସୁଧୁରିଲାଣି ବୋଲି ଜଣାଯିବ ।

- ଦେଖୁଛି, ମୁଁ ଯାହା କହୁଛି, ସେସବୁରେ ତମର ଆପତ୍ତି । ଠିକ୍ ଅଛି, ଆଜି ଆଉ ଘରକୁ ଯିବା ନାହିଁ । ଘଡ଼ି ଯେଉଁଦିନ ମୋ କଥାରେ ଚାଲିବ, ମୁଁ ସେଇଦିନ ଯାଇ ଭେରୋନାରୁ ପାଦ କାଢ଼ିବି । ତା'ପୂର୍ବରୁ ନୁହେଁ - ପେଟ୍ରୁସିଓ ସ୍ପଷ୍ଟ ଜଣାଇ ଦିଏ ।

କାଥେରିନ୍ ସ୍ତମ୍ଭୀଭୂତ ହୋଇ ଅନାଏ । ତା'ପାଟିରୁ କଥା ବାହାରେ ନାହିଁ ।

ପେଟ୍ରୁସିଓ ତା'ର କଥା ରଖେ । ଘରୁ ଗୋଡ଼ କାଢ଼େ ନାହିଁ । ସ୍ୱାମୀର ଅନୁଗତ ହେବାକୁ ହେଲେ କ'ଣ କରିବାକୁ ହୁଏ, ସେ କଥା କାଥେରିନ୍‌କୁ କାନେ କାନେ ଶିଖାଏ । କିଛି ଦିନ ପରେ ତା'ର ମନେହୁଏ ଯେ କାଥେରିନ୍ ଏଥର ବାଟକୁ ଆସିଗଲାଣି । ଅନେକଟା ସ୍ୱାଭାବିକ ।

ଏଥର ସେ ତାକୁ ନେଇ ବାପ୍ଟିସ୍ତାଙ୍କ ସହିତ ଦେଖା କରିବାକୁ ଚାଲେ ।

କିନ୍ତୁ କିଛି ବାଟ ଯାଇ ହଠାତ୍ ସେ ଘୋଡ଼ାର ମୁହଁଟାକୁ ବୁଲାଇଦିଏ । କହେ, ଦେଖ କେଟ୍ ! ଆକାଶରେ କି ସୁନ୍ଦର ଜହ୍ନ ! ଏହାରି ଆଲୁଅ ଆମକୁ ବାଟ ଦେଖାଇବ ।

କାଥେରିନ୍ ଚକିତ ହୋଇ କହେ - ଜହ୍ନ ! ଜହ୍ନ କାଇଁ ? ଏବେ ତ ଆକାଶରେ ସୂର୍ଯ୍ୟ - ଚାରିଆଡ଼ ଖରାରେ ଝଲମଲ - ଜହ୍ନ ଆଲୁଅ କେଉଁଠି ଦେଖିଲ ?

ପେଟ୍ରୁସିଓ କହେ - ଚାରିଆଡ଼େ ଶୀତଳ ଜ୍ୟୋତ୍ସ୍ନା ...

କାଥେରିନ୍‌ର ଜିଦ୍ ବଢ଼ିଯାଏ । କହେ ... ମୁଁ କହୁଛି ଖରା ...

ପେଟ୍ରୁସିଓ ରାଗିଯାଏ । ଏବେବି କାଥେରିନ୍ କଣ୍ଠରେ ପ୍ରତିବାଦ ! ବିଷଦାନ୍ତ ଭାଙ୍ଗି ନାହିଁ ତେବେ ... ସେ କ୍ରୁଦ୍ଧ ସ୍ୱରରେ କହେ ... ମୁଁ ଯଦି ବାପର ପୁଅ ହୋଇଥିବି, ତା'ହେଲେ ଏ ଚାନ୍ଦ ବୋଲି ପ୍ରମାଣ କରିବି... ନ ହେଲେ ତମ ଘରକୁ ଯିବି ନାହିଁ ... ଏଇଠୁ ଭେରୋନା ଫେରିବି ।

କାଥେରିନ୍ ଭୟ ପାଇଯାଏ । ଏତେ ବାଟ ଆସି ଫେରିଯିବ ! ହେଲା ଏବେ ସେ ଯାହା କହୁଛି, ସେଇଆ ହେଉ । ଚନ୍ଦ୍ର ହେଉ କି ସୂର୍ଯ୍ୟ ହେଉ କ'ଣ ଯାଏ ଆସେ ? ଏହା ଭାବି କହିଉଠେ - ନାଃ ତମେ ଠିକ୍ କଥା କହୁଛ, ମୁଁ ଭଲକରି ଅନାଇ ଦେଖିଲି ଇଏ ଚାନ୍ଦ ।

ସାଙ୍ଗେ ସାଙ୍ଗେ ପେତ୍ରୁସିଓ ନିଜକୁ ସଂଶୋଧନ କରି କହେ - ନା ନା - ତମେ ମିଛ କହୁଛ, ଆକାଶରେ ତ ସୂର୍ଯ୍ୟ - ଚାରିଆଡ଼େ ଖରା ପଡ଼ିଛି ...ତା' ହେଲେ ଏ ସୂର୍ଯ୍ୟ ହିଁ ହେବେ । କାଥେରିନ୍ ସ୍ୱାମୀକୁ ଆଖିବୁଜି ସମର୍ଥନ କରିଯାଏ । ଏଥର ଦୁହେଁ ବାପ୍ତିସ୍ତାଙ୍କ ଘର ଆଡ଼କୁ ଆଗେଇ ଯାଆନ୍ତି । କିଛି ଦୂର ଗଲା ପରେ ପେତ୍ରୁସିଓ ପୁଣି କାଥେରିନ୍‌କୁ ପରୀକ୍ଷା କରିବାକୁ ଚାହେଁ ।

ଜଣେ ବୃଦ୍ଧ ଚାଲିଥିଲେ ପାଡୁୟା ଆଡ଼କୁ । ତାଙ୍କ ନାମ ଭିନସେନସିଓ । ଏ ଦୁହିଁଙ୍କ ସହିତ ତାଙ୍କର ଆଳାପ ହେଲା । ଜଣାଗଲା ତାଙ୍କ ପୁଅ ଲୁସେନସିଓ ଅନେକ ଦିନ ହେଲା ବ୍ୟବସାୟ ଉପଲକ୍ଷେ ପାଡୁୟା ଆସିଛି । ତା'ପରେ ତା'ର କୌଣସି ଖବର ନାହିଁ । ତାକୁ ଦେଖିବେ ଆଉ ବ୍ୟବସାୟର ଅବସ୍ଥା ଜାଣିବେ, ଏଇଥିପାଇଁ ତାଙ୍କର ଆସିବା କଥା ...

ଭଦ୍ରଲୋକଙ୍କ ବୟସ ହେଲାଣି, ପାଚିଲା ବାଳ ଧପ୍ ଧପ୍ କରୁଛି । ମୁହଁସାରା ବୟସର ଛାପ, ଚମଡ଼ା ସବୁ ଝୁଲି ପଡ଼ିଲାଣି ...

ତାଙ୍କୁ ଦେଖି ପେତ୍ରୁସିଓ ମୁଣ୍ଡରେ ଦୁଷ୍ଟ ବୁଦ୍ଧି ଖେଳିଯାଏ । ଦୁଇପାଦ ଆଗେଇଯାଇ ତାଙ୍କୁ କହେ, ଶୁଭଦିନ ସୁନ୍ଦରୀ । କୁଆଡ଼େ ଚାଲିଛନ୍ତି ?

ସମ୍ବୋଧନ ଶୁଣି ଭିନସେନସିଓ ତ ଏକେବାରେ ହତବାକ୍! ସେ- ପୁଣି ସୁନ୍ଦରୀ ! ଲୋକଟାର ମୁଣ୍ଡ ନିଶ୍ଚୟ ଖରାପ ।

କାଥେରିନ୍ ଆଡ଼କୁ ଅନାଇ ପେତ୍ରୁସିଓ କହିଚାଲେ - ଏମିତି ସୁନ୍ଦରୀ ତମେ ଏହା ପୂର୍ବରୁ କେବେ ଦେଖିଛ କେଟ୍ ? ତାଙ୍କ ଦୁଇଗଣ୍ଡରେ ଗୋଲାପର ଆଭା , ଦୁଇ ଆଖି ଯେମିତି ମେଘମୁକ୍ତ ଆକାଶର ଦୁଇ ଉଜ୍ଜ୍ୱଳ ତାରକା- ତମେ ତାଙ୍କ ସହିତ ଆଳାପ କର -

କାଥେରିନ୍‌ର ଏହା ମଧ୍ୟରେ ଘଟ ପରିବର୍ତ୍ତନ ହୋଇଯାଇଛି । ସ୍ୱାମୀଙ୍କ କଥାରେ ସେ ବିନା ଦ୍ୱିଧାରେ ବୃଦ୍ଧଙ୍କ ପାଖକୁ ଯାଇ ସେ କହେ - ସୁପ୍ରଭାତ କୁମାରୀ, ତମେ କି ସୁନ୍ଦରୀ ! କେଉଁଠୁ ଆସିଲ ? କୁଆଡ଼େ ବା ଯାଉଛ ? ତମର ବାପା-ମା ଭାଗ୍ୟବାନ୍ ।

ଏଥର ଅବାକ୍ ହେବାର ପାଳି ଭିନସେନସିଓଙ୍କର । ଏ ଝିଅଟି ବି କ'ଣ ଦେଖିପାରୁ ନାହିଁ ? କିମ୍ବା ସାଥିଭଳି ତା'ର ମଧ ମୁଣ୍ଡ ଗୋଳମାଳ ! ହଠାତ୍ ପେତ୍ରୁସିଓ ଚିତ୍କାର କରି ଉଠେ । କହେ, କେଟ୍, ତମେ କାହାକୁ କ'ଣ କହୁଛ ? ତମ ମୁଣ୍ଡ ଠିକ୍ ଅଛି ତ ? ଇଏ ତ କୁମାରୀ ନୁହଁ -ଜଣେ ବୟସ୍କ ଭଦ୍ରଲୋକ ।

କାଥେରିନ୍ ବୃଦ୍ଧଙ୍କୁ କହେ - "ଅନୁଗ୍ରହ କରି ମୋତେ କ୍ଷମା କରନ୍ତୁ । ମୁଁ ଅନ୍ୟାୟ କରିଛି । ଖରାରେ ମୋ ଆଖି ଝଲସି ଯାଇଥିଲା - ସବୁ ଦିଶୁଥିଲା ଝାପ୍‌ସା, ସ୍ୱାମୀଙ୍କ କଥାରେ ମୋର ଭୁଲ ମୁଁ ବୁଝିପାରିଛି । ଆପଣ ଜଣେ ବୟସ୍କ ଭଦ୍ରଲୋକ । "

ପେଟ୍ରୁସିଓ ଗୁହାରି ଜଣାଏ - ଦୟାକରି ମୋ ସ୍ତ୍ରୀଙ୍କୁ କ୍ଷମା ଦିଅନ୍ତୁ । ଏଥର କହନ୍ତୁ ଆପଣଙ୍କର ଗନ୍ତବ୍ୟ କୁଆଡ଼େ ? ଆମ ଆଡ଼େ ଯଦି ଆସୁଥାଆନ୍ତି, ତେବେ ଆସନ୍ତୁ,ସାଙ୍ଗହୋଇ ଯିବା ... ଆପଣଙ୍କୁ ସାଥି ରୂପରେ ପାଇଲେ ଆମେ ଖୁସି ହେବୁ ।

ଏ ଦୁହିଁଙ୍କ କଥା ଶୁଣି ତ ଭିନସେନସିଓ ପୂରା ଅବାକ୍ । ତଥାପି ସେ ସଂଯତ କଣ୍ଠରେ କହନ୍ତି ମୁଁ ଭିନସେନସିଓ -ଘର ପିସା ନଗରରେ । ମୋ ପୁଅର ବାହାଘର ଠିକ୍ ହୋଇଛି ପାଡୁଆରେ । ପୁଅ ଠିକ୍ କରିଛି ସିନର ବାପ୍ତିସ୍ତାଙ୍କ ସାନଝିଅ ବିୟେଙ୍କାକୁ ବାହାହେବ । ସେଇ ବାହାଘର ଦେଖିବାକୁ ଯାଉଛି ।

ପେଟ୍ରୁସିଓ କହେ ... ମୋ ସ୍ତ୍ରୀ କାଥେରିନ୍ ବିୟେଙ୍କାର ନିଜ ବଡ଼ଭଉଣୀ । ଆମେ ବି ସିନର ବାପ୍ତିସ୍ତାଙ୍କ ଘରକୁ ଯାଉଛୁ । ଆସନ୍ତୁ , ଏକା ସାଙ୍ଗରେ ଯିବା ...

ତିନିଜଣଯାକ ପାଡୁଆ ନଗରୀ ଆଡ଼େ ଆଗେଇ ଚାଲନ୍ତି ।

॥ ୫ ॥

ଅଥ ପାଡୁଆ ସମ୍ବାଦ ।

ବଡ଼ଝିଅ କାଥେରିନ୍‌ର ବିବାହ ହୋଇଯିବା ପରେ ବାପ୍ତିସ୍ତା ଶାନ୍ତିର ଗୋଟିଏ ବଡ଼ ନିଃଶ୍ୱାସ ପକାଇଲେ । ଏଥର ସାନଝିଅ ବିୟେଙ୍କାର ବିବାହରେ ବାଧା ନାହିଁ । ବିବାହ ଦେବେ ଯେ, ପାତ୍ର କିଏ ? ଅନେକ ତରୁଣ ତ ବିୟେଙ୍କାର ପାଣିପ୍ରାର୍ଥୀ । ତା'ଭିତରେ ଅଛନ୍ତି ଗ୍ରେମିଓ, ହର୍ଟେନସିଓ ଆଉ ଲୁସେନସିଓ । ଅବଶ୍ୟ ସେତେ ଦିନ ଯାଏ ଲୁସେନସିଓ ଛଦ୍ମ-ଶିକ୍ଷକ ସାଜି ବିୟେଙ୍କାର ସାହିତ୍ୟ ଶିକ୍ଷକ ହୋଇଥାଏ । ବାପ୍ତିସ୍ତା ଯାହାକୁ ଲୁସେନସିଓ ବୋଲି ଜାଣନ୍ତି, ସେ ହେଉଛି ପ୍ରକୃତରେ ତ୍ରନିଓ ।

ଏ ଅବସ୍ଥାରେ ଝିଅ ପାଇଁ ଯୋଗ୍ୟ ପାତ୍ର ବାଛିବା ପ୍ରକୃତରେ କଷ୍ଟକର । ଅନ୍ୟ କିଏ ହୋଇଥିଲେ କ'ଣ କରିଥାଆନ୍ତା ଜଣା ନାହିଁ । ତେବେ ବାପ୍ତିସା, ବ୍ୟାପାରଟାକୁ ବେଶ୍ ସହଜ କରିଦେଲେ । ପ୍ରାର୍ଥୀମାନଙ୍କୁ ଡାକି ସେ ସ୍ପଷ୍ଟ କରିଦେଲେ-ଦେଖ ବାବୁମାନେ, ସାନଝିଅକୁ ମୁଁ ଯୌତୁକ ଦେବି କୋଡ଼ିଏ ହଜାର କ୍ରାଉନ୍ । ମୋ ମୃତ୍ୟୁ ପରେ ଏ ସମ୍ପତ୍ତିର ଅର୍ଦ୍ଧେକ ବି ତା'ର । ଏବେ କହ, ତମେମାନେ କିଏ କ'ଣ ଦେଇପାରିବ । ସ୍ୱାମୀର ଯଦି ଆଗରୁ ମୃତ୍ୟୁ ହୋଇଯାଏ, ତେବେ ଝିଅ କ'ଣ ପାଇବ ତା' ମୋର ଜାଣିବା ଦରକାର । ଯିଏ ବେଶି ଦେଇପାରିବ , ତା'ରି ସାଙ୍ଗରେ ମୁଁ ଝିଅର ବିବାହ ଦେବି । ଏଇ ହେଲା ମୋର ଶେଷ କଥା ।

ଗ୍ରେମିଓ ତା'ର ସମ୍ପତ୍ତିର ତାଲିକା ଦିଏ । ଦେଖାଯାଏ, ତା'ଅପେକ୍ଷା ହର୍ଟେନସିଓର ସମ୍ପତ୍ତିର ପରିମାଣ ଅଧିକ । ପୁଣି ବିୟେଙ୍କା ତୁଳନାରେ ଗ୍ରେମିଓର ବୟସଟା ବି ଅଧିକ । ତେଣୁ ସେ ବାଧ ହୋଇ ପ୍ରତିଯୋଗିତାରୁ ବାହାରିଗଲା । ବାକି ରହିଲେ ହର୍ଟେନସିଓ ଆଉ ଲୁସେନସିଓ ।

ଲୁସେନସିଓ ହର୍ଟେନସିଓଠାରୁ ଅଧିକ ବିତ୍ତଶାଳୀ । ତେବେ ତା'ର ବାପା ଭିନସେନସିଓ ଏବେ ବି ଜୀବିତ । ଭବିଷ୍ୟତ୍‌ରେ ଲୁସେନସିଓ ତାଙ୍କର ସବୁ ସମ୍ପତ୍ତି ପାଇବ ଅବଶ୍ୟ । ତେବେ ବର୍ତ୍ତମାନ ତା'ର କାଣି କଉଡ଼ିଟିଏ ବି ନାହିଁ ।

ସବୁ କଥା ଶୁଣି ବାପ୍ତିସ୍ତା ଲୁସେନସିଓବେଶୀ ତ୍ରନିଓକୁ କହିଲେ , ମୁଁ ତମ ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଚାହେଁ । ସେ ଯଦି ଏଠାକୁ ଆସି ତାଙ୍କର ସମସ୍ତ ସମ୍ପତ୍ତି ତୁମକୁ କିମ୍ବା ତମର ଅକାଳ ମୃତ୍ୟୁ ହୋଇଗଲେ ମୋ ଝିଅକୁ ଦେବାକୁ ରାଜି ହୁଅନ୍ତି, ତେବେ ତମ ସହିତ ବିୟେଙ୍କାର ବିବାହ ଦେବାରେ ମୋର କୌଣସି ଆପତ୍ତି ନାହିଁ ।

ବାପା ! ଏଥର ଲୁସେନସିଓବେଶୀ ତ୍ରନିଓ ଘାବରେଇ ଗଲା । ମୁନିବଙ୍କର ବାପା ତ ସୁଦୂର ପିସା ନଗରୀରେ । ତାଙ୍କ ପାଖକୁ ଯାଇ ସବୁ ସତ କଥା କହିବା ଭଳି ସାହସ ନାହିଁ ତ୍ରନିଓର । ସେ ଯଦିବା ଏଠାକୁ ଆସନ୍ତି, ତେବେ ତ ତ୍ରନିଓ ଧରା ପଡ଼ିଯିବ । ସବୁକଥା ଜାଣି ସିନର ହୁଏତ ରାଗିଯାଇ ଲୁସେନସିଓ ସାଙ୍ଗରେ ଝିଅର ବିବାହ ନ ଦେଇପାରନ୍ତି । ସେମାନଙ୍କର ସବୁ କଳ୍ପନା ପାଣି ଫାଟି ଯିବ । ତା'ହେଲେ ଉପାୟ ?

ହଠାତ୍ ବିଜୁଳି ଚମକ ଭଳି ଗୋଟାଏ ଉପାୟ ତ୍ରନିଓର ମୁଣ୍ଡରେ ଖେଳିଯାଏ । ଚିନ୍ତା କରିବାର କ'ଣ ଅଛି ? କାହାକୁ ଭିନସେନସିଓ ସଜାଇ ଏଠାକୁ ନେଇଆସିଲେ କାମ ଶେଷ । ସିନର ତ ତାଙ୍କୁ ଦେଖି ନାହାନ୍ତି । ଅସୁବିଧା ହେବ ନାହିଁ ।

ସିନରଙ୍କ ପାଖକୁ ଭିନସେନସିଓ ଆସିବେ ନିଶ୍ଚୟ । ତେବେ ସେ ହେବେ ନକଲି । ଏଥିରେ ଟିକିଏ ଅଡୁଆ ଅଛି ଅବଶ୍ୟ । ତ୍ରନିଓ ପାଡୁୟା ସହରରେ ନୂଆ । ଏଠାର ଲୋକଙ୍କ ସାଙ୍ଗରେ ବିଶେଷ ଜଣାଶୁଣା ନାହିଁ । କିଛି ସମୟ ପାଇଁ ଭିନସେନସିଓ ସାଜିବା ଭଳି ଲୋକଟାଏ ସେ କେଉଁଠୁ ଯୋଗାଡ଼ କରିବ ? କଥାଟା ଚିନ୍ତା କରିବାଭଳି ।

ସବୁ ସମସ୍ୟାର ସମାଧାନ ଥାଏ । ଲୋକ ଯୋଗାଡ଼ କରି ଆଣିଲା ବିୟୋନ୍ଦେଲୋ । ଲୋକକୁ ତ୍ରନିଓ ପାଖକୁ ନେଇ ଆସିଲା । ଦେଖାଗଲା, ଭିନସେନସିଓଙ୍କ ସହିତ ଏଇ ବୁଢ଼ାଟିର କିଛି ମେଳ ବି ଅଛି ।

ତ୍ରନିଓ ତାଙ୍କୁ ସ୍ୱାଗତ ଜଣାଇ କହେ, ଆସନ୍ତୁ , ଆସିବା ହଉ ସିନର, ଘର କେଉଁଠି ? ଘର ମୋର ମାଣ୍ଟୁଆରେ । ରୋମ ପର୍ଯ୍ୟନ୍ତ ଯିବାର ଇଚ୍ଛା । ତା'ପରେ ଈଶ୍ୱର ଚାହିଁଲେ ତ୍ରିପଲି ପର୍ଯ୍ୟନ୍ତ ବି ଯାଇପାରେ- ବୃଦ୍ଧ କହନ୍ତି ।

ତ୍ରନିଓ କହେ- ମାଣ୍ଟୁଆର ଲୋକ ହୋଇ ଆପଣ ପାଡୁୟା ଆସିଛନ୍ତି ! ଆଶ୍ଚର୍ଯ୍ୟ !

-କାହିଁକି ? ଅସୁବିଧା କ'ଣ ? ବୃଦ୍ଧ ବିଚଳିତ ହୋଇ ପଡ଼ନ୍ତି ।

- ଆପଣଙ୍କର କ'ଣ ପ୍ରାଣ ଭୟ ନାହିଁ ? ଦେଖୁଛି, କିଛି ଖବର ରଖୁ ନାହାନ୍ତି । ଦୁଇ ରାଜ୍ୟ ଭିତରେ ଏବେ ଭୟଙ୍କର ଗଣ୍ଡଗୋଳ ଚାଲିଛି । ମାଣ୍ଟୁଆ ଲୋକ ପାଡୁୟାରେ ପାଦ ଦେଲେ ତା'ର ନିଶ୍ଚିତ ମୃତ୍ୟୁ -ତ୍ରନିଓ କହିଯାଏ ।

ବୃଦ୍ଧ ଡରିଯାଇ କହନ୍ତି-ଏବେ ଉପାୟ କ'ଣ ?

-ଉପାୟ ଅବଶ୍ୟ ଗୋଟାଏ ଅଛି । ତ୍ରନିଓ ଚିନ୍ତା କରି କହେ । ଅଧୈର୍ଯ୍ୟ ହୋଇ ବୃଦ୍ଧ ସେଇ କଥା ଜାଣିବାକୁ ଚାହାନ୍ତି । ତାଙ୍କ କଥାରେ ସିଧା ଉତ୍ତର ନ ଦେଇ ତ୍ରନିଓ ପଚାରେ, ଆପଣ କ'ଣ କେବେ ପିସା ଯାଇଛନ୍ତି ?

-ଯାଇଛି । ଚମତ୍କାର ସହର । ବହୁ ଖାନ୍‌ଦାନ୍ ପରିବାର ସେଠ଼ାରେ ରହନ୍ତି ।

- ସିନର ଭିନସେନସିଓଙ୍କୁ ଚିହ୍ନନ୍ତି ?

- ଚିହ୍ନି ନାହିଁ ଅବଶ୍ୟ, ତେବେ ନାମ ଶୁଣିଛି । ସେ କୁଆଡ଼େ ଜଣେ ଧନକୁବେର- ବୃଦ୍ଧ କହନ୍ତି ।

ତ୍ରନିଓ କହେ-ସେ ହେଉଛନ୍ତି ମୋର ବାପା । ତାଙ୍କ ମୁହଁ ସାଙ୍ଗରେ ଆପଣଙ୍କ ମୁହଁର ବେଶ୍ ମେଳ ଅଛି , ଆପଣ ମୋର ବାପାଙ୍କ ନାମରେ ଏଇଠି ମୋ ପାଖରେ ରହିଯାଆନ୍ତୁ । ତେବେ ଯାଇ ଆପଣଙ୍କୁ ମାଣ୍ଟୁଆର ଲୋକ କେହି କେହି ଚିହ୍ନି ପାରିବେ ନାହିଁ ! ପ୍ରସ୍ତାବରେ ରାଜି ଅଛନ୍ତି ତ କହନ୍ତୁ । ସ୍ୱସ୍ତିର ନିଃଶ୍ୱାସ ପକାଇ ବୃଦ୍ଧ କହନ୍ତି - ରାଜି ରାଜି । ଏଥର ତେବେ ଆଉ ଗୋଟାଏ କଥା ଶୁଣନ୍ତୁ । ମୁଁ ସିନର ବାପ୍ଟିସ୍ତାଙ୍କ ଝିଅକୁ ବାହା ହେବି ବୋଲି ଠିକ୍ କରିଛି । ଯୌତୁକ ବିଷୟରେ ସିନର ବାପାଙ୍କ ସାଙ୍ଗରେ ଆଲୋଚ଼ନା କରିବାକୁ ଚାହାନ୍ତି । ଖବର ପଠାଇ ତାଙ୍କୁ ଏଠାକୁ ଡକାଇବା ସମୟସାପେକ୍ଷ । ଆପଣ ମୋ ସାଙ୍ଗରେ ଯାଇ ଯୌତୁକ କଥାଟା ନିଷ୍ପତ୍ତି କରି ଆସିବେ । ସିନର ବାପାଙ୍କୁ ଦେଖି ନାହାନ୍ତି । ଆପଣ ମୋ ବାପା ହୋଇଗଲେ ସେ ମୋଟେ ଧରିପାରିବେ ନାହିଁ ।

ବୃଦ୍ଧ କହନ୍ତି-ଏ ବ୍ୟାପାରରେ କିଛି ଅସୁବିଧା ଅଛି ।

- ଅସୁବିଧାଟା କ'ଣ ?

- ଧର ସିନର ଯଦି ମୋତେ ଚିହ୍ନିପକାନ୍ତି ?

-ସିଏ ଆପଣଙ୍କୁ ଚିହ୍ନନ୍ତି ନା କ'ଣ ?

- ତିରିଶ ବର୍ଷ ପୂର୍ବେ ଜେନୋୟାରେ ଆମର ପରିଚୟ ହୋଇଥିଲା । ଆମେ ଦୁହେଁ ଗୋଟିଏ ହୋଟେଲରେ ରହୁଥିଲୁ । ହୋଟେଲ ରହଁୟା ପେଗାସାସ୍ ।

-ହେଲା ଅବା । ତା' ପରେ ତ ଆଉ ଆପଣମାନଙ୍କର ଦେଖା ହୋଇ ନାହିଁ ।

- ନା, ତା' ହୋଇ ନାହିଁ ।

- ତା'ହେଲେ ଚିନ୍ତା କରିବାର କିଛି ନାହିଁ । ତିରିଶ ବର୍ଷ ତଳର କଥା । ତାଙ୍କର ନିଶ୍ଚୟ ମନେ ନାହିଁ । ଏ ଭିତରେ ଆପଣଙ୍କ ଚେହେରାରେ କେତେ ପରିବର୍ତ୍ତନ ହୋଇ ଗଲାଣି । ସେତେବେଳେ ଆପଣ ଯୁବକ— ଆଉ ଏବେ ବୃଦ୍ଧ । ନିର୍ଭୟରେ ତୋର ମୋ ବାପା ସାଜି ସିନରଙ୍କ ପାଖକୁ ଚାଲନ୍ତୁ - ତ୍ରନିଓ କହେ । ଆଲୋଚନା ଆରମ୍ଭ ହୁଏ ତ୍ରନିଓର ଘରେ । ବରପକ୍ଷ ଆଉ କନ୍ୟାପକ୍ଷ କିଏ କ'ଣ ଯୌତୁକ ଦେବେ ସେ ବିଷୟରେ କଥାବାର୍ତ୍ତା ଚାଲିଛି । ନକଲି ଭିନସେନସିଓ ଉଦାର ଭାବେ ପୁତ୍ରବଧୂକୁ ଅନେକ କିଛି ଦେବାର ପ୍ରତିଶ୍ରୁତି ଦେଇ ଯାଉଛନ୍ତି । ବାପ୍ତିସ୍ତା ମହା ଖୁସି ।

ଏତିକିବେଳେ ସେଠି ଆସି ପହଞ୍ଚିଯାଆନ୍ତି ପ୍ରକୃତ ଭିନସେନସିଓ । ପେତ୍ରୁସିଓ ଆଉ କାଥେରିନ୍ ତାଙ୍କଠାରୁ ବିଦାୟ ନେଇ ବାପ୍ତିସ୍ତାଙ୍କ ଘରକୁ ଚାଲି ଯାଇଥାଆନ୍ତି । ଏଥର ଅସଲ ଆଉ ନକଲ ଭିନସେନସିଓଙ୍କ ଭିତରେ ତୁମୁଳ ତର୍କ ଆରମ୍ଭ ହୋଇଯାଏ । ଦୁହେଁ ନିଜକୁ ପ୍ରକୃତ ଭିନସେନସିଓ ବୋଲି ଦାବି କରନ୍ତି ।

ପ୍ରକୃତ ଭିନସେନସିଓଙ୍କୁ ଠକ ଆଖ୍ୟା ଦେଇ ଯେତେବେଳେ ହାଜତରେ ପୂରାଇବାର ବ୍ୟବସ୍ଥା ପ୍ରାୟ ପକ୍କା ହୋଇ ଆସିଥିଲା, ସେତେବେଳେ ସେଠାକୁ ଆସନ୍ତି ପ୍ରକୃତ ଲୁସେନସିଓ ଆଉ ବିୟେଙ୍କା, ଟିକିଏ ଆଗରୁ ଗିର୍ଜାରେ ସେମାନଙ୍କର ବିବାହ ହୋଇଯାଇଛି । ବାପାଙ୍କୁ ଦେଖି ଲୁସେନସିଓ ତାଙ୍କ ଆଗରେ ନତଜାନୁ ହୋଇପଡ଼ି କହେ- ତମେ ମୋତେ କ୍ଷମା କର ବାପା, ଆଶୀର୍ବାଦ କର ।

ଭିନସେନସିଓ ଆଶୀର୍ବାଦ କରନ୍ତି । ଭଲରେ ଥାଅ, ସୁଖରେ ଥାଅ ।

ବିୟେଙ୍କା ବି ବାପ୍ତିସ୍ତାଙ୍କୁ କ୍ଷମା ମାଗେ । ଆଶୀର୍ବାଦ ମାଗେ ।

ବାପ୍ତିସ୍ତା କହନ୍ତି-ଏ ତୁ କାହାକୁ ବିବାହ କଲୁ ମାଆ ? ଲୁସେନସିଓ କାହିଁ ? ଲୁସେନସିଓ ଆଗକୁ ଆସେ । କହେ ମୁଁ ହେଉଛି ପ୍ରକୃତ ଲୁସେନସିଓ । ଏ ଲୁସେନସିଓ ନକଲି । ମୋରି ପରିଚାରକ । ମୋରି କଥାରେ ସେ ଲୁସେନସିଓ ସାଜିଥିଲା । ମୁଁ ,ମୁଁ ତ ବିୟେଙ୍କାର ସାହିତ୍ୟ ଶିକ୍ଷକ କାମ୍ବିଓ - ଆପଣ ଜାଣନ୍ତି ।

ତ୍ରନିଓ ସବୁ କଥା ଖୋଲି କହିଯାଏ । ଘଟଣାଟା ଏଥର ସ୍ପଷ୍ଟ ହୁଏ ।

॥ ୬ ॥

ବିୟେଙ୍କା ସହିତ ଲୁସେନସିଓର ବିବାହ ତ ହୋଇଗଲା । ଏଥର ସେଇ ଉପଲକ୍ଷେ ଭୋଜିଟାଏ ଦେବାକୁ ହୁଏ । ସେଇ ବ୍ୟବସ୍ଥା କରାଯାଏ ବାପ୍ଟିସ୍ତାଙ୍କ ଘରେ । ସେଠି ଅଛନ୍ତି ବାପ୍ଟିସ୍ତା ଭିନସେନସିଓ ପେଟ୍ରୁସିଓ, କାଥେରିନ୍,ଲୁସେନସିଓ , ବିୟେଙ୍କା, ଗ୍ରେମିଓ, ମାଣ୍ଟୁଆର ସେଇ ବୃଦ୍ଧ, ବନ୍ଧୁ ଆତ୍ମୀୟସ୍ୱଜନ, ବନ୍ଧୁବାନ୍ଧବ । ହର୍ଟେନସିଓ ବିୟେଙ୍କାକୁ ବିବାହ କରି ନ ପାରି ଜଣେ ଧନୀ ବିଧବାଙ୍କୁ ବାହା ହୋଇ ପଡ଼ିଛି । ସେ ବି ଅଛି ସସ୍ତ୍ରୀକ । ଭୋଜି ଚାଲିଛି ।

ଖିଆପିଆ ସାଙ୍ଗରେ ନାନା ହାସପରିହାସ ବି ଚାଲିଛି । ପେଟ୍ରୁସିଓର ପତ୍ନୀ ଭାଗ୍ୟ ଯେ ନିତାନ୍ତ ମନ୍ଦ, ଏ ଗୋଟିଏ ବିଷୟରେ କାହାରି ଅମତ ନାହିଁ । ଏଭଳି ଏକ ଦୁର୍ଦ୍ଦାନ୍ତ ସ୍ତ୍ରୀ ନେଇ କେମିତି କଟିବ ତା'ର ଜୀବନ ?

ଭୋଜିସଭାରେ ତିନୋଟି ନବବଧୂ ଉପସ୍ଥିତ । କାଥେରିନ୍ ବିୟେଙ୍କା ଆଉ ହର୍ଟେନସିଓର ପତ୍ନୀ । ଏମାନଙ୍କ ଭିତରେ କାଥେରିନ୍ ଯେ ସବୁଠୁ ନିକୃଷ୍ଟ -ଏ କଥାରେ ସମସ୍ତେ ଏକମତ ହୋଇଯାଆନ୍ତି ।

ପେଟ୍ରୁସିଓ ଧୈର୍ଯ୍ୟର ସହିତ ସବୁ ଶୁଣୁଥାଏ । କିଛି ନ କହି ଚୁପ୍‌ଚାପ୍ ଖାଇ ଚାଲିଥାଏ । କିଛି ସମୟ ପରେ ଭୋଜି ଶେଷ ହୋଇଯାଏ । ଅଭ୍ୟାଗତମାନେ ବିଦାୟ ନେବାକୁ ଆରମ୍ଭ କରନ୍ତି । ମହିଳାମାନେ ଗପ କରିବାପାଇଁ ଏକାଠି ହୁଅନ୍ତି ଗୋଟିଏ ଘରେ ।

ସେମାନେ ଚାଲିଯିବାରୁ ପୁରୁଷମାନଙ୍କ ମୁହଁରୁ ଲଗାମ ଖସିପଡ଼େ । ଏମିତିକି ବୟସ ଭୁଲି ବାପ୍ଟିସ୍ତା ମଧ୍ୟ ତରୁଣମାନଙ୍କ ସହିତ ଥଟ୍ଟା ପରିହାସରେ ମାତି ଉଠନ୍ତି । ପେଟ୍ରୁସିଓ ଆଡ଼କୁ ଅନାଇ ହଠାତ୍ କହି ବସନ୍ତି— ବତ୍ସ ପେଟ୍ରୁସିଓ ! ତମେ ପ୍ରକୃତରେ ଠକିଯାଇଛ । ତମ କପାଳଟା ଖରାପ ।

ଏଥର ପେଟ୍ରୁସିଓ ମୁହଁ ଖୋଲେ । କହେ-ଆପଣମାନେ ଭୁଲ କରୁଛନ୍ତି । ମୋ ସ୍ତ୍ରୀ କାଥେରିନ୍ ଭଳି ଆଉ କେହି ନାହାନ୍ତି । ସେ କେବଳ ସୁନ୍ଦରୀ ନୁହେଁ, ଶାନ୍ତ, ଭଦ୍ର ଆଉ ବୁଦ୍ଧିମତୀ ମଧ୍ୟ । ତା' ପାଖରେ ମୋ ପାଟିର କଥାହିଁ ହେଉଛି ଈଶ୍ୱରଙ୍କର ଆଦେଶ । ମୋ ଭଳି ସୌଭାଗ୍ୟ କାହାରି ନାହିଁ । ତା' କଥା ଶୁଣି ସମସ୍ତେ ହସିଉଠନ୍ତି । ଉତ୍ତେଜିତ ପେଟ୍ରୁସିଓ କହେ-ବିଶ୍ୱାସ ହେଉ ନାହିଁ ନା, ଭାବୁଛନ୍ତି, ମୁଁ ମିଛ କହୁଚି । ବେଶ୍,ପରୀକ୍ଷା ହୋଇଯାଉ । ଆସନ୍ତୁ, ବାଜି ପକାଇବା ।

ସମସ୍ତେ ପଚାରନ୍ତି-କି ପ୍ରକାର ବାଜି ?

- ଆମେ ତିନିଜଣଯାକ ନିଜ ନିଜର ସ୍ତ୍ରୀଙ୍କୁ ଏଠାକୁ ଡାକିବା । ସ୍ୱାମୀ ଆଦେଶରେ ଯାହାର ସ୍ତ୍ରୀ ଏଠାକୁ ପ୍ରଥମେ ଆସିବେ, ସେହିଁ ବାଜି ଜିତିବ । କ'ଣ ରାଜି ? ପେଟ୍ରୁସିଓ ପଚାରେ ।

ଅନ୍ୟ ଦୁଇଜଣ ଏଥିରେ ରାଜି ହୋଇଯାଆନ୍ତି । ବାଜିରେ ପେଟ୍ରୁସିଓ ନିଶ୍ଚୟ ହାରିବ ଏଥିରେ କାହାରି ସନ୍ଦେହ ନ ଥାଏ । କାଥେରିନ୍‌ର ସ୍ୱଭାବ ସମସ୍ତଙ୍କୁ ଜଣା । କାଥେରିନ୍ ହୁଏତ ସ୍ୱାମୀର ଆହ୍ୱାନକୁ କାନରେ ପକାଇବ ନାହିଁ ।

ହର୍ଟେନସିଓ ବାଜିର ଅର୍ଥ ପରିମାଣଟା ଜାଣିବାକୁ ଚାହେଁ । ଲୁସେନସିଓ ଜଣାଏ, କୋଡ଼ିଏ କ୍ରାଉନ ଏଥିପାଇଁ ଯଥେଷ୍ଟ ହେବ । ତେବେ ପେଟ୍ରୁସିଓ ଏଇ ସାମାନ୍ୟ ଅର୍ଥ ବିନିମୟରେ ନିଜ ସ୍ତ୍ରୀର ସମ୍ମାନକୁ ବାଜି ଲଗାଇବାକୁ ରାଜି ହୁଏ ନାହିଁ । ଶେଷରେ ବାଜିର ପରିମାଣ ସ୍ଥିର ହୁଏ ଶହେ କ୍ରାଉନ୍ ।

ପେଟ୍ରୁସିଓ ରାଜି ହୋଇଯାଏ ।

ହର୍ଟେନସିଓ ପଚାରେ-ଏଥର ତେବେ ପ୍ରଥମେ କିଏ ଆରମ୍ଭ କରିବ ?

ଲୁସେନସିଓ କହେ-ମୁଁ ଡାକୁଛି । ବିୟୋନ୍ଦେଲୋ, ତୁ ଭିତରକୁ ଯାଇ ତୋ'ର ମାଲିକାଣୀଙ୍କୁ ମୁଁ ଡାକୁଛି ବୋଲି କହ । ସେ ଯେମିତି ସାଙ୍ଗେ ସାଙ୍ଗେ ଏଠାକୁ ଆସନ୍ତି । ବିୟୋନ୍ଦେଲୋ ଭିତରକୁ ଯାଇ ପ୍ରାୟ ସାଙ୍ଗେ ସାଙ୍ଗେ ଫେରିଆସେ । ଲୁସେନସିଓ ପଚାରେ - କଥା କ'ଣ ? ତୁ ଏକା ଆସିଲୁ ?

ବିୟୋନ୍ଦେଲୋ ଜଣାଏ - ହଜୁର ,ମାଲିକାଣୀ କହିଲେ ଯେ, ସେ ଏବେ ବହୁତ ବ୍ୟସ୍ତ । ଆସିପାରିବେ ନାହିଁ ।

ଲୁସେନସିଓର ମୁହଁ ଅପମାନରେ କଳା ପଡ଼ିଯାଏ ।

ଏଥର ହର୍ଟେନସିଓର ପାଳି । ତା'ର କଥାରେ ଚାକର ଯାଏ ଏବଂ ଯଥାରୀତି ଏକୁଟିଆ ଫେରିଆସେ । ଜଣାଏ-ମାଲିକାଣୀ ବହୁତ ବ୍ୟସ୍ତ । ଆସିପାରିବେ ନାହିଁ ମୋଟେ । ସେମିତି ଦରକାରୀ କଥା ଥିଲେ ଆପଣ ନିଜେ ତାଙ୍କୁ କହିଆସନ୍ତୁ ବୋଲି କହିଛନ୍ତି ।

ହର୍ଟେନସିଓ ଲାଜରେ ମୁଣ୍ଡ ନୁଆଁଏ ।

ଏଥର ପେଟ୍ରୁସିଓ । ସେ ତା'ର ଅନୁଚରକୁ ଆଦେଶ ଦିଏ - ଯା, ତୋ'ର ମାଲିକାଣୀକୁ ଏଠାକୁ ଶୀଘ୍ର ଆସିବାକୁ ମୁଁ ଆଦେଶ ଦେଇଛି ବୋଲି ଜଣାଇଦେ ।

ସମସ୍ତେ ହସିଉଠିଲେ । କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ, ସ୍ୱାମୀର ଏଇ ଆଦେଶ କାଥେରିନ୍ ମାନିନେବ । ତେବେ ସିନର ବାପ୍ଟିସ୍ତା ହଠାତ୍ ଚିତ୍କାର କରି ଉଠନ୍ତି । ତାଙ୍କ ପାଟିରୁ ବାହାରିଯାଏ— କି ଆଶ୍ଚର୍ଯ୍ୟ! ଏ ଯେ ସତରେ କାଥେରିନ୍ !!!

॥ ୭ ॥

କାଥେରିନ୍ ନୀରବରେ ଆସି ଘରେ ପାଦ ଦିଏ । ପେଟ୍ରୁସିଓ ପାଖକୁ ଆସି ନରମ କଣ୍ଠରେ ପ୍ରଶ୍ନ କରେ- ମୋତେ ଡକାଇପଠାଇଲ ? କହ, କ'ଣ କରିବାକୁ ହେବ ।

- ତମ ଭଉଣୀ ବିୟେଙ୍କା ଆଉ ହର୍ତ୍ତେନସିଓର ସ୍ତ୍ରୀ କ'ଣ କରୁଛନ୍ତି ?

- ସେମାନେ ନିଆଁ ପାଖରେ ବସି ଗଳ୍ପ କରୁଛନ୍ତି ।

- ତେବେ ଯାଇ ସେମାନଙ୍କୁ ଡାକିଆଣ । ଆଦେଶ ପାଳନ କରିବା ପାଇଁ କାଥେରିନ୍ ସାଙ୍ଗେ ସାଙ୍ଗେ ଘରୁ ଚାଲିଯାଏ । ତା'ର ଏଇ ପରିବର୍ତ୍ତନ ଦେଖି ସମସ୍ତେ ଅବାକ୍ ହୋଇଯାଆନ୍ତି । କାହାରି ପାଟିରୁ କଥା ବାହାରେ ନାହିଁ ।

ଶେଷରେ ଲୁସେନସିଓ ପ୍ରଥମେ ସଚେ୍ତନ ହୋଇଯାଏ । ନୀରବତା ଭାଙ୍ଗି ସେ କହେ, ହା ଈଶ୍ୱର, ଏ ଯେ ଦେଖୁଛି ମହା ଆଶ୍ଚର୍ଯ୍ୟ !

ହର୍ତ୍ତେନସିଓ କହେ-ଭାବୁଛି, ଏ ସବୁର ଅର୍ଥ କ'ଣ ?

-ଅର୍ଥ ହେଉଛି ଶାନ୍ତି -ପେଟ୍ରୁସିଓ ଉତ୍ତର ଦିଏ -ଭଲପାଇବାରୁ ଏହା ସମ୍ଭବ । ଅର୍ଥ ହେଉଛି ମୁଁ ହିଁ ହେଉଛି ପ୍ରଭୁ । ଅର୍ଥ ହେଉଛି, ନିରୁପଦ୍ରବ ସୁଖ ।

ବାପ୍ତିସ୍ତା ମୁଗ୍ଧ ହୋଇଯାଆନ୍ତି । କହନ୍ତି, ବହୁ ପେଟ୍ରୁସିଓ, ତମେ ପ୍ରକୃତରେ ଅସାଧ ସାଧନ କରିଛ । ଆଖିରେ ଦେଖି ନ ଥିଲେ ବିଶ୍ୱାସ କରି ନ ଥାନ୍ତି । କୋଡ଼ିଏ ହଜାର କ୍ରାଉନ୍ ମୁଁ ତମକୁ ଯୌତୁକ ରୂପେ ଦେଇଥିଲି । ଆଜି ତମେ ମୋତେ ଯାହା ଦେଖାଇଲ, ସେଥିପାଇଁ ତମେ ଆହୁରି କୋଡ଼ିଏ ହଜାର କ୍ରାଉନ୍ ପାଇବା ବି ଉଚିତ । ମୋ ଝିଅକୁ ତମେ ଏଭଳି ବଦଳାଇ ଦେଇଛ ଯେ, ତାକୁ ମୁଁ ଚିହ୍ନିବା କଷ୍ଟ ହେଉଛି । ଗୋଟିଏ ଭୟଙ୍କର ଆଗ୍ନେୟଗିରି ମଧ୍ୟରୁ ତମେ ଉଷାର ମାଙ୍ଗଳିକ ସଙ୍କେତ ଖୋଜିବାହାର କରିଛ । ଏ ମୋର ନୂତନ କନ୍ୟା... ଏ କୋଡ଼ିଏ ହଜାର ମୁଁ ତାକୁ ଦେଉଛି ।

ପେଟ୍ରୁସିଓ ତାଙ୍କ ଆଡ଼କୁ ଅନାଇ କହେ - ଆଉ ଟିକିଏ ଅପେକ୍ଷା କରନ୍ତୁ । ଦେଖିବେ ପ୍ରକୃତରେ ସେ କେତେ ବଦଳି ଯାଇଛି ! ଆପଣ ଜାଣନ୍ତି, ସେ କ'ଣ ଥିଲା । ଏବେ ଦେଖନ୍ତୁ, ସେ କ'ଣ ହୋଇଛି !

କାଥେରିନ୍ ଏଥର ବିୟେଙ୍କା ଓ ଅନ୍ୟ ସ୍ତ୍ରୀଟିକୁ ସାଙ୍ଗରେ ନେଇ ଘରେ ପଶେ । ହର୍ତ୍ତେନସିଓ ଆଉ ଲୁସେନସିଓଙ୍କ ଆଡ଼କୁ ଅନାଇ ପେଟ୍ରୁସିଓ କହେ- ଦେଖ, ତମର ଏ ଅବାଧ ଦୁଇ ସ୍ତ୍ରୀଙ୍କୁ ମଧ୍ୟ କାଥେରିନ୍ ବୁଝେଇ ଶୁଝେଇ ଏଠାକୁ ନେଇଆସିଛି ।

ଦୁହେଁ ଚୁପ୍ ରୁହନ୍ତି । ପ୍ରତିବାଦ କରନ୍ତି ନାହିଁ ।

ତା'ପରେ ପେଟ୍ରୁସିଓ କାଥେରିନ୍‌କୁ କହେ-ତମ ଟୋପିଟା ଖୋଲିଦିଅ । ସେଇଟା ତମକୁ ମାନୁ ନାହିଁ । ଫୋପାଡ଼ି ଦିଅ ସେଇଟା, ପାଦରେ ଦଳିଦିଅ ।

କାଥେରିନ୍ ତତ୍‌କ୍ଷଣାତ୍ ସ୍ୱାମୀର ଆଦେଶ ପାଳନ କରି ପକାଏ ।

ହାୟ ଈଶ୍ୱର, ଇଏ କି ବୋକା ଭଳି କାମ ! ହର୍ଟେନସିଓର ସ୍ତ୍ରୀ ଚିତ୍କାର କରି କହେ ମରିଗଲେ ମଧ କାହାରି ଅନ୍ୟାୟ ଆଦେଶ ମୁଁ ମାନିନେଇପାରିବି ନାହିଁ ।

ପେଟ୍ରୁସିଓ ଆଡ଼କୁ ଅନାଇ ବିୟେଙ୍କା କହେ - ଆପଣ ଏହାକୁ ବାଧତା ବୋଲି କହିପାରନ୍ତି, ମାତ୍ର ମୋ ମତରେ ଇଏ ହେଉଛି ବୋକାମିର ଶେଷ ରୂପ ।

ଲୁସେନସିଓ କହେ - 'ତମେ ଯଦି ଅନ୍ତତଃ ଏଇ ବୋକାମିଟି ଆଜି କରିଥାନ୍ତ ନା, ତେବେ ମୋତେ ଶହେ କ୍ରାଉନ୍ ହାରିବାକୁ ପଡ଼ି ନ ଥାନ୍ତା । ତମର ଅତି ବୁଦ୍ଧି ପାଇଁ ମୋତେ ଏଇ ଜୋରିମାନାଟି ଗଣି ଦେବାକୁ ହେଉଚି ।'

ବିୟେଙ୍କା କହେ ଦୋଷ ତମର । ଏଭଳି ବାଜି ମାରିବା ହେଉଛି ତମର ବୋକାମି ।

ଲୁସେନସିଓ ନୀରବ ରହେ ।

ପେଟ୍ରୁସିଓ ଏଥର ସ୍ତ୍ରୀ ଆଡ଼କୁ ଅନାଇ କହେ- କେଟ୍, ତମେ କ'ଣ ଏଇ ମହିଳାମାନଙ୍କୁ ସ୍ୱାମୀ ପ୍ରତି ସ୍ତ୍ରୀର କର୍ତ୍ତବ୍ୟ ସମ୍ପର୍କରେ କିଛି କହିପାରିବ ?

କାଥେରିନ୍ ଯେତେବେଳେ ମଧୁର ସ୍ୱରରେ ସ୍ତ୍ରୀର ଦାୟିତ୍ୱ ଆଉ କର୍ତ୍ତବ୍ୟ ସମ୍ପର୍କରେ ଅନ୍ୟମାନଙ୍କୁ ବୁଝାଇବାକୁ ଲାଗିଲା, ସମସ୍ତେ ତାର ଏଇ ନୂଆ ରୂପ ଦେଖି ତାଜୁବ୍ ହୋଇଯାଆନ୍ତି ।

ସେ କହିଯାଏ, ସ୍ତ୍ରୀର କର୍ତ୍ତବ୍ୟ ହେଉଛି ସ୍ୱାମୀର ଆଦେଶ ପାଳନ କରିବା, ସ୍ୱାମୀ ଅସନ୍ତୁଷ୍ଟ ହେବେ, ଏଭଳି କୌଣସି କାର୍ଯ୍ୟ ସ୍ତ୍ରୀ ଆଦୌ କରିବା ଉଚିତ ନୁହେଁ । ସ୍ୱାମୀ ସେବା ହେଲା ସ୍ତ୍ରୀର ଧର୍ମ । ସ୍ୱାମୀ ତାର ବନ୍ଧୁ, ସବୁଠାରୁ ପାଖର ମଣିଷ । ବିପଦ ଆପଦର ରକ୍ଷା କବଚ । ସ୍ତ୍ରୀର ସ୍ୱାଚ୍ଛନ୍ଦ୍ୟ ପାଇଁ ସେ ଦୂର ଦୂରାନ୍ତକୁ ଯାଆନ୍ତି । ଝଞ୍ଜା ବିକ୍ଷୁବ୍ଧ ସାଗର କି ରୁକ୍ଷ ମରୁପ୍ରାନ୍ତର ...ସ୍ତ୍ରୀ ପାଇଁ ହସି ହସି ଲଂଘନ କରନ୍ତି । ଯିଏ ଏତେ କରନ୍ତି, ବଦଳରେ ସେ ସ୍ତ୍ରୀଠାରୁ ଚାହାନ୍ତି ଟିକିଏ ସ୍ନେହ... ସାମାନ୍ୟ ଆନୁଗତ୍ୟ... ସ୍ତ୍ରୀ ଯଦି ସେତିକି ଦେଇ ନ ପାରେ, ତେବେ ତାଠାରୁ ଦୁର୍ଭାଗ୍ୟର କଥା ଆଉ କ'ଣ ଥାଇପାରେ ? ଅବାଧ ସ୍ତ୍ରୀ ମହାପାପୀ । ସ୍ତ୍ରୀର ସବୁ କର୍ତ୍ତବ୍ୟ ଉପରେ ସ୍ୱାମୀପ୍ରତି କର୍ତ୍ତବ୍ୟ । ଏହାର ପାଳନ ହିଁ ସ୍ତ୍ରୀର ମହାଧର୍ମ... ଇଏ କ'ଣ ସେଇ କାଥେରିନ୍ ନା ଭୂତଗ୍ରସ୍ତ କୌଣସି ଦିବ୍ୟ ଆତ୍ମା ! ସମସ୍ତେ ଅବାକ୍ ହୋଇ କାଥେରିନ୍‌ର ବ୍ୟାଖ୍ୟାନ ଶୁଣୁଥାଆନ୍ତି ଆଉ

ଭାବୁଥାଆନ୍ତି । କୁଆଡ଼େ ଗଲା ସେଇ ଭୟଙ୍କରୀ, ଦିଗମ୍ବରୀ, ପୁରୁଷରକ୍ତପିପାସୁ କାଥେରିନ୍ ! ତା' ସ୍ଥାନରେ ଇଏ କିଏ ?

ଝିଅର ଏଇ ପ୍ରବଚନଦାୟିନୀ ନୂଆ ରୂପ ଦେଖି ବାପ୍ତିସ୍ତାତ ଏକେବାରେ ମୋହିତ ହୋଇଗଲେଣି । ବାଃ...ବାଃ... କାନ କ'ଣ ନ ଶୁଣୁଛି ! ଆଖି କ'ଣ ନ ଦେଖୁଛି !

ପେତ୍ରୁସିଓ ସ୍ତ୍ରୀକୁ ଉତ୍ସାହିତ କରି କହେ- ଚମତ୍କାର କହିଛ କାଥେରିନ୍ । ସତରେ ଚମତ୍କାର !

ଲୁସେନସିଓ କହେ - ଶେଷରେ ତମେ ହିଁ ଜିତିଗଲ ବନ୍ଧୁ ।

ଏ କଥା ମୁଁ ମଧ ସ୍ୱୀକାର କରୁଛି- ହର୍ଟେନସିଓ କହେ ।

ଭିନସେନସିଓ ମଧ ମୁଗ୍ଧ ।

ପେତ୍ରୁସିଓ କହେ- ମୋର ପତ୍ନୀ ଭାଗ୍ୟ ଯେ ସର୍ବୋତ୍କୃଷ୍ଟ, ଏକଥା ତାହାହେଲେ ତମେମାନେ ସ୍ୱୀକାର କରୁଛ ?

ନିଶ୍ଚୟ - ସମସ୍ୱରରେ ଉତ୍ତର ଦିଅନ୍ତି ଲୁସେନସିଓ ଆଉ ହର୍ଟେନସିଓ ।

-ବେଶ୍, ଏଥର ମୁଁ ତମମାନଙ୍କୁ ଶୁଭରାତ୍ରି ଜଣାଉଛି । ରାତି ଅନେକ ହେଲାଣି । ଏଥର ବିଶ୍ରାମ ଦରକାର । ଚାଲ କାଥେରିନ୍ । ପେତ୍ରୁସିଓ ଯିବାକୁ ଉଠେ ।

ଦୁହେଁ ଚାଲିଯାଆନ୍ତି ।

କାହାଣୀ ଶେଷ ହୁଏ ।

# ଟୁଏଲ୍ଥ୍ ନାଇଟ୍

## ॥ ୧ ॥

ଏ କାହାଣୀ ହେଉଛି ଯମଜ ଭାଇଭଉଣୀଙ୍କୁ ନେଇ । ଭାଇ ସେବାଷ୍ଟିଆନ, ଭଉଣୀ ଭାୟୋଲା । ଦେଖିବାକୁ ସୁନ୍ଦର । ବୟସ ଅଳ୍ପ । ଘର ଗ୍ରୀସ୍‌ର ମେସାଲିନାରେ । ପ୍ରକୃତିର ବିଚିତ୍ର ଖିଆଲ । ଦୁଇଜଣଙ୍କର ଚେହେରା ଏଭଳି ଏକା ପରି ଯେ, ଗୋଟିଏ ପ୍ରକାରର ପୋଷାକ ପିନ୍ଧିଲେ ଦୁଇଜଣଙ୍କୁ ଅଲଗା କରି ଚିହ୍ନିବା ଅସମ୍ଭବ ।

ସେଇ ବୟସରେ ସେମାନେ ପିତୃମାତୃହୀନ । ବନ୍ଧୁପରିଜନ କେହି ନାହାନ୍ତି । ଜଣକ ପାଇଁ ଆଉ ଜଣେ । କିଛି ସମୟ ଜଣେ ଅନ୍ୟକୁ ନ ଦେଖିଲେ ଚାରିଆଡ଼ ଅନ୍ଧାର । ଯୌବନରେ ପାଦ ଦେବା ମାତ୍ରେ ସେମାନେ ଦେଶ ଭ୍ରମଣରେ ବାହାରିବାକୁ ସ୍ଥିର କରନ୍ତି । ଗନ୍ତବ୍ୟସ୍ଥଳ ଇଲିରିୟା ।

ଜାହାଜ ଯେତେବେଳେ ଇଲିରିୟା ଉପକୂଳର ପ୍ରାୟ ପାଖରେ ସେତିକିବେଳେ ସମୁଦ୍ରରେ ପ୍ରଚଣ୍ଡ ଝଡ଼ ଉଠେ । ପର୍ବତ ପ୍ରମାଣ ଢେଉ ଆସି ଜାହାଜ ଦେହରେ ବାଡ଼େଇ ହୁଏ । ଜାହାଜର ପାଲ ଛିଣ୍ଡେ... ମାସ୍ତୁଲ ଭାଙ୍ଗେ । ଜାହାଜକୁ ନେଇ ଢେଉ ପେଣ୍ଡୁ ଖେଳ ଆରମ୍ଭ କରିଦିଏ । ଯାତ୍ରୀମାନେ ଭିତରେ ମନ୍ଥି ହୋଇଯାଆନ୍ତି ।

କାପ୍‌ଟେନ ଜାହାଜକୁ ବଞ୍ଚାଇବାକୁ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ବି ସଫଳ ହୁଅନ୍ତି ନାହିଁ । ପ୍ରକୃତି ବିରୋଧରେ ଲଢ଼ିବାର ଶକ୍ତି ମଣିଷର କ'ଣ ଅଛି ? ଅତଏବ ଜାହାଜ ବୁଡ଼େ । କହିବାକୁ ଗଲେ ଏକପ୍ରକାର କୂଳକୁ ଆସି ହିଁ ବୁଡ଼େ । ଅଦୂରରେ ଅସ୍ପଷ୍ଟ ଭାବରେ ଦେଖା ଯାଉଥାଏ ଇଲିରିୟାର ତଟଭୂମି ।

ଅନେକଙ୍କର ଜଳସମାଧି ହୋଇଯାଏ । କାପ୍‌ଟେନ୍ ଆଉ କେତେଜଣ ମାଝି ଗୋଟିଏ ଛୋଟ ନୌକାରେ ଉଠିଲା ବେଳକୁ ଭାୟୋଲାକୁ ନେଇଯାଆନ୍ତି । ସେ କୌଣସିମତେ କୂଳରେ ଲାଗେ ।

ପ୍ରଥମେ ତା'ର ଚିନ୍ତା ହୁଏ ଭାଇ ବିଷୟରେ । ସେ କ'ଣ ବଞ୍ଚିଥିବ ?

କାପ୍‌ଟେନ୍ ତାକୁ ସାନ୍ତ୍ୱନା ଦେଇ କହନ୍ତି, ଯେତେବେଳେ ଜାହାଜ ଦୁଇଫାଳ ହୋଇଯାଏ, ସେତେବେଳେ ମୁଁ ଦେଖିଛି, ତମ ଭାଇ ଗୋଟାଏ ଭଙ୍ଗା ମାସ୍ତୁଲରେ ନିଜକୁ ବାନ୍ଧି ଭାସି ଯାଉଥାଆନ୍ତି । ଢେଉ ଉପରେ ଭାସି ଭାସି ସେ ହୁଏତ ଏହା ଭିତରେ କୂଳରେ ଆସି ଲାଗିଛନ୍ତି । ଭଗବାନ୍‌ଙ୍କ ଦୟାରୁ ସେ ନିଶ୍ଚୟ ରକ୍ଷା ପାଇଯାଇଥିବେ ।

ଏଥର ଭାୟୋଲା ଚାରିଆଡ଼କୁ ଦେଖେ । ଅପରିଚିତ ସ୍ଥାନ ଏଇ ଇଲିରିୟା- ଭାଇ-ଭଉଣୀ ଏଇଠାକୁ ଆସୁଥିଲେ । ସେ ତ କୌଣସିମତେ ପହଞ୍ଚିଛି । ମାତ୍ର ଭାଇ ? ସମୁଦ୍ରର ଅତଳ ଜଳରେ ତା'ର ଆଉ ଚିର ସମାଧି ହୋଇଯାଇ ନାହିଁ ତ ! କଥାଟା ଭାବିଲା ମାତ୍ରେ ତା'ର ଲୋମ ଟାଙ୍କୁରି ଉଠେ । ଏ ଅଜଣା ରାଜ୍ୟରେ ତା'ର କପାଳରେ କ'ଣ ଅଛି କିଏ ଜାଣେ !

ସାହସ କରି କାପ୍‌ଟେନଙ୍କୁ ପଚାରେ - ଆପଣ ଏ ଅଞ୍ଚଳଟା ସହିତ ପରିଚିତ ?

ଭଲ ଭାବରେ । ମୋ ଘର ତ ଏଠୁ ଖୁବ୍ ଅଳ୍ପ ବାଟ । ଏ ଅଞ୍ଚଳର ଧୂଳିମାଟିକୁ ବି ମୁଁ ଭଲଭାବରେ ଜାଣେ । କାପ୍‌ଟେନ୍ କହନ୍ତି ।

ଏ କଥା ଶୁଣି ଭାୟୋଲା ମନରେ କିଛିଟା ଶାନ୍ତି ପାଏ । ଯାହା ହେଉ, ଜଣେ ତ ପାଖରେ ଅଛି, ଯିଏ ଏ ଅଞ୍ଚଳ ସହିତ ପରିଚିତ ।

ଦରକାର ପଡ଼ିଲେ କିଛି ତ ସାହାଯ୍ୟ କରିବ !

- ଏ ଦେଶର ଶାସକ କିଏ ? ଭାୟୋଲା ପ୍ରଶ୍ନ କରେ ।

କାପଟେନ୍ ଉତ୍ତର ଦିଅନ୍ତି - 'ଡିଉକ୍ ଅର୍ସିନୋ'

- ଲୋକ ହିସାବରେ କେମିତି ?

- ଅତି ଭଦ୍ର, ବିନୟୀ ଆଉ ସଜ୍ଜନ । ଡିଉକ୍ ଏବେବି ଅବିବାହିତ । ଅଲିଭିୟା ନାମରେ ଜଣେ ଝିଅକୁ ମନ ଦେଇ ବସିଛନ୍ତି । ଏଇ ଅଲିଭିୟା କିନ୍ତୁ ଡିଉକ୍‌ଙ୍କୁ କହିଲା ଭଳି ପ୍ରତ୍ୟାଖ୍ୟାନ ହିଁ କରିଛନ୍ତି । ତେବେ ଡିଉକ୍‌ଙ୍କର ଧନୁଭଙ୍ଗା ପଣ- ବିବାହ କରିବେ ତ ଏଇ ଅଲିଭିୟା ... ନ ହେଲେ ନାହିଁ । କ୍ୟାପଟେନ୍ ଏକ ପୂର୍ଣ୍ଣାଙ୍ଗ ବିବରଣୀ ଦିଅନ୍ତି ।

- ଆଚ୍ଛା ଏଇ ଅଲିଭିୟାଟି କିଏ ? ଭାୟୋଲା ପଚାରେ ।

-ଅଭିଜାତ ପରିବାରର କନ୍ୟା । ତାଙ୍କ ବାପା ଥିଲେ ଜଣେ ବିଖ୍ୟାତ କାଉଣ୍ଟ । ବର୍ଷକ ପୂର୍ବରୁ ତାଙ୍କର ଦେହାନ୍ତ ହୋଇଯାଇଛି । ଝିଅଟିର ଅଭିଭାବକ ହେଲେ ତାଙ୍କର ବଡ଼ଭାଇ । ହେଲେ କପାଳ ଦେଖ, ସେ ବି ଏଇ କେତେ ଦିନ ହେବ ଆରପାରିକୁ ଚାଲିଗଲେ । ଭାଇଙ୍କ ବିୟୋଗ ବିଚାରୀକୁ ଖୁବ୍ ବାଧିଛି । ସେଇଦିନଠୁଁ ସେ ଆଉ ଘର ବାହାରକୁ ପାଦ ବଢ଼ାଇ ନାହାନ୍ତି । ନିଜ ଘରେ ବି କାହାରି ସାଙ୍ଗରେ ଦେଖା କରନ୍ତି ନାହିଁ । କ୍ୟାପଟେନ୍ କହିଯାଆନ୍ତି ।

ଯଦିଓ ଭାୟୋଲା ତାଙ୍କୁ ଏ ପର୍ଯ୍ୟନ୍ତ ନିଜ ଆଖିରେ ଦେଖି ନାହିଁ, ତଥାପି ସବୁକଥା ଶୁଣି ତାଙ୍କ ପ୍ରତି ସମବେଦନା ଜାଗିଲା । ହୁଏତ ତାଙ୍କର ଭାଇ ନାହାନ୍ତି; ଏଇଥିପାଇଁ ସହାନୁଭୂତି ବଢ଼ିଗଲା । ସେ ବି ତ ନିଜ ଭାଇକୁ ହରାଇଛି । କହିବାକୁ ଗଲେ ଦୁହେଁ ଗୋଟିଏ ଡଙ୍ଗାର ଯାତ୍ରୀ । ଭାୟୋଲା କ୍ୟାପଟେନ୍‌ଙ୍କୁ ପଚାରେ - ଚାକିରି ଖଣ୍ଡେ ମିଳନ୍ତା ନାହିଁ, ଏଇ ଲେଡି ଅଲିଭିୟାଙ୍କ ପାଖରେ ?

- ଆଶା ଖୁବ୍ କମ୍, କ୍ୟାପଟେନ ସଂକ୍ଷିପ୍ତ ଉତ୍ତର ଦିଅନ୍ତି । ଭାୟୋଲା କହେ - ଯଦି ତାଙ୍କ ପାଖରେ ଚାକିରି ନ ମିଳୁଛି, ତେବେ ମୋତେ ଡିଉକ୍‌ଙ୍କ ପାଖକୁ ଯିବାକୁ ହେବ । ବିଦେଶରେ ଯାହା କିଛି ଗୋଟାଏ ନ ଧରିଲେ, ମୋର ବା ଚଳିବ କେମିତି ? ଏଥିପାଇଁ ଆପଣଙ୍କର ସାହାଯ୍ୟ ମୋର ଲୋଡ଼ା । ଖାଲି ଆପଣଙ୍କୁ ଖଟାଇବି ନାହିଁ, ଯଥାସାଧ ପାରିଶ୍ରମିକ ବି ଦେବି । ବ୍ୟବସ୍ଥା ଗୋଟାଏ ଆପଣଙ୍କୁ କରିଦେବାକୁ ହିଁ ହେବ । ମୋତେ ସାରେ ପୁଅ-ପିଲାଙ୍କ ପୋଷାକ ଯୋଗାଡ଼ କରିଦିଅନ୍ତୁ । ସେଇଆକୁ ପିନ୍ଧି ମୁଁ ଡିଉକ୍‌ଙ୍କୁ ସାକ୍ଷାତ୍ କରିବି । ଆପଣ ସୁପାରିସ କରିବେ । ଡ୍ୟୁକଙ୍କ ଫାଇ ଫରମାଶ ଖଟିବା କାମରେ ଯେମିତି ହେଲେ ଲଗାଇ ଦେବେ । କଥା ଦଉଚି, ଯଥାସାଧ ଡ୍ୟୁକ୍‌ଙ୍କର ସେବା କରିବି । ଆପଣ କିନ୍ତୁ ମୋର ପ୍ରକୃତ ପରିଚୟ ଡ୍ୟୁକ୍‌ଙ୍କୁ ଦେବେ ନାହିଁ । କ୍ୟାପଟେନ୍ ରାଜି ହୁଅନ୍ତି ।

ପୁରୁଷ -ପୋଷାକ ସଂଗ୍ରହ କରାଯାଏ । ତାକୁ ପିନ୍ଧିବା ପରେ ଭାୟୋଲା ଦେଖାଯାଏ ଠିକ୍ ତା' ଭାଇ ସେବାଷ୍ଟିୟାନ ଭଳି । କ୍ୟାପଟେନ୍ ବି ସେଇ କଥା ମାନନ୍ତି । କହନ୍ତି - କି ଆଶ୍ଚର୍ଯ୍ୟ । ତମେ ତ ଠିକ୍ ତମ ଭାଇଭଳି ଦେଖାଯାଉଛ !

ଟିକିଏ ହସି ଭାୟୋଲା କହେ- ଏଥର ତେବେ ମୋତେ ଡ୍ୟୁକ୍‌ଙ୍କ ପାଖକୁ ନେଇ ଚାଲନ୍ତୁ । ଡ୍ୟୁକ୍ ତାକୁ ଦେଖିବା ମାତ୍ରେ ପସନ୍ଦ କରିପକାନ୍ତି । କଥାରେ ଅଛି 'ସୁନ୍ଦର ମୁହଁର ଜୟ ସର୍ବତ୍ର'। ଭାୟୋଲାର ଉଦ୍ଦେଶ୍ୟ ସିଦ୍ଧ ହୁଏ । ଡ୍ୟୁକ୍‌ଙ୍କ ପ୍ରଶ୍ନର ଉତ୍ତରରେ ଭାୟୋଲା ଜଣାଇଦିଏ ଯେ, ତାର ନାମ ହେଉଛି ସିଜାରିଓ ।

ଡ୍ୟୁକ୍ କ୍ୟାପଟେନଙ୍କୁ କହନ୍ତି - ପିଲାଟି ମୋର ପସନ୍ଦ ହୋଇଛି । ମୋ ପାଖରେ ଥାଉ । କାମଦାମ କରିବ । ଏମିତି କିଛି କାମ ନୁହେଁ ।

କ୍ୟାପ୍‌ଟେନ୍ ଆଉ ଭାୟୋଲା ଦୁହେଁ ଡ୍ୟୁକ୍‌ଙ୍କୁ ଧନ୍ୟବାଦ ଦିଅନ୍ତି ।

ଭାୟୋଲାର ପ୍ରକୃତ ପରିଚୟ କେହି ଜାଣନ୍ତି ନାହିଁ ।

ସିଜାରିଓରୂପୀ ଭାୟୋଲା ଜାଣେ, ଡ୍ୟୁକ୍‌ଙ୍କୁ ଖୁସି କରିପାରିଲେ,ତା'ର ଚାକିରି ନିରାପଦ । ସେ ସବୁବେଳେ ଆଖପାଖରେ ଥାଏ । ଗୋଟିଏ ଡାକରେ ଜବାବ୍ ଦିଏ । ଡ୍ୟୁକ୍‌ଙ୍କୁ ଗୀତ ବୋଲି ଶୁଣାଏ । ଡ୍ୟୁକ୍ ବିଷଣ୍ଣ ଦେଖାଗଲେ, ତାଙ୍କୁ ନାନା ପ୍ରକାର ମଜାଳିଆ କଥା କହି ପ୍ରଫୁଲ୍ଲିତ କରିବା ପାଇଁ ଚେଷ୍ଟା କରେ । ଡ୍ୟୁକ୍ ତାକୁ ଅଲିଭିୟା କଥା କହନ୍ତି । ଅଲିଭିୟାର ନୀରବତା ଏବଂ ନିଷ୍ଠୁରତା କଥା ଶୁଣି ଭାୟୋଲାର ମନ ଦୁଃଖରେ ଭରିଯାଏ ।

କିଏ ଜଣେ କହିଛନ୍ତି, ପ୍ରେମର ଗତି ବିଚିତ୍ର । ଠିକ୍ କଥା । ନ ହେଲେ ଡ୍ୟୁକ୍ ଅନ୍ୟ ଜଣକୁ ନିଜର ମନପ୍ରାଣ ସମର୍ପି ଦେଇ ବସିଛନ୍ତି ଏକଥା ଜାଣି ମଧ ଭାୟୋଲା ତାଙ୍କ ପ୍ରତି ଏମିତି ଆକୃଷ୍ଟ ହୋଇ ପଡ଼ିଥାଆନ୍ତା କାହିଁକି ? ତାକୁ ପଚାରିଥିଲେ ହୁଏତ କହିଥାଆନ୍ତା, ମନ ଉପରେ କାହାର ନିୟନ୍ତ୍ରଣ ଥାଏ ନା କ'ଣ ! ଯାହା ହେବାର ହୋଇଯାଏ । ତେବେ ଏକଥା

ସେ କହିବ କାହାକୁ ? ମନର ବେଦନା ମନଭିତରେ ଗୁମୁରି ଗୁମୁରି ମରିବ ସିନା । କିଛି ଦିନ ପରେ ଡିଉକ୍ ଭାୟୋଲାକୁ ଅଲିଭିୟା ପାଖକୁ ପଠାନ୍ତି । ହାତରେ ଦିଅନ୍ତି ବନ୍ଦ ଏକ ଲଫାପା । ତା' ଭିତରେ ଲେଡିଙ୍କ ଉଦ୍ଦେଶ୍ୟରେ ଡିଉକ୍‌ଙ୍କର ହୃଦୟର ଉଦ୍‌ବେଳନ ।

ଡିଉକ୍ କହନ୍ତି-ଲେଡିଙ୍କୁ ମୋର ଅବସ୍ଥା ବିଷୟରେ ବୁଝାଇବ । ତାଙ୍କର ଏଇ ନିଷ୍ଠୁରତା ମୋତେ କିଭଳି ଯନ୍ତ୍ରଣା ଦେଉଛି ସେ କଥା କହିବ । ବଞ୍ଚିଥିବାପର୍ଯ୍ୟନ୍ତ ମୁଁ ତାଙ୍କରି ଅପେକ୍ଷାରେ ଥିବି । ହୁଏତ ସେ ତମ କଥା ଶୁଣିବେ । ମୋ ମନକୁ ତମେ ହିଁ ଠିକ୍ ଭାବରେ ତାଙ୍କ ନିକଟରେ ଖୋଲି ଦେଇପାରିବ ।

ଭାରାକ୍ରାନ୍ତ ମନ ନେଇ ଭାୟୋଲା ଲେଡିଙ୍କ ପାଖକୁ ଯାଏ । ତା'ର ମନେହୁଏ, ସେ ଯେମିତି ହୋଇଯାଇଛି ଶୂନ୍ୟ ଏକ ପ୍ରାଙ୍ଗଣ, ଆଉ ତାରି ଉପର ଦେଇ ତା' ମନର ମଣିଷ ଚାଲିଛି ତା'ମନର ମଣିଷ ପାଖକୁ !

ଲେଡିଙ୍କ ପ୍ରାସାଦର ତୋରଣ ଦ୍ୱାରରେ ଭାୟୋଲାକୁ ବାଧା ଦିଏ ତାଙ୍କରି ଜଣେ ଅନୁଚର । ନାମ ତା'ର ମାଲଭୋଲିଓ । ସେ କଡ଼ା ସ୍ୱରରେ ଜଣାଇଦିଏ - ତା'ର ମୁନିବଙ୍କର ଆଦେଶ - ବାହାରର କୌଣସି ଲୋକ- ବିଶେଷକରି ଡ୍ୟୁକ୍‌ଙ୍କର କୌଣସି ଦୂତ ଯେମିତି ପ୍ରାସାଦ ଭିତରକୁ ପ୍ରବେଶ ନ କରନ୍ତି । ସେ ନିରୁପାୟ ।

ଭାୟୋଲା ଏହାର କାରଣ ଜାଣିବାକୁ ଚାହେଁ ।

ମାଲଭୋଲିଓ ଜଣାଏ ଲେଡି ଅସୁସ୍ଥ ହୋଇପଡ଼ିଛନ୍ତି ।

- ସେଇ ସମ୍ବାଦ ପାଇ ତ ମୁଁ ତାଙ୍କୁ ଦେଖିବାକୁ ଆସିଛି । ଭାୟୋଲା କହେ ।

- ସେ ବର୍ତ୍ତମାନ ଶୋଇଛନ୍ତି । ମାଲଭୋଲିଓ ଜଣାଏ ।

- ବେଶ୍ ତ; ସେ ଉଠିବା ପର୍ଯ୍ୟନ୍ତ ମୁଁ ଅପେକ୍ଷା କରୁଛି । ଭାୟୋଲା ନିଜ ସିଦ୍ଧାନ୍ତରେ ଅଟଳ ।

ମାଲଭୋଲିଓ ବିରକ୍ତ ହୁଏ । ଅସୁସ୍ଥ -ମୁନିବ ଯେ କାହାରି ସହିତ ଦେଖାକରୁ ନାହାନ୍ତି, ଏକଥା ଜଣାଏ । କିନ୍ତୁ ଭାୟୋଲା ନଛୋଡ଼ବନ୍ଦା । ଦେଖା ସେ ଯେମିତି ହେଲେ କରିବ । ଦରକାର ହେଲେ ଲେଡି ସୁସ୍ଥ ହେବା ପର୍ଯ୍ୟନ୍ତ ସେ ଅପେକ୍ଷା କରିବ । ଡ୍ୟୁକ୍ ତାକୁ ଦେଖା କରିବାକୁ କହିଛନ୍ତି । ଆଦେଶ ପାଳିତ ନ ହେଲେ ସେ କ'ଣ ଭାବିବେ ? ତା'ଛଡ଼ା ସେ ବି ଦେଖିବାକୁ ଚାହେଁ ଲେଡିଙ୍କ ଭିତରେ ଏମିତି କ'ଣ ଅଛି, ଯାହା ଡ୍ୟୁକ୍‌ଙ୍କୁ ପାଗଳ କରିଛି !

ନିରୁପାୟ ମାଲଭୋଲିଓ ଏଥର ତା'ର ମୁନିବଙ୍କ ପାଖକୁ ଯାଏ । ଜଣାଇଯାଏ, ସେ ତା'ର ମୁନିବଙ୍କୁ ପଚାରୁଛି । ସେ ଯଦି ଅନୁମତି ଦିଅନ୍ତି, ତେବେ ସେ ତାଙ୍କୁ ସାକ୍ଷାତ୍ କରିପାରିବ ।

ଭାୟୋଲା ଅପେକ୍ଷା କରେ ।

ଲେଡି ସବୁ କଥା ଶୁଣନ୍ତି । ଡ୍ୟୁକ୍‌ଙ୍କ ଚିଠି ନେଇ ଦୂତଟାଏ ଆସିଛି । ଏ କଥା ଶୁଣି ତାଙ୍କର ରାଗ ହୁଏ । ସେ କହିଉଠନ୍ତି - ଡ୍ୟୁକ୍‌ଙ୍କର କୌଣସି ଦୂତକୁ ଯେ ମୁଁ ଭେଟିବି ନାହିଁ, ସେ କଥାତ ତମକୁ ପୂର୍ବରୁ କହିଛି । ତାକୁ ଫେରିଯିବାକୁ କହିଦିଅ ।

- କେତେଥର କହିସାରିଲିଣି । ଲୋକଟା ମୋଟେ ଘୁଞ୍ଚୁ ନାହିଁ ।

ଅବାକ୍ ହୋଇ ଲେଡି କହନ୍ତି - ଯାଉ ନାହିଁ ? କି ଧରଣର ଲୋକ ସେ ?

ମାଲଭୋଲିଓ କହେ ଲୋକ ଠିକ୍ ନୁହେଁ ...ଏଇ ଧରନ୍ତୁ ଯୁବକ ଆଉ କିଶୋରର ମଝାମଝି ଅବସ୍ଥାର ପିଲାଟିଏ ।

ଲେଡିଙ୍କର କୌତୂହଳ ହୁଏ । ସେ ପଚାରନ୍ତି ପିଲାଟିଏ । ଦେଖିବାକୁ କେମିତି !

ମାଲଭୋଲିଓ କହେ - ଦେଖିବାକୁ ବେଶ୍-ମାନେ ଖୁବ୍ ସୁନ୍ଦର । ଲେଡି ଭାବନ୍ତି, ତାହାହେଲେ ତ ତାକୁ ଦେଖିବାକୁ ହେବ, ଜାଣିବାକୁ ହେବ, ଏମିତି ସୁନ୍ଦର ଦୂତ ଡ୍ୟୁକ୍ ପାଇଲେ କୋଉଠୁ !

ନିଜର ମୁହଁଟିକୁ ଢାଙ୍କିନେଇ ଲେଡି କହନ୍ତି- ଦୂତକୁ ଏଇଠିକୁ ନେଇଆସ ।

ଟିକିଏ ପରେ ମାଲଭୋଲିଓ ସାଙ୍ଗରେ ଭାୟୋଲା ଲେଡିଙ୍କ ପାଖକୁ ଆସେ ।

ଲେଡି ଏକାକିନୀ ନ ଥିଲେ । ପରିଚାରିକାମାନେ ବି ସେଠି ଥିଲେ । ଭାୟୋଲା ଲେଡିଙ୍କୁ ଚିହ୍ନି ନ ପାରି ପଚାରେ ... ଆପଣମାନଙ୍କ ମଧ୍ୟରେ କିଏ ଲେଡି ଅଲିଭିୟା ? ତାଙ୍କୁ ମୋର ଯାହା କହିବାର କଥା, ସେ କଥା ଅନ୍ୟକୁ କହି, ତା'ର ମର୍ଯ୍ୟାଦା ନଷ୍ଟ କରିବାକୁ ମୁଁ ଚାହେଁନା ।'

ଅଲିଭିୟା ହସିଉଠନ୍ତି । ବେଶ୍ କଥା କହୁଛି ତ ! କହନ୍ତି - ମୁଁ ହେଉଛି ଅଲିଭିୟା ଯାହା କହିବାର କଥା କହିଯାଅ । ଶୁଣୁଚି...

-ଏତେ ଲୋକଙ୍କ ଭିତରେ ତ ସେ କଥା କହିପାରିବି ନାହିଁ ମାଡାମ୍ ,ପ୍ରଥମେ ଆପଣଙ୍କର ଏଇ ପରିଚାରିକାପଲଙ୍କୁ ଏଠୁ ହଟାନ୍ତୁ । ଭାୟୋଲା ଗମ୍ଭୀର ହୋଇ କହେ ।

ମଜା ପାଇ ଅଲିଭିୟା ସେମାନଙ୍କୁ ସେଠୁ ଚାଲିଯିବାକୁ କହନ୍ତି । ସୁନ୍ଦର ମୁହଁର ଜୟ ହୁଏ । ଅଲିଭିୟା ଏଥର ତା' କଥା ଶୁଣିବାକୁ ପ୍ରସ୍ତୁତ ହୁଅନ୍ତି ।

ଭାୟୋଲା ସାମାନ୍ୟ ଇତସ୍ତତଃ କରି କହେ - ଲେଡି, ଆପଣଙ୍କ ମୁହଁ କ'ଣ ଅନୁଗ୍ରହ କରି ମୋତେ ଦେଖିବାକୁ ଦେବେ ?

ଲେଡି ତା' ଆଡ଼କୁ ଅନାଇ କ'ଣ ଭାବିଲେ । ତା'ପରେ ଆସ୍ତେ ଆସ୍ତେ ନିଜ ମୁହଁ ଉପରୁ ପାତଳା ଆବରଣଖଣ୍ଡକ ଘୁଞ୍ଚାଇ ନେଲେ । କହିଲେ - ସୁନ୍ଦର ନୁହେଁ ନା ?

- ଏଇ ସୌନ୍ଦର୍ଯ୍ୟ ବିଧାତାଙ୍କର ଅପୂର୍ବ ସୃଷ୍ଟି - ଅପୂର୍ବ ସୁନ୍ଦର ।

ଲେଡି ଅଲିଭିୟାଙ୍କ ମୁହଁ ଲାଜରେ ରକ୍ତବର୍ଣ୍ଣ ଧାରଣ କଲା । ତାଙ୍କ ମନରେ ଅପୂର୍ବ ତୃପ୍ତି ଜାତ ହେଲା । କହିଲେ -ଦୂତବର, ଏଥର ଆପଣଙ୍କ ବକ୍ତବ୍ୟ ପ୍ରକାଶ କରନ୍ତୁ ।

- ବକ୍ତବ୍ୟ ମୋର ନୁହେଁ, ଡ୍ୟୁକ୍‌ଙ୍କର । ମୁଁ କେବଳ ମାଧ୍ୟମ ମାତ୍ର । ସେ କହିଛନ୍ତି, ମୁଁ ଲେଡି ଅଲିଭିୟାଙ୍କୁ ଭଲ ପାଏ । ଗଭୀର ଭାବେ ଭଲ ପାଏ । ତାଙ୍କୁ ନ ପାଇ ମୋର ଦିନଗୁଡ଼ିକ ହେଉଛି ଦୀର୍ଘଶ୍ୱାସମୟ, ଆଉ ରାତି କଟୁଛି ଉଜାଗରରେ । ମୁଁ କାନ୍ଦିବାକୁ ଯାଇ କାନ୍ଦିପାରୁ ନାହିଁ । ଆତ୍ମା ମୋର ଆର୍ତ୍ତନାଦ କରୁଛି ତାଙ୍କର ଟିକିଏ ସ୍ପର୍ଶ ପାଇବାକୁ । ଭାୟୋଲା ରହି ରହି କହିଯାଏ ।

ଅଲିଭିୟା ନୀରବ ରହନ୍ତି । ଭାୟୋଲା ପୁଣି କହେ-ମୋର ମୁନିବ ଆପଣଙ୍କୁ ଯେତିକି ଭଲ ପାଉଛନ୍ତି, ମୁଁ ଯଦି ସେତିକି ଭଲ ପାଇଥାଆନ୍ତି, ତେବେ ଆପଣଙ୍କର ଏଇ ତୋରଣ ଦ୍ୱାରରେ ଖଣ୍ଡିଏ କୁଡ଼ିଆ ତିଆରି କରି ଆପଣଙ୍କ ବନ୍ଦ ଦରଜା ଆଡ଼କୁ ଅନାଇ ଜୀବନ କଟାଇଦିଅନ୍ତି । ସାରାଦିନ ଆପଣଙ୍କ ନାମ ଜପ କରୁଥାଆନ୍ତି । ଆପଣଙ୍କ ପାଇଁ ଗୀତ ଲେଖି ଗାଆନ୍ତି । ଯେତେଦିନପର୍ଯ୍ୟନ୍ତ ଆପଣଙ୍କ କୃପା ବାରି ମୋ ଉପରେ ପଡ଼ନ୍ତା ନାହିଁ, ସେତେଦିନଯାଏ ଏଇଠି ଜୀବନ କଟାଇ ଦିଅନ୍ତି । ମୋର ବିଶ୍ୱାସ, ଦିନେନା ଦିନେ ଆପଣଙ୍କର କରୁଣା ନିଶ୍ଚୟ ପାଆନ୍ତି ।

ଦୂତର ଚମତ୍କାର ବାଚନଶୈଳୀ ଲେଡିଙ୍କୁ ସ୍ପର୍ଶ କରେ ।

ସେ କହନ୍ତି- ମୁଁ ଆପଣଙ୍କର କଥା ଶୁଣୁଛି । କହିଯାଆନ୍ତୁ ।

ଫୁଲଧନୁର କି ବିଚିତ୍ର ଲୀଳା । ଏତେ ନିଷ୍ଠା, ଏତେ ଅଧ୍ୟବସାୟ ସତ୍ତ୍ୱେ ଡ୍ୟୁକ୍ ଯେଉଁ ପାଷାଣକୁ ତରଳାଇ ପାରି ନ ଥିଲେ, ସେଇ ପାଷାଣ ଏବେ ପ୍ରଥମ ଦର୍ଶନରେ ହିଁ ବରଫ ପରି ତରଳି ବହିବାରେ ଲାଗିଛି ! ଅଲିଭିୟା ଦୂତର ପ୍ରେମରେ ପଡ଼ି ଯାଇଛନ୍ତି !

ସେ କହନ୍ତି— ଯୁଗ ଯୁଗ ଧରି ଆପଣଙ୍କର ମୁନିବ ମୋର ସ୍ତୁତି ଗାଇଚାଲିଲେ ମଧ ତାଙ୍କ ପ୍ରତି ମୋର କୌଣସି ସହାନୁଭୂତି ଜାଗିବ ନାହିଁ । ତାଙ୍କର ବକ୍ତବ୍ୟ ମୋ ପାଇଁ ବିରକ୍ତିକର । ତାଙ୍କୁ ଏ କଥା ଜଣାଇଦେବେ । କାଲି ଆପଣ ଆସନ୍ତୁ । ଆପଣଙ୍କଠୁ ମୁଁ ମୋର ବକ୍ତବ୍ୟର ପ୍ରତିକ୍ରିୟା ଶୁଣିବାକୁ ଚାହେଁ ।

ଭାୟୋଲା ଡ୍ୟୁକ୍‌ଙ୍କ ଚିଠିଟି ବାହାର କରେ । କହେ -ଆଉ ଏ ଚିଠି ?

- ମୋତେ କ୍ଷମା କରିବେ । କୌଣସି ଚିଠି ମୁଁ ଗ୍ରହଣ କରିବି ନାହିଁ ।

ଭାୟୋଲା ତଥାପି ନିବେଦନ କରେ । ମାତ୍ର ଲେଡି ନିଜ ନିଷ୍ପତ୍ତିରେ ଅଟଳ ରହନ୍ତି । ଉପହାରରୂପେ ସେ କିଛି ଅର୍ଥ ଭାୟୋଲାକୁ ଦେବାକୁ ଚାହାନ୍ତି । ମାତ୍ର ଭାୟୋଲା ତା' ଗ୍ରହଣ କରେ ନାହିଁ । କହେ ଅର୍ଥ ମୋର ଲୋଡ଼ା ନାହିଁ । ମୁଁ ଚାହେଁ ମୋର ମୁନିବଙ୍କ ପାଇଁ ଆପଣଙ୍କର ସହାନୁଭୂତି ।

ଏତିକି କହି ସେ ଅଲିଭିୟାଙ୍କ ଘରୁ ବାହାରିଆସେ । ସେ ଚାଲିଯିବା ପରେ ଅଲିଭିୟାଙ୍କ ସଂସାର ଯେମିତି ଶୂନ୍ୟ ହୋଇଯାଏ । ଦୂତକୁ ଦେଖିବା ପାଇଁ ତାଙ୍କର ମନ ବ୍ୟାକୁଳ ହୋଇଉଠେ । ମାଲଭୋଲିଓକୁ ଡାକି ସେ କହନ୍ତି - ସାଙ୍ଗେ ସାଙ୍ଗେ ଧାଇଁଯାଅ । ଡ୍ୟୁକ୍‌ଙ୍କ ଦୂତଟି ହୁଏତ ବେଶି ଦୂର ଯାଇ ନ ଥିବ । ଡ୍ୟୁକ୍‌ଙ୍କର ଏଇ ମୁଦିଟି ତାକୁ ଫେରାଇ ଦିଅ । କହ ଏ ମୁଦି ମୁଁ ରଖିପାରିବି ନାହିଁ । ତା'ର ମୁନିବଙ୍କର କୌଣସି ଉପହାର ଗ୍ରହଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ଆହୁରି କହିବ - ଡ୍ୟୁକ୍‌ଙ୍କୁ ବିବାହ କରିବା ମଧ୍ୟ ସମ୍ଭବ ହେଉ ନାହିଁ । ଦୂତ ଏ ସବୁ କଥା ଯେମିତି ଡ୍ୟୁକ୍‌ଙ୍କୁ ଜଣାଇ ଦିଅନ୍ତି । ସିଜାରିଓ (ଭାୟୋଲା) ଯଦି କାଲି ମୋ ସହିତ ଦେଖା କରେ, ତେବେ ଏ ବିବାହ କାହିଁକି ସମ୍ଭବ ନୁହେଁ, ମୁଁ ତାକୁ ବୁଝାଇ ଦେବି । କାଲି ଯେମିତି ହେଲେ ଆସିବାକୁ ତାକୁ କହିବ !'

ମୁଦି ନେଇ ମାଲଭୋଲିଓ ଚାଲିଯାଏ । ବାଟରେ ତା'ର ଭାୟୋଲା ସହ ଦେଖା ହୁଏ ଏବଂ ସେ ମୁଦି ଦେଇ ଲେଡିଙ୍କର ବକ୍ତବ୍ୟ ତାକୁ ଜଣାଇଦିଏ ।

ଭାୟୋଲାର ବାକ୍‌ସ୍ଫୂର୍ତ୍ତି ହୁଏ ନାହିଁ । ମୁଦି ସେ ଦେଲା କେତେବେଳେ ?
କହେ - ମୁଁ ତ କୌଣସ ମୁଦି ଲେଡିଙ୍କୁ ଦେଇ ନାହିଁ ।

- ସେ କଥା କହିଲେ ଶୁଣିବି ? ମୋର ମୁନିବ କହିଲେ ଯେ, ତମେ ଏଇ ମୁଦି ଦେଇଆସିଛ ।

- ଏ ମୁଦି ମୁଁ ନେଇପାରିବି ନାହିଁ । ଭାୟୋଲା ଜଣାଇଦିଏ ।

- ମୁଁ ମଧ୍ୟ ଏହାକୁ ଫେରାଇ ନେଇପାରିବି ନାହିଁ । ତମେ ନ ନେଲେ, ମୁଁ ଏଇଠି-ଏଇ ରାସ୍ତା ଉପରେ ଏଇଟାକୁ ଥୋଇଦେଇ ଚାଲିଯିବି । ଏତିକି କହି ସତକୁ ସତ ମୁଦିଟାକୁ ସେଇଠି ଥୋଇ ମାଲଭୋଲିଓ ଚାଲିଯାଏ ।

ଭାୟୋଲା ଆଉ କ'ଣ କରିବ ? ବାଧ ହୋଇ ଦାମୀ ମୁଦିଟାକୁ ରାସ୍ତାରୁ ଉଠାଇ ନିଏ । ପରେ ସୁବିଧା ସୁଯୋଗ ଦେଖି ଏଇଟାକୁ ଲେଡିଙ୍କ ପାଖକୁ ପଠାଇଦେଲେ ଚଳିବ । ଟିକିଏ ଭାବିବାରୁ ଘଟଣାଟା ତା'ପାଖରେ ସ୍ପଷ୍ଟ ହୋଇଯାଏ । ମନକୁ ମନ କହେ-ବିଚାରୀ ଅଲିଭିୟା ! ସେ ସିଜାରିଓର ପ୍ରେମରେ ପଡ଼ିଯାଇଛି । ମୁଁ ଯେ ବାସ୍ତବ ନୁହେଁ, ଏକ ମରୀଚିକା ସେ କଥା ବିଚାରୀ ଜାଣି ନାହିଁ । ସୂତା ଧୀରେ ଧୀରେ ଅତୁଆ ହେବାରେ ଲାଗିଛି, ଦେଖୁଛି । ମୁଁ ମନ ଦେଇଛି ଡ୍ୟୁକ୍‌ଙ୍କୁ, ଡ୍ୟୁକ୍ ମନପ୍ରାଣ ସମର୍ପି ବସିଛନ୍ତି ଅଲିଭିୟାକୁ-ଏଣେ ଅଲିଭିୟାର ମନ ମୋ ପାଖରେ ବନ୍ଧା ପଡ଼ିଛି-ହାୟ ଈଶ୍ୱର, ଏ ଅତୁଆ ସୂତା କ'ଣ ମୁଁ ଖୋଲିପାରିବି ? ହୁଏତ ସମୟ ... ସମୟ ହିଁ ଏହାକୁ ଫିଟାଇପାରେ । ଦେଖାଯାଉ ...

ଭାୟୋଲା ଫେରିଆସେ ।

ଡ୍ୟୁକ୍ ଅଲିଭିୟାର ବକ୍ତବ୍ୟ ଶୁଣିଯାଆନ୍ତି । ତଥାପି ତାଙ୍କର ମନ ମାନେ ନାହିଁ । ସେ କହନ୍ତି, ତଥାପି ଚେଷ୍ଟା ଚଳାଇ ଯିବାକୁ ହେବ । ଆହୁରି ଚେଷ୍ଟା-ସମୟ ଆସିବ ଲେଡିଙ୍କର ସମ୍ମତି ମିଳିଯିବ । ମୁଁ ଅପେକ୍ଷା କରିବି ।

ଭାୟୋଲା ଯୁକ୍ତି ଦ୍ୱାରା ଡ୍ୟୁକ୍‌ଙ୍କୁ ବୁଝାଇବାକୁ ଚେଷ୍ଟା କରେ । କହେ- ଧରନ୍ତୁ ଆପଣ ଯେମିତି ଲେଡିଙ୍କ ପାଇଁ ପାଗଳ, ସେମିତି ଆଉ କେହି ହୁଏତ ଆପଣଙ୍କୁ ଭଲପାଇ ବସିଛି । ଆପଣ ଯଦି ତାକୁ ଏମିତି ଜଣାଇଦିଅନ୍ତି ଯେ, ତାକୁ ଆପଣ କେବେବି ଭଲ ପାଇପାରିବେ ନାହିଁ ବୋଲି, ସେ କ'ଣ ଆପଣଙ୍କର ପ୍ରତ୍ୟାଖ୍ୟାନକୁ ସ୍ୱୀକାର କରିନେବ ନାହିଁ ?

ଡ୍ୟୁକ୍ ଉତ୍ତର ଦିଅନ୍ତି, 'ମୁଁ ଅଲିଭିୟାକୁ ଯେତେ ଭଲ ପାଏ, କୌଣସି ଝିଅ କେବେହେଲେ ମୋତେ ସେତେ ଭଲ ପାଇପାରିବ ନାହିଁ । ପୁରୁଷଟିଏ ଯେଭଳି ଭଲ ପାଇପାରେ କୌଣସି ନାରୀ ତା' ଜୀବନରେ ସେଭଳି ଭଲପାଇ ନ ପାରେ ।

ପାରନ୍ତି - ନିଶ୍ଚୟ ପାରନ୍ତି - ଭାୟୋଲା କହେ । ମୋର ଜଣେ ଭଉଣୀ ଥିଲେ । ସେ ଜଣକୁ ଭଲ ପାଉଥିଲେ, କିନ୍ତୁ ଏଇକଥା ସେ କେବେହେଲେ ମୁହଁ ଫିଟାଇ କହିପାରି ନାହାନ୍ତି । 'ନିଜ ଭିତରେ ଲୁଚାଇ ରଖିଥାଆନ୍ତି । ତା'ପରେ ଦୁଃଖରେ ଆଉ ମନୋବେଦନାରେ କୁହୁଳି କୁହୁଳି ଧୀରେ ଧୀରେ ସେ ଶୁଖିଯାଆନ୍ତି ।'

ଡ୍ୟୁକ୍ ସହାନୁଭୂତିର ସହ କହନ୍ତି -'ଆହା, ତା'ପରେ ତାଙ୍କର କ'ଣ ହେଲା ?

ଚିନ୍ତା କରି ଭାୟୋଲା କହେ - ଏବେ ବାପାଙ୍କର ଝିଅ କୁହନ୍ତୁ କି ପୁଅ କୁହନ୍ତୁ, ଏକମାତ୍ର ମୁଁ ହିଁ ରହିଚି ।

- ଅର୍ଥାତ୍ ? ଡ୍ୟୁକ୍ କହନ୍ତି - ଉତ୍ତର ଏଡ଼ାଇ ଯାଉଛ କାହିଁକି ?

- କାରଣ ଜାହାଜ ବୁଡିପାରେ, ମୋ ଭାଇର କ'ଣ ହୋଇଛି, ତା' କହିପାରୁ ନାହିଁ । ଏକଥା ଶୁଣି ଡ୍ୟୁକ୍ କହନ୍ତି - ତମେ ବର୍ତ୍ତମାନ ଲେଡିଙ୍କ ପାଖକୁ ଯାଅ । ଏଇ ମୁଦିଟା ତାଙ୍କୁ ଦେଇ କହିବ - ଯଦି ଏହାକୁ ସେ ସ୍ୱୀକାର କରନ୍ତି ତେବେ ମୋର ଜୀବନ ଧନ୍ୟ ହେବ ।

ମୁନିବଙ୍କ ଆଦେଶ ! ଭାୟୋଲାକୁ ଯିବାକୁ ପଡ଼େ ।

ଏଥର ଆଉ ଫାଟକରେ କେହି ତାକୁ ବାଧା ଦିଅନ୍ତି ନାହିଁ । ଜଣେ ପରିଚାରକ ତାକୁ ସିଧା ନେଇ ଲେଡିଙ୍କ ପାଖରେ ପହଞ୍ଚାଇ ଦିଏ । ତାକୁ ଦେଖି ଅଲିଭିୟାଙ୍କର ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠେ । ତେବେ ସେ ଡ୍ୟୁକ୍‌ଙ୍କ ସମ୍ପର୍କରେ କୌଣସି କଥା ଶୁଣିବାକୁ ଚାହାନ୍ତି ନାହିଁ । ସ୍ପଷ୍ଟ ଜଣାଇଦିଅନ୍ତି- କଥା ଦୂରେ ଥାଉ, ତାଙ୍କ ନାମ ମଧ୍ୟ ଶୁଣିବାକୁ ଚାହେଁନା । ଶୁଣ ସିଜାରିଓ, ମୁଁ ତମକୁ ଭଲପାଇ ବସିଛି । ତମର ପ୍ରତିଟି କଥା ମନଦେଇ ଶୁଣିବି ।

ଭାୟୋଲା ଠିକ୍ ଏଇଆ ଆଶଙ୍କା କରୁଥିଲା । ଏଭଳି ଅବସ୍ଥାରେ ତା'ର କ'ଣ କରିବା ଉଚିତ ଠିକ୍ ନ ପାରି ସେ ବ୍ୟସ୍ତ ହୋଇପଡ଼େ । କ'ଣ କହିବ ? କ'ଣ କରିବ ?

ଲେଡିଙ୍କ ପ୍ରତି ସମବେଦନାରେ ତା'ର ମନ ଭରିଯାଏ । ଆବେଗପୂର୍ଣ୍ଣ କଣ୍ଠରେ ସେ ତାଙ୍କୁ କହେ - ଆପଣଙ୍କର ଏଇ ଅଯାଚିତ କରୁଣାରେ ମୁଁ ଧନ୍ୟ । ତେବେ ଏହା ଗ୍ରହଣ କରିବାର ଶକ୍ତି ମୋର ନାହିଁ । ଜୀବନରେ କୌଣସି ନାରୀଙ୍କୁ ବରଣ କରିବା ମୋ ଭାଗ୍ୟରେ ନାହିଁ ।

ଏତିକି କହୁ କହୁ ତା'ର ଦୁଇ ଆଖି ଲୁହରେ ଭରିଯାଏ । ସେ ଅଲିଭିୟାଙ୍କର ପ୍ରାସାଦ ଛାଡ଼ି ତ୍ୟାଗ ବାହାରକୁ ଚାଲିଆସେ ।

॥ ୨ ॥

ଭାଇ ସେବାଷ୍ଟିଆନ୍ - ଯାହାପାଇଁ ତା'ର ଦୁଶ୍ଚିନ୍ତାର ଶେଷ ନାହିଁ, ସେଇ ଭାଇ ଯେ, ତା'ଠାରୁ ଖୁବ୍ ବେଶି ଦୂରରେ ନାହିଁ, ଏକଥା ଜାଣିଥିଲେ, ଭାୟୋଲା ଅନ୍ତତଃ ମନରେ ଶାନ୍ତି ପାଆନ୍ତା ।

ସେବାଷ୍ଟିଆନ୍ ସେଇଦିନ ହିଁ ଏ ସହରରେ ପାଦ ଦେଇଛି । ତା' ସାଙ୍ଗରେ ଅଛନ୍ତି ଜାହାଜର କ୍ୟାପ୍ଟେନ୍ ଆଣ୍ଟୋନିଓ । ସେଇ ହିଁ ତାକୁ ଅତଳାନ୍ତ ସାଗର ଗର୍ଭରୁ ଛାଣି ଆଣିଛନ୍ତି । ନିଜ ଜାହାଜରେ ସ୍ଥାନ ଦେଇ ବନ୍ଦର ପର୍ଯ୍ୟନ୍ତ ନେଇ ଆସିଛନ୍ତି । ଧୀରେ ଧୀରେ ଦୁହିଁଙ୍କ ଭିତରେ ସ୍ଥାପିତ ହୋଇଛି ଅନ୍ତରଙ୍ଗ ସୌଖ୍ୟ । ଗତ ତିନିମାସ ଧରି ସେ ତାଙ୍କରି ଜାହାଜରେ ଇଲିରିୟାର ଉପକୂଳରେ ଥିବା ବିଭିନ୍ନ ବନ୍ଦରରେ ଘୂରି ବୁଲୁଛି । ବନ୍ଦରଠାରୁ ଡ୍ୟୁକ୍ ଆର୍ସିନୋଙ୍କର ଭାସି ଭାସି ଶେଷରେ ଜାହାଜ ଆସି ଲାଗିଛି ଏଇ ବନ୍ଦରରେ । ପ୍ରାସାଦ ବେଶି ଦୂରରେ ନୁହେଁ ।

ସେବାଷ୍ଟିଆନ୍ ସହର ଦେଖିବାକୁ ଚାହେଁ । ସୁଯୋଗ ପାଇଲେ ଏଠାର ଡ୍ୟୁକ୍ଙ୍କ ପ୍ରାସାଦଟା ବି ଦେଖିନେବ । କ୍ୟାପ୍ଟେନ୍ଙ୍କୁ ସେ ଏଥିପାଇଁ ଆହ୍ୱାନ କରେ ।

କ୍ୟାପ୍ଟେନ୍ କହନ୍ତି - ବର୍ତ୍ତମାନ ଜାହାଜ ଛାଡ଼ି ଯିବା ମୋ ପକ୍ଷରେ ସମ୍ଭବ ନୁହେଁ । ମନ ଯଦି ହେଉଛି, ତେବେ ତମେ ନିଜେ ଏକା ବୁଲିଆସ ।

ଆଶ୍ଚର୍ଯ୍ୟ ହୋଇ ସେବାଷ୍ଟିଆନ୍ ଏହାର କାରଣ ଜାଣିବାକୁ ଚାହେଁ । ଆଣ୍ଟୋନିଓ ବ୍ୟାଖ୍ୟା କରନ୍ତି । କିଛିଦିନ ତଳର କଥା । ସମୁଦ୍ର ଭିତରେ ଆଉ ଗୋଟିଏ ଦଳ ସହିତ ଆମର ଯୁଦ୍ଧ ଲାଗିଯାଏ । ଯୁଦ୍ଧରେ ଆମେ ଜୟଲାଭ କରୁ ଆହତ ହୁଏ ଏଠାର ଡ୍ୟୁକ୍ଙ୍କର ପୁତୁରା -ଯଦି ମୁଁ ସହରରେ ପାଦ ଦିଏ, ତେବେ ମୋତେ ତତ୍କ୍ଷଣାତ୍ ଗିରଫ କରାଯିବ । ସେଇଥିପାଇଁ କହୁଛି, ତମେ ଏକା ଯାଅ ।

ଅଗତ୍ୟା ସେବାଷ୍ଟିଆନ୍ ଏକା ଯିବାକୁ ଠିକ୍ କରେ । ଆଣ୍ଟୋନିଓ ତାକୁ ସତର୍କ କରାଇ ଦିଅନ୍ତି । 'ଦେଖ ବାବୁ, ବିଦେଶ ଜାଗା । ସାବଧାନ ହୋଇ ବୁଲାବୁଲି କରିବ । ମୁଁ ଏଇ ଏଲିଫାଣ୍ଟ - ସରାଇଖାନାରେ ତମକୁ ଅପେକ୍ଷା କରିବି ।'

ଯିବା ପୂର୍ବରୁ କ୍ୟାପ୍‌ଟେନ ତା'ହାତରେ ଗୋଟିଏ ଟଙ୍କାଥଳି ଦେଇ କହନ୍ତି— ଏଇଟା ରଖ । ସହରକୁ ଯାଉଛ, ଟଙ୍କାର ଦରକାର ହୋଇପାରେ । ସଂକୋଚ ନ କରି ଖର୍ଚ୍ଚ କରିବ । ଏ ଟଙ୍କା ତମ ନିଜର ବୋଲି ଭାବିବ ।

- ଏତେ ଟଙ୍କା ମୋର କ'ଣ ହେବ ? ସେବାଷ୍ଟିଆନ୍ ପ୍ରତିବାଦ କରେ ।

- ସାଙ୍ଗରେ ଥାଉ । କିଛି ଖାଇବାକୁ ମନ ହେଲେ ଖାଇବ । ନୂଆ ଜିନିଷ କିଛି କିଣିବାକୁ ଇଚ୍ଛା ହେଲେ କିଣିବ । ଅଜଣା ଅଶୁଣା ଜାଗା - ସାଙ୍ଗରେ ପଇସା କିଛି ଥିବା ଦରକାର - କ୍ୟାପ୍‌ଟେନ୍ କହନ୍ତି ।

ସେବାଷ୍ଟିଆନ୍ ତାଙ୍କୁ କୃତଜ୍ଞତା ଜଣାଏ ।

କ୍ୟାପଟେନ୍ ପୁଣି କହନ୍ତି - ଶୁଣ, ବେଶି ଡେରି କରିବ ନାହିଁ । ତମପାଇଁ ମୋର ଚିନ୍ତା ରହିବ । ଏ ଜାଗା ମୋ ପାଇଁ ଆଦୌ ନିରାପଦ ନୁହେଁ, ଏ କଥାତ ତମକୁ କହିଛି ।

- ନା, ଖୁବ୍ ଶୀଘ୍ର ଫେରିଆସିବି । ଏତିକି କହି ସେବାଷ୍ଟିଆନ୍ ଡ୍ୟୁକ୍‌ଙ୍କ ପ୍ରାସାଦଆଡ଼େ ପାଦ ଚଳାଏ ।

ସେପଟେ ଭାୟୋଲା ମହା ଅସୁବିଧାରେ ପଡ଼ିଯାଇଛି । ଅସୁବିଧା ସୃଷ୍ଟି କରିଛନ୍ତି ସାର୍ ଟୋବି ବେଲ୍‌କ । ସମ୍ପର୍କରେ ସେ ଅଲିଭିୟାଙ୍କର କକା । ମୋଟାସୋଟା ଗୋଲଗାଲ୍ ମଣିଷ । ପ୍ରଚୁର ପରିମାଣରେ ସୁଖାଦ୍ୟ ଗ୍ରହଣ ଆଉ ହଇହଲ୍ଲା ଭିତରେ ଜୀବନ ଯାପନ-ଏହା ହେଉଛି ତାଙ୍କର ଜୀବନର ଲକ୍ଷ୍ୟ । ତାଙ୍କର ରହଣି ହେଉଛି ଅଲିଭିୟାଙ୍କର ଘର । ତାଙ୍କ ସାଙ୍ଗରେ ଅଛନ୍ତି ତାଙ୍କର ବନ୍ଧୁ ସାର୍ ଆଣ୍ଡ୍ରୁ । ଏ ଲୋକଟି ଅତ୍ୟନ୍ତ ଭୀରୁ ଆଉ ନିର୍ବୋଧ । ତେବେ ହାମ୍‌ବଡ଼ା ଭାବ ପୂରାମାତ୍ରାରେ ରହିଛି । ନିଜକୁ ସେ ମନେ କରନ୍ତି ଇନ୍ଦ୍ର ଅବା ଚନ୍ଦ୍ର ।

ବେଶ୍ କିଛି ଦିନ ଧରି ଟୋବି ଏଣ୍ଡ୍ରୁଙ୍କୁ ଅଲିଭିୟାଙ୍କ ସହିତ ଭିଡ଼ାଇଦେବାର ଯୋଜନାରେ ଅଛନ୍ତି । ବାରମ୍ବାର ବନ୍ଧୁଙ୍କୁ ବୁଝାଇ ଚାଲିଛନ୍ତି, ଆହେ, ବୃଥାରେ ଏଣେତେଣେ ସମୟ ନଷ୍ଟ ନ କରି ଅଲିଭିୟାର ମନଟା ପାଇବାକୁ ଚେଷ୍ଟା କର ଦେଖି । ତମର ଗୋଟାଏ ଗତି ହୋଇଯିବ ତାହାହେଲେ ।

ଟୋବି ମସ୍କରିଆ ଲୋକ । ସେ ଅବଶ୍ୟ ଥଟ୍ଟା କରି ଏକଥା କହନ୍ତି । ମାତ୍ର ସେ କଥା ବୁଝିବା ଭଳି ବୁଦ୍ଧି ଆଣ୍ଡ୍ରୁଙ୍କ ଘଟରେ ନ ଥିଲା ସେ ଭାବନ୍ତି, ଏହାକୁ ଯେ କହିବ ବନ୍ଧୁ ! ମୋ ପାଇଁ ତାଙ୍କର କେତେ ଚିନ୍ତା !

ସିଜାରିଓର ଗତାଗତ ପରେ ଟୋବିଙ୍କର ଥଟ୍ଟା ଗୋଟିଏ ନୂଆ ମୋଡ଼ ନିଏ । ସେ ଆଣ୍ଡ୍ରୁଙ୍କୁ ଉସ୍କାଇ ଦେଇ କହନ୍ତି - ତମେ ଏଇ ଟୋକାକୁ ସହ୍ୟ କରୁଛ କେମିତି ? ଅଲିଭିୟା ତା' ଆଡ଼କୁ କେମିତି ଟାଣି ହୋଇଯାଉଛି, ଲକ୍ଷ୍ୟ କରୁଛ ଟି ? ତା' ରୁଚିକୁ ବି ଧନ୍ୟ କହିବ । ଯେତେହେଲେ ବି ଚାକରଟାଏ ତ! ତାକୁ ନେଇ ଏତେ ନଚାନଚି କରିବାର କ'ଣ ଅଛି ? ଶୁଣ, ତମେ ଗୋଟାଏ କାମ କର । ଟୋକାକୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଡାକରାଦିଅ । ତାକୁ ହରାଇ ଅଲିଭିଆ ଆଗରେ ତମର ବୀରତ୍ୱର ପ୍ରମାଣ ଦିଅ ।

ଏମିତି ଆଣ୍ଡ୍ରୁଙ୍କୁ ମତାଇ ଦେଇ ଟୋବି ମନେ ମନେ ହସୁଥାଆନ୍ତି । ବନ୍ଧୁ ଯେ କେତେ ବଡ଼ ବୀର, ତା' ତାଙ୍କ ଛଡ଼ା ବେଶି କିଏ ଜାଣେ !

ଆଣ୍ଡ୍ରୁ ବୀର କାଗଜ କଲମରେ । ସେ ବିଳମ୍ବ ନ କରି ସିଜାରିଓଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ ନିମନ୍ତେ ଡାକରା ଦେଇ ଖଣ୍ଡେ ଗରମ ଚିଠି ଛାଡ଼ନ୍ତି । ଚିଠିଟା ପଠାଇ ଦିଆଯାଏ । ଚିଠି ପାଇ ଭାଓଲାର ପ୍ରାଣ ତ କଣ୍ଠାଗ୍ରତ । ଯାହାହେଲେ ବି ଝିଅଟାଏ । ଜୀବନରେ ଯୁଦ୍ଧ କ'ଣ ଜାଣି ନାହିଁ । ଏବେ ଡୁଏଲ ଲଢ଼ିବ କେମିତି ? ଏଣେ ଟୋବି ତାକୁ ବୁଝାଉଥାଆନ୍ତି, ଆଣ୍ଡ୍ରୁଙ୍କ ଭଳି ସାହସୀ ଆଉ ବୀରଯୋଦ୍ଧା ସେ ଜୀବନରେ ଦେଖି ନାହାନ୍ତି । ବିଚାରୀ ଭାୟୋଲା ଭୟରେ ଶୁଖି କଣ୍ଟା ! ସେ ଅଗତ୍ୟା ଟୋବିଙ୍କୁ ଜଣାଏ- ମୁଁ ତ ସାର୍ ଆଣ୍ଡ୍ରୁଙ୍କର କୌଣସି କ୍ଷତି କରି ନାହିଁ । ସେ ଏମିତି ମୋତେ ଯୁଦ୍ଧଡାକରା ଦେବାର କାରଣ କ'ଣ ?

- ସେ କଥା ମୁଁ ଜାଣେନା । ତେବେ କେବଳ ଏତିକି କହିପାରେ ଯେ, ଯୁଦ୍ଧ ନ କରି ସେ ଛାଡ଼ିବେ ନାହିଁ । ଉଦ୍‌ଗତ ହସକୁ ବଡ଼ କଷ୍ଟରେ ଚାପନ୍ତି ଟୋବି ।

- ଆପଣ ଗୋଟାଏ ମିଳାମିଶା କରାଇ ଦିଅନ୍ତୁ । ଅବଶ୍ୟ ଏଭଳି ଯୁଦ୍ଧ ଡାକରାର କାରଣ କ'ଣ, ତାହା ମୋତେ ଜଣା ନାହିଁ - ଭାୟୋଲା କହେ ।

- କହୁଛ ଯେବେ ଚେଷ୍ଟା କରିବି । ତେବେ ନିଧାର୍ଯ୍ୟ କରି କଥା ଦେଇପାରୁ ନାହିଁ । ଏହା ପରେ ଆଣ୍ଡ୍ରୁଙ୍କ ପାଖକୁ ଯାଇ କହନ୍ତି - ସର୍ବନାଶ, ଏ କ'ଣ କରୁଛ ? ଭୟ ପାଇ ବିଚରା ଆଣ୍ଡ୍ରୁ କହନ୍ତି - କ'ଣ କଲି ?

- କାହାକୁ ତମେ ଡୁଏଲ - ଲଢ଼ିବା ପାଇଁ ଚିଠି ଲେଖିଛ ? ଜାଣିଛ, ଏଇ ସିଜାରିଓ... ଟୋକା ହେଉଛି ଖଣ୍ଡାଖେଳରେ ଓସ୍ତାଦ୍ । ଏଇ ବୟସରେ ସେ କୋଡ଼ିଏ ବଡ଼ ବଡ଼ ଅସିଯୋଦ୍ଧାଙ୍କୁ ଚିତ୍ କରି ଦେଇଛି । ଏଭଳି ଯୋଦ୍ଧା ସାଙ୍ଗରେ ଲଢ଼ିବାକୁ ବାହାରିଛ ତମେ ! ତମକୁ ଚିକିଟିକି କରି ପାଦରେ ଦଳିଦେବାକୁ ତାକୁ ମୁହୂର୍ତ୍ତେ ବି ଲାଗିବ ନାହିଁ ।

ଟୋବିଙ୍କ କଥା ଶୁଣି ଆଣ୍ଡ୍ରୁଙ୍କର ଝାଳ ବୋହିଯାଏ ।

ଦୁଇଜଣଙ୍କୁ ଦୁଇଜଣଙ୍କ ସମ୍ପର୍କରେ ଯଥେଷ୍ଟ ଭୟଭୀତ କରାଇଦେଇ ଟୋବି ପେଟପୂରାଇ ହସିନିଅନ୍ତି । ଖେଳଟା ଜମୁଛି ଭଲ । ଏଥର କେବଳ ଅପେକ୍ଷା ସେଇ ମୁହୂର୍ତ୍ତଟିର ।

ଓଃ ସେଦିନ କି ମଜାଟା ଯେ ନ ହେବ !

ଶେଷରେ ସେ ଦିନଟି ଆସିଯାଏ । ଆଣ୍ଡ୍ରୁ ଆଉ ଭାୟୋଲା ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅନ୍ତି । ଦୁଇଜଣଯାକ ଭୟରେ ଏତେ କମ୍ପୁଥାଆନ୍ତି ଯେ, ହାତର ତରବାରି ବି ଠିକ୍ ରହୁ ନ ଥାଏ । ଭାୟୋଲାର ବାରମ୍ବାର ମନେ ହେଉଥାଏ ଯେ, ସେ ବୋଧହୁଏ ଏଇ ମୁହୂର୍ତ୍ତରେ ଅଜ୍ଞାନ ହୋଇଯିବ ! ସେ ପ୍ରାୟ ଚିତ୍କାର କରି ନିଜର ପ୍ରକୃତ ପରିଚୟ ପ୍ରକାଶ କରିଦେବାକୁ ଯାଉଥିଲା ।

ତା'ଆଗରୁ ହଠାତ୍ ଯୁଦ୍ଧଭୂମିରେ ଉଦୟ ହୁଅନ୍ତି ଆଉ ଜଣେ ଭଦ୍ରଲୋକ । ସମ୍ପୂର୍ଣ୍ଣ ଅପରିଚିତ । ସାଙ୍ଗେ ସାଙ୍ଗେ ଖୋଲା ତରବାରି ହାତରେ ଡେଇଁ ପଡ଼ନ୍ତି ଆଣ୍ଡ୍ରୁ ଆଉ ଭାୟୋଲାର ମଝିକୁ । ଚିତ୍କାର କରି କହନ୍ତି... ରହନ୍ତୁ । ଏଇ ପିଲାଟି ସାଙ୍ଗରେ ନ ଲଢ଼ି ମୋ ସାଙ୍ଗରେ ଲଢ଼ନ୍ତୁ । ତା'ର ହୋଇ ମୁଁ ଲଢୁଛି ।

ନବାଗତଟି ଆଉ କେହି ନୁହନ୍ତି । କ୍ୟାପ୍‌ଟେନ୍ ଆଣ୍ଟୋନିଓ । ସେବାଷ୍ଟିଆନ୍‌ର ଫେରିବାର ଡେରି ଦେଖି ସେ ଚିନ୍ତିତ ହୋଇ ପଡ଼ନ୍ତି । ଶେଷକୁ ଆଉ ସମ୍ଭାଳି ନ ପାରି ବିପଦର ଝୁଙ୍କନେଇ ସହରକୁ ପ୍ରବେଶ କରନ୍ତି । ସେବାଷ୍ଟିଆନ୍‌କୁ ଖୋଜି ଖୋଜି ସେ ଆସି ଏଇଠି ପହଞ୍ଚିଯାଆନ୍ତି । କି ଆଶ୍ଚର୍ଯ୍ୟ, ସେବାଷ୍ଟିଆନ୍ ଏଠି ଏମିତି ବିପଦରେ ପଡ଼ିଚି ! ତାକୁ ଆଗ ଉଦ୍ଧାର କରାଯାଉ ।

କ୍ୟାପ୍‌ଟେନ୍ କର୍ତ୍ତବ୍ୟ ସ୍ଥିର କରି ନିଅନ୍ତି ।

ବିସ୍ମୟ ଆଉ ଉତ୍ତେଜନାରେ ଭାୟୋଲା ହତବୁଦ୍ଧି ହୋଇଯାଏ । କିଏ ଏଇ ଅପରିଚିତ ? ସ୍ୱର୍ଗର ଦୂତଭଳି ତାକୁ ରକ୍ଷା କରିବା ପାଇଁ ଚାଲି ଆସିଛନ୍ତି !

ଭାୟୋଲା ଏଇ ସବୁ ଭାବୁଥିଲା ବେଳେ ସେଠି ହଠାତ୍ ଉପସ୍ଥିତ ହୁଅନ୍ତି ଡ୍ୟୁକ୍‌ଙ୍କର ଦଳେ ସାମରିକ କର୍ମଚାରୀ, ସେମାନେ ସିଧା ଆଣ୍ଟୋନିଓଙ୍କ ପାଖକୁ ଚାଲିଯାଇ କହନ୍ତି, "କ୍ୟାପ୍ଟେନ୍, ଏଇ ମୁହୂର୍ତ୍ତରେ ଆପଣଙ୍କୁ ଗିରଫ କରାଗଲା । ଆମ ସାଙ୍ଗରେ ଚାଲନ୍ତୁ । ଡ୍ୟୁକ୍-ବାହିନୀ ଆଣ୍ଟୋନିଓଙ୍କୁ ଚାରିଆଡୁ ଘେରିଯାଆନ୍ତି ।

ଭାୟୋଲା ଆଡ଼େ ଅନାଇ କ୍ୟାପ୍‌ଟେନ୍ କହନ୍ତି—ସେମାନଙ୍କ ଆଦେଶ ନ ମାନି ଆଉ ଗତି ନାହିଁ । ବନ୍ଧୁ, ତମକୁ ସାହାଯ୍ୟ କରିବାକୁ ଆସି ମୁଁ ବିପଦରେ ପଡ଼ିଗଲି । ଡ୍ୟୁକ୍‌ଙ୍କ ଲୋକ ଯେ ଦେଖିବା ମାତ୍ରେ ମୋତେ ଧରିବେ, ଏ କଥା ତ ତମକୁ ପୂର୍ବରୁ କହିଛି । ଯା ହେଉ, ଯାହା ହେବାର ହେବ । ଚିନ୍ତା କରି ଲାଭ କ'ଣ ? ଭାଇ ସେବାଷ୍ଟିଆନ୍, ତମକୁ ଯେଉଁ ଟଙ୍କା ଥଳିଟା ଦେଇଥିଲି, ସେଇଟା ବାହାର କର । ବୁଝୁଛତ, ଏବେ ଟଙ୍କାର ଖୁବ୍ ଦରକାର । କେତେଦିନ ଜେଲ୍‌ଖାନାରେ ପଡ଼ିବାକୁ ହେବ କିଏ ଜାଣେ ! ସେଠି ଆଉ ଟଙ୍କା ପାଇବି କୋଉଠୁ ?

ସେବାଷ୍ଟିଆନ୍ ! ଭାୟୋଲା ଏ ନାମ ଶୁଣି ଚମକିପଡ଼େ । ଏତ ତାର ଭାଇର ନାମ । ସେ ଠିକ୍ ଶୁଣିଛି ତ ! ଗୋଟାଏ କଥା କିନ୍ତୁ ସ୍ଥିର । ତା'ର ଭାଇ ନିଶ୍ଚୟ ବଞ୍ଚିଛି । ଖୁସିରେ ତା'ର

ମନ ଭରିଯାଏ । ତେବେ ଟଙ୍କା କଥାଟା ସେ ବୁଝିପାରେ ନାହିଁ । କ୍ୟାପଟେନ୍ ତା' ପାଖରୁ ସେଇ ଥଳିଟା ଫେରସ୍ତ ଚାହୁଁଛନ୍ତି । କିନ୍ତୁ ସେତ ତାଙ୍କ ପାଖରୁ ଥଳି ନେଇ ନାହିଁ । କ୍ୟାପଟେନ୍ ଏ କଥା ବିଶ୍ୱାସ କରିବେ ତ ?

ବନ୍ଦୀ ଆଣ୍ଟୋନିଓଙ୍କ ଆଡ଼କୁ ଅନାଇ ସେ କହେ— ଆପଣ ମହାନ୍, ଆପଣ ପରୋପକାରୀ, ବିପଦ ସମୟରେ ମୋତେ ରକ୍ଷା କରିଛନ୍ତି । କିନ୍ତୁ ଆପଣଙ୍କ ଟଙ୍କାଥଳି କଥା ତ ମୋତେ ଜଣା ନାହିଁ । ମୋ ପାଖରେ ସାମାନ୍ୟ କିଛି ଟଙ୍କା ଅଛି । ଉଚ୍ଚିତ ମଣିଲେ ସେଇଆକୁ ଆପଣ ନେଇପାରନ୍ତି । ଏଇ ସାମାନ୍ୟ ଟଙ୍କା ବ୍ୟତୀତ ମୋ ପାଖରେ ଆଉ କିଛି ନାହିଁ । ଏଇ ମୋର ଯଥାସର୍ବସ୍ୱ । ଏତିକି କହି ସେ ନିଜର ଟଙ୍କା ଥଳିଟିକୁ ଆଣ୍ଟୋନିଓଙ୍କ ଆଡ଼କୁ ବଢ଼ାଇଦିଏ ।

ଅନ୍ତରଙ୍ଗ ବନ୍ଧୁର ଏଭଳି ଆଚରଣ ଆଣ୍ଟୋନିଓଙ୍କୁ ଗଭୀର ପୀଡ଼ା ଦିଏ । ଡ୍ୟୁକ୍‌ଙ୍କର କର୍ମଚାରୀମାନଙ୍କୁ ଲକ୍ଷ୍ୟ କରି ସେ କହନ୍ତି, ଏଇ ଅକୃତଜ୍ଞ ଯୁବକକୁ ଆପଣମାନେ ଚିହ୍ନି ରଖନ୍ତୁ । ଇଏ ସମୁଦ୍ରରେ ବୁଡ଼ିଯାଉଥିଲା । ତା'ର ପ୍ରାଣ ବଞ୍ଚାଇଲି । ତାକୁ ଆଶ୍ରୟ ଦେଲି । ବନ୍ଧୁଭଳି ବ୍ୟବହାର କଲି । ଶେଷରେ ତା'ରି ଅନ୍ୱେଷଣରେ ନିଜର ଜୀବନକୁ ବାଜି ଲଗାଇ ସହର ଭିତରକୁ ପ୍ରବେଶ କଲି । ବାବୁ ସହରକୁ ବୁଲି ବାହାରିଲେ, ସୁବିଧା ଅସୁବିଧା କଥା ଚିନ୍ତା କରି ଥଳିଏ ମୋହର ତା' ହାତରେ ଦେଲି । ଏବେ ଦେଖିଲେ ତ, ଥଳି କଥା ବାବୁ ସଫା ଅସ୍ୱୀକାର କରୁଛନ୍ତି ! ପୁଣି ଏମିତି ଭାବ ଦେଖାଉଛନ୍ତି, ଯେମିତିକି ମୋତେ ମୋଟେ ଚିହ୍ନନ୍ତି ନାହିଁ । ଏଭଳି ବେଇମାନ୍ ଆଉ ନିମକ୍‌ହାରାମ୍ ଲୋକ ସଂସାରରେ ବୋଧହୁଏ ଦ୍ୱିତୀୟ ନ ଥିବେ ।

କର୍ମଚାରୀମାନଙ୍କର ଏ ସବୁ ବିବରଣୀ ଶୁଣିବାର କୌଣସି ଆଗ୍ରହ ନ ଥିଲା । ସେମାନେ ଆଣ୍ଟୋନିଓଙ୍କୁ ଟାଣି ଟାଣି ସେଠୁ ନେଇଯାଆନ୍ତି । ଭାୟୋଲା ବି ଆଉ ବିଳମ୍ବ ନ କରି ସେ ଜାଗା ତ୍ୟାଗ କରେ । ତା'ର ଭୟ, ଆଣ୍ଡ୍ରୁ ଯଦି ଲଢ଼େଇର ଦାବି ନେଇ ପୁଣିଥରେ ଫେରିଆସନ୍ତି, ତେବେ...

॥ ୩ ॥

ଭାୟୋଲ ସ୍ଥାନ ତ୍ୟାଗ କରିବାର ମୁହୂର୍ତ୍ତରେ ହିଁ ସେବାଷ୍ଟିଆନ୍ ସେଠାକୁ ଆସେ । ଟିକିଏ ପାଇଁ ଭାଇ-ଭଉଣୀଙ୍କର ଦେଖା ହୋଇପାରେ ନାହିଁ । ଆଣ୍ଡ୍ରୁ କିନ୍ତୁ ତାକୁ ଦେଖିପାରନ୍ତି । ତାଙ୍କର ସୁପ୍ତ ପୌରୁଷ ଜାଗିଉଠେ । ସିଜାରିଓ ଖୁବ୍ ଭୀରୁ, ଏ ଧାରଣା ତାଙ୍କର ବଦ୍ଧମୂଳ ହୋଇ ଯାଇଥାଏ ।

ସେ ବି ସେବାଷ୍ଟିଆନ୍‌କୁ ଭାୟୋଲା ଭାବି ଭୁଲ୍ କରନ୍ତି ।

ସେ ସ୍ଥିର କରି ନିଅନ୍ତି, ଏଇ ହତଭାଗା ଟୋକାକୁ ସେ ଏଭଳି ପରାଭବ ଦେବେ, ଯାହା ସେ ସାରା ଜୀବନ ଭୁଲିପାରିବ ନାହିଁ ।

ଯେମିତି ଚିନ୍ତା, ସେମିତି କାର୍ଯ୍ୟ ।

ଆଣ୍ଡ୍ରୁ ଖୋଲା ତରବାରି ହାତରେ ହୁଙ୍କାର ଛାଡ଼ି ରଣକ୍ଷେତ୍ରକୁ ଡେଇଁ ପଡ଼ନ୍ତି । ଅଚିରେ ତାଙ୍କର ଭୁଲ୍ ଭାଙ୍ଗିଯାଏ । ସେବାଷ୍ଟିଆନ୍ ତାଙ୍କୁ ବେଶ୍ ମୁସ୍କିଲରେ ପକାଇ ଦିଏ । ସେ ଭୀରୁ ନୁହେଁ, ପୁଣି ଯୁଦ୍ଧବିଦ୍ୟାଟା ବେଶ୍ ଭଲ କରି ଆୟତ୍ତ କରିଛି । ଆଣ୍ଡ୍ରୁଙ୍କୁ ପ୍ରତିହତ କରି ସେ ଯେଉଁ ପ୍ରତିଆଘାତ ହାଣେ ବିଚରା ଆଣ୍ଡ୍ରୁ ତହିଁରେ ହତବୁଦ୍ଧି ହୋଇ ଯାଆନ୍ତି । ମାନ ବଞ୍ଚାଇବାକୁ ତାଙ୍କୁ ଶେଷରେ ଯୁଦ୍ଧ କରିବାକୁ ପଡ଼େ ।

ଯୁଦ୍ଧ ଆରମ୍ଭ ହୋଇଛି କି ନାହିଁ, ପ୍ରାସାଦ ଭିତରୁ ଧାଇଁ ଆସନ୍ତି, ଅଲିଭିୟା । ଉଆସ ଆଗରେ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହୋଇଥିବାର ଖବର ତାଙ୍କ ନିକଟରେ ପହଞ୍ଚି ଯାଇଥିଲା । ସିଜାରିଓ ବିପଦରେ ପଡ଼ିଯାଇପାରେ, ଏଇ ଆଶଙ୍କାରେ ସେ ଉଆସରୁ ବାହାରି ଆସନ୍ତି ।

ଆସୁ ଆସୁ ଚିତ୍କାର କରି କହୁଥାଆନ୍ତି ... ବନ୍ଦ କରନ୍ତୁ ବନ୍ଦ କରନ୍ତୁ ଏ ଯୁଦ୍ଧ ।

ସେବାଷ୍ଟିଆନ୍ ଆଉ ଆଣ୍ଡ୍ରୁ ଦୁଇଜଣ ଯାକ ଠିଆହୋଇ ପଡ଼ନ୍ତି ।

ଆଣ୍ଡ୍ରୁଙ୍କ ଆଡ଼କୁ ଅନାଇ କ୍ରୁଦ୍ଧ ସ୍ୱରରେ ଅଲିଭିୟା କହନ୍ତି, ଆପଣ ଏଇ ମୁହୂର୍ତ୍ତରେ ମୋ ଆଗରୁ ଚାଲିଯାଆନ୍ତୁ । ଆପଣଙ୍କର ଉପଦ୍ରବ ଅନେକ ସହିଛି । ଆଉ ସହିପାରିବି ନାହିଁ ।

ତା'ପରେ ସେବାଷ୍ଟିଆନ୍ ଆଡ଼େ ଅନାଇ ଆବେଗପୂର୍ଣ୍ଣ କଣ୍ଠରେ କହନ୍ତି, ତମେ ମୋ ସହିତ ଭିତରକୁ ଆସ ।

ସେବାଷ୍ଟିଆନ୍‌କୁ ଚିହ୍ନିବାରେ ସେ ବି ଭୁଲ୍ କରନ୍ତି । ସିଜାରିଓକୁ ଏକ ସମ୍ଭାବ୍ୟ ବିପଦରୁ ରକ୍ଷା କରି ପାରିଥିବାରୁ ଖୁସିରେ ସେ ନାଚି ଉଠନ୍ତି ।

ଜଣେ ଅଚିହ୍ନା ସୁନ୍ଦରୀ ଭଦ୍ରମହିଳାଙ୍କର ଏଇ ଅଯାଚିତ କରୁଣା ଦେଖି ସେବାଷ୍ଟିଆନ୍ ଆଚମ୍ବିତ ହୁଏ । ତଥାପି ସେ ତାଙ୍କୁ ଅନୁସରଣ କରି ପ୍ରାସାଦ ଭିତରକୁ ପ୍ରବେଶ କରେ । ଭଦ୍ରମହିଳା ତା'ସହିତ ଏଭଳି କଥାବାର୍ତ୍ତା ଆଉ ବ୍ୟବହାର କରୁଛନ୍ତି, ଯେମିତି ସେ କୋଉ କାଳରୁ ତାଙ୍କର ଚିହ୍ନା ! କେବଳ ସେତିକି ନୁହେଁ । ସେବାଷ୍ଟିଆନ୍ ଯେମିତି ତାଙ୍କର ପ୍ରେମିକ !

ସ୍ୱପ୍ନ ଦେଖୁଛି କିମ୍ବା ଚେଇଁ ରହିଛି - ସେବାଷ୍ଟିଆନ୍ କିଛି ସ୍ଥିର କରିପାରେ ନାହିଁ । ଯଦି ସ୍ୱପ୍ନ, ତେବେ ଏଭଳି ମଧୁର ସ୍ୱପ୍ନ ସେ ତା' ଜୀବନରେ ଦେଖି ନାହିଁ । ଏ ସ୍ୱପ୍ନ ଚିରସ୍ଥାୟୀ ହୋଇପାରିଲେ ତା'ଜୀବନ ଧନ୍ୟ ହୋଇଯାଆନ୍ତା ...

ବିସ୍ମୟର ପ୍ରଥମ ଅବସ୍ଥାଟା କଟିଯିବା ପରେ ତା'ର ମନେହୁଏ , ଏଇ ସୁନ୍ଦରୀ ମହିଳାଟି ନିଶ୍ଚୟ ପାଗଳ, ନ ହେଲେ ତା'ଭଳି ଜଣେ ସମ୍ପୂର୍ଣ୍ଣ ଅଚିହ୍ନା ଅଜଣା ଲୋକ ସହିତ ଏଭଳି ବିଚିତ୍ର ଆଚରଣ କରନ୍ତେ କାହିଁକି ? ଭଦ୍ରମହିଳା ପାଗଳ ? ଆହା ...

ତେବେ ଟିକିଏ ମନୋଯୋଗ ଦେଇ ସେବାଷ୍ଟିଆନ୍ ବୁଝିପାରେ, ଆଉ ଯାହା ହେଉ ପଛେ ମହିଳାଟି ଆଦୌ ବିକୃତ ମସ୍ତିଷ୍କା ନୁହନ୍ତି । ନିଜର ସଂସାର ଉପରେ ଯାହାର ଏତେ ଦୃଢ଼ କର୍ତ୍ତୃତ୍ୱ ରହିଛି , ସେ କି କେବେ ପାଗଳ ହୋଇପାରିବେ ? ପରିଚାରକ ପରିଚାରିକାମାନେ ତ ତାଙ୍କ ଆହ୍ୱାନରେ ସନ୍ତ୍ରସ୍ତ ! ତଥାପି ତା'ଭଳି ଜଣେ ଅଜ୍ଞାତ କୁଳଶୀଳ, ଅଚିହ୍ନା ଯୁବକକୁ ପ୍ରେମିକର ଆସନରେ ବସାଇବା ଅବା କେଉଁ ସୁସ୍ଥତାର ଲକ୍ଷଣ ! ସେ ତ କେବେ ଏ ଅଞ୍ଚଳକୁ ଆସି ନାହିଁ । ତେଣୁ ଏଇ ଅଭିଜାତ କନ୍ୟା ସହିତ ତା'ର ପୂର୍ବ ପରିଚୟ ଥିବାର କୌଣସି ସମ୍ଭାବନା ନାହିଁ ...ତଥାପି ...

ଏହି ମହାରହସ୍ୟର ସମାଧାନ କ'ଣ ?

ଯାହାହେଲେବି ଅଲିଭିୟାର ମଧୁର, ରୋମାଞ୍ଚକର ପ୍ରଣୟ ସମ୍ଭାଷଣରେ ସେବାଷ୍ଟିଆନ ଏକ ପୁଲକପ୍ରଦ ଶିହରଣରେ କମ୍ପି ଉଠୁଥାଏ, ଏକ ମିଠା ମିଠା ନିଶା ତାକୁ ଘାରି ପକାଉଥାଏ ।

କିଛି ସମୟ ପରେ ସେ ଆଉ ନିଜକୁ ନିୟନ୍ତ୍ରଣରେ ରଖିପାରେ ନାହିଁ । ତା' ପାଟିରୁ ବାହାରିଆସେ ପ୍ରଣୟିନୀ - ସ୍ତୁତିର ଧାରା ପ୍ରବାହ । ଅଲିଭିୟା ଏହା ଶୁଣି ପ୍ରଥମେ ଆଶ୍ଚର୍ଯ୍ୟ ହୁଏ । ତା'ପରେ ସିଏ ବି ଖୁସିରେ ଝୁମିଉଠେ । ଧରିନିଏ, ଏ ଭିତରେ ତେବେ ସିଜାରିଓ ତା'ର ମନ ବଦଳାଇ ସାରିଛି । ତା'ର ପ୍ରଣୟ ନିବେଦନ ପାଷାଣରେ ପ୍ରାଣ ସଞ୍ଚାର କରାଇଛି । ଦୁଇଜଣ ମୁଗ୍ଧ କଣ୍ଠରେ କିଛି ସମୟ ପ୍ରଣୟ କୂଜନରେ ମାତିଉଠନ୍ତି ।

ପ୍ରଥମେ ପ୍ରକୃତିସ୍ଥା ହୁଅନ୍ତି ଅଲିଭିୟା । ତାଙ୍କର ଆଶଙ୍କା ହୁଏ ହଠାତ୍ ଯଦି ସିଜାରିଓ ତା'ର ମତ ବଦଳାଏ, ତା'ହେଲେ ସବୁ ସ୍ୱପ୍ନ ବ୍ୟର୍ଥ ହୋଇଯିବ । ଯେତେ ଶୀଘ୍ର ହେଉ ନା କାହିଁକି, ଏହାକୁ ବିବାହର ଦୃଢ଼ ବନ୍ଧନରେ ବାନ୍ଧିବାକୁ ହେବ । ପୁରୋହିତ ମିଳିଲେ ଏଇ ମୁହୂର୍ତ୍ତରେ ହିଁ ବିବାହ କାର୍ଯ୍ୟ ଶେଷ କରିବାକୁ ହେବ ।

ଅଲିଭିୟା ପୁରୋହିତଙ୍କୁ ଡକାଇ ପଠାନ୍ତି । ବିବାହ କଥା ଶୁଣି ସେବାଷ୍ଟିଆନ୍ ଆଶ୍ଚର୍ଯ୍ୟ ହୋଇଯାଏ । ତେବେ ଯାହା ହେଉଛି, ସେ ଯାହା ସବୁ ଦେଖୁଛି ତହିଁରେ ତା'ର ଭଲ ଛଡ଼ା ମନ୍ଦ ହେବାର ସମ୍ଭାବନା କମ୍ । ଏଇ ସବୁ ଭାବି ସେ ଏ ବିବାହ ପାଇଁ ସମ୍ମତ ହୋଇଯାଏ । ଅଲିଭିୟା ଜଣାଇଦିଅନ୍ତି, 'ତମେ ଯେତେଦିନ ଚାହିଁବ, ସେତେଦିନଯାଏ ଏ ବିବାହ ବିଷୟ ଗୁପ୍ତ ହୋଇ ରହିବ ।'

ଯାହା ସବୁ ଘଟିଯାଉଛି, ସେବାଷ୍ଟିଆନ ତାହାର ଅଗମୂଳ କିଛି ବୁଝିପାରୁ ନାହିଁ । ଆଉ ମୁଣ୍ଡ ଖେଳାଇ ଲାଭ ନାହିଁ । ସେ ନିଜକୁ ବୁଝାଇ ଦେଇଛି ସ୍ୱପ୍ନ ହେଉ କି ମାୟା ହେଉ, ହେଉ

ଅବା ବାସ୍ତବ- ଏ ସବୁ ବଡ଼ ସୁନ୍ଦର, ଅତ୍ୟନ୍ତ ମଧୁର । ସବୁଠାରୁ ଚମତ୍କାର ଏଇ ଅଭିଜାତ ସୁନ୍ଦରୀଙ୍କର ବ୍ୟବହାର ...କେତେ ନମ୍ର, କେତେ ବିନୀତ !

ପୁରୋହିତ ଆସନ୍ତି । ବିଧିବିଧାନ ଭିତରେ ଅଲିଭିୟା ଆଉ ସେବାଷ୍ଟିଆନ୍‌ର ବିବାହ ହୋଇଯାଏ ।

ମଧୁର ଆଉ ରୋମାଞ୍ଚକର ଏକ ସ୍ୱପ୍ନର ଦୃଶ୍ୟ ସତେଯେମିତି ସେବାଷ୍ଟିଆନ୍ ଆଗରେ ଅଭିନୀତ ହୋଇଯାଏ ।

ସ୍ତ୍ରୀ ସହିତ କିଛିକ୍ଷଣ କଟାଇବା ପରେ ସେବାଷ୍ଟିଆନ୍‌ର ମନେପଡ଼ିଯାଏ ବନ୍ଧୁ ଆଣ୍ଟୋନିଓ କଥା । ସେ ତା'ରି ଅପେକ୍ଷାରେ ଏ ପର୍ଯ୍ୟନ୍ତ ବି ଥିବେ ଏଲିଫାଣ୍ଟ ସରାଇଖାନାରେ । ହୁଏତ ନାନା ଦୁଶ୍ଚିନ୍ତା ଭିତରେ ବି ଥିବେ । ସେ ତାଙ୍କୁ ଛାଡ଼ି ଆସିବାର ବହୁତ ସମୟ ହୋଇଗଲାଣି । ଏଇ ମୁହୂର୍ତ୍ତରେ ତାଙ୍କ ପାଖରେ ପହଞ୍ଚିବା ଦରକାର ।

ନବବଧୂଠାରୁ ବିଦାୟ ନେଇ ସେବାଷ୍ଟିଆନ୍ ସରାଇଖାନା ଆଡ଼େ ପାଦ ବଢ଼ାଏ ।

॥ ୪ ॥

ଭାୟୋଲା ଡିଉକ୍‌ଙ୍କ ଉଆସରେ ପହଞ୍ଚି ତାଙ୍କୁ ସାକ୍ଷାତ୍ କରେ । ଅଲିଭିୟାଙ୍କ ସହିତ ତା'ର ହୋଇଥିବା କଥାବାର୍ତ୍ତା, ଦୌତ୍ୟ କର୍ମରେ ତା'ର ଅସଫଳତା - ଏସବୁ ବିଷୟ ତାଙ୍କୁ ଜଣାଇଦିଏ । କରୁଣ କଣ୍ଠରେ କହେ, 'ପ୍ରଭୁ, ବହୁପ୍ରକାର ଚେଷ୍ଟା ସତ୍ତ୍ୱେ ମୁଁ ବ୍ୟର୍ଥ ହୋଇଛି । ଲେଡ଼ି କୌଣସିମତେ ଆପଣଙ୍କ ପ୍ରସଙ୍ଗ ଶୁଣିବାକୁ ମଧ ପ୍ରସ୍ତୁତ ନୁହନ୍ତି ।'

ଡ୍ୟୁକ୍‌ଙ୍କର ମୁହଁଟି ଗମ୍ଭୀର ହୋଇଯାଏ । କହନ୍ତି, ''ଆଉ ଲେଡିଙ୍କ ପାଖକୁ ଆଜିଠାରୁ କୌଣସି ଦୂତ ଯିବ ନାହିଁ । ଏଥର ଯିବି ମୁଁ ନିଜେ । ମୁହାଁମୁହିଁ ତାଙ୍କ ସାଙ୍ଗରେ କଥାବାର୍ତ୍ତା କରିବି ।''

ଶେଷରେ ଡ୍ୟୁକ୍ ଅଲିଭିୟାଙ୍କ ଉଆସକୁ ଯାତ୍ରା କରନ୍ତି । ସାଙ୍ଗରେ ଯାଆନ୍ତି ଭାୟୋଲା ଏବଂ ଆଉ କେତେକ ଅନୁଚର । ଉଆସ ଆଗରେ ତାଙ୍କୁ କିଛି ସମୟ ଅପେକ୍ଷା କରିବାକୁ ପଡ଼େ । ସେଇ ସମୟରେ ତାଙ୍କର ରକ୍ଷୀବାହିନୀ ବନ୍ଦୀ ଆଣ୍ଟୋନିଓଙ୍କୁ ତାଙ୍କ ସମ୍ମୁଖରେ ଉପନୀତ କରାନ୍ତି । ଜଣେ ପଦସ୍ଥ କର୍ମଚାରୀ ତାଙ୍କୁ ଅଭିବାଦନ ଜଣାଇ କହନ୍ତି, ହଜୁର, ଏ ହେଉଛି ସେଇ ଲୋକ, ଯେ କି ଆପଣଙ୍କର ଭ୍ରାତୁଷ୍ପୁତ୍ରକୁ ଆହତ କରିଥିଲା । ଆପଣଙ୍କ ଆଦେଶ ଅନୁସାରେ ତାକୁ ଗିରଫ କରାଯାଇଛି ।

ଭାୟୋଲା କ୍ୟାପ୍‌ଟେନ୍‌ଙ୍କୁ ଦେଖିବା ମାତ୍ରେ ଚିହ୍ନିପାରେ । ଏଇ ଲୋକଟି ତାକୁ ଆଣ୍ଟୁଙ୍କ ହାତରୁ ବଞ୍ଚାଇଥିଲା । ବର୍ତ୍ତମାନ ସେ ତାଙ୍କୁ ସାହାଯ୍ୟ କରିବ । ସେ ଡ୍ୟୁକ୍‌ଙ୍କ ନିକଟରେ ନିବେଦନ କରେ, ହଜୁର,ଏଇ ଲୋକ ହିଁ ମୋତେ ଦ୍ୱନ୍ଦ୍ୱଯୁଦ୍ଧରୁ ରକ୍ଷା କରିଛି ।

- ଦ୍ୱନ୍ଦ୍ୱଯୁଦ୍ଧ ? ତୁମକୁ ରକ୍ଷା କରିଛି, ଏଇ ଲୋକ ? ଘଟଣା କ'ଣ ? ଡ୍ୟୁକ୍ ପ୍ରଶ୍ନ କରନ୍ତି ।

ଭାୟୋଲା ସବୁ କଥା ପ୍ରକାଶ କରେ । ଶେଷରେ କହେ, ଏଇ ଭଦ୍ରଲୋକ ଯେ, ଯଥାର୍ଥତଃ ଜଣେ ପରୋପକାରୀ ଏ ବିଷୟରେ ମୁଁ ନିଃସନ୍ଦେହ । କିନ୍ତୁ ଟଙ୍କା ଥଳି ବିଷୟରେ କ'ଣ ସବୁ କହୁଛନ୍ତି, ମୁଁ ତା'ର ବିନ୍ଦୁ କି ବିସର୍ଗ କିଛି ବୁଝୁ ନାହିଁ ।

ବନ୍ଦୀଙ୍କର ଦୁଇ ଆଖି କ୍ଷୋଭରେ ସତେ ଯେମିତି ଜଳି ଉଠେ । ଦାରୁଣ କ୍ରୋଧରେ ଅନ୍ଧ ହୋଇ ସେ ଚିତ୍କାର କରି ଉଠନ୍ତି - ବୁଝିପାରୁ ନାହଁ, ନୁହେଁ ? ବୁଝିବ କେମିତି ? ଅକୃତଜ୍ଞ ! ବିଶ୍ୱାସଘାତକ !

ତା'ପରେ ଡ୍ୟୁକ୍‌ଙ୍କ ଆଡ଼କୁ ଅନାଇ ଅଭିଯୋଗଭରା କଣ୍ଠରେ କହନ୍ତି - 'ମହାମାନ୍ୟ, ଏ ଟୋକାଭଳି ଜଘନ୍ୟ ଚରିତ୍ରର ପିଲା ମୁଁ ଆଜିପର୍ଯ୍ୟନ୍ତ ଦେଖି ନାହିଁ ।' ଏହାପରେ ସେ ଉତ୍ତେଜିତ ସ୍ୱରରେ ସେବାଷ୍ଟିଆନ୍‌ର କଳ୍ପିତ ଅପରାଧ ବିଷୟରେ କହିଯାଆନ୍ତି । ସମୁଦ୍ରର ଅତଳ ଜଳରୁ ତାକୁ ଉଦ୍ଧାର, ଆଶ୍ରୟଦାନ, ସହର ଦେଖିବାକୁ ଯିବା ସମୟରେ ତାକୁ ମୋହର ଥଳି ପ୍ରଦାନ, ତାକୁ ଖୋଜିବା ନିମନ୍ତେ ପ୍ରାଣ ବିପନ୍ନ କରି ତାଙ୍କର ସହର ଭିତରକୁ ପ୍ରବେଶ, ତା'ରି ପାଇଁ ଏଠାରେ ତାଙ୍କର ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ ହେବା, ଏଇ ନିମକହାରାମ୍‌ର ବିପଦ ସମୟରେ ତାଙ୍କର ମୋହର ତାଙ୍କୁ ନ ଫେରାଇବା, ତାଙ୍କୁ ନ ଚିହ୍ନିବାର ଛଳନା କରିବା ପ୍ରଭୃତି ଘଟଣା ଗୋଟିଏ ପରେ ଗୋଟିଏ ବର୍ଣ୍ଣନା କରିଯାଆନ୍ତି । ଶେଷରେ କହନ୍ତି - ହଜୁର ମୁଁ ନ୍ୟାୟ ବିଚାର ଚାହେଁ - ଏ ଅନ୍ୟାୟର ସୁବିଚାର ଆପଣ କରନ୍ତୁ ।

ଡ୍ୟୁକ୍ କହନ୍ତି, ତମର ନିଶ୍ଚୟ ମୁଣ୍ଡ ଖରାପ । ତମେ କହିଲ, ତମେମାନେ ଆଜି ଇଲିରିୟା ଆସିଛ । ମାତ୍ର ଗତ ତିନିମାସ ଧରି ଏଇ ପିଲାଟି ମୋ ପାଖରେ କାମ କରୁଛି ।

ଏହି ସମୟରେ ଲେଡି ଅଲିଭିୟା ଘର ଭିତରୁ ବାହାରି ଆସନ୍ତି । ତାଙ୍କୁ ଦେଖି ଡ୍ୟୁକ୍ ରକ୍ଷୀମାନଙ୍କୁ ଆଦେଶ ଦିଅନ୍ତି, ବନ୍ଦୀକୁ ବର୍ତ୍ତମାନ ନେଇଯାଅ । ତା' କଥା ମୁଁ ପରେ ଶୁଣିବି ।

ଏବେ ଡ୍ୟୁକ୍‌ଙ୍କର ଆଖି ଦୁଇଟି କେବଳ ଅଲିଭିୟାଙ୍କ ଉପରେ ନିବଦ୍ଧ । କାନ ତାଙ୍କରି କଥା ଶୁଣିବା ପାଇଁ ଉଦ୍‌ଗ୍ରୀବ । ଯେଉଁ ନାରୀଙ୍କୁ ସେ ପ୍ରାଣରୁ ବଳି ମନେକରନ୍ତି, କେବଳ ତାଙ୍କରି କଥା ଶୁଣିବେ, ଦୁଇ ଆଖି ପୂରାଇ ତାଙ୍କୁ ଦେଖିବେ ।

ଅନ୍ୟ ସବୁ କଥା ତାଙ୍କ ପାଖରେ ତୁଚ୍ଛ !

ଲେଡି କିନ୍ତୁ ଡ୍ୟୁକ୍‌ଙ୍କର କୌଣସି କଥା ଶୁଣିବାକୁ ଚାହାନ୍ତି ନାହିଁ । ତାଙ୍କର ପ୍ରେମପୂର୍ଣ୍ଣ ଦୃଷ୍ଟି ଯାଇ ପଡ଼େ ସିଜାରିଓବେଶୀ ଭାୟୋଲା ଉପରେ ତାଙ୍କର ଦୁଇ ଆଖିରୁ ସତେ ଯେମିତି ଅମୃତ ବର୍ଷା ହେଉଥାଏ । ସେ ଭାୟୋଲା ସହିତ କୋମଳ ସ୍ୱରରେ କଥା କହିବାକୁ ଆରମ୍ଭ କରନ୍ତି । ଡ୍ୟୁକ୍ ବୁଝିପାରନ୍ତି, ଲେଡି ତାଙ୍କର ଏଇ ସୁଦର୍ଶନ ପରିଚାରକଙ୍କର ଆକଣ୍ଠ ପ୍ରେମରେ ନିମଗ୍ନ ଅତ୍ୟନ୍ତ ବିରକ୍ତ ହୋଇ ସେ ସେଠାରୁ ଚାଲିଯିବା ପାଇଁ ବାହାରନ୍ତି । ତୀକ୍ଷ୍ଣ କଣ୍ଠରେ ଭାୟୋଲାକୁ ଆଦେଶ ଦିଅନ୍ତି, 'ତମେ ମୋ ସହିତ ଚାଲ ।'

ଭାୟୋଲା ଖୁସିରେ ତାଙ୍କର ଆଦେଶ ପାଳନ କରିବାକୁ ପ୍ରସ୍ତୁତ । କାରଣ ଲେଡିଙ୍କ ପାଖରେ ରହିବା ପାଇଁ ତା'ର ମୋଟେ ଇଚ୍ଛା ନ ଥାଏ ।

-ଯାଅନା'- ଘର ଭିତରକୁ ଆସ । ଭାୟୋଲା ଆଡ଼କୁ ଅନାଇ ଲେଡି କରୁଣ ସ୍ୱରରେ ନିବେଦନ କରନ୍ତି ।

- ନା, ମୁଁ ମୋର ମୁନିବଙ୍କ ସହିତ ଯିବାକୁ ଚାହେଁ । ମୋତେ ଯିବାକୁ ହେବ । ତାଙ୍କୁ ମୁଁ ମୋ ଜୀବନଠାରୁ ବି ଅଧିକ ଭଲ ପାଏ । କୌଣସି ନାରୀକୁ ମୁଁ ଭଲ ପାଇପାରିବି ନାହିଁ ।

ସିଜାରିଓ, ସ୍ୱାମୀ, ତମେ ମୋ ପାଖରୁ ଦୂରେଇଯାଅନା । ବିବାହ କଥାଟା ଗୋପନ ରଖିବାର ପ୍ରତିଶ୍ରୁତି ଦେଇ ମଧ ଏଇ ମୁହୂର୍ତ୍ତରେ ଅଲିଭିୟା ତା' ଭୁଲିଗଲେ ।

ସ୍ୱାମୀ ! ଡ୍ୟୁକ୍ ଆଶ୍ଚର୍ଯ୍ୟ ହୋଇ ସିଜାରିଓ ଆଡ଼କୁ ଅନାନ୍ତି । ତମେ ଲେଡି ଅଲିଭିୟାଙ୍କର ସ୍ୱାମୀ ! ତା' ଆଡ଼କୁ ଚାହିଁ ତୀକ୍ଷ୍ଣ କଣ୍ଠରେ ଡ୍ୟୁକ୍ ପ୍ରଶ୍ନ କରନ୍ତି ।

- ହଁ, ସେ ମୋର ସ୍ୱାମୀ । ସିଜାରିଓ ଏକଥା ଅସ୍ୱୀକାର କରିପାରିବେ ନାହିଁ ।

- ନା ପ୍ରଭୁ, ମୁଁ ତାଙ୍କର ସ୍ୱାମୀ ନୁହେଁ । ଲେଡି ଭୁଲ୍ କରୁଛନ୍ତି । ମୁଁ କୌଣସି ନାରୀର ସ୍ୱାମୀ ନୁହେଁ... ହୋଇପାରିବି ନାହିଁ ।

- ଟିକିଏ ଅପେକ୍ଷା କରନ୍ତୁ ଡ୍ୟୁକ୍ । ଅଲିଭିୟା କହନ୍ତି, 'ମୁଁ ପ୍ରମାଣ କରିଦେବି ଯେ ସେ ହିଁ ହେଉଛନ୍ତି ମୋର ସ୍ୱାମୀ ।'

ପୁରୋହିତଙ୍କୁ ଡାକି ଆଣିବାକୁ ସେ ଲୋକ ପଠାଇଦିଅନ୍ତି । କିଛି କ୍ଷଣରେ ପୁରୋହିତ ବି ଆସିଯାଆନ୍ତି । ତାଙ୍କ ଆଡ଼କୁ ଅନାଇ ଅଲିଭିୟା ପ୍ରଶ୍ନ କରନ୍ତି, 'ଫାଦର୍, ଏଇ ଟିକିଏ ପୂର୍ବରୁ ଆପଣ କ'ଣ ସିଜାରିଓ ସହିତ ମୋର ବିବାହ ଦେଇ ନାହାନ୍ତି ? ସତ କହିବେ ।'

- ହଁ ଦେଇଛି ତ । ବିବାହର ତ ଏବେବି ଦୁଇଘଣ୍ଟା ହୋଇ ନାହିଁ । ପୁରୋହିତ ସରଳ ଭାବରେ କହିଯାଆନ୍ତି ।

ଡ୍ୟୁକ୍ ଏଥର ନିଶ୍ଚିନ୍ତ ହୁଅନ୍ତି । ଲେଡି ସତକଥା କହୁଛନ୍ତି । ଯେଉଁ ସିଜାରିଓକୁ ସେ ଏତେ ବିଶ୍ୱାସ କରିଥିଲେ, ଶେଷରେ ସେଇ ତାଙ୍କୁ ଏମିତି ଦଗା ଦେଲା ! ତାଙ୍କ ସହିତ ବିଶ୍ୱାସଘାତକତା କଲା !

ସେ ଏତେ ରାଗିଗଲେ ଯେ, ହୁଏତ ସେଇ ମୁହୂର୍ତ୍ତରେ ସିଜାରିଓକୁ ପ୍ରାଣଦଣ୍ଡ ଦେଇଥାଆନ୍ତେ । କିନ୍ତୁ ନିଜକୁ ସମ୍ଭାଳି ନେଇ ବିଚାର କଲେ, ସିଜାରିଓ ବିଶ୍ୱାସଘାତକ, ସୁବିଧାବାଦୀ । କିନ୍ତୁ ଅଲିଭିୟାଙ୍କର ତ କୌଣସି ଦୋଷ ନାହିଁ । ସେ ତ ତାକୁ ଭଲ ପାଉଛନ୍ତି । ତାଙ୍କୁ ସେ ସ୍ୱାମୀହରା କରିବେ କାହିଁକି ? ଅନ୍ୟାୟଭାବେ କୌଣସି ଦଣ୍ଡ ସେ ଦେଇ ନ ପାରନ୍ତି ।

ସିଜାରିଓ ଆଡ଼କୁ ତୀବ୍ର ଦୃଷ୍ଟିରେ ଅନାଇ ସେ କହନ୍ତି, 'ତମେ ବିଶ୍ୱାସର ଅମର୍ଯ୍ୟାଦା କରିଛ । ମୋ ପାଖରେ ଆଉ ଯେମିତି କୌଣସି ଦିନ ତମର ଏଇ କଳଙ୍କିତ ମୁହଁ ନ ଦେଖାଅ ।'

ଭାୟୋଲା ଦୁଃଖରେ ଭାଙ୍ଗିପଡ଼େ । ଲେଡି ସ୍ୱାମୀଙ୍କର ଏଭଳି ଆଚରଣରେ ଦୁଃଖୀ ହୋଇପଡ଼ନ୍ତି ।

ଏଭଳି ସମୟରେ ହଟ୍ଟଗୋଳ କରୁ କରୁ ସେଠାରେ ଆସି ଉପସ୍ଥିତ ହୁଅନ୍ତି ଆଣ୍ଡ୍ରୁ ଆଉ ଟୋବି । ଦୁଇଜଣଯାକ ଆଘାତ ପାଇଛନ୍ତି । ଦୁଇଜଣଙ୍କ ଦେହରୁ ରକ୍ତ ଝରୁଛି । ସିଜାରିଓ ନାମକ ଜଣେ ଯୁବକ ସହିତ ଲଢ଼ିବାକୁ ଯାଇ କୁଆଡ଼େ ସେମାନଙ୍କର ଏଇ ଦୁର୍ଦ୍ଦଶା !

ଭାୟୋଲାକୁ ଦେଖି ଦୁହେଁ ଚିତ୍କାର କରି ଉଠନ୍ତି । କହନ୍ତି, 'ଏଇ ତ ସେଇ ଟୋକା । ଆମକୁ ରକ୍ତାକ୍ତ କରି ଆସି ଡ୍ୟୁକ୍‌ଙ୍କ ପଛରେ ଲୁଚିଛି !'

ଡ୍ୟୁକ୍ ଚାଲିଯାଉଥିଲେ । ଏକଥା ଶୁଣି ଫେରିଆସନ୍ତି । କହନ୍ତି, ସିଜାରିଓ ବହୁ ବେଳରୁ ମୋ ପାଖରେ ଅଛି । ସେ ପୁଣି ତମ ଦୁହିଁଙ୍କୁ ଆକ୍ରମଣ କଲା କେତେବେଳେ ?

ପ୍ରକୃତରେ ଏ କାଣ୍ଡ ସେବାଷ୍ଟିଆନ୍‌ର ।

ଡ୍ୟୁକ୍‌ଙ୍କର କେମିତି ସନ୍ଦେହ ହୁଏ । ଘଟଣା ପଛରେ ନିଶ୍ଚୟ କୌଣସି ରହସ୍ୟ ଅଛି । ସେ ଯାହା ଭାବୁଛନ୍ତି, ହୁଏତ ତାହା ଠିକ୍ ନୁହେଁ ।

ଉତ୍ତେଜନାର ଏଇ ଚରମ ମୁହୂର୍ତ୍ତରେ ସେଠାରେ ପ୍ରବେଶ କରେ ସେବାଷ୍ଟିଆନ୍ । ସେ ଅଲିଭିୟାଙ୍କୁ ଦେଖି ତାଙ୍କ ପାଖକୁ ଛୁଟିଯାଏ । ପ୍ରିୟତମା ବୋଲି ସମ୍ବୋଧନ କରେ । ଅଲିଭିୟା

ଅବାକ୍ ହୋଇଯାଆନ୍ତି । ଏ କ'ଣ ସେ ଦେଖୁଛନ୍ତି ! ତାଙ୍କ ଆଗରେ ଏକା ସାଙ୍ଗରେ ଏକାଥରେ ଦୁଇ ଦୁଇ ଜଣ ସିଜାରିଓ - ଏକାଭଳି !

ଡ୍ୟୁକ୍‌ଙ୍କ ଅନୁଚରମାନେ କ୍ୟାପ୍‌ଟେନ୍ ଆଣ୍ଟୋନିଓଙ୍କୁ ନେଇ କିଛି ବାଟ ଆଗେଇ ଯାଇଥିଲେ । କ୍ୟାପ୍‌ଟେନ୍‌ଙ୍କ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ସେବାଷ୍ଟିଆନ୍ ଆନନ୍ଦରେ ଚିତ୍କାର କରିଉଠେ । ଏଇ ଯେ ବନ୍ଧୁ, ଶେଷରେ ଆପଣଙ୍କର ଦେଖା ମିଳିଲା ! ଆପଣଙ୍କୁ ଖୋଜି ଖୋଜି ଯାହା ହଇରାଣ ହେଲିଣି ! ଖୁବ୍ ଦୁଶ୍ଚିନ୍ତା ହେଉଥିଲା ।

ସମସ୍ତେ ନିର୍ବାକ୍ । କାହାରି ପାଟିରୁ ଶବ୍ଦଟିଏ ବାହାରୁ ନାହିଁ । ବିସ୍ମୟରେ ସମସ୍ତେ ଯେମିତି ମୂକ ପାଲଟିଯାଇଛନ୍ତି ! ସେମାନେ ଥରେ ସେବାଷ୍ଟିଆନ୍ ଆଡ଼େ ଅନାଉଛନ୍ତି ତ ଆଉଥରେ ଭାୟୋଲା ଆଡ଼କୁ । ଦୁଇଜଣଯାକ ଦେଖିବାକୁ ଏକାଭଳି । କିଏ ସେବାଷ୍ଟିଆନ୍, ଆଉ କିଏ ସିଜାରିଓ କିଏ କହିବ, କେମିତି କହିବ ? ସେବାଷ୍ଟିଆନ୍ ମଧ୍ୟ ତାରି ଭଳି ଜଣେ ଯୁବକକୁ ଦେଖି କମ୍ ଆଶ୍ଚର୍ଯ୍ୟ ହୋଇ ନାହିଁ । ଶେଷ ପର୍ଯ୍ୟନ୍ତ ତାରି ପାଟିରୁ ପ୍ରଥମେ କଥା ବାହାରେ । ସେ ସିଜାରିଓ ଆଡ଼କୁ ଅନାଇ କହେ, ତମେ ଯଦି ଝିଅଟିଏ ହୋଇଥାଆନ୍ତ, ତେବେ ତମକୁ ମୋର ଭଉଣୀ ଭାୟୋଲା ବୋଲି ଖୁସିରେ ସ୍ୱାଗତ କରିଥାଆନ୍ତି । କିନ୍ତୁ ତମେ ଅବା କେମିତି ଭାୟୋଲା ହେବ ? ସେ ତ ସମୁଦ୍ରରେ ବୁଡ଼ିଯାଇଛି ।

- ଟିକିଏ ଅପେକ୍ଷା କର ଭାଇ, ତା'ହେଲେ ଦେଖିପାରିବ, ମୁଁ ହିଁ ହେଉଛି ତମର ଭାୟୋଲା । ମୁଁ ତମକୁ ନେଇଯିବି ଜାହାଜର କ୍ୟାପ୍‌ଟେନ୍‌ଙ୍କ ପାଖକୁ, ଜାହାଜ ବୁଡ଼ିବାରୁ ଯିଏ ମୋତେ ଉଦ୍ଧାର କରିଥିଲେ । ମୋତେ ଦେଇଥିଲେ ଏଇ ପୁରୁଷର ପୋଷାକ । ସେ ହିଁ ମୋତେ ଛାଡ଼ିଯାଇଥିଲେ ମହାମାନ୍ୟ ଡ୍ୟୁକ୍‌ଙ୍କ ପାଖରେ । ମୋ ନିଜର ପୋଷାକପତ୍ର କ୍ୟାପ୍‌ଟେନ୍‌ଙ୍କ ଘରେ ରହିଛି । ସେଇ ପୋଷାକ ପିନ୍ଧିଲେ ତମେ ମୋତେ ଚିହ୍ନିପାରିବ । ମୁଁ ତମର ସେଇ ଭାୟୋଲାଭାଇ ।

ଏତେଗୁଡ଼ିଏ କଥା କହି ଭାୟୋଲା ନିଃଶ୍ୱାସ ନିଏ । ତା'ର ଯାହା କହିବାର ସେ କହି ସାରିଛି । ଆଉ ଛଦ୍ମବେଶ ପିନ୍ଧିବାର ଦରକାର ନାହିଁ । ସିଜାରିଓର ମୃତ୍ୟୁ ହୋଇଛି ।

ସବୁକିଛି ପରିଷ୍କାର ହୋଇଯାଏ ଏଥର ।

ସେବାଷ୍ଟିଆନ୍ ଥଟ୍ଟା କରି ଅଲିଭିଆକୁ କହେ - ଛିଃ ଛିଃ... ତମେ ଗୋଟିଏ ଝିଅକୁ ଭଲପାଇ ଶେଷକୁ ଜଣେ ପୁଅକୁ ବାହା ହୋଇପଡ଼ିଲ !

ଖୁସିରେ କହିଉଠେ ଅଲିଭିଆ - ଏମିତି ଭୁଲ୍ କରି ମୁଁ କିନ୍ତୁ ଟିକିଏ ବି ଦୁଃଖିତ ହୋଇ ନାହିଁ ।

ଡ୍ୟୁକ୍ ଅର୍ସିନୋ ଅଲିଭିୟାଙ୍କୁ ବିବାହ କରିବାର ଆଶା ତ୍ୟାଗ କରନ୍ତି । ଆଉ ବାଟ ବି ତ ନାହିଁ । ତାଙ୍କର ମନେପଡ଼ିଯାଏ, ଭାୟୋଲାର ଗୋଟାଏ କଥା । ଏକଥା ପ୍ରାୟ ତା' ମୁହଁରୁ ଶୁଣିଛନ୍ତି ସେ । ଭାୟୋଲା ଅନେକଥର କହିଛି, ମୁଁ ଆପଣଙ୍କୁ ଯେତେ ଭଲପାଏ, କୌଣସି ଦିନ କୌଣସି ନାରୀକୁ ସେତେ ଭଲ ପାଇପାରିବି ନାହିଁ ।

ଏତେ ଦିନେ ଏ କଥାର ତାତ୍ପର୍ଯ୍ୟ ବୁଝିପାରନ୍ତି ଡ୍ୟୁକ୍ । ସୁଦର୍ଶନ ସିଜାରିଓକୁ ସେ ସ୍ନେହ କରୁଥିଲେ । ସେଇ ସ୍ନେହ ଏବେ ପରିଣତ ହୁଏ ଗଭୀର ପ୍ରେମରେ ।

ଆହା ବିଚାରୀ ତାଙ୍କରି ପାଇଁ କେତେ କଷ୍ଟ ସହିଛି, କେତେ ଅପମାନିତ ହୋଇଛି ! ମମତାରେ ତାଙ୍କର ମନ କୋମଳ ହୋଇଯାଏ ।

ଭାୟୋଲା ଆଡ଼କୁ ଅନାଇ ସ୍ନେହପୂର୍ଣ୍ଣ କଣ୍ଠରେ କହନ୍ତି - ତମେ କ'ଣ ପ୍ରକୃତରେ ମୋତେ ଭଲପାଅ ଭାୟୋଲା ?

ଭାୟୋଲାର ସୁନ୍ଦର ମୁହଁଟି ଲାଜରେ ରଙ୍ଗା ପଡ଼ିଯାଏ । ସେ ମୁହଁ ତଳକୁ କରେ ।

- ମୋତେ ବିବାହ କରିବ ?

ମୁଣ୍ଡ ହଲାଇ କୌଣସିମତେ ନିଜର ସମ୍ମତି ଜଣାଇଦିଏ ଭାୟୋଲା ।

ସେବାଷ୍ଟିଆନ୍ ଆଉ ଭାୟୋଲା ଅନେକ ଦିନର ବିଚ୍ଛେଦ ପରେ ପରସ୍ପରକୁ ପାଇଯାଆନ୍ତି । ଡ୍ୟୁକ୍ ପାଆନ୍ତି ମନୋମତ ବଧୂ । ଲେଡି ଅଲିଭିୟା ମଧ ପାଆନ୍ତି ତାଙ୍କ ନିଜ ପସନ୍ଦର ସ୍ୱାମୀ ।

ପରମ ସୁଖରେ ଦିନ କଟେ ନବବିବାହିତ ଦମ୍ପତିଙ୍କର । କହନ୍ତି ସୁଖର ଦିନ ପାଣି ପରି ବହିଯାଏ । ଏକା ସାଙ୍ଗରେ ପୃଥିବୀକୁ ଆସିଥିଲେ ଭାଇଭଉଣୀ.. ସେବାଷ୍ଟିଆନ୍ ଆଉ ଭାୟୋଲା...

ଦୁହିଁଙ୍କର ଜୀବନ ବି କଟେ... ପରସ୍ପରର ପାଖରେ ରହି ।

# ଦି ଉଇଣ୍ଟର୍ସ ଟେଲ

॥ ୧ ॥

ବହୁଦିନ ତଳର କଥା । ସେତେବେଳେ ସିସିଲିର ଶାସକ ଥାଆନ୍ତି ଲିଓନ୍ଟିସ । ବଡ଼ ନ୍ୟାୟପରାୟଣ ଆଉ ପ୍ରଜାବତ୍ସଳ । ରାଣୀ ହାର୍ମିଓନ୍ ମଧ୍ୟ ଥିଲେ ତାଙ୍କର ସୁଯୋଗ୍ୟା ମହିଷୀ । ଯେମିତି ତାଙ୍କର ରୂପ, ସେମିତି ଗୁଣ । ପ୍ରଜାପାଟକଙ୍କର ବି ପ୍ରିୟ । ସୁଖର ଦିନ ପାଣି ପରି ବହି ଚାଲିଥିଲା ।

ରାଜା ଥିଲେ ଅତ୍ୟନ୍ତ ବନ୍ଧୁବତ୍ସଳ । ଛାତ୍ର ଜୀବନରେ ସେ ବହୁ ବନ୍ଧୁ ଅର୍ଜିଥିଲେ। ସଂସାରରେ ପ୍ରବେଶ କଲା ପରେ ସ୍ୱାଭାବିକ କାରଣରୁ ଯିଏ ଯାହାର ସଂସାର ନେଇ ବ୍ୟସ୍ତ ରହିଲେ । ଯୋଗାଯୋଗ ଶିଥିଳ ହୋଇଗଲା । ତେବେବି ଲିଓନ୍ଟିସ ସେମାନଙ୍କୁ ଭୁଲି ନାହାନ୍ତି । ମଝିରେ ମଝିରେ ଯୋଗାଯୋଗ ହୁଏ, ଚିଠିପତ୍ର ଲେଖନ୍ତି, ନିମନ୍ତ୍ରଣ କରନ୍ତି । ସମ୍ପର୍କ ଅତୁଟ ଥାଏ ।

ବନ୍ଧୁମାନଙ୍କ ମଧ୍ୟରେ ଥିଲେ ବୋହେମିୟାର ରାଜା ପଲିକ୍ସେନିସ୍ । ଲିଓନ୍ଟିସଙ୍କର ଏକାନ୍ତ ଅନ୍ତରଙ୍ଗ, ଅତ୍ୟନ୍ତ ପ୍ରିୟ । ଅଳ୍ପ ବୟସର ସମ୍ପର୍କ ସହଜେ ଭୁଲି ହୁଏ ନାହିଁ । ଟାଣଟା ଟିକିଏ ବେଶି । ସେତେବେଳେ ସେମାନେ ଥିଲେ ରାଜକୁମାର-ବର୍ତ୍ତମାନ ରାଜା । ବିବାହ ହୋଇଛି ଦୁହିଁଙ୍କର । ଲିଓନ୍ଟିସ ପୁଣି ସ୍ତ୍ରୀ-ଭାଗ୍ୟରେ ଧନୀ । ତାଙ୍କରି ପ୍ରେମରେ ପୂର୍ଣ୍ଣ କାମା ତଥାପି ଏତେ ସୁଖ ଆଉ ଐଶ୍ୱର୍ଯ୍ୟ ଭିତରେ ଥାଇ ସୁଦ୍ଧା ବନ୍ଧୁଙ୍କର ସ୍ଥାନଟି ତାଙ୍କ ମନରେ ଏବେ ବି ରିକ୍ତ ରହିଛି । କେହି ସେ ସ୍ଥାନ ଅଧିକାର କରିପାରି ନାହାନ୍ତି । ବାରମ୍ବାର ସେ ପଲିକ୍ସେନିସ୍‌ଙ୍କୁ ତାଙ୍କ ରାଜ୍ୟକୁ ଆସିବା ନିମନ୍ତେ ନିମନ୍ତ୍ରଣ କରିଛନ୍ତି । ପ୍ରଚୁର ଉପଢୌକନ ମଧ୍ୟ ତାଙ୍କ ପାଖକୁ ପଠାଇଛନ୍ତି । କିନ୍ତୁ ଦାୟିତ୍ୱର ଚାପରେ କେହି କାହାରି ପାଖକୁ ଆସିପାରି ନାହାନ୍ତି ।

ବିବାହ ପଲିକ୍ସେନିସ୍‌ଙ୍କର ମଧ୍ୟ ହୋଇସାରିଛି ଏବଂ ପତ୍ନୀ ଭାଗ୍ୟ ତାଙ୍କର ବି ଖରାପ ନୁହେଁ । ବିବାହିତ ଜୀବନରେ ସେ ବି ସୁଖୀ । ଦୁଇ ବନ୍ଧୁଙ୍କର ଦୁଇଟି ଚମତ୍କାର ପୁଅ । ତେବେ ଭାଗ୍ୟର କ୍ରୁର ପରିହାସରେ ପଲିକ୍ସେନିସ୍‌ଙ୍କର ସୁଖର ସଂସାର ଶୀଘ୍ର ଭାଙ୍ଗିଯାଏ । ସନ୍ତାନଟିକୁ ଜନ୍ମ ଦେଇ, ତାଙ୍କର ପତ୍ନୀ ସଂସାର ଛାଡ଼ି ଚାଲିଯାଆନ୍ତି । ରାଜାଙ୍କ ମୁଣ୍ଡରେ ସତେ ଯେମିତି ବଜ୍ରପାତ ହୁଏ । ସେ ସମ୍ପୂର୍ଣ୍ଣ ଭାଙ୍ଗିପଡ଼ନ୍ତି । ଶାସନ କାର୍ଯ୍ୟରେ ଆଉ ଆଗଭଳି ମନଦେଇ ପାରନ୍ତି ନାହିଁ । ଯେଉଁ ପ୍ରାସାଦ ଏକଦା ଥିଲା ତାଙ୍କ ପାଇଁ ସୁଖ ଆଉ ଶାନ୍ତିର ଆକର, ସେଇ ଏବେ ତାଙ୍କୁ ମନେହୁଏ ନିର୍ଜନ ଅରଣ୍ୟ ଭଳି । ଚାରିଆଡ଼େ ସ୍ନେହଶୀଳା ପତ୍ନୀଙ୍କର ସ୍ମୃତି ଚିହ୍ନ । ସେ ସଂସାର ତ୍ୟାଗ କରିବାର ସିଦ୍ଧାନ୍ତ ନେବେ ବୋଲି ଭାବନ୍ତି ।

ଏତିକିବେଳେ ତାଙ୍କ ପାଖରେ ପହଞ୍ଚେ ବନ୍ଧୁ ଲିଓନ୍ତିସଙ୍କର ସାଦର ନିମନ୍ତ୍ରଣ । ଏତେଦିନଯାଏ ସେ ଏହାକୁ ଏଡ଼ାଇ ଆସିଛନ୍ତି । ମାତ୍ର ଏଇ ମୁହୂର୍ତ୍ତରେ ତାହା ଈଶ୍ୱରଙ୍କର ଆଶୀର୍ବାଦ ରୂପରେ ତାଙ୍କ ପାଖରେ ପହଞ୍ଚିଛି । ସେ ସିସିଲି ଯିବାର ପ୍ରସ୍ତାବ ମନ୍ତ୍ରିପରିଷଦ ନିକଟରେ ପେଶ୍ କରନ୍ତି । ରାଜାଙ୍କର ମାନସିକତା ଦୃଷ୍ଟିରୁ କେହି ଏଥିରେ ଆପତ୍ତି କରନ୍ତି ନାହିଁ । ପଲିକ୍ସେନିସ୍ ଶେଷରେ ବୋହେମିୟା ଛାଡ଼ି ସିସିଲି ଯାତ୍ରା କରନ୍ତି ।

ଭବିଷ୍ୟତ୍ ଗର୍ଭରେ କାହାପାଇଁ କ'ଣ ସଞ୍ଚିତ ଥାଏ, ତାହାକେହି ଜାଣି ନ ଥାଏ । ଏଇ ଯାତ୍ରାର ପରିଣାମ ଯେ ତାଙ୍କ ପାଇଁ ଆଦୌ ଶୁଭଙ୍କର ହେବ ନାହିଁ, ଏକଥା ଜାଣିଥିଲେ ପଲିକ୍ସେନିସ୍ କ'ଣ କେବେହେଲେ ଘରୁ ଗୋଡ଼ କାଢ଼ିଥାଆନ୍ତେ !

ସିସିଲିରେ ପ୍ରଥମେ ପ୍ରଥମେ ରାଜାଙ୍କୁ ଖୁବ୍ ଭଲ ଲାଗୁଥିଲା । ବନ୍ଧୁ ଆଉ ବନ୍ଧୁ ପତ୍ନୀ ଦୁହିଁଙ୍କର ଅନାବିଳ ସ୍ନେହରେ ତାଙ୍କ ନିଜର କ୍ଷତଗୁଡ଼ିକ ବହୁ ପରିମାଣରେ ଫିକା ହୋଇ ଆସୁଥାଏ । ବାଲ୍ୟ-ସ୍ମୃତିର ରୋମନ୍ଥନ ଦୁଇ ବନ୍ଧୁଙ୍କୁ ନେଇଯାଉଥିଲା ସୁଦୂର ଅତୀତକୁ । ଦୁଇ ବନ୍ଧୁ ଘଣ୍ଟା ପରେ ଘଣ୍ଟା ତା'ରି ରୋମନ୍ଥନରେ କଟାଇ ଦେଉଥିଲେ । ବନ୍ଧୁଙ୍କୁ ଆନନ୍ଦ ଦେବାପାଇଁ ଲିଓନ୍ତିସ ଆୟୋଜନ କରି ଚାଲିଥିଲେ ନିତ୍ୟନୂତନ ଉତ୍ସବର । ସ୍ତ୍ରୀଙ୍କ ପ୍ରତି ତାଙ୍କର ନିର୍ଦ୍ଦେଶ ଥିଲା, ସେ ଯେମିତି ବନ୍ଧୁଙ୍କ ସହିତ ବନ୍ଧୁସୁଲଭ ଅକୃତ୍ରିମ ବ୍ୟବହାର କରନ୍ତି । ହାର୍ମିଓନ୍ ସରଳ ସ୍ୱଚ୍ଛନ୍ଦ ଆଉ ନିଷ୍କପଟ ଭାବରେ ତାଙ୍କ ସହିତ ମିଳାମିଶା କରୁଥିଲେ । ଦୁଇ ବନ୍ଧୁଙ୍କର ରସାଳାପରେ ଭାଗ ନେଉଥିଲେ ।

ଯେତେଥର ପଲିକ୍ସେନିସ୍ ନିଜ ରାଜ୍ୟକୁ ଫେରିବାର ଉପକ୍ରମ କରନ୍ତି, ଲିଓନ୍ତିସ ନାନା ବାହାନା ଦେଖାଇ ତାକୁ ପଣ୍ଡ କରିଦିଅନ୍ତି । ଏଥର ବି ସେମିତି ହୁଏ । ପଲିକ୍ସେନିସ୍ ବୋହେମିୟା ଯିବାକୁ ବାହାରିଲାରୁ ଲିଓନ୍ତିସ ତାଙ୍କୁ ଆଉ କିଛିଦିନ ସିସିଲିରେ ରହିଯିବା ପାଇଁ ଅନୁରୋଧ କରନ୍ତି । ହାର୍ମିଓନ୍ ମଧ୍ୟ ସ୍ୱାମୀଙ୍କ ସହିତ ମିଶି ତାଙ୍କୁ ସେଇ ଅନୁରୋଧ କରନ୍ତି । ପଲିକ୍ସେନିସ୍ ଅଗତ୍ୟା ବୋହେମିୟା ଯାତ୍ରା ସ୍ଥଗିତ ରଖନ୍ତି ।

ଲିଓନ୍ତିସଙ୍କର ମନେହୁଏ , ତାଙ୍କର ନୁହେଁ , ରାଣୀଙ୍କର ଅନୁରୋଧରେ ହିଁ ବନ୍ଧୁ ତାଙ୍କର ଏ ଯାତ୍ରା ବନ୍ଦ କରିଛନ୍ତି ।

ସନ୍ଦେହର ଛୋଟ କୀଟଟିଏ ଲିଓନ୍ତିସଙ୍କର ମନଭିତରେ ପ୍ରବେଶ କରିଗଲା । ସେ ଏତେକରି କହିଲେ । ବନ୍ଧୁ ତାଙ୍କ କଥାରେ ରାଜି ହେଲେ ନାହିଁ, ଅଥଚ ରାଣୀଙ୍କର ପଦେ କଥାରେ ତାଙ୍କର ଯାତ୍ରା ସ୍ଥଗିତ ହୋଇଗଲା-ତେବେ କ'ଣ ... । ସେଇ ମୁହୂର୍ତ୍ତରୁ ରାଜା ନିଜ ରାଣୀ ଆଉ ବନ୍ଧୁଙ୍କର ସବୁ ଆଚରଣ ଭିତରୁ ଅନ୍ୟ ରକମର ବ୍ୟାଖ୍ୟା ଖୋଜିବାକୁ ଲାଗିଲେ । ଯେତେଥର ଏକଥା ତାଙ୍କ ମନକୁ ଆସେ ତାଙ୍କର କ୍ରୋଧ ସେତେ ଉଗ୍ର ହୋଇଉଠେ । ଦୁହିଁଙ୍କର

ସ୍ୱଚ୍ଛନ୍ଦ ମିଳାମିଶା, ହସଖୁସି ସବୁକିଛିର ଭିତରେ ସେ ଦେଖିବାକୁ ପାଆନ୍ତି ବିଶ୍ୱାସଘାତକତା ଆଉ ଚାରିତ୍ରିକ ଦୁର୍ବଳତାର ସ୍ପଷ୍ଟ ଝଲକ । ତାଙ୍କର ଦୃଢ଼ ବିଶ୍ୱାସ ହୁଏ ରାଣୀ ଏଣିକି ବନ୍ଧୁଙ୍କ ପ୍ରତି ଅଧିକ ମନୋଯୋଗୀ ହୋଇ ପଡୁଛନ୍ତି । ହିଂସାର ଯେଉଁ ଅଗ୍ନିଶିଖାଟି କ୍ଷୁଦ୍ର ରୂପରେ ଆତ୍ମପ୍ରକାଶ କରିଥିଲା, ସନ୍ଦେହର ପବନ ବାଜି ତାହା ଦାଉ ଦାଉ ହୋଇ ଜଳିବାକୁ ଆରମ୍ଭ କରେ । ପରିବର୍ତ୍ତନର ଏଇ ରୂପ ବନ୍ଧୁଙ୍କ ଆଖିରେ ପଡ଼େ, ତେବେ ସେ ଏହାର କାରଣଟା ଜାଣିପାରନ୍ତି ନାହିଁ । ରାଣୀ ଅବଶ୍ୟ ଏ ସବୁର କିଛି ଧାର୍ ଧାରନ୍ତି ନାହିଁ । ତାଙ୍କର ସରଳ ଆଉ ଅକପଟ ମନ ନେଇ ସେ ସବୁବେଳେ ସ୍ୱାମୀଙ୍କର ସନ୍ତୋଷ ବିଧାନ ନିମନ୍ତେ ତତ୍ପର ଥାଆନ୍ତି । ତେଣୁ ସ୍ୱାମୀଙ୍କ ନିକଟରେ ତାଙ୍କର ପ୍ରିୟ ବନ୍ଧୁଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିବାରେ ତାଙ୍କର ଦ୍ୱିଧା ନ ଥାଏ। ଏଇ ପ୍ରଶଂସା ଯେ ସ୍ୱାମୀଙ୍କ ମନରେ କିଭଳି ପ୍ରତିକୂଳ ପ୍ରତିକ୍ରିୟା ସୃଷ୍ଟି କରୁଛି, ତାହା ସେ ବୁଝିପାରନ୍ତି ନାହିଁ ।

ଏହିଭଳି ଲିଓନ୍ତିସଙ୍କର ଯାହା କିଛି ସଦ୍‌ଗୁଣ ଥିଲା, ସେ ସବୁ ହିଂସାର କଳା ଛାଇ ତଳେ ଢାଙ୍କି ହୋଇଯାଏ । ସ୍ତ୍ରୀ ବା ବନ୍ଧୁଙ୍କ ପ୍ରତି ତାଙ୍କର ଯେଉଁ ଅମାପ ସ୍ନେହ ଥିଲା, ଏବେ ତାହା ହିଂସା ଏବଂ ଘୃଣାରେ ରୂପାନ୍ତରିତ ହୁଏ । ଲିଓନ୍ତିସ ଗୋପନରେ ତାଙ୍କର ଅନୁଗତ ପାରିଷଦ କ୍ୟାମିଲୋଙ୍କୁ ଡକାଇ ପଠାନ୍ତି । ସବୁ କଥା ତାଙ୍କୁ ଖୋଲି କହନ୍ତି । ଏମାନେ ଯେଉଁ ଅନ୍ୟାୟ କରୁଛନ୍ତି, ତା'ର ଶାସ୍ତି ନିଶ୍ଚୟ ଭୋଗିବାକୁ ପଡ଼ିବ- ଏ କଥା ମଧ୍ୟ ଜଣାଇ ଦିଅନ୍ତି । କ୍ୟାମିଲୋଙ୍କୁ ରାଜାଙ୍କର ଏଇ କ୍ରୋଧର ନିରାକରଣ କରିବାକୁ ପଡିବ : ପଲିକ୍ସେନିସ୍‌ଙ୍କୁ ହତ୍ୟା କରି । ହତ୍ୟା କଥା ଶୁଣି କ୍ୟାମିଲୋ ବିଚରା ସ୍ତବ୍ଧ ହୋଇଯାଆନ୍ତି । ସେ ଅଭିଜାତ ବଂଶର ସନ୍ତାନ, ପୁଣି ବିବେକୀ ଆଉ ଦୂରଦର୍ଶୀ ମଧ୍ୟ । ସେ ବୁଝିଯାଆନ୍ତି, ରାଜା ହିତାହିତ ଜ୍ଞାନ ହରାଇଛନ୍ତି । ବର୍ତ୍ତମାନ ସେ ଯଦି ତାଙ୍କ କଥାର ପ୍ରତିବାଦ କରିବେ, ତେବେ ରାଜା ଆହୁରି କ୍ରୁଦ୍ଧ ହେବେ । ଏଭଳିକି ତାଙ୍କର ମୁଣ୍ଡ କାଟ ହୁକୁମ ଦେଇପାରନ୍ତି । କିନ୍ତୁ ରାଜାଙ୍କର ଆଦେଶ ମାନି ଯଦି ସେ ଏଇ ଅକାରଣ ହତ୍ୟାରେ ସାମିଲ୍ ହେଉଛନ୍ତି ତେବେ ସିସିଲିର ଗୌରବ ନଷ୍ଟ ହେବ । ତାହା ସେ କଦାପି ହେବାକୁ ଦେବେ ନାହିଁ । ପ୍ରଥମେ ସେ ରାଜାଙ୍କର ମିଥ୍ୟା ସନ୍ଦେହ ଦୂର କରିବାକୁ ଚେଷ୍ଟା କରନ୍ତି ଏବଂ ସେଥିରେ ବ୍ୟର୍ଥ ହୋଇ ତାଙ୍କର ଆଦେଶ ପାଳନ କରିବାକୁ ରାଜି ହୋଇଯାଆନ୍ତି । ମନେ ମନେ ସ୍ଥିର କରନ୍ତି, ଏଭଳି ଅନ୍ୟାୟ କାମ ସେ କଦାପି କରିବେ ନାହିଁ । ଏଥିରେ ରାଜରୋଷ ତାଙ୍କ ଉପରେ ପଡ଼ିବାର ଆଶଙ୍କା ଥିବାରୁ ସେ ରାଜ୍ୟ ତ୍ୟାଗ କରି ଅନ୍ୟତ୍ର ଚାଲିଯିବାକୁ ସ୍ଥିର କରିନିଅନ୍ତି । ସେ ଗୋପନରେ ପଲିକ୍ସେନିସ୍‌ଙ୍କୁ ଏଇ ଷଡ଼୍‌ଯନ୍ତ୍ରର କଥା ଜଣାଇଦିଅନ୍ତି । ଏକଥା ମଧ୍ୟ ଜଣାନ୍ତି ଯେ, ଏହା ପରେ ସେ ନିଜେ ନିରାପଦରେ ସିସିଲିରେ ରହିବା ସମ୍ଭବ ନୁହେଁ । ତେଣୁ ସେ ମଧ୍ୟ ପଲିକ୍ସେନିସ୍‌ଙ୍କ ସହିତ ବୋହେମିଆ ଚାଲିଯିବାକୁ ଚାହାନ୍ତି । ସେଠାରେ ରାଜାଙ୍କ ଅଧୀନରେ ଯେକୌଣସି କାମ କରିବାକୁ ସେ ରାଜି ଅଛନ୍ତି ।

କ୍ୟାମିଲୋଙ୍କ ଏଇ ପ୍ରସ୍ତାବରେ ପଲିକ୍ସେନିସ୍ ରାଜି ହୁଅନ୍ତି । ଯଥାଶୀଘ୍ର ସେ ସିସିଲି ତ୍ୟାଗ କରି ବୋହେମିୟା ଯାତ୍ରା କରନ୍ତି ଏବଂ ନିରାପଦରେ ସେଠାରେ ପହଞ୍ଚିଯାଆନ୍ତି । କ୍ୟାମିଲୋ ବୋହେମିୟାର ରାଜସଭାରେ ଏକ ବିଶିଷ୍ଟ ପଦ ମଣ୍ଡନ କରି କାଳକ୍ରମେ ନିଜର ଉତ୍ତମ ସ୍ୱଭାବ ଏବଂ କର୍ମକୌଶଳ ହେତୁ ରାଜାଙ୍କର ପ୍ରଧାନ ଉପଦେଷ୍ଟା ହୋଇଯାଆନ୍ତି । ରାଜାଙ୍କର ବିଶ୍ୱସ୍ତ ବନ୍ଧୁମାନଙ୍କ ମଧ୍ୟରୁ ସେ ହୁଅନ୍ତି ଅନ୍ୟତମ ।

କ୍ୟାମିଲୋଙ୍କ ସହିତ ପଲିକ୍ସେନିସ୍‌ଙ୍କର ଏଇ ହଠାତ୍ ଅନ୍ତର୍ଦ୍ଧାନ ଲିଓନ୍ତିସଙ୍କର ରାଗକୁ ଆହୁରି ବଢ଼ାଇଦିଏ । ପଲିକ୍ସେନିସ୍ ଯେ ଯଥାର୍ଥରେ ଅପରାଧୀ ଏଥିରେ ତାଙ୍କର କୌଣସି ସନ୍ଦେହ ରୁହେ ନାହିଁ । ଉତ୍ତେଜନା ରୋକି ନ ପାରି ସେ ତତ୍‌କ୍ଷଣାତ୍ ରାଣୀଙ୍କ ପାଖକୁ ଯାଆନ୍ତି ଏବଂ ତାଙ୍କୁ ସ୍ପଷ୍ଟ ଭାବରେ ବ୍ୟଭିଚାର ଦୋଷରେ ଅଭିଯୁକ୍ତ କରନ୍ତି । ରାଣୀ ସେତେବେଳେ ତାଙ୍କର ପ୍ରିୟ ସନ୍ତାନ ମାମିଲିୟସ୍ ସାଙ୍ଗରେ ଖେଳୁଥିଲେ । ହଠାତ୍ ଏହିଭଳି ଅଭିଯୋଗ ଶୁଣି ସେ ଭାବନ୍ତି ଯେ, ରାଜା ତାଙ୍କ ସହିତ ଥଟ୍ଟା କରୁଛନ୍ତି । ତେବେ ରାଜାଙ୍କର ପ୍ରଚଣ୍ଡ ରାଗ ଏବଂ ଉତ୍ତେଜିତ ଅବସ୍ଥା ଦେଖି ବୁଝିପାରନ୍ତି ଯେ ଏହା ରସିକତା ନୁହେଁ, ତାଙ୍କର କପାଳ ଫାଟିଛି ।

ନିଜର ନିର୍ଦ୍ଦୋଷତା ପ୍ରମାଣ କରିବାକୁ ସେ ଚେଷ୍ଟା କରନ୍ତି । କିନ୍ତୁ ରାଜା ତାହା ଶୁଣିବାକୁ ଆଦୌ ପ୍ରସ୍ତୁତ ହୁଅନ୍ତି ନାହିଁ । ସେ ସେତେବେଳକୁ ପ୍ରାୟ ବଦ୍ଧ ଉନ୍ମାଦ । ରାଣୀଙ୍କ ପାଖରୁ ଶିଶୁ ପୁତ୍ରକୁ ଛଡ଼ାଇ ନେଇ ସେ ତାଙ୍କୁ କାରାଗାରରେ ନିକ୍ଷେପ କରିବାକୁ ଆଦେଶ ଦିଅନ୍ତି । ଶିଶୁଟି ଏଇ ଟଣାଟଣି ଭିତରେ କାନ୍ଦିବାକୁ ଲାଗେ । ମାଆର ପାଖ ଛାଡ଼ିବାକୁ ଆଦୌ ରାଜି ହୁଏ ନାହିଁ । ରାଣୀ ନିର୍ବାକ୍ ହୋଇଯାଆନ୍ତି । କାନ୍ଦିବା ପାଇଁ ମଧ୍ୟ ତାଙ୍କର ଆଉ ଶକ୍ତି ନ ଥାଏ । ରାଣୀଙ୍କର ସହଚରୀମାନେ ଏ ଅକାଳ ବଜ୍ରପାତ ଭଳି ଘଟଣାରେ ସ୍ତମ୍ଭୀଭୂତ ହୋଇଯାଅନ୍ତି । ହାର୍ମିଓନ୍‌ଙ୍କ ଭଳି ନିଷ୍ପାପ ଏବଂ ନିରପରାଧ ନାରୀଙ୍କ ଭାଗ୍ୟରେ ଶେଷରେ ଏଇଭଳି ମିଥ୍ୟା ଅପବାଦ ! ମାଙ୍କୁ ଛାଡ଼ି ଶିଶୁ ପୁତ୍ରର ଅବସ୍ଥା କ୍ରମେ ଖରାପ ହେବାରେ ଲାଗେ । ସେ ଖିଆପିଆ ଛାଡ଼ିଦିଏ । ଧୀରେ ଧୀରେ ତା'ର ଶରୀର ଶୀର୍ଣ୍ଣ ହୋଇଯାଏ । ଶୋଇଥିବା ଅବସ୍ଥାରେ ସେ ହଠାତ୍ କାନ୍ଦିଉଠେ । ତା'ର ଦୁଃଖ କେହି ବୁଝିପାରନ୍ତି ନାହିଁ ।

ରାଜ୍ୟର ଜନତା କିନ୍ତୁ ରାଣୀଙ୍କ ସମ୍ପର୍କରେ ରାଜାଙ୍କର ଅଭିଯୋଗକୁ ବିଶ୍ୱାସ କରୁ ନ ଥିଲେ । ରାଣୀଙ୍କର ନିଷ୍ଠା, ପାତିବ୍ରତ୍ୟ, ସତୀତ୍ୱ-ଏସବୁ ପ୍ରତି ସେମାନଙ୍କର ସମ୍ପୂର୍ଣ୍ଣ ଆସ୍ଥା ଥିଲା । କିଛି ଗଣ୍ୟମାନ୍ୟ ବ୍ୟକ୍ତି ରାଣୀଙ୍କ ସମର୍ଥନରେ କିଛି କହିବାକୁ ରାଜାଙ୍କୁ ଭେଟିବା-ପାଇଁ ସ୍ଥିର କରନ୍ତି । କାରଣ ରାଣୀଙ୍କର ବନ୍ଦୀଦଶା ସେମାନଙ୍କୁ ଦୁଃଖିତ କରୁଥିଲା ରାଜା କିନ୍ତୁ କାହାରି କିଛି କଥା ଶୁଣନ୍ତି ନାହିଁ । ଶେଷ ପର୍ଯ୍ୟନ୍ତ ଡେଲଫିକୁ ଦୁଇଜଣ କର୍ମଚାରୀଙ୍କୁ ପଠାଇବା ନିମନ୍ତେ ସ୍ଥିର କରାଯାଏ । ଡେଲଫି ସହରରେ ରହିଛି ସୂର୍ଯ୍ୟଦେବଙ୍କର ମନ୍ଦିର । ସମସ୍ତଙ୍କର ବିଶ୍ୱାସ- ଆପୋଲୋ ମନ୍ଦିରର ପୂଜାରୀ-ପୂଜାରିଣୀଙ୍କ ମାଧ୍ୟମରେ ଦେବତା ସତ୍ୟ କଥା କହିଥାଆନ୍ତି ।

ସମସ୍ତେ ତାଙ୍କୁ ମାନିନିଅନ୍ତି। ଏଭଳିକି ରାଜା ମଧ୍ୟ ଏହାକୁ ଅସ୍ୱୀକାର କରିପାରିବେ ନାହିଁ । ଲିଓନ୍ଟିସ ଡେଲଫିକୁ ଦୁଇଜଣ ବିଶ୍ୱସ୍ତ କର୍ମଚାରୀଙ୍କୁ ପ୍ରେରଣ କରନ୍ତି ଏବଂ ସେମାନଙ୍କୁ ନିର୍ଦ୍ଦେଶ ଦିଅନ୍ତି ଯେ, ସେମାନେ ଉପାସିକାମାନଙ୍କଠାରୁ ନିମ୍ନୋକ୍ତ ଦୁଇଟି ବିଷୟର ସତ୍ୟତା ବୁଝିଆସିବେ । (୧) ରାଣୀ ଚରିତ୍ରହୀନା କିମ୍ବା ନୁହେଁ। (୨) ବନ୍ଧୁ ପଲିକ୍ସେନିସ୍ ବିଶ୍ୱାସଘାତକ କିମ୍ବା ନୁହେଁ ।

ଏହା ଭିତରେ ବନ୍ଦିଶାଳାରେ ରାଣୀ ଏକ ସୁନ୍ଦରୀ କନ୍ୟାର ଜନନୀ ହୁଅନ୍ତି । ଏତେ ଦୁଃଖ ଭିତରେ ମଧ୍ୟ କନ୍ୟାର ମୁହଁଟି ଦେଖିଦେଲେ ରାଣୀ ସବୁ କଷ୍ଟ ଭୁଲିଯାଆନ୍ତି । ଘଣ୍ଟା ଘଣ୍ଟା ଧରି ତାକୁ କୋଳରେ ଧରି ସବୁ ଯନ୍ତ୍ରଣା ଭୁଲିଯିବାକୁ ଚେଷ୍ଟା କରନ୍ତି । ତା'ର ସେବା ଯତ୍ନ କରୁ କରୁ ତାଙ୍କର ସମୟ ପାଣିପରି କୁଆଡ଼େ ବହିଯାଏ । ତେବେ ଏଇ ସାମାନ୍ୟ ସୁଖ ଟିକକ ବି ତାଙ୍କ ଭାଗ୍ୟରେ ନ ଥାଏ । ଦିନେ ରାଣୀଙ୍କର ପ୍ରିୟ ବନ୍ଧୁ ପଲିନା କାରାଗାରର ବାହାରକୁ ଆସନ୍ତି । ନିଜର ପ୍ରିୟ ସଖୀଙ୍କର ଏ ଦୁଃଖ ପଲିନା ସହ୍ୟ କରିପାରୁ ନ ଥିଲେ । ସେ କାରାଗାରର ଦରଜା ନିକଟରେ ଠିଆହୋଇ ରାଣୀଙ୍କର ପରିଚାରିକାକୁ ଡାକି ଶିଶୁ ମନ୍ତ୍ରାଟିକୁ ତାଙ୍କ ପାଖକୁ ନେଇ ଆସିବାକୁ କହିଲେ । ରାଣୀଙ୍କ ପକ୍ଷରୁ ସେ ରାଜାଙ୍କ ନିକଟରେ ଆବେଦନ କରିବେ । ତାଙ୍କର ଧୃଢ଼-ବିଶ୍ୱାସ ଫୁଲ ଭଳି ନିଷ୍ପାପ ଏଇ ଶିଶୁର ମୁହଁଟିକୁ ଥରେ ଅନାଇଦେଲେ ରାଜା ତାଙ୍କର ସବୁ ରାଗ ଏବଂ ଅଭିମାନ ଭୁଲିଯିବେ । ପଲିନା ଝିଅଟିକୁ ବୁକୁରେ ଧରି ସାହସର ସହିତ ରାଜାଙ୍କର ମୁହାଁମୁହିଁ ହୁଅନ୍ତି । ଶିଶୁଟିକୁ ରାଜାଙ୍କର ପାଦତଳେ ଗଡ଼ାଇଦେଇ ଦୃଢ଼ତାର ସହ ରାଜାଙ୍କର ନିଷ୍ଠୁରତାର ତୀବ୍ର ନିନ୍ଦା କରନ୍ତି । ରାଣୀ ଯେ ସକଳ ପ୍ରକାର ଅପରାଧର ବହୁ ଉର୍ଦ୍ଧ୍ୱରେ, ଏକଥା ମଧ୍ୟ ଜଣାଇ ଦିଅନ୍ତି । ମାତ୍ର ମଣିଷର ସ୍ୱଭାବ ବିଷୟରେ ପଲିନାଙ୍କର ହୁଏତ ଧାରଣା ନ ଥିଲା । ତା'ର ବିଶ୍ୱାସ ଉପରେ ଆଞ୍ଚ ଆସିଲେ ସେ ଯେ କ୍ରୋଧରେ ଅନ୍ଧ ହୋଇଯାଏ । ଏଇ ସାଧାରଣ ସତ୍ୟଟି ସେ ଜାଣି ନ ଥିଲେ ।

ଲିଓନ୍ଟିସ ରାଗରେ ଜଳିଉଠି ପଲିନାଙ୍କୁ ସ୍ପଷ୍ଟ ଭାବରେ ଜଣାଇ ଦିଅନ୍ତି ଯେ ଏ ସନ୍ତାନର ପିତୃତ୍ୱକୁ ସେ ଅସ୍ୱୀକାର କରୁଛନ୍ତି ଏବଂ ତାଙ୍କୁ ତୁରନ୍ତ ଏଠାରୁ ବାହାରିଯିବାକୁ ଆଦେଶ ଦେଉଛନ୍ତି । ରାଜାଙ୍କର ବିଶ୍ୱସ୍ତ ଅନୁଚର ଆଣ୍ଟିଗୋନାସ୍ ସେଠାରେ ଉପସ୍ଥିତ ଥାଆନ୍ତି । ସେ ପଲିନାଙ୍କର ସ୍ୱାମୀ । ରାଜା ତାଙ୍କୁ ଡାକନ୍ତି । ପଲିନାଙ୍କର ଔଦ୍ଧତ୍ୟ ନିମନ୍ତେ ତାଙ୍କୁ ଯଥେଷ୍ଟ ତିରସ୍କାର କରନ୍ତି । ଏହାର ଶାସ୍ତିସ୍ୱରୂପ ଶିଶୁଟିକୁ ତୁରନ୍ତ ହତ୍ୟା କରିବାକୁ ତାଙ୍କୁ ଆଦେଶ ଦିଅନ୍ତି । ପ୍ରଭୁଙ୍କର ଏ ନିଷ୍ଠୁର ଆଦେଶ ପାଳନ କରିବା ଆଣ୍ଟିଗୋନାସ୍‌ଙ୍କ ପକ୍ଷରେ ଅସମ୍ଭବ । ସେ ଜଣାଇ ଦିଅନ୍ତି ଯେ ରାଜାଙ୍କର ଏଇ ଅନ୍ୟାୟ ଆଦେଶ ବ୍ୟତୀତ ତାଙ୍କର ଅନ୍ୟ ଯେକୌଣସି ଆଦେଶ ପାଳନ କରିବାକୁ ସେ ପ୍ରସ୍ତୁତ ଅଛନ୍ତି ।

ରାଜା କିଛି ସମୟ ଚିନ୍ତା କରନ୍ତି । ତା'ପରେ କହନ୍ତି ତାହା ହେଲେ ଶିଶୁଟିକୁ ସମୁଦ୍ରପାରି ଯେକୌଣସି ନିର୍ଜନ ପ୍ରାନ୍ତରରେ ବିସର୍ଜନ ଦେଇ ଆସ । ଯଦି ଏଇ ଆଦେଶ ଅଚିରେ ପାଳିତ ନ ହୁଏ, ତେବେ ତମକୁ ମୃତ୍ୟୁଦଣ୍ଡ ଭୋଗିବାକୁ ହେବ । ପଲିନାକୁ ମଧ ସେଇ ଦଣ୍ଡ ମିଳିବ । ନିରୁପାୟ ଆଣ୍ଟିଗୋନାସ୍ ଶିଶୁଟିକୁ ନେଇ ବାହାରି ଯାଆନ୍ତି ।

॥ ୨ ॥

ସୂର୍ଯ୍ୟଦେବଙ୍କର ସିଦ୍ଧାନ୍ତ ଜାଣିବା ପାଇଁ ରାଜାଙ୍କର ଦୁଇଜଣ ବିଶ୍ୱସ୍ତ କର୍ମଚାରୀ ଡେଲ୍‌ଫି ଯାତ୍ରା କରନ୍ତି । ତେବେ ଲିଓନ୍ତିସ ଏତେ ଧୈର୍ଯ୍ୟହରା ହୋଇପଡ଼ନ୍ତି ଯେ, ସେ ସେମାନଙ୍କର ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ରାଜି ହୁଅନ୍ତି ନାହିଁ । ରାଣୀଙ୍କର ଚାରିତ୍ରିକ -ଶୁଦ୍ଧତା ବିଚାର କରିବା ନିମନ୍ତେ ସେ ତାଙ୍କୁ ପ୍ରକାଶ୍ୟ ଅଦାଲତରେ ଉପସ୍ଥିତ କରାନ୍ତି । ନ୍ୟାୟ ବିଚାର ନାମରେ ଆହୁରି କିଛି ଅନ୍ୟାୟକୁ ପ୍ରଶ୍ରୟ ଦିଆଯାଏ । ରାଜ୍ୟର ବିଶିଷ୍ଟ ଜନତାଙ୍କ ସମ୍ମୁଖରେ ରାଣୀଙ୍କୁ ଚରିତ୍ରହୀନତାର ଅପବାଦ ଦିଆଯାଇ ଅକାରଣରେ ଯଥେଷ୍ଟ ତିରସ୍କାର କରାଯାଏ । ଏତେ ଦୁଃଖ ଭିତରେ ବି ରାଣୀ ସତ୍ୟ ଗୋପନ କରନ୍ତି ନାହିଁ । ସେ ବାରମ୍ବାର ପଲିକ୍ସେନିସ୍ ଏବଂ କ୍ୟାମିଲୋ - ଏ ଉଭୟଙ୍କର ନିର୍ଦ୍ଦୋଷତା ପ୍ରମାଣ କରିବାରେ ଲାଗନ୍ତି । ଏହାର ନିଷ୍ଠୁର ପରିଣତି ସମ୍ପର୍କରେ ଭଲ ଭାବରେ ଜାଣିଥିଲେ ମଧ ସେ ନିଜର ବକ୍ତବ୍ୟରୁ ତିଳେମାତ୍ର ଓହରନ୍ତି ନାହିଁ ।

ମୃତ୍ୟୁପାଇଁ ତାଙ୍କର ଆଉ ଭୟ ନ ଥାଏ । ତାଙ୍କ ବୁକୁରୁ ତାଙ୍କର ସନ୍ତାନମାନଙ୍କୁ ଛଡ଼ାଇ ନିଆଯାଇଛି । ସ୍ୱାମୀଙ୍କର ସ୍ନେହ ମମତା ସେ ହରାଇ ସାରିଛନ୍ତି । ଆଉ ଏ ଅବାଞ୍ଛିତ ଆଉ ଲାଞ୍ଛିତ ଜୀବନ ପାଇଁ ତାଙ୍କର ମମତା ବା ରହିବ କାହିଁକି ?

କେବଳ ମାତ୍ର ଡେଲ୍‌ଫିର ସିଦ୍ଧାନ୍ତ ଜାଣିବା ପାଇଁ ସେ ଅପେକ୍ଷା କରନ୍ତି । ସ୍ୱାମୀଙ୍କ ନିକଟରେ ସମଗ୍ର ସିସିଲିର ଜନତା ଆଗରେ ମିଥ୍ୟା ଅପବାଦରେ ସେ କଳଙ୍କିନୀ ସାବ୍ୟସ୍ତ ହୋଇସାରିଛନ୍ତି । ଯେତେ ଯାହା ହେଲେ ବି ତାଙ୍କର ହୃତ ସନ୍ତାନଙ୍କୁ ସେ ଆଉ ଫେରିପାଇବେ ନାହିଁ । ତାଙ୍କର ଲୁପ୍ତ ସମ୍ମାନର ପୁନରୁଦ୍ଧାର ମଧ ସମ୍ଭବ ନୁହେଁ । ସେ ଖାଲି ଦେବତାଙ୍କର ସିଦ୍ଧାନ୍ତ ଶୁଣିଦେଲେ ଏଠାରୁ ବିଦାୟ ନେବେ ।

ଠିକ୍ ସେହି ସମୟରେ ଡେଲ୍‌ଫିରୁ ଲୋକ ଫେରିଆସନ୍ତି । ଶିଲ୍ ମୋହର ଥିବା ଗୋଟିଏ ଲଫାପା ଅଦାଲତରେ ଉପସ୍ଥାପିତ କରନ୍ତି । ଏହାରି ଭିତରେ ରହିଛି ଦେବତାଙ୍କ ନିର୍ଦ୍ଦେଶ ଆଉ ରାଣୀଙ୍କର ଭାଗ୍ୟ ।

ଅତ୍ୟନ୍ତ ଆଗ୍ରହରେ ରାଜା ସିଲ୍ ଭାଙ୍ଗି ଦେବତାଙ୍କର ସିଦ୍ଧାନ୍ତ ପଢ଼ିବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ଆଦେଶ ପାଳିତ ହୋଇଯାଏ । ଜଣେ ପଦସ୍ଥ କର୍ମଚାରୀ ଦେବବାଣୀକୁ ପଢ଼ିବା ଆରମ୍ଭ କରନ୍ତି ।

ଲିଓନ୍ତିସଙ୍କ କାନରେ ବଜ୍ରର ଗମ୍ଭୀର ଗର୍ଜନ ତୁଲ୍ୟ ଦୈବବାଣୀର ପ୍ରତିଟି ଅକ୍ଷର ନିନାଦିତ ହୁଏ । ସେଥିରେ କୁହାଯାଇଛି, ହାର୍ମିଓନ୍ ନିର୍ଦ୍ଦୋଷ, କ୍ୟାମିଲୋ ହେଉଛନ୍ତି ଜଣେ ରାଜଭକ୍ତ ସେବକ । ରାଜା ଲିଓନ୍ତିସ ହେଉଛନ୍ତି ଜଣେ ଈର୍ଷାପରାୟଣ, ଅତ୍ୟାଚାରୀ ଶାସକ, ସେ ନିଜେ ହେଉଛନ୍ତି ନିଷ୍ପାପ ଶିଶୁ କନ୍ୟାର ପିତା । ତାକୁ ଯଦି କୌଣସିମତେ ରାଜ୍ୟକୁ ଫେରାଇ ଅଣା ନ ଯାଏ, ତେବେ ରାଜା ନିର୍ବଂଶ ହୋଇଯିବେ ।

ଦେବତାଙ୍କର ନିର୍ଦ୍ଦେଶ ପାଠ ଶେଷ ହୋଇଯାଏ । ଉପସ୍ଥିତ ଜନତା ରୁଦ୍ଧଶ୍ୱାସରେ ଏହାର ପ୍ରତିଟି ଶବ୍ଦକୁ ଶୁଣିଯାଆନ୍ତି । ସେମାନଙ୍କ ମୁଣ୍ଡ ଉପରୁ ସତେଯେପରି ଗୋଟିଏ ଗୁରୁଭାର ଓହ୍ଲାଇଯାଏ । ଅକାରଣରେ ଯେଉଁମାନେ ନିର୍ଯାତିତ ହୋଇଛନ୍ତି, ସେମାନଙ୍କର ନିର୍ଦ୍ଦୋଷତାର ପ୍ରତ୍ୟକ୍ଷ ପ୍ରମାଣ ପାଇଯିବା ପରେ ସେମାନେ ଆନନ୍ଦରେ ବିହ୍ୱଳ ହୋଇ ପଡ଼ନ୍ତି । ଖୁସି ହୁଅନ୍ତି ନାହିଁ କେବଳ ରାଜା । ସେ ଏହି ଦୈବବାଣୀକୁ ରାଣୀଙ୍କର ସହଚରୀ ପଲିନାଙ୍କର ଏକ ସୁପରିକଳ୍ପିତ ଷଡ଼ଯନ୍ତ୍ର ମନେକରନ୍ତି । ଏହାକୁ ସେ କଦାପି ବିଶ୍ୱାସ କରିବେ ନାହିଁ । ପ୍ରକୃତ ସତ୍ୟ ଉଦ୍‌ଘାଟନ ନିମନ୍ତେ ସେ ପୁନର୍ବାର ଡେଲ୍‌ଫିକୁ ଲୋକ ପଠାଇବେ ।

ଠିକ୍ ଏତିକିବେଳେ ଅନ୍ତଃପୁରରୁ ଖବର ଆସେ, ମାଆଙ୍କ ପାଇଁ କାନ୍ଦି କାନ୍ଦି ରାଜପୁତ୍ର ମାମିଲିୟୁସ୍ ମୃତ୍ୟୁ ବରଣ କରିଛି । ଏ ସମ୍ବାଦରେ ଉପସ୍ଥିତ ଜନତା ଦୁଃଖରେ ସତେଯେମିତି ପଥର ହୋଇଯାଆନ୍ତି । ରାଣୀଙ୍କର ସହନଶକ୍ତି ଶେଷ ହୋଇ ଆସିଥିଲା । ସମ୍ବାଦ ଶୁଣୁ ଶୁଣୁ ସେ ଶୋକ ଆଉ ଦୁଃଖରେ ସଂଜ୍ଞା ହରାଇ ମାଟିରେ ଲୋଟି ପଡ଼ନ୍ତି । ରାଜା ଏକ ଅଦ୍ଭୁତ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି ।

ମାତ୍ର କେଇଟି ମୁହୂର୍ତ୍ତ ଆଗରୁ ତାଙ୍କର ଯେଉଁ ହୃଦୟ ପାଷାଣ ଭଳି କଠୋର ଥିଲା, ତାହା ଧୀରେ ଧୀରେ ବରଫ ଭଳି ତରଳିବାକୁ ଆରମ୍ଭ କରେ । ଭୂଲୁଣ୍ଠିତା ରାଣୀଙ୍କ ଆଡ଼କୁ ଅନାଇ ସେ ତାଙ୍କୁ ଅନ୍ତଃପୁରକୁ ନେଇଯିବା ପାଇଁ ପରିଚାରକମାନଙ୍କୁ ଆଦେଶ ଦିଅନ୍ତି । କହନ୍ତି, ଦେଖ, ଏହାଙ୍କର ସେବା ଯତ୍ନରେ ଯେମିତି କୌଣସି ତ୍ରୁଟି ନ ହୁଏ । ଅତିରିକ୍ତ ଶୋକର ଆଘାତରେ ରାଣୀ ମୂର୍ଚ୍ଛିତ ହୋଇ ପଡ଼ିଛନ୍ତି । ଉପଯୁକ୍ତ ଉପଚାରରେ ସେ ଶୀଘ୍ର ସୁସ୍ଥ ହୋଇ ଯିବେ ।

ପୁତ୍ରର ମୃତ୍ୟୁ ସମ୍ବାଦ ତାଙ୍କୁ ବିଚଳିତ କରିପକାଏ । ସେ ରାଣୀଙ୍କର ଯନ୍ତ୍ରଣା ହୃଦୟଙ୍ଗମ କରିପାରନ୍ତି । ଯେତେ ଯେତେ ଅନ୍ୟାୟ ସେ କରିଛନ୍ତି, ତାହା ଗୋଟି ଗୋଟି ହୋଇ ତାଙ୍କର ମନେପଡ଼େ । ଶେଷରେ ଅତି ନିଷ୍ଠୁର ଭାବେ ସେ ନିଜର ସନ୍ତାନଙ୍କୁ ଜାଣିଶୁଣି ମୃତ୍ୟୁମୁଖକୁ ଠେଲି ଦେଇଛନ୍ତି । ଏ ଦୁଃଖ ସେ କାହାକୁ କହିବେ ! ଅନୁତାପ କ'ଣ ତାଙ୍କର ଏ ଯନ୍ତ୍ରଣା ଦୂର କରିପାରିବ !

କିଛିକ୍ଷଣ ପରେ ପଲିନା ଆସି ରାଜାଙ୍କୁ ଚରମ ଆଘାତ ଦେଇ ଜଣାଇ ଦିଅନ୍ତି ଯେ, ସମସ୍ତ ଚେଷ୍ଟା ବିଫଳ କରି ରାଣୀଙ୍କର ମୃତ୍ୟୁ ହୋଇଯାଇଛି । ରାଜା ନିର୍ବାକ୍ ଦୃଷ୍ଟିରେ ଶୂନ୍ୟକୁ ଅନାଇ ରହନ୍ତି ।

ଦୀର୍ଘକାଳ ଧରି ଦୁଃଖ ଆଉ ଅପମାନର ଯେଉଁ ଆଗ୍ନେୟଗିରି ପଲିନାଙ୍କ ମନ ଭିତରେ ସୁପ୍ତ ହୋଇ ରହିଥିଲା, ତାହା ହଠାତ୍ ଅଗ୍ନି ଉଦ୍‌ଗୀରଣ କରିବାକୁ ଆରମ୍ଭ କରେ । ରାଣୀଙ୍କର ଦୁଃଖରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇ ଯାଉଥିଲା । ଉନ୍ମୁକ୍ତ ସଭା ମଧ୍ୟରେ ଦଣ୍ଡାୟମାନ ହୋଇ ସେ ରାଜାଙ୍କୁ ତୀବ୍ର ସ୍ୱରରେ ଭର୍ତ୍ସନା କରିବାକୁ ଲାଗିଲେ ।

ସେ ଉନ୍ମାଦ ଭଳି କହିଚାଲିଲେ - ଏହି ସଭାରେ ନିରୀହ ରାଜା ପଲିକ୍ସେନିସ୍‌ଙ୍କ ପ୍ରତି ଅନ୍ୟାୟ କରାଯାଇଛି । ଏ ରାଜା ନିଜର ବିଶ୍ୱସ୍ତ କର୍ମଚାରୀ କ୍ୟାମିଲୋ ଦ୍ୱାରା ଅପରାଧ କରାଇବାକୁ ଚାହିଁଛନ୍ତି । ନିଜର ପୁତ୍ରସନ୍ତାନକୁ ମୃତ୍ୟୁମୁହଁକୁ ଠେଲି ଦେଇଛନ୍ତି । ନିଜର କନ୍ୟାକୁ ଶ୍ୱାପଦସଙ୍କୁଳ ଅରଣ୍ୟରେ ବିସର୍ଜନ କରିବାକୁ ଆଦେଶ ଦେଇଛନ୍ତି । ଜଣେ ବ୍ୟକ୍ତି ଯେ ଏଭଳି ନିଷ୍ଠୁର ଆଉ ନିର୍ଦ୍ଦୟ ହୋଇପାରେ, ଏହା ସେ ପୂର୍ବରୁ ଦେଖି ନ ଥିଲେ । ରାଣୀଙ୍କ ପ୍ରତି ଯେଉଁ ନିର୍ମମ ବ୍ୟବହାର କରାଯାଇଛି, ତାହାର ତୁଳନା ନାହିଁ । ଏହି ଅତ୍ୟାଚାର ସହି ନ ପାରି ସେଇ ସମ୍ପୂର୍ଣ୍ଣ ନିରପରାଧା ପତିବ୍ରତା ନାରୀ ଅକାଳରେ ପ୍ରାଣ ବିସର୍ଜନ କରିଛନ୍ତି । ଏହାର ଶାସ୍ତି ଆପଣ ନିଶ୍ଚୟ ପାଇବେ ।

ଉଦ୍‌ବେଳିତ ହୃଦୟରେ ପଲିନା ନିଜର ବ୍ୟଥା ପ୍ରକାଶ କରିଚାଲନ୍ତି । ଏଥିପାଇଁ ତାଙ୍କୁ ଯେ ରାଜାଙ୍କର ରୋଷ ଭାଜନ ହେବାକୁ ପଡ଼ିପାରେ, ଏହା ସେ ସମ୍ପୂର୍ଣ୍ଣ ଭୁଲିଯାଆନ୍ତି ।

ଘଟଣା ଯାହା ଘଟିଯାଏ ତାହା ଲିଓନ୍ତିସଙ୍କୁ ସ୍ତବ୍ଧ କରିଦିଏ । ତାଙ୍କ ମନରେ ଭାବାନ୍ତର ସୃଷ୍ଟି ହୁଏ । ପ୍ରତିଶୋଧର କାମନାରେ ଦାଉ ଦାଉ ଜଳୁଥିବା ତାଙ୍କର ହୃଦୟ ଉପରେ ସତେ ଯେମିତି ପ୍ରଚଣ୍ଡ ବର୍ଷା ହୋଇଯାଏ । ପଲିନାଙ୍କର ଏଇ ଆକ୍ଷେପପୂର୍ଣ୍ଣ ବାକ୍ୟ ତାଙ୍କୁ ଏତେ ବିଚଳିତ କରିଦିଏ ଯେ, ସେ ତାଙ୍କୁ ଶାସ୍ତି ଦେବା କଥା ଚିନ୍ତା କରିପାରନ୍ତି ନାହିଁ । ବରଂ ଏ ଯେଉଁ ଅମାର୍ଜନୀୟ ଅପରାଧ ସେ ଗୋଟିକ ପରେ ଗୋଟିଏ କରି ଚାଲିଛନ୍ତି, କିଭଳି ଭାବରେ ତହିଁର ସଂଶୋଧନ କରାଯାଇପାରିବ, ସେ ସେ ବିଷୟ ଚିନ୍ତା କରିବାକୁ ଆରମ୍ଭ କରନ୍ତି । କରୁଣ ଦୃଷ୍ଟିରେ ପଲିନାଙ୍କ ଆଡ଼କୁ ଅନାଇ କହନ୍ତି - ମୋ ବିରୋଧରେ ତମର ଅଭିଯୋଗ ସତ୍ୟ । ତମର ଏଇ ତିରସ୍କାର ମୋର ପ୍ରାପ୍ୟ ।

ଡେଲ୍‌ଫିରୁ ଯେଉଁ ସନ୍ଦେଶ ଆସିଥିଲା, ସେସବୁ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ଏଥର ରାଜାଙ୍କର ବିଶ୍ୱାସ ହୁଏ । ଦୈବବାଣୀର ଶେଷ ଅଂଶଟି ବାରମ୍ବାର ତାଙ୍କ କାନରେ ଧ୍ୱନିତ ହୋଇଉଠେ । ଯେଉଁ ଶିଶୁକନ୍ୟାକୁ ରାଜା ନିର୍ବାସନ ଦଣ୍ଡ ଦେଇଛନ୍ତି, ତା'ର ସନ୍ଧାନ ଯଦି ନ

ମିଳେ, ତେବେ ରାଜାଙ୍କର ଆଉ କୌଣସି ଉତ୍ତରାଧିକାରୀ ରହିବେ ନାହିଁ । ରାଜକୁମାର ମାମିଲିୟୁସ୍ ମୃତ୍ୟୁ ବରଣ କରିସାରିଛି । ତାଙ୍କର ଆଉ ତେବେ ଉତ୍ତରାଧିକାରୀ କିଏ ରହିଲା ? ଯଦି କେହି ତାଙ୍କର କନ୍ୟାର ସନ୍ଧାନ ଦେଇପାରେ, ତେବେ ସେ ଏଇ ମୁହୂର୍ତ୍ତରେ ତାକୁ ନିଜର ରାଜ୍ୟ ଦାନ କରିବାକୁ ମଧ୍ୟ ପ୍ରସ୍ତୁତ ।

ଦୁଃଖ ଆଉ ଅନୁଶୋଚନାରେ ରାଜା କାତର ହୋଇ ପଡ଼ନ୍ତି । କୃତକର୍ମର ପ୍ରାୟଶ୍ଚିତ୍ତ ତାଙ୍କୁ ଯେ କୌଣସିମତେ କରିବାକୁ ହିଁ ହେବ । କିଏ ଜାଣେ, ଦୁଃଖର ଏ ଯେଉଁ ଅଥଳ ସମୁଦ୍ରରେ ସେ ଏବେ ଭାସୁଛନ୍ତି, କେବେ ତହିଁରୁ ଉଦ୍ଧାର ପାଇବେ !

ତାହା କ'ଣ ତାଙ୍କ ଜୀବଦ୍ଦଶାରେ ସମ୍ଭବ ହେବ ? କିଏ ଜାଣେ ?

॥ ୩ ॥

ଆସନ୍ତୁ, ଏଥର ତେବେ ରାଜାଙ୍କର ଶିଶୁ କନ୍ୟାଟିକୁ ନେଇ ନିୟତି ଯେଉଁ ବିଚିତ୍ର ଖେଳ ଆରମ୍ଭ କରିଛି, ସେ ବିଷୟରେ ଜାଣିବା ।

ରାଜାଦେଶରେ ଆଣ୍ଟିଗୋନସ୍ ତାକୁ ନେଇ ବାହାରି ପଡ଼ନ୍ତି । ତାଙ୍କ ପାଇଁ ଜାହାଜ ପ୍ରସ୍ତୁତ ହୋଇ ଅପେକ୍ଷା କରୁଛି । ଆଣ୍ଟିଗୋନସ୍ ଜାହାଜରେ ଉଠନ୍ତି । ଜାହାଜ ଆସି ନଙ୍ଗର ପକାଏ ବୋହେମିୟା ରାଜ୍ୟର ଏକ ଜନଶୂନ୍ୟ ଇଲାକାରେ ।

ଆଣ୍ଟିଗୋନସ୍ ଶିଶୁଟିକୁ ନେଇ ଗୋଟିଏ ଛୋଟ ନୌକା ସାହାଯ୍ୟରେ ତୀର ଲକ୍ଷ୍ୟ କରି ଯାତ୍ରା କରନ୍ତି । ଯିବା ପୂର୍ବରୁ କ୍ୟାପ୍‌ଟେନ୍ ତାଙ୍କୁ ସାବଧାନ କରି ଦେଇ କହନ୍ତି ଦେଖ, ଆକାଶର ଅବସ୍ଥା ଭଲ ନୁହେଁ । ଭୟଙ୍କର ଝଡ଼ ଉଠିବାର ସମ୍ଭାବନା । ତମେ କାମ ଶେଷ କରି ଯଥାଶୀଘ୍ର ଫେରିଆସିବ । କୂଳରୁ ବେଶି ଭିତରକୁ ମଧ୍ୟ ଯିବା ଆବଶ୍ୟକ ନାହିଁ । ଜଙ୍ଗଲରେ ହିଂସ୍ରଜନ୍ତୁ ପ୍ରଚୁର । ଭିତରକୁ ଗଲେ ବିପଦର ପୂର୍ଣ୍ଣ ସମ୍ଭାବନା ।

ଆଣ୍ଟିଗୋନସ୍ ଯଥାସମୟରେ ତୀର ଭୂମିରେ ଉପସ୍ଥିତ ହୁଅନ୍ତି । ଅଦୂରରେ ଖୋଲା ଆକାଶ ତଳେ ଘାସ ଉପରେ ଶିଶୁଟିକୁ ଶୁଆଇ ଦିଅନ୍ତି । ପାଖରେ ତା'ର ରଖି ଦିଅନ୍ତି ଛୋଟ ପୁଟୁଳିଟିଏ । ତହିଁରେ ଥାଏ କିଛି ପୋଷାକପତ୍ର, କିଛି ଅଳଙ୍କାର ଆଉ ମଣିମୁକ୍ତା । ଶିଶୁ ପିନ୍ଧିଥାଏ ରାଜକୀୟ ପରିଚ୍ଛଦ । ଆଣ୍ଟିଗୋନସ୍ ସେଥିରେ ଖଣ୍ଡେ କାଗଜ ଗୁନ୍ଥି ଦିଅନ୍ତି । ତହିଁରେ ଲେଖାଥାଏ - ଶିଶୁର ନାମ ପାର୍ଡିଟା । ସେ ସମ୍ଭ୍ରାନ୍ତ ବଂଶର ସନ୍ତାନ । ଯେ ଏହାକୁ ପାଇବେ, ସେ ଯେମିତି ଯତ୍ନର ସହିତ ତା'ର ପାଳନ କରନ୍ତି ।

ଆଣ୍ଟିଗୋନସ୍ ଭାବନ୍ତି, ଯଦି ଭାଗ୍ୟ ବଳରୁ କୌଣସି ସଦାଶୟ ଏହାର ସନ୍ଧାନ ପାଆନ୍ତି, ତେବେ ସେ ଏଇ ଅର୍ଥ ଶିଶୁଟିକୁ ପାଳନ କରିବା ପାଇଁ ଖର୍ଚ୍ଚ କରିବେ । ଯଦି ଦୁର୍ଭାଗ୍ୟକୁ କୌଣସି ହିଂସ୍ରଜନ୍ତୁ କବଳରେ ଏ ପଡ଼ିଯାଏ, ତେବେ ତାଙ୍କର ବା ଆଉ କ'ଣ କରିବାର ଅଛି ? ରାଜା ତ ତାହାହିଁ ଚାହାନ୍ତି ।

ଭାରି ହୃଦୟରେ ଆଣ୍ଟିଗୋନସ୍ ନୌକା ଆଡ଼କୁ ଫେରି ଆସୁଥାଆନ୍ତି । ଥରକୁ ଥର ପଛକୁ ଫେରି ଅନାଉ ଥାଆନ୍ତି । ଦୁଃଖରେ ତାଙ୍କର ଛାତି ଫାଟି ଯାଉଥାଏ । ପାଖରୁ ବାହାରି ପଡ଼େ ଗୋଟାଏ ହିଂସ୍ର ଭାଲୁ, ତାଙ୍କ ଉପରକୁ ଡେଇଁପଡ଼େ । ସେ ଆଉ ଫେରିପାରନ୍ତି ନାହିଁ । ସେଇଠି ତାଙ୍କର ମୃତ୍ୟୁ ହୋଇଯାଏ ।

କ୍ୟାପ୍‌ଟେନ୍ ତାଙ୍କୁ ଅପେକ୍ଷା କରୁ କରୁ ପ୍ରଚଣ୍ଡ ଝଡ଼ ମାଡ଼ିଆସେ । ଜାହାଜ ଖଣ୍ଡ ଖଣ୍ଡ ହୋଇ କାହିଁ କୁଆଡ଼େ ଭାସିଯାଏ । ନିରୀହ ଶିଶୁଟି କେଉଁଠି ରହିଲା, ବଞ୍ଚିଲା କି ମଲା ସେ ଖବର ରାଜାଙ୍କ ପାଖରେ ପହଞ୍ଚାଇବାକୁ ଜଣେ ହେଲେ ବଞ୍ଚି ରହିଲେ ନାହିଁ ।

ଈଶ୍ୱରଙ୍କ କରୁଣାରୁ ରାଜା ଲିଓନ୍ତିସଙ୍କର ସବୁ କିଛି ଥିଲା । ଅନୁଗତ ପ୍ରଜା, ପ୍ରେମଶୀଳା ପତ୍ନୀ, ବିଶ୍ୱସ୍ତ ବନ୍ଧୁ, ଦେବତାଙ୍କର ଆଶୀର୍ବାଦ ଭଳି ଦୁଇ ସନ୍ତାନ - ନିଜର ମୂର୍ଖତା ହେତୁ ସେସବୁ ହରାଇଲେ । ପତ୍ନୀ, ସନ୍ତାନ ସମସ୍ତେ ତାଙ୍କୁ ଛାଡ଼ି ଚାଲିଗଲେ । ବନ୍ଧୁ ବିଚ୍ଛେଦ ଘଟିଗଲା ।

ଏବେ ଅନୁତାପର ନିଆଁରେ ଜଳି ଜଳି ବଞ୍ଚିଥିବା ପର୍ଯ୍ୟନ୍ତ ଯନ୍ତ୍ରଣା ଭୋଗିବାକୁ ପଡ଼ିବ । ବଞ୍ଚିବାର ଇଚ୍ଛା ନାହିଁ । ତଥାପି ବଞ୍ଚିବାକୁ ହେବ ...

କିଏ ଜାଣେ ... କେତେ ଦିନ ତାଙ୍କୁ ଏଇ ମୃତ୍ୟୁ ଯନ୍ତ୍ରଣା ଭୋଗିବାକୁ ହେବ !

ବର୍ଷେ ... ଦୁଇ ବର୍ଷ ... ବର୍ଷ ବର୍ଷ ହୋଇ ଷୋହଳ ବର୍ଷ !

ବିଧାତାଙ୍କର ଲୀଳା ବୁଝିବା ସମ୍ଭବ ନୁହେଁ । ଶିଶୁଟିକୁ ନିର୍ଜନ ଦ୍ୱୀପରେ ଛାଡ଼ିବାକୁ ଆସି ଆଣ୍ଟିଗୋନସ୍ ନିଜେ ଅକାଳମୃତ୍ୟୁ ବରଣ କଲେ । ଅରକ୍ଷ ପିଲାଟି କିନ୍ତୁ ଆଶ୍ଚର୍ଯ୍ୟଜନକ ଭାବେ ରକ୍ଷା ପାଇଗଲା ।

ଜଙ୍ଗଲରେ ଥାଏ ଜଣେ ମେଣ୍ଢା ଜଗୁଆଳି । ଦୈବାତ୍ ସେଇ ବାଟ ଦେଇ ଯାଉ ଯାଉ ବୁଦା ଭିତରେ ଝିଅଟିକୁ ଦେଖିବାକୁ ପାଏ । ପୋଷାକପତ୍ର ଦେଖି ବୁଝିଯାଏ, ଏ ସାଧାରଣ ଘରର ଝିଅ ନୁହେଁ । ପୁଟୁଳିରୁ ବହୁ ମୂଲ୍ୟବାନ୍ ମଣିମୁକ୍ତା ଏବଂ ସୁନାରୁପା ମିଳେ । ଆଣ୍ଟିଗୋନସ୍‌ଙ୍କ ଚିଠିଟି ବି ହାତକୁ ଆସେ ।

ଟିକିଏ ପୂର୍ବରୁ ଜଗୁଆଳି ଭେଟିଥାଏ ଜଣେ ତରୁଣକୁ । ତା'ଠୁ ଶୁଣିବାକୁ ପାଏ ଯେ ଟିକିଏ ଦୂରରେ ଗୋଟିଏ ବଣୁଆ ଭାଲୁ ଜଣେ ଲୋକକୁ ଟିକିଟିକି କରି ଛିଣ୍ଡାଉ ଥିବାର ସେ

ଦେଖିଛି । ସେତିକିବେଳେ ସମୁଦ୍ରରେ ଉଠିଲା ପ୍ରଚଣ୍ଡ ଝଡ଼, ଆଉ ତହିଁରେ ନଙ୍ଗର ପକାଇଥିବା ଗୋଟାଏ ଜାହାଜ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି କାହିଁ କୁଆଡ଼େ ଭାସିଯିବାର ବି ସେ ଦେଖିଛି । ତରୁଣ ତ ଉତ୍ତେଜିତ ହୋଇ ଏ ସବୁର ଟିକିନିଖି ବର୍ଣ୍ଣନା କରୁଥାଏ । ତେବେ ଜଗୁଆଳି ଏ ସବୁ ବିଶ୍ୱାସ କରୁ ନ ଥାଏ । ଏମାନେ ଟିକିଏ ବାହାପିଆ ହୁଅନ୍ତି-ସେ ଜାଣେ ।

ତେବେ ଶିଶୁଟିକୁ ପାଇବା ପରେ ସେ ଆଉ ତାକୁ ଅବିଶ୍ୱାସ କରିପାରିଲା ନାହିଁ । ସବୁ ଘଟଣା ଭିତରେ ଯେମିତି ଗୋଟିଏ ସମ୍ପର୍କ ଥିବାର ତାକୁ ଦେଖାଗଲା । ସେ ବୁଝିପାରିଲା, ପିଲାଟି କୌଣସି ବୋହେମିୟାବାସୀର ନୁହଁ । ଯେଉଁ ଲୋକଟି ଭାଲୁ ହାତରେ ମଲା, ସେଇ ନିଶ୍ଚେ ତାକୁ ଏଠି ଛାଡ଼ି ଚାଲିଯାଉଥିଲା । ସେ ଲୋକ ବିଦେଶୀ-ଅନ୍ୟ ରାଜ୍ୟର-ଜାହାଜରେ ଆସିଥିଲା । ବିଶେଷ କାରଣରୁ ଏ ପିଲାକୁ ଏଠି ଛାଡ଼ି ପଳାଇ ଯାଉଥିଲା ।

ଈଶ୍ୱର ତାକୁ ଦଣ୍ଡ ଦେଲେ ।

ପିଲାଟିକୁ ଦେଖି ଜଗୁଆଳିର ମାୟା ହୁଏ । ଆହା ! କି ସୁନ୍ଦର ଝିଅ , କାହାର ଭଲା ହାତ ଯିବ, ଏମିତି ପିଲାକୁ ବଣଜଙ୍ଗଲରେ ଫୋପାଡ଼ି ଦେଇ ପଳାଇବାକୁ ! ଜଗୁଆଳି ତାକୁ ନେଇ ଘରକୁ ଫେରିଆସେ ।

ସମୟ ଗଡ଼ିଚାଲେ । ଝିଅଟି ବି ଧୀରେ ଧୀରେ ବଡ଼ ହେବାରେ ଲାଗେ । ଜଗୁଆଳି ତା'ର ବାପା । ଜଗୁଆଳି ଝିଅଟିକୁ ତା'ର ସାଧମତେ ଶିକ୍ଷା ଦୀକ୍ଷା ଦେବାକୁ ଭୁଲେ ନାହିଁ । ଦିନେ ଜଙ୍ଗଲରେ ଯାହା ଘଟିଥିଲା ସେ କଥା ସେ କାହାରିକୁ କହେ ନାହିଁ । କଥା ପାଞ୍ଚକାନ ହେଲେ, କେତେବେଳେ କିଏ କୋଉଁଠୁ ଆସି ଝିଅଟି ତା'ର ବୋଲି ଦାବି କରିପାରେ । ତେବେ ତ ତା'ର ସଂସାର ଉଚ୍ଛନ୍ନ ହୋଇଯିବ । ପାର୍ଡିଟା ତା'ର ବଡ଼ ଆଦରର । ବଡ଼ ଯତ୍ନରେ ବହୁ କଷ୍ଟରେ ସେ ତାକୁ ବଢ଼ାଇଛି । ସେ ଅନ୍ୟର ହୋଇଗଲେ ତା'ର ଆଖି ଫୁଟିଯିବ... ସଂସାର ହୋଇଯିବ ମରୁଭୂମି ।

ଝିଅର ଅତୀତ ବରଂ ସେମିତି ଅନ୍ଧାରରେ ଥାଉ !

ବର୍ଷ ବର୍ଷ ଧରି ଜୀବନର ଦୀର୍ଘ ଷୋହଳଟି ବର୍ଷ ପାର୍ଡିଟା ଏଇ ମେଣ୍ଢା-ଜଗୁଆଳି ଘରେ କଟାଇଛି । ଶୈଶବ, କୈଶୋର କଟାଇ ଆଜି ଆସି ଯୌବନର ପାଖରେ ପହଞ୍ଚିଯାଇଛି । ଏଇ ଅରଣ୍ୟ ହିଁ ହେଉଛି ତା'ର ସଂସାର । ଏଇ ଜଗୁଆଳି ହିଁ ହେଉଛି ତା'ର ବନ୍ଧୁ ଆତ୍ମୀୟ ସୋଦର - ପିତା ସବୁ ।

ରାଜା ପଲିକ୍ସେନିସ୍‌ଙ୍କର ଗୋଟିଏ ମାତ୍ର ପୁଅ-ଫ୍ଲୋରିଜେଲ । ଏଇ ପୁଅକୁ ଜନ୍ମଦେଇ ତାଙ୍କର ସ୍ତ୍ରୀ ମୃତ୍ୟୁ ବରଣ କରିଥିଲେ । ତା'ପରେ ସେ ଆଉ ବିବାହ କରି ନାହାନ୍ତି । ପୁଅକୁ ଚାହିଁ ସମୟ କଟାଇଦେଇଛନ୍ତି । ଫ୍ଲୋରିଜେଲ୍ ଥରେ ଜଙ୍ଗଲକୁ ଶିକାର କରିବାକୁ ଯାଇଥିଲା ବେଳେ

ତାଙ୍କ ଆଖି ପଡ଼େ ପାର୍ଡିଟା ଉପରେ । ଭାଗ୍ୟର ଖେଳ । ତାକୁ ଦେଖିବାମାତ୍ରେ ରାଜକୁମାର ମୁଗ୍ଧ ହୋଇ ପଡ଼ନ୍ତି । ଖବର ନେଇ ଜାଣନ୍ତି ସୁନ୍ଦରୀ ଝିଅଟି ଜଣେ ମେଣ୍ଢା-ଜଗୁଆଳିର । ସେ ଜଗୁଆଳିର ଘରକୁ ଯାଆନ୍ତି । ଧୀରେ ଧୀରେ ଦୁହିଁଙ୍କ ଭିତରେ ଘନିଷ୍ଠତା ବଢ଼େ । ବାପାଙ୍କୁ କିଛି ନ ଜଣାଇ ସେ ପାର୍ଡିଟା ପାଖକୁ ଯିବାଆସିବା କରେ । ନିଜର ପରିଚୟ ଗୋପନ କରି ଜଣେ ସାଧାରଣ ମଣିଷର ଛଦ୍ମବେଶରେ ସେ ପାର୍ଡିଟା ସହିତ ମିଳାମିଶା କରେ । ତା'ର ନାମ କହେ, ଡୋରିକ୍ଲେସ । ତା'ର ଆଶଙ୍କା ହୁଏ, ରାଜାଙ୍କର ପୁଅ ବୋଲି ଜାଣିଲେ ହୁଏତ ପାର୍ଡିଟା ତା ସହିତ ସମ୍ପର୍କ ରଖି ନ ପାରେ । ବାପା ଯଦି ଏ କଥା ଜାଣିପାରନ୍ତି, ତେବେ ନିଶ୍ଚୟ ବାଧା ଦେବେ । ତଥାପି ସେ ପାର୍ଡିଟାକୁ ଭୁଲିପାରେ ନାହିଁ । ତାକୁ ସେ ଜଣେ ମେଣ୍ଢା-ଜଗୁଆଳିର ଝିଅ ବୋଲି ଭାବିପାରେ ନାହିଁ । ଜନ୍ମ ତା'ର ଯେଉଁଠି ହୋଇଥାଉ ନା କାହିଁକି, ଝିଅଟାର ଚାଲିଚଳଣି, ଆଚାର ବ୍ୟବହାର, ରୂପ ଗୁଣ, ଯେକୌଣସି ଅଭିଜାତ ପରିବାରର ଝିଅଠାରୁ କୌଣସି ଗୁଣରେ କମ୍ ନୁହେଁ । ରାଣୀ ହେବାର ସମସ୍ତ ଯୋଗ୍ୟତା ତା'ର ରହିଛି । ତଥାପି ତା'ର ବାପାଙ୍କର ରାଗକୁ ଭୟ ।

ରାଜା ପୁଅର ବ୍ୟବହାରରେ କିଛି ପରିବର୍ତ୍ତନ ଲକ୍ଷ୍ୟ କରି ଚିନ୍ତିତ ହୋଇପଡ଼ନ୍ତି । ସେ ତା'ର ଅନ୍ୟମନସ୍କତାର କାରଣ ଜାଣିବାକୁ ଚେଷ୍ଟା କରନ୍ତି । କଥାଟା ଜାଣିବାକୁ ବିଳମ୍ବ ହୁଏ ନାହିଁ । ସେ ଅପମାନିତ ମନେକରନ୍ତି । ପୁଅ ଉପରେ ଖୁବ୍ ବିରକ୍ତ ମଧ ହୁଅନ୍ତି । ଏଭଳି ସମ୍ପର୍କ ସେ କେବେହେଲେ ଅନୁମୋଦନ କରିବେ ନାହିଁ । ଏହା ହେବାର ନୁହେଁ ।

ଏ ବିଷୟରେ ଆଲୋଚନା କରିବା ପାଇଁ ରାଜା ତାଙ୍କର ବିଶ୍ୱସ୍ତ ଅନୁଚର କ୍ୟାମିଲୋଙ୍କୁ ଡକାଇ ପଠାନ୍ତି । ତାଙ୍କୁ ସାଙ୍ଗରେ ନେଇ ସେ ସେଇ ମେଣ୍ଢାଜଗୁଆଳି ସହିତ ଯୋଗାଯୋଗ କରିବାକୁ ଚାହାନ୍ତି । ସମ୍ପର୍କଟା ଠିକ୍ କେତେ ଦୂର ଗଡ଼ିଲାଣି, ସେ କଥା ନିଜ ଆଖିରେ ଦେଖିବାକୁ ତାଙ୍କର ଇଚ୍ଛା । ସ୍ଥିର ହୁଏ, ଗୋଟାଏ ପର୍ବ ଦିନରେ ସେମାନେ ଛଦ୍ମବେଶରେ ସେଠାକୁ ଯିବେ । ମେଣ୍ଢା-ଜଗୁଆଳିମାନଙ୍କର ସେଇଦିନ ଗୋଟିଏ ବିଶେଷ ଉତ୍ସବ ଦୂରଦୂରାନ୍ତରୁ ବନ୍ଧୁବାନ୍ଧବମାନେ ଆସି ତହିଁରେ ଯୋଗ ଦେଇଥାଆନ୍ତି । ନୃତ୍ୟ, ଗୀତ, ପାନ, ଭୋଜନର ଆୟୋଜନ କରାଯାଇ ସେଦିନ ମେଣ୍ଢାମାନଙ୍କର ଲୋମ କଟାଯାଏ । ଉତ୍ସବରେ ନାମ ହେଉଛି 'ବସନ୍ତ-ବରଣ ।'

ଯଥାସମୟରେ ରାଜା କ୍ୟାମିଲୋଙ୍କ ସହିତ ଉଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ହୁଅନ୍ତି । ସାଧାରଣ ପୋଷାକରେ ଥିବାରୁ କେହି ସେମାନଙ୍କୁ ଚିହ୍ନିପାରନ୍ତି ନାହିଁ । ଉତ୍ସବ ପାଇଁ ବେଶ୍ ଭଲ ଆୟୋଜନ ହୋଇଥାଏ । ଅତିଥିମାନଙ୍କ ପାଇଁ ଯଥେଷ୍ଟ ସୁସ୍ୱାଦୁ ଖାଦ୍ୟପାନୀୟର ବ୍ୟବସ୍ଥା ଥାଏ । ପ୍ରତ୍ୟେକଙ୍କୁ ଉପହାର ମଧ ଦିଆ ଯାଉଥାଏ । ଝିଅମାନେ ଯଥେଷ୍ଟ ଫୁଲ ଯୋଗାଡ଼ କରି ମାଳ ଗୁନ୍ଥି ଥାଆନ୍ତି ।

ଜଗୁଆଳିର ସେଇ ଛୋଟ ଘରଟି ଆଲୋକ ମାଳାରେ ଝଲମଲ କରୁଥାଏ । ହସଖୁସିର ଜୁଆର ଛୁଟିଥାଏ । ରାଜା ଆଉ କ୍ୟାମିଲୋ ସେମାନଙ୍କ ସହିତ ମିଶିଯାଇ ସବୁ ଲକ୍ଷ୍ୟ କରୁଥାଆନ୍ତି । ରାଜା ଦେଖନ୍ତି, ଗୋଟିଏ ସୁନ୍ଦରୀ ଝିଅ ପାଖରେ ବସି ରାଜକୁମାର ମସଗୁଲ୍ ହୋଇ ଗପସପ କରୁଛି । ଏଇ ବୋଧହୁଏ ସେଇ ମେଣ୍ଢାଜଗୁଆଳିର ଝିଅ । ପୁଅର ପସନ୍ଦକୁ ରାଜା ମନେ ମନେ ଖୁବ୍ ପ୍ରଶଂସା କରନ୍ତି ।

ବୁଢ଼ା-ଜଗୁଆଳି ସବୁ ଅତିଥିମାନଙ୍କୁ ଆଦର ଆପ୍ୟାୟନ କରିବାରେ ବ୍ୟସ୍ତ । ପାର୍ଡିଟା ଏଥିରେ ତାଙ୍କୁ ସାହାଯ୍ୟ ନ କରି ବସି ବସି ଗଳ୍ପରେ ବ୍ୟସ୍ତ ଥିବାର ଦେଖି ସେ ଅସନ୍ତୁଷ୍ଟ ହୋଇ ପଡ଼ନ୍ତି । ସମସ୍ତଙ୍କ ଆଗରେ ଝିଅକୁ ଡାକି ସେ ଏଥିପାଇଁ ଅନୁଯୋଗ କରନ୍ତି । ପ୍ରତିବର୍ଷ ଏଇ ଦିନ ତାଙ୍କର ସ୍ତ୍ରୀ ଏ କାମରେ ତାଙ୍କୁ ସାହାଯ୍ୟ କରୁଥିଲେ । ଏଥର ସେ ନାହାନ୍ତି । ତାଙ୍କର ବି ବୟସ ହେଲାଣି । ସବୁ ଜାଣିଶୁଣି ଝିଅ ନିଶ୍ଚିନ୍ତରେ ବସି ଗଳ୍ପ କରୁଛି, ଏ ବଡ଼ ଅନ୍ୟାୟ । ବାପାଙ୍କ କଥାରେ ବାଧ୍ୟ ଝିଅଟିଏ ଭଳି ପାର୍ଡିଟା ଫ୍ଲୋରିଜେଲ ପାଖରୁ ଉଠିଆସେ । ନୂଆ ଅତିଥି ଦୁଇଜଣଙ୍କୁ ଫୁଲ ଆଉ ମାଳ ଦେଇ ଶୁଭେଚ୍ଛା ଜଣାଏ । ସେମାନେ ତା' ସହିତ କିଛି ବେଳ କଥାବାର୍ତ୍ତା କରନ୍ତି । ପୂର୍ବରୁ ମଧ୍ୟ ସେମାନେ ତାକୁ ଲକ୍ଷ୍ୟ କରିଥାଆନ୍ତି । ତା'ର ଉଜ୍ଜ୍ୱଳ ଦୃଷ୍ଟି, ଶାଳୀନ ବାଚନ ଭଙ୍ଗୀ, ବ୍ୟକ୍ତିତ୍ୱର ଗାମ୍ଭୀର୍ଯ୍ୟ, ଆଉ ଅଭିଜାତ ରୂପ ବିଭବ - ଏ ସବୁଥିରୁ ଗୋଟିଏ ସ୍ୱତନ୍ତ୍ର ପରିଚୟ ଫୁଟି ଦିଶୁଥାଏ । ଝିଅଟି ଯେ ଜଣେ ସାଧାରଣ ମେଣ୍ଢା ଜଗୁଆଳି ଘରେ ଜନ୍ମ ହୋଇଛି, ଏ କଥା ମାନିନେବାକୁ ମନ ତାକୁ ନ ଥାଏ । ସେ ଯାହା କିଛି କରୁଥାଏ ବା କହୁଥାଏ ତହିଁରୁ ଗୋଟିଏ ସ୍ୱତନ୍ତ୍ର ମର୍ଯ୍ୟାଦା ବାହାରି ଆସୁଥାଏ । ଭିଡ଼ ଭିତରେ ଥାଇ ମଧ୍ୟ ସେ ଅଲଗା ହୋଇ ବାରିହୋଇ ଯାଉଥାଏ ।

ଏଇ ପରିବେଶରୁ ତାକୁ ମନେ ହେଉଥାଏ ସମ୍ପୂର୍ଣ୍ଣ ଅଲଗା ।

ଏହା ପରେ ଆରମ୍ଭ ହୋଇଯାଏ ସେମାନଙ୍କର ନାଚଗୀତ । ଫ୍ଲୋରିଜେଲ ଝିଅଟି ସହିତ ନାଚ଼ରେ ଯୋଗଦିଏ । ପଲିକ୍ସେନିସ୍ ଗୃହକର୍ତ୍ତାଙ୍କୁ ପଚାରନ୍ତି, ଏଇ ଯେ ପିଲାଟି ତାଙ୍କ ଝିଅ ସାଙ୍ଗରେ ନାଚୁଛି, ସେ କିଏ ?

ଜଗୁଆଳି ସରଳ ଭାବରେ ଉତ୍ତର ଦିଅନ୍ତି, 'ମନେହୁଏ ପିଲାଟି କୌଣସି ଅବସ୍ଥାପନ୍ନ ଘରର । ସେ ମୋ ଝିଅକୁ ଭଲ ପାଇଛି । ଏ ପ୍ରେମ ପ୍ରକୃତ ବୋଲି ମୋର ବିଶ୍ୱାସ । ଯଦି ମୋ ଝିଅ ତାକୁ ବିବାହ କରେ, ତେବେ ପିଲାଟି ଆଦୌ ବଞ୍ଚିତ ହେବ ନାହିଁ । ମୋ ଆଡୁ ସେ ଯାହା ପାଇବାର କଥା, ତା'ର ଅତିରିକ୍ତ ପ୍ରାପ୍ୟ ତାକୁ ମିଳିବ । ପାର୍ଡିଟା ସହିତ ଜଗୁଆଳି ଯେଉଁସବୁ ମଣିମୁକ୍ତା ପାଇଥିଲେ, ସେ ସବୁ ସେ ସେମିତି ସାଇତି ରଖିଥିଲେ । ବିବାହ ସମୟରେ ଝିଅକୁ ଯୌତୁକ ହିସାବରେ ଦେବେ ।

ଫ୍ଲୋରିଜେଲ ଆଉ ପାର୍ଡିଟା ରାଜାଙ୍କ ପାଖରେ ଠିଆ ହୋଇଥାଆନ୍ତି । ରାଜା ପୁଅକୁ ଡାକି ପଚାରନ୍ତି— ଆରେ ବାବୁ ! ଏଠି ଯେ ଏତେ ଅତିଥି ଉତ୍ସବରେ ଯୋଗ ଦେଇଛନ୍ତି, ଦେଖିଲି ସମସ୍ତେ ସାଙ୍ଗରେ କିଛିନା କିଛି ଜିନିଷ ଆଣିଛନ୍ତି । କେବଳ ତମେ ହିଁ କିଛି ଆଣି ନାହଁ । ଖାଲି ହାତରେ ଆସିଛ -କଥା କ'ଣ ?

ଛଦ୍ମବେଶୀ-ବାପାଙ୍କୁ ବିଚରା ଫ୍ଲୋରିଜେଲ୍ ଚିହ୍ନିପାରେ ନାହିଁ । ସହଜ ଭାବରେ ଉତ୍ତର ଦିଏ, 'ପାର୍ଡିଟା ପାଇଁ କୌଣସି ଉପହାର ଆଣିବା କ'ଣ ଦରକାର ? ମୋର ହୃଦୟଟା ତ ତାକୁ ଦେଇ ଦେଇଛି । ଏତିକି କହି ସେ ନିଜର ଦୁଇ ହାତରେ ପାର୍ଡିଟାର କୋମଳ ହାତଟିକୁ ଧରେ । ଅପରିଚିତ ଆଗନ୍ତୁକମାନଙ୍କ ଆଡ଼କୁ ଅନାଇ ପୁଣି କହେ, 'ଶପଥ କରିଛି, ଏହି ଝିଅ ଛଡ଼ା ଅନ୍ୟ କାହାରିକୁ ବିବାହ କରିବି ନାହିଁ ।'

ପାର୍ଡ଼ିଟା ମଧ୍ୟ ନିଜ ହାତର ଚାପ ଦ୍ୱାରା ତାକୁ ବୁଝାଇଦିଏ - ସେ ଏକାନ୍ତ ଭାବରେ ତା'ର । ତାକୁ ଛାଡ଼ି ଆଉ କାହାକୁ ବିବାହ କରିବ ନାହିଁ ।

ଛଦ୍ମବେଶୀ ଦୁହିଁଙ୍କ ଆଡ଼କୁ ଅନାଇ ରାଜକୁମାର କହନ୍ତି, ଆପଣ ଜଣେ ପ୍ରବୀଣ ବ୍ୟକ୍ତି । ଆପଣ ଆମର ଏଇ ବାକ୍‌ଦାନର ସାକ୍ଷୀ ରୁହନ୍ତୁ ।

ରାଜା ଆଉ ନିଜକୁ ସମ୍ଭାଳି ପାରନ୍ତି ନାହିଁ । କ୍ରୋଧରେ ଫାଟିପଡ଼ନ୍ତି, କହନ୍ତି ... ହଁ, ମୁଁ ସାକ୍ଷୀ ରହୁଛି ଠିକ୍ । ତେବେ ସେଇଟା ତମ ଦୁହିଁଙ୍କର ମିଳନର ନୁହେଁ, ବିଚ୍ଛେଦର । ଦେଖୁଛି, ତମେ ସୀମା ଅତିକ୍ରମ କରିଯାଉଛ । ଏତିକି କହି ସେ ତାଙ୍କର ଛଦ୍ମବେଶ ଖୋଲି ଦିଅନ୍ତି । ପୁଅକୁ କଟୁଭାଷାରେ ତିରସ୍କାର କରିବାରେ ଲାଗନ୍ତି । ଛୋଟକୁଳର ଏଇ ଝିଅ -ବାପା ତା'ର ଗୋଟାଏ ସାମାନ୍ୟ ମେଷପାଳକ । ତାକୁ ବିବାହ କରିବା ପାଇଁ ତମେ କିଭଳି ଠିକ୍ କଲ କୁମାର ? ଦେଶରେ କ'ଣ ଉପଯୁକ୍ତ ପାତ୍ରୀର ଅକାଳ ପଡ଼ିଛି ? ମୋର ଆଦେଶ, ଏହା ପରେ ତମେ ଆଉ ଏଇ ଝିଅ ସହିତ ଦେଖା କରିବ ନାହିଁ । ଯଦି ମୋର ଆଦେଶ ଅମାନ୍ୟ କର, ତେବେ ତା'ର ପରିମାଣ ଭୋଗ କରିବେ ଏଇ ପିତା -କନ୍ୟା । ସେମାନଙ୍କୁ ଫାଶୀ ଖୁଣ୍ଟରେ ଝୁଲିବାକୁ ପଡ଼ିବ । ତମକୁ ମଧ୍ୟ ମୁଁ ତ୍ୟାଜ୍ୟପୁତ୍ର କରିଦେବି ।

ଏତିକି କହି ରାଜା କ୍ରୋଧରେ ଗର୍ଜନ କରୁ କରୁ ସେ ସ୍ଥାନ ତ୍ୟାଗ କରନ୍ତି ।

॥ ୪ ॥

କ୍ୟାମିଲୋ ରାଜାଙ୍କର ହିତାକାଂକ୍ଷୀ - ବନ୍ଧୁ । ଅନେକ ବର୍ଷ ପୂର୍ବେ ସେ ନିଜର ଜନ୍ମଭୂମି ଛାଡ଼ି ଏଇ ରାଜ୍ୟକୁ ଚାଲିଆସିଥିଲେ । ସେଇଦିନଠୁଁ ଏଇ ରାଜ୍ୟ, ଆଉ ରାଜାଙ୍କର ହିତ ବ୍ୟତୀତ ସେ ଅନ୍ୟ କଥା ଚିନ୍ତା କରି ନାହାନ୍ତି ।

ବର୍ତ୍ତମାନ ସେ ସ୍ଥିର ହୋଇ ବସି ଏଇ ସମସ୍ୟାଟିର କଥା ଚିନ୍ତା କରିବାକୁ ଲାଗିଲେ । ରାଜପରିବାରରେ ଅଶାନ୍ତିର ଝଡ଼ ଉଠିଛି । ଯଦି ଏହାର କୌଣସି ଶାନ୍ତିପୂର୍ଣ୍ଣ ସମାଧାନ ନ ହୁଏ, ତେବେ ସେଇ ଝଡ଼ରେ ରାଜପରିବାର ଛିନ୍ନଭିନ୍ନ ହୋଇଯିବ । ଏତେଦିନ ଧରି ଏଇ ରାଜବଂଶକୁ ସେ ଯେମିତି ସୁରକ୍ଷା ଦେଇଆସିଛନ୍ତି ତାହା ବ୍ୟର୍ଥ ହୋଇଯିବ ।

ସେ ଫ୍ଲୋରିଜେଲ୍‌କୁ ଭେଟନ୍ତି । ବାପାଙ୍କ ଉପରେ ରାଗିବାକୁ ତାକୁ ମନା କରନ୍ତି । କହନ୍ତି - ଟିକିଏ ଧୈର୍ଯ୍ୟ ଧରି ଅପେକ୍ଷା କରିଯାଅ । ଦେଖିବ, ତାଙ୍କର ମନ ନିଶ୍ଚୟ ବଦଳିଯିବ । ରହି ରହି ତାଙ୍କର ଝିଅଟି କଥା ମନେପଡୁଥିଲା । କି ସୁନ୍ଦର ଭଦ୍ର ଆଉ ମାର୍ଜିତ ବ୍ୟବହାର ! ଜଣେ ସାଧାରଣ ମେଷପାଳକର ଘରେ ଏ ରନ୍ କେଉଁଠୁ ଆସିଲା ? କଥାରେ କହନ୍ତି, ଖତକୁଢ଼ରେ ପଦ୍ମ । ଏ କ'ଣ ସେଇଆ ? କେତେକ୍ଷଣ ବା ତା' ସହିତ ଦେଖା ; ତାରି ଭିତରେ ଯେମିତି ଗୋଟାଏ ଅଦୃଶ୍ୟ ସ୍ନେହର ବନ୍ଧନରେ ସେ ତାଙ୍କୁ ବାନ୍ଧିପକାଇଛି ! ରାଜା ଯେତେବେଳେ କ୍ରୋଧରେ ଅଜ୍ଞାନ ହୋଇ ଚିତ୍କାର କରୁଥାଆନ୍ତି, ସେତେବେଳେ ବି ସେ ତାକୁ ସାମାନ୍ୟ ବିଚଳିତ ଦେଖି ନାହାନ୍ତି । ବରଂ କହିଲା - ମୋତେ ଟିକିଏ ବି ଡର ଲାଗୁ ନାହିଁ । ବରଂ ରାଜାଙ୍କୁ ଜଣାଇଦେବାକୁ ଚାହେଁ ଯେ ଯେଉଁ ସୂର୍ଯ୍ୟ ତାଙ୍କର ରାଜସଭାକୁ ଆଲୋକିତ କରେ ତା'ରି ଆଲୋକ ଆମଭଳି ସାଧାରଣ ଲୋକଙ୍କର କୁଡ଼ିଆ ଘର ଉପରେ ବି ପଡ଼େ । ତା'ପରେ ଫ୍ଲୋରିଜେଲ ଆଡ଼େ ଅନାଇ କହେ - ଏଣିକି ତମେ ସାବଧାନରେ ରହ । ମୁଁ ରାଣୀ ହେବାର କାମନା ରଖେ ନାହିଁ । ତା' ଅପେକ୍ଷା ମୋପାଇଁ ଶହେଗୁଣ ଭଲ, ମୋର ଏଇ ମେଣ୍ଢାମାନଙ୍କର ସାହଚର୍ଯ୍ୟ । ସେଇଠି ଥାଇ ମୁଁ ବରଂ ତମର ପ୍ରତୀକ୍ଷାରେ ଲୁହ ଢାଳୁଢାଳୁ ମୋର ଅବଶିଷ୍ଟ ଜୀବନ କଟାଇଦେବି ! କି ଶାଳୀନ କଥା, ଜଣେ ଦରିଦ୍ର ମେଷପାଳକର କନ୍ୟା କ'ଣ ଏଭଳି ବୁଦ୍ଧିମତ୍ତାର ପରିଚୟ ଦେଇପାରେ ? କ୍ୟାମିଲୋ ବିଶ୍ୱାସ କରନ୍ତି, ଏଇ ଝିଅ ଯେକୌଣସି ରାଜ୍ୟର ରାଣୀ ହେବାର ସମସ୍ତ ଯୋଗ୍ୟତା ରଖେ । ଏତେ ବୁଦ୍ଧିମତୀ ଝିଅ ତ ସଚରାଚର ଦେଖାଯାଆନ୍ତି ନାହିଁ । ଅକାରଣରେ ସେ ଏହାକୁ ଝରିଯିବାକୁ ଦେବେ ନାହିଁ । ଅନ୍ତତଃ ସେ ଯେମିତି ବୋହେମିୟାର ସିଂହାସନ ଅଳଙ୍କୃତ କରିପାରେ, ସେଥିପାଇଁ ସେ ନିଶ୍ଚୟ ଉଦ୍ୟମ କରିବେ ।

ଫ୍ଲୋରିଜେଲ ଜଣାଇଦିଏ - ମୁଁ ବରଂ ରାଜ୍ୟ ଛାଡ଼ିବି, ଆତ୍ମୀୟସ୍ୱଜନ ସମସ୍ତଙ୍କୁ ଛାଡ଼ିବି, କିନ୍ତୁ ପାର୍ଡ଼ିଟାକୁ ଛାଡ଼ିପାରିବି ନାହିଁ । ମୁଁ ଆପଣଙ୍କର ସହଯୋଗ ଆଶା କରେ ।

କ୍ୟାମିଲୋ ଚିନ୍ତା କରିବାରେ ଲାଗନ୍ତି । ଏଇ ପ୍ରେମିକ-ଯୁଗଳକୁ ସେ କିଭଳି ସାହାଯ୍ୟ କରିପାରିବେ ? ଫ୍ଲୋରିଜେଲ୍ ଯେମିତି ପିଲା, ସେ କେବେହେଲେ ନିଜର ମତ ବଦଳାଇବ ନାହିଁ । ତାକୁ ସେ ପିଲାବେଳରୁ ଦେଖୁଛନ୍ତି । ଅନ୍ତତଃ, ଏ କ୍ଷେତ୍ରରେ ତା'ର ବୟସ ତାକୁ କେବେହେଲେ ଏହା କରିବାକୁ ଦେବ ନାହିଁ । ଯୌବନର ଅନ୍ୟ ନାମ ହେଉଛି ଆସକ୍ତି । ଏଣେ

ରାଜା ମଧ ଏତେ ସହଜରେ ତାଙ୍କର ଆଭିଜାତ୍ୟର ମିନାରରୁ ତଳକୁ ଓହ୍ଲାଇବାକୁ ରାଜି ହେବେ ନାହିଁ । ଉପାୟ କ'ଣ ?

ଫ୍ଲୋରିଜେଲ୍ ଅଧୈର୍ଯ୍ୟ ହୋଇପଡ଼େ । ତା'ର ଧୈର୍ଯ୍ୟ ଶେଷ ହୋଇଯାଏ । ପାର୍ଡ଼ିଟାର ବିଚ୍ଛେଦ ସେ ସହ୍ୟ କରିପାରିବ ନାହିଁ । ଅତଏବ ଏ ରାଜ୍ୟ ତାକୁ ଛାଡ଼ିବାକୁ ହେବ । ପାର୍ଡ଼ିଟାକୁ ସାଙ୍ଗରେ ନେଇ ସେ ଭାଗ୍ୟ ଅନ୍ୱେଷଣରେ ଅନ୍ୟତ୍ର ଚାଲିଯିବ । ତେଣିକି ଯାହା ଥିବ ତା' ଭାଗ୍ୟରେ ।

ତା'ର ଥିଲା ଛୋଟ ଗୋଟିଏ ଜାହାଜ । ଆକାର ଛୋଟ ହେଲେ ବି ଦୂରର ସମୁଦ୍ରଯାତ୍ରା ନିମନ୍ତେ ଏହା ଥିଲା ସମ୍ପୂର୍ଣ୍ଣ ଉପଯୁକ୍ତ । ଫ୍ଲୋରିଜେଲ୍ ଆଉ ପାର୍ଡ଼ିଟା ଦୁହେଁ ମିଶି ସ୍ଥିର କରିଦିଅନ୍ତି ଯେ, ଏହି ଜାହାଜରେ ସେମାନେ ବୋହେମିଆ ଛାଡ଼ି ଚାଲିଯିବେ । ଏତେବଡ଼ ପୃଥିବୀ । ଯେ କୌଣସି ସ୍ଥାନରେ ସେମାନେ ନୀଡ଼ ବାନ୍ଧିବା ପାଇଁ ଚେଷ୍ଟା କରିବେ ।

କ୍ୟାମିଲୋ ସେମାନଙ୍କର ଏହି ଚିନ୍ତାକୁ ଜାଣିପାରିଲେ । ତାଙ୍କ ମନରେ ଗୋଟିଏ ନୂଆ କଥା ଉଙ୍କି ମାରିଲା । ଅନେକ ଦିନରୁ ସେ ନିଜର ମାତୃଭୂମି ସିସିଲିରେ ପାଦଦେଇ ନାହାନ୍ତି । ଦିନେ ପ୍ରାଣ ଭୟରେ ସେ ଜନ୍ମଭୂମି ଛାଡ଼ି ଏଇ ଦୂର ଦେଶକୁ ପଳାଇ ଆସିଥିଲେ । ତେବେ ସେଠାରେ ଏବେବି ତାଙ୍କର ଘର ରହିଛି । ଅଛନ୍ତି ବହୁ ଆତ୍ମୀୟସ୍ୱଜନ । ତା'ଛଡ଼ା ଅଛନ୍ତି ତାଙ୍କର ପୂର୍ବତନ ପ୍ରଭୁ ଲିଓନ୍ତିସ-ଏତେ-ଦିନ ଭିତରେ ତାଙ୍କର ମନ କ'ଣ ବଦଳି ନ ଥିବ ? ସେ ଶୁଣିବାକୁ ପାଇଛନ୍ତି ଯେ ଲିଓନ୍ତିସ ତାଙ୍କ କୃତକର୍ମ ନିମନ୍ତେ ବର୍ତ୍ତମାନ ଯଥେଷ୍ଟ ଅନୁତାପ କରୁଛନ୍ତି । ତାଙ୍କୁ ସେ ଯେ ଉଦାର ମନରେ ଗ୍ରହଣ କରିବେ, ଏଭଳି ବିଶ୍ୱାସ ତାଙ୍କ ମନରେ ଦୃଢ଼ ହେଉଛି । ଏଇ ସବୁକଥା ଚିନ୍ତା କରି ସେ ଫ୍ଲୋରିଜେଲ୍‌କୁ କହନ୍ତି, ଦେଖ ବାବୁ, ତମେ ଆଉ ପାର୍ଡ଼ିଟା ଯଦି ମୋ ଉପରେ ଆସ୍ଥା ରଖି ମୋ କଥା ମାନିବାକୁ ପ୍ରତିଶ୍ରୁତି ଦିଅ, ତେବେ ମୁଁ ତମକୁ ସାହାଯ୍ୟ କରିପାରେ । ମୋର ବିଶ୍ୱାସ, ସେଥିରେ ତମ ଦୁହିଁଙ୍କର ମଙ୍ଗଳ ହେବ । ତମେମାନେ ସିସିଲି ଚାଲିଯାଅ । ସିସିଲିର ରାଜା ଲିଓନ୍ତିସ ହେଉଛନ୍ତି ତମ ବାପାଙ୍କର ଅନ୍ତରଙ୍ଗ ବନ୍ଧୁ । ମୁଁ ବି ସେଠାରେ ରାଜାଙ୍କ ପାଖରେ ଅନେକ ଦିନ କାମ କରିଛି । ତାଙ୍କୁ ମୁଁ ଭଲଭାବରେ ଜାଣେ । ସେ ତମମାନଙ୍କୁ ଦେଖିଲେ ଖୁସି ହିଁ ହେବେ । ଏମିତି ବି ହୋଇପାରେ, ସେ ତମ ବାପାଙ୍କର ମନୋଭାବକୁ ବଦଳାଇ ଦେଇ, ତମ ଦୁହିଁଙ୍କର ବିବାହ ପାଇଁ ତାଙ୍କୁ ରାଜି କରାଇ ଦେଇପାରନ୍ତି ।

ଫ୍ଲୋରିଜେଲ୍ ଏକଥା ଶୁଣି ସିସିଲି ଯିବାକୁ ରାଜି ହୋଇଯାଏ । ଯେତେ ଶୀଘ୍ର ହୋଇପାରେ ସେମାନେ ଯାତ୍ରାର ଆୟୋଜନ କରିବାକୁ ଲାଗିଲେ । ମେଷପାଳକ କିନ୍ତୁ ଆଦୌ ସେମାନଙ୍କୁ ଛାଡ଼ିଦେବାକୁ ରାଜି ହେଉ ନ ଥାନ୍ତି । ଶେଷରେ ସେ ବି ସେମାନଙ୍କ ସାଙ୍ଗରେ

ଜାହାଜରେ ଉଠିପଡ଼ନ୍ତି । ସାଙ୍ଗରେ ନିଅନ୍ତି ମଣିମୁକ୍ତାର ସେଇ ପୁଟୁଳିଟି, ଯେଉଁଟାକୁ ସେ ଶିଶୁ ପାର୍ଡ଼ିଟା ପାଖରୁ ପାଇଥିଲେ । ଝିଅକୁ ସେ ଖାଲି ହାତରେ ବିଦାୟ ଦେବେ ନାହିଁ । ତା'ପରେ ଏ ସବୁ ଜିନିଷ ତ ପାର୍ଡ଼ିଟାର । ସିସିଲିର ରାଜା ଅନ୍ତତଃ ଦେଖିଲେ ଜାଣିବେ ଯେ, ପାର୍ଡ଼ିଟା ଭିକାରୁଣୀ ନୁହେଁ ।

ଯଥାସମୟରେ ସେମାନଙ୍କର ଜାହାଜ ବୋହେମିୟା ଛାଡ଼ି ସିସିଲି ଉଦ୍ଦେଶ୍ୟରେ ଯାତ୍ରା କରେ । କ୍ୟାମିଲୋ ମଧ ବୋହେମିୟାର ସମ୍ପର୍କ ତୁଟାଇ ସେମାନଙ୍କ ସହ ସିସିଲି ଯାତ୍ରା କରନ୍ତି ।

ଯାତ୍ରା ସେମାନଙ୍କର ବେଶ୍ ସୁଖକର ହେଉଥାଏ । ଢେଉ ଉପରେ ଝୁଲି ଝୁଲି ଜାହାଜ ଦିନେ ସିସିଲି ଉପକୂଳରେ ଆସି ନଙ୍ଗର ପକାଏ । ଲିଓନ୍ଟିସ ଯଥାସମୟରେ ଏ ଖବର ପାଇ ଆନନ୍ଦରେ ସେମାନଙ୍କୁ ସ୍ୱାଗତ ଜଣାନ୍ତି । ବୋହେମିୟାର ରାଜକୁମାର ଶେଷରେ ଆଶ୍ରୟପ୍ରାର୍ଥୀ ହୋଇ ତାଙ୍କ ରାଜ୍ୟକୁ ଆସିଛି, ଏଥିରେ ସେ ଆଶ୍ଚର୍ଯ୍ୟ ହୁଅନ୍ତି । ଅବଶ୍ୟ ବୋହେମିୟାର ରାଜା-ତାଙ୍କର ବନ୍ଧୁ ଏ ବିଷୟରେ କୌଣସି ପୂର୍ବ ସୂଚନା ବି ଦେଇ ନାହାନ୍ତି । ଉଭୟଙ୍କର ବର୍ତ୍ତମାନ ଯେଉଁ ସମ୍ପର୍କ ତାକୁ ଅନ୍ତତଃ ବନ୍ଧୁତ୍ୱ କୁହାଯାଇପାରିବ ନାହିଁ । ତଥାପି ବନ୍ଧୁପୁତ୍ର ତାଙ୍କରି ପାଖରେ ଆଶ୍ରୟ ନେବାକୁ ଚାହେଁ । କଥାଟା ଚିନ୍ତାଜନକ । ଭାବି ଦେଖିବା ଭଳି । ତେବେ ସେ ଯାହା ହେବ ଦେଖାଯିବ । ଆପାତତଃ ସେମାନେ ରୁହନ୍ତୁ ।

ଫ୍ଲୋରିଜେଲ ତଥାପି ସଙ୍କୋଚ କଟାଇ ସ୍ୱାଭାବିକ ହୋଇପାରୁ ନ ଥାଏ । ତାର ଏବଂ ପାର୍ଡ଼ିଟାର ସମ୍ପର୍କ ବିଷୟରେ ସେ ଲିଓନ୍ଟିସଙ୍କୁ କ'ଣ କହିବ, ଏହା ଠିକ୍ କରିପାରୁ ନ ଥାଏ । କାହିଁକି ତାକୁ ନିଜ ରାଜ୍ୟ ଛାଡ଼ି ହଠାତ୍ ଏମିତି ବିନା ସୂଚନାରେ ସିସିଲିରେ ଆଶ୍ରୟ ଖୋଜିବାକୁ ହେଉଛି, ରାଜା ସେ ବିଷୟରେ ଜାଣିବାକୁ ନିଶ୍ଚୟ ଚାହିଁବେ । ତାଙ୍କୁ କ'ଣ କୁହାଯିବ ?

ବହୁତ ଭାବି ଭାବି ସେ ଏଥିପାଇଁ ଗୋଟିଏ କାହାଣୀ ଠିଆ କରିଦିଏ । ସେ କହିବ ମୋର ବିବାହ ଲିବିୟାରେ ହୋଇଛି । ବୋହେମିୟା ଯିବା ବାଟରେ ସିସିଲି ପଡୁଥିବାରୁ ଏଠାରେ ଓହ୍ଲାଇ ରାଜାଙ୍କ ସାଙ୍ଗରେ ଦେଖାକରି ଯିବାକୁ ବାପାଙ୍କର ନିର୍ଦ୍ଦେଶ ଥିଲା । ମୋ ସାଙ୍ଗରେ ଯେଉଁସବୁ ଜାହାଜ ଥିଲା, ସେ ସବୁ ବୋହେମିୟା ଚାଲିଯାଇଛି । ବିବାହ ଭଲରେ ଭଲରେ ଶେଷ ହୋଇଛି, ଆମେ ଭଲ ଅଛୁ ଆଉ ତାଙ୍କ ନିର୍ଦ୍ଦେଶ ଅନୁସାରେ ସିସିଲିର ରାଜାଙ୍କୁ ଦେଖାକରି ଶୀଘ୍ର ବୋହେମିୟା ପହଞ୍ଚିବୁ, ଏଇ ଆଗୁଆ ଖବର ଦେଇ ମୁଁ ଜାହାଜ ସବୁକୁ ବୋହେମିୟାକୁ ପଠାଇ ଦେଇଛି । ଏବେ ଆପଣଙ୍କର ଆଶୀର୍ବାଦ ନେବାପାଇଁ କେବଳ ସାଙ୍ଗରେ ସ୍ତ୍ରୀକୁ ନେଇ ଏଠାରେ ଓହ୍ଲାଇଛି ।

ରାଜା ନିଶ୍ଚୟ ଏ କଥା ବିଶ୍ୱାସ କରିବେ ।

॥ ୫ ॥

ଲିଓନ୍ଟିସ ମନ ଦେଇ ରାଜକୁମାରଙ୍କର କାହାଣୀ ଶୁଣୁଥାଆନ୍ତି । ଏତିକିବେଳେ ଦୂତ ଆସି ସମ୍ବାଦ ଦିଏ ଯେ ବୋହେମିୟାର ରାଜା ପୁଅର ସନ୍ଧାନରେ ସିସିଲିରେ ଆସି ପହଞ୍ଚିଛନ୍ତି । ବୋହେମିୟାରୁ ଜଣେ ସାମାନ୍ୟ ମେଷପାଳକର କନ୍ୟାକୁ ନେଇ ତାଙ୍କ ପୁଅ ରାଜ୍ୟ ଛାଡ଼ି ପଳାଇ ଆସିଛି । ରାଜାଙ୍କର ବିଶ୍ୱାସ, ସେ ସିସିଲିକୁ ହିଁ ଆସିଛି, ତେଣୁ ସେ ତାକୁ ଫେରାଇ ନେବାକୁ ଆସିଛନ୍ତି ।

ଏସବୁ କଥା ଶୁଣି ଫ୍ଲୋରିଜେଲର ମୁହଁ କଳା ପଡ଼ିଯାଏ । ସେ ଧରିନିଏ, ଏଇ କାମଟି ନିଶ୍ଚୟ କ୍ୟାମିଲୋଙ୍କର । ସେ ଏଠାକୁ ଆସିବା ପୂର୍ବରୁ ସମସ୍ତ ଖବର ରାଜାଙ୍କୁ ଦେଇ ଆସିଛନ୍ତି । ଦୂତଠାରୁ ଆହୁରି ଶୁଣିବାକୁ ମିଳେ ଯେ, କ୍ୟାମିଲୋ ଏବେ ବନ୍ଧୁଭାବରେ ରାଜା ପଲିକ୍ସେନିସ୍‌ଙ୍କ ସହିତ କଥାବାର୍ତ୍ତା କରୁଛନ୍ତି ଆଉ ମଝିରେ ମଝିରେ ବିଚରା ନିରୀହ ମେଷପାଳକଟିକୁ ଧମକାଉଛନ୍ତି ।

ଫ୍ଲୋରିଜେଲର ସନ୍ଦେହ ଦୃଢ଼ ହୁଏ ।

ରାଜା ବାରମ୍ବାର ତା' ଆଡ଼କୁ ଅନାଇବାରୁ ତାକୁ ସ୍ୱୀକାର କରିବାକୁ ହୁଏ ଯେ ଏପର୍ଯ୍ୟନ୍ତ ସେ ଯାହା ରାଜାଙ୍କୁ କହୁଥିଲା, ତହିଁରେ ବିନ୍ଦୁଏ ମାତ୍ର ସତ୍ୟ ନାହିଁ । ସତ୍ୟ ହେଉଛି ପାର୍ଡ଼ିଟା ସହିତ ତାର ବିବାହ ଏବେବି ହୋଇ ନାହିଁ । ତେବେ ସେ ତାକୁ ଭଲପାଏ ଏବଂ ବିବାହ ନିଶ୍ଚୟ କରିବ । ସେ ମେଷପାଳକର କନ୍ୟା ହେଲା ତ କ'ଣ ହେଲା ?

ଲିଓନ୍ଟିସ ତା'ଆଡ଼କୁ ଅନାଇ ସ୍ମିତ ହସନ୍ତି । ବନ୍ଧୁ ପଲିକ୍ସେନିସଙ୍କୁ ଯଥାରୀତି ସ୍ୱାଗତ ଜଣାଇ ଏଠାକୁ ନେଇଆସିବା ପାଇଁ ଲୋକ ପଠାଇ ଦିଅନ୍ତି । ଏଇ ବନ୍ଧୁଙ୍କୁ ଭୁଲ୍ ବୁଝି ଦୀର୍ଘ ଷୋହଳ ବର୍ଷ ଧରି ପୁତ୍ର କନ୍ୟା ସ୍ତ୍ରୀ ହରାଇ ତିଳେ ତିଳେ ଦଗ୍ଧ ହୋଇଛନ୍ତି । ବର୍ତ୍ତମାନ କେବଳ ସେମାନଙ୍କର ସ୍ମୃତି ମାତ୍ର ସମ୍ବଳ । ସେଇ ବନ୍ଧୁ ଆଜି ଆସି ତାଙ୍କ ଦ୍ୱାରରେ ଉପସ୍ଥିତ ହୋଇଛନ୍ତି, ଷୋହଳ ବର୍ଷ ପରେ । ତାଙ୍କୁ ଯଥାରୀତି ଅଭ୍ୟର୍ଥନା ଜଣାଇ ନିଜ ଭୁଲ୍ ପାଇଁ କ୍ଷମା ମାଗିଲେ ତାଙ୍କ ପାପର ଅନ୍ତତଃ କିଛି ପ୍ରାୟଶ୍ଚିତ୍ତ ହୋଇପାରିବ ।

ଫ୍ଲୋରିଜେଲ ବୃଥାରେ ବିଚରା କ୍ୟାମିଲୋଙ୍କୁ ସନ୍ଦେହ କରୁଥିଲା । ସେ ଏଠାକୁ ଆସିବାର ନିଷ୍ପତ୍ତି ନେଇ ଚାଲିଆସିବା ପୂର୍ବରୁ ରାଜାଙ୍କୁ କିଛି କହି ନାହାନ୍ତି । ତେବେ ରାଜା ଯେତେବେଳେ ଜାଣିପାରନ୍ତି ଯେ, ପଳାତକ ପୁଅ ସହିତ କ୍ୟାମିଲୋ ମଧ୍ୟ ବୋହେମିୟା ଛାଡ଼ିଯାଇଛନ୍ତି, ସେତେବେଳେ ସେ ଅନୁମାନ କରିନେଲେ, ସେମାନେ ନିଶ୍ଚୟ ସିସିଲି ଆସିବେ । ସିସିଲି ପ୍ରତି କ୍ୟାମିଲୋଙ୍କର ଦୁର୍ବଳତାର କଥା ସେ ଜାଣନ୍ତି । ତେଣୁ ସେ ବିଳମ୍ବ ନ କରି ଜାହାଜରେ ଉଠିପଡ଼ନ୍ତି । ଜାହାଜ ସିଧା ସିସିଲି ଆସେ ।

ତେବେ ସିସିଲିରେ ପାଦ ଦେବାମାତ୍ରେ ତାଙ୍କୁ ଚରମ ବିସ୍ମୟର ସମ୍ମୁଖୀନ ହେବାକୁ ପଡ଼େ । ସେ ଦେଖନ୍ତି, ମେଷପାଳକକୁ ସାଙ୍ଗରେ ନେଇ ସ୍ୱୟଂ କ୍ୟାମିଲୋ ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ଜାହାଜଘାଟରେ ଉପସ୍ଥିତ ।

ରାଜା କ୍ୟାମିଲୋଙ୍କ ପ୍ରତି ପ୍ରଥମରୁ ଖୁବ୍ ଅସନ୍ତୁଷ୍ଟ ଥିଲେ । ତାଙ୍କର ବିଶ୍ୱାସ କ୍ୟାମିଲୋ ହିଁ ତାଙ୍କ ପୁଅକୁ ଉସ୍‌କାଇ ଏଭଳି ଏକ ଚରମ ପଥ ଗ୍ରହଣ କରିବା ନିମନ୍ତେ ସାହସ ଯୋଗାଇ ଦେଇଛନ୍ତି । ଏଇ ସାମାନ୍ୟ ମେଷପାଳକର କନ୍ୟା ସହିତ ଫ୍ଲୋରିଜେଲର ବିବାହରେ ତାଙ୍କର ପୂର୍ଣ୍ଣ ସମର୍ଥନ ଅଛି । ରାଜା ଏହା କଦାପି ଚାହାନ୍ତି ନାହିଁ - ଏହା ଜାଣି ମଧ ସେ ତାଙ୍କ ସହିତ ବିରୋଧିତା କରିଛନ୍ତି ।

ତେବେ ସିସିଲିରେ ପାଦ ଦେବା ମାତ୍ରେ ଯାହା ସବୁ ସେ ଶୁଣିଲେ, ତହିଁରେ ତାଙ୍କର ଜଳନ୍ତା ନିଆଁ ଭଳି କ୍ରୋଧ ଉପରେ ସତେଯେମିତି କିଏ ପାଣି ଢାଳିଦେଲା । ସେ ଆନନ୍ଦରେ ଭାସିବାକୁ ଲାଗିଲେ ।

କଥା ହେଉଛି, ଜାହାଜରେ ଆସିବା ସମୟରେ କ୍ୟାମିଲୋ ମେଷପାଳକଠାରୁ ପାର୍ଡ଼ିଟା ସମ୍ପର୍କରେ ଅନେକ କଥା ଶୁଣନ୍ତି । ଷୋହଳ ବର୍ଷ ପୂର୍ବରୁ ସେ କିଭଳି ଉପକୂଳ - ଅରଣ୍ୟରୁ ପାର୍ଡ଼ିଟାକୁ ପାଇଥିଲେ, ସେ କଥା ମେଷପାଳକ ତାଙ୍କୁ ଜଣାଇ ଦିଅନ୍ତି । ପ୍ରମାଣସ୍ୱରୂପ ସେ ନିଜ ପାଖରେ ସୁରକ୍ଷିତ ପାର୍ଡ଼ିଟାର ମଣିମୁକ୍ତାଗୁଡ଼ିକୁ ମଧ ତାଙ୍କୁ ଦେଖାନ୍ତି । କ୍ୟାମିଲୋ ଜାଣନ୍ତି, ତାଙ୍କର ପୂର୍ବ ସନ୍ଦେହ ସତ୍ୟ । ପାର୍ଡ଼ିଟା ନିଶ୍ଚୟ କୌଣସି ଅଭିଜାତ ବଂଶର କନ୍ୟା ।

ହଠାତ୍ ବିଜୁଳିର ଚମକ ଭଳି ଗୋଟିଏ ଚିନ୍ତା ତାଙ୍କ ମନରେ ଖେଳିଯାଏ । ଷୋହଳ ବର୍ଷ ପୂର୍ବେ ଆଣ୍ଟିଗୋନାସ୍ ରାଜାଙ୍କ ନିର୍ଦ୍ଦେଶରେ ତାଙ୍କର ଝିଅକୁ ନେଇ ସମୁଦ୍ର ପାରି ହୋଇ ଥିଲେ । ସେ ଆଉ ଫେରି ନାହାନ୍ତି ଅବଶ୍ୟ । ତେବେ ରାଜାଙ୍କ ନିର୍ଦ୍ଦେଶ ନିଶ୍ଚୟ ପାଳିଥିବେ । ଏ ହେଉଛି ସେଇ ଝିଅ । ଏଥିରେ ସନ୍ଦେହ ନାହିଁ । ହଠାତ୍ ସ୍ୱର୍ଗୀୟା ରାଣୀ ହାର୍ମିଓନ୍‌ଙ୍କ ସହିତ ଏଇ ଝିଅଟିର ଚେହେରାର ଆଶ୍ଚର୍ଯ୍ୟରକମର ମେଳ ଥିବା ବିଷୟ ମଧ ତାଙ୍କ ମନକୁ ଆସିଲା । ତାଙ୍କର ବିଶ୍ୱାସ ଆହୁରି ଦୃଢ଼ ହେଲା ।

ରାଜା ପଲିକ୍ଜେନିସଙ୍କ ସହିତ ଦେଖାହେବା ମାତ୍ରେ କ୍ୟାମିଲୋ ଏହି ସବୁ ବିଷୟ ତାଙ୍କୁ ଭଲ କରି ବୁଝାଇ କହିଲେ । ପାର୍ଡିଟା କୌଣସି ମେଷପାଳକର କନ୍ୟା ନୁହେଁ - ହୋଇ ନ ପାରେ । ସେ ହେଉଛି ରାଣୀ ହାର୍ମିଓନ୍‌ଙ୍କ କନ୍ୟା । ସେଇ ହିସାବରେ ସେ ରାଜା ଲିଓନ୍ଟିସଙ୍କର ମଧ କନ୍ୟା ।

ରାଜା ପ୍ରଥମେ ବିସ୍ମିତ ହୋଇଥିଲେ ମଧ ଆନନ୍ଦିତ ହେଲେ । ବନ୍ଧୁଙ୍କ କନ୍ୟା ସହିତ ଯଦି ତାଙ୍କ ପୁତ୍ରର ମିଳନ ହୁଏ ତେବେ ଏଥିରେ କ୍ଷତି କ'ଣ ଅଛି ? ଏହା ଦ୍ୱାରା ଉଭୟଙ୍କର

ଛିନ୍ନ ସମ୍ପର୍କ ମଧ୍ୟ ଯୋଡ଼ି ହୋଇପାରିବ । ଉଭୟେ ପୁଣିଥରେ ବନ୍ଧୁତାର ବନ୍ଧନରେ ଆବଦ୍ଧ ହେବେ । ଯେଉଁ ଭୁଲ୍ ବୁଝାମଣା ଯୋଗୁଁ ଏତେ ସବୁ କାଣ୍ଡ ହୋଇଥିଲା ଏବଂ ତାଙ୍କୁ ଚୋର ପରି ମୁହଁ ଲୁଚାଇ ଏଇ ରାଜ୍ୟରୁ ପଳାଇବାକୁ ପଡ଼ିଥିଲା... ସେ ସବୁ ମଧ୍ୟ ଦୂର ହୋଇଯିବ ।

ରାଜା ଆତ୍ମହରା ହୋଇପଡ଼ନ୍ତି ।

॥ ୬ ॥

ଲିଓନ୍ଟିସଙ୍କର ରାଜସଭା । ରାଜ୍ୟର ଗଣ୍ୟମାନ୍ୟ ବ୍ୟକ୍ତି ସମସ୍ତେ ଉପସ୍ଥିତ ଅଛନ୍ତି । ମେଷପାଳକ ସେଇ ସଭାରେ ତାଙ୍କର ସଯତ୍ନ ସଞ୍ଚିତ ମଣିମୁକ୍ତାର ପୁଟୁଳିଟିକୁ ଦେଖାନ୍ତି । ତା'ଉପରେ ଥରେ ନଜର ପକାଇ ଦେବାମାତ୍ରେ ସେଗୁଡ଼ାକ ଯେ ତାଙ୍କର ସ୍ୱର୍ଗୀୟା ରାଣୀ ହାର୍ମିଓନ୍‌ଙ୍କର ଅଳଙ୍କାର, ଏଥିରେ ରାଜାଙ୍କର ସନ୍ଦେହ ରହେ ନାହିଁ । ପୁଟୁଳି ବନ୍ଧା ହୋଇଥିବା କନାଖଣ୍ଡିକ ମଧ୍ୟ ରାଣୀଙ୍କର ଏକ କାଞ୍ଚୁଲା । ରାଜା ସବୁ ଚିହ୍ନିଲେ । ରାଣୀଙ୍କ କଥା ମନେ ପଡ଼ି ତାଙ୍କର ଦୁଇ ଆଖି ଛଳଛଳ ହୋଇ ଉଠିଲା । ସେ କୌଣସିମତେ ନିଜକୁ ସମ୍ଭାଳି ନେଲେ ।

ସେଇ କନାରେ ଗୁନ୍ଥା ହୋଇଥିବା କାଗଜଖଣ୍ଡିକ ମଧ୍ୟ ତାଙ୍କ ଦୃଷ୍ଟିକୁ ଅଣାଗଲା । ସେଥିରେ ଲିଖିତ ହୋଇଥିବା କେତୋଟି ପଂକ୍ତିକୁ ରାଜା ମନେ ମନେ ପଢ଼ିଗଲେ । ହାତର ଲେଖା ଯେ ତାଙ୍କର ବିଶ୍ୱସ୍ତ ଅନୁଚର ଆଣ୍ଟିଗୋନସ୍‌ର ଏଥିରେ ରାଜାଙ୍କର ସନ୍ଦେହ ରହିଲା ନାହିଁ । ଆହୁରି ଗୋଟିଏ କଥା ତାଙ୍କ ମନକୁ ବିହ୍ୱଳିତ କରୁଥିଲା । ସେଦିନ ଯେତେବେଳେ ଫ୍ଲୋରିଜେଲ୍, ପାର୍ଡ଼ିଟାର ହାତ ଧରି ପ୍ରଥମେ ତାଙ୍କ ଆଗରେ ଠିଆ ହୋଇଥିଲା, ରାଜା ପାର୍ଡ଼ିଟା ସହିତ ତାଙ୍କ ମୃତାପତ୍ନୀଙ୍କର ଆଶ୍ଚର୍ଯ୍ୟ ଧରଣର ସାମ୍ୟ ଦେଖି ଚକିତ ହୋଇ ପଡ଼ିଥିଲେ । ସେତେବେଳେ କିଛି ପ୍ରକାଶ କରି ନ ଥିଲେ । ଅବଶ୍ୟ ଭାବିଥିଲେ, ଯାହା ସମ୍ଭବ ନୁହେଁ, ସେକଥା ଚିନ୍ତା କରି ଲାଭ କ'ଣ ?

ବର୍ତ୍ତମାନ ସେ ଜାଣିପାରୁଛନ୍ତି, ତାଙ୍କର ସନ୍ଦେହ ସତ୍ୟରେ ପରିଣତ ହୋଇଛି । ରାଣୀ ହିଁ ପାର୍ଡ଼ିଟା ରୂପରେ ତାଙ୍କ ପାଖକୁ ଫେରି ଆସିଛନ୍ତି । ଅନେକ ଦିନ ପରେ ରାଜା ଖୁସିରେ ଆତ୍ମହରା ହୋଇପଡ଼ିଲେ । ଡେଲ୍‌ଫିର ସେଇ ଭବିଷ୍ୟତ୍ ବାଣୀ ବାରମ୍ବାର ତାଙ୍କ କାନରେ ପଡୁଥାଏ - ସେଥିରେ କୁହାଯାଇଥିଲା - ଯିଏ ହଜିଯାଇଛି, ସେ ଯଦି ଫେରି ନ ଆସେ ତେବେ ରାଜାଙ୍କର ବଂଶ ଲୋପ ହେବ । ସେଇ ହଜିଯାଇଥିବା ଝିଅ ଆଜି ତାଙ୍କ ପାଖକୁ ଫେରିଆସିଛି । ତାଙ୍କର ବଂଶ ଆଉ ଲୋପ ହେବ ନାହିଁ । ଝିଅ ହେବ ତାଙ୍କର ଉତ୍ତରାଧିକାରିଣୀ । ଈଶ୍ୱର ମୋ ଝିଅଜ୍ୱାଇଁଙ୍କୁ ଦୀର୍ଘଜୀବୀ କରନ୍ତୁ । ଜ୍ୱାଇଁ ପୁଣି ହେଉଛି ମୋର ଏତେଦିନର ବନ୍ଧୁ ପଲିକ୍ସେନିସ୍‌ର ଏକମାତ୍ର ସନ୍ତାନ ! ଏଇ ସବୁ ଭାବୁ ଭାବୁ ଲିଓନ୍ଟିସ ଭାବବିହ୍ୱଳ ହୋଇପଡ଼ନ୍ତି । ଅଶେଷ କୃତଜ୍ଞତା ପ୍ରକାଶ କରନ୍ତି ତାଙ୍କର ଭାଗ୍ୟବିଧାତାଙ୍କ ନିକଟରେ । ରାଜା ମୁଗ୍ଧ ଆନନ୍ଦରେ ଚୁପ୍‌ଚାପ୍ ବସି ରହନ୍ତି ।

॥ ୭ ॥

ଆନନ୍ଦର ଛୁଆଁ ଉପସ୍ଥିତ ସମସ୍ତଙ୍କ ମନରେ ଲାଗେ । ଦୀର୍ଘକାଳ ମାନସିକ ସନ୍ତାପରେ ଘାଣ୍ଟି ହେଉଥିବା ରାଜା ଲିଓନ୍ଟିସଙ୍କ ପାଇଁ ନିୟତି ଯେମିତି ଆହୁରି କିଛି ଆନନ୍ଦ ପରିବେଷଣ କରିବା ପାଇଁ ମନ୍ ସ୍ଥିର କରି ନେଇଥାଏ ।

ଲିଓନ୍ଟିସ ନବାଗତା କନ୍ୟା ଆଡ଼େ ଏକଦୃଷ୍ଟିରେ ଅନାଇ ରହିଥାଆନ୍ତି । ପତ୍ନୀଙ୍କ ସମ୍ପର୍କିତ ଅନେକ ପୁରୁଣା ସ୍ମୃତି ତାଙ୍କ ମନ ଭିତରକୁ ପଶି ଆସୁଥାଏ : ଏଇଆକୁ ସେ ପ୍ରାୟ ମୃତ୍ୟୁଦଣ୍ଡ ଦେଇଥିଲେ । ପତ୍ନୀଙ୍କର ଶତକାକୁତି ମିନତିକୁ ଭୃକ୍ଷେପ କରି ନ ଥିଲେ । ଭାଗ୍ୟ ବଳରୁ ସେ ଆଜି ବଞ୍ଚି ରହି ତାଙ୍କ ଆଗରେ ଠିଆ ହୋଇଛି । ତା'ସହିତ ମନଭିତରକୁ ବାରମ୍ବାର ପଶିଆସୁଛି ମୃତପତ୍ନୀଙ୍କର ସ୍ମୃତି - ଆଃ... ସେ ଯଦି ଆଜି ବଞ୍ଚିଥାଆନ୍ତେ !!

ଏତିକିବେଳେ ସେଠାରେ ପ୍ରବେଶ କରନ୍ତି ପଲିନା ... ମୃତା ରାଣୀଙ୍କ ଅନ୍ତରଙ୍ଗ ବାନ୍ଧବୀ । ରାଣୀଙ୍କ ମୃତ୍ୟୁ ସମୟରେ ତାଙ୍କ ସହିତ ଶେଷଥର ପାଇଁ ଦେଖା ହୋଇଥିଲା । ନିଷ୍ଠୁରତା ପାଇଁ ରାଜାଙ୍କୁ ଭର୍ତ୍ସନା କରି ସେ ଚାଲିଯାଇଥିଲେ । ତା'ପରେ ତାଙ୍କ ସହିତ ଆଜି ଏଇ ଦେଖା ହେଉଛି । ତେବେ ସେ କାହିଁକି ଆସିଛନ୍ତି ?

ପଲିନା ଅଳ୍ପ ସମୟ ପାଇଁ ତାଙ୍କ ଘରକୁ ଆସିବାକୁ ରାଜାଙ୍କୁ ଅନୁରୋଧ କରନ୍ତି । ଜଣାନ୍ତି - ନିପୁଣ ଏକ ଶିଳ୍ପୀ ଦ୍ୱାରା ସେ ନିଜର ପ୍ରିୟାବାନ୍ଧବୀ ହାର୍ମିଓନ୍‌ଙ୍କର ଏକ ପ୍ରତିମୂର୍ତ୍ତି ପ୍ରସ୍ତୁତ କରାଇଛନ୍ତି । ଅନୁଗ୍ରହ କରି ରାଜା ଯଦି ତାଙ୍କ ଘରେ ପାଦ ଦେଇ ସେ ସମ୍ପର୍କରେ କିଛି ମନ୍ତବ୍ୟ ଦିଅନ୍ତି, ତେବେ ସେ କୃତାର୍ଥ ହେବେ ।

ରାଜାଙ୍କର ଆଗ୍ରହ ହୁଏ । ସେ ଯିବାକୁ ରାଜି ହୁଅନ୍ତି । ପାର୍ଡ଼ିଟା ମଧ ତାଙ୍କ ସହିତ ଯିବାପାଇଁ ଆଗ୍ରହ ଦେଖାଏ ।

ପଲିନା ମୂର୍ତ୍ତି ଉପରୁ ପର୍ଦ୍ଦା ହଟାଇ ଦିଅନ୍ତି ।

ରାଜା ଏ କ'ଣ ଦେଖୁଛନ୍ତି ! ତାଙ୍କ ଆଖି ଠିକ୍ ଅଛିତ ! ଏ କ'ଣ ପ୍ରକୃତରେ ନିଷ୍ପ୍ରାଣ ମୂର୍ତ୍ତିଟିଏ ! -ଏ ଯେ ନିଜେ ରାଣୀ । ଏତିକି କହି ରାଜା ଆଗକୁ ପାଦ ବଢ଼ାନ୍ତି । ଇଚ୍ଛା, ଏଇ ଭାସ୍କର୍ଯ୍ୟକୁ ସେ ପାଖରୁ ଛୁଇଁ ଦେଖିବେ । ମୂର୍ତ୍ତିର ରାଣୀ ଅବଶ୍ୟ ଟିକିଏ ବୟସ୍କା ଦେଖାଯାଉଛନ୍ତି । ତା'ତ ହେବ । ଏହା ଭିତରେ ଦୀର୍ଘ ଷୋହଳ ବର୍ଷ ବିତିଗଲାଣି ଯେ !

ରାଜା ବିହ୍ୱଳ ଦୃଷ୍ଟିରେ ପ୍ରତିମୂର୍ତ୍ତି ଆଡ଼େ ଅନାଇ ରହିଥା'ନ୍ତି । ତାଙ୍କ ଦୁଇଆଖିରୁ ବହିଆସୁଥାଏ ଅସରନ୍ତି ଅଶ୍ରୁଧାରା । ରାଜା ଅନୁଭବ କରିପାରନ୍ତି ଯେ, ମୂର୍ତ୍ତିଠାରେ ସ୍ପନ୍ଦନ ସେ ସ୍ପଷ୍ଟ ଦେଖିଛନ୍ତି । ତେବେ କ'ଣ ...

ପଲିନା ମୂର୍ତ୍ତି ଉପରେ ପର୍ଦ୍ଦା ଟାଣି ଦେଉ ଦେଉ କହନ୍ତି, ଆପଣ ଉତ୍ତେଜିତ ହୋଇ ପଡ଼ିଛନ୍ତି । ଏହା ପରେ ହୁଏତ ମୂର୍ତ୍ତି ଚଲାବୁଲା କରୁଥିବାର ଆପଣ ଲକ୍ଷ୍ୟ କରିବେ ।

ଲିଓନ୍ଟିସ ଭାବୁଥାଆନ୍ତି- ଆହା, ଯଦି ଏଇ ଜଡ଼ବସ୍ତୁରେ ଜୀବନ ସଞ୍ଚାର ହୋଇପାରନ୍ତା ! ହାର୍ମିଓନ୍ ରକ୍ତମାଂସର ଶରୀର ନେଇ ପୁଣି ମୋ ପାଖକୁ ଫେରି ଆସନ୍ତେ !

ରାଜାଙ୍କୁ ସାନ୍ତ୍ୱନା ଦେଇ ପଲିନା କହନ୍ତି - ଆପଣ ଏଇ ମୂର୍ତ୍ତିଆଡ଼େ ଏକଦୃଷ୍ଟିରେ ଅନାଇବେ ନାହିଁ । ଯଦି ସେମିତି ଅନାନ୍ତି, ତେବେ ଏହା ଅପେକ୍ଷା ଆଶ୍ଚର୍ଯ୍ୟଜନକ ଘଟଣା ହୁଏତ ଆପଣଙ୍କ ଆଖିରେ ପଡ଼ିବ । ଏ ମୂର୍ତ୍ତିଦ୍ୱାରା ମୁଁ ମୋର ଇଚ୍ଛାଅନୁସାରେ ବହୁକାର୍ଯ୍ୟ କରାଇପାରେ । ଆପଣ ହୁଏତ ଏ କଥା ବିଶ୍ୱାସ କରିବେ ନାହିଁ । ମୁଁ ଏହାଙ୍କ ଠାରେ ଚାହିଁଲେ ପ୍ରାଣ ସଞ୍ଚାର କରି ଦେଇପାରେ । ମୂର୍ତ୍ତି ଧୀରେ ଧୀରେ ଆଗେଇ ଆସି ଆପଣଙ୍କ ହାତ ଧରିବ - ଏମିତି ମଧ କରିଦେଇପାରେ । କୌଣସି ଯାଦୁବିଦ୍ୟା ବଳରେ ଏହା ସମ୍ଭବ ବୋଲି ଆପଣ ଧରି ନେଇପାରନ୍ତି ।

ଆଗ୍ରହୀ ହୋଇ ରାଜା କହନ୍ତି - 'ଯେମିତି ତମର ଇଚ୍ଛା ସେମିତି ଦେଖାଅ । ତାଙ୍କୁ କେବଳ ଟିକିଏ ଦେଖିପାରିଲେ ମୁଁ ଖୁସି ହେବି । ଆଉ ଥରେ ଯଦି ତା'ର କଣ୍ଠ ସ୍ୱର ମୋତେ ଶୁଣାଇ ଦେଇପାର, ତେବେ ମୁଁ ଷୋହଳବର୍ଷ ପଛକୁ ଫେରିଯାଇପାରେ । ଅନୁରୋଧ, ସେଇ ସ୍ୱର ଯେମିତି ହେଲେ ମୋତେ ଶୁଣାଅ । ମୁଁ ଶାନ୍ତି ପାଇବି ।'

ପଲିନା କ'ଣ ସୂଚନା ଦିଅନ୍ତି । ଭିତରୁ ସୃଷ୍ଟି ହୁଏ ସଂଗୀତର ମଧୁର ମୂର୍ଚ୍ଛନା । ପର୍ଦ୍ଦା ଧୀରେ ଧୀରେ ଅପସାରିତ ହୁଏ । ସୁମଧୁର ସଙ୍ଗୀତର ତାଳେ ତାଳେ ପାଦ ପକାଇ ଧୀରେ ଧୀରେ ବେଦୀ ଉପରୁ ଓହ୍ଲାଇ ଆସନ୍ତି ହାର୍ମିଓନ୍ । ରାଜାଙ୍କ ପାଖରେ ପହଞ୍ଚି ତାଙ୍କୁ ନିବିଡ଼ ଭାବରେ ଆଲିଙ୍ଗନ କରନ୍ତି ।

ରାଜା ଅଧୀର ହୋଇପଡ଼ନ୍ତି । ଏସବୁ ମନେହୁଏ ତାଙ୍କୁ ପ୍ରହେଳିକା ଭଳି । ସେ ତ ସ୍ପଷ୍ଟ ଭାବରେ ରାଣୀଙ୍କର ହାତର ସ୍ପର୍ଶ ଅନୁଭବ କରିପାରୁଛନ୍ତି । ମୃତ ବ୍ୟକ୍ତିର କଣ ଏହା ଥାଏ ? ସେ ଏଥର ଜାଣିପାରନ୍ତି, ଯେଉଁ ଶରୀର ତାଙ୍କୁ ଜଡ଼େଇ ଧରିଛି, ତାହା କୌଣସି ମୃତ ବ୍ୟକ୍ତିର ନୁହେଁ । ଏ ନିଶ୍ଚିତ ଭାବେ କୌଣସି ରକ୍ତମାଂସଧାରୀ ଦେହ । ତେବେ କଣ ? ଆନନ୍ଦବିହ୍ୱଳ ରାଜା ଏଥର ନିଜେ ହାର୍ମିଓନ୍‌ଙ୍କୁ ଗଭୀର ଭାବରେ ଆଶ୍ଲେଷି ଧରନ୍ତି । ମିଳନ ପର୍ବ ଶେଷ ହୁଏ ।

ଦୀର୍ଘ ଷୋହଳ ବର୍ଷଧରି ରାଣୀ ରାଜାଙ୍କଠାରୁ ବିଚ୍ଛିନ୍ନ ହୋଇଥିଲେ । ବିଚାରାଳୟରୁ ମୂର୍ଚ୍ଛିତା ଅବସ୍ଥାରେ ତାଙ୍କୁ ଅପସାରିତ କରାଯାଇଥିଲା । ଚେତା ତାଙ୍କର ଗୋଟାଏ ସମୟରେ ଫେରିଥିଲା । ତେବେ ଇତିମଧ୍ୟରେ ପଲିନା ରାଜାଙ୍କ ଆଗରେ ତାଙ୍କର ମୃତ୍ୟୁ ସମ୍ବାଦ ପରିବେଷଣ କରିସାରିଥିଲେ । ରାଜାଙ୍କର ସବୁ ଅପରାଧକୁ ହୁଏତ କ୍ଷମା କରିଦିଆଯାଇପାରେ । କିନ୍ତୁ ନିଜର ଝିଅ ପ୍ରତି ସେ ଯେଉଁ ଅମାନୁଷିକ ବ୍ୟବହାର ଦେଖାଇଛନ୍ତି, ତାହାର କୌଣସି କ୍ଷମା ନାହିଁ । ଅନ୍ତତଃ ରାଣୀଙ୍କ ଦୃଷ୍ଟିରେ ନାହିଁ । ଅସୀମ ଲଜ୍ଜା ଏବଂ ଘୃଣାରେ ସେ ପଲିନାଙ୍କର ଘରେ ନିଜକୁ ଲୁଚାଇ ରଖିଥିଲେ । ରାଜାଙ୍କ ନିକଟରେ କେବେହେଲେ ଆତ୍ମପ୍ରକାଶ କରିବାର ଇଚ୍ଛା ତାଙ୍କର ଆଦୌ ନ ଥିଲା । ସ୍ଥିର କରିଥିଲେ ଦୈବବାଣୀ ଅନୁସାରେ ଯଦି କେବେ ତାଙ୍କର ନିର୍ବାସିତା କନ୍ୟାର ସନ୍ଧାନ ମିଳେ, ତେବେ ଯାଇ ସେ ଆତ୍ମପ୍ରକାଶ କରିବେ ।

ସେଇ ଅସମ୍ଭବ ଏବେ ସମ୍ଭବ ହୋଇଛି । ତାଙ୍କର ସେଇ କନ୍ୟା ନିୟତିର ନିଷ୍ଠୁର ଚକ୍ରାନ୍ତରେ ତାଙ୍କଠାରୁ ବିଚ୍ଛିନ୍ନ ହୋଇ ତାଙ୍କରି ନିର୍ଦ୍ଦେଶରେ ପୁଣି ଫେରିଆସିଛି ତାଙ୍କର ପିତାଙ୍କ ପାଖକୁ, ତା ନିଜ ଘରକୁ । ଏଥର ତେଣୁ ଆତ୍ମପ୍ରକାଶ ନ କରିବାର କୌଣସି କାରଣ ନ ଥିଲା ।

ଏଭଳି ଏକ ନାଟକୀୟ ପରିବେଶରେ ଆତ୍ମପ୍ରକାଶ କରିବାର କଳ୍ପନାଟି ପଲିନାଙ୍କର । ଯେଉଁ ରାଜା ତାଙ୍କୁ ଯାବତୀୟ କଦର୍ଯ୍ୟ ଅପବାଦ ଦେଇଥିଲେ, କିଛିକ୍ଷଣ ମୂର୍ତ୍ତି ସାଜି ସେ ତାଙ୍କ ବିଚ୍ଛେଦରେ ରାଜାଙ୍କର ପ୍ରକୃତ ଅବସ୍ଥାଟା ଟିକିଏ ଦେଖି ନିଅନ୍ତୁ । ତାଙ୍କର କଳ୍ପନା ସଫଳ ହେଲା ।

ପଲିକ୍ସେନିସ୍ ଆନନ୍ଦର ଏଇ ପୂର୍ଣ୍ଣ ସଭାରେ ଯୋଗ ଦିଅନ୍ତି । ସମସ୍ତ ମନୋମାଳିନ୍ୟ ଦୂର ହୋଇ ଦୁଇ ବନ୍ଧୁଙ୍କ ମଧ୍ୟରେ ପୁନର୍ବାର ପ୍ରୀତିର ସମ୍ପର୍କ ସ୍ଥାପିତ ହୁଏ । ଫ୍ଲୋରିଜେଲ ସହିତ ପାର୍ଡ଼ିଟାର ବିବାହ ଫଳରେ ଏଇ ସମ୍ପର୍କ ନୂଆ ରୂପ ନିଏ ।

ରାଣୀ ହାର୍ମିଓନ୍ ସବୁ ଫେରିପାଆନ୍ତି- ସ୍ୱାମୀଙ୍କର ବିଶ୍ୱାସ, କନ୍ୟାର ବାତ୍ସଲ୍ୟ ସବୁ । କେବଳ ରହି ରହି ତାଙ୍କ ମନ ଭିତରୁ ଉଙ୍କିମାରେ ଆଉ ଗୋଟିଏ କଅଁଳା ପିଲାର ଅସହାୟ କାନ୍ଦ । ମା'ର ଉଷ୍ମକୋଳ ଖୋଜୁ ଖୋଜୁ ଦିନେ ସେ ଜୀବନ ହାରି ଦେଇଥିଲା । ହାର୍ମିଓନ୍‌ଙ୍କ ଆଖି ସଜଳ ହୋଇଉଠେ ।

# ସିମ୍‌ବେଲିନ୍

॥ ୧ ॥

ଏ ହେଉଛି ସେଇ ସମୟର କଥା, ଯେତେବେଳେ ବ୍ରିଟେନ୍‌ର ରାଜା ଥିଲେ ସିମ୍ବେଲିନ୍ । ତା' ପୂର୍ବରୁ ମହାପରାକ୍ରମୀ ରୋମୀୟ ସମ୍ରାଟ୍ ଜୁଲିୟସ ସିଜାର ବ୍ରିଟେନ୍ ଜୟ କରନ୍ତି । ତେବେ ତାଙ୍କ ହତ୍ୟା ପରେ ରୋମ୍‌ରେ ଗୃହଯୁଦ୍ଧ ଆରମ୍ଭ ହୋଇଯାଏ । କ୍ଷମତା ପାଇଁ କନ୍ଦଳ ଚାଲେ । ଏସବୁ ଅଶାନ୍ତି ଭିତରେ ରୋମୀୟ ନେତାମାନେ ସୁଦୂର ବ୍ରିଟେନ୍ ପ୍ରତି ଦୃଷ୍ଟି ଦେବାକୁ ସମୟ କରିପାରନ୍ତି ନାହିଁ । ଏହି ସୁଯୋଗରେ ରାଜା ସିମ୍ବେଲିନ୍ ରୋମ୍‌କୁ ତାଙ୍କର ବାର୍ଷିକ କର ପଠାଇବା ବନ୍ଦ କରିଦିଅନ୍ତି ।

ଗୃହଯୁଦ୍ଧ ଶେଷ ହୋଇଯିବା ପରେ ଯେଉଁମାନେ ସେଠାରେ କ୍ଷମତାରେ ରହିଲେ, ସେମାନେ ଇଂରେଜ ରାଜାଙ୍କର ଏହି ଔଦ୍ଧତ୍ୟ ଦମନ କରିବା ନିମନ୍ତେ କୌଣସି ପଦକ୍ଷେପ ନେଲେ ନାହିଁ । ଏଥର ସିମ୍ବେଲିନ୍ ହୋଇଗଲେ ସମ୍ପୂର୍ଣ୍ଣ ସ୍ୱାଧୀନ । ସୁଖର ଦିନ ତାଙ୍କର ପାଣିପରି ବହିଚାଲିଲା ।

ତେବେ ସୁଖ ହେଉଛି ଏକ ମରୀଚିକା- ତା' ପଛରେ ଧାଇଁଲେ ତହିଁରୁ ଶାନ୍ତି ମିଳେ ନାହିଁ । ସୁଖ ପୁଣି ଏକ ଅସ୍ଥିର ବିଦ୍ୟୁତ୍ ରେଖା, ଯାହା ଚମକ ସୃଷ୍ଟି କରେ, ମାତ୍ର ଆଲୋକ ଦିଏ ନାହିଁ । ସୁଖର ସଞ୍ଚୟ ସିମ୍ବେଲିନ୍‌ଙ୍କର ଶେଷ ହୋଇଥିଲା । ଏଥର ଦୁଃଖର ମିଆଦ । ରାତ୍ରିଚର ଡକାୟତମାନେ ଯେଉଁଭଳି 'ହାରେରେ...ରେ' ସ୍ୱରରେ କିଳିକିଳା ରଡ଼ି ଛାଡ଼ି ଗୃହସ୍ୱାମୀଙ୍କ ଉପରେ ଝାମ୍ପିପଡ଼ନ୍ତି, ଦୁଃଖ ସେମିତି ଆସି ତାଙ୍କ ଉପରେ ଝାମ୍ପି ପଡ଼ିଲା ।

ତିନିଟି ଛୋଟ ଛୋଟ ସନ୍ତାନ ରଖି ରାଣୀ ମୃତ୍ୟୁବରଣ କରନ୍ତି । ପିଲାମାନଙ୍କ ଭିତରେ ବଡ଼ଟି ଝିଅ । ପର ଦୁଇଟି ପୁଅ । ଝିଅର ନାମ ଆଇମୋଜେନ । ପୁଅମାନଙ୍କର ନାମ ଗିଡ଼େରିୟାସ୍ ଏବଂ ଆର୍ଭିରେଗାସ୍ । ବଡ଼ପୁଅଟି ତିନି ବର୍ଷର । ସାନଟି ନିହାତି ଶିଶୁ । ପିଲା ଦୁଇଟିଙ୍କୁ ଦେଖାଶୁଣା କରିବା ପାଇଁ ରାଜା ଜଣେ ଧାତ୍ରୀ ନିଯୁକ୍ତ କରନ୍ତି । ତା'ର ନାମ ୟୁରିଫାଇଲ୍ ।

ଭାଗ୍ୟଦେବତା ଏଥର ସିମ୍ବେଲିନ୍‌ଙ୍କ ଜୀବନର ଦ୍ୱିତୀୟ ଆଘାତ ହାଣନ୍ତି । ଉଆସ ଭିତରୁ ରାଜାଙ୍କର ଶିଶୁପୁତ୍ର ଦୁଇଟି ଚୋରି ହୋଇଯାଆନ୍ତି । ପିଲା ଦୁଇଟିଙ୍କୁ କିଏ ଚୋରି କରେ, ସେମାନଙ୍କର ଗତି କ'ଣ ହୁଏ, ଏସବୁ ରାଜା କିଛି ଜାଣିପାରନ୍ତି ନାହିଁ ।

ଏକମାତ୍ର ଝିଅ ଆଇମୋଜେନ୍ ରାଜାଙ୍କ ପାଖରେ ରହିଯାଏ । ପିତାଙ୍କର ସ୍ନେହମମତା ଭିତରେ ସେ ଧୀରେ ଧୀରେ ବଡ଼ ହେଉଥାଏ । ତାକୁ କେନ୍ଦ୍ରକରି ରାଜାଙ୍କର ସବୁ ସ୍ୱପ୍ନ । ଦଣ୍ଡେ

ହେଲେ ସେ ତାକୁ ପାଖରୁ ଅନ୍ତର କରନ୍ତି ନାହିଁ । ସମସ୍ତେ ଜାଣନ୍ତି, ରାଜକୁମାରୀ ହିଁ ହେଉଛନ୍ତି ବ୍ରିଟେନ୍‌ର ଭବିଷ୍ୟତ୍‌ସାମ୍ରାଜ୍ଞୀ । ମଣିଷ ତ କେତେ କଥା ଜାଣେ, କେତେ ଚିନ୍ତା କରେ । ସବୁ କ'ଣ ସଫଳ ହୁଏ ?

ଏହା ଭିତରେ ରାଜକୁମାରୀ କୈଶୋର ପାରି ହୋଇ ଯୌବନ ଅବସ୍ଥାରେ ପହଞ୍ଚ ଯାଆନ୍ତି । ରୂପଗୁଣରେ ତାଙ୍କର ସମକକ୍ଷ ଆଉ କେହି ଦେଶରେ ନାହାନ୍ତି । ସ୍ୱଭାବ ମଧ ବେଶ୍ ମଧୁର, ଆତ୍ମମର୍ଯ୍ୟାଦା ବୋଧ ବେଶ୍ ପ୍ରବଳ ।

ରାଜକୁମାରୀ ଅଛନ୍ତି, ଖାଉଛନ୍ତି, ପିଉଛନ୍ତି, ସହଚରୀମାନଙ୍କ ସହିତ ମିଶି ନାନା ଆମୋଦ ପ୍ରମୋଦରେ ସମୟ କଟାଉଛନ୍ତି । ସହସା ତାଙ୍କ ଭାଗ୍ୟ-ଆକାଶରେ ଦେଖାଦିଏ ଦୁର୍ଯୋଗର କଳା ମେଘଖଣ୍ଡେ । ପରିଣତ ବୟସରେ ରାଜାଙ୍କର ବୁଦ୍ଧି ନାଶ ହୁଏ । ସେ ଆଉଥରେ ବିବାହ କରନ୍ତି । ପାତ୍ରୀ ମଧବୟସ୍କା, ସୁନ୍ଦରୀ ଏବଂ ବିଧବା । ନୂଆ ରାଣୀଙ୍କର ପ୍ରଥମ-ପକ୍ଷରୁ ପୁଅଟିଏ ବି ରହିଛି । ନାମ କ୍ଲୋଟେନ୍ । ଅଳ୍ପ ବୟସରୁ ଏଇ ତରୁଣ -ସବୁ ପ୍ରକାର ପାପ କାର୍ଯ୍ୟରେ ଧୁରନ୍ଧର ହୋଇ ଉଠିଛି । ବିବେକ ବୋଲି କୌଣସି ବସ୍ତୁ ତା' ପାଖରେ ନ ଥାଏ ।

ରାଣୀ ଅତ୍ୟନ୍ତ ଦୁଷ୍ଟ ପ୍ରକୃତିର ମହିଳା । ଷଡ଼୍‌ଯନ୍ତ୍ର ସୃଷ୍ଟି ଆଉ ତା'ଭିତରେ ବିହାର— ଏହାହିଁ ଥିଲା ତାଙ୍କର ବିଳାସ । ସେ ଠିକ୍ କରନ୍ତି, କ୍ଲୋଟେନ୍ ସହିତ ଆଇମୋଜେନ୍‌ର ବିବାହ ଦେବେ । ପୁଅପାଇଁ ରାଜମୁକୁଟର ପକ୍କା ବ୍ୟବସ୍ଥା ହୋଇଯିବ । ରାଜାଙ୍କର ବୟସ ହେଲାଣି । ସେ ବା ଆଉ କେତେ ଦିନ ! ତା'ପରେ ସବୁ ତାଙ୍କ ପୁଅର । ଏଥିପାଇଁ ପଥ ପରିଷ୍କାର କରିବାକୁ ହେବ । ଆଇମୋଜେନ୍ ମନରେ କ୍ଲୋଟେନ୍ ନିମନ୍ତେ ଅନୁରାଗ ସୃଷ୍ଟି କରାଇବାକୁ ପଡ଼ିବ । ଏକମାତ୍ର କନ୍ୟାର ଇଚ୍ଛା ବିରୋଧରେ ରାଜା କିଛି କରିବେ ନାହିଁ, ରାଣୀ ଏହା ଜାଣନ୍ତି । ଏଣେ ତାଙ୍କର ଗୁଣଧର ପୁତ୍ର ସମ୍ପର୍କରେ ଆଇମୋଜେନ୍‌ର ମନୋଭାବ ମଧ ତାଙ୍କର ଅଜଣା ନୁହଁ ।

ଆଇମୋଜେନ୍‌କୁ ସେ ନିଜେ ଘୃଣା କରନ୍ତି । ତଥାପି କାର୍ଯ୍ୟ ଉଦ୍ଧାର ପାଇଁ ସେ ମିଠା ମିଠା କଥା ଦ୍ୱାରା ତା'ର ମନ ଜିତିବା ପାଇଁ ଉଦ୍ୟମ କରୁଥାଆନ୍ତି ।

ଆଇମୋଜେନ୍ ସହିତ ମିଳାମିଶା କରି ତା'ର ମନ ପାଇବା ପାଇଁ ଚେଷ୍ଟା କରିବାକୁ ସେ କ୍ଲୋଟେନ୍‌କୁ କହି ଦେଇଥାଆନ୍ତି ।

କ୍ଲୋଟେନ୍‌ର ପ୍ରକୃତି କଥା ଜାଣିଥିବାରୁ ଆଇମୋଜେନ୍ ତା' ଛାଇଠାରୁ ବି ନିଜକୁ ଦୂରେଇ ରଖେ । ମୁହଁରେ ଯେତେ ମିଠାକଥା କହିଲେ ବି ରାଣୀ ଯେ ତାକୁ ମୋଟେ ପସନ୍ଦ କରନ୍ତି ନାହିଁ, ଏକଥା ଜାଣିବାକୁ ବି ତା'ର ବାକି ନ ଥାଏ । ରାଣୀଙ୍କ ପ୍ରଭାବରେ ପଡ଼ି ରାଜା ଯେ କ୍ଲୋଟେନ୍ ସହିତ ତା'ର ବିବାହ ଚାହୁଁଛନ୍ତି ଏଇଟା ହୋଇଥାଏ ଆଇମୋଜେନ୍ ପାଇଁ ଅସହ୍ୟ ।

ଏ ବିବାହ ପଛରେ ରାଣୀଙ୍କର ଉଦ୍ଦେଶ୍ୟ କ'ଣ - ସେ କଥା ଜାଣିବାକୁ ବୁଦ୍ଧିମତୀ ଆଇମୋଜେନ୍‌ର ଡେରି ହୋଇ ନ ଥିଲା ତେଣୁ ସେ ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଇଥାଏ । ଫଳରେ ରାଜା ଆଉ ରାଣୀ ଦୁହେଁ ତା' ଉପରେ ଖୁବ୍ ବିରକ୍ତ । କିନ୍ତୁ ଉପାୟ କ'ଣ ? ଝିଅ ବଡ଼ ହୋଇଛି, ଧରିବାନ୍ଧି ତ ଆଉ ତା'ର ବିବାହ ଦିଆଯାଇପାରିବ ନାହିଁ । ତେଣୁ କ୍ଲୋଟେନ୍‌କୁ ଧୈର୍ଯ୍ୟଧରି କିଛିଦିନ ଅପେକ୍ଷା କରିବାକୁ ପରାମର୍ଶ ଦିଆଯାଏ ।

ହୁଏତ ଏହା ଭିତରେ ରାଜକୁମାରୀଙ୍କର ମନ ବଦଳିଯାଇପାରେ ।

ତେବେ ରାଣୀଙ୍କର ଏଇ ଯୋଜନା ସଫଳ ହେବାର କୌଣସି ଆଶା ଦେଖାଯାଏ ନାହିଁ । ଇତିମଧ୍ୟରେ ଆଇମୋଜେନ୍ ଭଲପାଇ ବସେ ଏବଂ ରାଜା ବା ରାଣୀଙ୍କର ଅଗୋଚରରେ ସେଇ ପାତ୍ର ସହିତ ଗୋପନରେ ତା'ର ବିବାହ ମଧ୍ୟ ହୋଇଯାଏ ।

ପାତ୍ରଟି ରାଜାଙ୍କର ଜଣେ ପୂର୍ବତନ ସେନାପତିଙ୍କର ପୁତ୍ର । ଯୁଦ୍ଧ ସମୟରେ ଶତ୍ରୁ ଉପରେ ଏଇ ସେନାପତି ଝାମ୍ପିପଡୁଥିଲେ, ଠିକ୍ ସିଂହଭଳି । ଏଥିପାଇଁ ତାଙ୍କର ଉପାଧି ଥିଲା ' ଲିଓନେଟାସ୍' । ଲାଟିନ୍ ଭାଷାରେ 'ଲିଓ' ଶବ୍ଦର ଅର୍ଥ ହେଉଛି ସିଂହ । ରାଜାଙ୍କ ତରଫରୁ ଯୁଦ୍ଧ କରିବାକୁ ଯାଇ ଏଇ ବୀର ସେନାପତି ରଣକ୍ଷେତ୍ରରେ ବୀରଗତି ପ୍ରାପ୍ତ ହୁଅନ୍ତି । ତାଙ୍କର ମୃତ୍ୟୁ ପରେ ତାଙ୍କ ସ୍ତ୍ରୀ ଗୋଟିଏ ପୁତ୍ରସନ୍ତାନ ଜନ୍ମଦିଅନ୍ତି । ସେଇ ପୁତ୍ରର ନାମ ପୋସ୍‌ଥମାସ୍ । ପିତାଙ୍କ ମୃତ୍ୟୁପରେ ଯେଉଁ ସନ୍ତାନର ଜନ୍ମ ହୁଏ ଇଂରେଜୀ ଭାଷାରେ ତାକୁ 'ପୋସ୍‌ଥମାସ୍ ଚାଇଲ୍ଡ' ବୋଲି କୁହାଯାଏ । ପୋସଥମାସ୍‌ର ଜନ୍ମର କିଛିଦିନ ପରେ ସ୍ୱାମୀ ଶୋକରେ ତା'ର ମାଙ୍କର ମୃତ୍ୟୁ ହୋଇଯାଏ । ଫଳରେ ଶିଶୁଟି ହୁଏ ଅନାଥ-ଏତେ ବଡ଼ ଦୁନିଆରେ ସମ୍ପୂର୍ଣ୍ଣ ଏକାକୀ ।

ରାଜା ଅକୃତଜ୍ଞ ହୁଅନ୍ତି ନାହିଁ । ବୀର ସେନାପତିଙ୍କର ଦେଶପାଇଁ ତ୍ୟାଗର କଥା ସ୍ମରଣ କରି ଶିଶୁଟିର ଲାଳନ ପାଳନର ଦାୟିତ୍ୱ ନିଜେ ଗ୍ରହଣ କରନ୍ତି । ଶିଶୁର ନାମ ହୁଏ 'ପୋସ୍‌ଥମାସ୍ ଲିଓନେଟାସ୍ ।'

ବୟସ କାଳରେ ପୋସ୍‌ଥମାସ୍ ତା'ର ବାପାଙ୍କ ଭଳି ବୀର ଆଉ ସାହସୀ ହୋଇଉଠେ । ବିଦ୍ୟାବୁଦ୍ଧି ସବୁଥିରେ ମଧ୍ୟ ତା'ର କୃତିତ୍ୱ କହିବା ଭଳି ହୁଏ । ସେ ସତ୍ୟବାଦୀ, ଦୟାଳୁ, ଧର୍ମବିଶ୍ୱାସୀ । ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ।

ଆଇମୋଜେନ୍ ଆଉ ପୋସ୍‌ଥାମାସ୍ ଏକା ସାଙ୍ଗରେ ବଡ଼ହୋଇଛନ୍ତି, ଲେଖାପଢ଼ା ଶିଖିଛନ୍ତି । ଯେଉଁ ସବୁ ଜ୍ଞାନୀ, ଗୁଣୀ ଆଉ ପଣ୍ଡିତ ରାଜା କୁମାରୀଙ୍କୁ ଶିକ୍ଷା ଦିଅନ୍ତି, ପୋସ୍‌ଥମାସ୍ ମଧ୍ୟ ସେଇମାନଙ୍କଠାରୁ ଶିକ୍ଷା ଗ୍ରହଣ କରେ । ପିଲା ଦିନରେ ଦୁହେଁ ଏକାଠି ଖେଳିଛନ୍ତି, ବୁଲିଛନ୍ତି । ପରସ୍ପରକୁ ଭଲପାଇଛନ୍ତି ଏବଂ ଶେଷରେ ସେଇ ଭଲପାଇବା ପ୍ରେମରେ ପରିଣତ ହୋଇଛି । ଆଇମୋଜେନ୍ ଗୋପନରେ ତାକୁ ହିଁ ବିବାହ କରିଛି ।

ରାଣୀଙ୍କର ଆଖି ସାପର ଆଖି ପରି ଚାରିଆଡ଼େ ବୁଲୁଥାଏ । ସେ ଏଇ ଗୋପନ ବିବାହ କଥା ଜାଣିନିଅନ୍ତି । ଗୁପ୍ତଚରଠାରୁ ଏକଥା ଶୁଣି ସେ ପ୍ରଥମେ ହତାଶ ହୋଇପଡ଼ନ୍ତି । ତାଙ୍କର ଏତେ ବଡ଼ ଆଶା ଧୂଳିସାତ୍ ହୋଇଯାଏ । ହତାଶା ଅଚିରେ ପରିଣତ ହୁଏ କ୍ରୋଧରେ । ସେ ଟୀକାଟିପ୍ପଣୀ ସହକାରେ ଝିଅର ଏଇ ଦୁଃସାହସର କଥା ରାଜାଙ୍କ ଆଗରେ ବର୍ଣ୍ଣନା କରନ୍ତି ।

ରାଜା ଅସ୍ଥିର ହୋଇପଡ଼ନ୍ତି । ଅସ୍ଥିରତା ପରିଣତ ହୁଏ କ୍ରୋଧରେ । ରାଣୀଙ୍କର କଟା କଟା କଥା ସେଇ କ୍ରୋଧର ନିଆଁରେ ଘିଅ ଢାଳିଲା ଭଳି କାମ କରେ । କୋଉ ବଂଶର ଝିଅ, ସେ ପୁଣି ବିବାହ କଲା ଗୋଟାଏ ସାମାନ୍ୟ ପ୍ରଜାର ପୁଅକୁ ! ବାପାଙ୍କର ମାନମର୍ଯ୍ୟାଦା ସବୁକୁ ପାଦରେ ଠେଲିଦେଲା !

ରାଜା ଆଦେଶ ଦିଅନ୍ତି, ପୋସ୍‌ଥମାସ୍ ଅବିଳମ୍ବେ ରାଜ୍ୟ ଛାଡ଼ି ଚାଲିଯାଉ । ଜୀବନରେ କୌଣସି ଦିନ ସେ ଆଉ ଏଠାକୁ ଫେରିପାରିବ ନାହିଁ । ଫେରିଲେ ଶାସ୍ତି-ପ୍ରାଣଦଣ୍ଡ । ରାଣୀ ଝିଅର ଦୁଃଖରେ ଭାଙ୍ଗିପଡ଼ିବା ଭଳି ଛଳନା କରନ୍ତି । ଆହା, ଏଇ ବୟସରେ ପିଲାଟା କେତେ ବଡ଼ ଦଣ୍ଡ ପାଇଲା । ଉଦାରତା ଦେଖାଇ ସେ ଗୋପନରେ ପୋସ୍‌ଥମାସ୍ ଆଉ ଆଇମୋଜେନ୍‌ର ଦେଖାସାକ୍ଷାତ୍‌ର ବ୍ୟବସ୍ଥା କରିଦିଅନ୍ତି । ଝିଅଟା ନିଶ୍ଚୟ ତାଙ୍କ ପାଖରେ ଏଥିପାଇଁ କୃତଜ୍ଞ ରହିବ । ଭବିଷ୍ୟତ୍‌ରେ ଏଇ କୃତଜ୍ଞତାକୁ ସେ କ୍ଳୋଟେନ୍‌ର ସ୍ୱାର୍ଥରକ୍ଷା ପାଇଁ ବ୍ୟବହାର କରିପାରିବେ ।

ତାଙ୍କର ପରିକଳ୍ପନା ସ୍ଥିର ହୋଇ ସାରିଥାଏ । ଆଗ ଏଇ ବଦମାସ୍ ପୋସ୍‌ଥମାସ୍‌ଟା ଦେଶ ଛାଡ଼ି ଚାଲିଯାଉ । ତା'ପରେ ସେ ଆଇମୋଜେନ୍‌କୁ ବୁଝାଇଦେବେ ଯେ, ସେମାନଙ୍କର ଏଇ ବିବାହଟା ଆଇନ୍‌ସଙ୍ଗତ ନୁହେଁ । ପିତାଙ୍କର ସମ୍ମତି ବିନା ଯେଉଁ ବିବାହ ଆଇନ୍ ତାକୁ ସ୍ୱୀକାର କରେ ନାହିଁ । ତା'ପରେ ଆଇମୋଜେନ୍ ଆଉ କ୍ଳୋଟେନ୍‌ର ବିବାହ ଦେବାଟା ତ ତାଙ୍କ ହାତର କଥା ।

ଶେଷରେ ବିଦାୟର ସେଇ ମୁହୂର୍ତ୍ତଟି ଆସିଯାଏ । ଗଭୀର ଦୁଃଖରେ ଦୁଇ ପ୍ରଣୟୀ ପରସ୍ପରଠାରୁ ବିଦାୟ ନିଅନ୍ତି । ବିଦାୟ ମୁହୂର୍ତ୍ତରେ ଆଇମୋଜେନ୍ ସ୍ୱାମୀକୁ ହୀରାର ମୁଦିଟିଏ ଦିଏ । ଏଇ ମୁଦି ହେଉଛି ତା'ର ସ୍ୱର୍ଗଗତା ଜନନୀଙ୍କର । ପୋସ୍‌ଥମାସ୍ ପ୍ରତିଶ୍ରୁତି ଦିଏ ଯେ, ଜୀବନରେ କେବେହେଲେ ଏଇ ମୁଦିକୁ ସେ ହାତଛଡ଼ା କରିବ ନାହିଁ । ସେ ମଧ୍ୟ ସ୍ତ୍ରୀର ମଣିବନ୍ଧରେ ଗୋଟିଏ କଙ୍କଣ ପିନ୍ଧାଇଦିଏ । କହେ- ଏଇଟି ମୋ ମାଆଙ୍କର ସନ୍ତକ । ମୋର ଭଲ ପାଇବାର ସ୍ମୃତି ରୂପେ ତମ ହାତରେ ରହିଲା । ଅଯତ୍ନ କରିବ ନାହିଁ ।

ପରସ୍ପର ପ୍ରତି ଗଭୀର ପ୍ରେମ ଆଉ ବିଶ୍ୱସ୍ତତାର ଶପଥ ନେଇ ଦୁହେଁ ଦୁହିଁଙ୍କ ଠାରୁ ବିଦାୟ ନିଅନ୍ତି । ବାତାବରଣ ଦୁଇ ପ୍ରଣୟୀଙ୍କ ବିଚ୍ଛେଦ ଦୁଃଖରେ ଭାରାକ୍ରାନ୍ତ ହୋଇଉଠେ ।

ଆଇମୋଜେନ୍‌ର ସାଥିହୀନ ଜୀବନ ନିରାନନ୍ଦମୟ ହୋଇଉଠେ । ସେ ହୋଇଯାଏ ଯେମିତି ଗୋଟିଏ ଯନ୍ତ୍ର । ପୋସ୍‌ଥମାସ୍ ରୋମ୍ ଯାତ୍ରା କରେ । ଏଣିକି ସେଇଠି ସେ ରହିବ ।

॥ ୨ ॥

ଖୁବ୍ ଅଳ୍ପଦିନ ଭିତରେ ରୋମ୍‌ର ସାମାଜିକ ଜୀବନ ସହିତ ପୋସ୍‌ଥମାସ୍‌ର ପରିଚୟ ହୋଇଯାଏ । ବିଶେଷକରି ସେଠାକାର ତରୁଣ ସମାଜ ସହିତ ସେ ପରିଚୟ ବଢ଼ାଏ । ଏମାନେ ବିଭିନ୍ନ ଦେଶରୁ ଆସିଛନ୍ତି । ରୋମ୍‌ରେ ପ୍ରତ୍ୟେକଙ୍କର କିଛି ନା କିଛି କାର୍ଯ୍ୟ ରହିଛି ।

ବୟସର ଯାହା ଧର୍ମ । କିଛି ତରୁଣ ଏକାଠି ହେଲେ ଝିଅମାନଙ୍କ ବିଷୟରେ ଚର୍ଚ୍ଚା ଜମିଉଠେ । ପ୍ରତ୍ୟେକେ ନିଜ ଦେଶର ଝିଅମାନଙ୍କୁ ପ୍ରଶଂସା କରନ୍ତି । ନିଜ ନିଜ ପ୍ରେମିକାମାନଙ୍କର ଗୁଣଗାନରେ ଶତମୁଖ ହୋଇଉଠନ୍ତି । ପୋସ୍‌ଥମାସ୍ ଏସବୁ ଆଲୋଚନା ଶୁଣିଯାଏ । ତା'ର ଛାତି ଫାଟି ଗୋଟାଏ ଦୀର୍ଘଶ୍ୱାସ ବାହାରିଆସେ, ତା'ର ଆଇମୋଜେନ୍ କଥା ମନେପଡ଼େ । ଭାଗ୍ୟର ଖେଳରେ ସେ ଆଜି ତା'ଠାରୁ କେତେ ଦୂରରେ । ଜୀବନରେ ଆଉ କେବେ ତା'ସହିତ ଦେଖାହେବ କିମ୍ବା ନାହିଁ, କିଏ ଜାଣେ !

ଜଣେ ତରୁଣ ହଠାତ୍ ନୀରବତା ଭଙ୍ଗ କରି ତାକୁ ପ୍ରଶ୍ନ କରନ୍ତି, 'ବନ୍ଧୁ, ତମେ ତ ନିଜ ଦେଶର ଝିଅମାନଙ୍କ ବିଷୟରେ କିଛି କହୁ ନାହଁ । ତମର କ'ଣ କେହି ପ୍ରେମିକା ନାହାନ୍ତି ? ଥିଲେ ତାଙ୍କ ସମ୍ପର୍କରେ ଆମକୁ କିଛି ଶୁଣାଅ ।

ଦୀର୍ଘ ନିଃଶ୍ୱାସଟିଏ ପକାଇ ପୋସ୍‌ଥମାସ୍ କହେ- ମୋ ଦେଶର ଝିଅମାନେ ଖୁବ୍ ଭଲ, ଭଦ୍ର ଆଉ ବିନୀତ । କର୍ତ୍ତବ୍ୟ ସଚେତନ ପୁଣି ଆତ୍ମମର୍ଯ୍ୟାଦାସମ୍ପନ୍ନ । ମୋ ପ୍ରେମିକା କଥା ପଚାରିଲ ନା ? ଜୀବନରେ ଗୋଟିଏ ଝିଅକୁ ହିଁ ମୁଁ ଭଲପାଇଛି । ସେ ବି ମୋତେ ଭଲପାଏ ପ୍ରାଣଦେଇ । ଅଭିଭାବକମାନଙ୍କର ସମ୍ମତିର ଅପେକ୍ଷା ନ ରଖି ସେ ମୋତେ ବିବାହ କରିଛି । ନାରୀ ହିସାବରେ ମୋ ସ୍ତ୍ରୀ ରତ୍ନଟିଏ । ରୂପକଥା ବାଦ୍‌ଦେଲେ ,ତା'ଭଳି ଗୁଣୀ ନାରୀ ସାରା ବିଶ୍ୱରେ ବି ମିଳିବା କଷ୍ଟ । ତା'ର ପାତିବ୍ରତ୍ୟର ତୁଳନା ନାହିଁ ।

ତରୁଣ ଗୋଷ୍ଠୀରେ ଉପସ୍ଥିତ ଥିଲା ଆୟାକିମୋ । ସେ ରୋମୀୟ । ପୋସ୍‌ଥମାସ୍‌ର କଥା ତାକୁ ଭଲ ଲାଗେ ନାହିଁ । ରୋମ୍‌ର ରୂପସୀମାନଙ୍କଠାରୁ ବ୍ରିଟେନ୍‌ର ଗୋଟାଏ ସାମାନ୍ୟ ଝିଅ ଏତେ ପ୍ରଶଂସାଯୋଗ୍ୟ ହେବ କାହିଁକି ? ଆୟାକିମୋ ବ୍ୟଙ୍ଗର ହସ ହସି କହେ, ବନ୍ଧୁ, ତମର ବୟସ ବେଶି ନୁହେଁ । ନିଜ ସ୍ତ୍ରୀକୁ ଛାଡ଼ି ବୋଧହୁଏ ଅନ୍ୟ କୌଣସି ଝିଅ ସାଙ୍ଗରେ ମିଳାମିଶା କରି ନାହଁ । ଝିଅମାନଙ୍କୁ ତମେ କେତେ ବା ଜାଣ ? ଦେଖୁଛି, ନିଜ ସ୍ତ୍ରୀ ସମ୍ବନ୍ଧରେ ତମର ଧାରଣା ବେଶ୍ ଉଚ୍ଚ । ତେବେ ଏତେ ଉଚ୍ଚ ଧାରଣା କରିବାଟା ଆଦୌ ଭଲ ନୁହେଁ । ତମେ ତାକୁ ଯେତେ ଏକନିଷ୍ଠ ଭାବୁଛ, ହୁଏତ ସେ ତାହା ନୁହେଁ । ନାରୀର ମନ ଦେବତାର ବି ଅଗମ୍ୟ, ମଣିଷ ତ ଛାର କଥା ।

ପୋସ୍ଥମାସ୍ ପ୍ରତିବାଦ କରେ । କହେ - ଆଇମୋଜେନ୍ ସମ୍ପର୍କରେ ତମର ଧାରଣା ସମ୍ପୂର୍ଣ୍ଣ ଭ୍ରାନ୍ତ । ତାକୁ କେବେ ଦେଖି ନାହଁ ତ, ... ତେଣୁ ତା' ସମ୍ପର୍କରେ ଏମିତି ବାଜେ କଥା କହୁଛ । ଥରେ ଦେଖିଲେ, ତମେ ତମର ଧାରଣା ବଦଳାଇବାକୁ ବାଧ ହେବ ।

ତର୍କ ଆରମ୍ଭ ହୋଇଯାଏ, ବହୁତ କଥା କଟାକଟି ହୁଏ । ଶେଷରେ ଆୟାକିମୋର ଗୋଟିଏ ପ୍ରସ୍ତାବରେ ପୋସ୍ଥମାସ୍ ରାଜି ହୁଏ ।

ପ୍ରସ୍ତାବ ଅନୁସାରେ ଆୟାକିମୋ ବ୍ରିଟେନ୍ ଯିବ ଏବଂ ସେଠାରେ ଆଇମୋଜେନ୍ ସହିତ ପ୍ରେମର ସମ୍ପର୍କ ସ୍ଥାପନ କରିବାକୁ ଚେଷ୍ଟା କରିବ । ଏଥିପାଇଁ ଗୋଟାଏ ବାଜି ମଧ ଧରା ହୋଇଯାଏ । ଆୟାକିମୋ ଯଦି ତା'ର ଲକ୍ଷ୍ୟରେ ଅସଫଳ ହୁଏ ତେବେ ତାକୁ ଗୋଟାଏ ମୋଟା ଅଙ୍କର ଟଙ୍କା ଦେବାକୁ ପଡ଼ିବ । ଯଦି ସେ ନିଜ କାର୍ଯ୍ୟ ହାସଲ କରିବାରେ ସଫଳ ହୋଇ ଆଇମୋଜେନ୍ ଠାରୁ ପୋସ୍ଥମାସ୍‌ର ସେଇ କଙ୍କଣଟି ନେଇ ଆସିପାରେ, ତେବେ ପୋସ୍ଥମାସ୍‌କୁ ଦେବାକୁ ହେବ ସେଇ ହୀରାମୁଦି -ଯାହାକୁ ବିଦାୟ ବେଳରେ ଆଇମୋଜେନ୍ ତାକୁ ପିନ୍ଧାଇ ଦେଇଥିଲା । ମୁଦିଟି ହେବ ଆୟାକିମୋର ପ୍ରାପ୍ୟ ।

ଆଇମୋଜେନ୍ ଉପରେ ପୋସ୍ଥମାସ୍‌ର ଏତେ ଗଭୀର ବିଶ୍ୱାସ ଥିଲା ଯେ, ସେ ଏଭଳି ଗୋଟିଏ ବାଜି ମାରିବା ସମୟରେ ଏହାର ଅନ୍ୟ ଦିଗଟି ବିଷୟରେ ମୋଟେ ଭାବିଲା ନାହିଁ । ଏଥିରେ ଯେକୌଣସି ବିପଦ ଥାଇପାରେ, ତାହା ମଧ ତା'ର ଅନଭିଜ୍ଞ ମନରେ ଧରା ପଡ଼ିଲା ନାହିଁ । ତା'ର ଦୃଢ଼ ବିଶ୍ୱାସ ଥିଲା ଆୟାକିମୋ ଏ ବାଜି ନିଶ୍ଚୟ ହାରିବ । ଆଇମୋଜେନ୍‌କୁ ସେ ଭଲ ଭାବରେ ଜାଣେ । ତାକୁ ସେ ପିଲାଦିନରୁ ଦେଖିଆସୁଛି । ସେ ଜୀବନ ଦେଇପାରେ; ମାତ୍ର ପାତିବ୍ରତ୍ୟ ହାରିବ ନାହିଁ । ଏହାହିଁ ହେଉଛି ଧ୍ରୁବସତ୍ୟ ।

କେତେ ଦିନ ପରେ ଆୟାକିମୋ ପ୍ରକୃତରେ ବ୍ରିଟେନ୍ ଉଦ୍ଦେଶ୍ୟରେ ଯାତ୍ରା କରେ । ସେଠାରେ ପହଞ୍ଚି ସେ ରାଜା ସିମ୍ବେଲିନ୍‌ଙ୍କ ସହିତ ସାକ୍ଷାତ୍ କରେ । ରାଜା ଅବଶ୍ୟ ଏବେ ଆଉ ରୋମ୍‌ର ଅଧୀନତା ସ୍ୱୀକାର କରନ୍ତି ନାହିଁ । ତଥାପି ରୋମ୍‌ର ଜଣେ ଅଭିଜାତ ତରୁଣକୁ ସେ ଆଦର ଓ ସମ୍ମାନର ସହିତ ନିଜ ସଭାରେ ସ୍ଥାନ ଦେବାରେ କାର୍ପଣ୍ୟ କରନ୍ତି ନାହିଁ ।

ଆୟାକିମୋ ରାଜକନ୍ୟା ଆଇମୋଜେନ୍ ସହ ଦେଖାକରି ଗୋପନ୍‌ରେ ତାକୁ ଜଣାଇଦିଏ ପୋସ୍ଥମାସ୍ ସହ ତା'ର ବନ୍ଧୁତ୍ୱର କଥା । ସ୍ୱାମୀର ବନ୍ଧୁରୂପେ ଆଇମୋଜେନ୍ ତାକୁ ଶ୍ରଦ୍ଧାର ସହ ଗ୍ରହଣ କରେ । ଖୁବ୍ ଅଳ୍ପଦିନ ଭିତରେ ଆୟାକିମୋ ପୋସ୍ଥମାସ୍ କଥାର ସତ୍ୟତା ଅନୁଭବ କରିପାରେ । ସତରେ ଏ ନାରୀ ଅନନ୍ୟା । ତା'ର ପାତିବ୍ରତ୍ୟର ଦୁର୍ଭେଦ୍ୟ ଦୁର୍ଗ ଭେଦ କରିବା ଆୟାକିମୋ ଭଳି ସରଳ ଯୁବକର କର୍ମ ନୁହେଁ ।

ଦୁଇଟା ମିଠା ମିଠା ପ୍ରେମର କଥା କହି ଏଇ ଝିଅର ମନ ପାଇବା ସହଜ ନୁହେଁ । ସ୍ୱାମୀ ଉପରେ ତା'ର ଗଭୀର ଆସ୍ଥା, ଶ୍ରଦ୍ଧା ଆଉ ବିଶ୍ୱାସ । ଆୟାକିମୋ ବୁଝିପାରେ, ତା'ର ଦୁଷ୍ଟଯୋଜନା ସଫଳ ହେବାର କୌଣସି ଆଶା ନାହିଁ । ତେବେ ବିଫଳ ହୋଇ ଫେରିଗଲେ, ତା'ର ବନ୍ଧୁମାନେ ଥଟ୍ଟା କରି ରାସ୍ତାରେ ଚଲାଇ ଦେବେ ନାହିଁ, ପୁଣି ବାଜି ହାରିଗଲେ, ମୋଟା ଅଙ୍କର ଟଙ୍କା ଦେବାର ସର୍ତ୍ତଟା ମଧ୍ୟ ରହିଛି । ଉପାୟ କ'ଣ ?

ଅନେକ ଭାବିଚିନ୍ତି ଶେଷରେ ଆୟାକିମୋ ଗୋଟାଏ ବାଟ ଠିକ୍ କରେ । କାର୍ଯ୍ୟ ଯେମିତି ହେଲେ ଉଦ୍ଧାର କରିବାକୁ ହେବ । ଏ ବାଟେ ହେଉ ନଚେତ୍ ଅନ୍ୟ ବାଟେ । ଆଙ୍ଗୁଳି ବଙ୍କା କଲେ ଯଦି ଘିଅ ବାହାରି ଆସିବାର ସମ୍ଭାବନା, ତେବେ ତାହାହିଁ ହେଉ । ସେ ଛଳନାର ଆଶ୍ରୟ ନେବ । ସଳଖ ବାଟରେ ଯେତେବେଳେ କଙ୍କଣ ପାଇବାର ଉପାୟ ନାହିଁ, ସେତେବେଳେ ସେ ଏଥିପାଇଁ ବଙ୍କାବାଟ ହିଁ ଧରିବ ।

ଯୋଜନା ସ୍ଥିର କରି ସେ ରାଜକୁମାରୀ ସହିତ ଦେଖାକରେ । କହେ ରାଜକନ୍ୟା, ମୋ ସମ୍ରାଟ୍ ଅଗଷ୍ଟସ୍ ସିଜାରଙ୍କ ପାଇଁ ମୁଁ କିଛି ମୂଲ୍ୟବାନ୍ ରତ୍ନାଳଙ୍କାର କିଣିଛି । ମୁଁ ରହୁଛି ଗୋଟାଏ ସରାଇଖାନାରେ । ସେଠି ନାନା ଚରିତ୍ରର ଲୋକଙ୍କର ଗତାଗତ । କେତେବେଳେ କାହାର ଦୃଷ୍ଟି ଯେ ଏଇ ସବୁ ଅଳଙ୍କାର ଉପରେ ପଡ଼ିବ, ଏଇ କଥା ଭାବି ରାତିରେ ମୋତେ ନିଦ ହେଉ ନାହିଁ । ଦୁର୍ଭାଗ୍ୟକୁ ଯଦି ସେମିତି କିଛି ଘଟିଯାଏ, ତେବେ ମୋର ବିରାଟ କ୍ଷତି ହୋଇଯିବ । ଯାହାହେଉ ମୋର ଫେରିବା ସମୟ ତ ପାଖେଇ ଆସିଲାଣି । ଦିନେ ବା ଦୁଇ ଦିନର କଥା । ଆପଣ ଯଦି ଅନୁଗ୍ରହ କରି ଏଇ ଅଳଙ୍କାରତକ ଆପଣଙ୍କର ଶୋଇବାଘରେ ରଖି ଦିଅନ୍ତେ, ତେବେ ମୁଁ ନିଶ୍ଚିତ ହୁଅନ୍ତି । ଫେରିବା ସମୟରେ ସେଗୁଡ଼ିକ ଆପଣଙ୍କଠୁଁ ନେଇ ଯାଆନ୍ତି ।

ସ୍ୱାମୀଙ୍କର ବନ୍ଧୁ, ଏତେ ଅନୁନୟ କରି କହୁଛନ୍ତି । ଦିନେ ବା ଦୁଇଦିନର କଥା । ଆଇମୋଜେନ୍ ଏଇ ପ୍ରସ୍ତାବରେ ଆପତ୍ତି କରିବାର କିଛି ପାଏ ନାହିଁ । ରାଜି ହୋଇଯାଏ ।

ଆୟାକିମୋର ଅନୁଚରମାନେ ଏକ ବିରାଟ ବାକ୍ସ ବୋହି ଆଣନ୍ତି । ଆଇମୋଜେନ୍ ଆଦେଶରେ ରାଜଭୃତ୍ୟମାନେ ତାକୁ ନେଇ ତା'ର ଶୋଇବା ଘରେ ରଖିଦିଅନ୍ତି । ବାକ୍ସଟା ବେଶ୍ ଭାରୀ । କେତେ ହୀରାନୀଳା ମଣିମାଣିକ୍ୟ ଏହାଭିତରେ ଅଛି କିଏ ଜାଣେ !

ରାତି ହୁଏ । ଆଇମୋଜେନ୍ ଯଥାରୀତି ଶଯ୍ୟା ଗ୍ରହଣ କରେ ଏବଂ ଅଳ୍ପସମୟ ମଧ୍ୟରେ ନିଘୋଡ଼ ନିଦରେ ଶୋଇପଡ଼େ । ରାତି କ୍ରମେ ଗଭୀର ହୁଏ ।

ଘରର ଗୋଟିଏ କୋଣରେ ସ୍ଥାପିତ ଆୟାକିମୋର ବାକ୍ସର ତାଲାଟା ଧୀରେ ଧୀରେ ଖୋଲିଯାଏ । ବାକ୍ସ ଭିତରୁ ଅତି ସନ୍ତର୍ପଣରେ ବାହାରି ଆସେ ମଣିଷଟିଏ ... ସେ ଆଉ କେହି

ନୁହେଁ । ସ୍ୱୟଂ ଆୟାକିମୋ । ଏତେ ରାତିରେ ରାଜକୁମାରୀଙ୍କ ଶୋଇବାଘରେ ତା'ର କ'ଣ ପ୍ରୟୋଜନ ? ଚୋର ଭଳି ସେ ଏଠାରେ ପ୍ରବେଶ କରିଛି କାହିଁକି ?

ଚୋରି କରିବାକୁ ହିଁ ସେ ଆସିଛି । ବାଜି ଜିତିବାକୁ ହେବ, ଯେ କୌଣସି ଉପାୟରେ ଚୋରି କରିବାକୁ ପଡ଼ିଲେବି । ସେଇଥିପାଇଁ ତା'ର ଏ ନୈଶ୍ୟ - ଅଭିଯାନ ।

ବାକ୍ସରୁ ବାହାରି ଘରଟାକୁ ଥରେ ଭଲକରି ଦେଖିନିଏ ସେ । ଯାହା ଦେଖେ ତା ଭଲ କରି ମନେରଖେ । ଦରକାର ହେଲେ ଏହି ଘରର ଠିକ୍‌ଠାକ୍ ବର୍ଣ୍ଣନା ସେ ଦେଇପାରିବ । ବିଶେଷଭାବେ ତାର ଆଖିରେ ପଡ଼େ ଆଇମୋଜେନ୍ ଗଳାରେ ଥିବା ତିଳ ଚିହ୍ନଟି ଉପରେ । ତା ପରେ ସେ ଅତି ସନ୍ତର୍ପଣରେ ଗଭୀର ନିଦରେ ଅଚେତନ ଆଇମୋଜେନ୍ ହାତରୁ ପୋସ୍‌ଥମାସ୍‌ର ସେଇ କଙ୍କଣଟି ବାହାର କରିନିଏ ।

ଏଥିପାଇଁ ତାର ଏ ଅଭିଯାନ । କାର୍ଯ୍ୟ ଉଦ୍ଧାର ହୋଇଯାଇଛି । ଆୟାକିମୋ ବାକ୍ସ ଭିତରେ ଢୁକି ପଡ଼େ । ବାକ୍ସର ଡାଲାକୁ ଧୀରେ ଧୀରେ ବନ୍ଦ କରିଦିଏ ।

ପରଦିନ ସକାଳେ ଆୟାକିମୋର ଅନୁଚରମାନେ ଆସି ବାକ୍ସଟିକୁ ନେଇ ଯାଆନ୍ତି । କେତେ ଘଣ୍ଟା ପରେ ସେ ନିଜେ ଆଇମୋଜେନ୍ ସହିତ ଦେଖା କରିବାକୁ ଆସେ । ତାକୁ କୃତଜ୍ଞତା ଜଣାଏ । କହେ ଯେ, ସେ ବିଦାୟ ନେବାକୁ ଆସିଛି । ଆଜି ହିଁ ସେ ତା ନିଜ ଦେଶକୁ ଫେରିଯାଉଛି । ବନ୍ଧୁ ପୋସ୍‌ଥମାସ୍‌କୁ ସେ ତାଙ୍କ ବିଷୟରେ କହିବ । କହିବ ଯେ, ରାଜକୁମାରୀ ସବୁବେଳେ ତାରି କଥା ଭାବୁଛନ୍ତି । ସବୁ ସମୟରେ ତା'ର ମଙ୍ଗଳ ନିମନ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛନ୍ତି ।

ସ୍ୱାମୀଙ୍କ କଥା ମନେ ପଡ଼ି ଆଇମୋଜେନ୍‌ର ହୃଦୟ ଭାରୀ ହୋଇ ଉଠେ । ତାଙ୍କ ସହିତ କ'ଣ ଜୀବନରେ ଆଉ କେବେ ଦେଖା ହେବ ?

ଧୂର୍ତ୍ତ ଆୟାକିମୋ ବିଦାୟ ନେଇ ଚାଲିଯାଏ ।

॥ ୩ ॥

ରୋମ୍‌ରେ ଆୟାକିମୋର ପ୍ରତୀକ୍ଷା କରାଯାଉଥିଲା । ନାରୀର ସତୀତ୍ୱ ଆଉ ନିଷ୍ଠାକୁ ନେଇ ବାଜି ଧରାଯାଇଛି । ହାରଜିତ୍‌ର ଫଏସଲା ହେବ ଆୟାକିମୋ ଫେରିଲେ । ତାରୁଣ୍ୟର ସମସ୍ତ ଉତ୍କଣ୍ଠା କେନ୍ଦ୍ରୀଭୂତ ହୋଇଥିଲା ଫଳାଫଳ ଉପରେ । ଖବର ମିଳିଛି, ଆୟାକିମୋ ଫେରିଆସିଲାଣି ।

ତରୁଣମାନେ ଏକତ୍ରିତ ହୋଇ ତାକୁ ଅପେକ୍ଷା କରିଛନ୍ତି । ସେ ନିଶ୍ଚୟ ଆସିବ । ଶେଷରେ ପ୍ରତୀକ୍ଷାର ଅନ୍ତ ଘଟାଇ ଆୟାକିମୋ ଆସରରେ ପ୍ରବେଶ କରେ । ତରୁଣମାନେ ସମସ୍ୱରରେ

ଚିତ୍କାର କରି ତାକୁ ସ୍ୱାଗତ ଜଣାନ୍ତି । ତା'ର ହର୍ଷୋତ୍‌ଫୁଲ୍ଲ ମୁଖମଣ୍ଡଳ, ଦୃପ୍ତ ପଦକ୍ଷେପରୁ ଜଣାଯାଉଥାଏ, ସେ ଗଡ଼ ଜିଣି ଆସିଛି ।

ଆୟାକିମୋର ଆଉ ତର ସହୁ ନ ଥିଲା । ନିଜର ବିଜୟ ଅଭିଯାନର କାହାଣୀ ଟିକାଟିପ୍ପଣୀ ସହ ବର୍ଣ୍ଣନା କରିବା ପାଇଁ ସେ ପ୍ରସ୍ତୁତ ହୋଇ ଆସିଥିଲା ।

ଜଣେ ପ୍ରଶ୍ନ କରନ୍ତି - କି ହେ, ବ୍ରିଟେନ୍‌ରୁ କେବେ ଫେରିଲ । ହାରିକରି ଆସିଛ ନା ଜିତିଛ ?

ଗର୍ବର ସହିତ ଆୟାକିମୋ ଉତ୍ତର ଦିଏ - ଜୀବନରେ ଯିଏ କେବେ ହାରି ନାହିଁ, ଏଇ ସାମାନ୍ୟ ବ୍ୟାପାରରେ ସେ ପରାଜୟ ବରଣ କରିନିଅନ୍ତା ! ବ୍ରିଟେନ୍ ରାଜକୁମାରୀଙ୍କ ସହିତ ରୀତିମତ୍ ଗୋଟିଏ ରଙ୍ଗିନ ରାତି କଟାଇ ଆସିଛି ।

ତା' ପରେ ପୋସ୍‌ଥମାସ୍ ଆଡ଼କୁ ଅନାଇ ବ୍ୟଙ୍ଗପୂର୍ଣ୍ଣ କଣ୍ଠରେ କହେ, ତମ ସ୍ତ୍ରୀର ପାତିବ୍ରତ୍ୟ ଆଉ ପତିଭକ୍ତି ନେଇ କେତେ କଥା ତମେ ଏଠି ଶୁଣାଇଥିଲ । ଯଦି ତାହାହିଁ ହୁଏ ଏକାନ୍ତ ସତ୍ୟ, ତେବେ ତା' ସହିତ ମୁଁ ଗୋଟାଏ ରାତି କଟାଇ ଆସିଲି କେମିତି ?

- ଏଭଳି ମିଛ କଥା, ନାହିଁ, ରୀତିମତ ପ୍ରମାଣ ଅଛି ମୋ ପାଖରେ । ତୀବ୍ର ସ୍ୱରରେ ଆୟାକିମୋ ଜଣାଏ ।

- 'ବେଶ୍ ତ, ସେଇ ପ୍ରମାଣଟା ଦେଖାଅ ।' ପୋସ୍‌ଥମାସ୍ ତାକୁ ଆହ୍ୱାନ ଜଣାଏ ।

- ପ୍ରଥମେ ମୁଁ ଆଇମୋଜେନ୍‌ର ଶୟନାଗାରର ବର୍ଣ୍ଣନା କରୁଛି । ମିଳାଇନିଅ । ଘରର ପର୍ଦ୍ଦାରେ ରେଶମ ସୂତାରେ ଆଣ୍ଟୋନି ଆଉ କ୍ଲିଓପେଟ୍ରାଙ୍କର ପ୍ରଥମ ସାକ୍ଷାତ୍‌ର ଚିତ୍ର ଫୁଟାଯାଇଛି । ସୂଚୀକାର୍ଯ୍ୟଟି ଅତ୍ୟନ୍ତ ମନୋଗ୍ରାହୀ । କ'ଣ ଠିକ୍ କହୁଛି ତ ?

- ହଁ କହୁଛ, ତେବେ ଏଥିରେ ସେମିତି କିଛି ପ୍ରମାଣିତ ହେଉ ନାହିଁ । ହୁଏତ ତମେ କାହାଠାରୁ ଏଇ କଥା ଶୁଣି ଆସିଛ । ପୋସ୍‌ଥମାସ୍ କହେ ।

ଆୟାକିମୋ କହେ, ତେବେ ଆଉ କିଛି ଶୁଣ । ଧୂଆଁ ବାହାରିବାର ଚିମିନୀଟା ରହିଛି ଘରର ଦକ୍ଷିଣ ପଟେ । ଚୁଲି ଉପରେ ରହିଛି ସ୍ନାନରତା ଡାଏନାଙ୍କର ଗୋଟିଏ ମୂର୍ତ୍ତି । ଏଭଳି ଚମତ୍କାର ଶିଳ୍ପ ମୁଁ ଆଗରୁ ଦେଖି ନାହିଁ । ମୂର୍ତ୍ତିଟି ଛୋଟ, କିନ୍ତୁ ଜୀବନ୍ତ ।

- ଏସବୁ ବି ଶୁଣାକଥା । ଏ ମୂର୍ତ୍ତିକୁ ଅନେକ ପ୍ରଶଂସା କରନ୍ତି । ତମେ କାହାଠୁ ଶୁଣିଆସିଛ; ପୋସ୍‌ଥମାସ୍ କହେ ।

- କେବଳ ସେତିକି ନୁହେଁ । ଘରର ସିଲିଂରେ ଦକ୍ଷଶିଳ୍ପୀମାନେ ଯେଉଁ ଚମତ୍କାର କାରୁକଳା ସୃଷ୍ଟି କରିଛନ୍ତି, ତାହା ମଧ୍ୟ ଦେଖିବାର କଥା । ଠିକ୍ ଅଛି ? ଆୟାକିମୋ ବର୍ଣ୍ଣନା କରେ ।

- ଶୁଣାକଥା ତ ଠିକ୍‌ ହେବନି ।

- ତେବେ ଆହୁରି ଶୁଣ । ରାଜକନ୍ୟାଙ୍କ ଘରେ ଅଛି ରୋମୀୟ ପ୍ରଣୟ ଦେବତା କ୍ୟୁପିଡ୍‌ଙ୍କର ଦୁଇଟି ମୂର୍ତ୍ତି । ରୁପାରେ ତିଆରି । ଅର୍ଦ୍ଧନିମୀଳିତ ଚକ୍ଷୁ ଦେବତା ଗୋଟାଏ ପାଦ ଉପରେ ଭରା ଦେଇ ଠିଆ ହୋଇଛନ୍ତି । ଆୟାକିମୋ ପ୍ରମାଣ ପେଶ୍‌ କରେ ।

ପୋସ୍‌ଥମାସ୍‌ ବିସ୍ମୟରେ ବାକ୍‌ଶୂନ୍ୟ ହୋଇଯାଏ । ଏପର୍ଯ୍ୟନ୍ତ ଆୟାକିମୋ ଶୟନାଗାରର ଯେଉଁ ବର୍ଣ୍ଣନା ଦେଇଛି, ତହିଁରେ ବିନ୍ଦୁମାତ୍ର ଅତିରଞ୍ଜନ ନାହିଁ । କେବଳ ଶୁଣି ଶୁଣି କ'ଣ ଏଭଳି ଟିକିନିଖି ବର୍ଣ୍ଣନା ଦିଆଯାଇପାରେ ?

ଆୟାକିମୋ ଏଥର ବାହାର କରେ ସୁନାର ସେଇ କଙ୍କଣଟିକୁ ! ଏଇ ହେବ ତା'କଥାର ଶ୍ରେଷ୍ଠ ପ୍ରମାଣ । ପୋସ୍‌ଥମାସ୍‌ ଆଗରେ ସେଇଟିକୁ ହଲାଇ ସେ କହେ - ଏ କଙ୍କଣ ଚିହ୍ନୁଚ ବନ୍ଧୁ ? ଆଇମୋଜେନ୍‌ ନିଜେ ମୋତେ ଏଇଟିକୁ ଦେଇଛି । ହାତରୁ ତା'ର କଙ୍କଣ ଖୋଲିବାର ଦୃଶ୍ୟ ଏବେବି ମୋ ଆଖିରେ ନାଚୁଛି । ମୋତେ ଏଇଟିକୁ ଦେଇ ସେ କହିଲା - ଦିନେ ଏଇ ଅଳଙ୍କାର ଥିଲା ମୋ ପକ୍ଷରେ ଜୀବନ ଠାରୁ ମଧ ମୂଲ୍ୟବାନ୍‌ ।

ପୋସ୍‌ଥମାସ୍‌ ମୁଣ୍ଡରେ ଆକାଶ ଛିଡ଼ିପଡ଼େ । ମା'ଙ୍କର ଏଇ କଙ୍କଣକୁ ସେ ନିଜ ହାତରେ ଆଇମୋଜେନ୍‌କୁ ପିନ୍ଧାଇ ଦେଇଥିଲା । ସେ ପ୍ରତିଜ୍ଞା କରିଥିଲା ଯେ' ଜୀବନରେ କେବେବି ସେ ଏଇଟିକୁ ହାତଛଡ଼ା କରିବ ନାହିଁ । ନିଜ ଆଖିରେ ସେ ଏବେ ଯାହା ଦେଖୁଛି, ତାକୁ ସେ ସତ୍ୟ ବୋଲି ଗ୍ରହଣ କରିନେବ କେମିତି ? ଆୟାକିମୋ ନିଶ୍ଚୟ ମିଛ କହୁଛି । ସେ ଉତ୍ତର ଦିଏ - ତମେ ନିଶ୍ଚୟ ଏଇଟିକୁ ଚୋରିକରି ଆଣିଛ ।

ସେ କଥାରେ କାନ ନ ଦେଇ ଆୟାକିମୋ କହିଯାଏ - 'ରାଜକନ୍ୟାଙ୍କର ଗଳାର ତିଳ ଚିହ୍ନଟି ବାସ୍ତବିକ୍‌ ଭାରି ସୁନ୍ଦର । ଗଳାର ସୌନ୍ଦର୍ଯ୍ୟ ତାହା ଦ୍ୱାରା ଅନ୍ତତଃ ଶହେ ଗୁଣ ବଢ଼ିଯାଇଛି ।'

ପୋସ୍‌ଥମାସ୍‌ ଆଉ ସହ୍ୟ କରିପାରେ ନାହିଁ । ଆଙ୍ଗୁଠିରୁ ଆଇମୋଜେନ୍‌ ଦେଇଥିବା ମୁଦିଟି ବାହାର କରି ସେ ଆୟାକିମୋ ଆଡ଼କୁ ଫିଙ୍ଗିଦିଏ । ମନ ତା'ର ବିଷାକ୍ତ ହୋଇଯାଏ । ଆଇମୋଜେନ୍‌ ଏତେ ଉଚ୍ଛୃଙ୍ଖଳ ! ଗୋଟାଏ ହୀନ ଚରିତ୍ର ରୋମୀୟ ଯୁବକ ସହିତ ମାତ୍ର ଦୁଇଦିନର ପରିଚୟରେ ସେ ନିଜର ସ୍ୱାମୀକୁ ଭୁଲିଗଲା ! ସ୍ୱାମୀର ଉପହାରକୁ ବିନା ଦ୍ୱିଧାରେ ହସ୍ତାନ୍ତର କରିଦେଲା ! ଆଇମୋଜେନ୍‌ ନିଶ୍ଚୟ ଚରିତ୍ରହୀନ ।

ସେ ତାକୁ ଶାସ୍ତି ଦେବ-ଭୟଙ୍କର ଶାସ୍ତି, ଯାହା ସେ ସ୍ୱପ୍ନରେ ସୁଦ୍ଧା ଦେଖି ନ ଥିବ । ବିଶ୍ୱାସଭଙ୍ଗର ଅପରାଧ ଯେଉଁମାନେ କରନ୍ତି, ସେମାନେ ଏଇଭଳି ଦଣ୍ଡପାଇବା ଉଚିତ ।

ସୁଦୂର ରୋମରେ ବସି ପୋସ୍‌ଥମାସ୍‌ କିଭଳି ଏହା କରିପାରିବ ?

|| ୪ ||

ପୋସ୍ଥମାସ୍‌କୁ ନିର୍ବାସନରେ ପଠାଇ ରାଣୀ ଭାବନ୍ତି, ତାଙ୍କ ପଥର କଣ୍ଟା ଚିରକାଳ ପାଇଁ ଦୂର ହୋଇଛି । ଏବେ ଆଇମୋଜେନ୍‌ର ମନକୁ କ୍ଲୋଟେନ୍ ଆଡ଼କୁ ଘୂରାଇ ଦେବାକୁ ପଡ଼ିବ । ଚେଷ୍ଟାର ଅସାଧ୍ୟ କ'ଣ ଅଛି ? ଏ କାମ ବି ହୋଇଯିବ ।

ଗୋପନରେ ସେ ପୁଅକୁ ପରାମର୍ଶ ଦିଅନ୍ତି, ଦେଖ୍ ବାବୁ, ରାସ୍ତା ଏଥର ପୂରା ପରିଷ୍କାର । ଯେମିତି ହେଲେ ଆଇମୋଜେନ୍ ସହିତ ବନ୍ଧୁତ୍ୱ ବଢ଼ାଇବାର ଚେଷ୍ଟାରେ ଲାଗିପଡ଼ । ଦରକାର ହେଲେ ତୋଷାମୋଦ କର, ହାତଗୋଡ଼ ଧର-ଯେମିତି ହେଲେ ନିଜ ଭବିଷ୍ୟତ୍ ପାଇଁ ଏଇ କାମଟି କରିବାକୁ ହେବ । ନିୟମିତ ଚେଷ୍ଟା କଲେ ଦେଖିବୁ ଦିନେ ରାଜକୁମାରୀ ତୋତେ ଭଲପାଇବାକୁ ଆରମ୍ଭ କରିଛି । ତା'ପରେ ବିବାହ କିମ୍ବା ବ୍ରିଟେନ୍‌ର ରାଜମୁକୁଟ - ଏସବୁ ଆଉ କେତେ ଦୂର !

ଏ ବିଷୟରେ କ୍ଲୋଟେନ୍‌କୁ ବିଶେଷ କହିବାକୁ ପଡ଼େ ନାହିଁ । ବାଧ୍ୟ ସନ୍ତାନ ଭଳି ସେ କାମ ଆରମ୍ଭ କରିଦିଏ । ତେବେ ଅସୁବିଧା ହେଉଛି, ଆଇମୋଜେନ୍ ତାକୁ ଆଡ଼ ଆଖିରେ ବି ଅନାଏ ନାହିଁ । ଶେଷରେ ଅବସ୍ଥା ଏମିତି ହୁଏ ଯେ, ଦୁହେଁ ଦୁହିଁଙ୍କ ନାମ ଶୁଣିବା ମାତ୍ରେ ଘୃଣାରେ ମୁହଁ ବୁଲାଇ ନିଅନ୍ତି । ଛାଇମାଡ଼ିବା ତ ଦୂରର କଥା ।

ରାଣୀ ଏସବୁ ଧୈର୍ଯ୍ୟର ସହିତ ଲକ୍ଷ୍ୟ କରୁଥାଆନ୍ତି । ଯେତେବେଳେ ନିଶ୍ଚିତ ହେଲେ ଯେ, ଆଇମୋଜେନ୍ ଜୀବନ ଦେଇପାରେ, ମାତ୍ର କ୍ଲୋଟେନ୍ ସହିତ କଦାପି ବିବାହ ବନ୍ଧନରେ ବାନ୍ଧି ହେବ ନାହିଁ, ସେତେବେଳେ ଠିକ୍ କଲେ ... ଜୀବନ ଦେଇ ତାହାହେଲେ ରାଜକନ୍ୟା ତା'ର ଏଇ ହଠକାରିତାର ପ୍ରାୟଶ୍ଚିତ୍ତ କରୁ । ଥରେ ସେ ଅପସରିଗଲେ ସିଂହାସନ ଆପେ ଆପେ କ୍ଲୋଟେନ୍‌ର ହୋଇଯିବ ।

କିନ୍ତୁ ଆଇମୋଜେନ୍‌କୁ ରାସ୍ତାରୁ ହଟାଇବାର ଉପାୟ କ'ଣ ? ଅନେକ ଚିନ୍ତା କରିବା ପରେ ରାଣୀ ରାଜଚିକିତ୍ସକ କର୍ଣ୍ଣେଲିୟାସ୍‌ଙ୍କ ଠାରୁ ଗୋଟିଏ ଔଷଧ ଆଣନ୍ତି । ଔଷଧଟି ମାରାତ୍ମକ ବିଷ । କୌଣସମତେ ଆଇମୋଜେନ୍‌କୁ ଖୁଆଇ ଦେଲେ କାମ ଶେଷ । ଯେମିତି ହେଲେ ଏ ଔଷଧ ତାକୁ ଖୁଆଇବାକୁ ପଡ଼ିବ । ତେବେ ଏଥିରେ ରାଣୀଙ୍କର ଯେ କିଛି ଭୂମିକା ଅଛି, ଏକଥା ଯେମିତି ଧରା ନ ପଡ଼େ ।

ଏମିତି ଉପାୟ ବାହାର କରିବାକୁ ପଡ଼ିବ, ଯେଉଁଥିରେ ସାପ ବି ମରିବ, ଆଉ ବାଡ଼ି ବି ଭାଙ୍ଗିବ ନାହିଁ ।

ରାଣୀ ସୁଯୋଗର ଅପେକ୍ଷାରେ ରହିଲେ । ଅପ୍ରତ୍ୟାଶିତ ଭାବେ ସେଇ ସୁଯୋଗ ମଧ୍ୟ ଶୀଘ୍ର ଜୁଟିଯାଏ ।

କ୍ଷିପ୍ତ ପୋସ୍ଥମାସ୍ ତା'ର ସେବକ ପିସାନିଓକୁ ଖଣ୍ଡିଏ ଚିଠି ଲେଖେ । ଏଇ ପିସାନିଓ ଥିଲା ରାଜକୁମାରୀଙ୍କର ଦେଖାଶୁଣାର ଦାୟିତ୍ୱରେ । ସ୍ତ୍ରୀର ଚରିତ୍ରହୀନତାର ଯେଉଁ ସବୁ ପ୍ରମାଣ ମିଳିଛି, ସେ ସବୁ ଜଣାଇ ପୋସ୍ଥମାସ୍ ଲେଖିଥାଏ - ଆଇମୋଜେନ୍ ଯେ ଚରିତ୍ରହୀନ, ସେ ବିଷୟରେ ମୋର କୌଣସି ସନ୍ଦେହ ନାହିଁ । ତମକୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟର ଦାୟିତ୍ୱ ଦେଉଛି । ତମେ ଯେମିତି ହେଲେ ସେଇ ଅସତୀକୁ ମିଲ୍‌ଫୋର୍ଟ- ହାଭେନ୍ ନାମକ ବନ୍ଦରକୁ ନେଇଯାଇ ସେଇଠି ତାକୁ ହତ୍ୟା କର ।

ତା' ସହିତ ସେ ଆଇମୋଜେନ୍ ପାଖକୁ ଏକ ଛଳନାପୂର୍ଣ୍ଣ ପତ୍ର ଲେଖେ । ତମେ ଯେମିତି ହେଲେ ପିସାନିଓ ସାଙ୍ଗରେ ଆସିବ । ତାକୁ ଚିଠି ଲେଖିଛି । ତମକୁ ନ ଦେଖି ଆଉ ରହିପାରୁ ନାହିଁ । ବ୍ରିଟେନ୍‌ରେ ପ୍ରବେଶ ମୋ ପାଇଁ ନିଷିଦ୍ଧ । ଧରାପଡ଼ିଲେ ପ୍ରାଣଦଣ୍ଡ । ମୁଁ ଯେମିତି ହେଲେ ମିଲ୍‌ଫୋର୍ଟ୍ - ହାଭେନ୍‌ରେ ପହଞ୍ଚିବି । ସେଇଠି ତମ ସହିତ ମୋର ଦେଖାହେବ । ପିସାନିଓ ତା'ର ବ୍ୟବସ୍ଥା କରିବ । ସେ ମୋର ବନ୍ଧୁ । ତମେ ତାକୁ ବିଶ୍ୱାସ କରିପାର ..

ଚିଠି ପାଇ ପ୍ରିୟ-ସମାଗମ ସମ୍ଭାବନାରେ ଆଇମୋଜେନ୍ ଉତ୍‌ଫୁଲ୍ଲ ହୋଇଉଠେ । ସେ ପ୍ରକୃତରେ ସ୍ୱାମୀକୁ ଭଲପାଏ । ସ୍ୱାମୀର ଆଦେଶକୁ ଦେବତାଙ୍କର ନିର୍ଦ୍ଦେଶ ମନେ କରେ । ସେ ଯେମିତି ହେଲେ ପିସାନିଓ ସହିତ ଉଦ୍ଦିଷ୍ଟ ସ୍ଥାନକୁ ଯିବ । ଡେରି କରି ଲାଭ ନାହିଁ । ସେଦିନ ରାତିରେ ଦୁହେଁ ଯାତ୍ରା ଆରମ୍ଭ କରନ୍ତି ।

ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପରେ ପିସାନିଓ ସହର ଛାଡ଼ି ତାକୁ ଜଙ୍ଗଲ ଆଡ଼କୁ ନେଇଯାଏ । ଆଇମୋଜେନ୍ ଭାବେ - ନିର୍ବାସିତ ସ୍ୱାମୀ ସହର ବା ଲୋକାଳୟରେ ଗତାଗତ ହେବାରେ ଅସୁବିଧା ରହିଛି । ସେଥିପାଇଁ ତା' ସହିତ ଦେଖାକରିବାପାଇଁ ସେ ଜଙ୍ଗଲକୁ ବାଛି ନେଇଛି ।

ମଣିଷ ହିସାବରେ ପିସାନିଓ ଥିଲା ସରଳ ଏବଂ ନିଷ୍କପଟ । ସେ ଭଲଭାବରେ ଜାଣିଥିଲା ଆଇମୋଜେନ୍ ସମ୍ପର୍କରେ ତା'ର ମୁନିବ ପୋସ୍ଥମାସ୍‌ର ଧାରଣା ହେଉଛି ସମ୍ପୂର୍ଣ୍ଣ ଭୁଲ୍ । ଭୁଲ୍ ବୁଝାମଣାରୁ ଏହା ସୃଷ୍ଟି ହୋଇଛି । ପିସାନିଓ ମୁନିବଙ୍କର ଅନୁରୋଧ ରକ୍ଷା କରିବାକୁ ଇଚ୍ଛୁକ । ତେବେ ଏଭଳି ଅନ୍ୟାୟ ଅନୁରୋଧ ସେ ମାନିନେବ କେମିତି ?

ସେ ଆଇମୋଜେନ୍‌କୁ ସବୁକଥା ଖୋଲି କହିଦିଏ ।

ଆଇମୋଜେନ୍‌ର ପାଦତଳର ମାଟି ଥରିଉଠେ । ଯେଉଁ ସ୍ୱାମୀଙ୍କର ଫେରିବା ବାଟକୁ ସେ ବ୍ୟାକୁଳ ଚିତ୍ତରେ ଏବେବି ଅପେକ୍ଷା କରିଛି, ସେ ଦେଇଛନ୍ତି ଏଭଳି ନିଷ୍ଠୁର ଆଦେଶ ! ପୁଣି ତା' ନାଁ ରେ ଚରିତ୍ରହୀନତାର ଅପବାଦ ବି ଦେଇଛନ୍ତି ।

ଅନ୍ତର୍ଯାମୀ ଜାଣନ୍ତି ସେ ସତୀ କିମ୍ବା ନୁହେଁ । ସ୍ୱାମୀଙ୍କୁ ଛାଡ଼ିଦେଲେ ସେ ଏପର୍ଯ୍ୟନ୍ତ ଅନ୍ୟ କୌଣସି ପୁରୁଷର ଚିନ୍ତାକୁ ମନରେ ସ୍ଥାନ ଦେଇ ନାହିଁ । ସେଇ ସ୍ୱାମୀ ତାକୁ ଅସତୀ ବୋଲି ଆଖ୍ୟା ଦେଇଛନ୍ତି । ନିଜ ଉପରେ ତା'ର ଧିକ୍କାର ଆସେ । ଜୀବନ ମନେହୁଏ ଶୂନ୍ୟ ଏବଂ ଅର୍ଥହୀନ । ସ୍ୱାମୀ ଯେତେବେଳେ ତାକୁ ଚରିତ୍ରହୀନତାର ଅପବାଦ ଦେଇଛନ୍ତି, ତାର ଆଉ ବଞ୍ଚି ରହିବାର କୌଣସି ଅଧିକାର ନାହିଁ । ମୃତ୍ୟୁ ହିଁ ଶ୍ରେୟସ୍କର । ପିସାନିଓକୁ ସେ କହିଦିଏ, ମୁଁ ପ୍ରସ୍ତୁତ । ତମେ ତମ ମୁନିବଙ୍କ ଅନୁରୋଧ ରକ୍ଷା କରି ମୋତେ ହତ୍ୟା କରିପାର ।

ପିସାନିଓ ତ ଆଉ ପେସାଦାର ଘାତକ ନୁହେଁ । ସବୁ କଥା ତଳେଇ କରି ବିଚାର ନ କରି ଏଭଳି ଅନ୍ୟାୟ ଅନୁରୋଧ ମାନିନେବାକୁ ପ୍ରସ୍ତୁତ ନୁହେଁ । ବହୁତ ଭାବିବା ପରେ ସେ କହେ, ରାଜକୁମାରୀ, ମୋର ଦୃଢ଼ ବିଶ୍ୱାସ ପୋସ୍ଥମାସ୍ ଗୋଟାଏ ବିରାଟ ଭୁଲ୍ କରିଛନ୍ତି । ମନେହୁଏ, ରୋମ୍‌ରୁ ଆୟାକିମୋ ବୋଲି ଯେଉଁ ଲୋକଟି ଆସିଥିଲା, ସେଇ ବୋଧହୁଏ ଫେରିଯାଇ ଆପଣଙ୍କ ନାମରେ ଏଣୁ ତେଣୁ କିଛି ତାଙ୍କୁ କହିଛି, ଆଉ ସେଇଥିରେ ତାଙ୍କର ମନ ବିଷେଇ ଯାଇଛି । ମୋର ମତ, ଆମେ ଧୈର୍ଯ୍ୟ ଧରି କିଛି ସମୟ ଅପେକ୍ଷା କରିଯିବା ହିଁ ସବୁଆଡୁ ନିରାପଦ ।

- ଉଆସକୁ ଫେରିବା ମୋ ପକ୍ଷରେ ଆଉ ସମ୍ଭବ ନୁହେଁ - ଆଇମୋଜେନ୍ କରୁଣ କଣ୍ଠରେ କହେ ।

- ତାହା ହେଲେ ମୋ କଥା ମାନି ଆପଣ ରୋମ୍ ଚାଲିଯାଆନ୍ତୁ । ସ୍ୱାମୀଙ୍କର ଅଜ୍ଞାତସାରରେ ତାଙ୍କର ପାଖାପାଖି ରହି ଘଟଣାକୁ ଲକ୍ଷ୍ୟ ରଖନ୍ତୁ । ଘଟଣା ଯଦି ଅନୁକୂଳ ମନେକରନ୍ତି, ତେବେ ଆତ୍ମପ୍ରକାଶ କରିବେ, ନ ହେଲେ ନୁହେଁ । ନିଜର ନିରାପତ୍ତା ପାଇଁ ପୁରୁଷର ଛଦ୍ମବେଶ ଗ୍ରହଣ କରିବା ହିଁ ଆପଣଙ୍କ ପାଇଁ ଭଲ ହେବ । ପିସାନିଓ ପରାମର୍ଶ ଦିଏ ।

ଆଇମୋଜେନ୍ ଟିକିଏ ଭାବିଲା ପରେ କହେ - ତମର ପରାମର୍ଶ ଉତ୍ତମ । ତେବେ ଗୋଟିଏ ଅସୁବିଧା ଅଛି । ପୁରୁଷ ପୋଷାକ ଏ ଜଙ୍ଗଲ ଭିତରେ ଆସିବ କୁଆଡୁ ?

- ସେଥିପାଇଁ ଆପଣଙ୍କୁ ଚିନ୍ତା କରିବାକୁ ହେବ ନାହିଁ । ସେ ବ୍ୟବସ୍ଥା ମୁଁ କରିଦେବି । ପିସାନିଓ ଉତ୍ତର ଦିଏ ।

ଅଳ୍ପ ସମୟ ଭିତରେ ପିସାନିଓ ଦେଇଥିବା ପୋଷାକ ପିନ୍ଧି ଆଇମୋଜେନ୍ ଗୋଟିଏ ସୁନ୍ଦର ତରୁଣରେ ରୂପାନ୍ତରିତ ହୋଇଯାଏ । ଠିକ୍ ହୁଏ ମିଲଫୋର୍ଡ଼ ହାଭେନ୍ ବନ୍ଦରରୁ ଆଇମୋଜେନ୍ ରୋମ୍‌ଗାମୀ ଜାହାଜ ଧରିବ । ପିସାନିଓ ରାଜଧାନୀକୁ ଫେରିଯିବ । କନ୍ୟା ଶୋକରେ ରାଜାଙ୍କର ପ୍ରତିଟି ଅବସ୍ଥାକୁ ଲକ୍ଷ୍ୟ କରିବ ।

ବିଦାୟ ନେବା ପୂର୍ବରୁ ପିସାନିଓ ରାଜକୁମାରୀଙ୍କୁ ଗୋଟିଏ ଔଷଧ ଦିଏ । ଔଷଧ ଦେଇଛନ୍ତି ରାଣୀ । ଏ ଔଷଧ କୁଆଡ଼େ ସର୍ବ ରୋଗ ହର । ଦୈବାତ୍ ଆଇମୋଜେନ୍ ଅସୁସ୍ଥ ହୋଇପଡ଼ିଲେ, ଏଇ ଔଷଧ ଦେବାକୁ ତାଙ୍କର ନିର୍ଦ୍ଦେଶ ଥିଲା । କହିବା ବାହୁଲ୍ୟ ଯେ, ଔଷଧଟି ଉତ୍କଟ ବିଷ ଛଡ଼ା ଆଉ କିଛି ନୁହେଁ । ରାଜକୁମାରୀଙ୍କୁ ହତ୍ୟା କରିବା ପାଇଁ ଉଦ୍ଦିଷ୍ଟ ।

ରାଣୀ ଏକା ଟେଳାରେ ଦୁଇଟି ପକ୍ଷୀ ଶିକାର କରିବାକୁ ଚାହୁଁଥିଲେ । ବଦ୍‌ମାସ୍ ପିସାନିଓ ରାଜକୁମାରୀଙ୍କୁ ଉଆସରୁ ଅପହରଣ କରି ନେଇଯାଇଛି, ତା'ପରେ ଓୟେଲ୍‌ସର ଜଙ୍ଗଲରେ ବିଷ ପ୍ରୟୋଗ କରି ତାକୁ ହତ୍ୟା କରିଛି । ଏଭଳି ଦୁଇଟି ଗୁରୁତର ଅଭିଯୋଗରେ ପିସାନିଓର ନିଶ୍ଚୟ ପ୍ରାଣଦଣ୍ଡ ହେବ ।

ଆଇମୋଜେନ୍ ମୃତ, ପୋସ୍ଥମାସ୍ ନିର୍ବାସିତ, ତା'ର ଅନ୍ତରଙ୍ଗ ସେବକ ପିସାନିଓ ପ୍ରାଣଦଣ୍ଡରେ ଦଣ୍ଡିତ । ଏହିଭଳି କ୍ଲୋଟେନ୍ ପଥର ସବୁଗୁଡ଼ିକ ବାଧା ଗୋଟିକ ପରେ ଗୋଟିଏ ଅପସାରିତ । ବୃଦ୍ଧ ରାଜାଙ୍କର ମୃତ୍ୟୁ ପରେ କ୍ଲୋଟେନ୍ ମୁଣ୍ଡରେ ରାଜମୁକୁଟ ଶୋଭାପାଇବା ପଥରେ ବାଧା ଆଉ କ'ଣ ? ରାଣୀ ମନେ ମନେ ଏହିଭଳି ଗୋଟିଏ ଯୋଜନା ସ୍ଥିର କରିନେଇଥିଲେ ।

ଆଇମୋଜେନ୍ ଆଉ ପିସାନିଓ ଦୁହେଁ ଦୁହିଁଙ୍କଠାରୁ ବିଦାୟ ନିଅନ୍ତି । ଏଣିକି ଦୁହିଁଙ୍କର ବାଟ ଅଲଗା । ପୁରୁଷ ବେଶରେ ଆଇମୋଜେନ୍ ଯିବ ରୋମ୍ ଆଉ ପିସାନିଓ ଫେରିଯିବ ରାଜଧାନୀକୁ ।

ଆଇମୋଜେନ୍ ରାଜକନ୍ୟା । ଏକା ଏକା ଦୁର୍ଗମ ବନପଥରେ ଚାଲିବାର ଅଭ୍ୟାସ ତା'ର ନାହିଁ । ଓୟେଲସ୍‌ର ସେଇ ନିବିଡ଼ ଅରଣ୍ୟ ଭିତରେ ରାଜକୁମାରୀ ବାଟ ଭୁଲିଯାଏ ।

॥ ୫ ॥

ବ୍ରିଟେନ୍‌ର ରାଜନୀତିକ ଆକାଶ କ୍ରମଶଃ ଧୂମାଚ୍ଛନ୍ନ ହୋଇ ଉଠୁଥାଏ । ଜୁଲିୟସ୍ ସିଜାରଙ୍କ ମୃତ୍ୟୁ ପରେ ରୋମ୍‌ରେ ଯେଉଁ ଭୟଙ୍କର ଗୃହଯୁଦ୍ଧ ଚାଲୁଥିଲା, ଦିନେ ତାହା ଶେଷ ହୋଇଯାଏ । ରୋମ୍‌ର ଶାସନ ଦାୟିତ୍ୱ ଗ୍ରହଣ କରନ୍ତି ଅଗଷ୍ଟସ୍ ସିଜର୍ । ସେ ଥିଲେ ଜୁଲିୟସ୍ ସିଜାର୍‌ଙ୍କ ଭଗିନୀର ଦୌହିତ୍ର । ରୋମ୍‌ରେ ନିଜର କ୍ଷମତା ସୁଦୃଢ଼ କରିବା ପରେ ସେ ରାଜ୍ୟ ବିସ୍ତାର ଆଡ଼େ ମନ ଦିଅନ୍ତି । ଗୃହଯୁଦ୍ଧର ସୁଯୋଗ ନେଇ ଯେଉଁ ସବୁ ଦୂରବର୍ତ୍ତୀ ଅଞ୍ଚଳ ରୋମ୍‌କୁ କର ଦେବା ବନ୍ଦ କରି ଦେଇଥାଆନ୍ତି, ପ୍ରଥମେ ଅଗଷ୍ଟସ୍ ସେଇମାନଙ୍କ ଆଡ଼େ ଦୃଷ୍ଟି ପକାନ୍ତି । ଅଚିରେ ରୋମ୍‌ର ଦୂତ ବ୍ରିଟେନର ରାଜ୍ୟସଭାରେ ଅଗଷ୍ଟସ୍‌ଙ୍କ ଚିଠି ନେଇ ଆସି ଉପସ୍ଥିତ ହୁଏ ଏବଂ ବକେୟା କର ଯଥାଶୀଘ୍ର ଦେଇଦେବା ନିମନ୍ତେ ଦାବି ଜଣାଏ । ପ୍ରାଚୀନ କାଳରେ ବର୍ତ୍ତମାନ ଫ୍ରାନ୍ସର ନାମଥିଲା ଗଲଦେଶ । ସେଠାରେ ଯେଉଁ ରୋମୀୟ ସେନାପତି ଥିଲେ,

ତାଙ୍କର ନାମ କେୟାସ୍ ଲୁସିୟାସ୍ । ସେଇ ଅଗଷ୍ଟସ୍‌ଙ୍କ ଦୂତ ରୂପେ ବ୍ରିଟେନ୍‌ରେ ଉପସ୍ଥିତ ହୁଅନ୍ତି ।

ବ୍ରିଟେନ୍‌ରାଜ ତାଙ୍କୁ ଯଥାଯୋଗ୍ୟ ମର୍ଯ୍ୟାଦାର ସହିତ ସ୍ୱାଗତ ଜଣାନ୍ତି । ସୌଜନ୍ୟ ବିନିମୟ ଶେଷ ହୋଇଗଲା ପରେ କେୟାସ୍ ନିଜ ଆଗମନର ଉଦ୍ଦେଶ୍ୟ ପ୍ରକାଶ କରନ୍ତି । ସ୍ପଷ୍ଟ ଭାଷାରେ ଜଣାଇ ଦିଅନ୍ତି, ଏତେଦିନ ଧରି ବ୍ରିଟେନ୍ ରୋମ୍‌କୁ ତା'ର ପ୍ରାପ୍ୟ ଦେଇ ନାହିଁ, ବର୍ତ୍ତମାନ ମହାମାନ୍ୟ ସମ୍ରାଟ୍ ଚାହାନ୍ତି, ସେ ସମସ୍ତ କର ରାଶି ପରିଶୋଧ କରିଦେଉ ।

ରାଜା ହୁଏତ ଏ ପ୍ରସ୍ତାବରେ ରାଜି ହୋଇ ଯାଇଥାଆନ୍ତେ । ମାତ୍ର ବାଧା ଦିଅନ୍ତି ରାଣୀ ଏବଂ ତାଙ୍କର ସୁଯୋଗ୍ୟ ପୁତ୍ର କ୍ଲୋଟେନ୍ । ସେମାନେ ରାଜାଙ୍କୁ ବୁଝାଇ ଦିଅନ୍ତି - ବ୍ରିଟେନ୍ ଏବଂ ରୋମ୍ ମଧ୍ୟରେ ଦୁସ୍ତର ବ୍ୟବଧାନ । ଏଭଳି ସ୍ଥିତିରେ ଆମେ ରୋମ୍‌ର ଅଧୀନତା ସ୍ୱୀକାର କରିବା କାହିଁକି ? କାହିଁକି ବା ବୃଥାରେ ଏତେଗୁଡ଼ାଏ ଟଙ୍କା ଗଣିଦେବା ? ରୋମ୍ ବ୍ରିଟେନ୍ ଆକ୍ରମଣ କରିବ ତ ! ଆମର କ'ଣ ତାକୁ ବାଧା ଦେବାର ଶକ୍ତି ନାହିଁ ? ବ୍ରିଟେନ୍ କ'ଣ ଏତେ ଶକ୍ତିହୀନ ! ଏ ସବୁ ଶୁଣି ଶୁଣି ରାଜାଙ୍କର ଶୀତଳ ରକ୍ତ ତାତି ଉଠେ । ସେ କେୟାସ୍‌ଙ୍କୁ ଜଣାଇ ଦିଅନ୍ତି - ବ୍ରିଟେନ୍ ସ୍ୱାଧୀନ ରାଷ୍ଟ୍ର । ସେ ରୋମ୍‌ର ଅଧୀନତା ସ୍ୱୀକାର କରେ ନାହିଁ । ବକେୟା କର ପରିଶୋଧ କରିବାର ପ୍ରଶ୍ନ ତେଣୁ ଉଠୁ ନାହିଁ ।

କେୟାସ୍ ଜଣାନ୍ତି, ଏକଦା ମହାବୀର ଜୁଲିୟସ୍ ସିଜର ବ୍ରିଟେନ୍ ଜୟ କରିଥିଲେ । ସେତେବେଳେ ବ୍ରିଟେନ୍ - ରାଜା ରୋମ୍‌କୁ କର ଦେବା ନିମନ୍ତେ ସ୍ୱୀକୃତ ହୋଇଥିଲେ ।

ସିମ୍ବେଲିନ୍ କହନ୍ତି- ହଁ ସେତେବେଳେ ସେଇ କଥା ସ୍ଥିର ହୋଇଥିଲା । କିନ୍ତୁ ବର୍ତ୍ତମାନ ସେ ସିଜର୍ ନାହାନ୍ତି, ସମୟ ବି ବଦଳି ଯାଇଛି । ତେଣୁ କର ଦେବାର ପ୍ରଶ୍ନ ଉଠୁ ନାହିଁ । ସ୍ୱାଧୀନ ବ୍ରିଟେନ୍ ରୋମ୍‌କୁ କର ଦେବାକୁ ଯିବ କାହିଁକି ?

କେୟାସ୍ କହନ୍ତି - ଠିକ୍ ଅଛି । ଏଥର ତେବେ ଯୁଦ୍ଧ ପାଇଁ ପ୍ରସ୍ତୁତ ଥାଆନ୍ତୁ ।

- ବ୍ରିଟେନ୍‌କୁ ଏତେ ଦୁର୍ବଳ ମନେ କରିବେ ନାହିଁ ଦୂତ । ଆମେ ଆତ୍ମରକ୍ଷା କରିବା ପାଇଁ ପୂର୍ଣ୍ଣ ରୂପରେ ସମର୍ଥ - ରାଜା ଜଣାଇ ଦିଅନ୍ତି ।

କେୟାସ୍ ବ୍ୟର୍ଥକାମ ହୋଇ ଫେରିଯାଆନ୍ତି ।

ବ୍ରିଟେନ୍ ରେ ଯୁଦ୍ଧ ପାଇଁ ପୂରା ମାତ୍ରାରେ ପ୍ରସ୍ତୁତି ଆରମ୍ଭ ହୋଇଯାଏ ।

॥ ୬ ॥

ନିବିଡ଼ ଅରଣ୍ୟ ମଧ୍ୟରେ ପଥହରା ହୋଇ ଘୂରି ବୁଲୁଥାଏ ଅସହାୟା ଆଇମୋଜେନ୍ । ସାଙ୍ଗରେ ଯେଉଁ ସାମାନ୍ୟ ଖାଦ୍ୟ ଓ ପାନୀୟ ଥିଲା, ତାହା ଅନେକ ବେଳୁ ଶେଷ

ହୋଇଯାଇଥାଏ । ରାଜକୁମାରୀ କ୍ଷୁଧା ଆଉ ତୃଷାରେ ଅତ୍ୟନ୍ତ କାତର । କିଛି ଖାଇବାକୁ ନ ପାଇଲେ ଆଉ ପାଦେ ବି ଚାଲିବାର ଶକ୍ତି ନାହିଁ । ସାଙ୍ଗରେ ତା'ର ଧନ ଅଛି ଅବଶ୍ୟ, ମାତ୍ର ଏଇ ନିର୍ଜନ ବନରେ କିଏ ବା ତାକୁ ଅର୍ଥ ବିନିମୟରେ ଖାଦ୍ୟ ଯୋଗାଇ ଦେବ ?

ତଥାପି କ୍ଳାନ୍ତପାଦ ଟାଣି ଟାଣି ଆଇମୋଜେନ୍ ପଥ ଚାଲେ । ଓୟେଲସ୍ - ଘନ ଅରଣ୍ୟପୂର୍ଣ୍ଣ ପାର୍ବତ୍ୟ ଅଞ୍ଚଳ । ବାଟ କହିଲେ ଯାହା ବୁଝାଯାଏ, ସେଭଳି କିଛି ଏଠାରେ ନାହିଁ । ବଣପାହାଡ଼ ଡେଇଁ ବାଟ ଚାଲିବା ପ୍ରକୃତରେ କଷ୍ଟ ।

ଆଗରେ ଦେଖାଯାଏ ପ୍ରକାଣ୍ଡ ଏକ ଗୁମ୍ଫା । ଭାବେ - ଏଠି କିଛିକ୍ଷଣ ବିଶ୍ରାମ କରିନେବ । ତା'ପରେ ଯାହା ଥିବ ଭାଗ୍ୟରେ ।

ଆଇମୋଜେନ୍ ଜାଣି ନ ଥିଲା, ଭାଗ୍ୟଦେବୀ ଏଥର ତା' ଆଡ଼କୁ ସ୍ମିତହାସ୍ୟରେ ଅନାଇବାକୁ ଆରମ୍ଭ କରିଥିଲେ । ତାକୁ ଆଣି ପହଞ୍ଚାଇ ଦେଇଥିଲେ, ତା'ର ନିଜର ଏକାନ୍ତ ପ୍ରିୟଜନମାନଙ୍କର ସନ୍ନିଧିରେ ।

ଆଇମୋଜେନ୍ ଗୁମ୍ଫା ଭିତରକୁ ପ୍ରବେଶ କରି ଆଶ୍ଚର୍ଯ୍ୟ ହୋଇଯାଏ । ଏଠାରେ ତ ମଣିଷ ବସବାସ କରୁଥିବାର ଜଣାଯାଉଛି । ଖାଦ୍ୟ ଅଛି, ପାନୀୟ ବି ରହିଛି । ବର୍ତ୍ତମାନ ଅବଶ୍ୟ ଏଠି କେହି ନାହାନ୍ତି । ଆଗରେ ଖାଦ୍ୟ ଆଉ ପାନୀୟ । ସେ ମଧ କ୍ଷୁଧା ତୃଷାରେ କାତର । ଆଇମୋଜେନ୍ ସଭ୍ୟ ଜଗତର ଆଦବ କାଇଦା ଭୁଲିଗଲା । ଅନୁମତି ନ ନେଇ ସେ କିଛି ଖାଦ୍ୟ ଆଣି ଖାଇବାକୁ ଆରମ୍ଭ କରିଦେଲା ।

କିଛି ପରେ ଗୁମ୍ଫାର ବାସିନ୍ଦାମାନେ ଫେରିଆସନ୍ତି । ସେମାନେ ହେଲେ ଜଣେ ବୃଦ୍ଧ ଆଉ ଦୁଇ ଜଣ ତରୁଣ । ତରୁଣ ଅନ୍ୟ କେହି ନୁହନ୍ତି ଆଇମୋଜେନ୍‌ର ସହୋଦର ଦୁଇ ଭ୍ରାତା - ଶୈଶବାବସ୍ଥାରେ ଏମାନେ ରାଜପ୍ରାସାଦରୁ ଅପହୃତ ହୋଇଥିଲେ । ଆଜି ସେଇ ଅପହୃତ ଶିଶୁ ତରୁଣରେ ପରିଣତ । ସେମାନେ ଭେଟୁଛନ୍ତି ନିଜର ଭଗିନୀକୁ । କେହି କାହାରିକୁ ଚିହ୍ନୁ ନାହାନ୍ତି ।

ଏଥର ତେବେ ଏଇ ତରୁଣ ଆଉ ବୃଦ୍ଧଙ୍କର ଅତୀତ ଉପରେ ଆଲୋକପାତ କରାଯାଉ ।

ରାଜା ସିମ୍ବେଲିନ୍‌ଙ୍କ ସଭାରେ ଥିଲେ ବେଲାରିୟସ୍ ନାମକ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି— ରାଜାଙ୍କର ଅତ୍ୟନ୍ତ ବିଶ୍ୱାସରପାତ୍ର । ରାଜା ତାଙ୍କର ଏଇ ଅନୁଗତ ସାମନ୍ତଙ୍କୁ ଶ୍ରଦ୍ଧା ମଧ କରୁଥିଲେ ।

ଏଥିପାଇଁ ସେ ହୋଇଥିଲେ ଅନ୍ୟ ସାମନ୍ତମାନଙ୍କର ଗୋପନ ଈର୍ଷାର ପାତ୍ର । ସେମାନେ ବେଲାରିୟସ୍‌ଙ୍କର ସର୍ବନାଶ କରିବା ପାଇଁ ଷଡ଼ଯନ୍ତ୍ରର ଜାଲ ବୁଣିବାକୁ ଆରମ୍ଭ କରନ୍ତି । ରାଜାଙ୍କ ପାଖରେ ତାଙ୍କ ନାମରେ ଦେଶଦ୍ରୋହିତା ଏବଂ ରାଜଦ୍ରୋହିତାର ଅଭିଯୋଗ ଉଠେ । ରାଜଭକ୍ତିର

ମୁଖା ପିନ୍ଧି ଏଇ ସାମନ୍ତ ଗୋପନରେ ରାଜାଙ୍କୁ ସିଂହାସନଚ୍ୟୁତ କରିବା ନିମନ୍ତେ ରୋମୀୟମାନଙ୍କ ସହିତ ଷଡ୍‌ଯନ୍ତ୍ରରେ ଲିପ୍ତ ବୋଲି ଶୁଣାଇ ଦିଆଯାଏ । ରୋମ୍ ନିକଟରେ ବ୍ରିଟେନ୍‌ର ସ୍ୱାଧୀନତା ବଳି ଦେଇ ସେ ନିଜେ ରାଜା ହେବାର ସ୍ୱପ୍ନ ଦେଖୁଛନ୍ତି । ଷଡ୍‌ଯନ୍ତ୍ରକାରୀମାନେ ଏଥି ନିମନ୍ତେ ଯଥାରୀତି ରାଜାଙ୍କ ନିକଟରେ କିଛି ପ୍ରମାଣ ମଧ୍ୟ ଉପସ୍ଥାପିତ କରାନ୍ତି ।

ରାଜା ଏମାନଙ୍କ କଥାରେ ଭାସିଯାଆନ୍ତି । ଅଚିରେ ବେଲାରିୟସ୍ ରାଜସଭା ଏବଂ ରାଜ୍ୟରୁ ନିର୍ବାସିତ ହୁଅନ୍ତି । ଷଡ଼ଯନ୍ତ୍ରକାରୀମାନଙ୍କର ଉଦ୍ଦେଶ୍ୟ ସଫଳ ହୁଏ । ବେଲାରିୟସ୍‌ଙ୍କର ଜମିଦାରୀ, ଦୁର୍ଗ, ଧନସମ୍ପତ୍ତି ସବୁ ରାଜା ବାଜ୍ୟାପ୍ତ କରି ନିଅନ୍ତି । ବେଲାରିୟସ୍‌ଙ୍କୁ ତାଙ୍କର ରାଜଭକ୍ତିର ଏଇ ପୁରସ୍କାର ମିଳେ ।

ବେଲାରିୟସ୍ କ୍ଷୁବ୍ଧ ହୁଅନ୍ତି । ଆଜୀବନ ରାଜାଙ୍କୁ ସମ୍ମାନ ଓ ଭକ୍ତି ଜଣାଇବାର ପରିଣାମ... ତାଙ୍କୁ ଧୀରେ ଧୀରେ ଉତ୍ତେଜିତ କରିବାରେ ଲାଗେ । ଯେଉଁସବୁ ଅଭିଯୋଗ, ତାଙ୍କ ନାମରେ ଅଣାଯାଇଛି, ରାଜା ଥରେ ସ୍ଥିର ବୁଦ୍ଧିରେ ସେସବୁର ବିଚାର କରିପାରିଥାଆନ୍ତେ । ସତ୍ୟ ମିଥ୍ୟା ଜାଣିବାର ଚେଷ୍ଟା କରିପାରିଥାଆନ୍ତେ । ରାଜା ତାହା ନ କରି ସୁଅରେ ଭାସିଗଲେ । ବିନା ଦୋଷରେ ତାଙ୍କୁ ଦଣ୍ଡ ମିଳିଗଲା ।

କ୍ରୁଦ୍ଧ ବେଲାରିୟସ୍ ସ୍ଥିର କରନ୍ତି, ଯେଉଁ ଉପାୟରେ ହେଉନା କାହିଁକି, ଏ ଅବିଚାରର ପ୍ରତିଶୋଧ ସେ ନେବେ । ଏଭଳି ପ୍ରତିଶୋଧ, ଯାହା ଦେଖି ସମଗ୍ର ପୃଥିବୀ ଥରିଉଠିବ ।

ସେ ଧାତ୍ରୀ ଇଉରିଫାଇଲ୍‌କୁ ହାତ କରନ୍ତି । ତାଙ୍କରି ନିର୍ଦ୍ଦେଶରେ ଦୁଇ ଶିଶୁ ରାଜପୁତ୍ର ଅପହୃତ ହୁଅନ୍ତି । ସେମାନଙ୍କୁ ନେଇ ବେଲାରିୟସ୍ ଓୟେଲସର ଏଇ ଗଭୀର ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରନ୍ତି । କିଛି ଦିନ ପରେ ୟୁରିଫାଇଲ୍ ମଧ୍ୟ ସେମାନଙ୍କ ସହିତ ଯୋଗ ଦିଏ ।

ବେଲାରିୟସ୍ ଦେଶତ୍ୟାଗ କରନ୍ତି ନାହିଁ, ବରଂ ୟୁରିଫାଇଲ୍‌କୁ ବିବାହ କରି ସେଇ ଜଙ୍ଗଲ ମଧ୍ୟରେ ନୂଆ ସଂସାର ଆରମ୍ଭ କରନ୍ତି । ଦୁଇ ରାଜକୁମାର ଗିଡେରିୟାସ ଏବଂ ଆରଭିରେଗାସ - ସେଇମାନଙ୍କର ସନ୍ତାନ ରୂପରେ ଧୀରେ ଧୀରେ ବଢ଼ିବାରେ ଲାଗନ୍ତି । ବେଲାରିୟସ୍ ଦୁହିଁଙ୍କର ନାମ ବଦଳାଇ ରଖନ୍ତି ପଲିଡୋର ଏବଂ କଡ଼ୱାଲ୍ । ବେଲାରିୟସ୍‌ଙ୍କର ନୂଆ ନାମ ହୋଇଥିଲା ମର୍ଗାନ । ଦୁଇ ରାଜକୁମାର ଏଇ ଦମ୍ପତିଙ୍କର ସ୍ନେହ ମମତାରେ ଏବଂ ସୁଶିକ୍ଷାରେ... ଧୀରେ ଧୀରେ ବଡ଼ ହେଉଥାଆନ୍ତି ।

ୟୁରିଫାଇଲ୍‌ର ମୃତ୍ୟୁ ହୋଇଯାଏ । ରହିଯାଆନ୍ତି ବେଲାରିୟସ୍ ଏବଂ ତାଙ୍କର ଦୁଇ ପୁତ୍ର । ଏଇ ଗୁହା ହୁଏ ତାଙ୍କର ସ୍ଥାୟୀ ବାସସ୍ଥାନ । ଭାଗ୍ୟର ନିର୍ଦ୍ଦେଶରେ ଆଇମୋଜେନ୍ ଆସି ଉପସ୍ଥିତ ହୁଏ ସେଇ ଗୁହାରେ । ଖାଉ ଖାଉ ନିଜ ସମ୍ପର୍କରେ ଭାବୁଥାଏ । କାହିଁ ବ୍ରିଟେନ୍‌ର

ରାଜପ୍ରାସାଦର ନିଶ୍ଚିତ ଜୀବନ ଆଉ କାହିଁ ୱେଲସ୍‌ର ଏଇ ଗଭୀର ଅରଣ୍ୟର ସଂଘର୍ଷମୟ ସ୍ଥିତି ! କିଭଳି ଭାଗ୍ୟ ଦେଇ ତା'ର ସ୍ରଷ୍ଟା ତାକୁ ପୃଥିବୀକୁ ପଠାଇଛନ୍ତି, ତାହା ସେ ଏପର୍ଯ୍ୟନ୍ତ ମଧ ବୁଝିପାରି ନାହିଁ । ଛୋଟ ପିଲାଟିଏ ହୋଇଥିଲା, ପ୍ରଥମେ ବିଦାୟ ନେଲେ ସ୍ନେହମୟୀ ଜନନୀ । ତା' ପରେ ଦିନେ ଉଆସ ଭିତରୁ ଅଦୃଶ୍ୟ ହୋଇଗଲେ ତା'ର ଛୋଟ ଛୋଟ ଭାଇ ଦୁଇଟି । ସେମାନଙ୍କର ସେଇ ଫୁଟିଲା ଫୁଲ ଭଳି ହସହସ ମୁହଁ- ତା'ର ଏବେବି ମନେପଡ଼େ । ଆହା, ସେମାନେ କୋଉଠି ଥିବେ ? ବଞ୍ଚିଥିବେ ତ ! ସେ ଦୁଃଖକୁ ତ ସେ ଭୁଲି ରହିଥିଲା । ଏତିକିବେଳେ ପିତାଙ୍କର ପୁନର୍ବିବାହ । ନୂଆ ରାଣୀଙ୍କର ନିତ୍ୟ ନୂତନ ଉତ୍ପାତ... ତା'ରି ଭିତରେ ମୁଠାଏ ଯୂଇ ଫୁଲର ବାସ୍ନା ଭଳି ତା' ଜୀବନ ଭିତରକୁ ପଶି ଆସିଥିଲା ପୋସ୍ଥମାସ୍‌ । ଭାବୁଥିଲା - ଏଥର ଭାଗ୍ୟ ଦେବତା ବୋଧହୁଏ ତାଙ୍କର କୃପା କଟାକ୍ଷରେ ତା' ଆଡ଼କୁ ଚାହିଁବେ । ସେ ଆଉ ପୋସ୍ଥମାସ୍‌ ମିଶି ଗଢ଼ିବେ ଛୋଟ ଏକ ନୀଡ଼ । ଏ ରାଜବୈଭବ ସେମାନଙ୍କର ଲୋଡ଼ା ନାହିଁ । ମାତ୍ର ତାହା ବି ହେଲା ନାହିଁ । କାଳର ଗୋଟାଏ ଫୁତ୍କାରରେ ସେମାନଙ୍କର ନୀଡ଼ ରଚନାର ସ୍ୱପ୍ନ କାହିଁ କୁଆଡ଼େ ଭାସିଗଲା ଆଜି ସେ କେଉଁଠି, ପୋସ୍ଥମାସ୍‌ ବା କେଉଁଠି !!

ଅତୀତରୁ ବର୍ତ୍ତମାନକୁ ଫେରିଆସି ଆଇମୋଜେନ୍‌ ଭାବେ- ବିଚରା ପିସାନିଓ ମୋତେ ଠିକ୍‌ ବାଟ ବତାଇ ଦେଇଥିଲା । ନିଜର ମନ୍ଦ ବୁଦ୍ଧିରୁ ମୁଁ ଅରଣ୍ୟର ଏଇ ଗୋଲକ ଧନ୍ଦା ଭିତରେ ଘୂରି ମରୁଛି ।

ବେଲାରିୟସ୍‌ ପ୍ରଥମେ ଗୁହା ଭିତରେ ପାଦ ରଖନ୍ତି । ଦୁଇ ପୁତ୍ରଙ୍କୁ ନେଇ ସେ ଶିକାରକୁ ଯାଇଥିଲେ । ବେଲାରିୟସ୍‌ ଆଶ୍ଚର୍ଯ୍ୟରେ ନବାଗତ ତରୁଣ ଆଡ଼କୁ ଅନାଇ ରହନ୍ତି । ଆଇମୋଜେନ୍‌ ନିଜ ଚିନ୍ତାରେ ବ୍ୟସ୍ତ ରହି ଯନ୍ତ୍ର ଭଳି ଖାଇ ଚାଲିଥାଏ ।

ପଛକୁ ଅନାଇ ସେ କହନ୍ତି କି ଆଶ୍ଚର୍ଯ୍ୟ ! ଇଏ କିଏ ? ଆସିଲା କୋଉଠୁ ?

ବାହାରୁ ଦୁଇ ତରୁଣ ପଚାରନ୍ତି - କିଏ କୋଉଠୁ ଆସିଲା ବାପା ?

ବେଲାରିୟସ୍‌ କହନ୍ତି - ସେ ନିଶ୍ଚୟ ଜଣେ ଦେବଦୂତ । ଏଭଳି ସୁନ୍ଦର ମଣିଷ ତ ମୁଁ ପୂର୍ବରୁ ଦେଖି ନାହିଁ ।

ଗୁହା ବାହାରେ କଥାବାର୍ତ୍ତା ଶୁଣି ଆଇମୋଜେନ୍‌ ବାହାରକୁ ଆସେ । ଏମାନଙ୍କୁ ଦେଖେ । ସେମାନଙ୍କୁ କରୁଣ କଣ୍ଠରେ କହେ- ଅନୁଗ୍ରହ କରି ମୋର କୌଣସି କ୍ଷତି କରିବେ ନାହିଁ । ମୁଁ ଆପଣମାନଙ୍କର କିଛି ଅନିଷ୍ଟ କରି ନାହିଁ । କ୍ଷୁଧାରେ ମୋର ପ୍ରାଣ ଯାଉଥିଲା । ତଥାପି ଆପଣମାନେ କେହି ଥିଲେ, ମୁଁ ଖାଦ୍ୟ କିଛି ମାଗିଥାଆନ୍ତି ବା କିଣିଥାଆନ୍ତି । କିନ୍ତୁ ଆପଣମାନେ ତ ନ ଥିଲେ । ଏଣେ ଅପେକ୍ଷା କରିବାର ଉପାୟ ମଧ ନ ଥିଲା । ଆଗରେ ଖାଦ୍ୟ ଥୁଆ ହୋଇଛି । ତେଣୁ କେବଳ ଜୀବନ ରକ୍ଷା କରିବାକୁ ଉପାୟଶୂନ୍ୟ ହୋଇ ସେଥିରୁ କିଛି ଖାଇଛି ।

ମୋଟେ ଚୋରି କରି ନାହିଁ । ଚଟାଣରେ ଦେଖିଲି ଅନେକ ମୋହର ଏଣେ ତେଣେ ପଡ଼ିଛି । ନେଇ ନାହିଁ । ଏଇ ନିଅନ୍ତୁ ଖାଦ୍ୟର ଦାମ୍ । ଆପଣମାନେ ଆସି ନ ଥିଲେ ଏଇ ଥାକରେ ଦାମ୍‌ଟା ରଖି ଦେଇ ଆସିଥାଆନ୍ତି । ଏକାଥରେ ଏତେ କଥା କହି ଆଇମୋଜେନ୍ ନୀରବ ହୋଇଯାଏ ।

ତା' ହାତରୁ ପଇସା ନେବାକୁ କେହି ଆଗେଇ ଆସନ୍ତି ନାହିଁ ।

ଆଇମୋଜେନ୍ ପୁଣି କହେ - ହୁଏତ ଆପଣମାନେ ମୋ ଉପରେ ଖୁବ୍ ରାଗିଯାଇଛନ୍ତି । କହିଛି ତ ମୁଁ ନିତାନ୍ତ ନିରୁପାୟ ହୋଇ ଆପଣଙ୍କର ଖାଦ୍ୟ ଖାଇଛି । ଏଥିପାଇଁ କ୍ଷମା ମାଗୁଛି । ପୁଣି କହୁଛି, ସେତକ ନ ମିଳିଥିଲେ ମୁଁ ମରିଯାଇଥାଆନ୍ତି ।

ଏତେବେଳ ପରେ ବେଲାରିୟସ୍ ମୁହଁ ଖୋଲନ୍ତି । ପଚାରନ୍ତି- ତମେ ଯିବ କୁଆଡ଼େ ? ଆଉ ତମର ନାମ କ'ଣ ?

- ମୁଁ ଫାଇଡେଲ । ମୋର ଜଣେ ଆତ୍ମୀୟ ଇଟାଲୀ ଯାଉଛନ୍ତି । ସେ ମିଡ଼ଫୋର୍ଡ଼ - ହାଭେନ୍ ବନ୍ଦରରୁ ଇଟାଲୀଗାମୀ ଜାହାଜରେ ଉଠିବେ । ତାଙ୍କ ସହିତ ଦେଖା କରିବାକୁ ମୁଁ ମିଡ଼ଫୋର୍ଡ଼ ଯାଉଥିଲି । ଦୁର୍ଭାଗ୍ୟକୁ ଜଙ୍ଗଲ ଭିତରେ ବାଟ ଭୁଲିଗଲି । ଦୀର୍ଘ ଦୁଇଦିନ ଏଇ ଜଙ୍ଗଲ ଭିତରେ ବାଟ ଖୋଜି ବୁଲିଛି - କିନ୍ତୁ ବନ୍ଦର ଯିବାକୁ ବାଟ ପାଇ ନାହିଁ । ସାଙ୍ଗରେ ଯେତିକି ଖାଦ୍ୟ ଆଉ ପାନୀୟ ଥିଲା, ତାହା ବହୁ ପୂର୍ବରୁ ଶେଷ ହୋଇଯାଇଥିଲା । ଭୋକ ଆଉ ଶୋଷରେ ପାଦ ଚଲୁ ନ ଥିଲା । ସେଥିପାଇଁ ଅନ୍ୟାୟ ଜାଣି ବି - ଏଇ କାମଟା ମୁଁ କରିଛି । ଆଇମୋଜେନ୍ ନୀରବ ହୋଇଯାଏ ।

ବେଲାରିୟସ୍ କହିଲେ- ଯୁବକ, ଆମକୁ ଅସଭ୍ୟ ବୋଲି ଭାବ ନାହିଁ । ଭାଗ୍ୟ ଦୋଷରୁ ଆମେ ଜଙ୍ଗଲରେ ରହିଥିଲେ ବି ଏଇ ସ୍ଥାନ ଆମର ପରିଚୟ ନୁହେଁ । ଆମେ ତମକୁ ସ୍ୱାଗତ କରୁଛୁ । ରାତି ହୋଇ ଆସୁଛି । ତମେ କୁଆଡ଼େ ଯିବା ଆବଶ୍ୟକ ନାହିଁ । ଖୁସିରେ ଆମ ସହିତ ରହ ।

ତା'ପରେ ତରୁଣ ଦୁଇଟିଙ୍କ ଆଡ଼କୁ ଅନାଇ କହନ୍ତି, ପୁଅମାନେ ଆମର ଏଇ ଅତିଥିଙ୍କୁ ଭିତରକୁ ନେଇଯାଅ ।

ତରୁଣ ଦୁହେଁ କହନ୍ତି - ଆଜିଠାରୁ ତମେ ଆମର ଭାଇ ହେଲ । ଯେତେ ଦିନ ଇଚ୍ଛା ତମେ ଏଠାରେ ରହିପାର । ଏମିତିକି ସବୁ ଦିନ ପାଇଁ ରହିଗଲେ ବି ଆମେ ଖୁସି ହେବୁ ।

ଆଇମୋଜେନ୍‌କୁ ନେଇ ସେମାନେ ଭିତରକୁ ଯାଆନ୍ତି । ଆଇମୋଜେନ୍ ସେମାନଙ୍କୁ ଭାରି ଭଲ ଲାଗେ । ଯେତେହେଲେ ରକ୍ତର ସମ୍ପର୍କ ।

ସେମାନେ ହରିଣଟିଏ ମାରି ଆଣିଥିଲେ । ଆଇମୋଜେନ୍ ମାଂସ ରାନ୍ଧିବାରେ ଦୁଇଭାଇଙ୍କୁ ସାହାଯ୍ୟ କରେ । କହିବାକୁ ଗଲେ ସେଇ ରାନ୍ଧେ । ଗୁହାର ବାସିନ୍ଦାମାନେ ତା'ର ଦକ୍ଷତା ଦେଖି ବଡ଼ ଖୁସି ।

ଏ ଯୁଗର ସମ୍ଭ୍ରାନ୍ତ ପରିବାରର ଝିଅମାନେ ରନ୍ଧାବଢ଼ା ନ ଜାଣିଲେ ମଧ୍ୟ ସେ ଯୁଗରେ ସେଇ କାମଟି ସେମାନେ ଭଲଭାବରେ ଶିଖୁଥିଲେ । ରାଣୀ ହୁଅନ୍ତୁ କି ଜେମା ହୁଅନ୍ତୁ, ରନ୍ଧନ କଳାରେ ପାରଦର୍ଶିତା ଲଭିବା ଥିଲା ସେମାନଙ୍କ ପାଇଁ ଏକ ବିଶେଷ ଯୋଗ୍ୟତା । ଆଇମୋଜେନ୍ ଏଇ କଳାଟିକୁ ବେଶ୍ ଭଲ ଭାବରେ ଶିଖିଥିଲା । ପଲିଡୋର ଆଉ କଡ଼ୱାଲ ତା'ର ରାନ୍ଧଣାର ଖୁବ୍ ପ୍ରଶଂସା କଲେ । ବେଲାରିୟସ୍ ମଧ୍ୟ ପିଲାମାନଙ୍କ ସହିତ ଯୋଗ ଦେଲେ ।

ଚାରିଆଡ଼େ ଏକ ସନ୍ତୋଷ ଆଉ ତୃପ୍ତିର ବାତାବରଣ ରାଜତ୍ୱ କରୁଥିଲା । ଅନେକ ଦିନ ପରେ ଆଇମୋଜେନ୍ ମଧ୍ୟ କିଭଳି ଏକ ମାନସିକ ସନ୍ତୋଷ ଲାଭ କରିଥିଲା । ତା'ର ମନେ ହେଉଥିଲା ହଜିଯାଇଥିବା ଆତ୍ମୀୟତାର ଏ ନିବିଡ଼ ଅନୁଭବ ତାକୁ ସ୍ୱର୍ଗ ରାଜ୍ୟରେ ବିଚରଣ କରାଉଥିଲା । ମାଆଙ୍କର ମୃତ୍ୟୁ ପରେ ଏଭଳି ଅନୁଭବ ତା'ର କେବେବି ହୋଇ ନ ଥିଲା । ସେ ଖୁସିରେ ଗୀତ ଗାଇବାକୁ ଆରମ୍ଭ କଲା । ସମସ୍ତେ ମୁଗ୍ଧ ହୋଇ ଶୁଣୁଥିଲେ । ଗୀତ ଶେଷ ହୋଇଯିବା ପରେ ପଲିଡୋର ତା'ର ଭାଇକୁ କହେ-କି ଚମତ୍କାର ଗୀତ ! ମନେ ହେଉଥିଲା ଯେମିତି କେହି ଗନ୍ଧର୍ବ ଗୀତ ଗାଉଛି !

ନିଜ ଭିତରେ ଦୁଇଭାଇ କଥାବାର୍ତ୍ତା ହୁଅନ୍ତି । କଡ଼ୱାଲ୍ କହେ-ଯଦିଓ ଫାଇଡେଲ୍ ମୁହଁରେ ସବୁବେଳେ ହସ ଟିକିଏ ଲାଗି ରହିଛି, ତଥାପି ମୋର ମନେ ହେଉଛି, ସେଇ ହସ ତଳେ ଯେମିତି ଗୋଟାଏ ଗଭୀର ବେଦନା ବୋଧ ଲୁଚି ରହିଛି । ଫିକା ବିଷଣ୍ଣତାର ଗୋଟାଏ ଆବରଣ ତା'ର ମୁହଁକୁ ମ୍ଳାନ କରି ରଖିଛି । ଅଟଳ ଧୈର୍ଯ୍ୟ ଯେମିତି ଶୋକକୁ ବାଟ ଛାଡ଼ି ଦେବାକୁ ପ୍ରସ୍ତୁତ ହେଉ ନାହିଁ ।

ଆଇମୋଜେନ୍‌ର ବୁଦ୍ଧିଦୀପ୍ତ କଥା ଆଉ ଭଦ୍ର ବ୍ୟବହାର ବେଲାରିୟସ୍ ପରିବାରର ସମସ୍ତଙ୍କୁ ମୁଗ୍ଧ କରେ । ଦୁଇଭାଇ ଦେଖିବାବେଳୁ ଆଇମୋଜେନ୍‌କୁ ଭଲପାଇବାକୁ ଲାଗିଲେ । ଆଇମୋଜେନ୍‌ର ମଧ୍ୟ ଏଇ ବନବାସୀ ଦୁଇ ଭାଇଙ୍କ ଉପରେ ଗୋଟାଏ ପ୍ରକାରର ମାୟା ଲାଗିଗଲା । ପୋସ୍‌ଥମାସ୍‌ର ସ୍ମୃତି ଯଦି ରହି ରହି ତା'ର ମନକୁ ପୀଡ଼ିତ କରୁ ନ ଥାନ୍ତା, ତେବେ ଆଇମୋଜେନ୍ ଏଇମାନଙ୍କ ସାଙ୍ଗରେ ତା'ର ଅବଶିଷ୍ଟ ଜୀବନ ଶାନ୍ତିରେ କଟାଇ ଦିଅନ୍ତା । ସେ ଠିକ୍ କରେ, କ୍ଳାନ୍ତି ଦୂର ହେବା ପର୍ଯ୍ୟନ୍ତ ସେ ଏମାନଙ୍କ ସାଙ୍ଗରେ ରହିଯିବ । ତା'ପରେ ସେ ତା'ର ଗନ୍ତବ୍ୟ ପଥରେ ବାହାରି ପଡ଼ିବ । ଏମାନେ ହୁଏତ ତାକୁ ବାଟ ବତାଇଦେଇପାରିବେ ।

ହରିଣ-ମାଂସ ଶେଷ ହୋଇ ଯାଇଛି । ବେଲାରିୟାସ୍ ନିଜର ଦୁଇପୁତ୍ରଙ୍କୁ ନେଇ ଶିକାରରେ ବାହାରିବେ । ସେମାନେ ଆଇମୋଜେନ୍‌କୁ ମଧ୍ୟ ସେମାନଙ୍କ ସାଙ୍ଗରେ ଯିବା ପାଇଁ ଡାକନ୍ତି । ଆଇମୋଜେନ୍ କହେ-ଯାଇପାରୁଥିଲେ ତ ଖୁସି ହୁଅନ୍ତି । ତେବେ ମନେ ହେଉଛି, ଦେହର କ୍ଳାନ୍ତି ଏ ପର୍ଯ୍ୟନ୍ତ ବି ଦୂର ହୋଇ ନାହିଁ ।

ତାକୁ ବିଶ୍ରାମ କରିବାକୁ କହି ତିନିଜଣଯାକ ଜଙ୍ଗଲ ଭିତରକୁ ଚାଲିଯାଆନ୍ତି । ଆଇମୋଜେନ୍ ପ୍ରକୃତରେ କ୍ଳାନ୍ତି ଅନୁଭବ କରୁଥାଏ । ଗୁହା ଭିତରକୁ ଯାଇ ଚୁପ୍‌ଚାପ୍ ଶୋଇପଡ଼େ । ହଠାତ୍ ତା'ର ମନେ ପଡ଼ିଯାଏ, ପିସାନିଓ ଦେଇଥିବା ଔଷଧର କଥା । କହିଥିଲା- ଏ ଔଷଧ ସର୍ବ ରୋଗ ହରା । ଯେ କୌଣସି ରୋଗ ଏଥିରେ ଭଲ ହୋଇଯାଏ ।

ଆଇମୋଜେନ୍ ଆଉ ବିଳମ୍ବ ନ କରି ସେଇ ଔଷଧରୁ ପାନେ ଖାଇଦିଏ । ଧୀରେ ଧୀରେ ଗଭୀର ତନ୍ଦ୍ରା ତାକୁ ଆଚ୍ଛନ୍ନ କରି ପକାଏ ଏବଂ ଅଳ୍ପ ସମୟ ମଧ୍ୟରେ ସେ ମରଣ ନିଦ୍ରାରେ ଢଳିପଡ଼େ ।

ଶିକାରରୁ ଫେରିଆସିବା ପରେ ବେଲାରିୟାସ୍ ଲକ୍ଷ୍ୟ କରନ୍ତି ଯେ, ଫାଇଡେଲ ଏବେବି ଶୋଇ ରହିଛି । ପ୍ରଥମେ ତାଙ୍କର ଧାରଣା ହୁଏ ଯେ, ସମ୍ଭବତଃ କ୍ଳାନ୍ତିବଶତଃ ସେ ଗଭୀର ନିଦ୍ରାରେ ଆଚ୍ଛନ୍ନ ହୋଇ ପଡ଼ିଛି । ସେମାନେ ତା'ର ନିଦ୍ରା ଭଙ୍ଗର ଆଶାରେ ଲଘୁ ପଦରେ ଗୁହା ଭିତରେ ପ୍ରବେଶ କରନ୍ତି ।

କିଛି ସମୟ ପରେ ସେମାନେ ଲକ୍ଷ୍ୟ କରନ୍ତି, କୌଣସି ଶବ୍ଦରେ ଫାଇଡେଲ୍‌ର ନିଦ ଭାଙ୍ଗୁ ନାହିଁ । ପରୀକ୍ଷା କରି ଜାଣିପାରନ୍ତି , ତା' ଦେହରେ ଜୀବନର କୌଣସି ଲକ୍ଷଣ ଦେଖାଯାଉ ନାହିଁ । ସେ ନିଦ୍ରାରେ ଅଚେତନ ହୋଇ ନାହିଁ । ଶୋଇଥିବା ଅବସ୍ଥାରେ ମୃତ୍ୟୁ ବରଣ କରିଛି ।

ବେଲାରିୟାସ୍ ପରିବାର ଦୁଃଖରେ ଭାଙ୍ଗିପଡ଼ନ୍ତି । ସେମାନଙ୍କର ମନେହୁଏ, ସତେ ଯେମିତି ସେମାନଙ୍କର ଆତ୍ମୀୟ ବିୟୋଗ ଘଟି ଯାଇଛି । କେତେ ଦିନର ବା ପରିଚୟ ? ତଥାପି ତାହାରି ଭିତରେ ସେମାନେ ମାୟାର ବନ୍ଧନରେ ଏଭଳି ବାନ୍ଧିହୋଇ ଯାଇଥିଲେ ଯେ, ଆଜି ସେମାନେ ସର୍ବସ୍ୱ ହରାଇଥିବା ଭଳି ଲାଗୁଛି । ତିନିଜଣଯାକ କାନ୍ଦିବାକୁ ଆରମ୍ଭ କରନ୍ତି ।

ଶେଷରେ ଅଶ୍ରୁ ସମ୍ବରଣ କରି ବେଲାରିୟାସ୍ ଆଦେଶ ଦିଅନ୍ତି, ଏଇ ପ୍ରାଣହୀନ ଦେହକୁ ଜଙ୍ଗଲ ଭିତରେ ସମାଧି ଦିଅ । ଯାହା ପାରଲୌକିକ କାର୍ଯ୍ୟ, ସେସବୁ ତମମାନଙ୍କୁ ହିଁ କରିବାକୁ ପଡ଼ିବ ।

ଦୁହେଁ ଆଇମୋଜେନ୍‌ର ନିଷ୍ପ୍ରାଣ ଦେହଟାକୁ ଗୁହା ବାହାରକୁ ନେଇଆସନ୍ତି । କିଛି ଦୂରରେ ଛାୟାଚ୍ଛନ୍ନ ଗୋଟିଏ ବୃକ୍ଷ ତଳେ କୋମଳ ଘାସର ଶଯ୍ୟା ଉପରେ ଅତ୍ୟନ୍ତ ମମତାର

ସହିତ ସେମାନେ ସେଇ ଦେହଟିକୁ ଶୁଆଇ ଦିଅନ୍ତି । କିଛି ସମୟ ନୀରବରେ ପ୍ରାର୍ଥନା କରନ୍ତି । ଶୋକ ସଂଗୀତଟିଏ ବି ଗାଆନ୍ତି । ତା'ପରେ ଫୁଲ ଆଉ ପତ୍ର ଦେଇ ଦେହଟିକୁ ଢାଙ୍କି ଦିଅନ୍ତି । ପଲିଡୋର ଆବେଗପୂର୍ଣ୍ଣ କଣ୍ଠରେ କହେ -ଭାଇ ଫାଇଡେଲ୍, ଦୁଇ ଦିନର ପରିଚୟ ଭିତରେ ତମେ ଆମକୁ ଏଭଳି ମାୟାରେ ପକାଇଯାଇଛ ଯେ, ଆଜି ତମକୁ ବିଦାୟ ଦେବାକୁ ଯାଇ ଦୁଃଖରେ ଛାତି ଫାଟିଯାଉଛି । ବିଦାୟ ଭାଇ, ପ୍ରତିଶ୍ରୁତି ଦେଉଛି, ମୁଁ ଆସିବି, ଯେତେଦିନ ବଞ୍ଚିଥିବି, ସବୁଦିନ ଆସି ତମର ସମାଧିରେ ଫୁଲ ଚଢ଼ାଉଥିବି । କହୁ କହୁ ତା'ର କଣ୍ଠ ରୁଦ୍ଧ ହୋଇଯାଏ । ଆଖିରୁ ବହିଆସେ ଅସରନ୍ତି ଲୁହ । କଡ୍‌ୱାଲ ମଧ କାନ୍ଦିବାରେ ଲାଗେ । ତା'ପରେ ଶୋକବିହ୍ୱଳ ହୃଦୟରେ ଦୁହେଁ ଗୁହାକୁ ଫେରିଯାଆନ୍ତି ।

॥ ୭ ॥

ଆଇମୋଜେନ୍-ପ୍ରାସାଦ ତ୍ୟାଗ କରି ଚାଲିଯାଇଛି-ଏ ସମ୍ବାଦ ପାଇ କ୍ଲୋଟେନ୍ ରାଗିଯାଏ । ତା'ର ସିଂହାସନ ଲାଭର ଏକମାତ୍ର ପ୍ରତିବନ୍ଧକ ହେଉଛି ଏଇ ଝିଅ । ହୁଏତ ସେ ତାକୁ ବିବାହ କରିବ କିମ୍ବା ହତ୍ୟା କରିବ -ଏ ଦୁଇଟା ଭିତରୁ ଗୋଟିଏ ତାକୁ କରିବାକୁ ହିଁ ପଡ଼ିବ । ରାଜକୁମାରୀ ଏଠି ଥିଲେ, ଏ କାମ ଯେତେ ସହଜ-ବାହାରେ ତାହା ଆଦୌ ସେମିତି ନୁହେଁ । ପ୍ରଜାମାନେ ତାକୁ ଭଲ ପାଆନ୍ତି । ଥରେ ଯଦି ରାଜକୁମାରୀ ସେମାନଙ୍କ ଭିତରେ ପହଞ୍ଚିଯାଏ ଏବଂ ସେ ନିଜେ ତା' ବିରୋଧରେ କୌଣସି ପଦକ୍ଷେପ ଗ୍ରହଣ କରେ, ତେବେ ପ୍ରଜାମାନେ ରାଗିଯିବେ । ତହିଁରେ ଭଲ ଅପେକ୍ଷା ମନ୍ଦ ହେବ । ତା' ଛଡ଼ା ରାଜା ମଧ ଝିଅ ବିରୋଧରେ କେତେ ବାଟ ଯିବେ ? ଯାହା ହେଲେ ବି ଝିଅ ତ!

କ୍ଲୋଟେନ୍ ଆଇମୋଜେନ୍‌ର ସନ୍ଧାନରେ ଚାରିଆଡ଼େ ଲୋକ ପଠାଏ । ମାତ୍ର କେହି ତାକୁ ପାଆନ୍ତି ନାହିଁ । ଖବର ମିଳିଛି, ରାଜକୁମାରୀ ପିସାନିଓ ସହିତ ଯାଇଛି । ଯଦିଓ ରାଜଧାନୀରେ ତାକୁ କିଛି ଦିନ ଧରି ଦେଖାଯାଉ ନାହିଁ, ତଥାପି ତା'ର ବିଶ୍ୱାସ ସେ ଏଇ ଆଖପାଖରେ ହିଁ ଅଛି । ପିସାନିଓକୁ ଭଲ କରି ଜେରା କଲେ ତା'ର ସନ୍ଧାନ ନିଷ୍ଚୟ ମିଳିବ ।

କ୍ଲୋଟେନ୍ ପିସାନିଓକୁ ଡକାଇ ପଠାଏ । ସେ ଆସିବାରୁ ବିନା ଭୂମିକାରେ ସିଧାସଳଖ ତାକୁ ପ୍ରଶ୍ନ କରେ-ରାଜକୁମାରୀ କାହାନ୍ତି ?

- ମୁଁ କେମିତି ଜାଣିବି ? ପିସାନିଓର ସ୍ପଷ୍ଟ ଉତ୍ତର ।

-ଶୁଣ ପିସାନିଓ, ବାଜେ କଥା କହି ମୋତେ ଧୋକା ଦେବାକୁ ଚେଷ୍ଟା କର ନାହିଁ । ମୁଁ ଖବର ପାଇଛି, ରାଜକୁମାରୀ ତମରି ସହିତ ଉଆସ ଛାଡ଼ି ବାହାରକୁ ଯାଇଛନ୍ତି । ତମେ

କିଛି ଦିନ ରାଜଧାନୀରେ ନ ଥିଲ, ଏ ଖବର ମୁଁ ଜାଣେ । ତା' ଛଡ଼ା ତାଙ୍କର ଦେଖାଶୁଣା କରିବାର ସମ୍ପୂର୍ଣ୍ଣ ଦାୟିତ୍ୱ ତମ ଉପରେ ନ୍ୟସ୍ତ ଥିଲା । ସେ ଯଦି ନ ମିଳନ୍ତି, ତେବେ ତା'ର କୈଫିୟତ୍ ତମକୁ ହିଁ ଦେବାକୁ ପଡ଼ିବ । ସେଇଥିପାଇଁ କହୁଛି, ସତକଥାଟା କହିଦିଅ । ନୋହିଲେ ତମ କପାଳରେ ଅଶେଷ ଦୁଃଖ ଅଛି । କ୍ଲୋଟେନ୍ ଧମକ ଦେଇ କହେ ।

ପିସାନିଓ କିଛି କ୍ଷଣ ଚିନ୍ତା କରେ । ଅନୁମାନ କରେ, ରାଜକୁମାରୀ ତ ଏବେ ଜାହାଜରେ ବସି ରୋମ୍ ପଥରେ । କୁଚକ୍ରୀ କ୍ଲୋଟେନ୍‌ର ହାତ ସେଠି ପହଞ୍ଚିପାରିବ ନାହିଁ । ତେଣୁ ସେ ସତ୍ୟ କଥା ହିଁ କହେ- ରାଜକୁମାରୀ ମିଲଫୋର୍ଡ଼ହାଭେନ୍ ଯାଇଛନ୍ତି ।

କ୍ଲୋଟେନ୍ ଅବାକ୍ ହୋଇ ପଚାରେ-ସେଠି କ'ଣ ହେଉଛି ?

- ସେଠି ସେ ତାଙ୍କ ସ୍ୱାମୀଙ୍କ ସହିତ ଦେଖା କରିବେ ।

- ସ୍ୱାମୀ ମାନେ ପୋସ୍ଥମାସ୍ ? ସେ ଏ ଦେଶକୁ ଆସିଛି ? ସେତ ନିର୍ବାସିତ-ତା'ର ପ୍ରାଣଭୟ ନାହିଁ ?

- ସେ କଥା କହିପାରିବି ନାହିଁ । ତେବେ ମିଲ୍‌ଫୋର୍ଡ ଅରଣ୍ୟରେ ତାଙ୍କ ସହିତ ଦେଖାକରିବା ପାଇଁ ପୋସ୍ଥମାସ୍ ଚିଠି ଲେଖିଥିଲେ ।

- 'ଆଉ, ଆଉ କ'ଣ ଜାଣ କହିଯାଅ-ପ୍ରଚୁର ପୁରସ୍କାର ପାଇବ ।'

- କୁବେର ସମ୍ପତ୍ତି ଢାଳିଦେଲେ ବି ମୁଁ ଏହାଠୁଁ ଅଧିକ କିଛି କହିପାରିବି ନାହିଁ । ମୋର ମୁନିବ ପୋସ୍ଥମାସ୍ ମୋତେ ଦାୟିତ୍ୱ ଦେଇଥିଲେ, ରାଜକୁମାରୀଙ୍କୁ ଯେ କୌଣସି ଭାବେ ମିଲ୍‌ଫୋର୍ଡ଼ ଅରଣ୍ୟରେ ପହଞ୍ଚାଇ ଦେବା ପାଇଁ । ପୋସ୍ଥମାସ୍ ଯେ ଆଇମୋଜେନ୍‌କୁ ହତ୍ୟା କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ, ସେ କଥା ସେ ଇଚ୍ଛା କରି କ୍ଲୋଟେନ୍‌କୁ କୁହେ ନାହିଁ ।

କ୍ଲୋଟେନ୍ କହେ, ତମେ ପୋସ୍ଥମାସ୍‌ର ଅନୁଚର ପୁଣି ବିଶ୍ୱସ୍ତ । ତା'ର ଗୋଟିଏ ପୋଷାକ ମୋତେ ଦେଇପାରିବ ?

-ନିଶ୍ଚୟ ପାରିବି । ପିସାନିଓ କହେ ।

- 'ତେବେ ବର୍ତ୍ତମାନ ଆଣିଦିଅ' କ୍ଲୋଟେନ୍ ଆଦେଶ ଦିଏ ।

ପିସାନିଓ ତା'ର ଉଦ୍ଦେଶ୍ୟ ବୁଝିପାରେ । ଦୁରାତ୍ମା ପୋସ୍ଥମାସ୍ ବେଶରେ ମିଲ୍‌ଫୋର୍ଡ଼ ଅରଣ୍ୟକୁ ଯିବାକୁ ଚାହେଁ । ତା'ର ଧାରଣା, ଦୂରରୁ ତାକୁ ପୋସ୍ଥମାସ୍ ଭାବି ରାଜକୁମାରୀ ନିଶ୍ଚୟ ତା' ପାଖକୁ ଚାଲିଆସିବେ । ରାଜକୁମାରୀ ତ ଏବେ ମଝି ସମୁଦ୍ରରେ । ପୋସ୍ଥମାସ୍‌ର ପୁରୁଣା ପୋଷାକ ପିନ୍ଧି କ୍ଲୋଟେନ୍ ଏବେ ସୁଆଙ୍ଗ କରୁଥାଉ, ସେ ପୋଷାକ ଆଣି ଦେଇ ଦିଏ ।

ସେଇ ପୋଷାକ ପିନ୍ଧି କ୍ଲୋଟେନ୍ ମିଲଫୋର୍ଡ଼ ଅରଣ୍ୟକୁ ଯାତ୍ରା କରେ । କିନ୍ତୁ ତା'ର ଉଦ୍ଦେଶ୍ୟ ସଫଳ ହୁଏ ନାହିଁ । ଦୁହିଁଙ୍କ ଭିତରୁ ସେ କାହାରିକୁ ପାଏ ନାହିଁ । ବେଲାରିୟସ୍ ପରିବାର ସହ ଅବଶ୍ୟ ଦେଖା ହୁଏ । ଉଦ୍ଧତ କ୍ଲୋଟେନ୍ ସେମାନଙ୍କ ସହିତ ମାଲିକାନା ସ୍ୱରରେ କଥା କହିବାକୁ ଆରମ୍ଭ କରେ । ବେଲାରିୟସ୍‌ଙ୍କ ସହିତ ତା'ର ଭୃତ୍ୟସୁଲଭ ବ୍ୟବହାରରେ ଅତିଷ୍ଠ ହୋଇ ଦୁଇ ଭାଇ ପ୍ରତିବାଦ କରନ୍ତି । ଅପମାନିତ କ୍ଲୋଟେନ୍ ଚିତ୍କାର କରି କହେ—ଜାଣୁ, ମୁଁ କିଏ ?

ଏଥର ପଲିଡୋର ମଧ ତତୋଽଧିକ ଉଚ୍ଚସ୍ୱରରେ ଚିତ୍କାର କରି କହେ- ତମେ କୋଉ ମହାପୁରୁଷ ?

- ମୁଁ କିଏ ଜାଣିଲେ ମୁଣ୍ଡ ଘୁରିଯିବ ବୁଝିଲୁ ?

ଏଥର ବ୍ୟଙ୍ଗମିଶ୍ରିତ କଣ୍ଠରେ କଡ଼ୱାଲ କହେ, ତା'ହେଲେ ଶୁଣାଯାଉ, ପ୍ରକୃତରେ ତମେ କିଏ ?

- ମୁଁ ହେଉଛି, ଏ ରାଜ୍ୟର ରାଣୀଙ୍କର ଏକମାତ୍ର ପୁତ୍ର; କ୍ଲୋଟେନ୍ ଗର୍ବର ସହିତ ଘୋଷଣା କରେ ।

ରାଣୀଙ୍କ ପୁଅ ! ଶୁଣି ବେଲାରିୟସ୍ ଚମକି ପଡ଼ନ୍ତି । ରାଜା ତେବେ କ'ଣ ତାଙ୍କର ଏହି ଗୁପ୍ତବାସର ସନ୍ଧାନ ପାଇ ଯାଇଛନ୍ତି ? ତାଙ୍କୁ ଧରିବା ପାଇଁ ଲୋକ ପଠାଇଛନ୍ତି ! ଏ ଲୋକଟା ସହିତ କେତେ ସୈନ୍ୟସାମନ୍ତ ଅଛନ୍ତି ତାହା ଜାଣିବା ପାଇଁ ବେଲାରିୟସ୍ ପାହାଡ଼ ଉପରକୁ ଉଠିଯାଆନ୍ତି । କଡ଼ୱାଲ୍ ତାଙ୍କୁ ଏକୁଟିଆ ଯିବାକୁ ନ ଦେଇ ତାଙ୍କୁ ଅନୁସରଣ କରେ ।

ରହିଯାଆନ୍ତି ପଲିଡୋର ଆଉ କ୍ଲୋଟେନ୍ । ଯୁକ୍ତିତର୍କ କ୍ରମେ ତୁମୂଳ ଆକାର ଧାରଣ କରେ । କ୍ରମେ ଦୁହେଁ ତରବାରି ବାହାର କରନ୍ତି । ଦୁହେଁ ଦୁଇଜଣଙ୍କୁ ଲକ୍ଷ୍ୟ କରି ଡେଇଁ ପଡ଼ନ୍ତି । ତେବେ ଯୁଦ୍ଧ ବେଶୀ କ୍ଷଣସ୍ଥାୟୀ ହୁଏ ନାହିଁ । ଅଳ୍ପ ସମୟ ଭିତରେ ପଲିଡୋରର ତରବାରି-ଆଘାତରେ କ୍ଲୋଟେନ୍ ଦେହରୁ ମୁଣ୍ଡଟା ଛିଣ୍ଡି ତଳେ ପଡ଼େ । ଗୋଟାଏ ପଦାଘାତରେ ପଲିଡୋର ତାକୁ ଅଦୂରବର୍ତ୍ତୀ ନଦୀଗର୍ଭକୁ ନିକ୍ଷେପ କରେ । ଜଳସ୍ରୋତରେ ପଡ଼ି ତାହା ଭାସିଯାଏ ଦୂରକୁ ।

ମୁଣ୍ଡହୀନ ଦେହଟା ସେଇଠି ପଡ଼ିରହେ ।

ଗୋଟାଏ ଦୁରାତ୍ମାର ଜୀବନ ନାଟକର ପରିସମାପ୍ତି ଘଟେ ।

॥ ୮ ॥

ଧୀରେ ଧୀରେ ଆଇମୋଜେନ୍ ଆଖି ଖୋଲି ଅନାଏ । ଔଷଧର ପ୍ରଭାବ କଟିଆସୁଥାଏ ।

ଡାକ୍ତର ପାଖରୁ ରାଣୀ ବିଷ ହିସାବରେ ଯେଉଁ ପଦାର୍ଥଟି ସଂଗ୍ରହ କରିଥିଲେ, ତା'ର ସେବନରେ ଶରୀରରେ ମୃତ୍ୟୁର ଲକ୍ଷଣ ପ୍ରକାଶ ପାଏ ଠିକ୍, ତେବେ ମୃତ୍ୟୁ ହୁଏ ନାହିଁ । ଡାକ୍ତର କର୍ଣ୍ଣେଲିୟାସ୍ ରାଣୀଙ୍କ ପ୍ରକୃତି ଜାଣିଥିଲେ । ସ୍ୱାର୍ଥ ସିଦ୍ଧିପାଇଁ ରାଣୀ ଯେ ନରହତ୍ୟା କରିପାରନ୍ତି, ଏଥିରେ ତାଙ୍କର ସନ୍ଦେହ ନ ଥିଲା । ତେଣୁ ସେ ତାଙ୍କୁ ପ୍ରାଣଘାତକ ଔଷଧ ନ ଦେଇ ଏହିଭଳି ଗୋଟିଏ ଔଷଧ ଦେଇଥିଲେ ।

ଆଇମୋଜେନ୍ ତେଣୁ ମରେ ନାହିଁ । ଧୀରେ ଧୀରେ ସୁସ୍ଥ ହୋଇ ଉଠିବସେ, ଦେହ ଉପରୁ ଫୁଲ ଆଉ ପତ୍ରର ଆବରଣକୁ ହଟାଇଦିଏ । ଚାରିଆଡ଼କୁ ଅନାଏ ।

ଭାବେ-ସେମାନେ କାହାନ୍ତି ? ସେଇ ସଦାଶୟ ବୃଦ୍ଧ, ଆଉ ତାଙ୍କ ଦୁଇ ତରୁଣ ପୁତ୍ର ? ଯେତେଦୂର ମନେ ପଡୁଛି, ଔଷଧ ଖାଇ ସେତ ଗୁହା ଭିତରେ ଘୁମାଇ ପଡ଼ିଥିଲା । ତାକୁ ଏଠାକୁ କିଏ ଆଣିଲା ? ଦେହ ଉପରେ ଏତେ ଫୁଲପତ୍ର ବା କାହିଁକି ଢଙ୍କାଗଲା ?

ଏପର୍ଯ୍ୟନ୍ତ ଯେଉଁସବୁ ଘଟଣା ଘଟିଯାଇଛି ବୋଲି ମୁଁ ଭାବୁଛି, ସେସବୁ କ'ଣ ତେବେ ପ୍ରକୃତରେ ଘଟିଛି ନା ମୁଁ ସ୍ୱପ୍ନ ଦେଖୁଥିଲି ? ସେଇ ସଦାଶୟ-ବୃଦ୍ଧ-ତାଙ୍କର ଦୁଇ ତରୁଣ ପୁତ୍ର, ସେଇ ଗୁମ୍ଫା...ସ୍ୱପ୍ନ କ'ଣ ଏତେ ଜୀବନ୍ତ ହୁଏ ?

ଗୁହାକୁ ଯିବାର ବାଟ ସେ ଖୋଜି ପାଏ ନାହିଁ, ଗୁହାବାସୀମାନଙ୍କ ସହିତ ଭେଟ ମଧ ହୁଏ ନାହିଁ । ତେଣୁ ସେ ସିଦ୍ଧାନ୍ତ କରିନିଏ ଯେ, ଯାହା ଘଟିଛି ବୋଲି ସେ ଭାବୁଛି, ସେ ସବୁ ସ୍ୱପ୍ନ । ତେବେ ଏଠି ଏ ଫୁଲପତ୍ର ତଳେ ତାକୁ ଆଣି କିଏ ଶୁଆଇଲା ? ଏତ ଆଉ ସ୍ୱପ୍ନ ନୁହେଁ । ରହସ୍ୟ ରହସ୍ୟରେ ହିଁ ରହିଯାଏ । ସେ ଆଉ ଚିନ୍ତା କରିପାରେ ନାହିଁ । ବନ୍ଦର ଖୋଜିବା ତା' ଆଗରେ ବଡ଼ ପ୍ରଶ୍ନ ହୋଇ ଦେଖାଦିଏ ।

ଯାତ୍ରା ଆରମ୍ଭ କରିବା ପୂର୍ବରୁ ପୁଣି ଏକ ଚମକ! ଆଗରେ ତା'ର ଏକ ମୁଣ୍ଡହୀନ ଦେହ । ଏ କ'ଣ ? ପୋଷାକଟା ତା'ର ଚିହ୍ନା ଚିହ୍ନା ଲାଗୁଛି କାହିଁକି ? ଏତ ତା'ର ସ୍ୱାମୀ ପୋସ୍ଥମାସ୍‌ର ପୋଷାକ । ଜୀବନ ବିପନ୍ନ କରି ସ୍ୱାମୀ ତା'ର ତେବେ ପ୍ରକୃତରେ ତାକୁ ଖୋଜିବାକୁ ଆସିଥିଲେ! ଦେଖା କରିବାକୁ ଆସି ଏଭଳି ଜୀବନ ଦେଲେ!

ଆଇମୋଜେନ୍ କାନ୍ଦିବାକୁ ଆରମ୍ଭ କରେ । ମୁଣ୍ଡହୀନ ଦେହ ଉପରେ ଲୋଟିପଡ଼େ ।

ଇତିମଧ୍ୟରେ ଫ୍ରାନ୍ସରୁ କେୟାସ୍‌ଙ୍କ ନେତୃତ୍ୱରେ ରୋମୀୟ ବାହିନୀ ମିଲ୍‌ଫୋର୍ଡ଼ ପହଞ୍ଚି ଯାଇଥାଏ । ସେନାପତି କେୟାସ୍ ଦଳେ ସୈନ୍ୟ ନେଇ ଅରଣ୍ୟାକୀର୍ଣ୍ଣ ପାର୍ବତ୍ୟ ଅଞ୍ଚଳରେ

ପ୍ରବେଶ କରିଥାଆନ୍ତି । ରୋମ୍‌ର ଆଗୁଆ ବାହିନୀ ନିକଟରେ ଶିବିର ସ୍ଥାପନ କରିଥାଆନ୍ତି । ଆଇମୋଜେନ୍‌ର କରୁଣ ବିଳାପ ସେନାପତିଙ୍କ କାନରେ ପଡ଼େ । ଏ ନିର୍ଜନ ଅରଣ୍ୟରେ ଏଭଳି କାନ୍ଦୁଛି କିଏ ? କେୟାସ୍ ଶବ୍ଦ ଲକ୍ଷ୍ୟ କରି ଆଗେଇ ଆସନ୍ତି । ଆସି ଦେଖନ୍ତି, ଏକ ମୁଣ୍ଡହୀନ ଦେହ ଉପରେ ଲୋଟିପଡ଼ି ଏକ ତରୁଣ କାନ୍ଦିବାରେ ଲାଗିଛି ।

ସେନାପତି ତା'ର ପରିଚୟ ଆଉ କାନ୍ଦିବାର କାରଣ ପଚାରନ୍ତି ।

ଅଶ୍ରୁ ସମ୍ବରଣ କରି ଆଇମୋଜେନ୍ କହେ, ମୋର ନାମ ଫାଇଡେଲ୍ । ନିହତ ବ୍ୟକ୍ତି ମୋର ପ୍ରଭୁ. ତାଙ୍କରି ଶୋକରେ ମୁଁ କାନ୍ଦୁଛି ।

କେୟାସ୍ ଭାବନ୍ତି - ମୃତ ବ୍ୟକ୍ତି ନିଶ୍ଚିତ ସମ୍ଭ୍ରାନ୍ତ ବଂଶୀୟ । ଏଇ ସୁନ୍ଦର ତରୁଣ ତାଙ୍କର ବ୍ୟକ୍ତିଗତ ପରିଚାରକ । ସେ ପଚାରନ୍ତି - ଏହାଙ୍କର ମୃତ୍ୟୁ ହେଲା କେମିତି ?

-ଦଳେ ଡକାୟତ ଆମ ଉପରେ ଚଢ଼ାଉ କରନ୍ତି । ସେମାନଙ୍କ ହାତରେ ମୋର ପ୍ରଭୁଙ୍କର ମୃତ୍ୟୁ ହୁଏ । ଫାଇଡେଲର ପ୍ରଭୁଭକ୍ତି ଦେଖି କେୟାସ୍ ଖୁସି ହୁଅନ୍ତି । ମୃତ ପ୍ରଭୁଙ୍କ ପାଇଁ ଏଭଳି ଭାବରେ କାନ୍ଦେ ଯେଉଁ ପରିଚାରକ ତା'ଭଳି ସେବକ ପାଇବା ପ୍ରକୃତରେ ଭାଗ୍ୟର କଥା । ଆଇମୋଜେନ୍‌କୁ ଲକ୍ଷ୍ୟ କରି ସେ କହନ୍ତି-ତମେ ମୋ ସାଙ୍ଗରେ ଯିବ ? ମୋ ପାଖରେ କାମ କରିବ ?

ଆଇମୋଜେନ୍ ରାଜି ହୁଏ । କ'ଣ ବା କରିବ ? ରୋମ୍ ଯିବାର ଆଉ ପ୍ରୟୋଜନ ନାହିଁ । ଯାହା ପାଖକୁ ଯାଇଥାନ୍ତା ତାଙ୍କର ପରିଣତି ତ ଏଇ ଆଖି ଆଗରେ ଦେଖୁଛି । ସେ କହେ- ମୁଁ ଆପଣଙ୍କ ସହିତ ଯିବାକୁ ରାଜି ଅଛି । ତେବେ ଯିବାଆଗରୁ ମୋତେ ଗୋଟାଏ କାମ ଶେଷ କରିବାକୁ ହେବ । ସେଥିପାଇଁ ଆପଣଙ୍କ ସାହାଯ୍ୟ ଦରକାର ।

-କାମଟା କ'ଣ ? କେୟାସ୍ ପ୍ରଶ୍ନ କରନ୍ତି ।

-ଏଇ ମୃତ ଦେହକୁ ପ୍ରଥାନୁସାରେ କବର ଦେବାକୁ ହେବ ।

କେୟାସ୍ କହନ୍ତି- ନିଶ୍ଚୟ ଏ କାମରେ ମୁଁ ତମକୁ ସାହାଯ୍ୟ କରିବି । କବର ଦେବା ଶେଷ ହୋଇଯାଏ । ଅଶ୍ରୁପୂର୍ଣ୍ଣ ନୟନରେ ଆଇମୋଜେନ୍ ସ୍ୱାମୀଙ୍କୁ ବିଦାୟ ଦେଇ କେୟାସ୍‌ଙ୍କ ସହିତ ରୋମୀୟ ଶିବିର ଆଡ଼େ ଯାତ୍ରା କରେ ।

॥ ୯ ॥

ରୋମୀୟବାହିନୀ ସମୁଦ୍ର ପାରି ହୋଇ ମିଲ୍‌ଫୋର୍ଡ଼ ପହଁଚି ଯାଇଥିବାର ସମ୍ବାଦ ସିମ୍ବେଲିନ୍‌ଙ୍କ ପାଖରେ ପହଞ୍ଚେ । ବାହିନୀ ଝଡ଼ବେଗରେ ରାଜଧାନୀ ଆଡ଼େ ଆଗେଇ ଆସୁଥିବାର ମଧ ସେ ଶୁଣନ୍ତି । ନେତୃତ୍ୱ ନେଇଛନ୍ତି ବହୁ ଯୁଦ୍ଧବିଜୟୀ କେୟାସ୍ । ରାଜାଙ୍କର ବୟସ

ହୋଇଛି । ଯୁଦ୍ଧ ପରିଚାଳନା କରିବା ପାଇଁ ଉପଯୁକ୍ତ ସନ୍ତାନ ତାଙ୍କର ନାହିଁ । ରାଣୀ ଆଉ କ୍ଲୋଟେନ୍‌ର ପରାମର୍ଶରେ ସେ ନିଜେ ଏଇ ଯୁଦ୍ଧକୁ ନିମନ୍ତ୍ରଣ କରିଛନ୍ତି ।

କ୍ଲୋଟେନ୍‌ର ଶକ୍ତି ଉପରେ ତାଙ୍କର ବହୁ ଭରସା ଥିଲା । ମାତ୍ର ଏଇ ସଂକଟ ସମୟରେ ସେ କୁଆଡ଼େ ଅଦୃଶ୍ୟ ହୋଇଯାଇଛି । ତା' ଉପରେ ପୁଣି ଝିଅ ପାଇଁ ଦୁଶ୍ଚିନ୍ତା । ସେ ମଧ ଦେଖାଯାଉ ନାହିଁ । ଶୁଣାଯାଉଛି, ସେ କୁଆଡ଼େ ତା'ର ସ୍ୱାମୀ ସହିତ ମିଳିତ ହେବା ପାଇଁ ଚାଲିଯାଇଛି । ପୋସ୍ଥମାସ୍ ତ ରୋମ୍‌ରେ । ଝିଅଟା ଏକାକୀ ସେଇ ଦୂର ଦେଶକୁ ଯିବ ! ଯାଇପାରିବ ! ବିଶେଷକରି ଏଇ ଆସନ୍ନ ଯୁଦ୍ଧର ଘନଘଟା ଭିତରେ ତାହା ସମ୍ଭବ ହେବ କିପରି ?

ଏଥିପାଇଁ ଅବଶ୍ୟ ସେ ନିଜେ ଦାୟୀ । ସେଇ ପୋସ୍ଥମାସ୍‌କୁ ନିର୍ବାସନ ଦଣ୍ଡ ଦେଇଛନ୍ତି । ହୁଏତ ରାଗିଯାଇ ସେ ଯାହା କରିବା କଥା ନୁହେଁ ତା' କରି ପକାଇଛନ୍ତି । କିନ୍ତୁ ଝିଅ ବା ବଂଶମର୍ଯ୍ୟାଦା ରଖିଲା କେଉଁଠି ?

ରୋମୀୟ ବାହିନୀକୁ ବାଧା ଦେବା ପାଇଁ ରାଜା ନିଜେ ସୈନ୍ୟସାମନ୍ତ ନେଇ ଯୁଦ୍ଧଯାତ୍ରା କରନ୍ତି । ବ୍ରିଟେନ୍ ଆଉ ରୋମୀୟ ବାହିନୀ ମୁହାଁମୁହିଁ ହୋଇଯାଆନ୍ତି । ଆରମ୍ଭ ହୁଏ ରକ୍ତକ୍ଷୟୀ ସଂଗ୍ରାମ । କୁଆଡୁ ଜଣେ ବୃଦ୍ଧ ଆଉ ଦୁଇଜଣ ତରୁଣ ଆସି ରାଜାଙ୍କ ପକ୍ଷରୁ ରୋମୀୟମାନଙ୍କ ବିରୋଧରେ ଘୋର ଯୁଦ୍ଧ ଆରମ୍ଭ କରନ୍ତି । ରାଜାଙ୍କ ପକ୍ଷରେ ପୁଣି ଯୋଗ ଦିଏ ଜଣେ କୃଷକ-ଯୁବକ ।

ରୋମୀୟ ସୈନ୍ୟବାହିନୀରେ ମଧ ବହୁ ସମ୍ଭ୍ରାନ୍ତ ଯୁବକ ରହିଛନ୍ତି । ଅଛି ପୁଣି କୁଚକ୍ରୀ ଆୟାକିମୋ । ପୋସ୍ଥମାସ୍ ରୋମୀୟ ବାହିନୀ ସହିତ ଆସିଥିଲା । ତେବେ ସ୍ୱଦେଶ ବିରୋଧରେ ଯୁଦ୍ଧ କରିବାର ଇଚ୍ଛା ତା'ର ଆଦୌ ନ ଥିଲା । ସୁଯୋଗ ଦେଖି ସେଦିନ ଛଦ୍ମବେଶରେ ରୋମୀୟ ବାହିନୀରୁ ପଳାଇଯାଏ ।

ତୀବ୍ର ଅନୁଶୋଚନାରେ ତା'ର ମନ ଜଳୁଥାଏ । ଆଇମୋଜେନ୍ ତା'ରି ନିର୍ଦ୍ଦେଶରେ ନିହତ ହୋଇଛି । ତାକୁ ସେ ପ୍ରାଣରୁ ବଳି ଭଲ ପାଇଥିଲା । ସେ ନାହିଁ ଯେତେବେଳେ ତା'ର ନିଜର ବା ବଞ୍ଚିରହିବାର ପ୍ରୟୋଜନ କ'ଣ ? ସେ ଦେଶର ସ୍ୱାଧୀନତା ରକ୍ଷା କରିବା ପାଇଁ ରୋମୀୟମାନଙ୍କ ସହିତ ଯୁଦ୍ଧ କରିବ । ଯୁଦ୍ଧରେ ମୃତ୍ୟୁ ହେଲା ତ ଭଲ । ନ ହେଲେ ସେ ଅନ୍ୟ ଉପାୟରେ ମୃତ୍ୟୁବରଣ କରିବ ।

ରୋମ୍-ବ୍ରିଟେନ୍ ଯୁଦ୍ଧରେ ବିଜୟ ଲକ୍ଷ୍ମୀ ବୋଧହୁଏ ଶେଷରେ ରୋମ୍ ଉପରେ ସଦୟ ହୁଅନ୍ତି । ରୋମୀୟ ସୈନ୍ୟମାନେ ଦ୍ରୁତଗତିରେ ଆଗେଇ ଆସନ୍ତି ଏବଂ ବ୍ରିଟେନ୍‌ର ସୈନ୍ୟବାହିନୀ

ପଛକୁ ହଟିବାରେ ଲାଗନ୍ତି । ଶେଷରେ ରାଜା ସିମ୍ବେଲିନ୍‌ ବନ୍ଦୀ ହୁଅନ୍ତି । ରୋମୀୟ ସୈନ୍ୟମାନେ ବିଜୟ ଉଲ୍ଲାସରେ ମାତିଉଠନ୍ତି । ସେଇ ମୁହୂର୍ତ୍ତରେ ସେଠାକୁ ଛୁଟିଆସନ୍ତି ଜଣେ ବୃଦ୍ଧ ଆଉ ତାଙ୍କ ସହିତ ଦୁଇ ତରୁଣ ଯୋଦ୍ଧା । କୃଷକ ଯୁବକ ମଧ ଆସି ଏମାନଙ୍କ ସହିତ ଯୋଗ ଦିଏ ।

ପ୍ରାଣର ମାୟା ତ୍ୟାଗ କରି ଏଇ ଚାରିଜଣ ରୋମୀୟ ସୈନ୍ୟମାନଙ୍କୁ ଆକ୍ରମଣ କରନ୍ତି । ଯେମିତି ହେଲେ ସେମାନେ ବନ୍ଦୀ ରାଜାଙ୍କୁ ଉଦ୍ଧାର କରିବେ ।

ଶେଷ ପର୍ଯ୍ୟନ୍ତ ସେମାନେ ସଫଳ ହୋଇଯାଆନ୍ତି । ରାଜା ମୁକ୍ତ । ଏଇ ଚାରିଜଣ ଯୋଦ୍ଧାଙ୍କର ବୀରତ୍ୱ ଆଉ ରଣକୌଶଳ ଦେଖି ବ୍ରିଟେନ୍‌ ବାହିନୀର ହୃତସାହସ ପୁଣି ଫେରି ଆସେ । ସେମାନେ ରୋମୀୟ ବାହିନୀ ବିରୋଧରେ ଏକଜୁଟ୍‌ ହୋଇଯାଆନ୍ତି ।

ଯୁଦ୍ଧର ମୋଡ଼ ବଦଳିଯାଏ । ସିମ୍ବେଲିନ୍‌ଙ୍କ ସୈନ୍ୟବାହିନୀର ପ୍ରଚଣ୍ଡ ଆକ୍ରମଣରେ ଏଥର ରୋମୀୟବାହିନୀ ପଛକୁ ହଟିବାରେ ଲାଗନ୍ତି । ଗୋଟାଏ ସମୟରେ ରାଜାଙ୍କର ମନେହୁଏ, ଏଇ ବୃଦ୍ଧ ସୈନିକଙ୍କର ରଣକୌଶଳ ସହିତ ସେ ଯେମିତି ପୂର୍ବରୁ ପରିଚିତ ! ଏଭଳି ସୁଦକ୍ଷ ଆଉ କୌଶଳୀ ଯୋଦ୍ଧା ତ ସଚରାଚର ଦେଖାଯାଆନ୍ତି ନାହିଁ । ଏହାଙ୍କର ଯୁଦ୍ଧ ସେ ନିଶ୍ଚୟ ପୂର୍ବରୁ ଦେଖିଛନ୍ତି । କିନ୍ତୁ କେଉଁଠି ? ଏହାଙ୍କୁ ତ ସେ ଚିହ୍ନନ୍ତି ନାହିଁ ।

ତାଙ୍କ ସାଙ୍ଗର ଦୁଇ ତରୁଣ ମଧ ଅସୀମ ସାହସୀ, ସେମାନଙ୍କର ଗତିର କ୍ଷିପ୍ରତା ତଥା ତରବାରି ଚାଳନାର କୌଶଳ ମଧ ଅନନ୍ୟ । ଏକାଥରକେ ସେମାନେ ଏକାଧିକ ରୋମୀୟ ସୈନ୍ୟଙ୍କୁ ଆକ୍ରମଣ କରୁଛନ୍ତି-ଭୂପତିତ ମଧ କରୁଛନ୍ତି । କୃଷକ ଯୁବକଟି ମଧ ଯୁଦ୍ଧ କରୁଛି ତେଜସ୍ୱୀ ସିଂହ ଭଳି । ତା'ର ବୀରତ୍ୱ ଆଉ ତେଜ ଦେଖି ରାଜାଙ୍କର ମନେ ପଡୁଛି, ଅତୀତର ଏକ ବିଖ୍ୟାତ ସେନାପତିଙ୍କ କଥା । ଲିଓନେଟାସ-ସେନାପତି । ଲିଓନେଟାସ ହିଁ ଏମିତି ଡେଇଁ ପଡୁଥିଲେ ଶତ୍ରୁସୈନ୍ୟ ଉପରେ ।

ସେନାପତି କେୟାସ୍‌ ବନ୍ଦୀ ହେଲେ । ତା' ସହିତ ବନ୍ଦୀ ହେଲା ଫାଇଡେଲ୍‌ ବେଶୀ ଆଇମୋଜେନ୍‌ । ବହୁ ରୋମାନ୍‌ ଯୁବକ ମଧ ବନ୍ଦୀ ହେଲେ । ସେଥିରେ ଥିଲା ସେଇ କୁଚକ୍ରୀ ଆୟାକିମୋ ।

ଯୁଦ୍ଧ ଶେଷ ହୋଇଗଲା ।

॥ ୧୦ ॥

ବ୍ରିଟେନ୍‌ର ରାଜସଭା । ସିଂହାସନରେ ବସିଛନ୍ତି ରାଜା ସିମ୍ବେଲିନ୍‌ । ବନ୍ଦୀମାନଙ୍କୁ ତାଙ୍କ ସମ୍ମୁଖରେ ଉପସ୍ଥିତ କରାଗଲା । ଆଗରେ ଅଛନ୍ତି ସେନାପତି କେୟାସ୍‌ । ପରାଜୟର

ଗ୍ଲାନିରେ ମୁହଁଟି ଝାଉଁଳି ପଡ଼ିଛି ସତ୍ୟ, ତେବେ ତାଙ୍କ ଗତିରେ ଫୁଟି ଉଠୁଛି ଆଭିଜାତ୍ୟ, ବାଚ୍‌ନ ଭଙ୍ଗୀରେ ରହିଛି ମର୍ଯ୍ୟାଦାବୋଧ । ରାଜାଙ୍କ ଆଡ଼କୁ ନିର୍ଭୀକ ଦୃଷ୍ଟିରେ ଅନାଇ ସେ କହନ୍ତି - ଶୁଣିଛି, ମୁକ୍ତି ପଣର ବିନିମୟରେ ଆପଣମାନେ ବନ୍ଦୀମାନଙ୍କୁ ଛାଡ଼ିଦିଅନ୍ତି ନାହିଁ । ସେମାନଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରନ୍ତି । ମୁଁ ଜଣେ ରୋମାନ୍ । ଆପଣଙ୍କ ଠାରୁ ମୁଁ ପ୍ରାଣ ଭିକ୍ଷା କରୁ ନାହିଁ । ତେବେ ଗୋଟିଏ ଅନୁରୋଧ କରୁଛି । ମୋର ଏଇ ଯୁବ-ପରିଚାରକଟି ରୋମାନ୍ ନୁହେଁ, ବ୍ରିଟେନ୍‌ର ନାଗରିକ । ଏହା ଭଳି କର୍ତ୍ତବ୍ୟନିଷ୍ଠ, ଅଧ୍ୟବସାୟୀ ଏବଂ ପରିଶ୍ରମୀ ସେବକ ପାଇବା ବହୁ ଭାଗ୍ୟର କଥା । ସେ ବ୍ରିଟେନ୍ ପ୍ରତି କୌଣସି ଅନ୍ୟାୟ କରି ନାହିଁ । ତା'ର ଏକମାତ୍ର ଅପରାଧ ଏଇ ଯେ, ସେ ଜଣେ ରୋମାନ୍ ସେନାପତିର ସେବା କରିଛି । ମୋର ଅନୁରୋଧ, ଆପଣ ମୁକ୍ତି ପଣ ନେଇ ତାକୁ ଛାଡ଼ି ଦିଅନ୍ତୁ । ସିମ୍‌ବେଲିନ୍‌ଙ୍କ କୌତୂହଳୀ ଦୃଷ୍ଟି ଫାଇଡେଲ୍ ଉପରେ ପଡ଼େ । ଛଦ୍ମବେଶରେ ଥିବାରୁ ନିଜ ଝିଅକୁ ସେ ଚିହ୍ନିପାରନ୍ତି ନାହିଁ । ତେବେ ରକ୍ତର ସମ୍ପର୍କତ ! ଅଜ୍ଞାତସାରରେ ଏଇ ଯୁବକଟି ପ୍ରତି ତାଙ୍କର ମମତା ଜାତ ହୁଏ । ସେ କହନ୍ତି "ମୁଁ ଏହାକୁ ପୂର୍ବରୁ ଦେଖିଲାଭଳି ଲାଗୁଛି । ବଡ଼ ପରିଚିତ ଭଳି ଲାଗୁଛି ସେ । ବତ୍ସ, ମୁଁ ତତେ ମୁକ୍ତି ଦେଉଛି । ମୁକ୍ତି ପଣ ଦରକାର ନାହିଁ । ତୋର ଯଦି କୌଣସି ପ୍ରାର୍ଥନା ଥାଏ, ତେବେ ପ୍ରକାଶ କରିପାରୁ । ମୁଁ ଅବଶ୍ୟ ପୂରଣ କରିବି । ଯଦି ତୁ କୌଣସି ଯୁଦ୍ଧବନ୍ଦୀର ମୁକ୍ତି ପ୍ରାର୍ଥନା କରୁ, ତେବେ ବିନା ମୁକ୍ତିପଣରେ ମୁଁ ତାକୁ ବି ଛାଡ଼ିଦେବି" । ଆଇମୋଜେନ୍ କହେ ଆପଣ ମହାନୁଭବ । ମୋର କୃତଜ୍ଞତା ସ୍ୱୀକାର କରନ୍ତୁ । ରାଜାଙ୍କ ପାଖରୁ ଫାଇଡେଲ୍ କ'ଣ ଚାହିଁବ, ତାହା ଶୁଣିବା ପାଇଁ ସମସ୍ତେ ମୁକ୍ତି ଅପେକ୍ଷା କରିଥାଆନ୍ତି । କେୟାସ୍ କହନ୍ତି, ବତ୍ସ, ମୁଁ ଜାଣେ ତୁ ରାଜାଙ୍କ ପାଖରୁ ମୋର ମୁକ୍ତି ପ୍ରାର୍ଥନା କରିବୁ ।

ଆଇମୋଜେନ୍ ଜଣାଏ- ତା'କରିପାରିଲେ ମୁଁ ଖୁବ୍ ଖୁସି ହୁଅନ୍ତି । ମୋର ପ୍ରାର୍ଥନା କିନ୍ତୁ ତାହା ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ ।

ଫାଇଡେଲ୍ ପାଖରେ କୃତଜ୍ଞତା ବୋଧର ଅଭାବ ଦେଖି କେୟାସ୍ ବ୍ୟଥିତ ହୁଅନ୍ତି । ତା' କଥାର ଭଙ୍ଗୀରେ ସେ ଆଶ୍ଚର୍ଯ୍ୟ ମଧ ହୋଇଯାଆନ୍ତି । ଯାହାକୁ ସେ ଏପର୍ଯ୍ୟନ୍ତ ଏକାନ୍ତ ଅନୁଗତ ବୋଲି ଭାବିଥିଲେ, ସେ ଆଜି ଏ କି ଧରଣର କଥା କହୁଛି !

ଆୟାକିମୋ ଆଡ଼କୁ ତୀବ୍ର ଦୃଷ୍ଟିରେ ଅନାଇ ଆଇମୋଜେନ୍ କହେ- ମହାରାଜ, ଏଇ ଲୋକଟିର ଆଙ୍ଗୁଠିରେ ଏ ମୁଦିଟା କୋଉଠୁ ଆସିଲା, ମୁଁ ଜାଣିବାକୁ ଚାହେଁ । କେମିତି ସେ ଏଇଟିକୁ ପାଇଲା ତାକୁ କହିବାକୁ ହେବ । ଏଇ ମୋର ପ୍ରାର୍ଥନା ।

ସିମ୍‌ବେଲିନ୍ ଆଶ୍ଚର୍ଯ୍ୟ ହେଲେ ମଧ କହନ୍ତି- ତମର ଏଇ ପ୍ରାର୍ଥନା ମୁଁ ପୂରଣ କରିବି ।

ତା' ପରେ ଆୟାକିମୋ ଆଡ଼କୁ ଅନାଇ କହନ୍ତି- 'ତମକୁ ମୁଁ ଚିହ୍ନେ । କିଛି ଦିନ ପୂର୍ବେ ତମେ ମୋ ସଭାକୁ ଆସିଥିଲ । କହ, ଏ ମୁଦି ତମେ କେମିତି ପାଇଲ ? ସତ କଥା କହିବ । ନଚେତ୍ ସତ କଥା ବାହାର କରିବାକୁ, ତମକୁ ଉତ୍ପୀଡ଼ନ ଭୋଗିବାକୁ ହେବ ।' ଆୟାକିମୋ ସତ କଥା କହେ । ଗୋଟି ଗୋଟି କରି ସବୁ କଥା ସ୍ୱୀକାର କରିଯାଏ । ରୋମ୍‌ରେ ପୋସ୍ଥମାସ୍ ସହିତ ତା'ର ଆଳାପ, ବାଜିମାରିବା କୌଶଳରେ ରାଜକୁମାରୀଙ୍କ ଶୟନ କକ୍ଷରେ ପ୍ରବେଶ କରି କଙ୍କଣ ଚୋରି କରିବା,କ୍ଷୁବ୍ଧ ଏବଂ କ୍ରୁଦ୍ଧ ପୋସ୍ଥମାସ୍ ଠାରୁ ମୁଦି ପାଇବା- ସବୁ କଥା କହିଯାଏ ।

ଏ ସବୁ ଶୁଣି ପୋସ୍ଥମାସ୍‌ର ମନର ଅବସ୍ଥା ଯାହା ହୁଏ, ତାହା କହିହେବ ନାହିଁ । ସଭାରେ ସେ ଉପସ୍ଥିତ ଥାଇ ଏ ସବୁ ଶୁଣେ । କୃଷକ ବେଶରେ ସେହିଁ ବ୍ରିଟେନ ରାଜାଙ୍କ ତରଫରୁ ଯୁଦ୍ଧ କରୁଥିଲା । ରାଜାଙ୍କ ପାଖରେ ଆତ୍ମସମର୍ପଣ କରିବାର ଲକ୍ଷ୍ୟରେ ସେ ଏଠାକୁ ଆସିଥାଏ ।

ଦୁଃଖ ଆଉ ଅନୁତାପରେ ତା'ର ମୁହଁରେ ବିଷଣ୍ଣତାର ଛାପ ପଡ଼େ । ଏଭଳି ଗୋଟାଏ ସୟତାନ୍‌ର କଥାରେ ବିଶ୍ୱାସ କରି ସେ ଆଇମୋଜେନ୍ ଭଳି ସତୀ ସାଧ୍ୱୀ ପତ୍ନୀ ଉପରେ ଘୋର ଅବିଚାର କରିଛି । ନିଜକୁ ତା'ର ଧିକ୍କାର କରିବାକୁ ମନ ହୁଏ । ସେ ଉନ୍ମାଦ ଭଳି ଚିତ୍କାର କରିଉଠେ - ଆଇମୋଜେନ୍, ହାୟ ମୋର ସତୀ ସାଧ୍ୱୀ ପତ୍ନୀ - ରାଗରେ ଅନ୍ଧ ହୋଇ ମୁଁ ତମ ପ୍ରତି ଘୋର ଅନ୍ୟାୟ କରିଛି । ଏ ପାପର ଆଉ ପ୍ରାୟଶ୍ଚିତ୍ତ ନାହିଁ । ପୋସ୍ଥମାସ୍ କାନ୍ଦିବାରେ ଲାଗେ ।

ସ୍ୱାମୀକୁ କେବେବି ଏଭଳି ଅସହାୟ ଭାବରେ କାନ୍ଦିବାର ଦେଖି ନାହିଁ ଆଇମୋଜେନ୍ । ତା'ର ଅସହାୟତା, ତା'ର ହା ହା କାର ତାକୁ ଗଭୀର ଭାବରେ ଆଲୋଡ଼ିତ କରେ । ସେ କହିଉଠେ - ମୁଁ...ମୁଁ...ମରି ନାହିଁ ମୋର ସ୍ୱାମୀ - ମୁଁ ହିଁ ତମର ସେଇ ହତଭାଗିନୀ ଆଇମୋଜେନ୍ ।

ପୋସ୍ଥମାସ୍ ଚମକିପଡ଼େ । ତା ପରେ ସେ ପାଗଳଭଳି ଆଇମୋଜେନ୍ ଆଡ଼କୁ ଛୁଟିଯାଏ । ଆଇମୋଜେନ୍ ତେବେ ବଞ୍ଚିଛି ! ଈଶ୍ୱର ତାକୁ କେତେ ବଡ଼ ଆତ୍ମଗ୍ଳାନି ମଧ୍ୟରୁ ଉଦ୍ଧାର କରିଛନ୍ତି । ମହା ଅପରାଧବୋଧରୁ ତ୍ରାଣ କରିଛନ୍ତି !

ଦୁହେଁ ଭୁଲିଯାଆନ୍ତି ଯେ, ସେମାନେ ପ୍ରକାଶ୍ୟ ରାଜସଭାରେ ଅଛନ୍ତି । ଶହ ଶହ ଆଖି ସେମାନଙ୍କ ଆଡ଼କୁ ଅନାଇ ରହିଛନ୍ତି । ଗଭୀର ଆଲିଙ୍ଗନରେ ଆଇମୋଜେନ୍‌କୁ ବାନ୍ଧି ପୋସ୍ଥମାସ୍ କହେ ... ଆଇମୋଜେନ୍ !!

ରାଜା ବିସ୍ମିତ । ଉଲ୍ଲସିତ ବି । ଝିଅ ତାଙ୍କର ବଞ୍ଚିଛି ! ଫେରିଆସିଛି ତାଙ୍କର କୋଳକୁ । ନିର୍ବାସିତ ପୋସ୍‌ଥମାସ୍ ବି ଫେରିଆସିଛି । ଜୀବନକୁ ଭ୍ରୂକ୍ଷେପ ନ କରି ସେ ପୁଣି ଆସିଛି ତା'ର ଜନ୍ମଭୂମିକୁ! ପ୍ରାଣ ଦେଇ ତା'ର ସୁରକ୍ଷା ନିମନ୍ତେ ଲଢ଼ିଛି । ସେ ତାକୁ ପୁଣି ନିର୍ବାସନ ଦଣ୍ଡ ଦେଇଥିଲେ ।

ରାଜସଭା ପରିବର୍ତ୍ତିତ ହୁଏ ଏକ ମହାମିଳନ କ୍ଷେତ୍ରରେ । ସମସ୍ତେ ଆନନ୍ଦରେ ଉଲ୍ଲସିତ । ରାଜା ସେଇ ମୁହୂର୍ତ୍ତରେ ତା'ର ନିର୍ବାସନ ଦଣ୍ଡକୁ ବାତିଲ୍ କରିଦିଅନ୍ତି । ସ୍ୱୀକାର କରି ନିଅନ୍ତି ତାକୁ ଜାମାତା ରୂପରେ ।

ସେଇ ବୃଦ୍ଧ ଆଉ ତାଙ୍କର ଦୁଇ ତରୁଣ ପୁତ୍ର ମଧ କମ୍ ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ । ଯେଉଁ ଫାଇଡେଲ୍‌କୁ ସେମାନେ ମୃତ ବୋଲି ଭାବି ନିଜ ହାତରେ କବର ଦେଇଥିଲେ, ସେ ବଞ୍ଚିଛି ! ସେ ପୁଣି ରାଜାଙ୍କର କନ୍ୟା ! ବୃଦ୍ଧ ଘୋଷଣା କରନ୍ତି, ମହାରାଜ, ମୋର କିଛି କହିବାର ଅଛି ।

ରାଜା ଅନୁମତି ଦିଅନ୍ତି ।

ବୃଦ୍ଧ କିଛି କହିବା ଆଗରୁ ଆଇମୋଜେନ୍ କହେ- ଗୋଟାଏ କଥା ମୁଁ ଏବେବି ବୁଝି ପାରୁ ନାହିଁ । ମିଲ୍‌ଫୋର୍ଡ୍ ଅରଣ୍ୟରେ ମୁଁ ଗୋଟାଏ ମୁଣ୍ଡ ହୀନ ଦେହ ଦେଖିଥିଲି । ମୃତ ଦେହରେ ଥିଲା ମୋ ସ୍ୱାମୀଙ୍କର ପୋଷାକ । ସେଇ ଦେହ କାହାର ?

-ସେ ଦେହ ହେଉଛି ରାଣୀଙ୍କର ପୁତ୍ର କ୍ଲୋଟେନ୍‌ର ।

କ୍ଲୋଟେନ୍‌ର ଦେହ ? ତାକୁ ହତ୍ୟା କଲା କିଏ ? ଉତ୍ତେଜିତ ହୋଇ ରାଜା ପଚାରନ୍ତି ।

- 'ମୁଁ ତାକୁ ହତ୍ୟା କରିଛି' । ବୃଦ୍ଧଙ୍କ ତରୁଣ ସଙ୍ଗୀ ମଧ୍ୟରୁ ଜଣେ କହେ ।

-ତମେ ମୋର ଉପକାର କରିଛ । କିନ୍ତୁ ରାଣୀଙ୍କ ପୁତ୍ରର ହତ୍ୟାକାରୀକୁ ମୁଁ କ୍ଷମା କରିପାରିବି ନାହିଁ । ଯୁବକ, ତମକୁ ଦଣ୍ଡ ଭୋଗିବାକୁ ପଡ଼ିବ ।

ବୃଦ୍ଧ କହନ୍ତି - ମହାରାଜ, ଉତ୍ତେଜିତ ହୁଅନ୍ତୁ ନାହିଁ । ପ୍ରଥମେ ମୋର ବକ୍ତବ୍ୟ ଶୁଣନ୍ତୁ । ତା'ପରେ ଯା ସିଦ୍ଧାନ୍ତ ନେବାର ନେବେ । ମହାରାଜ, ମୁଁ ଆପଣଙ୍କ ନିକଟରେ ଏକ ଅକ୍ଷମଣୀୟ ଅପରାଧ କରିଛି । ଏବେ ମୋତେ ଆପଣ ଚିହ୍ନିପାରୁ ନାହାନ୍ତି । ଭଲ କରି ଲକ୍ଷ୍ୟ କଲେ ନିଶ୍ଚୟ ଚିହ୍ନିବେ । ମୁଁ ବେଲାରିୟାସ୍ । ଏକଦା ମୁଁ ଥିଲି ଆପଣଙ୍କର ଏକାନ୍ତ ବିଶ୍ୱାସର ପାତ୍ର, ଈଶ୍ୱର ଜାଣନ୍ତି, ମୁଁ ଦିନେ ହେଲେ ସେଇ ବିଶ୍ୱାସର ମର୍ଯ୍ୟାଦା ଲଙ୍ଘନ କରି ନାହିଁ । ତେବେ କାନକୁହାମାନଙ୍କ କଥାରେ ଭାସିଯାଇ ଆପଣ ମୋ ଉପରେ ବିରୂପ ହେଲେ । ମୋର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ ହେଲା । ମୁଁ ନିର୍ବାସନ ଦଣ୍ଡ ପାଇଲି ।'

ମୋ ଉପରେ ଅବିଚାର ହୋଇଥିଲା ମହାରାଜ । ପ୍ରତିଶୋଧ ନେବା ନିମନ୍ତେ ମୁଁ ଉନ୍ମାଦ ହୋଇଉଠିଲି । ଧାତ୍ରୀ ୟୁରିଫାଇଲ୍‌କୁ ହାତକରି ମୁଁ ଚୋରିକରି ନେଲି ଦୁଇ ରାଜପୁତ୍ରଙ୍କୁ, ଏଇ ଯେ ଦୁଇ ତରୁଣଙ୍କୁ ମୋ ପାଖରେ ଦେଖୁଛନ୍ତି, ସେମାନେ ହେଉଛନ୍ତି ସେଦିନର ସେଇ ଶିଶୁ । ମୁଁ ସେମାନଙ୍କର ପିତା ନୁହେଁ । ସେମାନେ ଆପଣଙ୍କର ସନ୍ତାନ । ଏମାନଙ୍କର ନାମ ପଲିଡୋର୍‌ ଆଉ କଡ୍‌ୱାଲ ନୁହେଁ, ପ୍ରକୃତ ନାମ ହେଉଛି ଗିଡେରିୟାସ୍‌ ଏବଂ ଆର୍‌ଭିରେଗାସ୍‌ । ସବୁ କଥା ଖୋଲି କହିଲି । ଯେଉଁ ଦଣ୍ଡ ଦେବେ ମଥା ପାତି ଗ୍ରହଣ କରିନେବି ।

ବେଲାରିୟାସ୍‌ଙ୍କୁ ରାଜକ୍ଷମା ମିଳିଗଲା । ଦୁଇ ସନ୍ତାନକୁ ପାଇ ରାଜା ଖୁସିରେ ଏତେ ଆତ୍ମହରା ହୋଇପଡ଼ିଥିଲେ ଯେ, ସେ ବେଲାରିୟାସ୍‌ ପ୍ରତି କୃତଜ୍ଞ ହୋଇ ଉଠିଲେ । ରାଜା ଝିଅଙ୍କୁ ପାଇଛନ୍ତି, ପାଇଛନ୍ତି ପୁଣି ହରାଇଥିବା ଦୁଇ ପୁଅଙ୍କୁ । ନିଜ ଆଖିରେ ଦେଖିଛନ୍ତି ଜାମାତାର ବୀରତ୍ୱ । ଦେଖିଛନ୍ତି ପୁଣି ବେଲାରିୟାସ୍‌, ତାଙ୍କର ଦୁଇ ତରୁଣ ପୁତ୍ର ଏବଂ ଜାମାତା । ଏମାନେ ମିଶି କିଭଳି ତାଙ୍କୁ ବନ୍ଦୀ ଦଶାରୁ ମୁକ୍ତ କରିଛନ୍ତି । ଅନେକ ଦିନ ପରେ ପ୍ରିୟଜନମାନଙ୍କ ସହିତ ତାଙ୍କର ମିଳନ ହୋଇଛି । ଏହିଭଳି ମହାଆନନ୍ଦର ଦିନରେ ସେ କାହାକୁ ଶାସ୍ତି ଦେବେ ? କି ଶାସ୍ତି ବା ଦେବେ ? ବେଲାରିୟାସ୍‌ ଆଡ଼କୁ ଅନାଇ ସେ କହନ୍ତି, ଏବେ ବୁଝୁଛି, ତମ ଉପରେ ମୁଁ ପ୍ରକୃତରେ ଅବିଚାର କରିଥିଲି । ତମେ ମୋତେ କ୍ଷମା କର । ତମର ସମସ୍ତ ସମ୍ପତ୍ତି ମୁଁ ଫେରାଇ ଦେଉଛି ।

ଆଇମୋଜେନ୍‌ର ଅନୁରୋଧରେ ରାଜା ରୋମାନ୍‌ ସେନାପତି ଆଉ ଅନ୍ୟ ବନ୍ଦୀମାନଙ୍କୁ ମଧ ମୁକ୍ତି ଦେଲେ । ସଇତାନ୍‌ ଆୟାକିମୋ ମଧ ଛାଡ଼ ପାଇଗଲା । ମୁହଁ ଶୁଖେଇ ସେ ରାଜସଭାରୁ ବାହାରିଗଲା । କେୟାସ୍‌ଙ୍କ ଉଦ୍ୟମରେ ରୋମ୍‌ ଆଉ ବ୍ରିଟେନ୍‌ ମଧରେ ସମ୍ମାନଜନକ ସର୍ତ୍ତରେ ସନ୍ଧି ହେଲା । ସନ୍ଧି ଦୀର୍ଘସ୍ଥାୟୀ ହୋଇଥିଲା ।

ରାଣୀଙ୍କର ଏତେ ସବୁ ଚକ୍ରାନ୍ତ ପଣ୍ଡ ହୋଇଗଲା । ପୁଅକୁ ହରାଇ ଶୋକ ଆଉ ଦୁଃଖରେ ତାଙ୍କର ମୃତ୍ୟୁ ହୋଇଗଲା ।

ରାଜାଙ୍କର ଏବେ ସୁଖର ଦିନ । ସେବା କରିବାକୁ ପାଖରେ ଅଛନ୍ତି କନ୍ୟା-ଜାମାତା ଆଉ ଆଜ୍ଞାଧୀନ ଦୁଇ ପୁତ୍ର, ସମୟ ପାଣିପରି ବହିଯାଉଛି ।

ରାଜାଙ୍କର ଆନନ୍ଦରେ ପାଠକମାନେ ଆନନ୍ଦିତ ହୁଅନ୍ତୁ ।

# ଆଜ୍ ୟୁ ଲାଇକ୍ ଇଟ୍

॥ ୧ ॥

ସାର୍ ରୋଲାଣ୍ଡ ଡି. ବୟେଜ୍‌ଙ୍କ ସାନପୁଅ ଅର୍ଲାଣ୍ଡୋ ବଗିଚାରେ ବସି ଘରର ପୁରୁଣାଚାକର ଆଡାମ୍ ସହିତ କଥାବାର୍ତ୍ତା ହେଉଥିଲା । ପରିବାରରେ ରହି ସେ ଯେଉଁଭଳି ଉପେକ୍ଷିତ ଜୀବନ କଟାଉଛି, ଆଡାମ୍ ତା'ଭଲଭାବରେ ଜାଣେ । ବଡ଼ଭାଇ ଅଲିଭର୍ ତା'ପ୍ରତି ଆଦୌ ସନ୍ତୁଷ୍ଟ ନୁହେ । ମଝିଆଁଭାଇ ଜ୍ୟାକସ୍ ପ୍ରତି ତାଙ୍କର ଯେତିକି ସୁଦୃଷ୍ଟି ରହିଛି, ଅର୍ଲାଣ୍ଡୋ ଆଡ଼େ ତା'ର କାଣିଚାଏ ବି ନାହିଁ । ଜ୍ୟାକସ୍‌କୁ ଅଲିଭର୍ ବିଶ୍ୱବିଦ୍ୟାଳୟକୁ ପଠାଇଛନ୍ତି । ସେଠି ପଢ଼ାପଢ଼ି କରି ସେ ନିଜର ଭବିଷ୍ୟତ୍ ଗଢୁଛି । ଅଥଚ ସାନଭାଇ ଅର୍ଲାଣ୍ଡୋ ପାଇଁ ତାଙ୍କର କୌଣସି ଚିନ୍ତା ନାହିଁ ।

ଅର୍ଲାଣ୍ଡୋ ଘରେ ଅଛି ତ ଅଛି । ଖାଉଛି ପିଉଛି, ବୁଲୁଛି । ପିଲା ଥିଲାବେଳେ ଅର୍ଲାଣ୍ଡୋ ଏ ସବୁ କଥା ବୁଝୁ ନ ଥିଲା । ଏବେ ତାର ବୟସ ହେଲାଣି । ବଡ଼ଭାଇଙ୍କର ଏଇ ପକ୍ଷପାତ ଦେଖି ତାକୁ କିଛି ଭଲ ଲାଗୁ ନାହିଁ । ସେ ବି ତ ଏ ଘରର ପୁଅ । ମରିବା ପୂର୍ବରୁ ବାପା ତାଙ୍କ ଉଇଲ୍‌ରେ ତା' ପାଇଁ ବି ବେଶ୍ କିଛି ଟଙ୍କାପଇସା ରଖିଯାଇଛନ୍ତି । ହେଲେ ତା ସହିତ ଏଭଳି ଇତର ବ୍ୟବହାର କରାଯାଉଛି କାହିଁକି ?

ଏକଥା ଅର୍ଲାଣ୍ଡୋ କାହାକୁ କହିବ ? ଶିକ୍ଷାର ଅଭାବରେ ତା' ମନର କୋମଳ ପ୍ରବୃତ୍ତିଗୁଡ଼ିକ କିଭଳି ଶୁଖିଯାଉଛି, ଏ ଦୁଃଖ ସେ କାହା ଆଗରେ ବଖାଣିବ ? କେତେଦିନଯାଏ ଆଉ କୂପମଣ୍ଡୂକ ହୋଇ ଏ ଗାଁରେ ପଡ଼ିରହିଥିବ ?

ଏଇସବୁ କଥା ସେ ଆଡାମ୍‌କୁ କହୁଥିଲା । ଅବଶ୍ୟ କହିବାର କିଛି ନ ଥିଲା । ଆଡାମ୍ ସବୁ ଜାଣେ । ପ୍ରତିମୁହୂର୍ତ୍ତ ଅର୍ଲାଣ୍ଡୋ ପାଇଁ ଏଠି କେମିତି ଯନ୍ତ୍ରଣାଦାୟକ ଆଡାମ୍‌କୁ ତାହା ଅଜଣା ନୁହେଁ । ମାତ୍ର ସେ ବା କଣ କରିପାରିବ ? ଘରର ଚାକର ହାତରେ କେଉଁ କ୍ଷମତାଟା ବା ଅଛି ?

ସେଦିନ କିନ୍ତୁ ଅର୍ଲାଣ୍ଡୋ ନିଜକୁ ଆଉ ସମ୍ଭାଳିପାରିଲା ନାହିଁ, ସେ ପ୍ରତିବାଦ କରିବ । ନିଜର ଅଂଶ ଦାବି କରିବ । ଖୁବ୍ ବେଶିରେ ଭାଇ ତାକୁ ଘରୁ ବାହାର କରିଦେବେ । ତା' ବରଂ ଭଲ । ଏଠି ଏବେ କୋଉ ସୁଖରେ ସେ ଅଛି ? ନିଜ ଭାଗ୍ୟ ନେଇ ଏଠୁ ଚାଲିଯିବ । ଏଡ଼େ ବଡ଼ ପୃଥିବୀ..ତା' ପାଇଁ କୋଉଠି କିଛି ହେଲେ ତ କରିବାର ଥିବ । ସେଇ କଥା ସେ ଅଲିଭର୍‌କୁ କହିଲା । ଦୃଢ଼ ଭାବରେ ତା'ପ୍ରତି ଏ ପରିବାରରେ ହେଉଥିବା ଅନ୍ୟାୟ ସମ୍ପର୍କରେ ପ୍ରତିବାଦ

ଜଣାଇଲା । ଉଇଲ୍‌ରେ ତା' ପାଇଁ ଯେଉଁ ଅର୍ଥର ବ୍ୟବସ୍ଥା କରାଯାଇଛି, ତାକୁ ଦେଇ ଦେବା ପାଇଁ ଅନୁନୟ କଲା ।

ସ୍ୱାଭାବିକ ଭାବରେ ଅଲିଭର୍ କ୍ରୁଦ୍ଧ ହେଲା । ସାନଭାଇର ଏ ଔଦ୍ଧତ୍ୟ ତାକୁ ଭଲ ଲାଗୁ ନ ଥିଲା । ପାଳିପୋଷି ଆଜି ଏତେ ବଡ଼ କରିବାର ଯେଉଁ ପ୍ରତିଦାନ ଅର୍ଲାଣ୍ଡୋ ତାକୁ ଦେଇଛି, ସେଥିପାଇଁ ସେ ତାକୁ ବ୍ୟଙ୍ଗ କରିବାକୁ ମଧ ଛାଡ଼ିଲା ନାହିଁ ।

କଥା ବଢ଼ିଲା । ଅର୍ଲାଣ୍ଡୋ ଏତେ ଦିନ ଧରି ତା' ମନରେ ଠୁଳ ହୋଇଥିବା ଦୁଃଖ ସବୁକୁ ଗୋଟିକ ପରେ ଗୋଟିଏ ଉଗାଳିବାକୁ ଲାଗିଲା । ନିଜ ଦୁର୍ବଳତା ମଣିଷ ନିଜେ ବୁଝିପାରେ ନାହିଁ କିମ୍ବା ବୁଝିଲେ ମଧ ତାକୁ ମାନିନେବାକୁ ରାଜି ହୁଏ ନାହିଁ । ଯଦି କେହି ତା'ର ଏଇ ଦିଗଟିକୁ ତା' ଆଗରେ ଖୋଲିଦିଏ, ତେବେ ସେ ହୋଇଯାଏ ଶତ୍ରୁ ।

ଏ କ୍ଷେତ୍ରରେ ସେଇଆ ହେଲା । ଅଲିଭର୍ ଅର୍ଲାଣ୍ଡୋର ଆକ୍ଷେପମାନ ଶୁଣି ଶୁଣି ନିଜକୁ ଆଉ ସମ୍ଭାଳିପାରିଲା ନାହିଁ, ସେ ତାକୁ ମାରିବାକୁ ଉଠିଲା । ଅର୍ଲାଣ୍ଡୋ ବଳିଷ୍ଠ । ସାହସୀ । ପ୍ରତିରୋଧ କରିବାର ଶକ୍ତି ତା'ର ଅଛି । ସେ ବା ଚୁପ୍ ରହନ୍ତା କାହିଁକି ?

ବିଚରା ଆଡାମ୍ ! ଦୁଇ ମୁନିବଙ୍କର ହାତାହାତି ଅବସ୍ଥା ଦେଖି ମଝିରେ ପଶିଗଲା । ଦୁହିଁଙ୍କର ହାତଓଠ ଧରି ଏଭଳି କାମ ନ କରିବାକୁ ନେହୁରା ହେଲା । ତା'କଥା ଶୁଣି ଅର୍ଲାଣ୍ଡୋ ସିନା ଭାଇ ଉପରକୁ ଉଠାଇଥିବା ହାତକୁ ତଳକୁ ନୁଆଇଁ ନେଲା । ମାତ୍ର ଅଲିଭର୍ ସହଜେ ଛାଡ଼ିବା ଲୋକ ନୁହେଁ । ମଝିରେ ଛିଡ଼ା ହୋଇଛି ଆଡାମ୍ । ଗୋଟାଏ ଧକ୍କାରେ ତାକୁ ତଳକୁ ଗଡ଼ାଇଦେଲା । ଯେତେହେଲେ ଆଡାମ୍‌ଟା ବୁଢ଼ାଲୋକ । ସେ ଏମାନଙ୍କ ସାଙ୍ଗରେ ପାରିବ କେମିତି ?

ସେତିକିରେ ଅଲିଭର୍‌ର କ୍ରୋଧ ଶାନ୍ତ ହେଲା ନାହିଁ । ଆଡାମ୍ ଉପରେ ମଧ ତା'ର ରାଗ କମ୍ ନୁହେଁ । ତା'ର ଧାରଣା ଆଡାମ୍ ହିଁ ଅର୍ଲାଣ୍ଡୋକୁ ନାନା ଦୁର୍ବୁଦ୍ଧି ଦେଉଛି । ଘର କାମତ ଯାହା କରୁଛି, ତାହା ନ କହିବା ଭଲ । ଭାବୁଛି,ଏ ଘର ଉପରେ ତା'ର ଗୋଟାଏ ଅଧିକାର ଅଛି । ଚାକର ବେଶିଦିନ ରହିଗଲେ ଏଇଆ ହୁଏ । ନାଃ, ତା'ର ଗୋଟାଏ ବ୍ୟବସ୍ଥା କରିବାକୁ ହେବ । ତା' ସହିତ ଏଇ ଅର୍ଲାଣ୍ଡୋର ବି ।

ମନ ସ୍ଥିର କରିନେଇ ଅଲିଭର୍ ଅର୍ଲାଣ୍ଡୋକୁ କହେ-ଦେଖ୍ ଅର୍ଲାଣ୍ଡୋ, ଆଜିଠାରୁ ତୋ'ର ଦାୟିତ୍ୱ ମୁଁ ଆଉ ନେଇପାରିବି ନାହିଁ । ଯେତିକି କରିଛି, ତା'ର ଯଥେଷ୍ଟ ଫଳ ମୁଁ ପାଇଛି । ତୋ' କଥା ଏଣିକି ତୁ ବୁଝ ।

ଅର୍ଲାଣ୍ଡୋ କହେ .. ମୋର ମଧ ଏଠି ଭିକାରି ଭଳି ପଡ଼ିରହିବାକୁ ଆଦୌ ଇଛା ନାହିଁ । ବାପା ଯେଉଁ ଟଙ୍କା ମୋ ପାଇଁ ରଖି ଯାଇଛନ୍ତି, ସେତକ ମୋତେ ଦେଇଦିଅ । ମୋ ଭାଗ୍ୟ ନେଇ ମୁଁ ଚାଲିଯିବି ...

ଅଲିଭର୍ ଉପହାସ କରି କହିଲା- ଏବେ ମୁଣ୍ଡକୁ ହାତ ପାଇଗଲା ନା ... ସମ୍ପତ୍ତିରୁ ଭାଗ ନେବୁ ନାହିଁତ ଆଉ କଣ କରିବୁ ?

ଆଡାମ୍ ତଥାପି ଦୁଇଜଣଙ୍କ ଭିତରେ ମିଳାମିଶା କରାଇ ଦେବାକୁ ଚେଷ୍ଟା କରୁଥାଏ । କହିଲା... ବଡ଼ବାବୁ, ତମେ ସାନବାବୁଙ୍କ କଥାରେ ଖରାପ ଭାବ ନାହିଁ । ପିଲାଲୋକ ...ବଳେ ବୁଝିଯିବେ ଯେ ...

ଅଲିଭର୍ ରାଗିଗଲା । କହିଲା...ତୁ ଚୁପ୍ କର । ତୁ ହେଉଚୁ ସବୁ ନାଟର ଗୋବର୍ଦ୍ଧନ । ବାପା ଦୁଧ କଦଳୀ ଦେଇ ସାପ ପୋଷିଥିଲେ । ପ୍ରକୃତି ଛାଡ଼ିବ କେମିତି ? ତତେ ବି ଏଥର ମୁଁ ଘରୁ ବାହାର କରିବି । ବଦ୍‌ମାସ୍, କୁକୁର ...ତୋ'ର ଏତେ ସାହସ ! ମତେ ପୁଣି ଉପଦେଶ ଦେବାକୁ ଆସୁଛୁ ।

ଆଡାମ୍‌ର ମନ ବହୁତ ଖରାପ ହୋଇଗଲା... କୋଉ ପିଲାଦିନେ ସେ ଏ ଘରକୁ ଆସିଥିଲା । ସେଇଦିନୁ ଏ ଘରର ଇଷ୍ଟ ଛଡ଼ା ଅନିଷ୍ଟ ଚିନ୍ତା କରି ନାହିଁ । ଶେଷରେ ତାକୁ ଏଇ ପୁରସ୍କାର ମିଳିଲା.. ହଁ-ସେ କୁକୁର ନୁହେଁ ତ ଆଉ କ'ଣ ? ପରଘର ଅଇଣ୍ଠା କଣ୍ଟାକୁ ଯିଏ ଆଶ୍ରା କରିଥାଏ, ସେ କୁକୁର ତ । ହଉ... ଆଉ ଏଠି ନୁହେଁ... ଏତେବଡ଼ ଦୁନିଆ ପଡ଼ିଛି ... ହାତଗୋଡ଼ ଚାଲୁଥିବାଯାଏ, କୋଉଠି ଗୋଟାଏ ଆଶ୍ରା ମିଳିଯିବ ଯେ... ପେଟକୁ ମୁଠାଏ ଖାଇବା କଥାତ...

ଅର୍ଲାଣ୍ଡୋ ସହିତ ଆଡାମ୍ ଘର ଛାଡ଼ିଲା...

ସେମାନଙ୍କ ଯିବା ବାଟକୁ ଅନାଇ ଅଲିଭର୍ ଦାନ୍ତ ରଗଡ଼ିଲା ।

॥୨॥

କିଛିଦିନ ପରର କଥା । ମଲ୍ଲବୀର ଚାର୍ଲସ ଅଲିଭର୍ ସହିତ ଦେଖା କରିବାକୁ ଆସିଲା । ତା'ଠୁ ରାଜପରିବାର ସମ୍ପର୍କରେ ଅନେକ ନୂଆ କଥା ଶୁଣିବାକୁ ମିଳିଲା । ଜଣାଗଲା ଆଗର ଡିଉକ୍‌ଙ୍କୁ ଏବେ ରାଜ୍ୟରୁ ନିର୍ବାସିତ କରାଯାଇଛି । ତାଙ୍କର ସାନଭାଇ ଫ୍ରେଡ୍‌ରିକ୍ ତାଙ୍କୁ ତଡ଼ି ଶାସନ-ଗାଦି ଅଧିକାର କରିଛି । ଡିଉକ୍-କନ୍ୟା ରୋଜାଲିଣ୍ଡ୍ ବାପାଙ୍କ ସାଙ୍ଗରେ ନିର୍ବାସିତର ଜୀବନ ବରଣ କରିନେବାକୁ ରାଜି ଥିଲା । ତେବେ ତା'ର କକା ଝିଅ-ଭଉଣୀ ସିଲିଆ... ଯେକି ଫ୍ରେଡ୍‌ରିକ୍‌ଙ୍କର ଏକମାତ୍ର କନ୍ୟା ... ସେ ତାକୁ ଯିବାକୁ ଦେଇ ନାହିଁ । ସେ ତେଣୁ ରାଜପରିବାରରେ ରହିଯାଇଛି । ନିର୍ବାସିତ ଡିଉକ୍ ଏବେ ଆର୍ଡେନ୍‌ର ଅରଣ୍ୟରେ ଆଶ୍ରୟ ନେଇଛନ୍ତି । ଶୁଣାଯାଉଛି, ସେଠାରେ ତାଙ୍କୁ ନିତ୍ୟ ସାକ୍ଷାତ୍ କରୁଛନ୍ତି, ଅଭିଜାତ ବଂଶର ବହୁ ତରୁଣ.,

ଅଲିଭର୍‌ ଚୁପ୍‌ଚାପ୍‌ ସବୁ ଶୁଣିଯାଏ । ତା'ପରେ ଚାର୍ଲସ୍‌ ଆଡ଼କୁ ଅନାଇ ପଚାରେ.. ଆସନ୍ତାକାଲି ଏଠାରେ ଯେଉଁ କୁସ୍ତି ପ୍ରତିଯୋଗିତା ହେଉଛି, ସେଥିରେ ତମେ ଯୋଗ ଦେବ ତ ?

ଚାର୍ଲସ୍‌ କହିଲା... ସେଇଥିପାଇଁ ତ ଆସିଛି । ତେବେ ଗୋଟାଏ କଥା ଶୁଣିଲି । କହୁଛନ୍ତି, ସାନବାବୁ ଅର୍ଲାଣ୍ଡୋ କୁଆଡ଼େ ବେଶ ବଦଳାଇ ଏଇ କୁସ୍ତି ଯୁଦ୍ଧରେ ଯୋଗ ଦେବେ । ଆପଣ ମୋର ବହୁ କାଳର ବନ୍ଧୁ । ଆପଣଙ୍କୁ ତେଣୁ ଜଣାଇଦେବା ମୋର କର୍ତ୍ତବ୍ୟ । ଆପଣ ତାଙ୍କୁ ଏଥିରୁ ନିବୃତ୍ତ କରନ୍ତୁ । ନିଜର ସମ୍ମାନ ନଷ୍ଟ ହେବାକୁ ମୁଁ କେବେ ଦେବି ନାହିଁ । ତେଣିକି ଭଲମନ୍ଦ ହୋଇଗଲେ ମତେ ଆଉ ଦୋଷ ଦେବେ ନାହିଁ ...

ଅଲିଭର୍‌ ତ ଏଇଆ ଚାହୁଁଥିଲା । ସେ ଚାର୍ଲସ୍‌କୁ ଆଉ ଟିକିଏ ଉତ୍ତେଜିତ କରି ଦେବାକୁ ଚେଷ୍ଟା କଲା । କହିଲା... ଚାର୍ଲସ୍‌, ତମେ ବନ୍ଧୁର କର୍ତ୍ତବ୍ୟ କରିଛ । କିନ୍ତୁ କହିବାକୁ ଖରାପ ଲାଗୁଛି । ମୋ ସାନଭାଇଟି ହେଉଛି ବଡ଼ ଏକଜିଦିଆ- ଯାହା ବୁଝିଥିବ ସେଇଆ... ସେ ମୋ କଥା ଶୁଣିବ ନାହିଁ । ମୋର ତେଣୁ କିଛି କରିବାର ନାହିଁ । ତେବେ ତାକୁ ସାମାନ୍ୟ ମନେକରିବ ନାହିଁ । ଟିକିଏ ସୁଯୋଗ ପାଇଲେ ସେ ଯେମିତି ହେଲେ ତମକୁ ଶେଷ କରିଦେବ... ସାବଧାନ ଥିବ...

ଚାର୍ଲସ୍‌ ଅହଙ୍କାରରେ ଫାଟିପଡ଼େ । କହେ... ଦେଖିବା.. ଏମିତି ମଜା ଚଖେଇବି ଯେ, ପିଲା ପ୍ରାଣ ନେଇ ଫେରିବ ନାହିଁ । ଯଦି ହାରିଗଲି, ତେବେ ଶପଥ କରି କହୁଛି, ଜୀବନରେ ଆଉ କେବେ ବି କୁସ୍ତି ଲଢ଼ିବି ନାହିଁ ...

ଚାର୍ଲସ୍‌ ବିଦାୟ ନେଇ ଚାଲିଯାଏ ।

ଅଲିଭର୍‌ ବସି ବସି ଭାବେ । ଅର୍ଲାଣ୍ଡୋ ଭଲ କରି ଶିକ୍ଷା ପାଇ ନାହିଁ । ତଥାପି ତା' ବ୍ୟବହାର କି ମାର୍ଜିତ । କଥାବାର୍ତ୍ତାରେ ସେ କେତେ ନମ୍ର, ବିନୀତ ଆଉ ଭଦ୍ର । ସମସ୍ତେ ତାକୁ କେତେ ଭଲ ପାଆନ୍ତି ! ଅଥଚ୍‌ ମୁଁ ? ମୋର ସବୁ ଥାଇ ମଧ ମୁଁ ଆଜି ସମସ୍ତଙ୍କର ଘୃଣାର ପାତ୍ର ହୋଇ ପଡ଼ିଚି । କାରଣ କ'ଣ ? କ'ଣ ତାଠି ଅଛି, ଯାହା ମୋର ନାହିଁ ?

ଯାହା ହେଉ, ଏ ଅବସ୍ଥା ଆଉ ବେଶିଦିନ ଚାଲିବ ନାହିଁ । ଚାର୍ଲସ୍‌କୁ ଯେଉଁ ଔଷଧ ଦିଆଯାଇଛି, ମନେହେଉଛି କାଲି ହିଁ ହେବ ଅର୍ଲାଣ୍ଡୋ ଜୀବନର ଶେଷ ଦିନ !

ବିଚ୍ରା ଅର୍ଲାଣ୍ଡୋ... ଅଲିଭର୍‌ ଶାନ୍ତିରେ ଆଖି ବୁଜିଲା ।

ଫ୍ରେଡରିକ୍‌ଙ୍କ ପ୍ରାସାଦରେ ଥାଇ ମଧ ରୋଜାଲିଣ୍ଡମନରେ ମୁହୂର୍ତ୍ତକ ପାଇଁ ଶାନ୍ତି ନାହିଁ । ସେ କେବଳ ରହି ରହି ତା'ର ନିର୍ବାସିତ ପିତାଙ୍କ କଥା ଭାବେ । କେମିତି ଥିବେ ସେ ? ଅରଣ୍ୟରେ ନିରାଶ୍ରୟ ଭାବରେ କେମିତି କଟୁଥିବ ତାଙ୍କର ଜୀବନ ? ଠିକ୍‌ ଭାବରେ ଖାଇବାକୁ ମିଳୁଥିବ ତ ? ରାଜପ୍ରାସାଦରେ ରାଜଭୋଗରେ ଥାଇ ଯିଏ ଦିନେ କାଳ କଟାଉ ଥିଲେ ଆଜି ତାଙ୍କୁ ଅରଣ୍ୟରେ କେଉଁ ଗଛ ତଳେ କି ପର୍ବତ ଗୁମ୍ଫାରେ ଧୂଳିଶଯ୍ୟାରେ ଶୋଇବାକୁ ପଡୁଥିବ !

ଏଇ ସବୁ କଥା ଭାବି ରୋଜାଲିଣ୍ଡର ମନ ଦୁଃଖରେ ଭରିଯାଏ । ଏଠାର ରାଜଭୋଗ ତାକୁ ମନେ ହୁଏ ବିଷ ଭଳି ।

ଅନୁଯୋଗ ଜଣାଏ ସିଲିଆ । କହେ... ଏବେ ମୋର ବିଶ୍ୱାସ ହୋଇଛି ଯେ, ମୋର ଭଲପାଇବାର ଦାବିରେ ତତେ ଏଠି ରଖିବା ଭୁଲ୍ ହୋଇଛି । ତୋର ବାପା ଯଦି ମୋ ବାପାଙ୍କୁ ନିର୍ବାସିତ କରିଥାଆନ୍ତେ , ଆଉ ମୋତେ ଏଠି ତୋ' ପାଖରେ ରହିବାକୁ ପଡୁଥାଆନ୍ତା, ତେବେ ମୁଁ ନିଶ୍ଚୟ ଏମିତି ମୁହଁ ଶୁଖାଇ ବୁଲୁ ନ ଥା'ନ୍ତି । ବରଂ ପରିସ୍ଥିତି ସହିତ ନିଜକୁ ଖାପ୍ ଖୁଆଇ ନେବାକୁ ଚେଷ୍ଟା କରୁଥାଆନ୍ତି... ଠିକ୍ ଅଛି, ତୁ ବରଂ ବଡ଼ବାପାଙ୍କ ପାଖକୁ ଚାଲିଯାଆ...

ରୋଜାଲିଣ୍ଡ ତା'ର ଏଇ ଛୋଟ ଭଉଣୀଟିକୁ ଭଲ ଭାବରେ ଜାଣେ । ତା' ପାଇଁ ସିଲିଆ ମନ ତଳେ ସ୍ନେହର ଯେଉଁ ଫଲ୍‌ଗୁଧାର ବହୁଛି, ସେ କଥା ତାକୁ ଅଛପା ନାହିଁ । ସେଇଥିପାଇଁ ତ ବାପାଙ୍କର ବାତ୍ସଲ୍ୟକୁ ଭୁଲି ସେ ଏଠି ବାନ୍ଧି ହୋଇ ଯାଇଚ଼ି ... ସିଲିଆ ମନରେ ଦୁଃଖ ଦେବା ଉଚ଼ିତ ହେବ ନାହିଁ । ଅନ୍ତତଃ ଏଠି ଥିବା ପର୍ଯ୍ୟନ୍ତ ସେ ଏଭଳି କୌଣସି କାର୍ଯ୍ୟ କରିବ ନାହିଁ ।

ସେ ସିଲିଆକୁ କହେ... ବେଶ୍, ତତେ କଥା ଦଉଚି, ଆଜିଠାରୁ ତୁ ମୁହୂର୍ତ୍ତକ ପାଇଁ ବି ମୋତେ ବିଷଣ୍ଣ ଦେଖିବୁ ନାହିଁ ।

ସିଲିଆ କହେ... ମୁଁ ଜାଣେ... ବାଧବାଧକତାରେ ଅଧିକାର ମିଳେ-ସ୍ନେହ ମିଳେ ନାହିଁ । ତଥାପି ତୋ'ର ପ୍ରତିଶ୍ରୁତିରେ ମୁଁ ଖୁସି । ତତେ ମଧ ମୋର ଗୋଟିଏ କଥା ଜଣାଇ ଦେବାର ଅଛି । ମୋର ବାପାଙ୍କର ମୃତ୍ୟୁ ପରେ ତାଙ୍କର ଏକମାତ୍ର ଉତ୍ତରାଧିକାରୀ ଭାବରେ ଏ ଧନସମ୍ପତ୍ତି ରାଜ୍ୟ ସବୁର ଅଧିକାରୀ ହେବି ମୁଁ । ସେତେବେଳେ ମୁଁ ସବୁ ସମ୍ପତ୍ତି ତତେ ଫେରାଇ ଦେବି । ଖାଲି ତୁ ଟିକିଏ ହସିବାକୁ ଚେଷ୍ଟା କର ଅପା...

ରୋଜାଲିଣ୍ଡ ହସେ ।

ଏହା ପରେ ଦୁଇଜଣଯାକ ଏଣୁତେଣୁ ନାନା କଥାରେ ମଜିଯାଆନ୍ତି । ଏତିକିବେଳେ ଆସେ ରାଜବିଦୂଷକ ଟଚ୍‌ଷ୍ଟୋନ୍ । ଖବର ଦିଏ- ରାଜା ସିଲିଆକୁ ଡକାଇ ପଠାଇଛନ୍ତି । ବିଦୂଷକର ପଛେ ପଛେ ଆସେ ମଲ୍ଲବୀର ଚାର୍ଲସ୍‌ର ଜଣେ ଅନୁଚର । ସେ ଦୁଇ ରାଜକନ୍ୟାଙ୍କୁ ଆସନ୍ତାକାଲି ହେବାକୁ ଥିବା ମଲ୍ଲଯୁଦ୍ଧ ଦେଖିବା ନିମନ୍ତେ ନିମନ୍ତ୍ରଣ ଜଣାଏ ।

ରାଜା ଫ୍ରେଡ଼େରିକ୍ କିନ୍ତୁ ସେମାନଙ୍କୁ ଏଇ ଦ୍ୱନ୍ଦ୍ୱଯୁଦ୍ଧ ଦେଖିବାକୁ ଯିବା ପାଇଁ ମନା କରନ୍ତି । କହନ୍ତି-ଚାର୍ଲସ୍ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବ ଯେଉଁ ତରୁଣଟି, ତା'ର ବୟସ ନିତାନ୍ତ କମ୍ । ଅଭିଜ୍ଞତା ମଧ ଶୂନ୍ୟ । ମୁଁ ତାକୁ ମନା କଲି, ମାତ୍ର ସେ ଶୁଣୁ ନାହିଁ ...

ସିଲିଆ ରୋଜାଲିଣ୍ଡକୁ କହେ ଯେ, ସେମାନେ ଏହି ତରୁଣକୁ ଭେଟି ତାକୁ ଏଭଳି ଅସମ ଯୁଦ୍ଧରୁ ନିବର୍ତ୍ତାଇବାକୁ ଚେଷ୍ଟା କରିବେ । ଯଦି ସେ ସେମାନଙ୍କ କଥା ମାନିନିଏ ... !

ନିର୍ଦ୍ଧାରିତ ସମୟରେ ସେହି ତରୁଣ ସହିତ ରାଜକନ୍ୟା ଦୁହିଁଙ୍କର ଦେଖା ହୁଏ । ତରୁଣ ଆଉ କେହି ନୁହେଁ .. ଅର୍ଲାଣ୍ଡୋ...

ରୋଜାଲିଣ୍ଡ ତାକୁ କହେ ... ଶକ୍ତି ପରୀକ୍ଷାର ଏଇ ଅସମ-ପ୍ରତିଦ୍ୱନ୍ଦ୍ୱିତାରୁ ଦୂରେଇ ଯାଅ ଯୁବକ...

ସିଲିଆ ତାକୁ ଭୟ ଦେଖାଇ କହେ... ନ ହେଲେ ପରିଣାମ ଭୟଙ୍କର ହେବ । ଅନ୍ତତଃ ଆମର ଅନୁରୋଧରେ ଏଥିରୁ ନିବୃତ୍ତ ହୁଅ ...

ଅର୍ଲାଣ୍ଡୋ ବିନୀତ ଭାବରେ ଜଣାଏ ... ଆପଣମାନଙ୍କ ଶୁଭେଚ୍ଛା ମୋର ସବୁବେଳେ ମନେରହିବ । ତେବେ ଅନୁରୋଧ ରକ୍ଷାକରି ନ ପାରି ମୁଁ ଲଜ୍ଜିତ । ହାରିଗଲେ ମୃତ୍ୟୁ... ଏଇଆ ତ ? ମୋର ମୃତ୍ୟୁ ଭୟ ନାହିଁ । ବରଂ ମୁଁ ତାକୁ ସ୍ୱାଗତ ଜଣାଇବାକୁ ପ୍ରସ୍ତୁତ ହୋଇ ରହିଛି । ଏ ବିଶାଳ ପୃଥିବୀରେ ମୋର ମୃତ୍ୟୁରେ ଶୋକ କରିବା ନିମନ୍ତେ ଜଣେ କେହି ନାହିଁ ...

ରୋଜାଲିଣ୍ଡର ମନ ସମବେଦନାରେ କୋମଳ ହୋଇଉଠେ । ଆହା, ତା'ର ଯେଉଁ ସାମାନ୍ୟ ଶକ୍ତି ଅଛି, ସେ ଯଦି ଏଇ ଅସହାୟ ତରୁଣଟିକୁ ଦେଇପାରନ୍ତା ! ସିଲିଆ ମଧ୍ୟ ଯୁବକଟି ପ୍ରତି ସହାନୁଭୂତି ଦେଖାଏ ।

ଅର୍ଲାଣ୍ଡୋ ଦୃଢ଼ ପଦକ୍ଷେପରେ କୁସ୍ତି ମଞ୍ଚଆଡ଼େ ଆଗେଇଯାଏ । ମନରେ ତା'ର ପ୍ରଚଣ୍ଡ ଆତ୍ମବିଶ୍ୱାସ । ଡିଉକ୍ ଚାର୍ଲସ୍‌କୁ ଡାକି କହନ୍ତି- ଗୋଟିଏ ରାଉଣ୍ଡ ଖେଳିବ ।

ଚାର୍ଲସ୍ ବ୍ୟଙ୍ଗାତ୍ମକ ହସ ହସି କହେ-ସେତିକି ମୋ ପାଇଁ ଯଥେଷ୍ଟ । ମଲ୍ଲଯୁଦ୍ଧ ଆରମ୍ଭ ହୁଏ । ସମସ୍ତେ ଧରି ନେଇଥାଆନ୍ତି ଯେ, ତରୁଣ ପ୍ରତିଦ୍ୱନ୍ଦ୍ୱୀ ଚାର୍ଲସ୍‌ର ଗୋଟିଏ ଧକ୍କାରେ ମାଟି କାମୁଡ଼ି ପଡ଼ିବ । ମାତ୍ର ଏ କଣ ସେମାନେ ଦେଖୁଛନ୍ତି ! ଚାର୍ଲସ୍ ଧରାଶାୟୀ !

ଡିଉକ୍ ଚିତ୍କାର କରି ଉଠନ୍ତି ... ଆଉ ନୁହେଁ ...

ଅର୍ଲାଣ୍ଡୋ କହେ-ମୋର ଶକ୍ତି କିନ୍ତୁ ଏବେ ମଧ୍ୟ ଅତୁଟ ରହିଛି । ଆଉ ଥରେ...

ଚାର୍ଲସ୍‌ର ଅବସ୍ଥା ଖରାପ । ତିନିଚାରିଜଣ ଧରାଧରି କରି ତାକୁ ବାହାରକୁ ନେଇ ଆସନ୍ତି । ଡିଉକ୍ ତରୁଣକୁ ପଚାରନ୍ତି ... ତୁମର ନାମ ? ପରିଚୟ କ'ଣ ?

ଅର୍ଲାଣ୍ଡୋ ଉତ୍ତର ଦିଏ-ମୁଁ ଅର୍ଲାଣ୍ଡୋ... ରୋଲାଣ୍ଡ ଡ଼ି ବୟେଜ୍‌ଙ୍କର ସାନ ପୁଅ... ଡିଉକ୍ ଗମ୍ଭୀର ହେଇଯାଆନ୍ତି । କହନ୍ତି, ତମ ବାପା ସମସ୍ତଙ୍କର ଶ୍ରଦ୍ଧାର ପାତ୍ରଥିଲେ ତେବେ ସେ ଆଜି ବି ମୋର ଶତ୍ରୁ ତାଲିକାରେ ରହିଛନ୍ତି ଯାହାହେଉ,ବୀରଯୁବକ- ଈଶ୍ୱର ତମର ମଙ୍ଗଳ କରନ୍ତୁ ।

ସିଲିଆ ରୋଜାଲିଣ୍ଡକୁ କହେ.. ବାପାଙ୍କର ଏମିତି କହିବା ଉଚିତ ହୋଇ ନାହିଁ ।

ରୋଜାଲିଣ୍ଡ ଦୀର୍ଘ ନିଃଶ୍ୱାସ ପକାଏ... କହେ... ମୋ ବାପାଙ୍କ ସହିତ ସାର୍ ରୋଲାଣ୍ଡଙ୍କର ପ୍ରୀତିର ସମ୍ପର୍କ ଥିଲା । ଆଗରୁ ଜାଣିଥିଲେ ମୁଁ ଏଇ ତରୁଣକୁ କୌଣସିମତେ ଏ ପ୍ରତିଯୋଗିତାରେ ଭାଗ ନେବାକୁ ଦେଇ ନ ଥାନ୍ତି ।

ସିଲିଆ ଆଉ ରୋଜାଲିଣ୍ଡ ଦୁହେଁ ତରୁଣକୁ ଅଭିନନ୍ଦନ ଜଣାଇବାକୁ ଆଗେଇ ଆସନ୍ତି । ସିଲିଆ କହେ... ଯୁବକ ! ତମର ଏଇ ଅପ୍ରତ୍ୟାଶିତ ବିଜୟ ପାଇଁ ଆମର ଅଭିନନ୍ଦନ ଗ୍ରହଣ କର ।

ରୋଜାଲିଣ୍ଡ ନିଜ ଗଳାରୁ ହାର ଖୋଲି ଅର୍ଲାଣ୍ଡୋକୁ ଉପହାର ଦିଏ । କହେ... ହେ ମହାନ୍ ଯୋଦ୍ଧା, ମୋ ପାଇଁ ଏଇ ସାମାନ୍ୟ ଉପହାରଟିକୁ ତମେ ନିଜ ଗଳାରେ ପିନ୍ଧ । ଏହା ଛଡ଼ା ମୋର ଆଉ ଯଦି କିଛି ଥାଆନ୍ତା, ତେବେ ସେ ସବୁ ମୁଁ ତମକୁ ଦେଇଥାଆନ୍ତି ...

ଅର୍ଲାଣ୍ଡୋ ବିନୀତ ଭାବେ ଜଣାଏ...ମୋର ପ୍ରାଣଖୋଲା ଧନ୍ୟବାଦ ଗ୍ରହଣ କରନ୍ତୁ ରାଜକୁମାରୀ । ଏ ଉପହାର ମୋ ଜୀବନର ସବୁଠାରୁ ମୂଲ୍ୟବାନ୍ ବସ୍ତୁ ହୋଇ ରହୁ ...

ସିଲିଆ ଭଉଣୀକୁ ଯିବା ଲାଗି ଅନୁରୋଧ କରେ । ରୋଜାଲିଣ୍ଡ ପୂର୍ଣ୍ଣ-ଦୃଷ୍ଟିରେ ଅର୍ଲାଣ୍ଡୋ ଆଡ଼କୁ ଅନାଇ କହେ... ଈଶ୍ୱର ତମର ମଙ୍ଗଳ କରନ୍ତୁ ।

ଦୁହେଁ ଚାଲିଯାଆନ୍ତି ।

ଡିଉକ୍‌ଙ୍କର ଜଣେ ଅନୁଚର ଅର୍ଲାଣ୍ଡୋକୁ କହେ... ବୀର ଯୁବକ, ତମେ ଯଥାଶୀଘ୍ର ଏ ସ୍ଥାନ ଛାଡ଼ି ଚାଲିଯାଅ । ଯଦିଓ ତମେ ଉଚ୍ଚ ପ୍ରଶଂସା ଆଉ ଶ୍ରଦ୍ଧା ପାଇବାର ଯୋଗ୍ୟ, ତଥାପି ଡିଉକ୍ ତମକୁ ଅନ୍ୟ ଆଖିରେ ଦେଖୁଛନ୍ତି । ସେଇଥିପାଇଁ କହୁଛି, ଏ ସ୍ଥାନ ତମ ପାଇଁ ନିରାପଦ ନୁହେଁ । ଯିବା ପୂର୍ବରୁ ଅର୍ଲାଣ୍ଡୋ ପ୍ରଶ୍ନ କରେ-ବନ୍ଧୁ, ଏ ଦୁହିଁଙ୍କ ମଧ୍ୟରୁ ଡିଉକ୍‌ଙ୍କ ଝିଅ କେଉଁଟି ମୋତେ କହିପାରିବ କି ?

ଅନୁଚର ଉତ୍ତର ଦିଏ-ସାନଟି ତାଙ୍କ ଝିଅ । ଅନ୍ୟ ଜଣକ ହେଲେ ବିତାଡ଼ିତ ଡିଉକ୍‌ଙ୍କ କନ୍ୟା । ଭଉଣୀ ପ୍ରତି ସ୍ନେହବଶତଃ ସେ ଏଠି ରହିଯାଇଛନ୍ତି । ତେବେ ଡିଉକ୍ ଏବେ ତାଙ୍କର ଏଇ ଝିଆରୀ ଉପରେ ଆଦୌ ସନ୍ତୁଷ୍ଟ ନୁହନ୍ତି । କାରଣ ତାଙ୍କ ନିଜ ଝିଅ ଅପେକ୍ଷା ଲୋକେ ତାଙ୍କ ଝିଆରୀଟିକୁ ଅଧିକ ଭଲ ପାଉଛନ୍ତି । ତାଙ୍କର ଗୁଣ ବି ସେମିତି...

ଯାଉ ଯାଉ ଅର୍ଲାଣ୍ଡୋ ଭାବୁଥାଏ କ'ଣ ହେବ ଏଇ ଗୁଣବନ୍ତୀ ରାଜକନ୍ୟାଙ୍କର ଦଶା ! ଅତ୍ୟାଚାରୀ ଡିଉକ୍‌ଙ୍କର ଶାସନରେ ସେ କେତେଦୂର ନିରାପଦ ? ସେ କ'ଣ ତାଙ୍କର ନିର୍ବାସିତ ପିତାଙ୍କ ନିକଟକୁ ଫେରିଯିବେ ? ଭଉଣୀ କ'ଣ ତାଙ୍କୁ ଯିବାକୁ ଦେବ ? କେଜାଣି ...

ରାଜପ୍ରାସାଦରେ ଦୁଇ ଭଉଣୀଙ୍କ ମଧ୍ୟରେ କଥାବାର୍ତ୍ତା ଚାଲେ । ସିଲିଆ ରୋଜାଲିଣ୍ଡକୁ କହେ-ଅର୍ଲାଣ୍ଡୋର ବାପାଙ୍କୁ ତୋ' ବାପା ଭଲ ପାଉଥିଲେ ବୋଲି ତୁ ତାକୁ ଭଲ ପାଇବୁ ? ମୋ ବାପା କିନ୍ତୁ ତା'ର ବାପାଙ୍କୁ ଘୃଣା କରନ୍ତି । ଏଇ କାରଣରୁ ମୋର ବି ତାଙ୍କୁ ଘୃଣା କରିବା ଉଚିତ । ମାତ୍ର ମୁଁ ତା'ପାରୁ ନାହିଁ ...

ରୋଜାଲିଣ୍ଡ କହେ... ସେଇଥିପାଇଁ ମୋତେ ଭଲ ପାଇବାକୁ ଦେ । ମୁଁ ଭଲ ପାଉଛି, ତେଣୁ ତୁ ବି ତାକୁ ଭଲ ପାଇବୁ ।

ଡିଉକ୍ ଆସନ୍ତି । ଅବିଳମ୍ବେ ରୋଜାଲିଣ୍ଡକୁ ରାଜପ୍ରାସାଦ ତ୍ୟାଗ କରି ଚାଲିଯିବାକୁ ଆଦେଶ ଦିଅନ୍ତି ।

ରୋଜାଲିଣ୍ଡ ଏଥିପାଇଁ ପ୍ରସ୍ତୁତ ନ ଥାଏ । ସେ ଡିଉକ୍‌ଙ୍କ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁ କହେ... ଈଶ୍ୱର ଜାଣନ୍ତି, ମୁଁ ଏଠାରେ ଏ ପର୍ଯ୍ୟନ୍ତ ଆପଣଙ୍କୁ କ୍ରୁଦ୍ଧ କଲାଭଳି କୌଣସି କାର୍ଯ୍ୟ କରି ନାହିଁ କିମ୍ବା ଆପଣଙ୍କର ଅମଙ୍ଗଳ କାମନା କରି ନାହିଁ । ତେଣୁ ମୋର ଅପରାଧ କ'ଣ, ଯିବା ପୂର୍ବରୁ ଅନ୍ତତଃ ଏଇତକ ଜାଣିଯିବାକୁ ଚାହେଁ ...

ଡିଉକ୍ କ୍ରୁଦ୍ଧ ସ୍ୱରରେ କହନ୍ତି -ସବୁ ବିଶ୍ୱାସଘାତକମାନେ ଏମିତି କହିଥାଆନ୍ତି । ତୁ ମୋର ବିଶ୍ୱାସ ହରାଇଛୁ, ଏତିକି ଜାଣିବା ତୋ' ପାଇଁ ଯଥେଷ୍ଟ ।

ରୋଜାଲିଣ୍ଡ ତଥାପି ପ୍ରଶ୍ନ କରେ... କହନ୍ତୁ କକା, କେଉଁ କାରଣରୁ ଆପଣ ମୋତେ ବିଶ୍ୱାସଘାତକ ବୋଲି ଧରିନେଲେ ?

ଡିଉକ୍ କର୍କଶ ସ୍ୱରରେ କହନ୍ତି, ତୁ ତୋ'ର ବାପାଙ୍କର ଝିଅ ହୋଇଥିବାରୁ ।

ରୋଜାଲିଣ୍ଡ ଜଣାଏ-ଆପଣ ଯେତେବେଳେ ତାଙ୍କଠାରୁ ରାଜ୍ୟଛଡ଼ାଇ ନେଇ ତାଙ୍କୁ ନିର୍ବାସିତ କଲେ, ସେତେବେଳେ ମଧ୍ୟ ମୁଁ ସେଇଆ ଥିଲି । ରାଜଦ୍ରୋହ ଉତରାଧିକାର ସୂତ୍ରରେ ମିଳେ ନାହିଁ । ତା'ଛଡ଼ା ମୋର ବାପା ଆଦୌ ବିଶ୍ୱାସଘାତକ ନ ଥିଲେ ।

ସିଲିଆ କିଛି କହିବା ପୂର୍ବରୁ ଡିଉକ୍ ତା'ଆଡ଼କୁ ଅନାଇ କହନ୍ତି-କେବଳ ତୋରି ପାଇଁ ଆ'କୁ ଏଠି ରଖା ଯାଇଥିଲା । ନଚେତ୍ ବାପ ସହ ଝିଅ ମଧ୍ୟ ତଡ଼ା ଖାଇଥାଆନ୍ତା ...

ସିଲିଆ କହେ ... କିନ୍ତୁ ବାପା, ମୁଁ ତ ତାକୁ ରଖିବାକୁ କହି ନ ଥିଲି । ନିଜ ଖୁସିରେ ଆପଣ ଏ କାମ କରିଛନ୍ତି । ସେ ଯଦି ବିଶ୍ୱାସଘାତକ, ତେବେ ମୁଁ ମଧ୍ୟ ସେଇଆ । ଆମେ ଦୁଇଜଣ ଏକାଠି ବଢ଼ିଛୁ, ଖାଇଛୁ ପିଇଛୁ, ଆଉ ଶୋଇଛୁ ବି । ମୁହୂର୍ତ୍ତକ ପାଇଁ ବି ପରସ୍ପରଠାରୁ ଛଡ଼ାଛଡ଼ି ହୋଇ ନାହୁଁ । ଦୁହିଁଙ୍କର ଚିନ୍ତା ବି ସମାନ ...

ଡିଉକ୍ ଜଣାନ୍ତି-ତୋ'ଠୁ ସେ ବୁଦ୍ଧିମତୀ, ବିଚକ୍ଷଣ ବି । ତା'ର ସୌଜନ୍ୟ, ନମ୍ରତା-ଧୀରତା ପାଖରେ ତୁ ନ୍ୟୁନ ହୋଇଯିବୁ । କେବଳ ସେଇଥିପାଇଁ ମୁଁ ତାକୁ ଏଠୁ ବିଦାୟ ଦେବାକୁ ନିଷ୍ପତ୍ତି କରିଛି । ସେ ନ ଥିଲେ ତୋ'ର ସବୁ ଗୁଣ ଉଜ୍ଜ୍ୱଳ ହୋଇ ଦେଖାଯିବ ...

ସିଲିଆ ତଥାପି ଅନୁନୟ କରି କହେ... ମୋ ପାଇଁ ମଧ ସେଇ ଆଦେଶ ଦିଅନ୍ତୁ ବାପା । ତାକୁ ଛାଡ଼ି ମୁଁ ମୁହୂର୍ତ୍ତେ ବି ରହିପାରିବି ନାହିଁ ...

ଡିଉକ୍ ରାଗିଯାଆନ୍ତି । କହନ୍ତି-ତୁ ଗୋଟାଏ ନିର୍ବୋଧ । ରୋଜାଲିଣ୍ଡ, ଯଥା ଶୀଘ୍ର ମୋର ଆଦେଶ ପାଳନ ନ କଲେ ତୋତେ ମୃତ୍ୟୁ ଦଣ୍ଡ ଦିଆଯିବ ...

ଆଦେଶ ଦେଇ ଡିଉକ୍ ଚାଲିଯାଆନ୍ତି ...

ସିଲିଆ ରୋଜାଲିଣ୍ଡକୁ କହେ... ତୁ କୁଆଡ଼େ ଯିବୁ ଅପା ? ମନ କଷ୍ଟ କରନା-ଦେଖିବୁ, ବାପା ଶୀଘ୍ର ତାଙ୍କର ମତ ବଦଳାଇବେ ...

ରୋଜାଲିଣ୍ଡ ମୁଣ୍ଡ ହଲାଏ ... ମୋତେ ଯିବାକୁ ହେବ ଭଉଣୀ ...

ଏଥର ସିଲିଆ ଦୃଢ଼ କଣ୍ଠରେ କହେ... ତେବେ ମୋତେ ମଧ ତୋ ସହିତ ଯିବାକୁ ହେବ । ବାପା ତାଙ୍କର ଅନ୍ୟ ଉତ୍ତରାଧିକାରୀ ଖୋଜିନିଅନ୍ତୁ । ଚାଲ୍, ଆମେ ତେବେ ଆର୍ଡେନ୍ ଅରଣ୍ୟକୁ ଯାଇ ବଡ଼ବାପାଙ୍କୁ ଖୋଜିବା ...

ଏଭଳି କଳ୍ପନାରେ ରୋଜାଲିଣ୍ଡ ଶିରି ଉଠେ । କହେ... ଦୁଇଜଣ ଅବିବାହିତା ଝିଅ... ଘୋର ଜଙ୍ଗଲରେ ଚୋର ଡକାୟତ ମେଳା ମେଳା... ଆମେ କେମିତି ...

ସିଲିଆ ପରାମର୍ଶ ଦେଇ କହେ... ସେ କଥା ବି ମୁଁ ଭାବିଛି । ... ଆମେ ଛିଣ୍ଡା ମଇଳା ପୋଷାକ ପିନ୍ଧି ଭିକାରି ବେଶ ଧରିବା । ରଙ୍ଗ ବୋଳି ହୋଇ ଦେହର ବର୍ଣ୍ଣକୁ ବି ବଦଳାଇ ଦେବା । ଚୋର କି ଡାକୁ ଆମକୁ ଜାଣିପାରିବେ ନାହିଁ ।

ରୋଜାଲିଣ୍ଡ କିଛି କ୍ଷଣ ଭାବିବା ପରେ କହେ...ଠିକ୍ ଅଛି । ମୁଁ ତୋଠୁଁ ଡେଙ୍ଗା- ପୁରୁଷ ବେଶ ହେବି । ଅଣ୍ଟାରେ ଖଣ୍ଡା ଝୁଲାଇ, ନାକତଳେ ନିଶ ଲଗାଇ, କଣ୍ଠକୁ ମୋଟା କରି... ଲୋକଙ୍କ ଆଖିରେ ଧୂଳି ଦେଇପାରିବି ...

ଆଉ ଆମର ନାଆଁ ... ତା'ର କ'ଣ ହେବ-ସିଲିଆ ପଚାରେ ।

ତୁ ମୋତେ ଡାକିବୁ ଗାନିମୀଡ୍-ଆଉ ତୋ'ର ନାମ ହେଲା ଏଲିଏନା...

ସିଲିଆ କହେ... ଆମ ଗହଣାପତ୍ର ବି ସାଙ୍ଗରେ ନେଇଯିବା । ଆମେ ଏଠୁ ଚାଲିଗଲା ପରେ ଆମକୁ ଧରିବା ପାଇଁ ରାଜାଙ୍କର ସବୁ ଶକ୍ତି ପ୍ରାଣ ପଣେ ଚେଷ୍ଟା କରିବ। ହାତରେ ଧନ ଥିଲେ ଅନ୍ତତଃ ...

ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଯାଏ ।

॥ ୩ ॥

ଆର୍ଡେନ୍ ଅରଣ୍ୟରେ ନିର୍ବାସିତ ଡିଉକ୍ ଫ୍ରେଡରିକ୍‌ଙ୍କ ଶିବିର । ତାଙ୍କ ସହିତ ଅଛନ୍ତି ତାଙ୍କର ଅନ୍ତରଙ୍ଗ କେତେକ ଭୂସ୍ୱାମୀ ଏବଂ ବନ୍ଧୁ ଲର୍ଡ଼୍ ଆମିନସ୍ । ଏମାନେ ସମସ୍ତେ ତାଙ୍କର ଗୁଣମୁଗ୍ଧ ଏବଂ ସ୍ୱେଚ୍ଛାନିର୍ବାସନ ବରଣ କରିଛନ୍ତି ।

ଡିଉକ୍ ସେମାନଙ୍କୁ ସମ୍ବୋଧନ କରି କହିଲେ-ଏଇ ଅରଣ୍ୟବାସ ଆମ ପାଇଁ କେତେ ଶାନ୍ତିଦାୟକ, ତାହା ଆପଣମାନେ ଅନୁଭବ କରୁଛନ୍ତି ? ଏଠି ନାହିଁ ପ୍ରାସାଦର ମିଥ୍ୟା ଆଡ଼ମ୍ବରପୂର୍ଣ୍ଣ କୃତ୍ରିମ ଜୀବନ । ପ୍ରକୃତି ରାଣୀର ଅନୁପମ ସୌନ୍ଦର୍ଯ୍ୟ ପ୍ରାଣକୁ ଅପୂର୍ବ ପୁଲକରେ ଭରି ଦେଉଛି । ଋତୁର ପରିବର୍ତ୍ତନ ସହିତ ପ୍ରକୃତିର ନିତ୍ୟ ନୂତନ ସୌନ୍ଦର୍ଯ୍ୟ ପ୍ରାସାଦର ଚାରିକାନ୍ଥ ଭିତରେ ଦେଖିବାକୁ କାହୁଁ ମିଳନ୍ତା ? ଝଡ଼ର ଝଙ୍କାର, ଶୀତର ଅପୂର୍ବ ଶିହରଣ.. ନଗର ଜୀବନର ସେଇ ଗତାନୁଗତିକତା ଭିତରେ କେମିତି ଅନୁଭବ କରି ହୁଅନ୍ତା ? ଝରଣାର କଳକଳ ତାନ, ଅରଣ୍ୟର ପ୍ରତ୍ୟେକ ଶିଳାଖଣ୍ଡ, ଝିଙ୍କାରୀର ଝିଁ ଝିଁ, ବନ ପକ୍ଷୀର କାକଳି ପ୍ରତ୍ୟେକଟି ଭିତରୁ ଯେମିତି ଶୁଣିବାକୁ ମିଳୁଛି ବିଶ୍ୱ ବିଧାତାଙ୍କର କେଉଁ ଅପୂର୍ବ ସନ୍ଦେଶ.. ଏଠାର ପ୍ରତ୍ୟେକଟି ଧୂଳିକଣା ସତେଯେମିତି ମଧୁକ୍ଷରା...

ଆମିନସ୍ ମଧ ଡିଉକ୍‌ଙ୍କୁ ସମର୍ଥନ ଜଣାନ୍ତି । କହନ୍ତି-ଭାଗ୍ୟର ନିର୍ମମ ପରିହାସକୁ ମାନିନେଇ ଯିଏ ଏଇ ଅରଣ୍ୟ ବାସରୁ ଶାନ୍ତି ପାଇପାରନ୍ତି, ତାଙ୍କୁ ଆମେ ଭାଗ୍ୟବାନ୍ ବୋଲି ସ୍ୱୀକାର କରିବାକୁ ବାଧ ।

ବନ୍ଧୁଡିଉକ୍ କହନ୍ତି-ଏବେ ଆମର ଶିକାରକୁ ବାହାରିବାର ସମୟ । ତେବେ ନିରୀହ ପଶୁଗୁଡ଼ିକୁ ହତ୍ୟା କଲା ସମୟରେ ତମର ଛାତି ଥରି ଉଠେ ନାହିଁ ?

ଜଣେ ଭୂସ୍ୱାମୀ ତାଙ୍କୁ ସମର୍ଥନ କରି କହନ୍ତି-ପ୍ରଭୁ, ଠିକ୍ ଏଇ କଥା ଜ୍ୟାକସ୍ ମଧ କହନ୍ତି । ଥରେ ସେ ଗୋଟିଏ ଓକ୍ ଗଛ ତଳେ ଶୋଇଥିଲେ । କାହୁଁ ଦଉଡ଼ିଆସିଲା ଶରବିଦ୍ଧ ହରିଣ-ଛୁଆ ଗୋଟିଏ... ତାକୁ ଦେଖି ଜ୍ୟାକସ୍‌ଙ୍କ ଆଖି ଛଳ ଛଳ ହୋଇ ଉଠିଲା.. ନିଜକୁ ସେ କେତେ ଧିକ୍କାର କଲେ..

ଡିଉକ୍ କହିଲେ.. ତମେମାନେ କ'ଣ ତାଙ୍କୁ ସେଇ ଅବସ୍ଥାରେ ଏକା ଛାଡ଼ିଦେଇ ଆସିଛ ? ଚାଲିଲ ଦେଖିବା.. ମୁଁ ଜାଣେ, ସେ ସବୁବେଳେ ଏମିତି ଏଣୁତେଣୁ କଥା ଭାବୁଥାଆନ୍ତି ।

ବର୍ତ୍ତମାନର ଡିଉକ୍ ଖବର ପାଆନ୍ତି, ସିଲିଆ ଆଉ ରୋଜାଲିଣ୍ଡ ପ୍ରାସାଦ ଛାଡ଼ି କୁଆଡ଼େ ଚାଲିଯାଇଛନ୍ତି । ସେ ରାଗିଯାଆନ୍ତି । ସନ୍ଦେହ କରନ୍ତି, ହୁଏତ ତାଙ୍କରି ଦରବାରର କେହି ପିଲାମାନଙ୍କୁ ଏଭଳି କାମ କରିବା ପାଇଁ କୁପରାମର୍ଶ ଦେଇଛି ।

ଜଣେ ଲର୍ଡ଼ ଜଣାନ୍ତି-ଭୋର୍ ସମୟରେ ଦୁହିଁଙ୍କର ବିଛଣା ଶୂନ୍ୟ ଦେଖି ଚାରିଆଡ଼େ ଖୋଜାଖୋଜି କରାଯାଏ । ବଦମାସ୍ ବିଦୂଷକଟା ବି ଦେଖା ପଡୁ ନାହିଁ । ରାଜକୁମାରୀଙ୍କର ଜଣେ ପରିଚାରିକା କହୁଥିଲା.. ସେଇ ତରୁଣ ମଲ୍ଲବୀର ମଧ୍ୟ ଏମାନଙ୍କ ସାଙ୍ଗରେ ଥାଇପାରେ । ଦୁଇ ରାଜକନ୍ୟା ତା' ବିଷୟରେ ଖୁବ୍ ଆଲୋଚ଼ନା କରୁଥିବାର ସେ ଶୁଣିଛି ।

ଡିଉକ୍ ଆଦେଶ ଦିଅନ୍ତି .. ଏଇ ମୁହୂର୍ତ୍ତରେ ସେଇ ତରୁଣର ଭାଇ ପାଖକୁ ଲୋକ ପଠାଅ.. ସେଇ ତରୁଣକୁ ଯେଉଁଠି ପାଉଛ ଧରାଇ ଆଣ..

ଅର୍ଲାଣ୍ଡୋ ବୁଲି ବୁଲି ଅଲିଭର୍ ଘର ପାଖରେ ପହଞ୍ଚିଯାଏ । ଭୃତ୍ୟ ଆଡାମ୍ ସହିତ ପ୍ରଥମେ ତା'ର ଦେଖାହୁଏ । ସେ ଦୁଃଖ କରି କହେ, ଈଶ୍ୱର ତମକୁ ଏତେ ସଦ୍‌ଗୁଣ ଦେଇ ପୃଥିବୀକୁ ପଠାଇଲେ କାହିଁକି ସାନବାବୁ ! ତମେ ମଲ୍ଲଯୁଦ୍ଧରେ ଜିତିବାର ଖବର ଏଠି ପହଞ୍ଚିଯାଇଚି .. ବଡ଼ବାବୁ ଠିକ୍ କରିଛନ୍ତି, ଆଜି ରାତିରେ ତମ ଶୋଇବା ଘରେ ନିଆଁ ଲଗାଇଦେବେ । ତମେ ଆଉ ଏ ଘରେ ପଶ ନାହିଁ ..

ଅର୍ଲାଣ୍ଡୋ କହେ.. ବାଟଘାଟରେ ବୁଲି ଚୋରି ଡକାୟତି କରିବା କି ଭିକ ମାଗିବା ଅପେକ୍ଷା ଭାଇଙ୍କ କ୍ରୋଧର ଶିକାର ହେବା ବରଂ ଭଲ..

ଆଡମ୍ କହେ.. ତମକୁ ଭିକ ମାଗିବାକୁ ହେବ ନାହିଁ.. ତମ ବାପାଙ୍କ ଅମଳରୁ ସଂଚ଼ିତ ପାଞ୍ଚଶହ କ୍ରାଉନ୍ ମୋ ପାଖରେ ଅଛି.. ତମକୁ ଦେଉଛି.. ଏଠୁ ଚାଲିଯାଅ.. ଏଠି ଦଣ୍ଡେ ରହିବାକୁ ମୋର ବି ଇଚ୍ଛା ନାହିଁ .. ମୁଁ ତମ ସାଙ୍ଗରେ ଯିବି.. କାମଦାମ କରିବାକୁ ତମ ପାଖରେ ଜଣେ ଲୋକବି ତ ଦରକାର ..

ଅର୍ଲାଣ୍ଡୋର ମନ ଦୁଃଖରେ ଭରିଯାଏ ।

ଦୁହେଁ ଅନିର୍ଦ୍ଦିଷ୍ଟ ପଥରେ ଯାତ୍ରା କରନ୍ତି ।

ଆର୍ଡେ଼ନର ଗଭୀର ଅରଣ୍ୟ ଭିତରେ ଚାଲିଛନ୍ତି ରୋଜାଲିଣ୍ଡ ସିଲିଆ ଆଉ ବିଦୂଷକ ଟଚ୍‌ଷ୍ଟୋନ୍ । ସମସ୍ତେ ବେଶ୍ କ୍ଳାନ୍ତ । ପଥଧାରରେ ସିଲିଆ ବସି ପଡ଼ିବାରୁ ବିଦୂଷକ ଥଟ୍ଟା କରି କିଛି କହେ ..

ହଠାତ୍ ପଛପଟରୁ ପାଦଶବ୍ଦ ଶୁଣାଯାଏ । ଦେଖାଯାଏ ଜଣେ ତରୁଣ ଆଉ ଜଣେ ବୃଦ୍ଧ କଥାବାର୍ତ୍ତା ହୋଇ ଏଇଆଡ଼େ ଆସୁଛନ୍ତି । ସେମାନଙ୍କ କଥାବାର୍ତ୍ତାରୁ ଜଣାଯାଏ, ବୁଢ଼ାର ନାମ କୋରିନ୍ ଆଉ ତରୁଣର ନାମ ସିଲ୍‌ଭିୟାସ୍ ।

ସେମାନେ କେଉଁ ଏକ ତରୁଣୀ ବିଷୟରେ କଥାବାର୍ତ୍ତା ହେଉଥିଲେ । ରୋଜାଲିଣ୍ଡ ସେଇଆଡ଼େ କାନ ଡେରିଲା । ସିଲିଆ କ୍ଳାନ୍ତି ଆଉ କ୍ଷୁଧାରେ କାତର ହୋଇ ପଡ଼ି କହେ.. ତାଙ୍କୁ ପଚାର .. ତାଙ୍କ ପାଖରେ କିଛି ଖାଇବାର ମିଳିବ କି ନାହିଁ । ଆମେ ତାଙ୍କୁ ଆମ ଗହଣାରୁ କିଛି ଦେଇଦେବା ପଛେ..

ରୋଜାଲିଣ୍ଡ ସାଙ୍ଗେ ସାଙ୍ଗେ ବୁଢ଼ାଟିକୁ ସେମାନଙ୍କ ପାଇଁ କିଛି ଖାଦ୍ୟ ଏବଂ ଗୋଟାଏ ଆଶ୍ରୟର ବ୍ୟବସ୍ଥା କରିଦେବାକୁ ଅନୁରୋଧ କରେ । ସାଙ୍ଗରେ ଥିବା ତରୁଣୀଟିର ଅବସ୍ଥା ଭଲ ନୁହେଁ ..

ବୁଢ଼ା ଜଣାଏ.. ପ୍ରକୃତରେ ଝିଅଟିର ଅବସ୍ଥା ଦେଖି ଦୁଃଖ ହେଉଛି । ମାତ୍ର ମୁଁ ନିରୁପାୟ । ମୋର ମାଲିକ ବଡ଼ କଞ୍ଜୁସ୍ । ତାଙ୍କୁ ଏସବୁ କଥା ଭଲ ଲାଗେ ନାହିଁ । ଆମେ ଯେଉଁ କୁଡ଼ିଆ ଖଣ୍ଡକରେ ରହିଛୁ.. ସେଥିରେ ମୁଣ୍ଡ ଗୁଞ୍ଜିବାକୁ ଜାଗା ନାହିଁ.. ଶୁଣୁଛି.. ମାଲିକ କୁଆଡ଼େ ତାଙ୍କର ମେଣ୍ଢା-ଗୋଠ, ଗୁହାଳ, ଜମିବାଡ଼ି-ସବୁ ବିକ୍ରି କରିଦେବେ..

ରୋଜାଲିଣ୍ଡ ପଚାରେ-କିଣୁଛି କିଏ ?

କୋରିନ୍ କହେ.. ମୋ ସାଙ୍ଗରେ ଯେଉଁ ତରୁଣଜଣକ ଥିଲେ ସେ ସବୁ କିଣିନେବେ ।

ରୋଜାଲିଣ୍ଡ ପ୍ରସ୍ତାବ ଦିଏ - ତା' ଅପେକ୍ଷା ତମେ ବରଂ ସବୁ ନିଜ ନାମରେ କିଣିନିଅ । ଟଙ୍କାପଇସା ଯାହା ଲାଗେ, ଆମେ ଦେବୁଁ ।

ସିଲିଆ ଆଗ୍ରହୀ ହୋଇ କହେ.. ଆମେ ତମର ଦରମା ବି ବଢ଼ାଇ ଦେବୁ । ଏ ଜାଗାଟି ଆମର ବେଶ୍ ପସନ୍ଦ ହୋଇଯାଇଚି ...

କୋରିନ୍ ରାଜି ହୁଏ । କହେ.. ଜାଗାଟା ଭଲକରି ଘୂରି ଦେଖ.. ସତରେ ଯଦି ଭଲ ଲାଗିଯାଏ, ତେବେ ଟଙ୍କା ନେଇ ସାଙ୍ଗେ ସାଙ୍ଗେ ତମମାନଙ୍କୁ କିଣେଇଦେବି । ମୁଁ ମେଣ୍ଢା-ଜଗାଳି ହୋଇ ରହିଯିବି..

ବଣ-ବାଟରେ ଅର୍ଲାଣ୍ଡୋ ଆଉ ଆଡାମ୍ ଦେଖା ପଡ଼ନ୍ତି । ବୁଢ଼ା ଆଡ଼ାମ ଭୋକ ଆଉ ଶୋଷରେ ଆଉଟି ପାଉଟି ହୋଇ ପଡ଼ିଲାଣି । ଆଉ ପାଦେ ଚାଲିବାର ଶକ୍ତି ତା'ର ନାହିଁ । ସେ ସେଇ ବାଟକଡ଼ରେ ଶୋଇ ପଡ଼େ । ଦୁର୍ବଳ କଣ୍ଠରେ କହେ..ସାନବାବୁ, ମୁଁ ଏଇଠି ରହିଲି.. ଆଉ ପାଦେ ଚାଲିବାର ଶକ୍ତି ମୋର ନାହିଁ ..

ଅର୍ଲାଣ୍ଡୋ ତାକୁ ସାହସ ଯୋଗାଇ କହେ.. ଆଉ ଟିକିଏ ଧୈର୍ଯ୍ୟ ଧର ଆଡାମ୍ । ମୁଁ ତମକୁ ମରିବାକୁ ଦେବି ନାହିଁ । ଗୋଟାଏ ଯେ କୌଣସି ଜନ୍ତୁ ମିଳିଗଲେ ଖାଇବା ବ୍ୟବସ୍ଥା ହୋଇଯିବ । ତମେ ଟିକିଏ ଅପେକ୍ଷା କର । ମୁଁ ଯେମିତି ହେଲେ କିଛି ଖାଇବାର ଯୋଗାଡ଼ କରି ନେଇ ଆସୁଛି । ନ ପାଇଲେ ତମକୁ ମରିବାର ଆଦେଶ ଦେବି ।

ତା'ପରେ କ'ଣ ଚିନ୍ତା କରି କହେ.. ଏ ବଣଟାରେ ତମକୁ ଏକୁଟିଆ ଛାଡ଼ି ମୁଁ ଯିବି କେମିତି ? ତମକୁ ବରଂ ବୋହିନେଇ ..

ନିର୍ବାସିତ ଡିଉକ୍ ତାଙ୍କର ପାରିଷଦ ନେଇ ଖାଇବା ପର୍ବ ଆରମ୍ଭ କରିଛନ୍ତି । ଏତିକି ବେଳେ ଉଦ୍‌ଭ୍ରାନ୍ତ ଭଳି ହାତରେ ଖୋଲା ତରବାରି ଧରି ସେଠାରେ ପହଞ୍ଚିଯାଏ ଅର୍ଲାଣ୍ଡୋ । ଧମକ ଦେଇ କହେ.. ଯିଏ ଯେଉଁ ଅବସ୍ଥାରେ ଅଛ, ସେମିତି ରହିଯାଅ.. ମୁଠାଏ ବି ଦାନା ମୁହଁକୁ ନେଇପାରିବ ନାହିଁ ।

ଡିଉକ୍ ମନଦୁଃଖ କରନ୍ତି । କହନ୍ତି- ଯୁବକ, ଜଣାଯାଉଛି ଅତିରିକ୍ତ ଦୁଃଖରେ ତମେ ସାଧାରଣ ଶିଷ୍ଟାଚାର ସୁଦ୍ଧା ଭୁଲିଯାଇଛ..

ଅର୍ଲାଣ୍ଡୋ କହେ..ଆପଣଙ୍କର ଅନୁମାନ ଠିକ୍ । ମୁଁ ସହରୀ ମଣିଷ । କିଛି ବଂଶ ଗୌରବ ବି ଅଛି । ମାତ୍ର ପରିସ୍ଥିତିରେ ପଡ଼ି ମୋ ମୁଣ୍ଡ ଯେମିତି ଗୋଳମାଳ ହୋଇଯାଇଛି ।

ଡିଉକ୍ ଏଥର କୋମଳ କଣ୍ଠରେ କହନ୍ତି.. କ'ଣ ଚାହଁ ? ଭଲ ବ୍ୟବହାର କଲେ ଆମେ ସମସ୍ତେ ତମ କଥା ମାନିବୁ ।

ଅର୍ଲାଣ୍ଡୋ ଜଣାଏ.. କ୍ଷୁଧାରେ କାତର ହୋଇ ପଡ଼ିଛି । ପ୍ରଥମେ କିଛି ଖାଇବାକୁ ମିଳିଲେ ବଞ୍ଚିଯିବି ।

ଡିଉକ୍ ଏଥର ତାକୁ ସ୍ୱାଗତ ଜଣାନ୍ତି.. କହନ୍ତି ... ଅସୁବିଧା କିଛି ନାହିଁ । ଆମ ସାଙ୍ଗରେ ବସିଯାଅ.. ଏଠି ସବୁ କିଛି ରହିଛି ।

ଅର୍ଲାଣ୍ଡୋ କହେ- ଜଣାଯାଉଛି ଆପଣମାନେ ଭଦ୍ର ପରିବାରର । ତେବେ ମୋର ସାଥୀ ଜଣେ ବୃଦ୍ଧ ଅନାହାରରେ ପ୍ରାୟ ମୃତ୍ୟୁ ମୁଖରେ । ତାକୁ ନ ଖୁଆଇଲେ ମୁଁ ଜଳ ଗ୍ରହଣ ସୁଦ୍ଧା କରିପାରିବି ନାହିଁ ..

ଡିଉକ୍ କହନ୍ତି ... ବେଶ୍, ତାଙ୍କୁ ବି ନେଇଆସ । ତମେମାନେ ନ ଫେରିବା ପର୍ଯ୍ୟନ୍ତ ଆମେ ବି ପାଣି ଟୋପାଏ ଛୁଇଁବୁ ନାହିଁ ।

ଅର୍ଲାଣ୍ଡୋ ଦ୍ରୁତ ଗତିରେ ଫେରିଯାଏ ।

ଡିଉକ୍ ଏଥର ତାଙ୍କର ବନ୍ଧୁ ଜ୍ୟାକ୍‌ସଙ୍କ ଆଡ଼କୁ ଅନାଇ କହନ୍ତି-ପୃଥିବୀରେ ଆମ ଅପେକ୍ଷା ବି ଅଧିକ ଦୁଃଖୀ ମଣିଷ ଅଛନ୍ତି ... ତା'ର ଗୋଟିଏ ନମୁନା ଦେଖିଲ ତ ?

ଜ୍ୟାକ୍‌ସ କହିଯାଏ.. ସାରା ଦୁନିଆଟା ହେଉଛି ଗୋଟିଏ ରଙ୍ଗମଞ୍ଚ -ପ୍ରତିଟି ମଣିଷ ହେଉଛନ୍ତି ଜଣେ ଜଣେ ଅଭିନେତା । ଜଣେ ଜଣେ ଭିନ୍ନ ଭିନ୍ନ ଭୂମିକାରେ ଅଭିନୟ କରିଯାଆନ୍ତି- ଜୀବନର ସାତଟି କାଳ ହେଉଛି ସାତଟି ଅଙ୍କ । ପ୍ରଥମେ ଶିଶୁ, ଦ୍ୱିତୀୟରେ ବାଳକ, ତୃତୀୟରେ ପ୍ରେମିକ, ଚତୁର୍ଥରେ ସୈନିକ, ପଞ୍ଚମରେ ବିଚାରକ, ଷଷ୍ଠରେ ବୃଦ୍ଧ ଆଉ ଶେଷ ଅଙ୍କରେ ମୃତ୍ୟୁ-ସବୁ ଶେଷ..

ଅର୍ଲାଣ୍ଡୋ ଆଡାମ୍‌କୁନେଇ ଫେରିଆସେ । ଡିଉକ୍ ସେମାନଙ୍କର ଆହାରର ବ୍ୟବସ୍ଥା କରି ଦିଅନ୍ତି । ଅର୍ଲାଣ୍ଡୋ ଆଡ଼କୁ ଅନାଇ କହନ୍ତି - ଯୁବକ, ତମକୁ ଦେଖି ମୋର ପ୍ରିୟ ବନ୍ଧୁ ସାର୍ ରୋଲାଣ୍ଡଙ୍କ କଥା ଖୁବ୍ ମନେ ପଡୁଛି । ତମେ କ'ଣ ତାଙ୍କର ପୁଅ ? ସତ କଥା କହିବ । ମୁଁ ହେଉଛି ରାଜ୍ୟଭ୍ରଷ୍ଟ, ଜଣେ ଡିଉକ୍ । ସବୁ କଥା ମୋତେ ବିସ୍ତାରିତ ଭାବରେ କହ ..

॥ ୪ ॥

ଅର୍ଲାଣ୍ଡୋର କୌଣସି ସନ୍ଧାନ ମିଳେ ନାହିଁ । ଫ୍ରେଡରିକ୍‌ଙ୍କ ଆଦେଶରେ ତା'ର ବଡ଼ଭାଇ ଅଲିଭର୍‌କୁ ଧରି ଅଣାଯାଏ । ଡିଉକ୍ ଆଦେଶ ଦିଅନ୍ତି -ଯେମିତି ହେଲେ ତମର ପଳାତକ ଭାଇକୁ ଖୋଜିଆଣ । ବର୍ଷେ ସମୟ ଦେଲି । ତା'ରି ଭିତରେ ସେ ଯଦି ଧରା ନ ପଡ଼େ ଆଉ ନିଜର ନିର୍ଦ୍ଦୋଷିତା ପ୍ରମାଣ କରି ନ ପାରେ; ତେବେ ତମର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯିବ ଆଉ କଠୋର ଶାସ୍ତିର ବ୍ୟବସ୍ଥା କରାଯିବ ।

ଅଲିଭର୍ ନିଜର ନିର୍ଦ୍ଦୋଷିତା ପ୍ରମାଣ କରିବାକୁ ଯାଏ । କହେ.. ମହାମାନ୍ୟ ସମ୍ରାଟ୍ ଆପଣ ବୋଧହୁଏ ଜାଣନ୍ତି ନାହିଁ ଯେ, ଏ ଭାଇଟି ସହିତ ମୋର ସମ୍ପର୍କ ଆଦୌ ଭଲ ନୁହେଁ.. ମୁଁ ତାକୁ ଘରୁ ବାହାର କରି ଦେଇଛି...

ଡିଉକ୍ ରାଗିଯାଇ କହନ୍ତି.. ତମେ ତ ତାହାହେଲେ ଜଣେ ନରାଧମ.. ତମର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଗଲା.. ଆଉ ତମକୁ ନିର୍ବାସନ ଦଣ୍ଡ ଦିଆଗଲା.. ଏଇ ମୁହୂର୍ତ୍ତରେ ଏଠୁ ବାହାରିଯାଅ...

ଆର୍ଡେନ୍- ଅରଣ୍ୟରେ ଅର୍ଲାଣ୍ଡୋର ଗୋଟିଏ ନୂଆ କାମ ଆରମ୍ଭ ହୋଇଛି.. କବିତା ଲେଖି ଗଛମାନଙ୍କରେ ଝୁଲାଇ ଦେଉଛି । ତା'ର ନମୁନା ଏମିତି..

ତମେ ମୋର ସାକ୍ଷୀ ହୋଇଥାଅ...

ଦେବୀ ତମେ, ତ୍ରିଦିବର ରାଣୀ, ସ୍ୱର୍ଗର ଲୁନା
ଆଉ ମର୍ତ୍ତ୍ୟର ଡାଏନା, ପାତାଳର ପ୍ରୋସର୍ପିନା
ରାତିର ସଙ୍ଗିନୀ ତମେ.. ଆଗୋ ଶେଫାଳିକା...
ସ୍ନିଗ୍ଧ ଆଉ ପବିତ୍ର ତମର ଦୃଷ୍ଟି ଫେରି ଥରେ ଦେଖ..
ଆଗୋ ରୋଜାଲିଣ୍ଡ.. ଏଇ ଅରଣ୍ୟର ବୃକ୍ଷରାଜି..
ପତ୍ରେ ପତ୍ରେ ତା'ର ଲେଖିଯିବି ମନର ଆବେଗ..
ଅରଣ୍ୟର ପଥଚାରୀ ସବୁ-ପଢ଼ି ମୁଗ୍ଧ ହେବେ ତୁମ ଗୁଣର ସୂଚିକା...

ଛୁଟିଚାଲ ଅର୍‌ଲାଣ୍ଡୋ..ଅରଣ୍ୟର ଗଛେ ଗଛେ..
ଲେଖିଯାଅ.. ସେଇ ଗୋଟିଏ ଅନନ୍ୟ ନାମ..
ରୋଜାଲିଣ୍ଡ.. ପ୍ରିୟା ରୋଜାଲିଣ୍ଡ..

ଛଦ୍ମବେଶୀ ରୋଜାଲିଣ୍ଡ ଆଉ ସିଲିଆ ଆଖିରେ ମଧ ଏସବୁ କବିତାରୁ କିଛି କିଛି ପଡ଼େ । ସିଲିଆ କହେ.. ଆଚ୍ଛା କହିଲୁ ଅପା, ଅରଣ୍ୟର ଏ ଗଛେ ଗଛେ ତୋ'ର ନାମରେ ଏଇ ଜୟ ପତାକା ଉଡ଼ାଉଥିବା ବ୍ୟକ୍ତିଟି କିଏ ?

ଛଦ୍ମ କୋପରେ ରୋଜାଲିଣ୍ଡ କହେ.. ଦୁନିଆରେ ଏଇ ନାମଟି ମୋର ଏକା ନୁହଁ.. ଆଉ ହୋଇଥିଲେ ବା ମୁଁ କେମିତି ଜାଣିବି କିଏ ସେ ?

ସିଲିଆ କହେ.. ଜାଣିପାରୁ ନାହୁଁ.. ଆହାହା.. ମୋତେ କିନ୍ତୁ ସେଇ ପୁରୁଷର ଗଳାରେ ତୋ' ଦେଇଥିବା ହାରଟି ଚକ୍‌ଚକ୍ ହୋଇ ଦେଖାଯାଉଛି । ଅର୍ଲାଣ୍ଡୋକୁ ତୁ ଏତେ ଶୀଘ୍ର ଭୁଲିଗଲୁ ?

ରୋଜାଲିଣ୍ଡ କହେ.. ତୁ ତାକୁ ଦେଖିଲୁ ନା କଣ ? କୋଉଠି ଦେଖିଲୁ ? ସେ କୋଉଠି ଅଛି, କ'ଣ କରୁଛି ? ତୋ' ସାଙ୍ଗରେ ଦେଖାହେଲା କେମିତି ? ଆଉ କେବେ ଦେଖା ହେବ ?

ସିଲିଆ ଗମ୍ଭୀର ହୋଇଯାଏ । କହେ.. ବାବା ମତେ ଟିକିଏ ନିଃଶ୍ୱାସ ନେବାକୁ ବି ସମୟ ଦେବୁ ନାହିଁ ? ଏକା ସାଙ୍ଗରେ ଏତେ ପ୍ରଶ୍ନ ?

ଅଧୀର ଆଗ୍ରହରେ ରୋଜାଲିଣ୍ଡ ପଚାରେ.. ମୋ ସୁନାଟା ପରା..ଯାହା ଦେଖିଲୁ ମୋତେ କହିଯାଅ । ଆଚ୍ଛା ଅର୍ଲାଣ୍ଡୋ କ'ଣ ଜାଣେ ଯେ, ମୁଁ ପୁରୁଷ ବେଶରେ ଏଇ ଅରଣ୍ୟରେ ରହିଛି ? ସେ କ'ଣ ସେଦିନ ଭଳି ସୁସ୍ଥ ଆଉ ସୁନ୍ଦର ଦେଖାଯାଉଛି ?

ସିଲିଆ କହିଲା.. ତୋ'ର ମନର ମଣିଷ ଯଦି ଏଇ ଅରଣ୍ୟରେ ନ ଥାନ୍ତା, ତୋ ନାଁରେ ଏତେ କବିତା ଗଛେ ଗଛେ କିଏ ଲେଖିବୁଲନ୍ତା ? ମୁଁ ତ ଏଇ ସେଦିନ ତାକୁ ଭେଟିଲି.. ଗୋଟାଏ ଗଛତଳେ ଶୋଇଥିଲା.. ଦେହରେ ତା'ର ଥିଲା ଶିକାରୀର ପୋଷାକ.. କେମିତି ଦେଖା ଯାଉଥିଲା ? ଦେଖାଯାଉଥିଲା ସତେଯେମିତି ସ୍ୱର୍ଗଚ୍ୟୁତ କୌଣସି...

ଏତିକିବେଳେ ଦୂରରୁ ଦେଖାଯାଏ, ଅର୍ଲାଣ୍ଡୋ ଆଉ ଜାକ୍‌ସ କଥାବାର୍ତ୍ତା ହୋଇ ସେଇ ଆଡ଼କୁ ଆସୁଛନ୍ତି । ଦୁଇ ଭଉଣୀ ଗୋଟିଏ ଗଛର ଆଢୁଆଳରେ ଲୁଚିଯାଆନ୍ତି ।

ଜାକ୍‌ସ ନିକଟରେ ଅର୍ଲାଣ୍ଡୋ ସ୍ୱୀକାର କରେ ଯେ, ସେ ରୋଜାଲିଣ୍ଡକୁ ଭଲପାଏ । ତା'ରି ଉଦ୍ଦେଶ୍ୟରେ କବିତା ଲେଖି ଗଛରେ ଝୁଲାଇ ରଖୁଛି । ଏଥିରେ ତାକୁ ଶାନ୍ତି ମିଳୁଛି । ଜାକ୍‌ସ ବିଦାୟ ନେଇ ଚାଲିଯାଏ ।

ଗଛ ଆଢୁଆଳରୁ ଦୁଇଭଉଣୀ ବାହାରି ଆସନ୍ତି । ଛଦ୍ମବେଶରେ ଥିବାରୁ ଅର୍ଲାଣ୍ଡୋ ସେମାନଙ୍କୁ ଚିହ୍ନିପାରେ ନାହିଁ । ତେବେ ରୋଜାଲିଣ୍ଡର କଥାବାର୍ତ୍ତାରେ ସେ ମୁଗ୍ଧ ହୋଇଯାଏ । ସେମାନେ ନାନା ବିଷୟରେ ମତ ବିନିମୟ କରନ୍ତି ।

ଶେଷରେ ଅର୍ଲାଣ୍ଡୋ ରୋଜାଲିଣ୍ଡକୁ ପଚାରେ, ବାଳକ, ତମର ଘର କେଉଁଠି ? ତମେ କ'ଣ ଏଇ ଅରଣ୍ୟରେ ଜନ୍ମ ହୋଇଛ ?

ରୋଜାଲିଣ୍ଡ ରହସ୍ୟମୟ ଭାବରେ ଉତ୍ତର ଦିଏ.. ଆପାତତଃ ମୋର ଏଇ ଭଉଣୀ ସାଙ୍ଗରେ ଏଇଠି ରହୁଛି । ଆଉ ମୋର ଜନ୍ମସ୍ଥାନ କଥା ପଚାରିଲ ନା ? ଏଇ ଠେକୁଆଟାକୁ ଦେଖୁଛ ନା ? ଯେଉଁଠି ତା'ର ଜନ୍ମ, ସେଇ ତା'ର ଘର.. ମୋର ବି ସେମିତି -

ରୋଜାଲିଣ୍ଡର କଥା କହିବାର ଭଙ୍ଗୀ ଅର୍ଲାଣ୍ଡୋକୁ ମୁଗ୍ଧ କରେ । ସେ ପଚାରେ.. ଏଇ ଜନମାନବହୀନ ଅରଣ୍ୟରେ ଥାଇ ଏଡ଼େ ସୁନ୍ଦର କଥା କହିବାକୁ ଶିଖିଲ କେମିତି ?

ରୋଜାଲିଣ୍ଡ ଉତ୍ତର ଦିଏ-ଏଭଳି ପ୍ରଶ୍ନ ଅନେକେ କରନ୍ତି । ପ୍ରକୃତରେ ମୋର ଜଣେ କକା-ସେ ଲୋକାଳୟରେ ରହୁଥିଲେ । ମୋର ଯାହା କିଛି ଶିକ୍ଷା ତାଙ୍କରି ପାଖରୁ । ନାରୀ ଜାତି ଉପରେ ତାଙ୍କର ଭାରି ରାଗ.. ଭାଗ୍ୟକୁ ମୁଁ ନାରୀ ନୁହେଁ ନ ହେଲେ..

ଅର୍ଲାଣ୍ଡୋ କହେ.. ନାରୀକୁ ଘୃଣା କରନ୍ତି ମାନେ ତାଙ୍କର କେଉଁଠି କିଛି ବୁଝିବାରେ ଭୁଲ୍ ରହିଯାଇଛି । ନାରୀ ଯେ ପୃଥିବୀର ସୁନ୍ଦରତମ ସୃଷ୍ଟି ଏକଥା କେହି ତାଙ୍କୁ କହି ନାହିଁ ..

ରୋଜାଲିଣ୍ଡ ଉତ୍ତର ଦିଏ.. ହୁଏତ ସୁନ୍ଦରକୁ କୁତ୍ସିତ କରି ଦେଖିବା ତାଙ୍କର ପ୍ରକୃତି । ପୃଥିବୀରେ ଏମିତି କେତେ ପ୍ରକାରର ମଣିଷ ଅଛନ୍ତି.. ଏଇ ଦେଖନା, ଏଇ ଜଙ୍ଗଲରେ ବି ଏମିତି ଜଣେ ମଣିଷ ରହିଛି । ମୋର ସବୁ ଗଛଗୁଡ଼ାକୁ ନଷ୍ଟ କରିଦେବା ହେଉଛି ତା'ର ପ୍ରକୃତି । ବୁଲି ବୁଲି ସବୁ ଗଛରେ ଗୋଟାଏ ନାଆଁ ଖୋଳିଚାଲିଛି- ଯୁଆଡ଼େ ଦେଖ.. ରୋଜାଲିଣ୍ଡ ଆଉ ରୋଜାଲିଣ୍ଡ-କବିତା ଲେଖି ଲେଖି ଗଛମାନଙ୍କରେ ଟାଙ୍ଗି ଦେଉଛି.. ରୋଜାଲିଣ୍ଡ ସତେଯେମିତି କୋଉ ଦେବୀ । ନିଶ୍ଚେ ପାଗଳଟାଏ । ଥରେ ଯଦି ତା'ର ଦେଖା ପାଆନ୍ତି ନା.. ଏମିତି ପାନେ ଦିଅନ୍ତି ତା'ର ପ୍ରେମରୋଗ ଛାଡ଼ି ପଳାନ୍ତା..

ଅର୍ଲାଣ୍ଡୋ ଗମ୍ଭୀର ହୋଇ କହେ- ମୁଁ ହେଉଛି ସେଇ ପାଗଳ । ଯାହା କହିବାର କଥା ମୋତେ କହ..

ରୋଜାଲିଣ୍ଡ ରସିକତା କରି କହେ.. କକାଙ୍କଠୁଁ ମୁଁ ସଚ୍ଚା ପ୍ରେମିକର ଲକ୍ଷଣ ସମ୍ପର୍କରେ କେତେଟା କଥା ଶୁଣିଛି.. ତମଠି ତ ସେଥିରୁ ଗୋଟିଏ ହେଲେ ଦେଖିବାକୁ ପାଉ ନାହିଁ ।

ଅର୍ଲାଣ୍ଡୋ ଜାଣିବାକୁ ଚାହେଁ.. କ'ଣ ସବୁ ସେଇ ଲକ୍ଷଣ ?

ରୋଜାଲିଣ୍ଡ କହିଯାଏ- ଏଇ ଧରି ଶୁଖିଲା ଗାଲ, କୋଟରଗତ ଆଖିତଳେ କଳା ଦାଗ.. ଦଶ କଥା ପଚାରିଲେ ପଦେ ଜବାବ୍ ଦେବା.. ଜୁଲୁ ଜୁଲୁ କରି ଚାହିଁବା, ଦାଢ଼ି ଛାଡ଼ିବା.. ଏମିତି କେତେ କଥା ତ ସେ କହିଥିଲେ । ସେଥିରୁ ଗୋଟିଏ ବି ଲକ୍ଷଣ ତମ ପାଖରେ ଦେଖିବାକୁ ମିଳୁ ନାହିଁ । ଏ ସବୁ ପାଇଁ ଅବଶ୍ୟ ତମକୁ କ୍ଷମା କରାଯାଇପାରେ । ଦାଢ଼ିଟାତ ଏପର୍ଯ୍ୟନ୍ତ ତମର ଭଲ ଭାବେ ଉଠି ନାହିଁ । ବେଶଭୂଷା ଆଡ଼େ ତମର ବେଶ୍ ଧ୍ୟାନ ରହିଛି । ଦେଖିଶୁଣି ବୁଝାପଡୁଛି, ନିଜ ବିଷୟରେ ତମେ ବେଶ୍ ସଚେତନ । ତମେ ପୁଣି ଅନ୍ୟକୁ ଭଲ ପାଇବ କ'ଣ ?

ଅର୍ଲାଣ୍ଡୋ ଦୀର୍ଘଶ୍ୱାସ ପକାଏ.. କହେ.. ଜୀବନଠୁଁ ଅଧିକ ଜଣକୁ ଭଲପାଏ.. ଏଇ କଥାଟା ଯଦି ମୁଁ ତମକୁ ବୁଝାଇ ପାରିଥାଆନ୍ତି ।

ରୋଜାଲିଣ୍ଡ ହସେ.. ଉତ୍ତର ଦିଏ.. ତମ କଥା ଖାଲିଟାରେ ବା ମୁଁ ବିଶ୍ୱାସ କରିବି କାହିଁକି ? ଯାହାକୁ ତମେ ଭଲ ପାଅ.. ଯଦି ପାରିବ ତେବେ ତାକୁ ଯାଇ ଏଇ କଥା ବିଶ୍ୱାସ କରାଅ.. ହୁଏତ ସେ ଗ୍ରହଣ କରିନେଇପାରେ । ଝିଅମାନେ ସାଧାରଣତଃ ମନର କଥା ସହଜରେ ପାଟିରେ ପ୍ରକାଶ କରନ୍ତି ନାହିଁ । ହୁଏତ ସେ କରିପାରେ । ଗୋଟାଏ କଥା ଜାଣିବାକୁ ଭାରି ମନ ହେଉଛି.. ସତରେ କ'ଣ ତମେ ରୋଜାଲିଣ୍ଡ ପାଇଁ ଏଇ ସବୁ କବିତା ଲେଖିଛ ?

ଅର୍ଲାଣ୍ଡୋ କହେ.. କହିଛି ତ ମୁଁ ସେଇ ହତଭାଗ୍ୟ.. ବିଶ୍ୱାସ କରିବା ନ କରିବା ତମ ଉପରେ..

ରୋଜାଲିଣ୍ଡ ଜିଜ୍ଞାସା କରେ.. ତମ କବିତାର ଭାଷାରେ ସତେ କ'ଣ ତମେ ପ୍ରେମରେ ବିଭୋର ? ଦଣ୍ଡ ପାଇଲେ ବି ଏଇ ରୋଗ ଭଲ ହୁଏ ନାହିଁ । କାରଣ ଯିଏ ଶାସ୍ତି ଦିଅନ୍ତି ସେଇ ହୁଏତ ଏ ରୋଗଗ୍ରସ୍ତ ହୋଇଯାଆନ୍ତି..

ଅର୍ଲାଣ୍ଡୋ ସାମାନ୍ୟ ହସେ । କହେ.. ତମ କଥାରୁ ଜଣାଯାଉଛି, ତମେ ନିଶ୍ଚୟ କାହାର ଏଇ ଧରଣର ରୋଗ ଭଲ କରିଛ...

-ଜଣକର ତ ଅନ୍ତତଃ ଭଲ କରିଛି- ରୋଜାଲିଣ୍ଡ ଉତ୍ତର ଦିଏ । ସେଇ ନିର୍ବୋଧଟି ମୋତେ ହିଁ ତା'ର ପ୍ରେମିକା ବୋଲି ଧରି ନେଇଥିଲା । ମୁଁ ବି ତା'ର ଆହ୍ୱାନର ସମର୍ଥନ କରୁଥିଲି । କେତେବେଳେ ଉଚ୍ଛଳ ତ କେତେବେଳେ ଉଦାସୀନ । ମୋର ଏଇ ଖାମଖିଆଲି ପଣ ଦେଖି ବିଚରାର ପ୍ରେମର ଜୁଆରରେ ଧୀରେ ଧୀରେ ଭଟ୍ଟା ପଡ଼ିଆସିଲା । ଦିନ କେଇଟାରେ ପୂରା ସୁସ୍ଥ । ତମେ ଯଦି ଚାହଁ, ତେବେ ଏଇ ଉପାୟରେ ତମକୁ ବି ସୁସ୍ଥ କରିପାରେ ।

ଅର୍ଲାଣ୍ଡୋ ଆଗ୍ରହରେ କହେ.. ତମର ଠିକଣାଟା କୁହ.. ମୁଁ ପ୍ରତିଦିନ ଆସିବି.. ରୋଜାଲିଣ୍ଡ ଉତ୍ତର ଦିଏ.. ତେବେ ମୋ ସାଙ୍ଗରେ ଆସ । ଦୁଇଜଣ ଦୁହିଁଙ୍କର ରହିବା ଜାଗା ଚିହ୍ନିନେବା । ଆଜିଠୁଁ ତମେ ମୋତେ ରୋଜାଲିଣ୍ଡ ବୋଲି ଡାକିବ..

ଏତେବେଳଯାଏ ସିଲିଆ ଦୁହିଁଙ୍କର କଥା ନୀରବରେ ଶୁଣୁଥିଲା । ହସକୁ ଚାପି ରଖିବା କ୍ରମେ ତା' ପକ୍ଷରେ କଷ୍ଟକର ହୋଇ ଉଠୁଥିଲା । ରୋଜାଲିଣ୍ଡ ଚକ୍ଷୁର ଇସାରାରେ ତାକୁ ସତର୍କ କରିଦିଏ । ତାଙ୍କ ସାଙ୍ଗରେ ଆସିବାକୁ ନିର୍ଦ୍ଦେଶ ଦିଏ ।

ଦିନକ ପରେ ।

ରୋଜାଲିଣ୍ଡ ସିଲିଆକୁ ପଚାରେ.. ଅର୍ଲାଣ୍ଡୋର ଆଜି ସକାଳେ ଆସିବାର କଥା । କାହିଁ, ସେ ତ ଏ ପର୍ଯ୍ୟନ୍ତ ଆସିଲା ନାହିଁ..

ସିଲିଆ ଭ୍ରୂକୁଟୀ କରେ । କହେ.. ଏଇଥିରୁ ବୁଝ ତା'ର ପ୍ରେମର ଗଭୀରତା ! ମୋର ତ ମନେ ହେଉଛି ଲୋକଟାର ଛାତି ଭିତରଟା ପୂରା ଫାଙ୍କା.. ଠିକ୍ ଶୂନ୍ୟ ମଦବୋତଲ ପରି.. ନ ହେଲେ ପୋକରା ବାଦାମ ଭଳି.. ଏଇ ଲୋକଟି ପୁଣି ତୋ' ବାପାଙ୍କର ନିତ୍ୟ ସଙ୍ଗୀ ! କ'ଣ ଦେଖି ବଡ଼ବାପା ଯେ...

ରୋଜାଲିଣ୍ଡ ଉତ୍ତର ଦିଏ.. ମନେ ପଡ଼ିଲା.. ଡ୍ୟୁକ୍‌ଙ୍କ ସାଙ୍ଗରେ କାଲି ଦେଖା ହୋଇଗଲା । ଅନେକ କଥାବାର୍ତ୍ତା ହେଲା । ମୋ ବାପା-ମାଙ୍କର ପରିଚୟ ଜାଣିବାକୁ ଚାହିଁଲେ । ଇସାରାରେ ଜଣାଇଲି.. ସେମାନେ ଠିକ୍ ଆପଣଙ୍କ ପରି ଭଦ୍ର, ନିଷ୍କପଟ ଆଉ ସରଳ । ଦୁନିଆର ହାଟରେ ତେଣୁ ସବୁବେଳେ ଠକି ଯାଆନ୍ତି..

ଡିଉକ୍ ମନଦେଇ ମୋ କଥା ସବୁ ଶୁଣିଲେ । ତା' ପରେ ହସି ହସି ମୋଠୁଁ ବିଦାୟ ନେଇ ଚାଲିଗଲେ । ବେଳେବେଳେ ଦେଖାକଲେ ଖୁସି ହେବେ ବୋଲି କହିଛନ୍ତି ।

ଅର୍ଲାଣ୍ଡୋ ବି ସେଠି ଥିଲା ।

ସିଲିଆ ଥଟ୍ଟା କରି କହେ.. ସେ ତ ଜଣେ ମହାପୁରୁଷ । ତାଙ୍କର ସବୁ ସୁନ୍ଦର । କଥା ଦେବାରେ ଯେମିତି ଧୁରନ୍ଧର, ନ ରଖିବାରେ ବି ସେମିତି । ଜାଣିଲୁ ଅପା, ଜ୍ଞାନୀମାନେ କହିଛନ୍ତି.. ଯୌବନ ଏଭଳି ଏକ ସମୟ.. ଯାହା ମଣିଷର ବୁଦ୍ଧିକୁ ଦନ୍ଥଡ଼ା କରିଦିଏ.. ସେଇ ବୁଦ୍ଧିରେ ସବୁ କିଛି ତାକୁ ଦେଖାଯାଏ ସୁନ୍ଦର..

ସେପଟେ ପୁରୁଷବେଶୀ ରୋଜାଲିଣ୍ଡକୁ ନେଇ ଆଉ ଏକ ପ୍ରେମ ତ୍ରିଭୁଜ ସୃଷ୍ଟି ହୋଇଛି । ବିଚାରୀ ରୋଜାଲିଣ୍ଡ ଏସବୁ କିଛି ଜାଣି ନାହିଁ । କିବି ନାମକ ଜଣେ ମେଷପାଳିକା ରୋଜାଲିଣ୍ଡକୁ ପୁରୁଷ ଭାବି ତାକୁ ଦେଖିବା ମାତ୍ରେ ତା' ପ୍ରେମରେ ପଡ଼ିଯାଇଛି । କିନ୍ତୁ ଅସୁବିଧା ହେଉଛି ସିଲଭିୟାସ୍ ନାମକ ଜଣେ ମେଣ୍ଢା ଜଗୁଆଳି ଯୁବକ କିବି ପ୍ରତି ଆସକ୍ତ । କିବି ତାକୁ ଧରାଛୁଆଁ ଦେଉ ନାହିଁ । ତା'ର ମନ ବନ୍ଧାପଡ଼ିଛି ରୋଜାଲିଣ୍ଡ ପାଖରେ । ସିଲଭିୟାସ୍ ବାରମ୍ବାର ପ୍ରତ୍ୟାଖ୍ୟାତ ହେବା ଫଳରେ ନିରାଶ ହୁଏ । ନୈରାଶ୍ୟରୁ ଆସେ କ୍ରୋଧ । ସେ ମନେ ମନେ ଠିକ୍ କରେ ଶେଷଥର ପାଇଁ କିବିକୁ ପଚାରିବ । ପଚାରିବ ସେ ତାକୁ ଭଲପାଏ କି ନାହିଁ । ଯଦି ଭଲ ପାଏ

ନାହିଁ, ତେବେ ସେଇ କଥା ସେ ସ୍ପଷ୍ଟ ଭାବରେ କହିଦେଉ । ଏମିତି କଦର୍ଯ୍ୟ ବ୍ୟବହାର କରିବାର କୌଣସି ଅଧିକାର ତା'ର ନାହିଁ ।

କିବି ସହିତ ତା'ର ସାକ୍ଷାତ୍ ହେଲା । କିବି ଖୋଲାଖୋଲି କହିଦେଲା ଯେ, ସେ ତାକୁ ଘୃଣା କରେ । ପ୍ରେମ ଆସେ ମନରୁ । ତା'ର ମନ ସିଲଭିୟାସ୍ ପ୍ରତି ବିମୁଖ । ସିଲଭିୟାସ୍ ତା' ନାମରେ ଏଣୁ ତେଣୁ କଥା କହି ବୁଲୁଥିବାର ତା କାନରେ ପଡ଼ିଛି । ସେ ତାକୁ ସାବଧାନ କରିଦେଉଛି । ଏହାର ପରିଣାମ ଭଲ ହେବ ନାହିଁ ।

ସିଲଭିୟାସ୍ ତଥାପି ଆଶା ଛାଡ଼େ ନାହିଁ । ସେ ଅନୁନୟ ବିନୟ କରି କିବିର ମନ ବଦଳାଇବାକୁ ଚେଷ୍ଟା କରେ । ତା' ପ୍ରତି ଏତେ ନିଷ୍ଠୁର ନ ହେବାକୁ କରୁଣ କଣ୍ଠରେ ପ୍ରାର୍ଥନା କରେ ।

କିବିର ମନ କିନ୍ତୁ ବଦଳେ ନାହିଁ । ସେ ତାକୁ ତା' ସହିତ ଆଉ ଦେଖାସାକ୍ଷାତ୍ ନ କରିବାକୁ ଜଣାଇଦିଏ । ରୂଢ଼ କଣ୍ଠରେ କହେ.. ଯେତେ ପାରୁଛ ମୋତେ ଘୃଣାକର । ମୁଁ ମଧ ତମର ଦୟାର ପାତ୍ରୀ ହେବାକୁ ଚାହେଁ ନାହିଁ ।

ଯୁବକବେଶୀ ରୋଜାଲିଣ୍ଡ ତାକୁ ନେଇ ଏ ଯେଉଁ ମିଥ୍ୟା କୁହେଳିକା ସୃଷ୍ଟି ହୋଇଛି, ତହିଁରେ ବେଶ୍ ଆମୋଦିତ ହୁଏ । ତେବେ ସେ ଘଟଣାକୁ ଆଉ ଆଗକୁ ବଢ଼ାଇବାକୁ ଚାହେଁ ନାହିଁ । କୌଣସିମତେ କିବି ମନରେ ତା' ପ୍ରତି ବିତୃଷ୍ଣା ସୃଷ୍ଟି କରାଇବାକୁ କହେ.. ମୁଁ ସ୍ପଷ୍ଟ କହିଦେଉଛି ମୋ ଆଖିରେ ତମର ସୌନ୍ଦର୍ଯ୍ୟର କୌଣସି ମୂଲ୍ୟ ନାହିଁ । ମୁଁ ତମକୁ ଭଲ ପାଏ ନାହିଁ କେବେ ବି ଭଲ ପାଇପାରିବି ନାହିଁ । ତମର ଏତେ ଅହଙ୍କାର କାହିଁକି ? କାହିଁକି ବା ତମେ ତମର ଏଇ ପ୍ରେମିକଟି ପ୍ରତି ଏତେ ନିଷ୍ଠୁର ବ୍ୟବହାର କରୁଛ ? ମୁଁ ତମକୁ ଉପଦେଶ ଦେଉଛି, ତମେ ବରଂ ତା' ସହିତ ଭଲ ବ୍ୟବହାର କର । ପ୍ରେମାସ୍ପଦକୁ ଯେଉଁ ନାରୀ ଖାଲି ହାତରେ ଫେରାଇ ଦିଏ, ସେ ହେଉଛି ନାରୀ କୁଳର କଳଙ୍କ । ଯାଅ, ତାକୁ ଭଲ ପାଇବାକୁ ଚେଷ୍ଟା କର.. ତାକୁ ପାଖକୁ ଡାକ.. ଈଶ୍ୱର ତମର ମଙ୍ଗଳ କରିବେ.. ହାତ ଯୋଡୁଛି ମୋତେ ଏଇ ଗୋଲକ ଧନ୍ଦାରୁ ମୁକ୍ତି ଦିଅ..

॥ ୫ ॥

ବିଳମ୍ବରେ ରୋଜାଲିଣ୍ଡ ସହିତ ଅର୍ଲାଣ୍ଡୋର ଦେଖାହୁଏ । କର୍ମବ୍ୟସ୍ତ ରହିଯିବାରୁ ଠିକ୍ ସମୟରେ ତା' ସହିତ ଦେଖା କରିପାରି ନାହିଁ ବୋଲି କ୍ଷମା ମାଗେ ।

ରୋଜାଲିଣ୍ଡ କପଟ କ୍ରୋଧରେ ତାକୁ କହେ.. କଥା ଦେଇ କଥା ନ ରଖିବାଟା ସତ୍-ପ୍ରେମିକର ଲକ୍ଷଣ ନୁହେଁ ଅର୍ଲାଣ୍ଡୋ । ତା'ର ଏକମାତ୍ର ଅର୍ଥ ହେଉଛି ଏ ପ୍ରେମରେ କେଉଁଠି ଗୋଟାଏ ଫାଙ୍କ ରହିଯାଇଛି- ଗଭୀରତା ନାହିଁ ।

ଅର୍ଲାଣ୍ଡୋ ତା'ର ତ୍ରୁଟି ସ୍ୱୀକାର କରିନିଏ । ଏଇ ପ୍ରଥମ ଅପରାଧକୁ ଭୁଲିଯିବା ପାଇଁ ନିବେଦନ କରେ ।

ରୋଜାଲିଣ୍ଡ ଅଭିମାନ କରେ । କହେ .. ଦୁଇଟି ପ୍ରେମାକୁଳ ଆଖିର ବ୍ୟାକୁଳ ପ୍ରତୀକ୍ଷାକୁ ଯିଏ ବୁଝି ନ ପାରିଲା.. ତା ସହିତ ସମ୍ପର୍କ ରଖିବାକୁ ମୋର କୌଣସି ଆଗ୍ରହ ନାହିଁ ।

ଅର୍ଲାଣ୍ଡୋ ଦୁଃଖିତ ହୁଏ । କହେ.. ତମେ ମୋର ରୋଜାଲିଣ୍ଡ- ମୋର ଜୀବନ.. ତମେ କଦାପି ମୋ ପ୍ରତି ଏତେ ନିଷ୍ଠୁର ହୋଇପାରିବ ନାହିଁ । ଥରେ ମୋର ଏଇ ଆଖିକୁ ଚାହଁ.. ତା ଭିତରେ ତମପାଇଁ ଅୟୁତ ଯୁଗର ଯେଉଁ ପ୍ରତ୍ୟାଶା ଠୁଳ ହୋଇ ରହିଛି, ବୁଝିପାରିବ, ସେତେବେଳେ ତମେ ମୋତେ ବୁଝିପାରିବ.. ତମେ ମୋର ଚିନ୍ତାରେ, କାର୍ଯ୍ୟରେ ଏଭଳିକି ସ୍ୱପ୍ନରେ ସୁଦ୍ଧା କିଭଳି ମିଶିରହିଛ ତାହା ଅନୁଭବ କରିପାରିବ ରୋଜାଲିଣ୍ଡ...

ରୋଜାଲିଣ୍ଡ କହେ.. ସତରେ କ'ଣ ମୁଁ ତମର ସେଇ ରୋଜାଲିଣ୍ଡ ?

ପାଖକେ ନୀରବରେ ଠିଆ ହୋଇ ସିଲିଆ ଏଇ ବିଚିତ୍ର ପ୍ରେମଲୀଳା ଦେଖିଥିଲା । ହଠାତ୍ କହିଉଠେ.. ପ୍ରକୃତ ରୋଜାଲିଣ୍ଡ କିନ୍ତୁ ଆଉ ଜଣେ । ସେ ହୁଏତ ତୋଠୁଁ ଅଧିକ ସୁନ୍ଦରୀ । ଅର୍ଲାଣ୍ଡୋ କେବଳ ତୋତେ ସେଇ ନାମରେ ଡାକି କିଛି ଆନନ୍ଦ ପାଉଛି । ହେଲେ ତୋ'ର ଭୁଲିଯିବା ଉଚିତ ନୁହେଁ ଯେ, ଦୁଧର ସ୍ୱାଦ ଦହିରେ ମେଣ୍ଟେ ନାହିଁ..

ରୋଜାଲିଣ୍ଡ ଏ କଥାରେ କାନ ଦିଏ ନାହିଁ । ତା'ର ତୃଷିତ ମନ ସତେ ଯେମିତି ବାରମ୍ବାର ଅର୍ଲାଣ୍ଡୋର ସେଇ ରୋମାଞ୍ଚଭରା ଡାକ ଶୁଣିବାକୁ ଅପେକ୍ଷା କରିଛି । ସେ ଅର୍ଲାଣ୍ଡୋ ଆଡ଼େ ଅନାଇ କହେ, ତମ କଥାରୁ ହିଁ ତମ ପ୍ରେମର ପରିଚୟ ମିଳିବ । ଆହୁରି ଏଇସବୁ କଥା କହିଯାଅ, ମୋ ମନ ବର୍ତ୍ତମାନ ବେଶ୍ ଖୁସି ଅଛି । ଆଶା କରୁଛି ତମର ସମସ୍ତ ଦାବିକୁ ମୁଁ ମେଣ୍ଟାଇ ବି ଦେଇପାରେ । ଆଚ୍ଛା କହିଲ, ସତକୁ ସତ ମୁଁ ଯଦି ତମର ସେଇ ରୋଜାଲିଣ୍ଡ ହୋଇଯାଏ ତେବେ ତମେ କ'ଣ କରିବ ?

ଅର୍ଲାଣ୍ଡୋ କହେ ପ୍ରଥମେ ମୋ ପ୍ରେମର ସ୍ମାରକୀ ସ୍ୱରୂପ ତମର ଗାଲରେ ମୋର ସ୍ନେହର ମୋହର ଆଙ୍କିଦେବି ।

ରୋଜାଲିଣ୍ଡ କହେ, ଯେତେବେଳେ ସବୁକଥା ଶେଷ ହୋଇଯିବ ସେତେବେଳେ ସେଇ କାମଟିକୁ କର । ବର୍ତ୍ତମାନ ତମର ପ୍ରେମାସ୍ପଦା- ଅର୍ଥାତ୍ ଏଇ ମୁଁ ତମର ପ୍ରେମର ଦାବି ସମ୍ପର୍କରେ ଅନେକ କଥା ଶୁଣିବାକୁ ଚାହେଁ । ମୁଁ କଣ ସତରେ ତମର ରୋଜାଲିଣ୍ଡ ନୁହେଁ । ତମ ମନ କ'ଣ କହୁଛି ?

ଅର୍ଲାଣ୍ଡୋ ଉତ୍ତର ଦିଏ... ମନ ତ ସବୁବେଳେ ସେହି ବିଶ୍ୱାସରେ ନିର୍ବେଦ ହୋଇ ରହିଛି । ସେଇଥିପାଇଁ ମନ ଖୋଲି ରୋଜାଲିଣ୍ଡ ସମ୍ପର୍କରେ ମୋର ଅନୁଭବକୁ ତମ ଆଗରେ ଖୋଲି ଦିଏ ...

ରୋଜାଲିଣ୍ଡ କପଟ ଅଭିମାନ ଦେଖାଇ କୁହେ ଏଇ କଥା ତାହା ହେଲେ ?

-ମୋ କଥା ତେବେ ଶୁଣିନିଅ । ଏଇ ଅଭିନୟ ମତେ ଆଉ ଭଲ ଲାଗୁ ନାହିଁ । ମୁଁ ତମକୁ ଚାହେଁ ନାହିଁ ।

ଅର୍ଲାଣ୍ଡୋର ଦୀର୍ଘ ଶ୍ୱାସ ବାହାରିଯାଏ । ଦୁଃଖ ପୂର୍ଣ୍ଣ କଣ୍ଠରେ ସେ କହେ ... ତେବେ ମୋର ମୃତ୍ୟୁର ସମୟ ଯେ ନିକଟେଇ ଆସୁଛି, ଏଇ କଥାଟା ଶୁଣିଥାଅ ..

ରୋଜାଲିଣ୍ଡ ଭ୍ରୂଲତା ନଚାଇ ଉତ୍ତର ଦିଏ ... ଈଶ୍ୱର ତମକୁ ରକ୍ଷା କରନ୍ତୁ । ମରିବା ବଞ୍ଚିବା କ'ଣ କାହା ହାତରେ ଅଛି ? ନା ନିଜେ କିଏ କେବେ ନିଜକୁ ମାରିପାରେ ? ସୃଷ୍ଟିର ଆରମ୍ଭରୁ ଅନ୍ତତଃ ପ୍ରେମ ପାଇଁ ଏ ପର୍ଯ୍ୟନ୍ତ କେହି ନିଜକୁ ଶେଷ କରି ଦେଇଥିବାର ଦୃଷ୍ଟାନ୍ତ ନାହିଁ । ପୂର୍ବର ଇତିହାସକାରମାନେ ଏ ବିଷୟରେ ଯାହା ଲେଖିଯାଇଛନ୍ତି, ସେ ସବୁ ତାହା ମିଛ । ଏକମାତ୍ର ସତ ହେଉଛି, ପ୍ରେମ ପାଇଁ କେହି କେବେ ମରି ନାହାନ୍ତି..

ଅର୍ଲାଣ୍ଡୋ ଏଥର ରୋଜାଲିଣ୍ଡ ଆଡ଼କୁ ଅନାଇ କହେ ତମେ ଯଦି ପ୍ରକୃତରେ ମୋତେ ଭଲ ପାଉଥାଅ ରୋଜାଲିଣ୍ଡ, ତେବେ ଆସ ଆମେ ବିବାହ କରିବା ।

ରୋଜାଲିଣ୍ଡ ସିଲିଆ ଆଡ଼କୁ ଅନାଏ । ତାକୁ କହେ- ତୁ ତେବେ ପାଦ୍ରି ହୋଇ ଆମର ବିବାହ କରିଦେ । ତା'ପରେ ସେ ଅର୍ଲାଣ୍ଡୋ ଆଡ଼କୁ ଅନାଏ । ତାକୁ କହେ ବିବାହ କରିବା ପୂର୍ବରୁ ତମର ହାତଟା ମୋ ଆଡ଼କୁ ବଢ଼ାଇ ଦିଅ ତ ଦେଖି, ମୁଁ ପ୍ରଥମେ ମୋ ନିଜର ଭବିଷ୍ୟତ୍ ଟା ଦେଖି ନିଏଁ ।

ବାଧ ଛାତ୍ରଟିଏ ଭଳି ଅର୍ଲାଣ୍ଡୋ ନିଜ ହାତଟିକୁ ତାଆଡ଼କୁ ବଢ଼ାଇ ଦେଲା । ଦୁଇଚାରି ଥର ହାତ ଏପଟ ସେପଟ ଦେଖିଲା ପରେ ରୋଜାଲିଣ୍ଡ ସିଲିଆ ଆଡ଼କୁ ଅନାଇ କହିଲା .. ତମେ କହୁଛ ତମେ ମୋତେ ଭଲପାଅ ... ସେଥିପାଇଁ ମୁଁ ବି ତମକୁ ଭଲ ପାଇଲି । ବିବାହ କରିବାକୁ ମଧ ରାଜି ହେଉଛି । ସିଲିଆ, ଯେମିତି ହେଲେ ଏ ବିବାହଟା ତୋତେ ହିଁ ଦେବାକୁ ପଡ଼ିବ..

ସିଲିଆ କହେ .. ବିବାହ ଦେବି ଯେ, ତାର ଯେତେ ବିଧିବିଧାନ ମୁଁ କ'ଣ ସେ ସବୁ ଜାଣିଛି ? ଠିକ୍ ଅଛି.. ଜରୁରୀ ଅବସ୍ଥାରେ ଏତେ ବିଧି ବ୍ୟବସ୍ଥା କିଏ ଦେଖୁଛି ? ହଁ ଅର୍ଲାଣ୍ଡୋ, ତମେ କ'ଣ ଏଇ ରୋଜାଲିଣ୍ଡକୁ ତମର ପତ୍ନୀ ରୂପରେ ଗ୍ରହଣ କରିବାକୁ ରାଜି .. କେବେ ଗ୍ରହଣ କରିବାକୁ ପ୍ରସ୍ତୁତ ?

ଅର୍ଲାଣ୍ଡୋ ତତ୍କ୍ଷଣାତ୍ ରାଜି ହୋଇ କହେ .. ଯେତେ ଶୀଘ୍ର ଏହି କାର୍ଯ୍ୟ ହୋଇ ଯିବ, ସେତେ ଭଲ .. ରୋଜାଲିଣ୍ଡକୁ ପତ୍ନୀ ରୂପରେ ପାଇବା ପାଇଁ ମୁଁ ବ୍ୟାକୁଳ ..

ରୋଜାଲିଣ୍ଡ କହେ ...ମୁଁ ତମକୁ ପତି ରୂପରେ ଗ୍ରହଣ କରୁଛି ..

ବିବାହ ଏମିତି ହୋଇଯାଏ ।

ଅର୍ଲାଣ୍ଡୋ ଦୁଃଖ ପ୍ରକାଶ କରି କହେ .. ରୋଜାଲିଣ୍ଡ ! ଏଥର ମୁଁ ଦୁଇ ଘଣ୍ଟା ପାଇଁ ତମଠୁଁ ବିଦାୟ ନେବି ।

ଦୀର୍ଘଶ୍ଵାସ ପକାଇ ରୋଜାଲିଣ୍ଡ କହେ ସତରେ ତମେ ଚାଲିଯିବ । ପ୍ରିୟତମ ! ଏ ଦୀର୍ଘ ଦୁଇଘଣ୍ଟା ତମ ବିଚ୍ଛେଦରେ କେମିତି କଟିବ, ଭାବିଛ ?

ଅର୍ଲାଣ୍ଡୋ ଅନୁନୟ ସ୍ଵରରେ କହେ- ଡିଉକ୍‌ଙ୍କର ଖାଇବା ସମୟ ହୋଇ ଆସିଲା, ଏଇ ସମୟରେ ମୋତେ ପାଖରେ ନ ଦେଖିଲେ, ସେ ବିଚଳିତ ହୋଇ ପଡ଼ିବେ । ମୋତେ ଯେମିତି ହେଲେ ଯିବାକୁ ହେବ..

ରୋଜାଲିଣ୍ଡ ଅଭିମାନୀ ସ୍ଵରରେ କହେ.. ଯିବାକୁ ଯଦି ଚାହୁଁଛ, ତେବେ ଯାଅ । ନବବିବାହିତା ପତ୍ନୀ ଅପେକ୍ଷା ତମ ପାଖରେ ବଡ଼ ହେଲେ କେଉଁ ଅପରିଚିତ ଡିଉକ୍ ! ମୋର ବନ୍ଧୁମାନେ ତମ ବିଷୟରେ ଠିକ୍ ଏଇ କଥା କହୁଥିଲେ । ମୁଁ ମଧ୍ୟ ସେଇଆ ଅନୁମାନ କରିଥିଲି । ମିଠା ମିଠା କଥା କହି ତମେ ମୋର ହୃଦୟ ଜୟ କରିନେଲ । ଏବେ କାମ ସରିଗଲା ପରେ ତମ ପାଖରେ ମୋର ବା ମୂଲ୍ୟ କଣ ? ହଉ, ନିହାତି ଯଦି ଯିବ, ତେବେ ଯାଅ.. ଦୁଇଟା ସୁଦ୍ଧା ଫେରିଆସିବତ ?

ନିଶ୍ଚୟ ଫେରିଆସିବି.. ଅର୍ଲାଣ୍ଡୋ କୋମଳ କଣ୍ଠରେ କହେ-ତମେ ଆଉ ମନ ଖରାପ କର ନାହିଁ । ମୋ ସୁନାଟା ପରା..

ରୋଜାଲିଣ୍ଡ ରାଣପକାଇ କହେ.. ଯଦି କଥାର ଖିଲାଫ୍ କରି ଗୋଟିଏ ମିନିଟ୍ ବି ଡେରିରେ ଆସ, ତାହା ହେଲେ ବୁଝିବି ତମେ ଜଣେ ଶଠ, ପ୍ରବଞ୍ଚକ ଆଉ ମିଥ୍ୟାବାଦୀ.. ତମର ପ୍ରେମ ଏକ ଛଳନା..

ଅର୍ଲାଣ୍ଡୋ ବିଦାୟ ନେବା ପୂର୍ବରୁ କହିଯାଏ- ତମେ ମୋର ନିଷ୍ଠାରେ ସନ୍ଦେହ କର ନାହିଁ ସୁନ୍ଦରୀ । ମୁଁ ମୋର ଶପଥ ନିଶ୍ଚୟ ପାଳନ କରିବି..

ସିଲିଆ ହସ ଚାପି ରଖି କହେ.. ଭଲ ସୁଆଙ୍ଗ ଖଣ୍ଡେ ଦେଖେଇଲୁ । ଯାହା ଜଣା ଯାଉଛି, ନାରୀ ଜାତିକୁ କଳଙ୍କିତ ନ କରି ତୁ ଛାଡ଼ିବୁ ନାହିଁ । ଆଚ୍ଛା, ତୋ'ର ଏଇ କା' ଟିକୁ ବାଦ୍ ଦେଇଥିଲେ କଣ କ୍ଷତି ହୋଇଥାଆନ୍ତା ?

ଗଦ୍ ଗଦ କଣ୍ଠରେ ରୋଜାଲିଣ୍ଡ କହେ.. ତୁ କାହୁଁ ବୁଝିବୁ ମୋ ପ୍ରେମର ଗଭୀରତା ? ସମୁଦ୍ରର ଗଭୀରତା ମାପିବା କ'ଣ ଏତେ ସହଜ ହୋଇଛି ?

ଦୁଇଜଣ ଗୋଟିଏ ଗଛଛାଇରେ ବସନ୍ତି । ସେଇଠି ବସୁ ବସୁ ସିଲିଆ କିଛି ସମୟ ପାଇଁ ଘୁମେଇ ପଡ଼େ । ଆଉ ରୋଜାଲିଣ୍ଡ ଅଧୀର ଆଗ୍ରହରେ ଚାହିଁ ରହିଥାଏ ଅର୍ଲାଣ୍ଡୋର ଫେରିବା ବାଟକୁ ।

ସିଲିଆର ନିଦ ଭାଙ୍ଗିଯାଏ । ରୋଜାଲିଣ ଅଧୈର୍ଯ୍ୟ ହୋଇପଡ଼ି ତାକୁ ପଚାରେ..ଏତେ ବେଳଯାଏ କ'ଣ ଦୁଇଟା ବାଜି ନାହିଁ ?

ସିଲିଆ ଉତ୍ତର ଦିଏ..ଜଣାଯାଉଛି, ଆସିବ । ବାଟରେ ଅର୍ଲାଣ୍ଡୋ ନିଶ୍ଚୟ କୌଣସି ବିପଦରେ ପଡ଼ିଯାଇଛି ।

ପାଦଶବ୍ଦ ଶୁଣି ରୋଜାଲିଣ୍ ସେଇଆଡ଼େ ପ୍ରତ୍ୟାଶାପୂର୍ଣ୍ଣ ଦୃଷ୍ଟିରେ ଅନାଏ । ନିଶ୍ଚୟ ଅର୍ଲାଣ୍ଡୋ ଆସୁଛି । ମାତ୍ର ତାକୁ ନିରାଶ କରି ଆତ୍ମପ୍ରକାଶ କରେ ସିଲ୍‌ଭିୟାସ୍ । ଚିଠି ଖଣ୍ଡେ ତା ହାତକୁ ବଢାଇ ଦେଇ ଜଣାଏ ଯେ, କିବି ନିଜ ହାତରେ ଏ ଚିଠି ତା ପାଖକୁ ଲେଖିଛି ।

ଚିଠି ଗ୍ରହଣ କରି ରୋଜାଲିଣ କହେ...ଚିଠି ଉପରଟା ତ ଅପରିଚ୍ଛନ୍ନ ମନେ ହେଉଛି, ଭିତରଟା ହୋଇଥିବ ଏହା ଅପେକ୍ଷା ଅଧିକ କଦର୍ଯ୍ୟ । ଯଦି ଚିଠିର ମର୍ମ ଶୁଣିବାକୁ ଚାହଁ ତେବେ ଶୁଣ, ଲେଖା ଅଛି...

ଗୋପାଳର ଛଦ୍ମ ବେଶ ଧରି...

ତୁମେ କ'ଣ କେଉଁ ସ୍ୱର୍ଗପୁରବାସୀ...

ମର୍ତ୍ତ୍ୟଲୋକେ ଆସି...

ଚୋରାଇ ନେଇଛ ମନ...

କୁମାରୀ କନ୍ୟାର...

ପରାଧୀନ ମନ ମୋର... ଚାହିଁଛି ବିକଳେ...

ପୂରିଲେ ପୂରିବ ଅବା ତା' ମନ କାମନା...

ନଇଲେ ଅରଣ୍ୟକନ୍ୟା ଭୁଞ୍ଜିବ ତା' ଭାଗ୍ୟ... ପଢ଼ା ଶେଷ କରି ରୋଜାଲିଣ୍ ସିଲଭିୟାସ୍ ଆଡ଼େ ଅନାଏ । କହେ... ଏଭଳି ରସିକତା ମୁଁ ମୋ ଜୀବନରେ ଶୁଣି ନାହିଁ । ତମକୁ ଦେଖୁଛି ସେ ମେଣ୍ଢା ବନାଇ ରଖିଛି ସିଲଭିୟାସ୍. ତାକୁ କହ ଯଦି ସେ ମୋତେ ପ୍ରକୃତରେ ଭଲ ପାଇଥାଏ, ତେବେ ଅନ୍ତତଃ ମୋରି କଥାରେ ସେ ତମକୁ ଭଲ ପାଉ... ଏ ଭଳି ଅନୁଗତ ପ୍ରେମିକଟିଏ ସେ ତା' ଜୀବନରେ ପାଇବ ନାହିଁ..

ସିଲିଭିୟାସ୍ ଉତ୍ତର ନେଇ ଚାଲିଯାଏ । ସିଲିଆ ହସି ହସି ରୋଜାଲିଣକୁ କ'ଣ ଗୋଟାଏ କହିବାକୁ ଯାଉଛି ଏତିକିବେଳେ ସେଠାକୁ ଆସେ ଅଲିଭର୍.. ଅର୍ଲାଣ୍ଡୋର ବଡ଼ଭାଇ...ପଚାରେ...ଆଚ୍ଛା ତମେମାନେ କହିପାରିବ... ଏଠି ଜଳପାଇ ଗଛ ଘେରା ଗୋପାଳମାନଙ୍କର ରହିବା ଜାଗାଟା କେଉଁଠି ?

ସିଲିଆ ତା' ଆଡ଼କୁ ଅନାଇ କହେ... ପଶ୍ଚିମମୁହାଁ ଚାଲିଯାଅ ...ଅଳ୍ପ ବାଟ ଗଲେ ଗୋଟାଏ ବିରାଟ ଖାଲ ପଡ଼ିବ... ସେଇଠି... ତେବେ ସେଠି ଏବେ କେହି ରହୁ ନାହାଁନ୍ତି...

ଅଲିଭର୍ ଦୁହିଁଙ୍କ ଆଡ଼କୁ ଅନାଏ । କହେ... ମୁଁ ବୋଧ ହୁଏ ଆପଣମାନଙ୍କୁ ଠିକ୍ ଚିହ୍ନି ପାରିଚି.. ଖରାପ ପୋଷାକ ଭିତରୁ ବି ଆପଣଙ୍କର ଠିକ୍ ପରିଚୟ ଫୁଟି ବାହାରୁଚି । ପୁରୁଷ ବେଶରେ ଥିଲେ ବି ଆପଣ ବଡ଼ ଭଉଣୀ... ଆଉ ଇଏ ଛୋଟ ଭଉଣୀ ।

ସିଲିଆ କୁହେ... ଆପଣଙ୍କର ଅନୁମାନ ମିଛ ନୁହେଁ..

ଅଲିଭର୍ ଖଣ୍ଡିଏ ରକ୍ତବୋଳା ରୁମାଲ୍ ଦେଖାଇ କହେ, ଏଇ ରୁମାଲ୍‌ଟି ଅର୍ଲାଣ୍ଡୋ ଯେଉଁ ବାଳକକୁ ରୋଜାଲିଣ୍ଡ ବୋଲି ଡାକେ, ତାରି ପାଖକୁ ପଠାଇଛି...

ରୋଜାଲିଣ୍ଡ ଜଣାଏ... ସେ ରୋଜାଲିଣ୍ଡ ହେଉଛି ମୁଁ.. ତେବେ ଏଇ ରକ୍ତଭିଜା ରୁମାଲ୍‌ର ରହସ୍ୟ କ'ଣ ?

ଅତି ଦୁଃଖରେ ଅଲିଭର୍ ଜଣାଏ... ଅର୍ଲାଣ୍ଡୋ ଆପଣମାନଙ୍କଠାରୁ ବିଦାୟ ନେଇ ଗଲା ପରେ, ବାଟରେ ଗୋଟାଏ ଥୁଣ୍ଟା ଓକ୍ ଗଛ ତଳେ ଦେଖିବାକୁ ପାଏ ଗୋଟାଏ ଘୁମନ୍ତ ଲୋକକୁ.. ପିନ୍ଧିଛି ଛିଣ୍ଡା ମଇଳା ପୋଷାକ.. ମୁହଁରେ ନିଶ ଦାଢ଼ିର ଜଙ୍ଗଲ ! ତା'ର ଛାତି ଉପରେ ଫଣା ଟେକିଛି ଗୋଟାଏ ବିଷାକ୍ତ ସର୍ପ... ସୁ ସୁ ଶବ୍ଦରେ ଗର୍ଜନ କରୁଛି, ଯେକୌଣସି ମୁହୂର୍ତ୍ତରେ ଚୋଟ ମାରିବ..

ଅର୍ଲାଣ୍ଡୋ କ'ଣ କରିବ... କି ଉପାୟରେ ସୁପ୍ତ ଲୋକଟାର ଜୀବନ ରକ୍ଷା କରିବ କିଛି ବୁଝିପାରିଲା ନାହିଁ । ସେ ବିହ୍ୱଳ ଦୃଷ୍ଟିରେ ସେଇଆଡ଼େ ଅନାଇ ଠିଆ ହୋଇଗଲା... ତାକୁ ଏମିତି ଦେଖି ସାପଟା କ'ଣ ଭାବିଲା କେଜାଣି ଚୁପ୍‌ଚାପ୍ ଜଙ୍ଗଲ ଭିତରକୁ ଚାଲିଗଲା...

ଲୋକଟା ଯେ ଜଣେ ଅଭିଶପ୍ତ ଜୀବ...ଏ କଥା ସେତେବେଳେ ଜଣାଗଲା... ଯେତେବେଳେ ପାଖ ବୁଦାଭିତରୁ ଏକ କ୍ରୁଦ୍ଧ ସିଂହର ଗର୍ଜନ ଶୁଣାଗଲା... ସିଂହ ସେଇଠୁ ତା'ଉପରକୁ ଲମ୍ଫ ଦେବାକୁ ପ୍ରସ୍ତୁତ ହୋଇ ଅପେକ୍ଷା କରୁଥିଲା... ଲୋକଟାର ହସ୍ତ ପଦାଦିର ସାମାନ୍ୟ ସଂଚାଳନକୁ...

ଅର୍ଲାଣ୍ଡୋ...ଏଥର ଆଉ ନୀରବଦ୍ରଷ୍ଟା ହୋଇ ରହେ ନାହିଁ । ସିଂହର ଆକ୍ରମଣକୁ ପ୍ରତିହତ କରେ । ସେଇ ସୁପ୍ତ ମଣିଷଟି କିଏ ଜାଣନ୍ତି ? ଆଉ କେହି ନୁହେଁ... ଅର୍ଲାଣ୍ଡୋର ବଡ଼ଭାଇ.. ସେଇ ଦିନେ ଅର୍ଲାଣ୍ଡୋକୁ ଘରୁ ବାହାର କରି ଦେଇଥିଲା... ନିଜକୁ ବିପନ୍ନ କରି ସେଇ ଭାଇ ଆଜି ତା'ର ଜୀବନ ରକ୍ଷା କରିବାକୁ ଆଗେଇ ଆସିଛି ! ଏହାକୁ ଭାଗ୍ୟର ବିଡ଼ମ୍ବନା ବ୍ୟତୀତ ଆଉ କ'ଣ କହିବା ?

ସିଲିଆ କହିଉଠେ.. ମୁଁ ସେଇ ଅମଣିଷଟାର କଥା ଶୁଣିଛି ।

ଅଲିଭର୍ ଜଣାଇଦିଏ ଯେ ସିଲିଆ ଯାହା କହୁଛି ତାହା ଅକ୍ଷରଶଃ ସତ୍ୟ । ଭାଇଟି ପ୍ରକୃତରେ ଭଦ୍ରବେଶୀ ସଇତାନ୍‌ଟିଏ ।

ରୋଜାଲିଣ୍ଡ ଅଧୈର୍ଯ୍ୟ ହୋଇ କହେ.. ସେ ସବୁ ଠିକ୍ ଅଛି । ଭାଇ ପାତାଳର କୀଟ, ନର୍କର କୃମି.. ତେବେ ଅର୍ଲାଣ୍ଡୋ.. କଥା କହିବାକୁ ଯାଇ ଆପଣ ଏ ସବୁ କ'ଣ କହିବାକୁ ଆରମ୍ଭ କଲେ ? ସେ ଠିକ୍ ଅଛି ତ ?

ଅଲିଭର୍ କହିବାକୁ ଲାଗିଲେ.. ଅର୍ଲାଣ୍ଡୋ ଦୁଇଥର ଫେରିବାକୁ ଚେଷ୍ଟା କଲା । ମାତ୍ର ଶେଷପର୍ଯ୍ୟନ୍ତ ସିଂହ ସହିତ ତାକୁ ଲଢ଼େଇ କରିବାକୁ ହେଲା.. ସେଇ ଶବ୍ଦରେ ମୋର (ଜାଣୁଥିବେ ଯେ, ଶାୟିତ ସେଇ ଅମାର୍ଜିତ ଲୋକଟି ହେଉଛି ମୁଁ .. ଅର୍ଲାଣ୍ଡୋର ବଡ଼ଭାଇ) ନିଦ ଭାଙ୍ଗିଗଲା.. ଶେଷରେ ସିଂହଟା ତା'ରି ହାତରେ ଜୀବନ ଦେଲା...

ସିଲିଆ ମୁଗ୍ଧ ଅପଲକ ନେତ୍ରରେ ଏଇ ଆଗନ୍ତୁକଆଡ଼େ ଚାହିଁରହେ । ଶେଷରେ କହେ ... ଆପଣ ତାହାହେଲେ ଅର୍ଲାଣ୍ଡୋର ବଡ଼ଭାଇ ! ବାରମ୍ବାର ଆପଣ ଯାହାକୁ ହତ୍ୟା କରିବା ନିମନ୍ତେ ଉଦ୍ୟମ କରିଛନ୍ତି, ସେଇ ଶେଷରେ ଆପଣଙ୍କ ଜୀବନ ରକ୍ଷା କଲା ! ଆଶ୍ଚର୍ଯ୍ୟ !

ଅଲିଭର୍ ମୁଣ୍ଡ ନୁଆଁଇ କହିଯାଏ- କହିବା ହୁଏତ ଉଚିତ ହେବ ନାହିଁ । ତେବେ ପୂର୍ବର ସେଇ ନିଷ୍ଠୁର ଲୋକଟି ଆଜି ସମ୍ପୂର୍ଣ୍ଣ ଭାବରେ ବଦଳିଯାଇଛି । ସତେ ଯେମିତି ତା'ର ନବଜନ୍ମ ହୋଇଛି !

ରୋଜାଲିଣ୍ଡ ବ୍ୟାକୁଳ ଭାବରେ କହେ—ରକ୍ତଭିଜା ଗୁମାଲର ରହସ୍ୟ; କିନ୍ତୁ ଆପଣ ଏ ପର୍ଯ୍ୟନ୍ତ ଉଦ୍‌ଘାଟନ କରି ନାହାନ୍ତି ।

ଅଲିଭର କହିଯାଏ ... ଅର୍ଲାଣ୍ଡୋ ମୋତେ ମାନ୍ୟବର ଡିଉକ୍‌ଙ୍କ ପାଖକୁ ନେଇଯାଏ । ସେଠି ମୋତେ ପିନ୍ଧିବା ପାଇଁ ନୂଆ ପୋଷାକ ମିଳେ । ଖିଆପିଆ ସରିବା ପରେ ମହାମାନ୍ୟ ଡିଉକ୍ ମୋତେ ଭାଇର ଦେଖାଶୁଣା କରିବାର ଦାୟିତ୍ୱ ଦିଅନ୍ତି । ଜାମା ଖୋଲିବା ପରେ ଅର୍ଲାଣ୍ଡୋ ଦେଖିବାକୁ ପାଏ ଯେ, ସିଂହଟା ତା' ବାହୁରୁ ପୁଳାଏ ମାଂସ ବାହାରକରି ନେଇଛି । ଫଳରେ ସେଇ କ୍ଷତ ସ୍ଥାନରୁ ପ୍ରଚୁର ରକ୍ତ ବୋହି ଚାଲିଛି । ଏତିକି ଦେଖୁ ଦେଖୁ ଅର୍ଲାଣ୍ଡୋ ଅଜ୍ଞାନ ହୋଇପଡ଼େ । କିଛି କ୍ଷଣ ପରେ ଚେତା ଫେରି ପାଇ ସେ ନିଜର ରକ୍ତଭିଜା ଗୁମାଲଟି ମୋ ହାତରେ ଦିଏ, ଆଉ ତମ ପାଖରେ ଏଇଟା ପହଞ୍ଚାଇ ଦେଇ କ୍ଷମା ମାଗି ନେବାକୁ କହେ । କଥା ଦେଇ ସେ କଥା ରଖିପାରି ନାହିଁ ।

ଏତକ ଶୁଣୁଶୁଣୁ ରୋଜାଲିଣ୍ଡ ଅଚେତ୍ ହୋଇ ଟଳିପଡ଼େ । ସିଲିଆ ତାକୁ ଧରି ପକାଇ ସାନ୍ତ୍ୱନା ଦେବାକୁ ଆରମ୍ଭ କରେ । ଧୈର୍ଯ୍ୟ ଧରିବାକୁ ଅନୁରୋଧ କରେ ।

ଅଳ୍ପ ସମୟ ଭିତରେ ରୋଜାଲିଣ୍ଡ ନିଜକୁ ସମ୍ଭାଳି ନିଏ । ସିଲିଆକୁ କହେ- ଚାଲ ଭଉଣୀ ମୋତେ ଘରକୁ ନେଇଚାଲ । ଅଲିଭର ଆଡ଼େ ଅନାଇ କହେ... ତମର ଭାଇକୁ କହିବ... ଏଠି ଯାହା ଦେଖିଲ ସେ ସବୁ କେବଳ ଅଭିନୟ । ଈଶ୍ୱର ତାଙ୍କୁ ଯଥା ଶୀଘ୍ର ଭଲ କରି ଦିଅନ୍ତୁ ।

ଏତିକି କହୁ କହୁ ରୋଜାଲିଣ୍ଡର ଦୁଇ ଆଖି ଲୁହରେ ଭରିଯାଏ । ସେ ସିଲିଆକୁ ଧରି ଘର ଆଡ଼କୁ ପାଦ ବଢ଼ାଏ ।

ଅଲିଭର୍ ଆଶ୍ଚର୍ଯ୍ୟ ହୋଇ ଅନାଇ ରହେ...

ଅଲିଭର୍ ଠାରୁ ନୂଆ କଥାଟିଏ ଶୁଣି ଅର୍ଲାଣ୍ଡୋ ଆଶ୍ଚର୍ଯ୍ୟ ହୋଇଯାଏ । ଅଲିଭର୍ କୁଆଡ଼େ ପ୍ରଥମ ଦର୍ଶନରେ ହିଁ ଏଲିୟେନା ପ୍ରତି ଆକୃଷ୍ଟ ହୋଇ ପଡ଼ିଛି । ଏବେ ତାକୁ ନ ପାଇପାରିଲେ, ତା'ର ଜୀବନ ବ୍ୟର୍ଥ ହୋଇଯିବ... ବିବାହ ଯଦି କରିବାକୁ ହୁଏ, ତେବେ ଏଲିୟେନା ଛଡ଼ା ସେ କାହାରି କଥା ଚିନ୍ତା ବି କରିପାରିବ ନାହିଁ ।

ଅର୍ଲାଣ୍ଡୋ ଅବାକ୍ ହୋଇ ତା'ଆଡ଼େ ଚାହିଁରହେ । ଏଇ ତା'ର ସହୋଦର ଭାଇ । ଅତୀତରେ କେତେ କ୍ଷତି ତା'ର ନ କରିଛି ! କେବଳ ଭାଗ୍ୟ ଟାଣ ଥିବାରୁ ସେ ଆଜି ବଞ୍ଚି ରହିପାରିଛି । ନଚେତ୍ କେବେଠୁଁ ତା'ର ଜୀବନ ଦୀପ ଲିଭିଯାଇ ସାରନ୍ତାଣି... ଜୀବନରେ କେବଳ ନିଜର ସ୍ୱାର୍ଥ ବ୍ୟତୀତ ଅନ୍ୟ କିଛି ବୁଝି ନାହିଁ । ଅଥଚ୍ ଏଇ ମୁହୂର୍ତ୍ତରେ ତା'ଆଗରେ ବସି ରହିଛି, କେଡ଼େ ଅସହାୟ ହୋଇ ତା'ର ସାହାଯ୍ୟ ମାଗୁଛି ! ଠିକ୍ ଅଛି, ଏଲିୟେନା ତ ଅବିବାହିତା । ଜଙ୍ଗଲର ଜଣେ ସାମାନ୍ୟ କିଶୋରୀ । ଅଲିଭର୍ ତ ତା'ପାଇଁ ସୁପାତ୍ର । ଆଶା ଅଛି, ତା'ର ଅଭିଭାବକ ବଡ଼ଭାଇ ଏଥିରେ ଆପତ୍ତି କରିବ ନାହିଁ । ବାହାଘରଟା ଯଦି ତା' ବଡ଼ଭାଇର ଜୀବନର ଗତିପଥକୁ ବଦଳାଇ ଦେବ, ତେବେ ସେ ବା ଏଥିରେ ଆପତ୍ତି କରିବ କାହିଁକି ?

କିଛି ଭାବିବା ପରେ ଅର୍ଲାଣ୍ଡୋ କହେ... ଠିକ୍ ଅଛି । ଏ ବିବାହରେ ମୋର କୌଣସି ଆପତ୍ତି ନାହିଁ । ତେବେ ଏଲିୟେନାର ବଡ଼ଭାଇଙ୍କୁ ପଚାରିବାକୁ ହେବ...ଏଲିୟେନାର ମତ ନେବାକୁ ପଡ଼ିବ । କାହାରି ଯଦି ଆପତ୍ତି ନ ଥାଏ, ତେବେ ଏ ବିବାହ କାଲି ହୋଇଗଲେ ବି ମୋର ମନା ନାହିଁ... କେବଳ ଡିଉକ୍ ଆଉ ତାଙ୍କର ଦଳବଳଙ୍କୁ ନିମନ୍ତ୍ରଣ କରିବାକୁ ହେବ ।

ଅଲିଭର୍ ଖୁସି ହୁଏ । ସେ ଜାଣେ, ଏ ବିବାହରେ ଏଲିୟେନା ଅରାଜି ହେବ ନାହିଁ । ତା'ର ଚାହାଣିରେ ସେ ଯେଉଁ ମୁଗ୍ଧତା ଲକ୍ଷ୍ୟ କରିଛି, ଗୋପନରେ ତା'ଆଡ଼କୁ ଚାହିଁ, ଧରାପଡ଼ିଯିବା ଆଗରୁ ସେ ଯେମିତି ବାରମ୍ବାର ଆଖି ତଳକୁ କରିନେଇ, ଲାଜୁଆ ହସ ହସୁଥିଲା, ସେଥିରୁ ତା'ର ମନଭାବ ସ୍ପଷ୍ଟ ଧରାପଡ଼ି ଯାଉଥିଲା । ବାକି ରହିଲା ତା'ର ବଡ଼ଭାଇ ଗାନିମୀଡ଼ର

କଥା । ବୋଧହୁଏ ସେ ଏଥିରେ ଆପତ୍ତି କରିବ ନାହିଁ । ଆଉ ଆପତ୍ତି କଲେ ବି ପାତ୍ରପାତ୍ରୀ ଯେଉଁଠି ରାଜି ସେଥିରେ ତା' ମତାମତର ବା ମୂଲ୍ୟ କ'ଣ ? ପୁଣି ଅର୍ଲାଣ୍ଡୋ ସାଙ୍ଗରେ ତା'ର କ'ଣ ଗୋଟିଏ ପ୍ରେମ ଖେଳ ଚାଲିଛି । ଜଣାଯାଉଛି, ବେଶ୍ ମଜାର ଲୋକଟିଏ । ସେ କେବେହେଲେ ଏଥିରେ ଆପତ୍ତି କରିବ ନାହିଁ ।

ଏତିକିବେଳେ ଧୀରେ ଧୀରେ ରୋଜାଲିଣ୍ଡ ସେଠାରେ ପ୍ରବେଶ କରେ । କୁଶଳ ପ୍ରଶ୍ନ କରି ଅର୍ଲାଣ୍ଡୋ ପାଖରେ ବସେ । ତା'ର ଆଶୁ ଆରୋଗ୍ୟ କାମନା କରେ । ଦୁର୍ଘଟଣାର ସମ୍ବାଦ ପାଇ ସେ 'ମୂର୍ଚ୍ଛା ଓ ପତନ'ର ଯେଉଁ ଚମତ୍କାର ଅଭିନୟ କରିଥିଲା, ସେ କଥା ଭାଇଙ୍କଠାରୁ ସେ ଶୁଣିଛି କି ନାହିଁ ...ଏ ବିଷୟ ତାକୁ ପଚାରେ ...

ଅର୍ଲାଣ୍ଡୋ ତା'ଆଡ଼କୁ ଅନାଇ କହେ—ବେଶ୍ ଧରି ନିଆଯାଉ, ସେସବୁ ଥିଲା ତମର ଅଭିନୟ । ବର୍ତ୍ତମାନ ସେ ଅଭିନୟଠାରୁ ଆହୁରି ଏକ ଚମକପ୍ରଦ ସମ୍ବାଦ ମୁଁ ତମକୁ ଦେବି । ଘଟଣାଟି ଏତେ ଆକସ୍ମିକ ଯେ ତମେ ଶୁଣିଲେ ନିଶ୍ଚୟ ଅବାକ୍ ହୋଇଯିବ।

ରୋଜାଲିଣ୍ଡ ମୁହୂର୍ତ୍ତକ ପାଇଁ କ'ଣ ସବୁ ଭାବିଯାଏ । ଆଶ୍ଚର୍ଯ୍ୟଜନକ ଘଟଣା ଆଉ କ'ଣ ହୋଇପାରେ ? ହଠାତ୍ କ'ଣ ମନେ ପଡ଼ିଯିବାରୁ ତା' ମୁହଁ ଉଜ୍ଜ୍ୱଳ ଦେଖାଯାଏ । ସେ କହେ ... ହଁ... ମନେ ପଡୁଛି, ତମର ଭାଇ ଆଉ ମୋର ଭଉଣୀ ... ଦୁହେଁ ଦୁହିଁଙ୍କୁ ଦେଖି ତ ଏକେବାରେ ମୁଗ୍ଧ ... କେହି କାହାରି ଉପରୁ ଆଖି ଫେରାଇ ପାରୁ ନ ଥାନ୍ତି ? ମୁଁ ତ ଏସବୁ ଦେଖି ପ୍ରକୃତରେ ଅବାକ୍ ହେଇଗଲି ... ପ୍ରଥମ ଦର୍ଶନରୁ ଏତେ ! ସେମାନେ ହୁଏତ ବିବାହ କରିବାକୁ ଚାହିଁପାରନ୍ତି ...

-ପାରନ୍ତି ନୁହେଁ, ସେମାନେ ବିବାହ ପାଇଁ ସ୍ଥିର କରିସାରିଛନ୍ତି । ମୁଁ ବି ଏଥିପାଇଁ ମୋର ମତ ଦେଇସାରିଛି । କାଲି ସେମାନଙ୍କର ବିବାହ ... ଅର୍ଲାଣ୍ଡୋ କହେ ।

ରୋଜାଲିଣ୍ଡ କହେ- ଏ ତ ବେଶ୍ ଖୁସିର କଥା । ତେବେ ଚାଲ, କାଲି ଆମେ ବି ଆମର ବିବାହ କାମଟା ସାରିଦେବା । ମୁଁ ତୁମର ରୋଜାଲିଣ୍ଡ ହୋଇ ତମକୁ ବିବାହ କରିବି । ଅର୍ଲାଣ୍ଡୋ ସ୍ୱପ୍ନମଖା କଣ୍ଠରେ କହେ... କେବଳ କଳ୍ପନାରେ ମୁଁ ଆଉ ଭାସିଯିବାକୁ ଚାହେଁ ନାହିଁ । ରୋଜାଲିଣ୍ଡ କ'ଣ ସତରେ ମୋ ଭାଗ୍ୟରେ ଅଛି ।

-ମୁଁ ତ କଳ୍ପନାର କଥା କହୁ ନାହିଁ, କହୁଛି ଖାଣ୍ଟି ବାସ୍ତବତାର କଥା । ତମେ ବୋଧହୁଏ ଜାଣ ନାହିଁ, ମୁଁ ଯାଦୁବିଦ୍ୟାରେ ଅତ୍ୟନ୍ତ ଦକ୍ଷ । ଯଦି ତମର ପ୍ରେମ ଖାଣ୍ଟି ହୋଇଥାଏ, ଯଦି ତମେ ରୋଜାଲିଣ୍ଡକୁ ମନରେ, ପ୍ରାଣରେ ଚାହୁଁଥାଅ, ତେବେ ତମର ଭାଇଙ୍କ ବିବାହ ସଙ୍ଗେ ସଙ୍ଗେ, ତମେ ବିବାହ କରି ତମର ରୋଜାଲିଣ୍ଡକୁ ପାଇପାରିବ ... ରୋଜାଲିଣ୍ଡ ଏକା ନିଃଶ୍ୱାସରେ କହିଯାଏ ।

ଅର୍ଲାଣ୍ଡୋ ତା'ଆଡ଼କୁ ଆଶ୍ଚର୍ଯ୍ୟରେ ଚାହିଁରହେ । ପଚାରେ ତମେ ଏ ସବୁ କ'ଣ କହୁଛ ? ତମର ମୁଣ୍ଡ ଠିକ୍ ଅଛିତ ?

ରୋଜାଲିଣ୍ଡ ଦୃଢ଼ ସ୍ୱରରେ କହେ... ଯାହା କହୁଛି, ତା'ର ଗୋଟିଏ ବର୍ଣ୍ଣ ବି ମିଥ୍ୟା ନୁହେଁ । କହିଛି ମୁଁ ଜଣେ ଯାଦୁକର । ତମେ ବିବାହର ପୋଷାକ ପିନ୍ଧିବ । ଯଥାରୀତି ସମସ୍ତଙ୍କୁ ନିମନ୍ତ୍ରଣ ବି କରିବ । ରୋଜାଲିଣ୍ଡକୁ ଉପସ୍ଥିତ କରାଇବା ଦାୟିତ୍ୱ ମୋର । କାଲି ଯେମିତି ହେଲେ ତା' ସହିତ ବିବାହ ହେବ ...

ସିଲ୍‌ଭିୟାସ୍ ଆଉ କିବିଙ୍କୁ ଦେଖି ରୋଜାଲିଣ୍ଡ ପୁଣି କହେ ... ମୁଁ ଯାହା କହୁଛି, ତମେମାନେ ମନ ଦେଇ ଶୁଣ । ମୁଁ ଜଣେ ଯାଦୁକର । କାଲି ତିନିଯୋଡ଼ା ବିବାହ ହେବ ଅର୍ଲାଣ୍ଡୋ-ରୋଜାଲିଣ୍ଡ, ଅଲିଭର୍-ସିଲିଆ ଆଉ ସିଲିଭିୟାସ୍-କିବି... ପରସ୍ପରକୁ ବିବାହ କରିବେ... ଏ ବିବାହରେ ଉପସ୍ଥିତ ରହିବା ପାଇଁ ମୁଁ ତମମାନଙ୍କୁ ନିମନ୍ତ୍ରଣ କରୁଛି । ତମେ ଦୁହେଁ କାଲି ବିବାହ ପାଇଁ ପ୍ରସ୍ତୁତ ହୋଇ ଆସିବ ...

ଡିଉକ୍ ଏ ସମ୍ବାଦ ପାଇ ଆଶ୍ଚର୍ଯ୍ୟ ହୋଇଯାଆନ୍ତି । ଏହା କ'ଣ ସମ୍ଭବ ? ସେ ଅର୍ଲାଣ୍ଡୋକୁ ଡାକି ପଚାରନ୍ତି —ଏସବୁ କ'ଣ ଶୁଣୁଛି ? ଶେଷକୁ ଏଇ ବାଳକର କଥା ଆମକୁ ବିଶ୍ୱାସ କରିବାକୁ ପଡ଼ିବ ?

ଅର୍ଲାଣ୍ଡୋ ଜଣାଏ ... ବିଶ୍ୱାସ ତ ହେଉ ନାହିଁ । ତେବେ ସେ ଯେମିତି ବାରମ୍ବାର ପ୍ରତିଜ୍ଞା କରି କହୁଛି, ସେଥିରେ ଅବିଶ୍ୱାସ ବି କରି ହେଉ ନାହିଁ । ଯଦିଓ ଶେଷ ପର୍ଯ୍ୟନ୍ତ କ'ଣ ହେବ ଭାବି ଡର ଲାଗୁଛି ...

ସିଲ୍‌ଭିୟାସ୍‌କୁ ସାଙ୍ଗରେ ନେଇ ରୋଜାଲିଣ୍ଡ୍ ଡିଉକ୍‌ଙ୍କ ପାଖକୁ ଆସେ । ବିନୀତ ଭାବରେ ତାଙ୍କୁ ସମ୍ମାନ ଜଣାଇ ନିବେଦନ କରେ ... ମୁଁ ଯାହା କହିଛି ତାକୁ ସମ୍ପୂର୍ଣ୍ଣ ରୂପେ ଅବିଶ୍ୱାସ କରନ୍ତୁ ନାହିଁ । ଅନ୍ତତଃ ଧୈର୍ଯ୍ୟ ଧରି କାଲିପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ । ଗୋଟିଏ କଥା ଜାଣିବାକୁ ମୋର ବଡ଼ ଇଚ୍ଛା ହେଉଛି । କାଲି ଯଦି ପ୍ରକୃତରେ ରୋଜାଲିଣ୍ଡ ଏଠାରେ ଆସି ଉପସ୍ଥିତ ହୁଏ, ତେବେ ଆପଣ... ଆପଣ ତାର ବାପା... ତାକୁ ଅର୍ଲାଣ୍ଡୋ ହାତରେ ସମର୍ପଣ କରିବାକୁ ରାଜି ଅଛନ୍ତି ତ ?

ଡିଉକ୍ ମ୍ଲାନ ହସ ହସନ୍ତି । କହନ୍ତି ବାଳକ, ଯଦି ପ୍ରକୃତରେ ରୋଜାଲିଣ୍ଡ କାଲି ଏଠାରେ ଆସି ପହଞ୍ଚେ, ତେବେ କେବଳ ତାକୁ କାହିଁକି, ତା' ସହିତ ମୋ ରାଜ୍ୟକୁ ମଧ୍ୟ ମୁଁ ଅର୍ଲାଣ୍ଡୋ ହାତରେ ଦେବାପାଇଁ ପ୍ରସ୍ତୁତ -

ତା'ପରେ ରୋଜାଲିଣ୍ଡ ସିଲ୍‌ଭିୟାସ୍‌କୁ ପଚାରେ ... ଆଉ ବନ୍ଧୁ, କିବି ଯଦି ରାଜି ହୁଏ, ତମେ ତାକୁ ବିବାହ କରିବ ତ ?

ସିଲ୍‌ଭିୟାସ୍ ପ୍ରତିଜ୍ଞା କରେ । ଆଜିପର୍ଯ୍ୟନ୍ତ ଏଇ ଗୋଟିଏ ସ୍ୱପ୍ନତ ମୁଁ ଦେଖିଆସିଛି । ତାକୁ ପାଇବା ପାଇଁ ଯଦି ମୋତେ ପ୍ରାଣ ଦେବାକୁ ପଡ଼େ, ତେବେ ସେଥିରେ ମୁଁ ରାଜି ।

ରୋଜାଲିଣ୍ଡ ତାକୁ ନେଇ ଫେରିଯାଏ । ଯିବା ପୂର୍ବରୁ ଡିଉକ୍‌ଙ୍କୁ ତାଙ୍କର ଶପଥ ମନେ ରଖିବାକୁ କହିଯାଏ ।

ଅର୍ଲାଣ୍ଡୋ ଆଡ଼କୁ ଅନାଇ ଡିଉକ୍ କହନ୍ତି - ଜାଣିଛ ଅର୍ଲାଣ୍ଡୋ, ଏଇ ଗାନିମୀଡ଼୍ ଭିତରେ ମୁଁ ମୋର କନ୍ୟା ରୋଜାଲିଣ୍ଡର ପ୍ରାଣ ସତ୍ତାକୁ ଦେଖିପାରୁଛି । ସେ ଯାହା କହିଗଲା... ତାକୁ ବିଶ୍ୱାସ କରିନେବାକୁ ମନ ଡାକୁଛି - ସେ କ'ଣ ପାରିବ ? କେଜାଣି...

ଅର୍ଲାଣ୍ଡୋ ଜଣାଏ, ମାନନୀୟ ଡିଉକ୍, ଆପଣଙ୍କୁ ଜଣାଇବାରେ ଅସୁବିଧା ନାହିଁ ଯେ, ମୁଁ ମଧ ଏହି ଭୁଲ୍‌ଟି କରିଥିଲି । ଯେତେବେଳେ ମୁଁ ତାକୁ ପ୍ରଥମେ ଦେଖିଲି, ମୋର ଧାରଣା ହେଲା, ସେ ଆପଣଙ୍କର ପୁଅ । ରୋଜାଲିଣ୍ଡ ସହିତ ତା'ର ଏତେ ସାଦୃଶ୍ୟ ଯେ-

କଥା ଶେଷ ହୋଇଯାଏ । ଦୁହେଁ ନିଜ ନିଜର ଚିନ୍ତାରେ ବୁଡ଼ି ରହନ୍ତି ।

## -ଶେଷ କଥା-

ନିର୍ଦ୍ଧାରିତ ସମୟ ପାଖେଇ ଆସେ । ସିଲିଆ ଏବଂ ରୋଜାଲିଣ୍ଡ ଦୁହେଁ ଆସି ଡିଉକ୍‌ଙ୍କ ପାଖରେ ଉପସ୍ଥିତ ହୁଅନ୍ତି ।

ଡିଉକ୍‌ଙ୍କ ପାଦ ପାଖରେ ବସିପଡ଼ି ରୋଜାଲିଣ୍ଡ କରୁଣ କଣ୍ଠରେ ଜଣାଏ- ତମରି ହାତରେ ମୁଁ ନିଜକୁ ସମର୍ପି ଦେଉଛି, କାରଣ ମୁଁ ଏକାନ୍ତ ଭାବରେ ତମରି, ତମେ ଯଦି ମୋର ପିତା ନୁହଁ, ତେବେ ଜାଣିବି ମୋର ପିତା ନାହାନ୍ତି-

ଡିଉକ୍‌ଙ୍କ ଆଖି ଛଳଛଳ ହୋଇ ଆସେ । ସେ ନୀରବରେ ରୋଜାଲିଣ୍ଡ ମଥା ଉପରେ ନିଜର ହାତ ରଖନ୍ତି ।

କିଛି ସମୟ ପରେ ନିଜକୁ ସମ୍ଭାଳି ନେଇ ସିଲିଆ ଆଡ଼କୁ ଅନାଇ କହନ୍ତି — ମା' ଏଲିଏନା... ମୋ ପାଖକୁ ଆ...

ଏଇଭଳି ଏକ ଆବେଗ ଘନ ମୁହୂର୍ତ୍ତରେ ଆସେ ଜ୍ୟାକସ୍ । ନିଜକୁ ସେ ସାର୍ ରୋଲାଣ୍ଡଙ୍କର ମଧମ-ପୁତ୍ର ବୋଲି ଘୋଷଣା କରେ । ସେ ଏହାପରେ ଜଣାଏ ... ମୁଁ ଆପଣମାନଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ଖବର ଦେବାକୁ ଧାଇଁଆସିଛି । ଆପଣମାନେ ଏଇ ଅରଣ୍ୟରେ ରହୁଥିବାର ଖବର ଡିଉକ୍ ଫ୍ରେଡ଼େରିକ୍ ପାଇଯାଆନ୍ତି । ସାଙ୍ଗେ ସାଙ୍ଗେ ଏକ ବିରାଟ ସୈନ୍ୟବାହିନୀ ନେଇ ସେ ଏଇଆଡ଼େ ଯାତ୍ରା କରନ୍ତି । ଉଦ୍ଦେଶ୍ୟ, ମହାମାନ୍ୟ ଡିଉକ୍‌ଙ୍କୁ ବନ୍ଦୀ କରି ତାଙ୍କୁ ହତ୍ୟା କରିବେ । ସିଲିଆକୁ ଫେରାଇ ନେବେ ।

ତେବେ ଏଇ ଅରଣ୍ୟରେ ପ୍ରବେଶ କରିବା ସମୟରେ ତାଙ୍କ ସହିତ ଦୈବାତ୍ ଏକ ବୃଦ୍ଧ ସାଧକଙ୍କର ଦେଖା ହୋଇଯାଏ । ଉଭୟଙ୍କ ମଧ୍ୟରେ କ'ଣ ଆଲୋଚନା ହୁଏ ଏବଂ ସାଧକ ତାଙ୍କୁ କ'ଣ ପରାମର୍ଶ ଦିଅନ୍ତି, ତାହା ମୁଁ ଜାଣେ ନାହିଁ । ତେବେ ଏତିକି ଜାଣିଛି ଯେ, ସେ ସେଇଠୁ ତାଙ୍କର ସେନାକୁ ଫେରାଇ ଦେଇ ନିଜେ ସଂସାର ତ୍ୟାଗ କରି ସେଇ ସାଧକଙ୍କ ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି... ରାଜମୁକୁଟ ଛାଡ଼ି ଯାଇଛନ୍ତି, ତା'ର ନ୍ୟାଯ୍ୟ ଅଧିକାରୀ ତାଙ୍କର ବଡ଼ଭାଇଙ୍କ ପାଇଁ । ଏ ସମ୍ବାଦ ଦିବାଲୋକ ଭଳି ସ୍ପଷ୍ଟ ଆଉ ସତ୍ୟ...

ଡିଉକ୍ ଏଥର ଜ୍ୟାକସ୍‌କୁ ସ୍ୱାଗତ ଜଣାଇ କହିଛନ୍ତି... ଆଜିଭଳି ଶୁଭ ଦିନରେ ତୁମେ ଗୋଟିଏ ଅତ୍ୟନ୍ତ ଭଲ ଖବର ଦେଇଛ । ଜାଣିଛ ବୋଧହୁଏ, ଆଜି ତୁମର ଦୁଇ ଭାଇଙ୍କର ବିବାହ... ଦୁହିଁଙ୍କ ପାଇଁ ତମର ସମ୍ବାଦ ହେବ ଚମତ୍କାର ଯୌତୁକ ଭଳି । ଜଣେ ଫେରିପାଇବ ତା'ର ହୃତ ରାଜ୍ୟ , ଆଉ ଜଣେ ପାଇବ ତା'ର ନ୍ୟାଯ୍ୟ ପ୍ରାପ୍ୟ । ଏଥର ତେବେ ଏଇ ଘନ ଅରଣ୍ୟ ଭିତରେ ଯେଉଁ ଅନୁଷ୍ଠାନର ଆୟୋଜନ କରାଯାଇଛି, ତା' ଆରମ୍ଭ କରାଯାଉ ।

ଡିଉକ୍ କହିଲେ - ବନ୍ଧୁଗଣ, ସମସ୍ତ ପ୍ରକାର ସାଂସାରିକ ସୁଖ ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇ, କେବଳ ବନ୍ଧୁତ୍ୱର ଖାତିରରେ ତମେମାନେ ମୋର ଦୁଃଖର ଦିନରେ ମତେ ଅନୁସରଣ କରିଛ । ମୋତେ ସୌଖ୍ୟ ଆଉ ସେବା ଦେଇ ଧନ୍ୟ କରିଛ । ପ୍ରତିଶ୍ରୁତି ଦେଉଛି ' ଆଜି ଏଇ ଆସନ୍ନ ସୁଖର ମୁହୂର୍ତ୍ତରେ ମୁଁ ତମମାନଙ୍କୁ ଭୁଲିବି ନାହିଁ - ତମେମାନେ ମଧ୍ୟ ମୋର ସୌଭାଗ୍ୟର ଅଂଶୀଦାର ହେବ - ଆସ ଆମେ ଅତୀତର ସେଇ ଦୁଃଖପୂର୍ଣ୍ଣ ଦିନଗୁଡ଼ିକୁ ଭୁଲିଯାଇ ବର୍ତ୍ତମାନର ଆନନ୍ଦକୁ ତିଳତିଳ କରି ଉପଭୋଗ କରିବା ।

ଆନନ୍ଦର ଏଇ ରସ ଘନ ମୁହୂର୍ତ୍ତରେ ଜ୍ୟାକସ୍‌ର ସଂସାର ତ୍ୟାଗ କରିବାର ଘୋଷଣା ସମସ୍ତଙ୍କୁ ବିଷଣ୍ଣ କରିଦିଏ । ଜ୍ୟାକସ୍ କହେ— ସଂସାରର ଆନନ୍ଦ ତ ଦେଖିଲି- ଏଇ ଏତେଦିନ ପର୍ଯ୍ୟନ୍ତ ତା'ର ସେଇ ଆଲୁଅ ଆଉ ଅନ୍ଧାରର ଲୁଚକାଳି ଖେଳରେ ପ୍ରାଣ ଭରି ଭାଗ ବି ନେଲି ।

ଜୀବନର ଏଇ ଚଳନ୍ତା ଛାଇ ଭଳି ରୂପକୁ ମୁଁ ଯେମିତି ଦେଖିଛି, ଏମାନେ କେହି ତା'ପାରି ନାହାନ୍ତି । ଫ୍ରେଡ଼େରିକ୍ ନିଜର ଦେବତାତୁଲ୍ୟ ବଡ଼ଭାଇଙ୍କ ହାତରୁ ରାଜଦଣ୍ଡ ଛଡ଼ାଇ ନେଇ ତାଙ୍କୁ ନିର୍ବାସନ ଦଣ୍ଡ ଦେଇଥିଲେ । ଧନରତ୍ନ ଆଉ ଭୋଗ ବିଳାସର ପାହାଡ଼ ଉପରେ ବସି ଧରାକୁ ସରା ମଣୁଥିଲେ । କ'ଣ ହେଲା ତାଙ୍କର ଶେଷ ପରିଣତି ? କୁଆଡ଼େ ଗଲା ତାଙ୍କର ସେଇ ପରାକ୍ରମ ?

ଆଉ ମୋର ବଡ଼ଭାଇ ଏଇ ଅଲିଭର୍ — ଅର୍ଲାଣ୍ଡୋ ତାଙ୍କର ନିଜର ସାନଭାଇ-ଏକା ରକ୍ତ- ଦୁଇ ଧାର... କେଉଁଥିପାଇଁ ମୋତେ ବିଶ୍ୱବିଦ୍ୟାଳୟକୁ ପଠାଇ... ଦୂରେଇ ରଖିଲେ ଏବଂ ଅର୍ଲାଣ୍ଡୋକୁ ସବୁଥିରୁ ବଞ୍ଚିତ କରି, ନିଜେ ସବୁ ଅଧିକାର କରି ନେବାର ଚେଷ୍ଟା କଲେ, ତା'ସେଇ କହିପାରିବେ । ମାତ୍ର କ'ଣ ହେଲା ଏହାର ଶେଷ ପରିଣତି ? ଭାଗ୍ୟର ଚକ୍ରାନ୍ତରେ ସମସ୍ତ ସମ୍ପଦରୁ ବଞ୍ଚିତ ହୋଇ ରାସ୍ତାରେ ଭିକାରି ଭଳି ବୁଲିଲେ । ଜୀବନଟା ଯାଇଥାଆନ୍ତା, ରକ୍ଷା କଲା ଅର୍ଲାଣ୍ଡୋ — ଆଜି ଅର୍ଲାଣ୍ଡୋକୁ ଦେଖନ୍ତୁ — ଆଉ ତାଙ୍କୁ ଦେଖନ୍ତୁ —

ଏ ସବୁ ଦେଖି ଦେଖି ସଂସାରରୁ ମୋର ମନ ଛାଡ଼ିଯାଇଛି । ତା' ଅପେକ୍ଷା ଶତଗୁଣେ ଭଲ ବରଂ ଏଇ ଅରଣ୍ୟର ଜୀବନ । ଆନନ୍ଦ ହିଁ ଆନନ୍ଦ ... ଚିନ୍ତା ନାହିଁ... ଦୁଃଖ ନାହିଁ ... ଈଶ୍ୱରଙ୍କୁ ଧନ୍ୟବାଦ ... ମୁଁ ମୋର ବାଟ ପାଇଯାଇଛି ।

ମହାମାନ୍ୟ ଡିଉକ୍, ଜୀବନରେ ବହୁତ ଦୁଃଖ ପାଇଲେ । କାହାକୁ ଦୋଷ ଦେଇ ଲାଭ ନାହିଁ । ଏ ସବୁ ଭାଗ୍ୟର ଦୋଷ, ଏଥର ଯେତେଦିନ ବଞ୍ଚିବେ, ଆନନ୍ଦରେ ରହନ୍ତୁ... ଆପଣଙ୍କୁ ଆପଣଙ୍କର ପୂର୍ଣ୍ଣ ମର୍ଯ୍ୟାଦାରେ ରଖି ମୁଁ ଯାଉଛି । ଆଶା କରୁଛି, ବଞ୍ଚିଥିବା ପର୍ଯ୍ୟନ୍ତ ଏଥିରୁ ଆପଣ ବିଚ୍ୟୁତ ହେବେ ନାହିଁ...

ଅର୍ଲାଣ୍ଡୋ — ଅଳ୍ପ ବୟସରୁ ଭାଗ୍ୟର ଚକ୍ରାନ୍ତରେ ତୁ ବି କିଛି କମ୍ ଦୁଃଖ ପାଇ ନାହୁଁ । ତେବେ ତୋର ସାହସ ଥିଲା, ଧୈର୍ଯ୍ୟ ଆଉ ନିଷ୍ଠା ଥିଲା । ସତ୍ୟ ଆଉ ନ୍ୟାୟର ପଥରେ ଚାଲି ଶେଷରେ ତୁ ତୋ'ର ଲକ୍ଷ୍ୟରେ ପହଞ୍ଚିଯାଇଛୁ । ପାଇପାରିଛୁ ତୋର ଈପ୍ସିତାକୁ ... ଆଶୀର୍ବାଦ କରୁଛି — ଈଶ୍ୱର ତମ ଦୁହିଁଙ୍କର ମଙ୍ଗଳ କରନ୍ତୁ ।

ଅଲିଭର୍, ଜୀବନରେ ଯେଉଁ ଶିକ୍ଷା ତମେ ପାଇଛ, ଆଶା କରୁଛି ତମେ ତାହା କେବେ ଭୁଲିବ ନାହିଁ । ତମ ପାଇଁ ଛାଡ଼ିଗଲି ତମର ପ୍ରେମ । ବହୁ ବନ୍ଧୁ ଆଉ ଜମିଦାରୀ ।

ଆଉ ସେଲଭିୟାସ୍, ତମ ହାତରେ ଦେଇଗଲି ତମର ଚିରାକାଂକ୍ଷିତ ପ୍ରିୟାକୁ । ତମେ ହିଁ ତା'ର ଯୋଗ୍ୟ ପାତ୍ର ।

ବିଦାୟ - ବନ୍ଧୁଗଣ... ଈଶ୍ୱର ସମସ୍ତଙ୍କର ମଙ୍ଗଳ କରନ୍ତୁ । ସୁଖୀ ହୁଅନ୍ତୁ ସମସ୍ତେ ।

# ଦି ମାର୍ଚ୍ଚାଣ୍ଟ ଅଫ୍ ଭେନିସ୍

## ପ୍ରଥମ ଅଧ୍ୟାୟ

॥ ୧ ॥

ଭେନିସ୍‌ର ସୌଦାଗର ଆଣ୍ଟୋନିଓ ସେଠାର ସମାଜର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ସ୍ନେହୀ, ବନ୍ଧୁବତ୍ସଳ, ବିନୀତ ଓ ମୃଦୁଭାଷୀ । ଏଇ ବଣିକ ଥିଲେ ପ୍ରଭୂତ ସମ୍ପଦର ଅଧିକାରୀ । ତାଙ୍କର ବହୁ ବାଣିଜ୍ୟତରୀ ସୁଦୂର ଦେଶମାନଙ୍କ ସହିତ ବାଣିଜ୍ୟ-ବ୍ୟବସାୟ କରି ପ୍ରଚୁର ଧନ ବୋହି ଆଣୁଥିଲେ । ନିରହଙ୍କାରୀ ଆଣ୍ଟୋନିଓ କିନ୍ତୁ ଏଥିପାଇଁ କୌଣସି ଅଭିମାନ ପୋଷଣ କରୁ ନ ଥିଲେ । ତାଙ୍କର ଦ୍ୱାର ସଦାବେଳେ ବନ୍ଧୁମାନଙ୍କର ପାଇଁ ଖୋଲା ରହୁଥିଲା । ବିପନ୍ନକୁ ଯଥାସାଧ ସାହାଯ୍ୟ କରିବାକୁ ସେ ନିଜର ଧର୍ମ ବୋଲି ବିଶ୍ୱାସ କରୁଥିଲେ ।

ଗତ କିଛିଦିନ ହେବ ତାଙ୍କୁ ଭାରି ବିଷଣ୍ଣ ଦେଖାଯାଉଛି । ସଦା ହାସ୍ୟମୟ ମୁଖମଣ୍ଡଳ ଉପରେ ସତେ ଯେମିତି ବିଷାଦର କୁହୁଡ଼ି ଘେରି ରହିଛି । ସମ୍ପଦ ଯେଉଁଠି ସୁଖର ମାପକାଠି ସେଠି ପୁଣି ଧନର ପାହାଡ଼ ଉପରେ ବସିଥିବା ତାଙ୍କ ଭଳି ଜଣେ କୁବେରଙ୍କର ବରପୁତ୍ରର ଦୁଃଖ କ'ଣ ? କାହିଁକି ଏ ବିଷାଦ ଯୋଗ ?

ବନ୍ଧୁଗୋଷ୍ଠୀରେ ଏଥିପାଇଁ ଯୁକ୍ତିତର୍କର ସୀମା ନାହିଁ, କେହି କହୁଛନ୍ତି ଆଣ୍ଟୋନିଓଙ୍କର ସବୁ ସମ୍ପଦ ତ ପାଣି ଉପରେ ଭାସୁଛି । ଦୁର୍ଘଟଣା ଯେକୌଣସି ମୁହୂର୍ତ୍ତରେ ଘଟିଯାଇପାରେ । ସମୁଦ୍ରର ଅଥଳପାଣିରେ କେତେବେଳେ କ'ଣ ଘଟିବ କିଏ କହିବ ? ଝଡ଼ବତାସ ହେଉଛି ସମୁଦ୍ର ଢେଉର ନିତ୍ୟସାଥୀ । ନାହିଁ ନାହିଁ ଯଦି ଝଡ଼ ଭିତରେ ଜାହାଜ ପଡ଼ିଗଲା, ତେବେ ତା'ର ଦଶା କ'ଣ ହେବ ? ଆଣ୍ଟୋନିଓ ସବୁବେଳେ ଏଇ କଥା ଭାବୁଛନ୍ତି । ସେଇଥିପାଇଁ ତାଙ୍କର ମନ ଭଲ ରହୁ ନାହିଁ ।

ଆଉ ଜଣେ ବନ୍ଧୁ କହିଲେ ତମେ ଯାହା କହିଲ, ତାହା ମିଛ ନ ହୋଇପାରେ । ସେଇଥିପାଇଁ ସେ ଯେତେବେଳେ ବାଲିଘଡ଼ି ଆଡ଼କୁ ଅନାଉଛନ୍ତି ସେତେବେଳେ ତାଙ୍କର ପାଣି ତଳର ବାଲି କଥା ମନେ ପଡ଼ିଯାଉଛି । ଗିର୍ଜା ଘରର ଚୂଡ଼ା ଆଡ଼କୁ ଅନାଇଦେଲେ ତାଙ୍କୁ ଦେଖାଯାଉଛି ପାଣି ଭିତରେ ବୁଡ଼ି ରହିଥିବା ଚୋରା ପାହାଡ଼ଗୁଡ଼ା । ସେଇ ପାହାଡ଼ରେ ଧକ୍କା ବାଜିଲେ ଜାହାଜର ଅବସ୍ଥା କ'ଣ ହେବ, ସେଥିରେ ବୋଝେଇ ହୋଇଥିବା ପଣ୍ୟସବୁର ଗତି ବା କ'ଣ ହେବ—ଏଇସବୁ ହଜାରେ ଦୁଶ୍ଚିନ୍ତା ମୁଣ୍ଡରେ ଯାହାର ଖେଳୁଛି ସିଏ ଅବା ଖୁସି ରହିବେ କେମିତି ?

ମନ ଭିତରେ ଯାହା ଭାବୁଥାଆନ୍ତୁ ନା କାହିଁକି, ବାହାରେ କିନ୍ତୁ ଆଣ୍ଟୋନିଓ ଏସବୁ କଥା ମାନିବାକୁ ପ୍ରସ୍ତୁତ ନୁହନ୍ତି । କାହିଁକି ବା ମାନିବେ ? ସେ ଜଣେ ବ୍ୟବସାୟୀ ସତ । ହେଲେ ନୌବାଣିଜ୍ୟ ତ ତାଙ୍କର ଏକମାତ୍ର ବ୍ୟବସାୟ ନୁହେଁ । ଆହୁରି ବି କେତେ ବ୍ୟବସାୟରେ ତାଙ୍କର ଟଙ୍କା ଖଟାଯାଇଛି । ତେଣୁ ଗୋଟାଏ ବ୍ୟବସାୟ କଥା ଭାବି ସେ ଦୁଃଖ କରିବେ କାହିଁକି ?

ତେବେ ହଁ, ସେ ଜାଣନ୍ତି ଏ ଦୁନିଆ ହେଉଛି ଏକ ରଙ୍ଗମଞ୍ଚ । ପ୍ରତି ମଣିଷ ଗୋଟିଏ ଗୋଟିଏ ଭୂମିକାରେ ଅଭିନୟ କରିଚାଲିଛି । ଭୂମିକା ସରିଲେ ତାକୁ ଏଠୁ ବିଦାୟ ନେବାକୁ ପଡୁଛି । ଏଇ ସବୁକଥା ଭାବିଲେ ମନଟା କେମିତି ଦୁଃଖୀ ହୋଇଯାଏ ।

ବାସାନିଓଙ୍କ ସହିତ ତାଙ୍କର ଏଇସବୁ ବିଷୟରେ କଥାବାର୍ତ୍ତା ହେଉଥିଲା । ଆଣ୍ଟୋନିଓ ଆଉ ଏଇ ସବୁ ପ୍ରସଙ୍ଗକୁ ବେଶୀ ଟାଣିବାକୁ ଚାହୁଁ ନ ଥିଲେ । କଥାର ମୋଡ଼ ବଦଳାଇବା ପାଇଁ ସେ ବାସାନିଓଙ୍କୁ କହିଲେ.. ତମେ ତ କହୁଥିଲ, ଆଜି କେଉଁ ଭଦ୍ରମହିଳାଙ୍କ ସହିତ ଦେଖା କରିବାକୁ ଯିବ ବୋଲି । ମହିଳାଜଣକ କିଏ ?

ବାସାନିଓ ବନ୍ଧୁଙ୍କ ମୁହଁକୁ ଅନାଇଲେ । କଥା ଆରମ୍ଭ କରିବା ପୂର୍ବରୁ ନିଜକୁ ସେଥିପାଇଁ ସତେଯେମିତି ପ୍ରସ୍ତୁତ କରି ନେଉଥିଲେ । ତାଙ୍କ କଣ୍ଠରୁ ବେଦନା ଝରି ପଡୁଥିଲା ।

ଶୁଣ ବନ୍ଧୁ— ବାସାନିଓ ଆରମ୍ଭ କଲେ- ଆଭିଜାତ୍ୟର ଏଇ ମିଥ୍ୟା ଆଡ଼ମ୍ବର ବଜାୟ ରଖିବାକୁ ମୁଁ ଆଜି ପ୍ରାୟ ସର୍ବହରା.. ଏଥିରୁ ଉଦ୍ଧାର ପାଇବାକୁ ଚେଷ୍ଟା କରୁଛି । ତମେ ଯେ କେତେ ପ୍ରକାରେ ମୋତେ ସାହାଯ୍ୟ କରିଚାଲିଛ, ତା' ମୁଁ ଭାଷାରେ ପ୍ରକାଶ କରିପାରିବି ନାହିଁ । ଚିରକାଳ ପାଇଁ ତମେ ମୋତେ ଋଣୀ କରିରଖିଛ... ମୋର ଏଇ ଦୁର୍ଦ୍ଦଶାର କାରଣ ଯଦି କାହାର ଜାଣିବାର ଅଧିକାର ଥାଏ, ତେବେ ସେ ହେଉଛ ତମେ । ମୁଁ ତମକୁ ସବୁ କହିବି ।

ଆଣ୍ଟୋନିଓ ବନ୍ଧୁଙ୍କ ଆଡ଼େ ଅନାଇଲେ ।

ବାସାନିଓ କହିଚାଲିଲେ— ବେଲ୍‌ମଣ୍ଟ ନଗରୀରେ ଅଛନ୍ତି ପୋର୍ସିଆ ନାମରେ ଜଣେ ରୂପବତୀ, ଗୁଣବତୀ ଆଉ ଧନୀ ମହିଳା । ଦୁର୍ଭାଗ୍ୟକୁ ସେ ପିତୃହୀନା । ବିବାହର ବୟସ ହୋଇଛି । ବହୁ ଜାଗାରୁ, ଅନେକ ଅଭିଜାତ ପରିବାରରୁ ଏଥିପାଇଁ ପ୍ରସ୍ତାବ ଆସୁଛି। କିନ୍ତୁ ଏଥିପାଇଁ ତାଙ୍କର ଗୋଟିଏ ସର୍ତ୍ତ ରହିଛି । ଯିଏ ତାହା ପୂରଣ କରିପାରିବ, ସେଇ ହେବ ତାଙ୍କର ଜୀବନ ସାଥୀ । କେବଳ ଏଇଥିପାଇଁ ଯେ ମୁଁ ତାଙ୍କୁ ବିବାହ କରିବାକୁ ଚାହେଁ, ତା' ନୁହେଁ । ମୁଁ ତାଙ୍କୁ ପ୍ରକୃତରେ ଭଲ ପାଏ ଆଉ ତାଙ୍କ ଆଖିରେ ମଧ ମୋପାଇଁ ସେଇ ଅନୁରାଗର ଝଲକ ଦେଖିବାକୁ ପାଇଛି !

ଆଣ୍ଟୋନିଓ କହିଲେ ... ଅଭିନନ୍ଦନ ବନ୍ଧୁ । ଆଉ ତେବେ ବିଳମ୍ବ କାହିଁକି ? ଯାଆ ପ୍ରତିଯୋଗିତାରେ ଅଂଶ ଗ୍ରହଣ କର, ଆଉ ଈପ୍‌ସିତ ବସ୍ତୁ ଲାଭ କର । ଶୁଭ କାମନା ରହିଲା...

ବାସାନିଓ କହିଲେ— ଶୁଭେଚ୍ଛା ନିମନ୍ତେ ଧନ୍ୟବାଦ । ପ୍ରତିଯୋଗିତାରେ ନିଶ୍ଚୟ ସଫଳ ହେବି, ସେ ଆତ୍ମବିଶ୍ୱାସ ମୋର ଅଛି । କେବଳ ପାଥେୟ ପାଇଁ ତମର ସାହାଯ୍ୟ ଲୋଡ଼ା... ତମେ ଯଦି ...

ଆଣ୍ଟୋନିଓ କହିଲେ ତମେ ତ ଜାଣ ... ମୋର ସମ୍ବଳ ସବୁ ବର୍ତ୍ତମାନ ସାଗରରେ ଭାସୁଛି । ତେବେ ଚିନ୍ତା ନାହିଁ । ଆମେ ଧାର ସୂତ୍ରରେ ଅର୍ଥ ସଂଗ୍ରହ କରିବା । ତମେ ଯାତ୍ରାର ଉଦ୍‌ଯୋଗ କର । ମୁଁ ଅର୍ଥ ବ୍ୟବସ୍ଥା କରୁଛି ।

ବାସାନିଓ ତାଙ୍କର ଏଇ ଅଜାତଶତ୍ରୁ, ବନ୍ଧୁବତ୍ସଳ ସାଥୀଙ୍କ ଆଡ଼କୁ ଅନାଇ ରହିଲେ । ତାଙ୍କ ଚାହାଣିରୁ କୃତଜ୍ଞତା ଝରି ପଡୁଥିଲା ।

॥ ୨ ॥

ବେଲ୍‌ମଣ୍ଟର ନିଜ ବାସଗୃହରେ ବସି ପୋର୍ସିଆ ନିଜର ଭାଗ୍ୟକୁ ନେଇ ଆକ୍ଷେପ କରୁଥିଲେ । ସଂସାରର ବିଚିତ୍ର ରୀତିନୀତି ପ୍ରତି ତାଙ୍କର ଯେ ବିତୃଷ୍ଣା ଆସିଗଲାଣି... ଏଇ କଥା ନିଜର ବନ୍ଧୁ ନେରିଶାକୁ ବାରମ୍ବାର ବୁଝାଉଥିଲେ ।

ନେରିଶା କହିଲେ ... ସତରେ ଏ ଦୁନିଆ ଏକ ଅତି ବିଚିତ୍ର ସ୍ଥାନ । ଏଠି ନ ଥିଲା ବାଲାର ଯେତିକି ଦୁଃଖ, ଥିଲାବାଲାର ବି ସେତିକି ଦୁଃଖ । ଗୋଟିଏ କାମ କରାଯାଇପାରେ । ସୁଖ ପାଇଁ ଏ ଉଭୟର ଗୋଟିଏ ମଝିଆମଝି ବାଟ ବାଛି ନିଆ ଯାଇପାରେ । ପ୍ରାଚୁର୍ଯ୍ୟ ଶୀଘ୍ର ମଣିଷକୁ ପରିଣତ ବୟସ୍କ କରିଦିଏ । ଯିଏ କେବେହେଲେ ପ୍ରୟୋଜନରୁ ଅଧିକ ଚାହେଁ ନାହିଁ, ସେଇ ପ୍ରକୃତରେ ଅନେକ ଦିନ ବଞ୍ଚେ-

ପୋର୍ସିଆ ଦୁଃଖରେ କହେ ... ମୋର ଚାହିଁବା ନ ଚାହିଁବାରେ ଯାଏ ଆସେ କେତେ ? ଯିଏ ବାପାଙ୍କର ଉଇଲ୍‌ର ସର୍ତ୍ତ ପୂରଣ କରିବ ସେଇ ହିଁ ତ ହେବ ମୋର ଭାଗ୍ୟ ବିଧାତା...

ନେରିଶା କହିଲା ... ବାପା ଯେ କେବଳ ଜଣେ ଧର୍ମପ୍ରାଣ ବ୍ୟକ୍ତି ଥିଲେ, ତାହା ନୁହେଁ । ତାଙ୍କର ମୃତ୍ୟୁ ପରେ କାଳେ କିଏ ଏଇ ବିଶାଳ ସମ୍ପତ୍ତି ଆଉ ପ୍ରାଣାଧିକା କନ୍ୟାକୁ ଠକି ଦେଇ ଚାଲିଯିବ, ସେଇ ଆଶଙ୍କାରେ ସେ ଏଇ ତିନୋଟି ବାକ୍ସର ପ୍ରହେଳିକା କଳ୍ପନା କରି ଦେଇ ଯାଇଛନ୍ତି । ତାଙ୍କର ସର୍ତ୍ତ ହେଉଛି, ସୁନା ରୁପା ଆଉ ସୀସା-ଏଇ ତିନୋଟି ବାକ୍ସ ଭିତରୁ ଯିଏ ଠିକ୍ ବାକ୍ସଟିକୁ ବାଛି ନେଇ ପ୍ରକୃତ ଉତ୍ତର ଦେଇପାରିବ, ସେଇ ହେବ ତୋର ଯୋଗ୍ୟ ପାତ୍ର ।

ପୋର୍ସିଆ କହିଲା-ଅନେକ ତ ଆସୁଛନ୍ତି । ଯେମିତି ଏଇ ନେପଲସ୍‌ର ଯୁବରାଜ। ଦେଖିବାକୁ ଠିକ୍ ଯେମିତି ଗୋଟିଏ ଘୋଡ଼ାଛୁଆ ! କାଉଣ୍ଟ ପାଲ୍‌ଟିନ୍-ଅହଙ୍କାରରେ ସତେ ଯେମିତି ଫାଟି ପଡୁଛି ! ଆଉ ପୁଣି ଫରାସୀ ଜମିଦାର ମସିୟେ ଲେବୋ... ସେଇଟି ଯେ ଏ

ଦୁଇ ଜଣଙ୍କଠୁଁ କାଠିଏ ସରସ... ଆଉ ଦେଖ ଏଇ ଇଂଲଣ୍ଡର ଯୁବକ - ମହାଧନୀର ସନ୍ତାନ ବାରନ୍ ଫାଲକନ୍ ବ୍ରିଜ ... ତତେ ସତ କହୁଛି ... ତା' ସାଙ୍ଗରେ ମୋର ମୋଟେ ପଟିବ ନାହିଁ... ଆଉ ରହିଲେ ସ୍କଟ୍‌ଲାଣ୍ଡର ଜମିଦାର- ଭାରି ଏକଜିଦିଆ ... ସାକ୍ସନ୍ ଡିଉକ୍‌ଙ୍କର ପୁତୁରା ... ଜର୍ମାନ୍ ଯୁବକ ... ସେଇଟା ଘୋଡ଼ାମଦୁଆ ...

ବାଧାଦେଇ ନେରିଶା କହିଲା... ଶେଷକୁ ସେଇ ଯଦି ଠିକ୍ ପେଟିକାଟିକୁ ବାଛି ନିଅନ୍ତି ? ତାଙ୍କୁ ତ ତୁ ଫେରାଇ ଦେଇପାରିବୁ ନାହିଁ । ବାପାଙ୍କର ସର୍ତ୍ତର ଖିଲାପ ହୋଇଯିବ । ଯେ...

ପୋର୍ସିଆ ଚିନ୍ତାକରି କହେ.. ଭୁଲ୍ ପେଟିକା ଉପରେ ତୁ ଗୋଟାଏ ମଦ ବୋତଲ ରଖିଦେବୁ । ତାହା ହେଲେ ସିଏ ଲୋଭ ସମ୍ଭାଳି ନ ପାରି ସେଇ ଗୋଟିକୁ ବାଛିନେବ । ବାଃବାଃ..ଥରେ ତା' ଖାପଚ଼ରେ ପଡ଼ିଲେ ମୁଁ ଆଉ ବଞ୍ଚିବି ନାହିଁ.. ନେରିସା ହସେ ।

କହେ- ଆଗରୁ ଏତେ ଡରିଯାଉଛୁ କାହିଁକି ? ଉଇଲ୍‌ର ସର୍ତ୍ତ ଶୁଣି ସେମାନେ ସବୁ ପଳାଇଯିବା କଥା ଭାବୁଛନ୍ତି । ଆଉ କେଉଁ ବାଟରେ ତୋତେ ପାଇବା ପାଇଁ ଚେଷ୍ଟା କରିବେ ବୋଲି ଚିନ୍ତା କରୁଛନ୍ତି ।

ପୋର୍ସିଆ କହେ- ସେମାନେ ଯାହା କରନ୍ତୁ ମୋତେ ଯଦି ରୋମ୍ ଉପକଥାର ସିବିଲ୍ଲାଙ୍କ ଭଳି ଚିରକୁମାରୀ ରହିବାକୁ ପଡ଼େ କିମ୍ବା କୁମାରୀ ଡାଏନାଙ୍କ ଭଳି ଚିରଦିନ କୁଆଁରୀ ରହିବାକୁ ପଡ଼େ ତେବେ ସେଥିପାଇଁ ମୋର ଦୁଃଖ ନାହିଁ । ବାପାଙ୍କର ଉଇଲ୍‌ର ସର୍ତ୍ତକୁ ମୁଁ କଦାପି ଭାଙ୍ଗି ଦେଇପାରିବି ନାହିଁ ।

ନେରିଶା ପଚାରେ- ଆଚ୍ଛା କହିଲୁ ଏଇ ଯେଉଁ ବାସାନିଓ କିଛିଦିନ ହେବ ଯିବାଆସିବା କରୁଛନ୍ତି, ତାଙ୍କୁ ତତେ କେମିତି ଲାଗେ ? ଶୁଣୁଛି ସେ ଜଣେ ସମ୍ଭ୍ରାନ୍ତ ବଂଶୀୟ, ପଣ୍ଡିତ ଆଉ ଯୋଦ୍ଧା ବି । ମୋର ମନେହୁଏ ଏତେ ଲୋକଙ୍କ ଭିତରେ ସେହିଁ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯାହାଙ୍କୁ ପତି ରୂପରେ ଗ୍ରହଣ କରାଯାଇପାରେ...

ପୋର୍ସିଆ ନୀରବରେ କ'ଣ ସବୁ ଭାବିବାକୁ ଲାଗେ...

କଥାଟା ଅବଶ୍ୟ ଭାବିବାଭଳି । ଦେଖାଯାଉ, ଶେଷପର୍ଯ୍ୟନ୍ତ କ'ଣ ହେଉଛି ।

॥ ୩ ॥

ବାସାନିଓ ପହଞ୍ଚିଯାଏ, ସାଇଲକ୍ ନାମକ ଜଣେ ମହାଜନ ପାଖରେ । ଆଣ୍ଟୋନିଓକୁ ସେ ତିନିମାସ ପାଇଁ ତିନିହଜାର ଡୁକାଟ୍ ଧାରସୂତ୍ରରେ ଦେଇପାରିବ କି ନାହିଁ, ପଚାରେ । ସାଇଲକ୍ ଜାଣେ ଆଣ୍ଟୋନିଓ ଜଣେ ଭଦ୍ରଲୋକ । ତେବେ ବର୍ତ୍ତମାନ ତା'ର ଜାହାଜଗୁଡ଼ିକ ସବୁ ସମୁଦ୍ରରେ.. ସେଇଥିପାଇଁ ସେ ଅସୁବିଧାରେ ପଡ଼ିଯାଇଛି । ନ ହେଲେ ମାତ୍ର ତିନିହଜାର ଡୁକାଟ୍ ତା'ପାଇଁ ହାତର ମଳି ନୁହଁ ତ ଆଉ କ'ଣ ?

ବାସାନିଓ ପୁଣିଥରେ ପଚାରେ-ମହାଜନେ, ଆପଣ କ'ଣ ଟଙ୍କାଟା ଦେଇପାରିବେ ?

ସାଇଲକ୍ କହେ.. ଦେଇପାରିବି । ତେବେ ଏଥିପାଇଁ ଆଣ୍ଟୋନିଓଙ୍କୁ ସନ୍ତକ କରିବାକୁ ପଡ଼ିବ ।

ବାସାନିଓ ଆଣ୍ଟୋନିଓଙ୍କୁ ଡାକିବାକୁ ଯାଏ ।

ସାଇଲକ୍‌ର ଦାନ୍ତ କଡ଼ମଡ଼ କରିଉଠେ । ଏତେଦିନେ ହାତୀ ପଡ଼ିଛି ପଙ୍କରେ । ଇହୁଦୀମାନଙ୍କୁ ନାକ ଟେକୁଥିଲା..ବିନା ସୁଧରେ ଟଙ୍କା ଦେଇ ଭେନିସ୍‌ରେ ମୋ କାରବାରର ବାରଟା ବଜାଇ ଦେଉଥିଲା.. ମତେ ପୁଣି ସୁଧଖୋର ବୋଲି କହି ଗାଳି ଦେଉଥିଲା । ଏଇଥର ଦେଖିବି, କିଏ ପୁଅର ପିଠିରେ ପଡ଼ିବ ।

ସାଇଲକ୍ ନିଜେ ଜଣେ ଇହୁଦୀ ।

ଆଣ୍ଟୋନିଓଙ୍କୁ ନେଇ ବାସାନିଓ ଫେରିଆସେ ।

ଦୁଇଜଣଙ୍କ ଆଡ଼କୁ କୁଟିଳ ଦୃଷ୍ଟିରେ ଅନାଇ ସାଇଲକ୍ କହେ, ହିସାବ କରି ଦେଖୁଥିଲି, ମୋ ହାତରେ ଏବେ ଏତେଗୁଡ଼ାଏ ଟଙ୍କା ନାହିଁ । ତେବେ ଚିନ୍ତା ନାହିଁ । ଜବାବ ଦେଇଛି ଯେତେବେଳେ ଆଉ କାହାଠାରୁ କିଛି ଆଣି ଟଙ୍କାଟା ତମକୁ ଦେବି ।

ଆଣ୍ଟୋନିଓ ସାଇଲକ୍ ଆଡ଼କୁ ଅନାଇ କହେ.. ଦେଖ ବାବୁ, ତମେ ତ ଜାଣ, ଏପର୍ଯ୍ୟନ୍ତ ମୁଁ କାହାରିଠାରୁ ଫଟା ପାହୁଲାଟିଏ ବି ଧାର କରି ନାହିଁ । ଖାଲି ମୋର ଏଇ ବନ୍ଧୁଙ୍କର ଜରୁରୀ ଦରକାର ବୋଲି ତମ ପାଖରେ ହାତ ପତାଉଛି । ଟଙ୍କାଟା ଯେମିତି ହେଲେ ଯୋଗାଡ଼ କରିଦିଅ । ତିନିମାସ ଭିତରେ ଫେରିପାଇବ ।

ସାଇଲକ୍ ସତେଯେମିତି ଲାଜରେ ଜିଭ କାମୁଡ଼ି ପକାଏ । କହେ.. ଭେନିସ୍‌ରେ ଏମିତି କିଏ ଅଛି, ଯିଏ ଆପଣଙ୍କୁ ଜାଣି ନାହିଁ ? ମତେ ଆଉ ଲଜ୍ଜା ଦିଅନ୍ତୁ ନାହିଁ । ଆପଣ ସିନା ମତେ ଖରାପ ଭାବନ୍ତି । ମୁଁ କିନ୍ତୁ ଆପଣଙ୍କୁ ମୋର ବନ୍ଧୁ ବୋଲି ମାନେ । ଯାହାହେଉ, ଟଙ୍କା ମୁଁ ଆପଣଙ୍କୁ ଦେବି, ପଇସାଟିଏ ବି ସୁଧ ନେବି ନାହିଁ । ମନ ବୁଝିବାକୁ ଖାଲି ଲେଖାପଢ଼ା ଟିକିଏ କରିନେବା । ଆଉ ହଁ 'ମୋର କିନ୍ତୁ ଗୋଟିଏ ସର୍ତ୍ତ...

ବାସାନିଓ କହିଲା.. ଆହୁରି ପୁଣି ସର୍ତ୍ତ ।

ସାଇଲକ୍ ରହସ୍ୟମୟ ହସ ହସି କହେ ସେ ବି ସେଇ ମନ ବୁଝିବା ପାଇଁ ।

ଆଣ୍ଟୋନିଓ କହିଲେ- କ'ଣ ସେଇ ସର୍ତ୍ତ ?

ସର୍ତ୍ତ ହେଉଛି, ସାଇଲକ୍ କହିଯାଏ.. ଯଦି ଆପଣ ଠିକ୍ ସମୟରେ ଟଙ୍କାଟା ଫେରାଇ ଦେଇ ନ ପାରନ୍ତି...

ବାସାନିଓ ଅଧୈର୍ଯ୍ୟ ହୋଇ କହେ.. ତେବେ ?

ସାଇଲକ୍ ଚିନ୍ତା କରି ଗୋଟିଏ ଗୋଟିଏ ଶବ୍ଦ ଉଚ୍ଚାରଣ କରେ । କହେ ତେବେ:..ତେବେ ମୁଁ ଆଣ୍ଟୋନିଓଙ୍କ ଦେହର ଯେକୌଣସି ସ୍ଥାନରୁ ଗୋଟିଏ ପାଉଣ୍ଡ ମାଂସ କାଟିନେବି ... ହାଃ..ହାଃ...ହାଃ

ବାସାନିଓ ସନ୍ଦେହରେ ତା' ଆଡ଼କୁ ଅନାଏ । କହେ.. ଇଏ କି ଧରଣର ବିଚିତ୍ର ସର୍ତ୍ତ ?

ସାଇଲକ୍ ସେମିତି ହସୁ ହସୁ କହେ.. ଯେତେହେଲେ ଆଣ୍ଟୋନିଓ ଏ ସହରର ଜଣେ ମାନୀ ଲୋକ.. ତେଣୁ ସର୍ତ୍ତଟା ବି ତ ସେମିତି ଓଜନଦାର ହେବ-ନା ନୁହେଁ ।

ବାସାନିଓ କହେ.. ନା.. ଏଭଳି ସର୍ତ୍ତରେ ରାଜିହୋଇ ଟଙ୍କା ନେବାକୁ ମୁଁ ରାଜି ନୁହେଁ...

ଆଣ୍ଟୋନିଓ ପ୍ରଶ୍ରୟପୂର୍ଣ୍ଣ ହସ ହସି କହନ୍ତି.. ସାଇଲକ୍ ଆମକୁ ବନ୍ଧୁ ବୋଲି ମାନିଛନ୍ତି । ବନ୍ଧୁ କ'ଣ ବନ୍ଧୁର କୌଣସି କ୍ଷତି କରନ୍ତି ? ଆଉ ପୁଣି ମାସେ ଦୁଇମାସ ଭିତରେ ମୋର ଜାହାଜ ସବୁ ଫେରିଆସିବେ । ସେତେବେଳେ ଏଇ ଟଙ୍କା କେଇଟା ଫେରସ୍ତ ଦେବାରେ ଆଉ ଅସୁବିଧା କ'ଣ ?

॥ ୪ ॥

ମରକ୍କୋର ଯୁବରାଜ ଦଳବଳ ନେଇ ପୋର୍ସିଆର ପ୍ରାସାଦରେ ପ୍ରବେଶ କରନ୍ତି । ପୋର୍ସିଆ ସେମାନଙ୍କୁ ସ୍ୱାଗତ ଜଣାଏ ।

ଯୁବରାଜ କହନ୍ତି.. ସୁନ୍ଦରୀ ମୋ ଦେହର ରଙ୍ଗ ଦେଖି ମୋତେ ପ୍ରଥମରୁ ନାକଚ କରି ଦେବ ନାହିଁ । ପୁରୁଷର ପ୍ରକୃତ ପରିଚୟ ତା'ର ଶୌର୍ଯ୍ୟରେ । ମୋର ବୀରତ୍ୱର ଗାଥା ତମେ ନିଶ୍ଚୟ ଶୁଣିଥିବ । ଦେଶର ସମସ୍ତ ସୁନ୍ଦରୀ କୁମାରୀ ମୋର ଗୁଣମୁଗ୍ଧ । ମୋର ଏଇ କଳା ରଙ୍ଗର ଦେହ ତଳେ ଯେଉଁ ଶୁଭ୍ର ସୁନ୍ଦର ମନଟିଏ ରହିଛି, ତା' କିନ୍ତୁ ତମ ପାଦ ତଳେ ବନ୍ଧା ପଡ଼ିଛି.. ତମେ ମୋତେ ନିରାଶ କରିବ ନାହିଁ...

ପୋର୍ସିଆ ବିନୀତ ଭାବରେ କହେ.. ରାଜକୁମାର । ମୋର ମନ ପିତାଙ୍କର ସର୍ତ୍ତର ଅଧୀନ । ଏବେ ଆପଣ ସେଇ ସର୍ତ୍ତ ପାଳନ କରିପାରିଲେ ମୋର ଦେହ ଆଉ ମନ ଆପଣଙ୍କୁ ଅର୍ପଣ କରି ମୁଁ ଧନ୍ୟ ହେବି..

ଯୁବରାଜ ପୋର୍ସିଆକୁ ଧନ୍ୟବାଦ ଜଣାଇ କହନ୍ତି ତେବେ ଆଉ ବିଳମ୍ବ କାହିଁକି ? ମୋତେ ସେଇ ବାକ୍ସ ପାଖକୁ ନେଇଚାଲ । ମୁଁ ମୋର ଭାଗ୍ୟ ପରୀକ୍ଷା କରିନିଏ । ମୋର ବିଶ୍ୱାସ ମୁଁ ତମର ମହାମାନ୍ୟ ପିତାଙ୍କର ସର୍ତ୍ତ ପାଳନ କରିପାରିବି ।

ପୋର୍ସିଆ କହେ... ମୁଁ ଧନ୍ୟ ହେବି ଯୁବରାଜ । ତେବେ ତା' ପୂର୍ବରୁ ଆପଣଙ୍କୁ ଗୋଟିଏ ଶପଥ କରିବାକୁ ପଡ଼ିବ । ଯଦି.. ଯଦି ଦୁର୍ଭାଗ୍ୟକୁ ଆପଣ ଏ ସର୍ତ୍ତରେ ହାରିଯାଆନ୍ତି, ତେବେ ପ୍ରତିଜ୍ଞା କରନ୍ତୁ, ଜୀବନରେ ଆଉ କୌଣସି କୁମାରୀ ନିକଟରେ ପ୍ରେମ ନିବେଦନ କରିପାରିବେ ନାହିଁ । ମୋର ଧୃଷ୍ଟତା ମାର୍ଜନା କରନ୍ତୁ କୁମାର । ମୁଁ ତ କହିଛି; ମୁଁ ମୋର ପିତାଙ୍କର ଆଦେଶ ପାଳନ କରୁଛି ମାତ୍ର ।

ଯୁବରାଜ ଅଗତ୍ୟା ପ୍ରତିଜ୍ଞା କରନ୍ତି ।

ସେପଟେ ବାସାନିଓ ମଧ ବେଲମଣ୍ଟ ଯିବାକୁ ପ୍ରସ୍ତୁତି ଆରମ୍ଭ କରେ । ବନ୍ଧୁ ଗ୍ରାସିୟାନୋ ତା' ସହିତ ବେଲମଣ୍ଟ ଯିବାକୁ ଆଗ୍ରହ ଦେଖାଇବାରୁ ବାସାନିଓ ତାକୁ ଏଥିପାଇଁ ଅନୁମତି ଦିଏ । ଇତିମଧ୍ୟରେ ସାଇଲକ୍‌ର ଅନୁଚର ଲ୍ୟାନସଲଟ୍ ତା'ର ବ୍ୟବହାରରେ ଅତିଷ୍ଠ ହୋଇ ବାସାନିଓ ପାଖକୁ ଚାଲିଆସେ ଏବଂ ତା'ର ଚାକିରି ଗ୍ରହଣ କରେ । ବାସାନିଓର ବନ୍ଧୁ ଲରେଞ୍ଜୋର ମନ ଦିଆନିଆ ଚାଲିଥାଏ ସାଇଲକ୍‌ର କନ୍ୟା ଜେସିକା ସହିତ । ଲରେଞ୍ଜୋ ଜେସିକାକୁ ନେଇ ବାସାନିଓ ସହିତ ପଳାଇ ଯିବାକୁ ଚାହେଁ । ବାସାନିଓ ବାଧ ହୋଇ ଦୁହିଁଙ୍କୁ ନିଜ ସହିତ ଯାତ୍ରା କରିବାକୁ ଅନୁମତି ଦିଏ । ଜେସିକା ଛଦ୍ମବେଶରେ ସାଇଲକ୍‌ର ବେଶ୍ କିଛି ଧନସମ୍ପତ୍ତି ନିଜ ସହିତ ନେଇ ଆସି ଲରେଞ୍ଜୋ ସହ ଯୋଗ ଦିଏ । ବାସାନିଓ ସଦଳବଳେ ବେଲମଣ୍ଟ ଯାତ୍ରା କରେ ।

ମରକ୍କୋର ଯୁବରାଜ ବାକ୍ସ ଥିବା ଘରେ ପ୍ରବେଶ କରନ୍ତି । ପୋର୍ସିଆ ତାଙ୍କୁ ଅନୁସରଣ କରେ । ଯୁବରାଜ ପ୍ରଥମ ପେଟିକା ନିକଟରେ ଠିଆ ହୋଇ ତାକୁ ନିରୀକ୍ଷଣ କରନ୍ତି । ସେଇଟି ସୁନାରେ ତିଆରି । ତା' ଉପରେ ଜଳଜଳ କରୁଛି ନିମ୍ନ କେଇଧାଡ଼ି ଲେଖା- ''ଯିଏ ମୋତେ ବାଛିନେବ, ତା'ର ସକଳ କାମନା ପୂର୍ଣ୍ଣ ହେବ ।'' ଯୁବରାଜ କିଛି କ୍ଷଣ ସେଇଆଡ଼କୁ ଅନାଇ କ'ଣ ଭାବନ୍ତି । ଏଥର ତାଙ୍କର ଆଖିରେ ପଡ଼େ ଦ୍ୱିତୀୟ ବାକ୍ସଟି ଉପରେ । ତାହା ରୁପାରେ ତିଆରି । ଉପରେ ଲେଖା ଯାଇଛି— ''ମୋତେ ଯିଏ ବାଛିବ, ସେ ପାଇବ ତା'ର ଯୋଗ୍ୟ ପ୍ରତିଦାନ ।'' ପାଖରେ ରହିଛି ସୀସା ନିର୍ମିତ ତୃତୀୟ ବାକ୍ସଟି । ତା' ଉପରେ ଖୋଦାଇ କରାଯାଇଛି - ''ମୋତେ ବାଛିଲେ ସବୁକିଛି ଯୋଗାଇବାର ଦାୟିତ୍ୱ ନେବାକୁ ପଡ଼ିବ ।''

ଯୁବରାଜ ସେଇଆଡ଼େ ଅନାଇ କ'ଣ ଭାବିବାକୁ ଲାଗିଲେ । ତାଙ୍କର କପାଳରେ ବିନ୍ଦୁ ବିନ୍ଦୁ ଝାଳ ଦେଖାଦେଲା । ସେ ମନ ସ୍ଥିର କରିପାରୁ ନ ଥିଲେ ।

ନୀରବତା ଭଙ୍ଗ କରି ପୋର୍ସିଆ କହିଲା-ଏଇ ତିନୋଟି ବାକ୍ସକୁ ଭଲକରି ଲକ୍ଷ୍ୟ କରନ୍ତୁ କୁମାର । ଏଥିରୁ ଦୁଇଟି ହେଉଛି ମରୀଚିକା । ଗୋଟିକରେ ଅଛି ଆପଣଙ୍କର ତୃଷ୍ଣାର ଜଳ ଅର୍ଥାତ୍ ମୋର ଗୋଟିଏ ପ୍ରତିକୃତି । ଯଦି ଆପଣ ସେଇଟିକୁ ପାଇଯାଆନ୍ତି ତେବେ ହିଁ ଆପଣ ହେବେଏ ରକ୍ତମାଂସ ଦେହର ଅଧିକାରୀ ...

ମରକ୍କୋର ରାଜକୁମାରଙ୍କ ମନରେ ତଥାପି ଦ୍ୱିଧା । ମନରେ ନାନା ପ୍ରଶ୍ନ ... କାହାକୁ ବାଛିବେ ? କେଉଁଥିରେ ରହିଛି ତାଙ୍କର ଈପ୍ସିତ ବସ୍ତୁ ... ସ୍ୱର୍ଗଦ୍ୱାରର ଚାବିକାଠି ?

ଦେଶ ବିଦେଶରୁ କେତେ ଯେ ରାଜକୁମାର, ସାମନ୍ତ ପୁତ୍ର ଆସି ଠୁଳ ହୋଇଛନ୍ତି ବେଲମଣ୍ଟର ଏଇ ସୁଗନ୍ଧି ପୁଷ୍ପର ସୌରଭରେ ଆକୃଷ୍ଟ ହୋଇ ରାଜକୁମାର ଠିକ୍ ବୁଝିପାରୁ ନାହାନ୍ତି । ମନ କହୁଚି ଭାଗ୍ୟଲକ୍ଷ୍ମୀ ନିଶ୍ଚେ ତାଙ୍କ ଗଳାରେ ଜୟମାଲ୍ୟ ପିନ୍ଧାଇ ଦେବେ ।

ପ୍ରତିଦ୍ୱନ୍ଦ୍ୱୀ ନ ଥିଲେ ଜୟ କରିବାର ରୋମାଞ୍ଚ କାହୁଁ ମିଳିବ ?

କୁମାର ନିଷ୍ପତ୍ତି ନେଇ ନେଲେ । ପ୍ରତିକୃତି ନିଶ୍ଚୟ ସୁନାର ପେଟିକାରେ ଥିବ । ତାହାହିଁ ହେଉଛି ସୁନାବରଣୀ ରାଜକନ୍ୟାଙ୍କର ଯଥାଯୋଗ୍ୟ ସ୍ଥାନ । ଶାସ୍ତ୍ର କହୁଛି, ଯୋଗ୍ୟତା ହିଁ ଯୋଗ୍ୟର ସ୍ଥାନ ନିରୂପଣ କରେ । ପୋର୍ସିଆର ପ୍ରତିକୃତି ଅନ୍ୟ କୌଣସି ପେଟିକାରେ ସ୍ଥାନ ପାଇ ନ ପାରେ ।

କୁମାର ପୋର୍ସିଆଙ୍କଠାରୁ ଚାବି ମାଗିନେଲେ ।

ଖୋଲିଦେଇ ସେ କିନ୍ତୁ ଆତଙ୍କରେ ଦୁଇ ପାହୁଣ୍ଡ ପଛକୁ ଡେଇଁ ପଡ଼ିଲେ । ଏ କ'ଣ ସେ ଦେଖୁଛନ୍ତି ! ଶୂନ୍ୟ ପେଟିକା ଗର୍ଭରୁ ଉଙ୍କି ମାରୁଛି ବୀଭତ୍ସ ଏକ ନର କରୋଟି । ଅକ୍ଷି-କୋଟର ତଳେ ଧାଡ଼ିଏ ଶୁଭ୍ର ବର୍ଣ୍ଣର ଦାନ୍ତ ଦେଖାଇ ସତେଯେମିତି ତାଙ୍କର ଅପାରଗତାକୁ ଅଟ୍ଟହାସ୍ୟ କରୁଛି ! ଅକ୍ଷିକୋଟର ଭିତରେ ରଖାଯାଇଛି ଖଣ୍ଡିଏ କାଗଜ ।

ରାଜକୁମାର କମ୍ପିତ ହସ୍ତରେ ତାକୁ ନେଇ ଆସି ପାଠ କଲେ ।

ଲେଖା ଅଛି-ଯାହା ଚକ୍ ଚକ୍ କରେ, ତାହା ସୁନା ନୁହେଁ ।

ଏ ପ୍ରବାଦ ବାକ୍ୟ ସମସ୍ତେ ଜାଣନ୍ତି । ସମସ୍ତେ କିନ୍ତୁ ଆକୃଷ୍ଟ ହୁଅନ୍ତି ବାହ୍ୟ ଆଡ଼ମ୍ବର ପ୍ରତି ଆଉ ଅକାଳରେ ପ୍ରାଣ ବିସର୍ଜନ ଦିଅନ୍ତି । ବନ୍ଧୁ, ତୁମେ ହୋଇପାର ବୟସରେ ନବୀନ ଆଉ ସାହସୀ । ମାତ୍ର ତମର ବିଚାର ପ୍ରମାଣିତ କରିଦେଇଛି ତମର ବ୍ୟର୍ଥତାକୁ । ଏଥର ତମେ ବିଦାୟ ନେଇପାର...

ରାଜକୁମାରଙ୍କ ମୁହଁରେ ସତେଯେମିତି କିଏ କାଳି ବୋଳିଦେଇଛି ! ଦୁଃସହ ମର୍ମବେଦନା ତାଙ୍କୁ ଦୋହଲାଇ ଦେଇଛି । କେତେ କଳ୍ପନା ତାଙ୍କର ବ୍ୟର୍ଥ ହୋଇଗଲା !

ପାଖରେ ଠିଆ ହୋଇଛି ପୋର୍ସିଆ । ତା'ର ମୁଖମଣ୍ଡଳ ନିର୍ଲିପ୍ତ । ରାଜକୁମାରଙ୍କୁ ଦେଖାଗଲା, ସେଇ ଉଦାସୀନ ଓଠ ତଳେ ଦ୍ୱିତୀୟାର ବାଙ୍କ ଜହ୍ନ ଭଳି ଧାରେ ବ୍ୟଙ୍ଗମିଶା ହସ ଫୁଟିଉଠିଛି ।

ରାଜକୁମାରୀ ସତେଯେମିତି ନୀରବ ଅଟ୍ଟହାସ୍ୟରେ ଫାଟିପଡ଼ି ତାଙ୍କୁ କହୁଛନ୍ତି, ତୁମେ ହାରିଗଲ କୁମାର... ତୁମେ ହାରିଗଲ....

ରାଜକୁମାର ମୁଣ୍ଡ ନୁଆଇଁ ଫେରିଚାଲିଲେ....

ପୋର୍ସିଆ ଶାନ୍ତିରେ ନିଃଶ୍ୱାସ ପକାଇଲେ । ଘରର ପର୍ଦ୍ଦାସବୁକୁ ଟାଣିଦେବା ନିମନ୍ତେ ଆଦେଶ ଦେଉ ଦେଉ ଭାବୁଥିଲେ-ଯାହା ହେଉ ଈଶ୍ୱର ତାଙ୍କୁ ଏ ଅବାଞ୍ଛିତ କବଳରୁ ରକ୍ଷା କରିଛନ୍ତି । ତାଙ୍କର ବିଶ୍ୱାସ, ଏମିତି ସବୁ ବିପଦରୁ ସେ ହିଁ ତାଙ୍କୁ ରକ୍ଷା କରିବେ..

କିଏ ତେବେ ତାଙ୍କର ବାଞ୍ଛିତ ? ସେ କେଉଁଠି ଅଛନ୍ତି ? କେବେ ଆସିବେ ?

ପୋର୍ସିଆ କ'ଣ ତେବେ ଚିର କୁମାରୀ ରହିଯିବେ ?

॥ ୫ ॥

ସାଇଲକ୍ ମୁଣ୍ଡରେ ହାତ ଦେଇ ବସିଛନ୍ତି । ତାଙ୍କର ଏତେ ଆଦରର କନ୍ୟା ଜେସିକାର ପତ୍ତା ମିଳୁ ନାହିଁ । ସେ କୁଆଡ଼େ ପଳାଇଛି । ସାଙ୍ଗରେ ନେଇଯାଇଛି ତାଙ୍କର ଜୀବନବ୍ୟାପୀ ସଞ୍ଚୟର ସିଂହଭାଗ । ତାହାହିଁ ସାଇଲକ୍‌ଙ୍କୁ ମର୍ମାହତ କରୁଛି ।

ଝିଅ ଯାଇଛି, ଦିନେ ହେଲେ ଫେରିବ । ନ ଫେରିଲେ ବି ତା' ଭଳି କଳଙ୍କିନୀ ପାଇଁ ସାଇଲକ୍‌ଙ୍କର ଦୁଃଖ ନାହିଁ । ଯେଉଁ ସମ୍ପଦକୁ ସେ ଯକ୍ଷଭଳି ଜଗି ବସିଥିଲେ, ଜୀବନ ସାରା କେତେ କଷ୍ଟ କରି ପଇସା ପଇସା ଯୋଡ଼ି ଏ ଧନ ଠୁଳ କରିଥିଲେ, ଚଣ୍ଡାଳୁଣୀ ଟିକିଏ ହେଲେ ତାହା ଭାବିଲା ନାହିଁ । ଧନର ଅଭାବରେ ତାଙ୍କର ଅବସ୍ଥା କ'ଣ ହେବ, ସେ କଥା ବିଚାର କଲା ନାହିଁ । ଏଭଳି ଝିଅ ଥିଲେ କେତେ, ମଲେ କେତେ ?

ଝିଅ ତ ନୁହେଁ, ସେ ତାଙ୍କର ଶତ୍ରୁ !

କାହୁଁ ପାଇଲା ସେ ଏତେ ସାହସ ?

ଏହା ପଛରେ ନିଶ୍ଚେ କୌଣସି ଦୁଃସାହସୀ ପୁରୁଷର ମଥା ଅଛି । ସେ ହିଁ ତାକୁ ଏ କାମ କରିବା ପାଇଁ ପ୍ରବର୍ତ୍ତାଇଛି ।

କିଏ ହୋଇପାରେ ?

ସାଇଲକ୍‌ଙ୍କ ମନରେ ଏକ କ୍ଷୀଣ ସନ୍ଦେହ ଦେଖାଦେଲା ...

ତେବେ କ'ଣ ବାସାନିଓ ? ବାସାନିଓର ବେଲମଣ୍ଟ ଯିବା କଥା... ଜେସିକା ନିଶ୍ଚେ ତା' ସାଙ୍ଗରେ ପଳାଇଛି...

ତାକୁ ରୋକିବାକୁ ପଡ଼ିବ...

ସାଇଲକ୍ ଡ୍ୟୁକ୍‌ଙ୍କ ପାଖରେ ପହଞ୍ଚିଗଲେ । କାନ୍ଦିକୁନ୍ଥେଇ ବାସାନିଓ ବିରୋଧରେ ନାଲିସ ଜଣାଇଲେ । ପ୍ରାର୍ଥନା କଲେ, ଯଥାଶୀଘ୍ର ବେଲମଣ୍ଟଗାମୀ ବାସାନିଓର ଜାହାଜର ତଲାସୀ ନିଆଯାଉ । ତାଙ୍କର ଦୃଢ଼ ବିଶ୍ୱାସ, ତହିଁରେ ରହିଛି ତାଙ୍କର ପ୍ରାଣାଧିକା କନ୍ୟା ଜେସିକା ।

ମାତ୍ର ଦୁର୍ଭାଗ୍ୟ, ଅନୁସନ୍ଧାନକାରୀ ଦଳ ପହଞ୍ଚିବା ପୂର୍ବରୁ ବାସାନିଓର ଜାହାଜ ବନ୍ଦର ଛାଡ଼ି ଗନ୍ତବ୍ୟ ପଥରେ ଯାତ୍ରା କରିସାରିଛି ।

ତେବେ ଜେସିକାର ଖବର ମିଳିଲା ।

ଡ୍ୟୁକ୍ ଅନୁସନ୍ଧାନ କରି ଜାଣିପାରିଲେ, ଜେସିକା ଆଉ ଲରେଞ୍ଜୋଙ୍କୁ ଭେନିସ୍‌ର ଗଣ୍ଡୋଲାରେ ଏକା ସାଙ୍ଗରେ ଦେଖାଯାଇଛି । ଡ୍ୟୁକ୍ ଏ ସମ୍ବାଦ ସାଇଲକ୍‌ଙ୍କୁ ଜଣାଇ ଦେଲେ । ତା' ସହିତ ଆହୁରି କହିଲେ ଯେ, ସେ ବିଶ୍ୱସ୍ତ ସୂତ୍ରରୁ ଖବର ପାଇଛନ୍ତି ବାସାନିଓର ଜାହାଜରେ ଜେସିକା କିମ୍ବା ଲରେଞ୍ଜୋ ନାହାନ୍ତି । ଏ କଥା ତାଙ୍କୁ ଜଣାଇଛନ୍ତି ଭେନିସ୍‌ର ସମ୍ଭ୍ରାନ୍ତ ନାଗରିକ ଆଣ୍ଟୋନିଓ ।

ତାଙ୍କ କଥା ତ ନିଶ୍ଚୟ ବିଶ୍ୱାସ କରିବାକୁ ହେବ ।

ସାଇଲକ୍ ଦୁଃଖରେ ଭାଙ୍ଗିପଡ଼ିଲେ । ଶୂନ୍ୟ ଘର ଯେମିତି ତାଙ୍କୁ ଖାଇ ଗୋଡ଼ାଉଛି । ଧନଶୂନ୍ୟ ପେଟିକାଗୁଡ଼ିକ ଆଡ଼େ ଅନାଇ ତାଙ୍କ ହୃଦୟ ଫାଟିଯାଉଛି । ଆଖିରୁ ପାଣି ବାହାରି ଆସୁଛି ।

ସେ ଭେନିସ୍‌ରେ ପଥେ ପଥେ ଘୂରିବୁଲିଲେ । ଯାହାକୁ ଦେଖିଲେ କହିଲେ, ଜାଣିଛନା ମୋର ସେଇ ଚରିତ୍ରହୀନା ଝିଅଟା ଗୋଟାଏ ଖ୍ରୀଷ୍ଟାନ୍ ସାଙ୍ଗରେ ପଳାଇଛି । ମୋର ସର୍ବସ୍ୱ ଚୋରି କରି ନେଇଛି । ମୁଁ ନ୍ୟାୟ ବିଚାର ଚାହେଁ । ସେଇ କଳଙ୍କିନୀକୁ ଖୋଜି ବାହାର କରି ମୋର ଧନସମ୍ପଦର ଉଦ୍ଧାର ବ୍ୟବସ୍ଥା ଚାହେଁ ... ପୂରା ଉନ୍ମାଦ ଅବସ୍ଥା... ଲୋକେ ଶୁଣି ହସନ୍ତି । କେହି କେହି ନ ଶୁଣି ଚାଲିଯାଆନ୍ତି...

ପିଲାମାନେ ଏଇ ଅର୍ଦ୍ଧଉନ୍ମାଦ ଲୋକଟି ଭିତରେ ସତେଯେମିତି ବହୁ ମଜାର ଖୋରାକ ପାଇଯାଆନ୍ତି ... ସେମାନେ ସାଇଲକ୍ ପଛେ ପଛେ ତାଳି ମାରି ଛୁଟନ୍ତି ଆଉ ଢଗ ମେଲନ୍ତି...

ଝିଅ ମୋର ପଳାଇଲା ନେଇ ସୁନାଟଙ୍କା...

ମୁହଁ ମୋର ଭାଇମାନେ କରିଦେଲା ବଙ୍କା...

ସାଇଲକ୍ ସେହିଭଳି ଉଦ୍‌ଭ୍ରାନ୍ତ ଭାବରେ ଭେନିସ୍‌ର ପଥେ ପଥେ ବୁଲୁଥାଆନ୍ତି।

ଆଣ୍ଟୋନିଓଙ୍କର ବନ୍ଧୁ ସାଲାନିଓ ଏ ସବୁ ଦେଖି ଦୁଃଖିତ ହୁଅନ୍ତି । ତାଙ୍କ ମନକୁ ହଠାତ୍ ଗୋଟିଏ ଚିନ୍ତା ଆସେ । ଧନ ଶୋକରେ ସାଇଲକ୍ ପାଗଳ ଭଳି ହୋଇଯାଇଛି । ଏ ଅବସ୍ଥା ସବୁ ଦିନ ରହିବ ନାହିଁ । ଶୀଘ୍ର ସେ ପ୍ରକୃତିସ୍ଥ ହେବ । ତା'ର ଏବେ ମଧ ଦୃଢ଼ ବିଶ୍ୱାସ ଯେ ଜେସିକା ବାସାନିଓର ଜାହାଜରେ ହିଁ ଅଛି । ବାସାନିଓ ହେଉଛି ଆଣ୍ଟୋନିଓଙ୍କର ବନ୍ଧୁ । ସାଇଲକ୍‌ର ସବୁ ରାଗ ଯାଇ ଠୁଳ ହେବ ଆଣ୍ଟୋନିଓଙ୍କ ଉପରେ । ଆଣ୍ଟୋନିଓ ସାଇଲକ୍ ଠାରୁ ଯେଉଁ ଋଣ ନେଇଛନ୍ତି, ତାହା ସମୟ ପୂରିବା ଆଗରୁ ଫେରାଇ ନ ଦେଲେ ଏଇ ପାଗଳ କ'ଣ ଯେ ଅନର୍ଥ କରିବସିବ ତାହା କହିହେବ ନାହିଁ ।

ସାଲାନିଓ ଆଉ ଗୋଟିଏ ଦୁଃଖ ସମ୍ବାଦ ପାଇ ଚିନ୍ତିତ ହୋଇ ପଡ଼ିଛନ୍ତି । ଗତକାଲି ତାଙ୍କର ଜଣେ ଫରାସୀ ସହ ସାକ୍ଷାତ୍ ହୋଇଥିଲା । ତାଙ୍କଠାରୁ ଶୁଣିବାକୁ ମିଳିଲା, ଫ୍ରାନ୍ସ ଆଉ ଇଂଲଣ୍ଡର ମଝିଆମଝି ସମୁଦ୍ରରେ ଭେନିସ୍‌ର ଗୋଟିଏ ଜାହାଜ ବୁଡ଼ିଯାଇଛି । ଜାହାଜଟି ଯଦି ଆଣ୍ଟୋନିଓଙ୍କର ହୋଇଥାଏ, ତେବେ ପ୍ରକୃତରେ ଚିନ୍ତାର କଥା ।

ଏ ସମ୍ବାଦ ଆଣ୍ଟୋନିଓଙ୍କୁ ଜଣାଇଦେବା ଉଚିତ । ତେବେ ହଠାତ୍ ଏ କଥା ତାଙ୍କୁ ଜଣାଇଲେ ସେ ଦୁଃଖରେ ଭାଙ୍ଗିପଡ଼ିବେ ।

ତାଙ୍କ ଭଳି ଜଣେ ଦୟାଳୁ, ବନ୍ଧୁବତ୍ସଳ ଆଉ ବିବେକୀ ପ୍ରକୃତରେ ଆଜିକାଲିକା ଦୁନିଆରେ ବିରଳ । ଜାହାଜ ଘାଟରେ ବାସାନିଓଙ୍କୁ ବିଦାୟ ଦେବାକୁ ଯାଇ ସେ ଯାହା କହିଥିଲେ ସାଲାନିଓଙ୍କର ସେ କଥା ମନେ ପଡ଼ିଲା ।

ଆଣ୍ଟୋନିଓ କହିଥିଲେ-ସାଇଲକ୍‌ଙ୍କର ଋଣ ପରିଶୋଧ କରିବା ପାଇଁ ତମେ ଆଦୌ ବ୍ୟସ୍ତ ହେବ ନାହିଁ । ବେଲମଣ୍ଟରେ ତମର ସବୁ କାମ ସାରି ଧୀରେ ସୁସ୍ଥେ ଫେରିଆସ । ଏହାପରେ ସେ ବାସାନିଓଙ୍କୁ ପରିହାସ ଛଳରେ କହିଥିଲେ, ଦେଖ, ପ୍ରେମିକା ଆଗରେ ତମେ ଯେମିତି ଆଦୌ ମୁହଁ ଶୁଖାଇ ନ ବୁଲ । ସବୁବେଳେ ପ୍ରଫୁଲ୍ଲ ମନଟିଏ ନେଇ ପ୍ରେମିକାର ଧ୍ୟାନ କର...

ଏତିକି କହୁ କହୁ ଆବେଗରେ ଆଣ୍ଟୋନିଓଙ୍କର ଆଖି ଛଳଛଳ ହୋଇ ଯାଇଥିଲା । ବହି ଆସୁଥିବା ଲୁହଧାରକୁ ଲୁଚାଇ ସେ କୌଣସିମତେ ବାସାନିଓ ପାଖରୁ ବିଦାୟ ନେଇ ଚାଲି ଆସିଥିଲେ ।...

ଏ ଘଟଣା ସାଲାନିଓ ନିଜେ ଦେଖିଛନ୍ତି ।

ଏଭଳି ବନ୍ଧୁବତ୍ସଳ ଲୋକ ଯଦି ପ୍ରକୃତରେ କୌଣସି ବିପଦରେ ପଡ଼ନ୍ତି, ତେବେ ତାଙ୍କର ଦୁଃଖର ସୀମା ରହିବ ନାହିଁ । ସେ ଏବେ ଆଣ୍ଟୋନିଓଙ୍କ ପାଖକୁ ଯିବେ । ତାଙ୍କର ମନର ଅବସ୍ଥା ଜାଣିବାକୁ ଚେଷ୍ଟା କରିବେ...

କିଛି ନ ହେଲେ ପଦେ ସାନ୍ତ୍ୱନା ତ ସେ ତାଙ୍କୁ ଦେଇପାରିବେ ...

॥ ୬ ॥

ପୋର୍ସିଆଙ୍କର ରାଜପ୍ରାସାଦରେ ନୂତନ ପାଣିପ୍ରାର୍ଥୀ । ସେ ଆରାଗଁ ର ରାଜକୁମାର । ତାଙ୍କର ଆସ୍ଫାଳନ ଯେ ଶୁଣିବାର ଜିନିଷ ।

ପୋର୍ସିଆ ଏ ସବୁ ଶୁଣି ଶୁଣି ନିର୍ଲିପ୍ତ ହୋଇଗଲେଣି । ସେ ଯଥାଶୀଘ୍ର କୁମାରଙ୍କର ଭାଗ୍ୟ ପରୀକ୍ଷାର ବ୍ୟବସ୍ଥା କରିଦେଲେ । ଯେତେ ଶୀଘ୍ର ଏ ଉତ୍ପାତରୁ ରକ୍ଷା ମିଳେ, ସେତେ ମଙ୍ଗଳ ।

ପେଟିକା-ଗୃହର ପର୍ଦ୍ଦା ଟାଣି ଦିଆଯାଏ । ପୋର୍ସିଆ କୁମାରଙ୍କ ସାଙ୍ଗରେ ଆସନ୍ତି । କୁମାର ଜଣାଇ ଦିଅନ୍ତି-ଏ ଭାଗ୍ୟ ପରୀକ୍ଷାର ସମସ୍ତ ସର୍ତ୍ତ ତାଙ୍କୁ ଜଣାଅଛି । ତେବେ ଏଥିରେ ଯୋଗଦେବା ପୂର୍ବରୁ ତାଙ୍କର ମଧ ତିନୋଟି ସର୍ତ୍ତ ଅଛି । ତାଙ୍କର ବିଶ୍ୱାସ ରାଜକୁମାରୀ ଏହାକୁ ମାନିନେବେ ...

ପୋର୍ସିଆ ଜିଜ୍ଞାସୁ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇ ରହନ୍ତି ।

ପ୍ରଥମ ସର୍ତ୍ତ... ରାଜକୁମାର ଆରମ୍ଭ କରନ୍ତି... ସର୍ତ୍ତ ହେଉଛି, ମୁଁ ଯେଉଁ ପେଟିକାଟିକୁ ବାଛିବି, ସେ କଥା ଗୋପନ ରହିବ । ମୋର ନିର୍ବାଚନ ଯଦି ଭୁଲ୍ ହୁଏ , ତେବେ ଶପଥ କରୁଛି, ମୁଁ ଆଜୀବନ ଅବିବାହିତ ରହିବି । ଏହା ମୋର ଦ୍ୱିତୀୟ ସର୍ତ୍ତ । ତୃତୀୟ ହେଲା... କଥା ଦେଉଛି, ହାରିଗଲେ ମୁଁ କୌଣସି ଅଶାନ୍ତି ସୃଷ୍ଟି ନ କରି ଚୁପ୍‌ଚାପ୍ ନିଜ ରାଜ୍ୟକୁ ଫେରିଯିବି ।

ଏଥିରେ ପୋର୍ସିଆଙ୍କର ଆପତ୍ତି କରିବାର କିଛି ନ ଥିଲା । ସେ ଚୁପ୍ ରହିଲେ ।

ରାଜକୁମାର ଏଥର ଘୂରି ଘୂରି ତିନୋଟିଯାକ ବାକ୍ସ ଦେଖିବାକୁ ଲାଗିଲେ । ତାଙ୍କର ମନେହେଲା, ସୁନାର ଚାକଚକ୍ୟ ଦେଖି ଯେଉଁମାନେ ତା'ର ଫାନ୍ଦରେ ପଡ଼ନ୍ତି, ସେମାନେ ହେଉଛନ୍ତି ପହିଲା ନମ୍ବରର ମୂର୍ଖ । ସେ କେବେ ତା'ର ମାୟାରେ ପଡ଼ିବେ ନାହିଁ ।

ବାକି ରହିଲା ଦୁଇଟି ବାକ୍ସ । ଏଥର ରୁପାବାକ୍ସ ଆଡ଼କୁ ଅନାଇ କୁମାର ଚିନ୍ତା କଲେ, ବିଚାର କରିବାକୁ ଗଲେ ଏହାର ସେଭଳି କିଛି ଗୁଣ ନାହିଁ । ତେବେ ପ୍ରକୃତ ଜହୁରୀ ସିନା ଜାଣିବ ରତ୍ନର ମୂଲ୍ୟ ! ଏଇ ବାକ୍ସ ହିଁ ଖୋଲିଦେବ ତାଙ୍କର ଯଶ ଓ ସୌଭାଗ୍ୟର ଦ୍ୱାର । ସେ ଏହାକୁ ହିଁ ନିର୍ବାଚନ କରିବେ...

ନିର୍ବାଚନ ଶେଷ ହୋଇଗଲା...

ପୋର୍ସିଆ ଚୁପ୍‌ଚାପ୍ ଚାବିଟିକୁ କୁମାରଙ୍କ ହାତକୁ ବଢ଼ାଇଦେଲେ । କୁମାର ଧୀରେ ସୁସ୍ଥେ ବାକ୍ସ ଖୋଲି ତା' ଭିତରକୁ ଅନାଇ ଚକିତ ହେଲେ । ବାକ୍ସ ତ କହିବାକୁ ଗଲେ ଖାଲି । ତେବେ ତା' ଭିତରେ ରହିଛି ଖଣ୍ଡିଏ ଜୋକର୍ ଚିତ୍ର । ମୁହଁରେ ତା'ର ବୋକା ବୋକା ହସ ...

ସେ ହସ ସତେଯେମିତି କୁମାରଙ୍କ ଭାଗ୍ୟକୁ ଉପହାସ କରୁଛି । ଜୋକର୍ ହାତ ପାଖରେ ରହିଛି ଖଣ୍ଡିଏ ଚାରି ଚଉତା କାଗଜ ।

କୁମାର ଉତ୍ସୁକ ହୋଇ କାଗଜଖଣ୍ଡକୁ ଖୋଲି ପକାଇଲେ...

ତହିଁରେ ଜଳଜଳ କରୁଛି ଏଇ କେଇଟି ଧାଡ଼ି... ବାରମ୍ବାର ମୋତେ ଅଗ୍ନି ପରୀକ୍ଷା ଦେବାକୁ ପଡ଼ିଛି... ଗଣି ଗଣି ସାତଥର ମୋତେ ପରୀକ୍ଷା କରାଯାଇଛି । ମାୟା ମରୀଚିକା ପଛରେ କେବଳ ଧାଇଁ ବୁଲିବାହିଁ ସାର ହୋଇଛି । ମିଳିଛି କେବଳ କିଛି ଲୋକଦେଖାଣିଆ

ଆନନ୍ଦ । ସଂସାରରେ ବହୁ ନିର୍ବୋଧ ଅଛନ୍ତି, ଯେଉଁମାନେ ନିଜର ବୋକାମିକୁ ଲୁଚାଇ ରଖନ୍ତି । ରୁପାର ପେଟିକାହିଁ କେବଳ ଜାଣେ ନିଜର ପ୍ରକୃତ ମୂଲ୍ୟ...

ସେ ଯେ ହାରିଯାଇଛନ୍ତି, ଏକଥା ବୁଝିନେବାକୁ କୁମାରଙ୍କୁ ବେଶୀ ବେଳ ଲାଗେ ନାହିଁ । ସେ ଜାଣିପାରନ୍ତି, ତାଙ୍କୁ ବୋକା ବନାଇ ଦିଆଯାଇଛି, ଆଉ ଯେତେବେଳଯାଏ ଏଠାରେ ରହିବେ, ସେତେବେଳଯାଏ ତାଙ୍କୁ ଏଥିପାଇଁ ଖେସାରତ୍ ଗଣିବାକୁ ପଡ଼ିବ ।

ବୁଦ୍ଧିମାନ୍ ଯଥାଶୀଘ୍ର ପରାଜୟ ଆଉ ଅପମାନ ପାଇଥିବା ସ୍ଥାନ ତ୍ୟାଗ କରେ । ସେ ମଧ ତାହାହିଁ କରିବେ ।

ରାଜକୁମାର ଦଳ ବଳ ସହ ଫେରିଯାଆନ୍ତି ।

ଛାତି ଫଟାଇ ସ୍ୱସ୍ତିର ଏକ ଦୀର୍ଘଶ୍ୱାସ ପୋର୍ସିଆଙ୍କ ଭିତରୁ ବାହାରିଆସେ । ସେ ଘରର ପର୍ଦ୍ଦା ଆଗଭଳି ଟାଣିଦେବାକୁ ଆଦେଶ ଦିଅନ୍ତି । କିଏ ଜାଣେ କେତେଦିନଯାଏ ଚାଲିବ ଏ ପ୍ରହସନ ! କେବେ ହେବ ଏହାର ନିଷ୍ପତ୍ତି ?

ୟା'ପରେ କିଏ ?

ଆଉ ଗୋଟିଏ ନିଃଶ୍ୱାସ ପୋର୍ସିଆଙ୍କ ଛାତି ଭିତରୁ ବାହାରିଆସେ । ଏତିକିବେଳେ ଆସେ ଦାସୀ ନେରିଶା । ତା'ଠୁ ଖବର ମିଳେ, ଭେନିସ୍‌ରୁ କୌଣସି ଯୁବକ ପ୍ରାସାଦ ଦ୍ୱାରରେ ଉପସ୍ଥିତ ହୋଇଛି । କହୁଛି, ତା'ର ପ୍ରଭୁ ତା'ହାତରେ ରାଜକୁମାରୀଙ୍କ ନିମନ୍ତେ କେତେ ଗୁଡ଼ିଏ ଉପହାର ପଠାଇଛନ୍ତି । ସେ ପୁଣି କୁଆଡ଼େ କିଛି ସମୟ ପରେ ପହଞ୍ଚିବେ । ଅନୁଚର ନେଇଆସିଛି ତାଙ୍କର ସଦିଚ୍ଛା ଏବଂ ଅଭିନନ୍ଦନ । ଉପହାରଗୁଡ଼ିକ ବେଶ୍ ମୂଲ୍ୟବାନ୍ ଆଉ ରୁଚିପୂର୍ଣ୍ଣ । ଏପ୍ରିଲ୍‌ମାସର ରୌଦ୍ରୋଜ୍ଜ୍ୱଳ ଦିନଗୁଡ଼ିକ ଯେମିତି ସୁଗନ୍ଧି-ପୁଷ୍ପର ସମ୍ଭାର ନେଇ ଆସେ, ଏ ଅନୁଚର ସେମିତି ନିଜର ପ୍ରଭୁଙ୍କର ବାର୍ତ୍ତା ବହିନେଇ ଆସିଛି,

ପୋର୍ସିଆ ହସି ପକାଉ ପକାଉ ନିଜକୁ ରୋକି ନେଲେ ।

ଦାସୀଟି ବାଚାଳ ଏବଂ କବି ପ୍ରକୃତିର ।

ଶେଷରେ କ'ଣ ତେବେ ତାଙ୍କର ଈପ୍‌ସିତ ପ୍ରାର୍ଥୀ ଆସି ପହଞ୍ଚିଛନ୍ତି ?

॥ ୭ ॥

ଆଣ୍ଟୋନିଓଙ୍କର ପଣ୍ୟବାହୀ ଜାହାଜଟି ପ୍ରକୃତରେ ଅଥଳ ସମୁଦ୍ରରେ ବୁଡ଼ିଯାଇଛି । ଯେଉଁଠି ଜାହାଜବୁଡ଼ି ହୋଇଛି, ସେ ସ୍ଥାନର ନାମ ଗୁଡ୍‌ଉଇନ୍ସ । ଜାଗାଟି ବେଶ୍ ବିପଦପୂର୍ଣ୍ଣ ଏବଂ ଚୋରା ବାଲିରେ ପୂର୍ଣ୍ଣ ।

ସାଲାନିଓ ଖବରଟି ପାଇ ଦୁଃଖରେ ଭାଙ୍ଗି ପଡ଼ିଲେ । କ'ଣ କହି ସେ ଆଣ୍ଟୋନିଓଙ୍କୁ ସାନ୍ତ୍ୱନା ଦେବେ, ବୁଝିପାରିଲେ ନାହିଁ । ଆଉ ଜଣେ ବନ୍ଧୁ ସାଲାରିଓଙ୍କ ସହିତ ଏ ବିଷୟରେ ଆଲୋଚନା କରୁଥିବାବେଳେ ହଠାତ୍ ଉଦୟ ହୁଏ ସାଇଲକ୍‌ଙ୍କର । ଆଖିରେ ତାଙ୍କର ଉଦ୍‌ଭ୍ରାନ୍ତ ଚାହାଣି ।

ଏମାନଙ୍କୁ ଦେଖି ସେ ଠିଆ ହୋଇପଡ଼ନ୍ତି, କହନ୍ତି ଝିଅଟା ପଳାଇଲା... ତମେମାନେ ଦେଖିବ ରହ-ନର୍କରେ ବି ତା'ର ସ୍ଥାନ ହେବ ନାହିଁ । ମଣିଷ ହୋଇ ଜନ୍ମ ହେବାର ପରିଣାମ ଏଇଆ... ଦୁଇ ବନ୍ଧୁ ତାଙ୍କୁ ସମବେଦନା ଜଣାନ୍ତି । ଡେଣା ଗଜୁରିଲେ ଚଢ଼େଇଛୁଆ ବସାଛାଡ଼ି ଉଡ଼ିଯାଏ-ଏକଥା ସମସ୍ତେ ଜାଣନ୍ତି । ଭାଗ୍ୟ ବିଚାର କରନ୍ତି ଈଶ୍ୱର... ସାଇଲକ୍ କହିଚାଲିଲେ... ଛାଡ଼ ଏ ସବୁ କଥା... ଶୁଣୁଛି ଆଣ୍ଟୋନିଓର କେଉଁ ଜାହାଜ କୁଆଡ଼େ ବୁଡ଼ି ଯାଇଛି ?

ଉଭୟେ ନୀରବ ରହନ୍ତି । ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ସାଇଲକ୍ ପୁଣି ଆରମ୍ଭ କଲେ ... ଯାକୁ ହିଁ କହନ୍ତି ବୋଝ ଉପରେ ନଳିତା ବିଡ଼ା ... ସାରା ବଜାରରେ ତ ଢ଼ିଢ଼ି ପଡ଼ିଗଲାଣି... ଲୋକଟାର ଖର୍ଚ୍ଚପତ୍ରର ସୀମା ନ ଥିଲା... ଦିନ ଥିଲା ଯେତେବେଳେ ସେ ଥିଲା ଏ ଅଞ୍ଚଳର ସବୁଠୁ ଧନୀ ସଉଦାଗର... ଆଜି ତା' ଅବସ୍ଥା ଦେଖ... ଚୁଲିରେ ହାଣ୍ଡି ବସୁନାହିଁ... ମତେ ପୁଣି କହୁଥିଲା ସୁଧଖୋର ମହାଜନ... ଆଉ ଏବେ ନିଜ ଅବସ୍ଥାର ବାରଟା ବାଜିଗଲାଣି... ମୋ ସାଙ୍ଗରେ ଯୋଉ ଚୁକ୍ତି କରିଥିଲା, ଖାଲି ସେଇ କଥାଟା ମନେ ପକାଉ...

ସାଲାରିଓ ସାଲାନିଓ ଆଡ଼କୁ ଅନାଇଲା । ଦୁହିଁଙ୍କ ମୁହଁରେ ଆତଙ୍କ ଫୁଟିଉଠିଲା । ତଥାପି ସାଲାରିନୋ ପଚାରିଲା-ଚୁକ୍ତି ମୁତାବକ ଠିକ୍ ସମୟରେ ଆଣ୍ଟୋନିଓ ଋଣ ପରିଶୋଧ କରି ନ ପାରିଲେ ତମେ ତାଙ୍କର ମାଂସ କାଟିନେଇ କରିବ କ'ଣ ?

ସାଇଲକ୍‌ର ମୁହଁରେ ପ୍ରତିହିଂସାର ଚିହ୍ନ ଫୁଟିଉଠିଲା ।

ଶୁଣିବ କ'ଣ କରିବି ? ଆଣ୍ଟୋନିଓର ମାଂସ କାଟିନେଇ ମୁଁ ମାଛ ଧରିବା ପାଇଁ ଥୋପ ତିଆରି କରିବି । ସେ ମୋ'ର ସର୍ବନାଶ କରିଛି... କେତେ କେତେ ଅପମାନ ଦେଇଛି... ମୋର କ୍ଷତି ଦେଖି ଉପହାସ କରିଛି... ମୋ ସୁଧ କାରବାରରେ ବାଧା ଦେଇଛି, ମୁଁ ଇହୁଦୀ ବୋଲି ନାକ ଟେକିଛି । ଚାରିଆଡ଼େ ମୋର ନିନ୍ଦା ଗାଇବୁଲିଚି ... ଭୁଲିଯାଇଛି ଯେ ଇହୁଦୀ ମାନେ ବି ମଣିଷ ... ସେମାନଙ୍କର ଶରୀର ବି ରକ୍ତମାଂସରେ ଗଢ଼ା । ଦୟା, ମାୟା, ମମତା ସେମାନଙ୍କର ବି ଅଛି... ଆଘାତ କଲେ ସେମାନଙ୍କ ଦେହରୁ ବି ରକ୍ତ ଝରେ । ମଣିଷ ଭଳି ବୋଧବୁଦ୍ଧି ସେମାନଙ୍କର ବି ଅଛି ...

ସେମାନେ ଅନ୍ୟାୟ ବରଦାସ୍ତ କରନ୍ତି ନାହିଁ କି କାହାରିକୁ ଠକନ୍ତି ନାହିଁ । ଆଘାତ ପାଇଲେ ସେମାନେ ମଧ ପ୍ରତିଆଘାତ ଦେଇ ଜାଣନ୍ତି । ଦରକାର ପଡ଼ିଲେ ପ୍ରତିଶୋଧ

ନେଇପାରନ୍ତି । ଇହୁଦୀମାନେ ଯଦି ଖ୍ରୀଷ୍ଟିଆନ୍‌ମାନଙ୍କ ପ୍ରତି କୌଣସି ଅନ୍ୟାୟ କରନ୍ତି, ତେବେ କ'ଣ ସେମାନେ ଛାଡ଼ ପାଇବେ ? ନାହିଁ ନା ? ତେବେ ? ଜାଣୁଛି, କାମଟା ଅମାନବିକ, ତେବେବି ମୁଁ ଛାଡ଼ିବି ନାହିଁ ।

ଏକାଥରକେ ଏତେଗୁଡ଼ାଏ କଥା କହିପକାଇ ସାଇଲକ୍ ଧଇଁସଇଁ ହେବାକୁ ଲାଗିଲା ।

ମୁହଁ ଶୁଖାଇ ଦୁଇବନ୍ଧୁ ସାଇଲକ୍‌ଠାରୁ ବିଦାୟ ନେଲେ । ଖବରଟା ଯଥାଶୀଘ୍ର ଆଣ୍ଟୋନିଓଙ୍କୁ ଜଣାଇ ଦେବାକୁ ପଡ଼ିବ । ସେଇଆଡ଼କୁ ଅନାଇ ସାଇଲକ୍ କହି ଉଠିଲା.. ଆରେ ଯାଅ.. ଯାଅ.. ମୁଁ ବି ଦେଖୁଛି, କିଏ ଆସି ଆଣ୍ଟୋନିଓର ପିଠିରେ ପଡ଼ିବ...

ଟୁବାଲ ବୋଲି ଆଉ ଜଣେ ଇହୁଦୀ ଆସି ଖବର ଦିଏ ଯେ, ଚାରିଆଡ଼େ ବହୁ ଖୋଜାଖୋଜି କରିବା ପରେ ବି ଜେସିକାର କିଛି ଖୋଜଖବର ମିଳି ନାହିଁ ।

ସାଇଲକ୍‌ର ପୁରୁଣା ଶୋକ ଉଛୁଳି ଉଠେ । ଜେସିକା କିଭଳି ତା'ଘରେ କଳାକନା ବୁଲେଇ ଦେଇଯାଇଛି, କେତେ ହୀରା ଜହରତ୍ ସୁନା ରୁପା ସେ ସାଙ୍ଗରେ ନେଇ ଯାଇଛି, ଯା ଅପେକ୍ଷା ଝିଅଟା ଯଦି ମରି ଯାଇଥାଆନ୍ତା, ସେ କେତେ ଖୁସି ହୋଇଥାଆନ୍ତା । ଏଇସବୁ କଥା ଗୁଣୁଗୁଣୁ ହୋଇ ବର୍ଣ୍ଣନା କରୁ କରୁ ସାଇଲକ୍ କାନ୍ଦିବାକୁ ଆରମ୍ଭ କରେ ।

ଆଉ ଏଣେ ଶୁଣିଲଣି.. ଟୁବାଲ ନୂଆ ଖବର ଦେବାକୁ ଆରମ୍ଭ କରେ । ଜାହାଜ ବୁଡ଼ିବା ପରେ ଆଣ୍ଟୋନିଓର ଅବସ୍ଥା ଭାରି ଖରାପ । ଚାରିଆଡୁ ପାଉଣାଦାରମାନେ ଦଳଦଳ ହୋଇ ଆସି ଭେନିସ୍‌ରେ ପହଞ୍ଚିଛନ୍ତି । ବିଚାରୀର ମରମର ଅବସ୍ଥା...

ଖବର ଶୁଣି ସାଇଲକ୍ ଉଲ୍ଲସିତ ହୋଇଉଠେ । ଆଃ..ଏ କଥା ତୁ ମତେ ଆଗରୁ କହିବୁ ତ ! ବାପ ଟୁବାଲ, ତୁ ଆଉ ଡେରି କରନା.. ଜଣେ ଭଲ ଓକିଲ ସାଙ୍ଗେ କଥାବାର୍ତ୍ତା କରି ଆଗରୁ ସବୁ ପକ୍କା କରିଦେ.. ଏଇ ଆଣ୍ଟୋନିଓଟାର କଲିଜା ଉପାଡ଼ି ନ ଆଣିଲେ ମୋ ଛାତି ଥଣ୍ଡା ହେବ ନାହିଁ । ତାକୁ ଭେନିସ୍‌ରୁ ବିଦା ନ କରିବା ଯାଏଁ ମୋର ଶାନ୍ତି ନାହିଁ.. ଦୁହେଁ ଦୁଇଆଡ଼କୁ ଯାଆନ୍ତି ।

॥ ୮ ॥

ବେଲମଣ୍ଟରେ ପୋର୍ସିଆର ପ୍ରାସାଦ । ବାସାନିଓ ଏବଂ ଗ୍ରାସିଆନୋ ଭେନିସ୍‌ରୁ ଆସି ପହଞ୍ଚିସାରିଛନ୍ତି । ବାସାନିଓ ଯଥାଶୀଘ୍ର ନିଜର ଭାଗ୍ୟ ପରୀକ୍ଷା କରିନେବାକୁ ଚାହେଁ । ପୋର୍ସିଆ କିନ୍ତୁ ଏତେ ଶୀଘ୍ର ଘଟଣାଟା ଘଟିଯାଉ ବୋଲି ଚାହେଁ ନାହିଁ । ତା'ର ମନ ନାନା ଆଶଙ୍କାରେ ଭରା । ବାସାନିଓକୁ ସେ ଭଲ ପାଇଛି । ଏତେ ଶୀଘ୍ର ସେ ତାକୁ ହରାଇବାକୁ ଚାହେଁ ନାହିଁ । ସେଇ କଥା ସେ ବାସାନିଓକୁ ବୁଝାଉଥିଲା..

ସେ କହିଲା.. ଭାଗ୍ୟ ପରୀକ୍ଷା ପାଇଁ ଏତେ ତରତର ନ ହୋଇ ମୋ ମତରେ ଏଥିପାଇଁ ଆଉ କିଛି ଦିନ ଅପେକ୍ଷା କରାଯାଉ । ତା' ପରେ କଥାଟିକୁ ଭଲଭାବରେ ବିଚାର କରି ଯାହା ହେଲେ କିଛି ଗୋଟାଏ ନିଷ୍ପତ୍ତି ନେବେ । ବଛାବଛିରେ ଥରେ ଭୁଲ ହୋଇଗଲେ ତାକୁ ତ ଆଉ ସଂଶୋଧନ କରିହେବ ନାହିଁ । ଫଳ ହେବ ମୁଁ ଆପଣଙ୍କୁ ସବୁଦିନ ପାଇଁ ହରାଇବି । ମନ କହୁଛି ମୁଁ ଆପଣଙ୍କୁ ନିଶ୍ଚୟ ପାଇବି । ଆପଣ ମତେ ଭୁଲ୍ ବୁଝିବେ ନାହିଁ । ମୋ ମନରେ ଅନ୍ୟ କିଛି ଥିଲେ, ମୁଁ ଆପଣଙ୍କୁ ଏଠି ଆଉ କିଛିଦିନ ଅପେକ୍ଷା କରିବାକୁ କହନ୍ତି ନାହିଁ ।

ବାସାନିଓ କ'ଣ କହିବାକୁ ଯାଇ ଚୁପ୍ ହୋଇଯାଏ ।

ପୋର୍ସିଆ ପୁଣି କହିବାକୁ ଆରମ୍ଭ କରେ । ଆପଣଙ୍କର ଏଇ ମାୟାବୀ ଆଖି ଦୁଇଟାକୁ ଦେଖିଲେ ମୁଁ ନିଜକୁ ଭୁଲିଯାଏ । ମନେହୁଏ ଯେମିତି ମୋରି ଗୋଟାଏ ଅଂଶ । ଯେତେଦିନ ଯାଏ ଏଇ ଧାରଣା ନେଇଥିବି, ସେତେଦିନ ଯାଏ ମୋର ଶାନ୍ତି.. ସେଇଥିପାଇଁ ମୁଁ ଭାଗ୍ୟ ପରୀକ୍ଷାର ଦିନଟାକୁ କେଇ ଦିନ ପଛେଇ ଦେବାକୁ ଆପଣଙ୍କୁ କହୁଛି.. ମୋର ବାଚାଳତା କ୍ଷମା କରିବେ.. ମୁଁ ଆପଣଙ୍କ ପାଇଁ ଜୀବନ ଦେଇପାରେ.. ମାତ୍ର ଶପଥ ଭାଙ୍ଗି ଅପରାଧିନୀ ହୋଇପାରିବି ନାହିଁ ।

ଆବେଗପୂର୍ଣ୍ଣ କଣ୍ଠରେ ବାସାନିଓ କହିବାକୁ ଆରମ୍ଭ କରେ- ଆଶା ଆଉ ଆଶଙ୍କାର ଏଇ ଦ୍ୱନ୍ଦ୍ୱ ଭିତରେ କେତେଦିନ ଆଉ ଏମିତି ଝୁଲି ରହିବି ? ସେଇଥିପାଇଁ ଭାଗ୍ୟ ପରୀକ୍ଷା କରି ମୁଁ ଯଥାଶୀଘ୍ର ଏହାର ଗୋଟାଏ ନିଷ୍ପତ୍ତି କରି ଦେବାକୁ ଚାହୁଁଛି...

ପୋର୍ସିଆ କହେ ମୋ ଭଲ ପାଇବାରେ ଆପଣଙ୍କର ହୁଏତ କିଛି ସନ୍ଦେହ ରହିଯାଇଛି...

ବାସାନିଓ କହେ ... ତମେ ହିଁ ମୋର ଆନନ୍ଦ.. ତମେ ହିଁ ମୋର ବେଦନା.. ଯଦି ଅଭୟ ଦିଅ ତେବେ ପଦେ କଥା କହିବି...

ପୋର୍ସିଆ ନୀରବ ରହେ..

ବାସାନିଓ କହିଯାଏ.. ଏଇ ବେଦନା ଯେ ମୋ ପାଇଁ କେତେ ଆନନ୍ଦର ତା' ମୁଁ ଭାଷାରେ ପ୍ରକାଶ କରିପାରିବି ନାହିଁ । ଭାଗ୍ୟ ପରୀକ୍ଷା କରିବାକୁ ଅନୁମତି ଦେଇ ତମେ ମୋତେ ଏଇ ମିଠା ମହୁରା ପାନ କରିବାର ସୁଯୋଗ ଦିଅ...

ପୋର୍ସିଆ କହେ.. ବେଶ୍ ତେବେ ଆପଣଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ଯଦି ମୋର ଭଲପାଇବା ସତ୍ୟ ହୁଏ, ଆଉ ଆପଣ ଯଦି ମୋତେ ମନରେ ପ୍ରାଣରେ ଭଲ ପାଉଥାଆନ୍ତି ତେବେ ମୋର ବିଶ୍ୱାସ ଆପଣଙ୍କର ଏ ପ୍ରୟାସ ବ୍ୟର୍ଥ ହେବ ନାହିଁ । ଆପଣ ଠିକ୍ ମୋର ଛବି ପାଖରେ ପହଞ୍ଚିଯିବେ..

ବାସାନିଓ ଅଗ୍ରସର ହୁଏ ।

ପୋର୍ସିଆ ନିଜର ପ୍ରିୟ ସଖୀ ନେରିଶାକୁ ଆଦେଶ ଦିଏ ତମେମାନେ ସମସ୍ତେ ଏଠୁ ଦୂରେଇ ଯାଅ । ଆଉ ଏଇ ଅନ୍ୱେଷଣ ପର୍ବ ଯେତେବେଳଯାଏ ଚାଲିଥିବ, ସେତେବେଳ ଯାଏ ଯେମିତି ବାଜାଦାରମାନେ ବାଜା ବଜାଉ ଥାଆନ୍ତି । ଯଦି ସେ ହାରିଯାଆନ୍ତି, ତେବେ ବାଦ୍ୟଧ୍ୱନି ଭିତରେ ଯେମିତି ରାଜହଂସୀର ମୃତ୍ୟୁର ସ୍ୱର ଧ୍ୱନିତ ହୋଇଉଠେ । ମୋର ଅଶ୍ରୁର ଗଭୀର ସମୁଦ୍ରରେ ଯେମିତି ସେଇ ରାଜହଂସୀର ଶବ ସହିତ ମୋର ପ୍ରେମର ସଲିଳ ସମାଧି ଘଟେ..

ବାସାନିଓ ଦୃପ୍ତ ପଦକ୍ଷେପରେ ଆଗେଇଚାଲେ । ପୋର୍ସିଆର ମନେହୁଏ ବାସାନିଓ ନୁହେଁ, ଏ ଯେମିତି ଗ୍ରୀକ୍-ଯୁବକ ହରକ୍ୟୁଲିସ୍ ସାଗର-ଦୈତ୍ୟ ହାତରୁ ସୁନ୍ଦରୀ-ଗ୍ରୀକ୍ କନ୍ୟାଟିକୁ ଉଦ୍ଧାର କରିବା ନିମନ୍ତେ ବଳିଷ୍ଠ ପଦପାତରେ ଆଗେଇ ଚାଲିଛନ୍ତି ।

ପେଟିକା-ଗୃହରେ ପାଦ ଦେବା ମାତ୍ରେ ବାସାନିଓ ଭାବିବାକୁ ଆରମ୍ଭ କରେ । ଅଳଙ୍କାରର ଆଡ଼ମ୍ବରରେ ସମଗ୍ର ପୃଥିବୀ ଆଜି ମୋହିତ । ବାହାରର ଚାକଚକ୍ୟ ହିଁ ହୋଇଛି ଆଜିର ଆକର୍ଷଣ । କଥାର ଫୁଲଝରି ଫୁଟାଇ ଆଇନ୍‌ଜୀବୀ ବିଚାରାଳୟରେ ମିଥ୍ୟାକୁ ସତ୍ୟର ରୂପ ଦେଉଛି । ଶାସ୍ତ୍ରର କେତେଟା ବସ୍ତା ପଚା ଗତାନୁଗତିକ ବାଣୀ ଉଦ୍ଧାର କରି ପୁରୋହିତ ଜନତାକୁ ପ୍ରତାରିତ କରୁଛି । ଅନ୍ୟାୟର ରଙ୍ଗବେରଙ୍ଗ ମୁଖାତଳେ ନ୍ୟାୟ ଆତ୍ମଗୋପନ କରିଚାଲିଛି ।

ପୃଥିବୀ ଆଜି ଏଭଳି କାପୁରୁଷମାନଙ୍କ ଦ୍ୱାରା ପୂର୍ଣ୍ଣଆଚାର ବିଚାରରେ ବେଶ ପୋଷାକରେ ଯେଉଁମାନେ ହର୍‌କ୍ୟୁଲିସ୍‌ଙ୍କ ଠାରୁ କମ୍ ନୁହନ୍ତି ଅନ୍ତତଃ ନିଜକୁ ଜାହିର୍ କରିବାପାଇଁ ସେମାନେ ବୀରତ୍ୱର ଗୋଟିଏ ଗୋଟିଏ ମୁଖା ପିନ୍ଧି ଆତଯାତ ହେଉଛନ୍ତି, ଆଉ ପୁଣି ସୁନ୍ଦରୀ ନାରୀଟିଏର ମୁହଁ ଆଡ଼କୁ ଅନାଇ ଦେଲେ ଜଣାଯାଉଛି, ତା'ର ରୂପର ଛଟା ଯେମିତି କୃତ୍ରିମତାର ଆବରଣରେ ଢଙ୍କା ହୋଇଛି । ତା'ର ଯେଉଁ ସୁନେଲୀ କେଶପାଶ ସର୍ପାୟିତ ଭଙ୍ଗୀରେ କୁଞ୍ଚିତ, ତାହା ପୁଣି ତା'ର ନିଜସ୍ୱ ନୁହେଁ, ହୁଏତ କବରରେ ଚିର ନିଦ୍ରାରେ ଶାୟିତ ଅନ୍ୟ କୌଣସି ରମଣୀର । କୃତ୍ରିମତାରେ ଭରା ଆଜିର ପୃଥିବୀ ମନେ ହେଉଛି ସତେଯେମିତି ଚୋରା ବାଲିରେ ପୂର୍ଣ୍ଣ ସମୁଦ୍ର ସୈକତ ।

ଏକଦା ମିଦାସ୍‌ଙ୍କ ଛୁଆଁରେ ଯେଉଁ ଖାଦ୍ୟ ସୁନାରେ ପରିଣତ ହୋଇଥିଲା, ସେ ସୁନା ମୋର ଲୋଡ଼ା ନାହିଁ । ଆଉ ପୁଣି ଏଇ ପାଉଁଶ ବର୍ଣ୍ଣର ରୁପା ମୋର କେଉଁ କାମରେ ଲାଗିବ ? ସୀସା ପେଟି ଉପରେ କିଛି ଲେଖା ନାହିଁ, ସେଆଡ଼କୁ କେହି ଆଡ଼ ଆଖିରେ ବି ଅନାଉ ନାହାନ୍ତି । ସେଇ ସୀସା ପେଟିଟିକୁ ହିଁ ମୁଁ ବାଛିନେବି, ଭାଗ୍ୟରେ ଥିଲେ ସେଇ ମୋ ପାଇଁ ହୋଇ ଉଠିବ ଆନନ୍ଦର ଭଣ୍ଡାର..

ପୋର୍ସିଆ ଦୁଇ ଆଖି ବୁଜି ଆନନ୍ଦରେ ଦୋହଲି ଉଠୁଥାଏ । କେତେ ଦ୍ୱିଧା, କେତେ ସଂଶୟ ଏ ପର୍ଯ୍ୟନ୍ତ ତାକୁ ଆନ୍ଦୋଳିତ କରୁଥିଲା । ଆନନ୍ଦ ଯେମିତି ଦୁଇ କୂଳ ଛୁଇଁ ବାହାରକୁ

ବାହାରି ଆସୁଛି ! ନିଜକୁ ନିୟନ୍ତ୍ରଣରେ ରଖିବା କଷ୍ଟକର ହୋଇଉଠୁଛି । ଆନନ୍ଦର ଏଇ ମୁହୂର୍ତ୍ତ ଯେମିତି ବ୍ୟର୍ଥ ହୋଇ ନ ଯାଏ ।

ସେ ରୁଦ୍ଧଶ୍ୱାସରେ ସୀସା ପେଟି ଆଡ଼େ ଚାହିଁ ରହିଥାଏ ।

ବାସାନିଓ ମନରେ ତଥାପି ଦ୍ୱନ୍ଦ୍ୱ- ମୋର ଆଶା କ'ଣ ପୂର୍ଣ୍ଣ ହେବ ?

ପେଟିକାର ଢାଙ୍କୁଣୀ ଖୋଲିଦେଲା ପରେ ତା' ଭିତରୁ ପୋର୍ସିଆର ଅପରୂପ ଛବି ସତେ ଯେମିତି ଝଲମଲ କରି ଉଠିଲା.. ତା' ସହିତ ଝଲମଲ ହୋଇ ଉଠିଲା ବାସାନିଓର ଭାଗ୍ୟ..

ବାସାନିଓ ନିର୍ନିମେଷ ଦୃଷ୍ଟିରେ ପୋର୍ସିଆର ସେଇ ପ୍ରାଣହୀନ ଚିତ୍ର ଆଡ଼େ ଅନାଇ ରହିଥାଏ । ଶିଳ୍ପୀର ନିପୁଣ ତୂଳୀରେ ପୋର୍ସିଆ ସତେଯେମିତି ଜୀବନ୍ତ ହୋଇ ଉଠିଛି । ମନେ ହେଉଛି ଆଖିର ପତା ଦୁଇଟି ମୃଦୁମୃଦୁ କମ୍ପିତ ହେଉଛି.. ଓଠ ଦୁଇଟି ସାମାନ୍ୟ ବିସ୍ଫାରିତ.. କେଶପାଶ, ଶଙ୍ଖଗ୍ରୀବା, ସୁଗଠିତ ନାସିକା ସବୁ ସୁନ୍ଦର.. ସବୁ ମୋହମନ୍ତ୍ର..

ଖଣ୍ଡିଏ କାଗଜରେ ଲେଖାଯାଇଛି ବାହାରର ସୌନ୍ଦର୍ଯ୍ୟ ତାଙ୍କୁ ଆକୃଷ୍ଟ କରେ ନାହିଁ.. ଠିକ୍ ବିଚାର ପାଇଁ ଭାଗ୍ୟ ତାଙ୍କ ଆଡ଼କୁ ସାହାଯ୍ୟର ହାତ ବଢ଼ାଇଦିଏ.. ବନ୍ଧୁ.. ତୁମେ ନୂତନର ଆକର୍ଷଣରେ ମରୀଚିକା ପଛରେ ନ ଛୁଟି ଯାହା ମିଳିଛି ତାକୁ ଆନନ୍ଦରେ ଗ୍ରହଣ କର । ନିଜର ସୌଭାଗ୍ୟରେ ନିଜେ ସନ୍ତୁଷ୍ଟ ରୁହ..

ବାସାନିଓ ମୁଗ୍ଧ ଦୃଷ୍ଟିରେ ପୋର୍ସିଆ ଆଡ଼କୁ ଚାହିଁରହେ । ତା'ର ନୀରବ ଦୃଷ୍ଟିରୁ ସତେଯେମିତି ଝରି ପଡୁଥାଏ.. ମୋର ଏଇ ସୌଭାଗ୍ୟରେ ନିଜେ ମୁଁ ଯେମିତି ବିଶ୍ୱାସ କରିପାରୁ ନାହିଁ.. ପ୍ରିୟତମା.. ତମେ ଅନ୍ତତଃ କହ.. ଯାହା ସବୁ ଘଟିଯାଉଛି, ତାହା ଏକାନ୍ତ ସତ୍ୟ.. ମୁଁ ସ୍ୱପ୍ନ ଦେଖୁ ନାହିଁ...

ପୋର୍ସିଆର ନୀରବତା ଭାଙ୍ଗେ । ସେ କୋମଳ କଣ୍ଠରେ କହିବାକୁ ଆରମ୍ଭ କରେ, ଲର୍ଡ୍ ବାସାନିଓ, ଏଇ ତ ମୁଁ ତମ ସାମନାରେ ଠିଆହୋଇଛି, ରକ୍ତମାଂସର ଜଣେ ସାଧାରଣ ନାରୀ.. ମୋର ନିଜର ବା ମୂଲ୍ୟ କେତେ ? ନିଜକୁ ତମର ଯୋଗ୍ୟ କରିନେଇପାରିବି, ଏଇ ପ୍ରତିଶ୍ରୁତି ଟିକିଏ ଛଡ଼ା ଆଜିର ଏଇ ମଧୁର ଲଗ୍ନରେ ତୁମକୁ ଆଉ କ'ଣ ବା ଦେଇପାରିବି ?

ମୁଁ ମୋର ସର୍ବସ୍ୱ ଅର୍ପଣ କରିଦେଇଛି ତମରି ଚରଣରେ । ଟିକିଏ ପୂର୍ବରୁ ମୁଁ ଥିଲି ଏଇ ପ୍ରାସାଦର ଅଧିକାରୀ । ସ୍ଥାବର ଅସ୍ଥାବର ସମସ୍ତ ସମ୍ପଦ ଥିଲା ମୋ ଦଖଲରେ.. ବର୍ତ୍ତମାନ ଏ ସବୁ ତମର.. ମୁଁ ବି ତମର... ତମ ପ୍ରତି ମୋର ପ୍ରେମର ସ୍ମାରକୀସ୍ୱରୂପ ତୁମକୁ ପିନ୍ଧାଇ ଦେଉଛି ଏଇ ଅଙ୍ଗୁରୀୟ.. ଯେଉଁଦିନ ତମ ଅଙ୍ଗୁଳିରେ ଏଇଟି ନ ଥିବ, ସେଦିନ ତମ ପ୍ରେମର ଅପମୃତ୍ୟୁ ହୋଇଛି ବୋଲି ମୁଁ ଧରିନେବି..

ଆବେଗରେ ବାସାନିଓର କଣ୍ଠ ରୁଦ୍ଧ । ପଦେ କଥା କହିବାର ଶକ୍ତି ଯେମିତି ତା'ର ନାହିଁ । ନୀରବରେ ସତେ ଯେମିତି କହିଚାଲିଛି.. ଶପଥ କରୁଛି ପ୍ରିୟତମା, ମୋ ଦେହରେ ବିନ୍ଦୁଏ ରକ୍ତ ଥିବା ପର୍ଯ୍ୟନ୍ତ ଏଇ ମୁଦ୍ରିକା କେହି ମୋଠୁ ନେଇପାରିବେ ନାହିଁ । ଯଦି କେବେ ସେଭଳି ଦୁର୍ଯୋଗ ଆସେ, ତେବେ ଜାଣିବ ମୋର ମୃତ୍ୟୁ ହୋଇଛି..

ନେରିଶା ସହିତ ଅନ୍ୟାନ୍ୟ ଅନୁଚରମାନେ ଆନନ୍ଦରେ ଜୟଧ୍ୱନି କରିଉଠନ୍ତି । ଗ୍ରାସିୟାନୋ ଉଭୟଙ୍କୁ ଅଭିନନ୍ଦନ ଜଣାଏ । କହେ -ଏଭଳି ଶୁଭ ଅବସରରେ ମୁଁ ବା ବଞ୍ଚିତ ରହିବି କାହିଁକି ? ମୋତେ ମଧ ବିବାହ କରିବାକୁ ଅନୁମତି ମିଳୁ ।

ସେ ନେରିଶାର ହାତ ଧରେ । ପୁଣି କହେ... ଠିକ୍ ପେଟିଟିକୁ ବାଛି ତମେ ଖାଲି ତମର ନୁହେଁ, ମୋର ମଧ ଭାଗ୍ୟ ଫେରାଇ ଦେଇଛ । ମୁଁ ମୋର ଏଇ ପ୍ରେମର ପ୍ରତିମାଟିକୁ ନିଜର କରି ପାଇବାକୁ ଚାହେଁ ...

ପୋର୍ସିଆ ନେରିଶା ଆଡ଼କୁ ଚାହିଁ ଭ୍ରୂକୁଟୀ କରେ । ସତେଯେମିତି କହେ ବୁଡ଼ି ବୁଡ଼ି ପାଣି ପିଆ ଚାଲିଥିଲା, ନାହିଁ ?

ବାସାନିଓ ହସେ... କହେ... ମୋ ବିବାହ ସହିତ ତମର ବିବାହ ମୋର ଆନନ୍ଦକୁ ଦ୍ୱିଗୁଣିତ କରିବ ବନ୍ଧୁ...

ଏ ଭିତରେ ଲରେଞ୍ଜୋ, ଜେସିକା ଏବଂ ସାଲାରିୟୋ ପ୍ରଭୃତି ବି ଆସିଯାଆନ୍ତି । ବାସାନିଓ ପୋର୍ସିଆ ଆଡ଼କୁ ଅନାଇ ହସେ...

ଆନନ୍ଦର ବନ୍ୟା ବହିଯାଏ...

କିଛିକ୍ଷଣ ପରେ ବାସାନିଓ ସାଲାନିଓକୁ ଆଣ୍ଟୋନିଓଙ୍କର ଖବର ପଚାରେ । ସାଲାନିଓ ତା' ହାତରେ ଆଣ୍ଟୋନିଓଙ୍କର ଖଣ୍ଡିଏ ଚିଠି ଦିଏ । ଚିଠି ପଢୁ ପଢୁ ବାସାନିଓର ମୁହଁ ବିବର୍ଣ୍ଣ ହୋଇଯାଏ ।

କ୍ରମେ ପୋର୍ସିଆ ମଧ ଆଣ୍ଟୋନିଓଙ୍କର ଭାଗ୍ୟ ବିପର୍ଯ୍ୟୟର କାହାଣୀ ଶୁଣେ । ବାସାନିଓ ପାଇଁ ଆଣ୍ଟୋନିଓ ସାଇଲକ୍ ଠାରୁ ଏକ ଭୟଙ୍କର ସର୍ତ୍ତ ରଖି ଋଣ କରିଥିଲେ । ତାଙ୍କର ବାଣିଜ୍ୟତରୀଗୁଡ଼ିକ ଅଥଳ ସମୁଦ୍ରରେ ଜଳ ସମାଧି ଘେନିବା ପରେ ସେ ଆଜି ପ୍ରକୃତରେ ନିଃସ୍ୱ ହୋଇପଡ଼ିଛନ୍ତି । ଏଣେ ସାଇଲକ୍ ମଧ ସେଇ ବିଚିତ୍ର ସର୍ତ୍ତ ଅନୁସାରେ ଆଣ୍ଟୋନିଓଙ୍କଠାରୁ କ୍ଷତି ପୂରଣ ଦାବି କରିଛି, ଯାହା କରାଗଲେ ତାଙ୍କର ଜୀବନ ବିପନ୍ନ ହେବା ନିଶ୍ଚିତ ।

ସାଇଲକ୍ ନଗଦ ଟଙ୍କା ଫେରି ପାଇଲେ ମଧ ଚୁକ୍ତିରୁ ଓହରି ଯିବାକୁ ରାଜି ନୁହେଁ । ଏଥିପାଇଁ ସେ ଡ୍ୟୁକ୍ଙ୍କ ଉପରେ ଚାପ ପକାଇବାକୁ ଆରମ୍ଭ କରି ଦେଇଛି । ଚୁକ୍ତି ଖିଲାପ୍

ହେଲେ ରାଜ୍ୟର ସୁନାମ ହାନି ହେବା ସହିତ ଏହାର ସ୍ୱାଧୀନତା ମଧ୍ୟ ବିପନ୍ନ ହୋଇପାରେ ବୋଲି ସେ ପ୍ରକାରାନ୍ତରେ ଧମକ ମଧ୍ୟ ଦେଉଛି । ଡ୍ୟୁକ୍ ବା କରିବେ କ'ଣ ? ସେତ ଆଇନ୍‌ର ଦାସ । ତଥାପି ସେ ଆଉ ଭେନିସ୍‌ର ଅନ୍ୟାନ୍ୟ ସମ୍ଭ୍ରାନ୍ତ ବଣିକମାନେ ସାଇଲକ୍‌କୁ ତା'ର ଏଇ ହିଂସାତ୍ମକ ସଂକଳ୍ପ ତ୍ୟାଗ କରିବା ନିମନ୍ତେ ଅନୁରୋଧ ଜଣାଇ ଚାଲିଛନ୍ତି ।

ଏସବୁ କଥା ଶୁଣିବା ପରେ ଜେସିକା କହେ ଯେ ସେ ତା'ର ପିତାଙ୍କର ସଂକଳ୍ପ ଜାଣିଛି । ଋଣର କୋଡ଼ିଏ ଗୁଣ ଅଧିକ ଟଙ୍କା ତାଙ୍କୁ ଯଚାଗଲେ ମଧ୍ୟ ସେ ନିଜ ସଂକଳ୍ପ ବଦଳାଇବେ ନାହିଁ । ଏକଥା ସେ ନିଜେ ତାକୁ କହିଛନ୍ତି ।

ପୋର୍ସିଆ ବାସାନିଓ ସହିତ ଆଣ୍ଟୋନିଓଙ୍କର ସମ୍ପର୍କ କଥା ଜାଣେ । ନିଜ ଜୀବନକୁ ବିପନ୍ନ କରି ଯିଏ ନିଜ ବନ୍ଧୁର ଭବିଷ୍ୟତ୍ ଗଢ଼ିଦେଇଛନ୍ତି ତାଙ୍କ ପାଇଁ ଯେ କିଛି କରାଯିବା ଉଚିତ, ଏ କଥା ମଧ୍ୟ ସେ ବୁଝୁଛି । ଟଙ୍କା ତା' ପାଇଁ କୌଣସି ସମସ୍ୟା ନୁହେଁ । ମାତ୍ର ସାଇଲକ୍‌ର ଯୋଜନା ତ ଅନ୍ୟ ପ୍ରକାରେ ।

ସେ ପ୍ରଥମେ ଆଣ୍ଟୋନିଓର ଚିଠିର ବିଷୟବସ୍ତୁ ଜାଣିବାକୁ ଚାହେଁ ।

ବାସାନିଓ ପଢ଼ିବାକୁ ଆରମ୍ଭ କରେ । ଆଣ୍ଟୋନିଓ ଲେଖିଛନ୍ତି...

ପ୍ରିୟ ବନ୍ଧୁ,

ମୋର ଜାହାଜ ସବୁ ବୁଡ଼ିଯାଇଛି । ପାଉଣାଦାର ମୋତେ ଛାଡ଼ିବ ନାହିଁ । ମୁଁ ଏବେ ନିଃସ୍ୱ । ଇହୁଦୀର ଋଣ ଏବେ ମଧ୍ୟ ପରିଶୋଧ କରାଯାଇ ନାହିଁ । ସମୟ ଅତିକ୍ରାନ୍ତ ହୋଇଛି । ଏବେ ସେ ତା'ର ପାଉଣା ଆଦାୟ କରିବା ପାଇଁ ଦୃଢ଼ ପ୍ରତିଜ୍ଞ । ମୋତେ ଆଉ ବଞ୍ଚିବାକୁ ନ ଦେବା ହେଉଛି ତା'ର ଲକ୍ଷ୍ୟ । ମରିବା ପୂର୍ବରୁ ଥରେ ତମକୁ ଦେଖିବା ପାଇଁ ଭାରି ଇଚ୍ଛା ହେଉଛି । ସ୍ନେହର ଆକର୍ଷଣ ଯଦି ତମକୁ ଟାଣି ଆଣି ନ ପାରିଲା, ତେବେ ଚିଠିର ତାଗିଦ୍‌ରେ ଆସିବା ଦରକାର ନାହିଁ ।

ପୋର୍ସିଆ ପଥର ମୂର୍ତ୍ତି ଭଳି ବସି ରହିଥାଏ । ତା' ଆଖିରୁ ବହିଯାଉଥାଏ ଧାର ଧାର ଲୁହ । ନିଷ୍ପତ୍ତି ତାକୁ ନେବାକୁ ପଡ଼ିବ । ନିଜକୁ ସମ୍ଭାଳିନେଇ ସେ ବାସାନିଓକୁ କହେ ପ୍ରଚୁର ଅର୍ଥ ନେଇ ତମେ ଶୀଘ୍ର ଭେନିସ୍ ଯାତ୍ରା କର । ଯେକୌଣସିମତେ ବନ୍ଧୁଙ୍କର ପ୍ରାଣ ବଞ୍ଚାଇବାକୁ ପଡ଼ିବ । ଯିବା ପୂର୍ବରୁ ବିବାହଟା ହୋଇଯିବା ଆବଶ୍ୟକ । ତେବେ ଯେପର୍ଯ୍ୟନ୍ତ ଏ ମହାବିପଦରୁ ମୁକ୍ତି ନ ମିଳିଛି, ସେପର୍ଯ୍ୟନ୍ତ ଆମର ମିଳନ ସମ୍ଭବ ନୁହେଁ ।

ବାସାନିଓ ଦଳବଳ ସହ ଭେନିସ୍ ଯାତ୍ରା କରେ । ସେଠି ଆଣ୍ଟୋନିଓ ଜେଲ୍‌ର ଅନ୍ଧାର କୋଠରି ଭିତରେ ତା'ରି ପ୍ରତ୍ୟାଶାରେ ଦିନ ଗଣୁଛନ୍ତି ।

ଯେମିତି ହେଲେ ତାଙ୍କ ପାଖରେ ଯାଇ ଠିଆ ହେବାକୁ ପଡ଼ିବ ।

ପୋର୍ସିଆ ମନେ ମନେ କିଛି ସଂକଳ୍ପ କରିନେଇ ଲରେଞ୍ଜୋକୁ ଡକାଇ ପଠାଏ । ଚୁମ୍ବକରେ ତାକୁ ଜଣାଇଦିଏ, ଯେପର୍ଯ୍ୟନ୍ତ ତା'ର ସ୍ୱାମୀ ତାଙ୍କର ବନ୍ଧୁଙ୍କୁ ମୁକ୍ତ କରାଇ ଭଲରେ ଏଠାକୁ ଫେରି ନ ଆସିଛନ୍ତି, ସେପର୍ଯ୍ୟନ୍ତ ସେ ସଂସାର ଜଞ୍ଜାଳ ମଧ୍ୟରେ ଘାଣ୍ଟି ହେବାକୁ ଚାହେଁ ନାହିଁ । ସେ ଆଉ ନେରିଶା ଯାଇ ଗୋଟିଏ ମଠରେ ରହିବା ପାଇଁ ସିଦ୍ଧାନ୍ତ କରିଛନ୍ତି । ସେପର୍ଯ୍ୟନ୍ତ ଘରଦ୍ୱାର, ସମ୍ପତ୍ତିବାଡ଼ିର ଦେଖାରଖା ଲରେଞ୍ଜୋକୁ ହିଁ କରିବାକୁ ପଡ଼ିବ ।

ଲରେଞ୍ଜୋ ନିଜର ସମ୍ମତି ଜଣାଏ ।

ଜେସିକା ଆଉ ଲରେଞ୍ଜୋ ହାତରେ ସମସ୍ତ ଦାୟିତ୍ୱ ଦେଇ ପୋର୍ସିଆ ମଠ ଅଭିମୁଖେ ଯାତ୍ରା କରେ ।

## ଦ୍ୱିତୀୟ ଅଧ୍ୟାୟ

॥ ୧ ॥

ଆଶା ଓ ନିରାଶାର ଦ୍ୱନ୍ଦ୍ୱ ଭିତରେ କଟୁଛି ବନ୍ଦୀ ଆଣ୍ଟୋନିଓଙ୍କର ସମୟ । ସେ ବୁଝିଛନ୍ତି ତାଙ୍କର ଜୀବନ ରକ୍ଷାର ଆଉ କୌଣସି ସମ୍ଭାବନା ନାହିଁ । ସାଇଲକ୍ ପାଖରେ କୌଣସି ଆବେଦନ କି ନିବେଦନର କିଛି ଅର୍ଥ ନାହିଁ । ନିଜର ନିଷ୍ପତ୍ତିରେ ସେ ଅଟଳ । ଓଲଟି ବନ୍ଦୀ ଆଣ୍ଟୋନିଓଙ୍କ ପ୍ରତି କଡ଼ା ଦୃଷ୍ଟି ଦେବାକୁ ସେ ଜେଲ କର୍ତ୍ତୃପକ୍ଷଙ୍କୁ ସତର୍କ କରାଇ ଦେଇଛି ।

ସାଇଲକ୍ ବର୍ତ୍ତମାନ ସପ୍ତମ ସ୍ୱର୍ଗରେ ବାସ କରୁଛି । ଘଟଣାର ଶୀଘ୍ର ନିଷ୍ପତ୍ତି ହୋଇଗଲେ ସେ କିଭଳି ଆଣ୍ଟୋନିଓ ଉପରେ ପ୍ରତିଶୋଧ ନେବ ସେଥିପାଇଁ ଯୋଜନା ପରେ ଯୋଜନା ତିଆରି କରିଚାଲିଛି । ଆଣ୍ଟୋନିଓ ତାକୁ କୁକୁର କହିଥିଲା । କୁକୁରର ଯେ ମୁନିଆଁ ଦାନ୍ତ ଆଉ ଧାରୁଆ ନଖ ଥାଏ, ଏଇ କଥାଟା ପୁଅ ଭୁଲିଯାଇଥିଲା । ଏବେ ପାଉ ମଜା, ଯେତେ ଆବେଦନ ନିବେଦନ କଲେ ବି ଏ ଶର୍ମା ସେଥିରେ ଭୁଲିବ ନାହିଁ ...

ଆଣ୍ଟୋନିଓ ଆଇନ୍ ବୁଝନ୍ତି । କେବଳ ମାତ୍ର ଅଲୌକିକ ଘଟଣା ଛଡ଼ା ଏହାର ଜାଲରୁ ରକ୍ଷା ପାଇବାର ଆଉ କୌଣସି ଉପାୟ ଯେ ନାହିଁ, ଏକଥା ମଧ ସେ ଜାଣନ୍ତି । ଡ୍ୟୁକ୍ ଯେତେ ଚାହିଁଲେ ବି କ'ଣ କରିପାରିବେ ? ସର୍ତ୍ତ ଅନୁଯାୟୀ ନିଜ ଦେହରୁ ଗୋଟିଏ ପାଉଣ୍ଡ ମାଂସ ତାଙ୍କୁ ଦେବାକୁ ହେବ । ଦେହରୁ ସେତକ ମାଂସ କାଟିନେବାର ପରିମାଣ ଯେ ଅବଧାରିତ ମୃତ୍ୟୁ, ଏ କଥା କ'ଣ ସେ ଜାଣନ୍ତି ନାହିଁ ?

ଏକମାତ୍ର କାମନା ମୃତ୍ୟୁ ପୂର୍ବରୁ ବନ୍ଧୁ ବାସାନିଓ ସହିତ କେମିତି ଥରେ ଦେଖାହୋଇଯାଆନ୍ତା । କହିବାର କିଛି ନାହିଁ, ଖାଲି ଆଖିର ଦେଖା..

ବାସାନିଓଙ୍କୁ ବିଦାୟ ଦେଇସାରିବା ପରେ ପୋର୍ସିଆ ନିଜର କର୍ମପନ୍ଥା ସ୍ଥିର କରିନେଲା । ପ୍ରଥମେ ସେ ନିଜର ଦାଦାପୁଅ ଭାଇ ଡାକ୍ତର ବେଲାରିଓ ପାଖକୁ ଖଣ୍ଡିଏ ଜରୁରୀ ଚିଠି ଲେଖିଲା । ଭୃତ୍ୟ ହାତରେ ତାକୁ ଦେଇ ବେଲାରିଓ ଯାହା ଦେବେ ତାକୁ ନେଇ ସିଧା ଜାହାଜ ଘାଟରେ ତା' ସହିତ ଦେଖା କରିବା ନିମନ୍ତେ ତାକୁ ଆଦେଶ ଦେଲା...

ନେରିଶା ତା'ର କେବଳ ଦାସୀ ନୁହେଁ, ଅନ୍ତରଙ୍ଗ ସହଚରୀ ମଧ୍ୟ । ଏହାପରେ ସେ ଯାହା କରିବାକୁ ଚାହେଁ, ନେରିଶା ତାହା ଜାଣିବା ଆବଶ୍ୟକ । ସେମାନେ ଛଦ୍ମବେଶରେ ଭେନିସ୍ ଯାଇ ସେମାନଙ୍କର ସ୍ୱାମୀମାନଙ୍କୁ ସେଠାରେ ଭେଟିବେ ବୋଲି ତାକୁ ଜଣାଇ ଦିଏ ।

ପ୍ରସ୍ତୁତି ପର୍ବ ଆରମ୍ଭ ହୁଏ ।

ଭେନିସ୍‌ରେ ଆଣ୍ଟୋନିଓଙ୍କର ବିଚାର ଆରମ୍ଭ ହୋଇସାରିଥାଏ ।

ବିଚାରପତିଙ୍କର ପ୍ରଶ୍ନର ଉତ୍ତରରେ ସାଇଲକ୍ ଗମ୍ଭୀର ଭାବରେ ଜଣାଇଦିଏ ଧର୍ମାବତାର, ମୋର ପ୍ରାର୍ଥନା ମୁଁ ପୂର୍ବରୁ ଆପଣଙ୍କୁ ଜଣାଇ ସାରିଛି । ଏଇ ପବିତ୍ର ନ୍ୟାୟାଳୟର ନାମରେ ଶପଥ କରି କହୁଛି, ସର୍ତ୍ତ ଅନୁଯାୟୀ ମୁଁ କେବଳ ପାଉଣାଗଣ୍ଡାକ ବୁଝିନେବାକୁ ଚାହେଁ... ତାଠୁଁ ଟିକିଏ ବି ଅଧିକ ନୁହେଁ ।

ଏବେ ମୋତେ ମୋର କ୍ଷତି ପୂରଣ ନିମନ୍ତେ ଯେଉଁ ଅର୍ଥ ଯଚାଯାଉଛି ତାକୁ ଗ୍ରହଣ କରିନେବା ମୋ ପକ୍ଷରେ ସମ୍ଭବ ନୁହେଁ । ତାହା ଦ୍ୱାରା ମୁଁ ସର୍ତ୍ତ ଭଙ୍ଗ ଦୋଷରେ ଦୋଷୀ ହେବି । ଏତେ ବଡ଼ ପାପ ମୁଁ କରିପାରିବି ନାହିଁ ... ଆପଣ ମୋତେ କ୍ଷମା କରିବେ...

ଡ୍ୟୁକ୍ ତଥାପି ନିବେଦନ କଲେ... ସବୁରି ଉପରେ ଥାଏ ଯେଉଁ ମାନବିକତା ତାରି ଦୁହାଇ ଦେଇ ମୁଁ କହୁଛି...

ବାଧାଦେଇ ସାଇଲକ୍ କହିଲା... ମୁଁ ଆଇନ୍‌ର ପୂଜାରୀ ହଜୁର । ତା'ର ରକ୍ଷା ଯେଉଁଭଳି ହୋଇପାରେ, ସେଇଥିପାଇଁ ମୁଁ ଅଦାଲତକୁ ଆସିଛି । ଏଠି ଯଦି ମୋତେ ନ୍ୟାୟ ନ ମିଳେ, ତେବେ ମୁଁ ଧରିନେବି ଯେ ଭେନିସ୍‌ର ସନନ୍ଦରେ ନାଗରିକ ସ୍ୱାଧୀନତାର ଯେଉଁ ଉଲ୍ଲେଖ ଅଛି, ତାହା ସମ୍ପୂର୍ଣ୍ଣ ମିଥ୍ୟା...

ବାସାନିଓ ଉତ୍ତେଜିତ ହୋଇଉଠେ । କହେ... ସାଇଲକ୍, ତୋ'ମୁହଁରେ ନ୍ୟାୟର କଥା ଶୁଣି ଦୁଃଖ ଲାଗୁଛି । ତୋର ପ୍ରକୃତ ରୂପ ସହିତ ଭେନିସ୍‌ର ପିଲାଠୁ ବୁଢ଼ାଯାଏ ସମସ୍ତେ ପରିଚିତ । ତୁ ତ ମଣିଷ ଦେହଧାରୀ ପଶୁଟିଏ । ଆରେ ମୂଢ଼,କାହା ଉପରେ ରାଗ ଥିଲେ କ'ଣ ତାକୁ ହତ୍ୟା କରିବା ପାଇଁ ଷଡ଼ଯନ୍ତ୍ର କରିବାକୁ ହେବ ? ମୁଁ ତ ତିନିହଜାର ବଦଳରେ ଛଅହଜାର ଡୁକାଟ୍ ଦେବାକୁ ରାଜି ଅଛି...

ସାଇଲକ୍ ମୁହଁରେ କ୍ରୂରହସ ଫୁଟିଉଠେ । ସେ ଡ୍ୟୁକ୍‌ଙ୍କ ଆଡ଼କୁ ଅନାଇ କହେ, ଧର୍ମାବତାର,ମୋର ଆଉ କିଛି କହିବାର ନାହିଁ କି ମୁଁ ଯେକୌଣସି ରାମାଦାମାଙ୍କ ପାଖରେ

ଜବାବ୍ ଦେହୀ କରିବାକୁ ଅଦାଲତ୍‌କୁ ଆସି ନାହିଁ । ଖାତକଠାରୁ ମୋର ନ୍ୟାଯ୍ୟ ପ୍ରାପ୍ୟ ପାଇବା ପାଇଁ ମୁଁ ଅଦାଲତର ସାହାଯ୍ୟପ୍ରାର୍ଥୀ ହୋଇଛି ମାତ୍ର । ସେଠାରେ ଶହେ ଗୁଣ ଅର୍ଥର କୌଣସି ପ୍ରଶ୍ନ ନାହିଁ ।

ଡ୍ୟୁକ୍ ସାଇଲକ୍ ଆଡ଼କୁ ଅନାଇ କହନ୍ତି, ପରକାଳ ବୋଲି ଗୋଟାଏ କଥା ଅଛି । ତମେ ନିଜେ ଯଦି ଅନ୍ୟ ପ୍ରତି କରୁଣା ନ କର, ତେବେ ଈଶ୍ୱରଙ୍କର କୃପା ଲାଭ କରିବ କିପରି ?

ସାଇଲକ୍ ଉଦ୍ଦୀପ୍ତ ସ୍ୱରରେ କହିବାକୁ ଆରମ୍ଭ କରେ... ଯେଉଁମାନେ ଅନ୍ୟାୟ କରନ୍ତି, ଶାସ୍ତି ପାଇବାର ଭୟ ସେମାନଙ୍କର । ମୁଁ କୌଣସି ଅନ୍ୟାୟ କରି ନାହିଁ । ମୋର ନ୍ୟାଯ୍ୟ ପାଉଣାଗଣ୍ଡାକ ଚାହିଁଛି । ମୁଁ ଭୟ କରିବି କାହାକୁ ?

ଆଉ ଏଇ ଯେ ଆପଣ ମୋତେ ପରକାଳର କଥା କହିଲେ ...ଆପଣମାନେ ଯେ କେତେ ନିରୀହ ମଣିଷଙ୍କୁ କ୍ରୀତଦାସ କରି ସେମାନଙ୍କ ଉପରେ ପଶୁ ଭଳି ଅତ୍ୟାଚାର ଚଳାଇ ଯାଉଛନ୍ତି । ଦିନ ପରେ ଦିନ-ତା'ର ଜବାବ ଦେବାକୁ ଯାଇ ଆପଣ କହିବେ.. ସେମାନେ କ୍ରୀତଦାସ- ସେଇଭଳି ବ୍ୟବହାର ସେମାନଙ୍କର ପ୍ରାପ୍ୟ... ସେମିତି ମୋର ଉତ୍ତରଟା ମଧ୍ୟ ଶୁଣନ୍ତୁ... ମୁଁ ଆଣ୍ଟୋନିଓଠୁ ପାଉଣ୍ଡେ ମାଂସ ଦାବି କରୁଛି... କାରଣ... କାରଣ ମୁଁ ଚଢ଼ା ଦାମ୍ ଦେଇ ତା' କିଣିଛି । ନ୍ୟାୟତଃ ସେତକ ମୋର ପ୍ରାପ୍ୟ... ଯଦି ଆପଣ ମୋତେ ତହିଁରୁ ବଞ୍ଚିତ କରନ୍ତି, ତେବେ ବୁଝିବି ଆଇନ୍ କାନୁନ୍ ସବୁ ମିଥ୍ୟା ।

ଧର୍ମାବତାର, ମୁଁ ଏଠାକୁ ଆସିଛି ବିଚାର ପାଇଁ । ବିଚାର ମୋର ଦରକାର । ଆପଣ ବିଚାରକ । ସୁବିଚାର କରନ୍ତୁ...

ଡିଉକ୍ କ'ଣ ଯେମିତି ଭାବନ୍ତି । କିଛିକ୍ଷଣ ପରେ ସଂଯତ ଭାବରେ କହିବାକୁ ଆରମ୍ଭ କରନ୍ତି... ଏଇ ମକଦ୍ଦମାଟି ଅତ୍ୟନ୍ତ ଜଟିଳ । ଡକ୍ଟର ବେଲାରିଓ ନାମକ ଜଣେ ବିଚକ୍ଷଣ ଆଇନ୍‌ଜୀବୀଙ୍କୁ ଏଇ ମାମଲା ପରିଚାଳନା କରିବାପାଇଁ ମୁଁ ପାଡୁଆରୁ ଡକାଇ ପଠାଇଛି । ସେ ନ ଆସିବା ପର୍ଯ୍ୟନ୍ତ ଆପାତତଃ ମକଦ୍ଦମା ମୁଲତବି ରହିଲା...

॥ ୨ ॥

ବାସାନିଓ ଆଣ୍ଟୋନିଓଙ୍କ ସହିତ ଦେଖାକରେ । ଦୀର୍ଘଦିନର ଅଦର୍ଶନ ପରେ ଉଭୟେ ଉଭୟଙ୍କୁ ଦେଖି ପରିସ୍ଥିତି ଭୁଲିଯାଆନ୍ତି । ଦୁହିଁଙ୍କର କଣ୍ଠ ରୁଦ୍ଧ ହୁଏ । ଆଖି ଛଳ ଛଳ ହୋଇଯାଏ ।

ନିଜକୁ କୌଣସିମତେ ସମ୍ଭାଳି ନେଇ ବାସାନିଓ କହେ... ଭୟ କରନା ବନ୍ଧୁ । ଏଇ ଦୁଷ୍ଟ ଇହୁଦୀର ଅସ୍ତ୍ର ତମକୁ ସ୍ପର୍ଶ କରିବା ପୂର୍ବରୁ ମୁଁ ମୋ ଦେହର ରକ୍ତ ମାଂସ ଅସ୍ଥି... ସବୁ ତାକୁ ଦେଇ ଦେବି...

ଆଣ୍ଟୋନିଓଙ୍କ ମୁହଁରେ ଧୀରେ କରୁଣ ହସ ଫୁଟିଉଠେ..

ସେ ଧୀର ସ୍ୱରରେ କହନ୍ତି "ଗଛର ସବୁଠାରୁ ଅଧିକ ରୁଗ୍‌ଣ ଫଳଟି ପ୍ରଥମେ ବୃନ୍ତଚ୍ୟୁତ ହୁଏ ବନ୍ଧୁ । ସେଇ କଥା ଭାବି ମୋତେ ଝରିଯିବାକୁ ଦିଅ...

ଗ୍ରାସିୟାନୋ ଆଉ ନିଜକୁ ନିୟନ୍ତ୍ରଣରେ ରଖିପାରେ ନାହିଁ । ସେ ସାଇଲକ୍‌କୁ ନାନା କୁବାକ୍ୟଦ୍ୱାରା ଭର୍ତ୍ସନା କରିବାକୁ ଆରମ୍ଭ କରେ । ନିର୍ଲଜ ସାଇଲକ୍ କହେ... ଯେତେ ଯାହା କହିଲେ ବି ମୋର ନ୍ୟାୟ ବିଚାର ଲୋଡ଼ା । ଏ ସବୁ କଥାରୁ କ'ଣ ମିଳିବ ? ମୁଁ ଜାଣେ ଗରମପାଣିରେ ଘର ପୋଡ଼େ ନାହିଁ-

ଖବର ମିଳେ ପାଡୁୟାରୁ ଡକ୍ଟର ବେଲାରିଓ ଏକ ସ୍ୱତନ୍ତ୍ର ପତ୍ରବାହକ ହାତରେ ଖବର ପଠାଇଛନ୍ତି । ସେ ବାହାରେ ଅନୁମତି ପାଇଁ ଅପେକ୍ଷା କରୁଛି ।

ଡିଉକ୍‌ଙ୍କ ଆଦେଶରେ ଅଦାଲତରେ ପ୍ରବେଶ କରେ, ବେଲାରିଓଙ୍କ ମୋହରିର୍‌ବେଶୀ ନେରିଶା... ପ୍ରଣାମ ନିବେଦନ କରି ଜଣାଏ... ଧର୍ମାବତାର, ମୋର ପ୍ରଭୁ ବେଲାରିଓ ଆପଣଙ୍କ ନିକଟକୁ ଏଇ ପତ୍ର ପଠାଇଛନ୍ତି ।

ଦୂତ ହାତରୁ ପତ୍ର ନେଇ ଡିଉକ୍ ପଢ଼ିବାକୁ ଆରମ୍ଭ କରନ୍ତି । ପତ୍ରଟି ଏହିଭଳି... ମହାମାନ୍ୟ ଡିଉକ୍, ଅତ୍ୟନ୍ତ ଦୁଃଖର ସହିତ ଜଣାଉଛି ଯେ, ହଠାତ୍ ଅସୁସ୍ଥ ହୋଇପଡ଼ିବାରୁ ଆପଣଙ୍କର ସାଦର ନିମନ୍ତ୍ରଣ ରକ୍ଷା କରିପାରୁ ନାହିଁ । ମୋର ବିଶେଷ ବନ୍ଧୁ ରୋମ୍‌ର ଶ୍ରେଷ୍ଠ ଆଇନ୍‌ଜୀବୀ ବାଲ୍‌ଥାଜାର୍‌ଙ୍କୁ ମୁଁ ଏଇ ମକଦମା ବିଷୟରେ ଭଲଭାବେ ବୁଝାଇ ଦେଇଛି । ଉଭୟେ ସେ ବିଷୟରେ ବିସ୍ତୃତ ବିଚାରବିମର୍ଶ ମଧ କରିଛୁଁ ଏବଂ ଗୋଟିଏ ସିଦ୍ଧାନ୍ତ ଗ୍ରହଣ କରିଛୁଁ । ବାଲ୍‌ଥାଜାର ଏ ସମ୍ପର୍କରେ ମୋର ମତାମତ ଜାଣନ୍ତି । ବିଶ୍ୱାସ, ନିଜ ଯୋଗ୍ୟତାର ପରିଚୟ ସେ ଆପଣମାନଙ୍କୁ ଦେଇପାରିବେ ।

ନେରିଶାଠାରୁ ଜାଣିବାକୁ ମିଳେ ଯେ ବାଲଥାଜାର ବାହାରେ ଅପେକ୍ଷାରତ । ଅନୁମତି ମିଳିଲେ ଭିତରକୁ ଆସିବେ ।

ଡିଉକ୍ ତାଙ୍କୁ ଆସିବା ନିମନ୍ତେ ଆଦେଶ ଦେଇ ଦିଅନ୍ତି ।

ଅଧୈର୍ଯ୍ୟ ସାଇଲକ୍ ମାଂସ କଟା ଛୁରିଟିକୁ ଧାର କରିବାକୁ ଆରମ୍ଭ କରେ । ତା' ସହିତ ଚାଲିଥାଏ ତା'ର ଆସ୍ଫାଳନ... ନ୍ୟାୟ ଚାହି...

ଆସରରେ ଏଥର ପ୍ରବେଶ କରେ ବାଲ୍‌ଥାଜାରବେଶୀ ପୋର୍ସିଆ । ସ୍ୱୟଂ ଡିଉକ୍ ତାଙ୍କୁ ସ୍ୱାଗତ ଜଣାଇ ଆସନ ଗ୍ରହଣ କରିବାକୁ ଅନୁରୋଧ ଜଣାନ୍ତି ।

ଆଦେଶ ପାଳିତ ହୁଏ ।

ବିଳମ୍ବ ନ କରି ନବାଗତ ଏଥର ଉଠି ଠିଆ ହୁଅନ୍ତି । ତାଙ୍କର ଗୋଟାଏପଟେ କାଠଗଡ଼ାରେ ବାଦୀ ଇହୁଦୀ ବଣିକ ସାଇଲକ୍ ଅନ୍ୟ ପଟରେ ବିବାଦୀ ଆଣ୍ଟୋନିଓ । ଓକିଲ ମହାଶୟ ପ୍ରଥମେ ଦୁଇପକ୍ଷକୁ ଭଲ ଭାବରେ ନିରୀକ୍ଷଣ କରିଯାଆନ୍ତି । ତା'ପରେ ସାଇଲକ୍‌କୁ ସମ୍ବୋଧନ କରି କହନ୍ତି —

-ମହାଶୟ, ଆପଣ ଅଭିଯୁକ୍ତଙ୍କ ବିରୋଧରେ ଏକ ଅସ୍ୱାଭାବିକ ମକଦ୍ଦମା ରୁଜୁ କରିଛନ୍ତି । ଆଇନ୍ ବିଚାରରେ ଆପଣ ଆପଣଙ୍କ ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ ହେବେ ନାହିଁ, ଏ ପ୍ରତିଶ୍ରୁତି ମୁଁ ଆପଣଙ୍କୁ ଦେଉଛି । ତେବେ ତା ପୂର୍ବରୁ ମୋର ଗୋଟାଏ ଅନୁରୋଧ ଅଛି । କ୍ଷମା ଯେ ବ୍ୟକ୍ତିର ଭୂଷଣ-ଆଶା କରେ ତାହା ଆପଣ ବିଦିତ ଅଛନ୍ତି । ଅବଶ୍ୟ ଏଥିପାଇଁ କାହାକୁ ବାଧ କରାଯାଇପାରିବ ନାହିଁ । କ୍ଷମାର ଦାତା ଆଉ ଏହାର ଗ୍ରହୀତା ଉଭୟେ ଭାଗ୍ୟବନ୍ତ । ଈଶ୍ୱରଙ୍କର କରୁଣା ଉଭୟଙ୍କ ଉପରେ ଝରିପଡ଼େ ।

ଆପଣ ଅଦାଲତରେ ନ୍ୟାୟ ବିଚାର ପ୍ରାର୍ଥନା କରିଛନ୍ତି । ପ୍ରଥମରୁ କହିରଖୁଛି, ବିଚାରରେ କେହିବି ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ସାବ୍ୟସ୍ତ ହେବାର ସମ୍ଭାବନା ନାହିଁ । ସାଇଲକ୍ ଚିନ୍ତିତ ହୋଇଉଠେ । ଶେଷରେ କହେ, ଆସାମୀ ପକ୍ଷରୁ ବାସାନିଓ ମୋତେ ଦ୍ୱିଗୁଣ ଡୁକାଟ୍ ଦେବାକୁ ରାଜି ହୋଇଛି । ତଥାପି ମୁଁ ମୋ ସିଦ୍ଧାନ୍ତରେ ଅଟଳ । ସମଗ୍ର ଭେନିସ୍ ବଦଳରେ ମଧ ମୋର ସଂକଳ୍ପ ବଦଳିବ ନାହିଁ । ନ୍ୟାୟ ବିଚାର ହିଁ ମୋର ଦାବି...

ଏଥର ବାଲ୍‌ଥାଜାର ଆଣ୍ଟୋନିଓ ଆଡ଼କୁ ଅନାନ୍ତି । କହନ୍ତି -ଆପଣତ ସର୍ତ୍ତ ମାନିନେଇଛନ୍ତି । ଆଶା କରୁଛି, ବାଦୀ ଆପଣଙ୍କୁ କ୍ଷମା କରିବେ...

ସାଇଲକ୍ ପ୍ରତିବାଦ କରିଉଠେ । ଆଇନ୍ ଆଖିରେ ଏଥିପାଇଁ କୌଣସି ବାଧକତା ନାହିଁ, ଓକିଲ ନିଜେ ଏକଥା କହିଛନ୍ତି...

ବାଲ୍‌ଥାଜାର ସତର୍କ ହୋଇ କହନ୍ତି, ନା ନା ମୁଁ ସେ କଥା କହୁ ନାହିଁ । ଆଇନ୍ ଦେଖାଇ କ୍ଷମା ବା ଦୟା ଦାବି କରାଯାଇପାରିବ ନାହିଁ-ଏକଥା ମୁଁ ଜାଣେ । ଆପଣ ବାରମ୍ବାର ନ୍ୟାୟ କଥା କହୁଛନ୍ତି ତ, ସେଇଥିପାଇଁ ମୁଁ ଏହା କହିଲି । ଈଶ୍ୱରଙ୍କ ଆଖିରେ ଆମେ କେହି ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ନୁହଁ, କାରଣ ସମସ୍ତେ ଉଣାଅଧିକେ କୌଣସି ନା କୌଣସି ଅନ୍ୟାୟରେ ଲିପ୍ତ । ସେଥିପାଇଁ କ୍ଷମା ପ୍ରସଙ୍ଗ ଉଠାଇଥିଲି । ଭେନିସୀୟ ଆଇନ୍‌ର ଅନୁଶାସନ ମାନିନେଲେ ଏଇ ବଣିକଙ୍କର ରକ୍ଷା ପାଇବାର କୌଣସି ଉପାୟ ନାହିଁ ।

ସାଇଲକ୍ କହେ-ଈଶ୍ୱରଙ୍କ ଆଖିରେ ଯଦି ମୁଁ ଦୋଷୀ, ତେବେ ସେଥିପାଇଁ ଦଣ୍ଡ ଗ୍ରହଣ କରିବାକୁ ପ୍ରସ୍ତୁତ । ତେବେ ଏଇ ଘଟଣାରେ ମୁଁ ଚାହେଁ, ଆଇନ୍‌ସମ୍ମତ ନ୍ୟାୟ ବିଚାର ।

ଆଇନ୍‌ଜୀବୀ ପ୍ରଶ୍ନ କରନ୍ତି "ଆସାମୀଙ୍କର କ'ଣ ଋଣ ପରିଶୋଧ କ୍ଷମତା ନାହିଁ ?"

ବାସାନିଓ ଆସନ ଛାଡ଼ି ଠିଆହୋଇ କହେ- ମହାଶୟ, ପୂର୍ବରୁ କହିଛି ଆଉ ଏବେ ମଧ କହୁଛି ଯେ, ମୁଁ ମୂଳର ଦଶଗୁଣ ଅଧିକ ଅର୍ଥ ଦେବାକୁ ପ୍ରସ୍ତୁତ । ଏଭଳିକି ମୋ ନିଜର ହାତମୁଣ୍ଡ ଏବଂ ହୃତ୍‌ପିଣ୍ଡ ଜାମିନ୍ ରଖିବାକୁ ମଧ ମୁଁ ରାଜି । ବାଦୀ ଯଦି ଏଥିରେ ସମ୍ମତ ନ ହୁଅନ୍ତି ତେବେ ମୁଁ ବୁଝିବି, ତାଙ୍କର ନ୍ୟାୟ ବିଚାରର ଦାବି ପ୍ରକୃତରେ ଏକ ଛଳନା - ବାସ୍ତବରେ ସେ ଚାହାନ୍ତି ପ୍ରତିଶୋଧ ନେବାକୁ ... ମହାମାନ୍ୟ... ଆପଣ ଚାହିଁଲେ ଆଇନ୍‌ର ନଜୀର ଦେଖାଇ ଏଇ ମକଦ୍ଦମାକୁ ରଦ୍ଦ କରି ଦେଇପାରନ୍ତି ।

ବାଲ୍‌ଥାଜାର କହନ୍ତି, ଆଇନ୍‌ର କୌଣସି ଧାରା ବଦଳାଇ ଦେବାର ଶକ୍ତି ମୋର ନାହିଁ । ମୁଁ ତା କରିବି ନାହିଁ ମଧ ।

ସାଇଲକ୍ ଉଲ୍ଲସିତ ହୋଇ ଓକିଲଙ୍କୁ ଧନ୍ୟବାଦ୍ ଦିଏ ।

ବାସାନିଓ ନିଜର ପ୍ରିୟ ବନ୍ଧୁ ଆଣ୍ଟୋନିଓର କରୁଣମୁହଁ ଆଡ଼କୁ ଅନାଇ ଦୀର୍ଘଶ୍ୱାସ ପକାଏ । ଆଣ୍ଟୋନିଓ ତା' ଆଡ଼କୁ ଅନାଇ ଧୀରେ ଧୀରେ କହିବାକୁ ଆରମ୍ଭ କରେ- ମୃତ୍ୟୁପାଇଁ ମୁଁ ପ୍ରସ୍ତୁତ ବନ୍ଧୁ, ତମର ହାତଟି ଦୟାକରି ମୋ ଆଡ଼କୁ ବଢ଼ାଇ ଦିଅ... ବିଦାୟ... ତମ ପାଇଁ ମୋର ମୃତ୍ୟୁ ହେଲା- ଏ କଥା ଯେମିତି ଭୁଲରେ ସୁଦ୍ଧା ନ ଭାବ । ତମର ପତ୍ନୀଙ୍କୁ ମୋର ଅଭିନନ୍ଦନ ଜଣାଇବ । ତମକୁ ମୁଁ କେତେ ଭଲ ପାଇଥିଲି ତାହା ତାଙ୍କୁ ଜଣାଇ ଦେବ । ମାଂସ କାଟି ନେବା ସମୟରେ ମୋର ଯଦିବା ମୃତ୍ୟୁ ହୋଇଯାଏ, ତେବେ ସେଥିପାଇଁ ମୋର ଦୁଃଖ ନାହିଁ ।

ବାସାନିଓ ଦୁଃଖରେ ଭାଙ୍ଗିପଡ଼େ । କହେ.. ତମ ଜୀବନ ପାଇଁ ମୁଁ ଏଇ ସମଗ୍ର ପୃଥିବୀ ଏଭଳିକି ମୋର ପ୍ରାଣାଧିକା ପତ୍ନୀଙ୍କୁ ମଧ ବିସର୍ଜନ ଦେବାକୁ ପ୍ରସ୍ତୁତ ।

ବାଲ୍ ଥାଜାର ଏଥର ସଓ୍ୱାଲ ଆରମ୍ଭ କରନ୍ତି । ଆଣ୍ଟୋନିଓ ଆଡ଼କୁ ଅନାଇ କହନ୍ତି "ସର୍ତ୍ତ ଅନୁଯାୟୀ ପ୍ରତିବାଦୀ ଏଥର ନିଜର ଛାତି ଖୋଲିଦିଅନ୍ତୁ । ଆଉ ବାଦୀ, ଆପଣ ଆସାମୀର ରକ୍ତକ୍ଷରଣ ବନ୍ଦ କରିବା ନିମନ୍ତେ ଜଣେ ଅଭିଜ୍ଞ ଚିକିତ୍ସକ ନିଜ ବ୍ୟୟରେ ନିଯୁକ୍ତ କରନ୍ତୁ । ମନେରଖିବେ, ଆଇନ୍ ଅନୁସାରେ ଏକ ପାଉଣ୍ଡ ମାଂସ ଆପଣଙ୍କର ପ୍ରାପ୍ୟ... ସେତିକି କାଟିବେ... ଟିକିଏ ବେଶି ନୁହେଁ କି ଟିକିଏ କମ୍ ନୁହେଁ । ତାହା ହେଲେ ଆପଣ ଦଣ୍ଡିତ ହେବେ । ଆହୁରି ମନେରଖିବେ ଦଲିଲ୍‌ରେ ରକ୍ତପାତ ପ୍ରସଙ୍ଗ କିଛି ଉଲ୍ଲେଖ ନାହିଁ । ଏ କ୍ଷେତ୍ରରେ ଯଦି ତାହା ହେଉଛି, ତେବେ ସେଥିପାଇଁ ମଧ ଆପଣ ଦୋଷୀ ସାବ୍ୟସ୍ତ ହେବେ... ଏଥିପାଇଁ ଆଇନ୍ ଆପଣଙ୍କର ସମ୍ପତ୍ତି ବାଜ୍ୟାପ୍ତ କରିଦେଇପାରେ ...

ସାଇଲକ୍ ଏଥର ପ୍ରକୃତରେ ଭୟ ପାଇଯାଏ । ସେ କମ୍ପିତ କଣ୍ଠରେ ନିବେଦନ କରେ, ମହାଶୟ, ତାହାହେଲେ ମୁଁ ପୂର୍ବ ପ୍ରସ୍ତାବ ଗ୍ରହଣ କରିନେବାକୁ ରାଜି । ମୂଳର ତିନିଗୁଣ ଅର୍ଥ ଫେରସ୍ତ ପାଇଗଲେ ମୁଁ ମୋର ଦାବି ଛାଡ଼ିଦେବି । ମାଂସର ଲୋଭ ମୋର ଆଉ ନାହିଁ ...

ଆଇନ୍‌ଜୀବୀ ଏଥର ଗମ୍ଭୀର ସ୍ୱରରେ କହନ୍ତି— ଆଇନ୍ କିନ୍ତୁ ସେ କଥା କହୁ ନାହିଁ । ମାଂସ ଆପଣଙ୍କୁ କାଟିନେବାକୁ ପଡ଼ିବ, ଆଉ ତାହା ପୁଣି ବିନା ରକ୍ତପାତରେ । କଟାମାଂସର ଓଜନ ଯଦି ଟିକିଏ କମ୍ ବା ବେଶି ହୁଏ ତା'ହେଲେ ଆପଣ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେବେ ।

ସାଇଲକ୍ ଆର୍ତ୍ତନାଦ କରିଉଠେ ? ତାହା ହେଲେ ମୋ ଟଙ୍କା ?

ଓକିଲ କହନ୍ତି- ସେ ଅଧିକାର ଆପଣ ହରାଇଛନ୍ତି ।

ସାଇଲକ୍ ଥରିବାକୁ ଆରମ୍ଭ କରେ । ବଜ୍ର ଗମ୍ଭୀର କଣ୍ଠରେ ଓକିଲ କହନ୍ତି- ଏ ବିପଦ ଆପଣ ନିଜେ ନିମନ୍ତ୍ରଣ କରି ଆଣିଛନ୍ତି । ଆଇନ୍ ଆଖିରେ ଆପଣ ଅଭିଯୁକ୍ତ । ଭେନିସ୍‌ର ଜଣେ ସମ୍ମାନନୀୟ ନାଗରିକଙ୍କର ପ୍ରାଣ ନେବାକୁ ଆପଣ ଷଡ଼ଯନ୍ତ୍ର କରିଛନ୍ତି । ଏଇ ଅପରାଧରେ ଆପଣଙ୍କର ଅର୍ଦ୍ଧେକ ସମ୍ପତ୍ତି ପ୍ରତିବାଦୀ ପାଇବେ ଏବଂ ଅପର ଅର୍ଦ୍ଧେକ ରାଜକୋଷରେ ଜମାହେବ । ଏଥିପାଇଁ କୌଣସି ଆବେଦନ ଗ୍ରହଣ କରାଯିବ ନାହିଁ ...

ସାଇଲକ୍ କରୁଣ ସ୍ୱରରେ ନିବେଦନ କରେ - ଧର୍ମାବତାର, ମୁଁ ମୋର ପ୍ରାଣ ଭିକ୍ଷା ମଧ କରିପାରିବି ନାହିଁ ?

ଓକିଲ ଗମ୍ଭୀର ହୋଇଯାଆନ୍ତି । କହନ୍ତି- ସେ ବିଷୟରେ ମୋର କରଣୀୟ କିଛି ନାହିଁ । ଷଡ଼ଯନ୍ତ୍ରକାରୀର ପ୍ରାଣ ରକ୍ଷା କରିବା ନିର୍ଭର କରୁଛି ମହାମାନ୍ୟ ଡିଉକ୍‌ଙ୍କ ଉପରେ । ସେ ଯଦି ଦୟା ପରବଶ ହୋଇ ଅପରାଧୀକୁ ମାର୍ଜନା କରନ୍ତି, ତେବେ ମୋର କିଛି କହିବାର ନାହିଁ ।

ଆଇନ୍ ଦିଗରୁ ମୁଁ ଆପଣଙ୍କୁ ଜଣାଇବାକୁ ବାଧ ହେଉଛି ଯେ, ଆପଣ ହତ୍ୟା ଷଡ଼ଯନ୍ତ୍ରରେ ଲିପ୍ତ । ସାକ୍ଷ୍ୟ ପ୍ରମାଣାଦିର ଭିତ୍ତିରେ ଏହା ସାବ୍ୟସ୍ତ ହୋଇସାରିଛି । ଏବେ ଆପଣ ପ୍ରାଣ ରକ୍ଷା ନିମନ୍ତେ ଡିଉକ୍‌ଙ୍କୁ ଆବେଦନ କରିପାରନ୍ତି ।

ସାଇଲକ୍ ନିସ୍ତେଜ ହୋଇ ସେଇ କାଠଗଡ଼ା ଭିତରେ ବସିପଡ଼େ । ଅନୁଶୋଚନାରେ ତା'ର ମନ ଭରିଯାଏ । ଦୁଃସହ ବେଦନାର ଚିହ୍ନ ତା'ର ମୁହଁରେ ଫୁଟି ଉଠେ ।

ଉତ୍ତେଜିତ ଗ୍ରାସିୟାନୋ ଏଥର ସାଇଲକ୍ ପାଖରେ ଠିଆହୁଏ । ତା' ଆଡ଼କୁ ଅନାଇ ତୀବ୍ର କଣ୍ଠରେ କହିବାକୁ ଲାଗେ ... ତମର ଏଥର ଏକମାତ୍ର କର୍ତ୍ତବ୍ୟ ହେଉଛି, ଫାଶୀର ଦଉଡ଼ିକୁ ନିଜ ହାତରେ ନିଜ ଗଳାରେ ପିନ୍ଧାଇଦେବା । ଆଇନ୍ ଆଖିରେ ତମେ ସମ୍ପୂର୍ଣ୍ଣ ନିଃସ୍ୱ । କାରଣ ତମ ସମ୍ପତ୍ତିର ଅଧା ଏବେ ଆଣ୍ଟୋନିଓଙ୍କର, ବାକି ଅଧା ରାଜାଙ୍କର ... ଖଣ୍ଡେ ଦଉଡ଼ି କିଣିବାକୁ ବି ତମ ପାଖରେ ପଇସାଟିଏ ନାହିଁ । ତମର ଦୁର୍ଦ୍ଦଶା ଦେଖି ସତରେ ମୁଁ ମର୍ମାହତ । ରାଷ୍ଟ୍ରର ପଇସାରେ ତମ ପାଇଁ ଦଉଡ଼ି କିଣାଯିବ ...

ଶୁଣାଯାଏ ଆଇନ୍‌ଜୀବୀଙ୍କର କଣ୍ଠସ୍ୱର ... ପ୍ରତିବାଦୀ ଆଣ୍ଟୋନିଓ... ମୁଁ ଶେଷ ଥର ପାଇଁ ଆପଣଙ୍କୁ ପ୍ରଶ୍ନ କରୁଛି । ଆପଣ ଏଇ ଅଭିଯୁକ୍ତ ପ୍ରତି କିଭଳି ବ୍ୟବହାର କରିବାକୁ ଚାହାନ୍ତି ?

ଆଣ୍ଟୋନିଓ ଦୁଃଖର ସହିତ ଜଣାନ୍ତି- ଧର୍ମାବତାର ! ଡିଉକ୍‌ଙ୍କ ପାଖରେ ମୋର ବିନୀତ ନିବେଦନ ସାଇଲକ୍‌ର ଜରିମାନା ମକୁବ କରାଯାଇ ଯେଉଁ ସଦାଶୟ ତରୁଣ ତା'ର କନ୍ୟାକୁ ବିବାହ କରିଛନ୍ତି ସେଇ ଅର୍ଥ ତାଙ୍କୁ ଦିଆଯାଉ । ସାଇଲକ୍ ଅଦାଲତ ନିକଟରେ ଲେଖି ଜଣାଇଦେଉ, ତା' ମୃତ୍ୟୁ ପରେ ତା'ର ସମସ୍ତ ସମ୍ପତ୍ତି ତା'ର କନ୍ୟା ଓ ଜାମାତା ପାଇବେ ।

ସାଇଲକ୍ ଡିଉକ୍‌ଙ୍କୁ ଜଣାଏ -ଧର୍ମାବତାର ଦୟାକରି ଏଠୁ ଯିବାକୁ ମୋତେ ଅନୁମତି ମିଳୁ । ଦଲିଲ୍ ଲେଖି ମୋ ପାଖକୁ ପଠାଇ ଦେଲେ ମୁଁ ତହିଁରେ ସ୍ୱାକ୍ଷର କରିଦେବି ।

ଡିଉକ୍ ଏତେବେଳଯାଏ ନୀରବରେ ବସି ସବୁ ଶୁଣୁଥିଲେ । ଆସନରୁ ଉଠି ସେ ସାଇଲକ୍ ଉଦ୍ଦେଶ୍ୟରେ କହିଲେ- ଆମର ମହାନୁଭବତା ଯେମିତି ତମେ ବୁଝିପାର, ସେଥିପାଇଁ ମୁଁ ତୁମକୁ କ୍ଷମା କରୁଛି । ତମର ପ୍ରାଣ ଭିକ୍ଷା ମଧ ଦେଉଛି ।

ବିଚାରର ସିଦ୍ଧାନ୍ତ ଅନୁସାରେ ତମ ସମ୍ପତ୍ତିର ଅର୍ଦ୍ଧେକ ପାଇବେ ଆଣ୍ଟୋନିଓ । ତେବେ ତମେ ଯଦି ତମର କୁକର୍ମ ନିମନ୍ତେ ଅନୁତପ୍ତ ହୁଅ, ତେବେ ତମ ସମ୍ପତ୍ତିକୁ ଫେରାଇ ଦିଆଯାଇ କିଛି ଜରିମାନା ଧାର୍ଯ୍ୟ କରାଯାଇପାରେ । ଏହାଦ୍ୱାରା ତମର ଦଣ୍ଡ ହ୍ରାସ ପାଇବ ।

ଓକିଲ ଜଣାନ୍ତି, ମହାମାନ୍ୟ ଡିଉକ୍‌ଙ୍କର ସିଦ୍ଧାନ୍ତକୁ ମୁଁ ସର୍ବାନ୍ତଃକରଣରେ ସମର୍ଥନ କରୁଛି । ତେବେ ଏଇ ସିଦ୍ଧାନ୍ତ ଗ୍ରହଣ କରାଯିବ, କେବଳ ମାତ୍ର ରାଷ୍ଟ୍ରର ପ୍ରାପ୍ୟ ସମ୍ପତ୍ତିର ଅର୍ଦ୍ଧାଂଶରୁ । ଆଣ୍ଟୋନିଓଙ୍କର ପ୍ରାପ୍ୟ ଅଂଶ ସହିତ ଏହାର କୌଣସି ସମ୍ପର୍କ ରହିବ ନାହିଁ ।

ସାଇଲକ୍ ଅପମାନରେ ଜର୍ଜରିତ । ପ୍ରବଳ ଉତ୍ତେଜନାରେ ତା'ର ସର୍ବାଙ୍ଗ କମ୍ପୁଛି । ସେ କ୍ରୁଦ୍ଧ ହୋଇ କାଠଗଡ଼ାରେ ଠିଆ ହୋଇପଡ଼େ ଏବଂ କହିବାକୁ ଆରମ୍ଭ କରେ- କାହାରି ଦୟା, ମମତା, କ୍ଷମା - ଏ ସବୁ ମୁଁ କିଛି ଚାହେନା.. ମୋର ସର୍ବସ୍ୱ ନେଇଯାଆନ୍ତୁ । ମୁଁ ଜାଣେ, କ୍ଷମିତ ଜୀବନ ହୁଏ ଘୃଣିତ ଏବଂ ଅଭିଶପ୍ତ । ଯେଉଁ ସମ୍ପତ୍ତି ଥିଲା ମୋର ମର୍ଯ୍ୟାଦାର ଭିତ୍ତି, ସେଇ ଯଦି ହସ୍ତାନ୍ତରିତ ହୋଇଗଲା, ତେବେ ବଞ୍ଚିଥାଇ କି ଲାଭ ? ଧର୍ମାବତାର, ମୋତେ ବରଂ ମୃତ୍ୟୁଦଣ୍ଡ ଦେଇ ସବୁଦିନ ପାଇଁ ମୁକ୍ତି ଦିଅନ୍ତୁ...

ଆଇନ୍‌ଜୀବୀ ଆଣ୍ଟୋନିଓଙ୍କୁ ଲକ୍ଷ୍ୟ କରି କହନ୍ତି- ଏ ବିଷୟରେ ଆପଣଙ୍କର କୌଣସି ବକ୍ତବ୍ୟ ଅଛି କି ? ଆଉ କୌଣସି ବାଟରେ ଆପଣ ଯଦି ସାଇଲକ୍‌କୁ ସାହାଯ୍ୟ କରିବାକୁ ଚାହାନ୍ତି, ତେବେ ଅଦାଲତ ଆଗରେ ତାହା ପ୍ରକାଶ କରନ୍ତୁ ।

ଗ୍ରାସିଆନୋର ଭ୍ରୁକୁଟୀ କୁଟିଳ ହୋଇ ଉଠେ ।

ସାଇଲକ୍ ଜୀବନ୍ମୃତ ଅବସ୍ଥାରେ ସେଇଠାରେ ଠିଆ ହୋଇଥାଏ । ସେ ଦେଖା ଯାଉଥାଏ ବଜ୍ରପାତରେ ବିଧ୍ୱସ୍ତ ଏକ ବିଶାଳ ବନସ୍ପତି ଭଳି । ସେଇ ଅବସ୍ଥାରେ ଠିଆ ହୋଇ ସେ ଯେମିତି କ'ଣ ଭାବୁଥାଏ ।

ଓକିଲଙ୍କ ଆହ୍ୱାନରେ ସେ ଯେମିତି ସମ୍ବିତ୍ ଫେରିପାଏ । କାଠଗଡ଼ାରେ ଭାରା ଦେଇ କୌଣସିମତେ ନିଜକୁ ଠିଆ କରି ସେ କରୁଣ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଏ । ଓକିଲ କହିବାକୁ ଆରମ୍ଭ କରନ୍ତି- ଆପଣ ଏତେ ବେଳଯାଏ ସବୁ କଥା ଶୁଣୁଥିଲେ । ମହାମାନ୍ୟ ଡିଉକ୍‌ଙ୍କର ରାୟ ଶୁଣିବା ପରେ ଆପଣଙ୍କର ଯଦି କଛି କହିବାର ଥାଏ, ତେବେ ଆପଣ ତା' କହିପାରନ୍ତି...

କୌଣସିମତେ ନିଜକୁ ସମ୍ଭାଳିନେଇ ସାଇଲକ୍ କହିଯାଏ-ମହାମାନ୍ୟଙ୍କର ନିର୍ଦ୍ଦେଶକୁ ମୁଁ ମାନିନେବାକୁ ପ୍ରସ୍ତୁତ ଅଛି ।

ଏଥର ଛଦ୍ମବେଶୀ ଓକିଲ ତାଙ୍କ ମୋହରିର ଆଡ଼କୁ ଅନାଇ ଦାନପତ୍ର ପ୍ରସ୍ତୁତ କରିବା ନିମନ୍ତେ କହନ୍ତି ।

ସାଇଲକ୍ କହିଚାଲିଥାଏ—ମହାମାନ୍ୟଙ୍କୁ ମୋର ସନିର୍ବନ୍ଧ ଅନୁରୋଧ । ଏଥର ମୋତେ ଅଦାଲତରୁ ମୁକ୍ତି ମିଳୁ । ମୁଁ କ୍ଳାନ୍ତ... ଆଉ ଅସୁସ୍ଥ । ଏଠାରେ ଅପେକ୍ଷା କଲା ଭଳି ଶକ୍ତି ମୋ ଦେହରେ କି ମନରେ ନାହିଁ । ମୋତେ ଦୟା କରନ୍ତୁ... ଦାନପତ୍ରରେ ଦସ୍ତଖତ୍ ଦେବାକୁ ମୁଁ ପ୍ରତିଶ୍ରୁତି ଦେଇଛି ...ତାହା ନିଶ୍ଚୟ ପାଳନ କରିବି...

ଡିଉକ୍ ସାଇଲକ୍ ପାଖକୁ ଆସନ୍ତି । ତା'ଆଡ଼କୁ ଅନାଇ ଅଳ୍ପ ହସି କହନ୍ତି -ଏଠୁ ଚାଲିଯିବା ପାଇଁ ମୁଁ ତମକୁ ଅନୁମତି ଦେଉଛି । ଯିବା ଆଗରୁ କେବଳ ଗୋଟାଏ କଥା ମୁଁ କହିବାକୁ ଚାହେଁ । ଅଦାଲତର ନିଷ୍ପତ୍ତି ତମେ ମାନିନେଇଛ । ଏଠୁ ଯିବା ପରେ ତମେ ଯଦି କୌଣସି ନୂତନ ଅପରାଧ କରିବାକୁ ଚେଷ୍ଟା କର, ସେଥିପାଇଁ କିନ୍ତୁ ଅଦାଲତ ଆଉ ତମକୁ କ୍ଷମା ଦେବ ନାହିଁ । ଦଲିଲ୍ ତିଆରି ହୋଇଗଲା ପରେ ତମ ପାଖକୁ ପଠାଇ ଦିଆଯିବ । ତହିଁରେ ଦସ୍ତଖତ୍ କରିବା ପାଇଁ ତମେ ଯେମିତି ଆଉ କୌଣସି ବାହାନା ନ ଦେଖାଅ । ଏଇ କଥା ମନେ ରଖିବ ।

ଆଉ ମାତ୍ର ପଦେ କଥା-ଆଜି ରାତିରେ ଆପଣମାନେ ସମସ୍ତେ ମୋ ଘରେ ମୋ ସହିତ ନୈଶାହାରରେ ଯୋଗ ଦେବେ- ସମସ୍ତଙ୍କୁ ନିମନ୍ତ୍ରଣ କରୁଛି— ସାଇଲକ୍ ତମକୁ ବି- କେହି ଯେମିତି ଆସିବାକୁ ନ ଭୁଲନ୍ତି —ଆଜିପାଇଁ ଅଦାଲତ ଭଙ୍ଗ ହେଲା—

ନିମନ୍ତ୍ରଣ କଥା ଶୁଣି ଛଦ୍ମବେଶୀ ଓକିଲ କହନ୍ତି - ମାନନୀୟ ଡିଉକ୍,ମୋର ସନିର୍ବନ୍ଧ ଅନୁରୋଧ ମୋତେ ଏବଂ ମୋର ମୋହରିରକୁ ଆପଣ ଏଥିପାଇଁ ଅଟକାଇବେ ନାହିଁ । ଆଜି ଭିତରେ ପାଡୁଆ ଫେରି ନ ଗଲେ ମୋର ପ୍ରଚୁର କ୍ଷତି ହେବ ।

ଡିଉକ୍ ଅଗତ୍ୟା ସେମାନଙ୍କୁ ଯିବାପାଇଁ ଅନୁମତି ଦିଅନ୍ତି ।

ଆଣ୍ଟୋନିଓ ଏବଂ ବାସାନିଓଠାରୁ ଓକିଲଙ୍କର ବିଦାୟ ନେବାର ସମୟ ହେଲା । ଉଭୟେ ଓକିଲଙ୍କୁ ପ୍ରାଣ ଖୋଲି କୃତଜ୍ଞତା ଜଣାଇଲେ ।

ବାସାନିଓ ଓକିଲଙ୍କ ପାରିଶ୍ରମିକର ପ୍ରଶ୍ନ ଉଠାଇଲା । ଅବଶ୍ୟ ବାସାନିଓ ଭାବ ଗଦ୍‌ଗଦ କଣ୍ଠରେ କହିଲା—ବନ୍ଧୁଙ୍କର ପ୍ରାଣରକ୍ଷା କରି ଓକିଲ ବନ୍ଧୁ ଯେଉଁ ଉପକାର କରିଛନ୍ତି କୌଣସି ଅର୍ଥ ଦ୍ୱାରା ତାହା ପରିଶୋଧ କରାଯାଇପାରିବ ନାହିଁ । ତଥାପି କୃତଜ୍ଞତାର ସ୍ମାରକୀ ସ୍ୱରୂପ ଯତ୍ କିଞ୍ଚିତ୍-

ଓକିଲ କିନ୍ତୁ ଅକମ୍ପିତ କଣ୍ଠରେ ଜଣାଇଲେ— କୌଣସି ପ୍ରକାର ପାରିଶ୍ରମିକ ଗ୍ରହଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।

ଆଣ୍ଟୋନିଓ କହିଲେ— ଅର୍ଥର ଋଣ ଅର୍ଥଦ୍ୱାରା ପରିଶୋଧ କରାଯାଇପାରେ । କୃତଜ୍ଞତାର ଋଣ କିନ୍ତୁ ଅପରିଶୋଧ ହୋଇ ରହିଯାଏ କାଳକାଳକୁ । ତଥାପି ସ୍ମୃତିସ୍ୱରୂପ ଅନ୍ତତଃ କିଛି ଉପହାର—

ଛଦ୍ମବେଶୀ ଓକିଲ ଚିନ୍ତିତ ହେଲେ । ତା'ପରେ ଆଣ୍ଟୋନିଓଙ୍କ ହାତ ଧରି କହିଲେ ନିତାନ୍ତ ଯଦି ଦେବେ— ତେବେ ଆପଣଙ୍କ ହାତର ଏଇ ଦସ୍ତାନା ଦୁଇଟି ଦିଅନ୍ତୁ । ସେଇଥିରୁ ମୁଁ ମୋର ପ୍ରାପ୍ୟ ପାଇଯିବି ।

ଆଣ୍ଟୋନିଓ ବିନା ଦ୍ୱିଧାରେ ଦସ୍ତାନା ଦୁଇଟିକୁ ଓକିଲଙ୍କ ହାତରେ ଅର୍ପଣ କଲେ ।

ଏଥର ଓକିଲ ବାସାନିଓଙ୍କ ଆଡ଼କୁ ଅନାଇଲେ । କହିଲେ ବନ୍ଧୁ, ଆପଣଙ୍କ ବାଁ ହାତର ଆଙ୍ଗୁଠିରେ ଏ ଯେଉଁ ମୁଦିଟି ରହିଛି ସେଇଟି ମୋର ଦରକାର ।

ବାସାନିଓର ମୁହଁରେ ବିଷାଦର କାଳିମା ଦେଖାଦେଲା ।

କୌଣସିମତେ ନିଜକୁ ସମ୍ଭାଳିନେଇ କହିଲା- ଏଇ ମୁଦି ମୋ ସ୍ତ୍ରୀଙ୍କର ସ୍ନେହ ଆଉ ପ୍ରେମର ସ୍ମାରକୀ । ମୁଁ ପ୍ରତିଜ୍ଞାବଦ୍ଧ—ଏହାକୁ ମୁଁ କାହାରିକୁ ଦେଇପାରିବି ନାହିଁ କିମ୍ବା ବିକ୍ରି ମଧ୍ୟ କରିପାରିବି ନାହିଁ । ମୋତେ ଆପଣ କ୍ଷମା କରନ୍ତୁ । ଦୟାକରି ଅନ୍ୟ କିଛି କହନ୍ତୁ, ମୁଁ ନିଶ୍ଚୟ ତା'ଦେଇପାରିବି ।

ଛଦ୍ମବେଶୀ ଓକିଲ କହିଲେ—ଯଦି ଦେବେ ତେବେ ଏଇ ମୁଦିଟି ଦିଅନ୍ତୁ । ଏହାଛଡ଼ା ମୋର ଆଉ କିଛି ଲୋଡ଼ା ନାହିଁ । ନ ଦେଇପାରିଲେ କିଛି କଥା ନାହିଁ । ଭଲ ଲାଗିଲା—ତେଣୁ ମାଗିଲି । ସମ୍ଭବ ନ ହେଲେ କ'ଣ କରାଯିବ ?

ଏହା ଅପେକ୍ଷା ଯଥେଷ୍ଟ ମୂଲ୍ୟବାନ୍ ମୁଦି ମୁଁ ଆପଣଙ୍କୁ ଦେବି- ବାସାନିଓ କହିଲା—ଏଇଟିକୁ ନ ଦେଇପାରି ମୁଁ ଦୁଃଖିତ ଆଉ ଲଜ୍ଜିତ ।

ଓକିଲ କ୍ଷୁଣ୍ଣ ହୁଅନ୍ତି ।

କହନ୍ତି—କିଛିକ୍ଷଣ ପୂର୍ବରୁ ଆପଣ କହୁଥିଲେ ମୁଁ ଯାହା ମାଗିବି ଆପଣ ଦେବେ । ଅଥଚ୍ ସାମାନ୍ୟ ମୁଦିଟାଏ ମୁର୍ଛି ପାରୁ ନାହାନ୍ତି । ଠିକ୍ ଅଛି, ଆପଣଙ୍କୁ ଶୁଭେଚ୍ଛା ଜଣାଉଛି । ଈଶ୍ୱର ଆପଣଙ୍କର ମଙ୍ଗଳ କରନ୍ତୁ ..

ଓକିଲ ଏବଂ ତାଙ୍କର ସହକର୍ମୀ ବିଦାୟ ନେଇ ଚାଲିଯାଆନ୍ତି ।

ଆଣ୍ଟୋନିଓ କହନ୍ତି, ମୁଦିଟା ନ ଦେବା ଭଲ ହେଲା ନାହିଁ । ଯିଏ ଆମର ଏତେ ଉପକାର କଲେ, ତାଙ୍କର ଏଇ ସାମାନ୍ୟ ପ୍ରାର୍ଥନା ରଖି ନ ପାରିବା...

ବାସାନିଓ ମୁହୂର୍ତ୍ତକ ମଧ୍ୟରେ ନିଷ୍ପତ୍ତି ନେଇ ଗ୍ରାସିଆନୋ ହାତରେ ମୁଦିଟିକୁ ଓକିଲଙ୍କ ପାଖକୁ ପଠାଇଦିଏ ।

ମୁଦି କିନ୍ତୁ ଓକିଲଙ୍କ ପାଖରେ ପହଞ୍ଚେ ନାହିଁ । ଛଦ୍ମବେଶୀ ମୋହରିର ନେରିଶା ନିଜ ସ୍ୱାମୀ ଗ୍ରାସିୟାନୋ ପାଖରୁ ସେଇଟିକୁ ଆତ୍ମସାତ୍ କରେ । ତା'ସହିତ ତା' ନିଜ ପ୍ରଦତ୍ତ ମୁଦିଟି ମଧ୍ୟ ସେ ଗ୍ରାସିୟାନୋଠାରୁ ନେଇଯାଏ ।

ଏଥର ଘରବାହୁଡ଼ା ପର୍ବ । ଭେନିସ୍‌ର ସମସ୍ତ କାର୍ଯ୍ୟ ଶେଷ ହୋଇଛି । ଆଣ୍ଟୋନିଓଙ୍କୁ ସାଙ୍ଗରେ ନେଇ ବାସାନିଓ ବେଲମଣ୍ଟ ଫେରିଯିବାକୁ ପ୍ରସ୍ତୁତ ହୁଏ ।

॥ ୩ ॥

ଆକାଶ ମେଘମୁକ୍ତ । ବିପଦର ଘନଘଟା କଟିଯାଇଛି ।

ବିଚାରର ପ୍ରହସନ ପର୍ବ ଶେଷ କରି ପୋର୍ସିଆ ଆଉ ନେରିଶା ମଧ୍ୟ ନିର୍ବିଘ୍ନରେ ବେଲମଣ୍ଟ ପହଞ୍ଚି ଯାଇଛନ୍ତି । ପୋର୍ସିଆର ଅନୁପସ୍ଥିତିରେ ଘରଦ୍ୱାର ସମ୍ଭାଳିବାର ଦାୟିତ୍ୱ ଥିଲା ଲରେଞ୍ଜୋ ଉପରେ । ସେ ନିଜ ଦାୟିତ୍ୱ ଠିକ୍ ଭାବରେ ତୁଲାଇଛି ।

ପୋର୍ସିଆ ଏଥିନିମନ୍ତେ ତା'ଉପରେ ବହୁତ ପ୍ରସନ୍ନ ।

ଇତିମଧ୍ୟରେ ବାସାନିଓ ବେଲମଣ୍ଟ ଫେରିଆସେ । ସାଙ୍ଗରେ ଆଣ୍ଟୋନିଓ । ପୋର୍ସିଆ ଉଭୟଙ୍କୁ ସ୍ୱାଗତ ଜଣାଏ ।

ବାସାନିଓ କହେ... ଏ ହେଉଛନ୍ତି ସେଇ ଆଣ୍ଟୋନିଓ ଯେ କି ନିଜ ଜୀବନକୁ ବିପନ୍ନ କରି ମୋତେ ସାହାଯ୍ୟ କରିଛନ୍ତି ।

ପୋର୍ସିଆ କହେ.. ଆମେ ଉଭୟେ ତାଙ୍କ ପାଖରେ କୃତଜ୍ଞ । ଏଭଳି ଅକୃତ୍ରିମ ବନ୍ଧୁ ପ୍ରକୃତରେ ଆଜିକାଲିର ଦୁନିଆରେ ବିରଳ ।

ଆଣ୍ଟୋନିଓ ଆଡ଼କୁ ଅନାଇ ବିନୀତ ଭାବରେ କହେ... କେବଳ ଶୃଙ୍ଖଳା କଥାରେ ନୁହେଁ, ମୁଁ ଚାହେଁ ମୋର ବ୍ୟବହାରଦ୍ୱାରା ଆମର କୃତଜ୍ଞତା ପ୍ରକାଶ କରିବାକୁ । ଆଶା କରୁଛି, ଏ ସୁଯୋଗରୁ ମୁଁ ବଞ୍ଚିତ ହେବି ନାହିଁ...

ଏ ଭିତରେ ଗ୍ରାସିଆନୋ ଏବଂ ନେରିଶାଙ୍କ ମଧ୍ୟରେ ତୁମୂଳ କଳହର ସୂତ୍ରପାତ ହୋଇଛି । ଗ୍ରାସିୟାନୋ ବୁଝାଇବାକୁ ଚେଷ୍ଟା କରୁଛି, ତମେ ବିଶ୍ୱାସ କର ଈଶ୍ୱରଙ୍କ ନାମରେ ଶପଥ କରି କହୁଛି, ମୁଁ ମୁଦିଟିକୁ ଓକିଲଙ୍କର ମୋହରିରଙ୍କୁ ଦେଇଛି ଏବଂ ନିରୁପାୟ ହୋଇ ହିଁ ଦେଇଛି । ତମେ ଏମିତି ବ୍ୟବହାର କରୁଛ ଯେମିତି ମୁଁ ଜାଣିଶୁଣି ...

ପାଟିତୁଣ୍ଡ ଶୁଣି ପୋର୍ସିଆ ପାଖକୁ ଆସେ । କାରଣ ଜାଣିବାକୁ ଚାହେଁ...

ଗ୍ରାସିୟାନୋ ନିଜକୁ ସମ୍ଭାଳିନିଏ । କହେ...କିଛି ନାହିଁ ମାଡାମ । ବିବାଦର କାରଣ ହେଉଛି ଗୋଟାଏ ସାମାନ୍ୟ ମୁଦି । ବିବାହ ସମୟରେ ନେରିଶା ସେଇଟି ମୋତେ ଦେଇ ପ୍ରତିଜ୍ଞା କରାଇ ନେଇଥିଲା ଯେ, ମୁଁ ଯେମିତି କୌଣସି ଅବସ୍ଥାରେ ବି ତାକୁ ହସ୍ତାନ୍ତର ନ କରେ । ମୋର ଦୁର୍ଭାଗ୍ୟ... ପରିସ୍ଥିତିରେ ପଡ଼ି ସେଇ ମୁଦିକୁ ମୋତେ ଭେନିସ୍‌ର ଏକ ମୋହରିରକୁ ଦେବାକୁ ପଡ଼ିଲା...ସେଇଠୁ...

ନେରିଶା କ୍ରୋଧରେ ଗର୍ଜନ କରି ଉଠେ-ମୋର ସ୍ନେହର ଉପହାରକୁ କ'ଣ ଭାବି ତମେ ଆଉ ଜଣକ ହାତରେ ଟେକିଦେଲ ? ଜାଣେ... ତମେ ସବୁ ପୁରୁଷ ସମାନ.... ତମର ଅସାଧ କୌଣସି କାମ ନାହିଁ...

ପୋର୍ସିଆ ହସ ଚାପି ନେରିଶାର ପକ୍ଷ ଅବଲମ୍ବନ କରେ । କହେ... କାମଟା କିନ୍ତୁ ତମେ ଠିକ୍ କରି ନାହଁ ଗ୍ରାସିୟାନୋ । ସ୍ତ୍ରୀର ଦେଇଥିବା ଉପହାରଟିକୁ ତମେ ଏଭଳି ଉପେକ୍ଷା କରିବା ଉଚିତ ହୋଇ ନାହିଁ । ମୁଁ ମଧ୍ୟ ମୋର ସ୍ୱାମୀଙ୍କୁ ଏଇଭଳି ଏକ ମୁଦି ପିନ୍ଧାଇ ତାଙ୍କ ଠାରୁ ପ୍ରତିଶ୍ରୁତି ଆଦାୟ କରିନେଇଛି.....

ହେଇତ ସେ ତମମାନଙ୍କର ସାମ୍ନାରେ ଠିଆ ହୋଇଛନ୍ତି । ପଚାରି ଦେଖ, ମୋର ବିଶ୍ୱାସ, ସେ ମୁଦିଟିକୁ ହସ୍ତାନ୍ତର କରି ନାହାନ୍ତି । ପ୍ରାଣ ଥିବା ପର୍ଯ୍ୟନ୍ତ ତାହା ସେ କରିପାରିବେ ନାହିଁ ।

ବାସାନିଓ ମନେ ମନେ ପ୍ରମାଦ ଗଣେ । ହା ଈଶ୍ୱର... ଇଏ ତମେ କି ଅବସ୍ଥାରେ ଆଣି ପକାଇଲ । ପୋର୍ସିଆ ବାସାନିଓ ଆଡ଼କୁ ଅନାଇବା ମାତ୍ରେ ସେ ଅପରାଧୀ ଭଳି ମୁଣ୍ଡ ନୁଆଇଁ କହିବାକୁ ଆରମ୍ଭ କରେ..

-ମିଛକଥା କହି ମୁଁ ତମ ପ୍ରେମକୁ ଅପମାନ କରିବି ନାହିଁ । ସେଥିରେ ମୋର ଅପରାଧର ମାତ୍ରା ବଢ଼ିବ । ସ୍ୱୀକାର କରୁଛି, ତମେ ଦେଇଥିବା ମୁଦି ମୋ ହାତରେ ନାହିଁ । ତମେ ମୋତେ ଭୁଲ୍ ବୁଝନା... କେଉଁ ପରିସ୍ଥିତିରେ ପଡ଼ି ମୁଁ ମୁଦିଟିକୁ ହସ୍ତାନ୍ତର କରିବାକୁ ବାଧ ହୋଇଛି, ତା' ଯଦି ଶୁଣ ତେବେ ମୋ ପ୍ରତି ତମେ ଅବିଚାର କରିବ ନାହିଁ । ମୋର ପ୍ରିୟ ବନ୍ଧୁ ଆଣ୍ଟୋନିଓଙ୍କୁ ଯେ ନୂଆ ଜୀବନ ଦେଇଛନ୍ତି ସେ ଓକିଲ ମୋ ହାତର ଏଇ ମୁଦିଟା ଛଡ଼ା ଅନ୍ୟ କିଛି ନେବାକୁ ଚାହିଁଲେ ନାହିଁ । ନିରୁପାୟ ହୋଇ ମୁଁ ତାଙ୍କୁ ମୁଦିଟି ଦେବାକୁ ବାଧ ହୋଇଛି ।

ପୋର୍ସିଆର ଧୈର୍ଯ୍ୟର ବନ୍ଧ ସତେଯେମିତି ଭାଙ୍ଗିଯାଏ । ସେ ଗର୍ଜନ କରିଉଠେ- ତମର ପ୍ରତିଶ୍ରୁତିର ଅର୍ଥ ତେବେ ଏଇଆ ? ମୋର ଭଲପାଇବାର ଏଇ ମୂଲ୍ୟ ତମେ ଦେଲ ?

ବାସାନିଓ ଆକାଶରୁ ପଡ଼େ । ଏତେ ବୁଝାଇବା ପରେ ବି ସେ ବୁଝିବାକୁ ପ୍ରସ୍ତୁତ ନୁହଁ । ନିଜକୁ ସମ୍ଭରଣ କରି ସେ ସଂଯତ ସ୍ୱରରେ କହେ.. ବିଶ୍ୱାସ କର ..ତମ ନାମରେ ଶପଥ ନେଇ କହୁଛି..ମୁଁ ନିରୁପାୟ ହୋଇ ଏଇ ଆଇନ୍‌ଜୀବୀଙ୍କୁ ମୁଦିଟି ଦେଇଛି । ଯେ ମୋର ବନ୍ଧୁଙ୍କର ପ୍ରାଣରକ୍ଷା କରିଛନ୍ତି, ତାଙ୍କୁ ବିମୁଖ କରିପାରି ନାହିଁ ବୋଲି ଦେଇଛି । ଏଥିରେ ଯଦି ମୋର ଅପରାଧ ହୋଇଥାଏ, ତେବେ ମୁଁ ତମଠାରୁ କ୍ଷମା ମାଗି ନେଉଛି ।

ପୋର୍ସିଆ ତଥାପି ରାଗିଲା ସ୍ୱରରେ କହେ..ସେଇ ଆଇନ୍‌ଜୀବୀ ଯେମିତି ଜୀବନ ସାରା ମୋ ଆଗକୁ ନ ଆସନ୍ତି । ତୁମକୁ ଅନୁରୋଧ... ଆଜିଠୁ ଗୋଟିଏ ରାତିପାଇଁ ବି ତମେ ଯେମିତି ମୋତେ ଛାଡ଼ି ନ ଯାଅ...

ନେରିଶା ଏ ପର୍ଯ୍ୟନ୍ତ ନୀରବରେ ପୋର୍ସିଆର କଥା ଶୁଣୁଥିଲା । ଏଥର କହିଲା—ଠିକ୍ ସେଇଆ— ମୋ ପ୍ରତି ମୋ ସ୍ୱାମୀ ଯଦି ଉଦାସୀନ ହୁଅନ୍ତି, ତେବେ ମୁଁ ବି—

ଆଣ୍ଟୋନିଓ ନିଜକୁ ଧିକ୍କାର ଦେଇ କହିଉଠନ୍ତି—ମୁଁ—ମୁଁ ହେଉଛି ଏ ସବୁ ଅନର୍ଥର ମୂଳ ।

ପୋର୍ସିଆ ନମ୍ର ଭାବରେ କହେ— ଆପଣଙ୍କର ଏଭଳି ହା ହୁତାଶ କରିବାର କୌଣସି କାରଣ ନାହିଁ । ଆପଣ ମୋ ସ୍ୱାମୀଙ୍କର ଅଭିନ୍ନ ହୃଦୟ ବନ୍ଧୁ— ଆମର ମାନନୀୟ ଅତିଥି— ଆପଣଙ୍କୁ ଆଉଥରେ ସ୍ୱାଗତ କରୁଛି—

ବାସାନିଓ ଆଉଥରେ କହେ— ମୁଁ ନିରୁପାୟ ହୋଇ ଏଇ ଅନ୍ୟାୟ କାମଟି କରି ପକାଇଛି ପୋର୍ସିଆ-ଏଇ ମୋର ବନ୍ଧୁଙ୍କ ଆଗରେ ଅକପଟରେ ତାହା ସ୍ୱୀକାର କରୁଛି । ମୋତେ ବିଶ୍ୱାସ କର -

ପୋର୍ସିଆ ସମସ୍ତଙ୍କଆଡ଼େ ଥରେ ଚାହିଁଗଲା । ତା'ପରେ ଗମ୍ଭୀର ଭାବେ କହିବାକୁ ଆରମ୍ଭ କଲା- ଏଇ ଅଳ୍ପଦିନ ଭିତରେ ଅନେକ ଅଭିଜ୍ଞତା ହୋଇଗଲା । ତମର ଦୁଇଟି ରୂପ ଦେଖି ସଂସାର ଉପରେ ମୋର ବିତୃଷ୍ଣା ଆସିଯାଉଛି ।

ପ୍ରତିବାଦ ନ କରି ବାସାନିଓ କହିଲା— ଅପରାଧ କରିଛି ଏବଂ ସେଥିପାଇଁ କ୍ଷମା ମଧ ମାଗୁଛି । ମୁଁ ଆଉଥରେ ନିଜର ଆତ୍ମା ନାମରେ ଶପଥ କରି କହୁଛି, ଜୀବନରେ ଆଉ କୌଣସି ଦିନ ତମକୁ ଦେଇଥିବା ପ୍ରତିଶ୍ରୁତି ଭଙ୍ଗ କରିବି ନାହିଁ ।

ଆଣ୍ଟୋନିଓ ଏଥର କହନ୍ତି ମନେପଡୁଛି, ଦିନେ ପ୍ରିୟ ବନ୍ଧୁ ବାସାନିଓ ପାଇଁ ମୁଁ ମୋର ଜୀବନକୁ ବାଜି ଲଗାଇ ଦେଇଥିଲି । ଆଉ ଏକଥା ମଧ ନିଶ୍ଚିତ ଯେ, ଈଶ୍ୱର ପ୍ରେରିତ ହୋଇ ଏଇ ଆଇନ୍‌ଜୀବୀ ଆସି ନ ଥିଲେ, ଆଜି ଦୁଇଜଣଙ୍କ ଭିତରୁ କେବଳ ଜଣେ ବଞ୍ଚିରହି ଥାଆନ୍ତେ । ତଥାପି ମୁଁ ମୋର ବନ୍ଧୁଙ୍କ ତରଫରୁ ପ୍ରତିଶ୍ରୁତି ଦେଉଛି । ଭବିଷ୍ୟତ୍‌ରେ ଯେମିତି କୌଣସି କାରଣରୁ ମୋର ବନ୍ଧୁ ତାଙ୍କର ପ୍ରତିଜ୍ଞା ଭଙ୍ଗ ନ କରନ୍ତି, ତାହା ଦେଖିବାର ଦାୟିତ୍ୱ ମୋର—

ପୋର୍ସିଆ ନିଜକୁ ସମ୍ଭାଳିନିଏ । ତା' ପରେ ନିଜର ପରିଧାନ ଭିତରୁ ଗୋଟିଏ ମୁଦି ବାହାର କରି ଆଣ୍ଟୋନିଓର ହାତରେ ଦେଇ କହେ— ଆପଣ ସାକ୍ଷୀ ରହିଲେ । ଏଇ ମୁଦିଟିକୁ ମୋର ସ୍ୱାମୀଙ୍କୁ ଦିଅନ୍ତୁ । ସେ ଯେମିତି ଆଗଠାରୁ ଅଧିକ ସାବଧାନ ହୋଇ ଏହାକୁ ରଖନ୍ତି ।

ଆଣ୍ଟୋନିଓ ଆନନ୍ଦରେ ମୁଦିଟିକୁ ନେଇ ବାସାନିଓର ହାତରେ ପିନ୍ଧାଇ ଦିଅନ୍ତି । କହନ୍ତି- ପ୍ରିୟ ବନ୍ଧୁ ସବୁ କିଛି ତ ଶୁଣିଲ । ତମର ସ୍ତ୍ରୀ ତମ ଅପରାଧ କ୍ଷମା କରିଛନ୍ତି । ଆଉଥରେ ତମକୁ ସୁଯୋଗ ଦେଇ ଅପରାଧର ପୁନରାବୃତ୍ତି ନ କରିବାକୁ କହୁଛନ୍ତି । ମୁଁ ମଧ ତମକୁ ଅନୁରୋଧ କରୁଛି ।

ମୁଦି ଦେଖିବା ପରେ ବାସାନିଓ ବିସ୍ମିତ ହୁଏ । ଏ ତ ସେଇ ମୁଦି । ଏହା ପୋର୍ସିଆ ପାଖକୁ କେମିତି ଆସିଲା ? ସେ ଅବାକ୍ ହୋଇ ପୋର୍ସିଆ ଆଡ଼େ ଚାହିଁରହେ ।

ନିଜକୁ ଆଉ ସମ୍ଭାଳି ରଖି ନ ପାରି ପଚାରେ— ପୋର୍ସିଆ, ମୋର ଦୃଢ଼ ବିଶ୍ୱାସ ଏ ହେଉଛି ସେଇ ମୁଦି, ଯାହାକୁ କିଛି ଦିନ ପୂର୍ବେ ତମେ ମୋ ହାତରେ ପିନ୍ଧାଇ ଦେଇଥିଲ- ମୁଁ ତାକୁ ଓକିଲକୁ ଦେଇଥିଲି— ଏହା ତମ ପାଖକୁ କେମିତି ଆସିଲା ?

ପୋର୍ସିଆ ମଜାଳିଆ କଣ୍ଠରେ କହିଲା- ଯଦି କହେ ତମର ସେଇ ଆଇନ୍‌ଜୀବୀ ମୁଦିଟିକୁ ମୋତେ ଦେଇଛନ୍ତି, ତେବେ ତମେ ବିଶ୍ୱାସ କରିବ ?

ବାସାନିଓ ଉତ୍କଣ୍ଠିତ ହୋଇଉଠେ । ମନରେ ଛୋଟ ଏକ ପ୍ରଶ୍ନ ଉଙ୍କି ମାରେ- ଏ କ'ଣ ସମ୍ଭବ ?

କୌଣସିମତେ ନିଜକୁ ପ୍ରକୃତିସ୍ଥ କରି କହେ- ପୋର୍ସିଆ, ମୁଁ ତମକୁ ସନ୍ଦେହ କରୁ ନାହିଁ । ତେବେ ଅବାକ୍ ହେଉଛି । ସେ ଆଇନ୍‌ଜୀବୀ ଥାଆନ୍ତି ଏତେ ଦୂରରେ, ଅଥଚ ଏଇ ଅଳ୍ପ ସମୟ ଭିତରେ ତମେ ତାଙ୍କଠୁଁ ମୁଦିଟି କେମିତି ପାଇଲ ?

ପୋର୍ସିଆ ଆଉ ବେଶି ସମୟ ଦୁଇ ବନ୍ଧୁଙ୍କୁ ସନ୍ଦେହ ଭିତରେ ରଖିବାକୁ ଚାହେଁ ନାହିଁ । ଧୀରେ ସୁସ୍ଥେ ଗୋଟି ଗୋଟି କରି ସବୁ କଥା କହିବାକୁ ଆରମ୍ଭ କରେ... ମହାଶୟ, ଆଖି ଖୋଲା ରଖିଥିଲେ ତମେ ମଧ ବୁଝିପାରିଥାଆନ୍ତ, ଓକିଲ ବାଲଥାଜାର ଆଉ ଏଇ ମୁଁ ଦୁଇଜଣଯାକ ଗୋଟିଏ ମଣିଷ । ବନ୍ଧୁଙ୍କ ପାଇଁ ତମର ବ୍ୟାକୁଳତାକୁ ଦେଖିଲି । ଭାବିଲି ତମର ଏଇ ଦୁର୍ଦ୍ଦିନରେ ତମ ପାଖରେ ଯଦି ଠିଆ ହୋଇ ନ ପାରିଲି, ତେବେ ମୁଁ ଆଉ ତମର ସହଧର୍ମିଣୀ କ'ଣ ? ବୁଦ୍ଧିଟା ଦେଲେ ମୋର ଭାଇ ବେଲାରିଓ । ମୁଁ ଆଉ ନେରିଶା ଓକିଲ ଆଉ ମୋହରିର ବେଶରେ ଭେନିସ୍ ଚାଲିଗଲୁ । ଆଉ ତା' ପରର କଥା ତ ତମେ ସବୁ ଜାଣ—

ମୋର ଏକମାତ୍ର ସାନ୍ତ୍ୱନା ଯେ ମୁଁ ତମର ବନ୍ଧୁଙ୍କ ଜୀବନରକ୍ଷା କରିଛି । ଏସବୁ କାମର ସାକ୍ଷୀ ହେଉଛି ଲରେଞ୍ଜୋ... ଇଚ୍ଛା ହେଲେ ତମେ ତାଠୁଁ ସବୁ କଥା ବୁଝିପାର ।

ଆବେଗରେ ବାସାନିଓର କଣ୍ଠ ରୁଦ୍ଧ ହୋଇଆସିଲା । ସେ ପୋର୍ସିଆର ହାତ ଧରି କହିଲା— ପୋ-ର୍ସି-ଆ-

ତା'ଆଖିରୁ ଦୁଇ ଧାର ଲୁହ ବୋହିଗଲା—

ପୋର୍ସିଆର ଆଖି ମଧ ଶୁଷ୍କ ନ ଥିଲା— ସେ କହିଲା— ଯଥେଷ୍ଟ ହୋଇଛି । ଏଇ ଦେଖ ସକାଳ ହୋଇ ଆସୁଛି । ଏଥର ଆପଣମାନେ ସମସ୍ତେ ଆସନ୍ତୁ ଭିତରକୁ ଯିବା ।

# ଦି ମେରି ୱାଇଭ୍‌ସ ଅଫ୍ ଉଇଣ୍ଡସର

॥ ୧ ॥

ହ୍ୟୁ ଇଭାନ୍ସ ଗ୍ରାମୀଣ ଯାଜକ । ସେଦିନ ସେ ବିଚାରପତି ସାଲୋଙ୍କ ସହିତ ଦେଖା କରିବାକୁ ବାହାରିଥିଲେ । ବାଟ୍‌ରେ ଦେଖା ହୋଇଗଲା ଯୁବକ ସ୍ଲେଣ୍ଡର ସହିତ । ଦୁହେଁ ମିଶି ବିଚାରପତିଙ୍କ ପାଖକୁ ଚାଲିଲେ ।

ସାଲୋ ସେତେବେଳେ ଆଇନ୍‌ର ପୋଥିପତ୍ର ଘାଣ୍ଟୁଥିଲେ । ଏମାନଙ୍କୁ ଦେଖି ବସିବାକୁ କହିଲେ । ଦୁହିଁଙ୍କର କିଛି ଅଭିଯୋଗ ଥିଲା । ଧୈର୍ଯ୍ୟ ଧରି ସେ ସବୁ ଶୁଣିବା ପରେ ସେ ମନ୍ତବ୍ୟ ଦେଲେ- ଫଲଷ୍ଟାଫ ଅନ୍ୟାୟ କରିଛି । ସେ ଯେତେ କ୍ଷମତାଶାଳୀ ହେଉନା କାହିଁକି ବିଚାରପତିଙ୍କୁ ଅପମାନ ଦେବାର ଅଧିକାର ତା'ର ନାହିଁ । ଆପଣମାନେ କ'ଣ ଭାବୁଛନ୍ତି, ତା' ମୁଁ ଜାଣି ନାହିଁ । ତେବେ ମୋ ମତରେ ଏ ବ୍ୟାପାରର ପ୍ରତିକାର ପାଇଁ ଆଇନ୍ ଅଦାଲତର ଦ୍ୱାରସ୍ଥ ହେବାର କୌଣସି ଅର୍ଥ ହୁଏ ନାହିଁ । ବଳ ପ୍ରୟୋଗ ହେଉଛି ଏହି ଅପମାନର ଯଥାର୍ଥ ପ୍ରତିକାର ।

ଫଲଷ୍ଟାଫଙ୍କୁ ଅପଦସ୍ଥ କରିବା ପାଇଁ ଶକ୍ତି ପ୍ରୟୋଗ ଅପେକ୍ଷା ବୁଦ୍ଧି କୌଶଳର ବ୍ୟବହାର ଉପରେ ଯାଜକ ମହାଶୟ ବେଶି ଜୋର୍ ଦେଲେ । ଏଥିରେ ବିଚାରପତିଙ୍କ ମତ କ'ଣ ତା' ଜାଣିବାକୁ ଚାହିଁଲେ । ଇଭାନ୍ସ ଆହୁରି କହିଲେ- ଜର୍ଜପେଜଙ୍କର ଗୋଟିଏ ସୁନ୍ଦରୀ ଝିଅ ଅଛି । ତା'ର ନାମ ହେଉଛି ଆନି-ଆନି ପେଜ୍ । ଫଲଷ୍ଟାଫ ଏବେ କହିବାକୁ ଗଲେ ଜର୍ଜଙ୍କ ଘରେ ଆଶ୍ରିତ । ଆପଣ ଯଦି ସେଠାକୁ ଯାଆନ୍ତି, ତେବେ ମୁହାଁମୁହିଁ କଥାବାର୍ତ୍ତା ହୋଇଯିବ ।

ସାଲୋ ସେଠାକୁ ଯିବା ଉଚିତ ହେବ କି ନାହିଁ ସେ ବିଷୟରେ ଟିକିଏ ଭାବିଲେ । ଶେଷରେ କହିଲେ- ଠିକ୍ ଅଛି । ଚାଲନ୍ତୁ ତେବେ ।

ସମସ୍ତେ ଜର୍ଜଙ୍କ ଘର ଆଡ଼େ ଚାଲିଲେ ।

ଜର୍ଜ ଏମାନଙ୍କୁ ଅଭ୍ୟର୍ଥନା ଜଣାଇ ବୈଠକଖାନାରେ ବସାନ୍ତି । ସେମାନଙ୍କର ଆସିବାର ଉଦ୍ଦେଶ୍ୟ ସମ୍ପର୍କରେ ହୁଏତ ତାଙ୍କୁ ପୂର୍ବରୁ କିଛି ଜଣାଥାଏ । ତେଣୁ ସେ ପ୍ରଶ୍ନ କରନ୍ତି- ଆପଣମାନେ କ'ଣ ଫଲଷ୍ଟାଫଙ୍କ ସହିତ ଦେଖା କରିବେ ?

ଇଭାନ୍ସ ସମ୍ମତି ଜଣାଇବା ମାତ୍ରେ ଜର୍ଜ କହନ୍ତି, ସେ ଏବେ ଅଛନ୍ତି । ମୁଁ ତାଙ୍କୁ ଡାକି ଆଣୁଛି ।

ଅଳ୍ପ ସମୟ ମଧ୍ୟରେ ସେଠାକୁ ଆସନ୍ତି ଫଲଷ୍ଟାଫ । ତାଙ୍କ ସାଙ୍ଗରେ ଥାଆନ୍ତି ତାଙ୍କର ପରିଚାରକ ପିସ୍ତଲ ଏବଂ ବନ୍ଧୁ ନାଇମ୍ । ସାଲୋ କହନ୍ତି ଆପଣ ଦରଜା ଭାଙ୍ଗି ଅବୈଧ ଉପାୟରେ ମୋ ଘରେ ପ୍ରବେଶ କରି ମୋର ଲୋକମାନଙ୍କ ଉପରେ ଅତ୍ୟାଚାର କରିଥିଲେ । ଏମିତିକି ମୋ ପୋଷା ହରିଣଟାକୁବି ଛାଡ଼ି ନାହାନ୍ତି ।

ନିର୍ଲଜ୍ଜ ହସ ହସି ଫଲଷ୍ଟାଫ କହନ୍ତି- ଆଉ ଯାହା କରିଥାଏନା କାହିଁକି ମୁଁ ନିଶ୍ଚୟ ଆପଣଙ୍କ ଦରୱାନ୍‌ର ଝିଅ ସହିତ ଘନିଷ୍ଠତା ବଢ଼ାଇ ନାହିଁ । ଯାହା ସତ୍ୟ, ତାକୁ ତ ସ୍ୱୀକାର କରିବାକୁ ହିଁ ହେବ ।

ସ୍ଲେଣ୍ଡାର କହନ୍ତି 'ଜାଣନ୍ତି ଆପଣଙ୍କର ଏଇ ସୟତାନ୍ ଚାକରଗୁଡ଼ାକ ମୋତେ ଜବରଦସ୍ତ ସରାଇଖାନା ପର୍ଯ୍ୟନ୍ତ ଟାଣିନେଇ ସେଠାରେ ମଦ ପିଆଇଛନ୍ତି । ତା' ପରେ ମୁଁ ବେହୋସ୍ ହୋଇପଡ଼ିବାରୁ ମୋର ସର୍ବସ୍ୱ ନେଇ ପଳାଇଛନ୍ତି ।

ସମସ୍ତଙ୍କର କଥା ଶୁଣି ଇଭାନ୍ସ ସେ ସବୁକୁ ନିଜର ନୋଟ ବହିରେ ଟିପିରଖୁଥାନ୍ତି ।

ଇତିମଧ୍ୟରେ ସେ ଘରେ ପ୍ରବେଶ କରନ୍ତି ଶ୍ରୀମତୀ ପେଜ୍ ଏବଂ ଶ୍ରୀମତୀ ଫୋର୍ଡ ଶ୍ରୀମତୀ ଫୋର୍ଡ୍‌କୁ ଦେଖି ଫଲଷ୍ଟାଫ ତାଙ୍କୁ ଉଚ୍ଛ୍ୱାସପୂର୍ଣ୍ଣ ଭାବରେ ସ୍ୱାଗତ ଜଣାନ୍ତି । ଆବେଗ ପୂର୍ଣ୍ଣ କଣ୍ଠରେ କହନ୍ତି ଆପଣଙ୍କର ଦେଖା ପାଇଲି, ମୋର ଆଜି କେଡ଼େ ଭାଗ୍ୟ । ମୋର ଖୁସିକୁ ପ୍ରକାଶ କଲାଭଳି ଭାଷା ମୋ ପାଖରେ ନାହିଁ ।

ଜର୍ଜ ଅତିଥିମାନଙ୍କୁ ଆପ୍ୟାୟିତ କରିବା ପାଇଁ ଭିତରକୁ ନେଇଯିବା ପାଇଁ ଶ୍ରୀମତୀଙ୍କୁ କହନ୍ତି । ଇଭାନ୍ସ, ସାଲୋ ଏବଂ ସ୍ଲେଣ୍ଡାରଙ୍କୁ ଛାଡ଼ି ଅନ୍ୟମାନେ ଭିତରକୁ ଚାଲିଯାଆନ୍ତି । ସେତିକିବେଳେ ସେଠାକୁ ଆସେ ଜର୍ଜଙ୍କର ଝିଅ ଆନି । ଇଭାନ୍ସ ପ୍ରଭୃତିଙ୍କ ଆଡ଼େ ଅନାଇ କହେ- ଆପଣମାନେ ଭିତରକୁ ଆସୁ ନାହାନ୍ତି କାହିଁକି ? ବାପା ଆପଣମାନଙ୍କୁ ଅପେକ୍ଷା କରିଛନ୍ତି ।

ଆନିକୁ ଦେଖି ସାଲୋ ଚଞ୍ଚଳ ହୋଇ ଉଠନ୍ତି । ଆବେଗପୂର୍ଣ୍ଣ କଣ୍ଠରେ କହି ପକାନ୍ତି ତମକୁ ଦେଖି ହଠାତ୍ ପ୍ରଥମ ଯୌବନକୁ ଫେରିଯିବାକୁ ଇଚ୍ଛା ହେଉଛି । କିନ୍ତୁ ତା' କଣ ଆଉ ସମ୍ଭବ ? ଏହା ପରେ ତିନିଜଣଯାକ ଆନିକୁ ଅନୁସରଣ କରି ଘର ଭିତରକୁ ଯାଆନ୍ତି ।

ଫଲଷ୍ଟାଫ୍ ବାସ୍ତବବାଦୀ ମଣିଷ । ପ୍ରେମ ପ୍ରଣୟ, ଆବେଗ ଏସବୁ କଥା ତା' ମୁଣ୍ଡରେ ପଶେ ନାହିଁ । ଟଙ୍କା ହିଁ ଥିଲା ତା' ଜୀବନର ଏକମାତ୍ର କାମ୍ୟ । ଅର୍ଥ ପାଇଁ ପ୍ରେମିକ ବନିଯିବାରେ ତା'ର ତିଳେ ମାତ୍ର ଦ୍ୱିଧା ନ ଥିଲା । ମହିଳାମାନଙ୍କଠାରୁ କିଛି ପାଇବାକୁ ଥିଲେ ସେମାନଙ୍କ ସହିତ ପ୍ରେମଖେଳ ଆରମ୍ଭ କରିଦିଅ-ଅନାୟାସରେ କାମ ହୋଇଯିବ- ଫଲଷ୍ଟାଫ୍ ଥିଲା ଏହି ମତରେ ସମ୍ପୂର୍ଣ୍ଣ ବିଶ୍ୱାସୀ । ସେ ଏବେ ଶ୍ରୀମତୀ ଫୋର୍ଡ୍ ଆଉ ଶ୍ରୀମତୀ ପେଜଙ୍କୁ ପ୍ରେମପତ୍ର

ଲେଖିଛି । ସେମାନଙ୍କ ରୂପ ଆଉ ଗୁଣର ଅହେତୁକ ବର୍ଣ୍ଣନାରେ ଚିଠି ଦୁଇଖଣ୍ଡି ପୂର୍ଣ୍ଣ । ଦୁଇଟିଯାକର ବକ୍ତବ୍ୟ ଏକା । ଦୁଇଖଣ୍ଡି ଲଫାପାରେ ଚିଠି ଭରି ଅନୁଚର ହାତରେ ଦିଏ ଗୋପନରେ ଯଥାସ୍ଥାନରେ ପହଞ୍ଚାଇ ଦେବାକୁ । ଚିଠିର ବକ୍ତବ୍ୟ ଆଉ ପ୍ରକାଶଭଙ୍ଗୀ ଦୁଇଟିଯାକରେ ସେ ନିଜେ ମୁଗ୍ଧ । ମନେ ମନେ କହେ-ଶ୍ରୀମତୀ ଫୋର୍ଡ଼ଙ୍କୁ ପ୍ରେମର ଜାଲରେ ବାନ୍ଧିବାକୁ ହେବ । ତାଙ୍କୁ ଖୁସି କରିବାକୁ ଇତି ମଧ୍ୟରେ ଟୋପିଟିଏ ଚୋରି କରି ଉପହାର ଦେଇଛି ।'

ଫଲଷ୍ଟାଫ୍‌ର ଅନୁଚର ନାଇମ୍ କାନରେ ପ୍ରଭୁଙ୍କର ଏଇ ସ୍ୱଗତୋକ୍ତି ପଡ଼େ । ସେ ହସି ହସି ଘର ଭିତରକୁ ଆସି ତାଙ୍କୁ ପରିହାସପୂର୍ଣ୍ଣ ଦୃଷ୍ଟିରେ ଅନାଇ କହେ-କାମଟା ତ ବେଶ୍ ବାଗେଇ ଆଣିଲଣି ଦେଖୁଛି ।

ଯାହା ତମେ ଭାବିପାର । ମନେହେଉଛି ଶ୍ରୀମତୀ ଫୋର୍ଡ଼ ଏବେ ପୂରାପୂରି ମୋର ହାତମୁଠା ଭିତରକୁ ଆସି ଯାଇଛନ୍ତି । ପୁଣି ଶ୍ରୀମତୀ ପେଜ୍‌ଙ୍କର ଆକର୍ଷଣଟା ବି କମ୍ ନୁହେଁ । ସେ ଯେ ମୋ ପ୍ରତି ଆସକ୍ତ, ସେ କଥା ତାଙ୍କ ଚାହାଣିରୁ ଧରାପଡ଼ିଯାଉଛି । ପ୍ରେମର ଖେଳ ଖେଳୁ ଖେଳୁ ଦୁହିଁଙ୍କଠାରୁ ବେଶ୍ ମୋଟା ଅଙ୍କ ହାତେଇ ନେବି ।

ନାଇମ୍ ଆଉ ପିସ୍ତଲ-ଦୁହେଁ ପ୍ରକାଶ୍ୟରେ ଫଲଷ୍ଟାଫ୍‌ର କାର୍ଯ୍ୟକୁ ବିରୋଧ କରନ୍ତି ନାହିଁ । ତେବେ ସେମାନଙ୍କର ଗୋପନ ଇଚ୍ଛା କିନ୍ତୁ ଅନ୍ୟ ପ୍ରକାରର । ସେମାନେ ଫଲଷ୍ଟାଫ୍‌ର ଏଇ କୁପ୍ରବୃତ୍ତିର ସମ୍ବାଦଟି ଜର୍ଜଙ୍କ  କାନରେ ପକାଇ ଦେବେ ବୋଲି ସ୍ଥିର କରନ୍ତି ।

ଡଃ କେୟାସଙ୍କ ପରିଚାରିକା କୁଇକ୍ଲି ସହିତ ଆନିର ଯୋଗାଯୋଗ ଥାଏ । ଇଭାନ୍ସ ସ୍ଲେଣ୍ଡରର ପରିଚାରକକୁ କୁଇକ୍ଲି ପାଖକୁ ପଠାଇଥାନ୍ତି । ଉଦ୍ଦେଶ୍ୟ ସ୍ଲେଣ୍ଡର ସମ୍ପର୍କରେ ଆନିର ମନୋଭାବଟା କୁଇକ୍ଲିଠୁ ଜାଣିନେବାକୁ ହେବ ।

କୁଇକ୍ଲି ସବୁ କଥା ନୀରବରେ ଶୁଣିଯାଏ । ତା'ପରେ କୁହେ, ଇଭାନ୍ସଙ୍କୁ କୁହ, ମୁଁ ତାଙ୍କ କଥା ରଖିବାକୁ ଯଥାସାଧ୍ୟ ଚେଷ୍ଟା କରିବି ।

ଏଣେ  ଡଃ କେୟାସ, ଆନି ପାଇଁ ଏକପ୍ରକାର ପାଗଳ କହିଲେ ଚଳେ । ତେବେ ବିଡ଼ମ୍ବନା ଯେ, ଆନି ତାଙ୍କୁ ଆଦୌ ସହ୍ୟ କରିପାରେନା ।

ଆନି ଏହିଭଳି ରାଣୀ ମହୁମାଛି ସାଜି ବସିଥାଏ । ତାକୁ କେନ୍ଦ୍ର କରି ଗୁଞ୍ଜନ ସୃଷ୍ଟି କରି ଚାଲିଥାଆନ୍ତି ଯୁବଗୋଷ୍ଠୀ-ଏଭଳିକି ବୃଦ୍ଧମାନେ ମଧ୍ୟ । ଆନି ନିଜେ ସେମାନଙ୍କର ଖବର ରଖେ ନାହିଁ ।

ଫେନ୍‌ଟନ୍ ନାମକ ଜଣେ ଯୁବକ-ଏଇ ପ୍ରେମ ଚକ୍ରର ସଭ୍ୟ । ସେ ବି ଆନିର ଅନୁକମ୍ପା ପାଇବା ପାଇଁ କୁଇକ୍ଲିର ଦ୍ୱାରସ୍ଥ ହୋଇଛି । ଆନି ସହିତ ଆଳାପ କରାଇ ଦେବା ନିମନ୍ତେ

ତା'ର ହାତଗୋଡ଼ ଧରିଛି । କୁଇକ୍ଲି ମନ ଦେଇ ଫେନ୍‌ଟନ୍‌ର ଆକୃତି ଶୁଣେ ଏବଂ ଗମ୍ଭୀର ହୋଇ କହେ ଦେଖାଯାଉ ଆପଣଙ୍କ ପାଇଁ କିଛି କରିପାରୁଛି କି ନାହିଁ - ଯଥା ସମୟରେ ଫଲଷ୍ଟାଫ୍‌ର ପ୍ରେମ ପତ୍ରଟି ଶ୍ରୀମତୀ ପେଜ୍‌ଙ୍କର ହସ୍ତଗତ ହୁଏ । ଚିଠି ପଢ଼ି ସେ କ୍ରୋଧରେ କମ୍ପିବାରେ ଲାଗନ୍ତି । ଏତେ ବଡ଼ ଧୃଷ୍ଟତା । ସାମାନ୍ୟ ଟିକିଏ ସୌଜନ୍ୟ ଦେଖାଇ ଦୁଇପଦ କଥା କହିବାର ଏଇ ପରିଣାମ ! ଅସଭ୍ୟ ଜାନୁଆର ! ରାଗରେ ଏବଂ ଅପମାନରେ ଶ୍ରୀମତୀ ପେଜ୍ ଘରସାରା ପଦଚାରଣା କରିବାରେ ଲାଗନ୍ତି । ତାଙ୍କର ସବୁ ରାଗ ଯାଇ ପଡ଼େ ବିଚରା ପତ୍ରବାହକ ଉପରେ । ତାକୁ କହନ୍ତି - ତମର ମୁନିବକୁ କହିବ ପରସ୍ତ୍ରୀକୁ ଏଭଳି ଏକ ଅଶାଳୀନ ପତ୍ର ଲେଖିବାର ପୁରସ୍କାର ସେ ଅଚିରେ ପାଇବେ । ଟିକିଏ ହସିକରି କଥା କହିବାର ଅର୍ଥ ଯେ ପ୍ରେମ ନୁହେଁ, ତାହା ବୁଝିବେ ।

ସେତିକିବେଳେ ରାଗରେ କମ୍ପି କମ୍ପି ଶ୍ରୀମତୀ ଫୋର୍ଡ଼ ଆସି ସେଠାରେ ପହଞ୍ଚନ୍ତି । କ୍ରୋଧର କାରଣ ସେଇ ଚିଠି । ଫଲଷ୍ଟାଫ୍‌ର ଚିଠି ତାଙ୍କର ହସ୍ତଗତ ହେବା ପରେ ଏଇ ଅବସ୍ଥା ସୃଷ୍ଟି ହୋଇଛି । ଦୁଇ ଶ୍ରୀମତୀ ମିଶି ଅଭଦ୍ର ଲୋକଟାକୁ ଯଥେଷ୍ଟ ଗାଳି ଦିଅନ୍ତି । ସେଇ ସୁଯୋଗରେ ଫଲଷ୍ଟାଫ୍‌ର ଚାକର ବିଚରା ପଳାଇଯାଏ ।

ଶ୍ରୀମତୀ ପେଜ୍ କହନ୍ତି- ସେଇ ବଦମାସଟା ତାହା ହେଲେ ମୋ ଭଳି ତମକୁ ବି ଏମିତି ଅପମାନ ଦେଇଛି । ତାକୁ ଉଚିତ ଶିକ୍ଷା ଦେବା ଭଳି ଗୋଟାଏ ଫନ୍ଦି ବାହାର କର ।

ଶ୍ରୀମତୀ ଫୋର୍ଡ଼ କହନ୍ତି - ତାକୁ ଭଲ କରି ପାନେ ନ ଦେଲେ ତା'ର ସାହସ ବଢ଼ିଯିବ ।

ଶ୍ରୀମତୀ ପେଜ କହନ୍ତି - ମୋର ବିଶ୍ୱାସ; ଏମିତି ଚିଠି ଲୋକଟା ଆମଭଳି ଆହୁରି ଅନେକଙ୍କୁ ବି ଲେଖିଛି ।

ଶ୍ରୀମତୀ ଫୋର୍ଡ଼ ଉତ୍ତର ଦିଅନ୍ତି- ତା'ର ସଇତାନୀ ଦେଖ । ନାଆଁ ଜାଗାରେ ଦସ୍ତଖତ କରି ନାହିଁ । ଯଦି ଏ ଚିଠି ମୋ ସ୍ୱାମୀଙ୍କ ହାତରେ ପଡ଼ିଥାଆନ୍ତା ତେବେ କି କାଣ୍ଡ ହୋଇଥାଆନ୍ତା କହିଲ !

ମୁଁ ବି ତ ସେଇ କଥା ଭାବୁଛି । ଝରକା ଆଡ଼କୁ ଅନାଇ ଶ୍ରୀମତୀ ପେଜ୍ ଭୟରେ କମ୍ପି ଉଠନ୍ତି । ଚାପା କଣ୍ଠରେ କହନ୍ତି- ପୁଣି କ'ଣ ହେଲା କେଜାଣି । ମୋ ସ୍ୱାମୀ ଆଉ ତମ ସ୍ୱାମୀ ଦୁହେଁ ଏଇଆଡ଼େ ଆସୁଛନ୍ତି । ଆସ ଆମେ ଭିତର ଘରକୁ ଯିବା । ସେଇଠି ବସି ସଇତାନଟାକୁ ଶାସ୍ତି ଦେବା ଭଳି ଫନ୍ଦି ବାହାର କରିବା ।

ସେମାନେ ଚାଲିଯିବା ପରେ ଶ୍ରୀଯୁକ୍ତ ଫୋର୍ଡ଼ ଆଉ ଶ୍ରୀଯୁକ୍ତ ପେଜ୍ ସେଠାକୁ ଆସନ୍ତି । ତାଙ୍କ ପଛରେ ନାଇମ୍ ଆଉ ପିସ୍ତଲ ।

ପିସ୍ତଲ ଫୋର୍ଡ଼ଙ୍କୁ କହେ- ମୋ ମୁନିବ ଫଲଷ୍ଟାଫ୍ ଯେଉଁସବୁ କାଣ୍ଡ ଆରମ୍ଭ କରିଛନ୍ତି, ସେ କଥା ଆପଣମାନଙ୍କୁ କହିବାକୁ ମଧ ଲାଜ ଲାଗୁଛି । ଭଦ୍ରତାର ମୁଖା ପିନ୍ଧି ସେ ଯାଚ୍ଛାତାଇ କରିବାରେ ଲାଗିଛନ୍ତି । ଅଣ୍ଡାରୁ ଭେଣ୍ଡା ପର୍ଯ୍ୟନ୍ତ କାହାରିକୁ ସେ ଛାଡ଼ିବାକୁ ରାଜି ନୁହଁ । ପ୍ରେମ-ପତ୍ର ବଣ୍ଟା ଚାଲିଛି । ଆପଣ ନିଜ ସ୍ତ୍ରୀଙ୍କ ବିଷୟରେ ସତର୍କ ଥିବେ । ପାଣି ବହିଯିବା ପରେ ବନ୍ଧ ବାନ୍ଧିଲେ କ'ଣ ଲାଭ ?

ଫୋର୍ଡ଼ଙ୍କୁ ସାବଧାନ କରାଇ ପିସ୍ତଲ ସେଠାରୁ ଚାଲିଯାଏ ।

ଏଥର ନାଇମ୍ ପେଜ୍‌ଙ୍କ ପାଖକୁ ଲାଗିଆସେ । ତାଙ୍କ କାନ ପାଖକୁ ମୁହଁ ନେଇ ଫୁସ୍‌ଫୁସ୍ କଣ୍ଠରେ କହେ - ଫଲଷ୍ଟାଫ୍ ସମ୍ପର୍କରେ ଆପଣଙ୍କର ଧାରଣା କ'ଣ ତା' ମୋତେ ଜଣା ନାହିଁ । ଆପଣଙ୍କ ସ୍ତ୍ରୀଙ୍କ ନାମ ଶୁଣି ସେ ତ ପାଗଳ । ସୁଯୋଗ ପାଇ ଗଲେ ଗୋଟାଏ କିଛି ଘଟାଇ ବସିବ । ଯଦିଓ ସେ ମୋର ମୁନିବ, ତାଙ୍କର ଏଇ ଜଘନ୍ୟ ରୁଚିକୁ ମୁଁ ମୋଟେ ସମର୍ଥନ କରିପାରୁ ନାହିଁ । ସବୁକଥା କହିଗଲି । ସତର୍କ ରହିବେ ।

ଏତିକି କହି ନାଇମ୍ ବିଦାୟ ନେଇ ଚାଲିଯାଏ ।

ଫୋର୍ଡ଼ ଆଉ ପେଜ୍ ଫଲଷ୍ଟାଫ୍‌କୁ ଶାସ୍ତି ଦେବାର ଫନ୍ଦି ବାହାର କରିବାରେ ଲାଗି ପଡ଼ନ୍ତି । ଫୋର୍ଡ଼ କହନ୍ତି- ଏବେ ସେ ବଦମାସଟା କେଉଁଠି ଥିବ ଜାଣନ୍ତି ?

ମୋ ଜାଣିବାରେ ଲୋକଟା ଗାର୍ଟରଙ୍କ ସରାଇଖାନାରେ ରହେ । ମୋ ସ୍ତ୍ରୀ ଉପରେ ଯଦି ବଜ୍ଜାତ୍ ଲୋକଟା ଆଖି ପକାଏ, ତେବେ ତା'ର ପରାଭବ ସେ ପାଇବ । ପେଜ୍ ଏତିକି କହି ହସନ୍ତି ।

ଫୋର୍ଡ଼ କହନ୍ତି - 'ଦେଖନ୍ତୁ ଆଜ୍ଞା ! ମୋ ସ୍ତ୍ରୀକୁ ନେଇ ମୁଁ ଏ ବ୍ୟାପାରରେ ଆଦୌ ଚିନ୍ତିତ ନୁହଁ । ସେ ସତୀ ସାଧ୍ୱୀ ନାରୀ । ତେବେ ସେଇ ଜାନୁଆରଟା ମୋ ସ୍ତ୍ରୀକୁ ହଇରାଣ କରୁ ଏକଥା ମୁଁ ଚାହେଁନା । ଅନ୍ୟ ଉପାୟରେ ମୁଁ ତାକୁ ଶାସ୍ତି ଦେବି ।'

ଫଲଷ୍ଟାଫ୍ ଗାର୍ଟରଙ୍କ ସରାଇଖାନାରେ ଆରାମରେ ବସିଥାଏ । ଡଃ କେୟାସଙ୍କ ପରିଚାରିକା କୁଇକ୍ଲି ସେଠାକୁ ଆସି କହେ- 'ଆପଣଙ୍କ ଚିଠି ପାଇ ଶ୍ରୀମତୀ ଫୋର୍ଡ଼ ବହୁତ ଖୁସି । ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ବି ଜଣାଇଛନ୍ତି ।'

ଫଲଷ୍ଟାଫ୍ ଏକଥା ଶୁଣି ବେଜାଏ ଖୁସି ।

କୁଇକ୍ଲି ଚାପା କଣ୍ଠରେ କହେ- ଆଜି ରାତି ଦଶଟାରୁ ଏଗାରଟା ଯାଏ ତାଙ୍କ ସ୍ୱାମୀ ଘରେ ରହିବେ ନାହିଁ । ଏଇ ବିଶେଷ ଖବରଟା ଆପଣଙ୍କୁ ଜଣାଇବାକୁ ସେ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି ।

କୁଇକ୍ଲିର କଥା ଶୁଣି ଫଲଷ୍ଟାଫ୍ ଆନନ୍ଦରେ ଆତ୍ମହରା ହୋଇଯାଏ । -ତା' ହେଲେ ରାତି ଦଶଟାରୁ ଏଗାରଟା ? ଏଇଆ କହିଲ ତ ? ସେ ପ୍ରଶ୍ନ କରେ ।

ମିଠା ହସ ହସି କୁଇକ୍ଲି କହେ-'ହଁ, ସେଇ ସମୟରେ ଆପଣ ଯାଇ ତାଙ୍କୁ ଦେଖା କରିପାରନ୍ତି । ଭଦ୍ରମହିଳା ଦୁଃଖରେ ଅଛନ୍ତି । ସ୍ୱାମୀ ଭଦ୍ରଲୋକଟି ଖୁବ୍ ସହଜ ଲୋକ ନୁହଁ । ବୁଡ଼ି ବୁଡ଼ି ପାଣି ପିଅନ୍ତି । ଖୁବ୍ ବଦମିଜାଜୀ ବି । ପ୍ରେମ, ଭଲ ପାଇବା ଏସବୁ ବିଷୟରେ ଏକେବାରେ ବୁଦ୍ଧୁ ।'

ସହାନୁଭୂତିରେ ଫଲଷ୍ଟାଫ୍‌ର ମନଟା କୋମଳ ହୋଇଯାଏ । କହେ- 'ଠିକ୍ ଅଛି । ରାତି ଦଶଟାରେ ମୁଁ ତାଙ୍କ ପାଖକୁ ଯିବି । ଦେଖେ, ଯଦି କିଛି ସାନ୍ତ୍ୱନା ଦେଇପାରେ । '

କୁଇକ୍ଲି ଆହୁରି କହେ - 'ଆପଣଙ୍କୁ ଆଉ ଗୋଟାଏ କଥା କହି ରଖୁଛି । ଶ୍ରୀମତୀ ପେଜ୍‌ଙ୍କ ଅବସ୍ଥା ମଧ୍ୟ ଶ୍ରୀମତୀ ଫୋର୍ଡ୍‌ଙ୍କ ଭଳି । ଆପଣଙ୍କ ପ୍ରେମରେ ସେ ପାଗଳ କିନ୍ତୁ ତାଙ୍କ ସ୍ୱାମୀ ଘର ଛାଡ଼ି କେବେ କୁଆଡ଼େ ଯାଆନ୍ତି ନାହିଁ । ତେଣୁ ସେ ସୁଯୋଗର ଅପେକ୍ଷାରେ ଅଛନ୍ତି । ଠିକ୍ ସମୟରେ ଆପଣଙ୍କୁ ଖବର ଦେବେ ।'

ଫଲଷ୍ଟାଫ୍ ମହା ଖୁସି । ଦୁହିଁଙ୍କୁ ଧନ୍ୟବାଦ ଜଣାଇବାକୁ କୁଇକ୍ଲିକୁ କହନ୍ତି । ଫଲଷ୍ଟାଫ୍ ଆଉ କୁଇକ୍ଲିଙ୍କ ଭିତରେ ଯେତେବେଳେ ଏଇସବୁ କଥାବାର୍ତ୍ତା ଚାଲିଥାଏ, ସେତେବେଳେ ଫୋର୍ଡ଼ ଛଦ୍ମବେଶରେ ସେଠାରେ ପହଞ୍ଚିଯାଆନ୍ତି । କହନ୍ତି ତାଙ୍କ ନାମ ବ୍ରୁକ୍ । ତାଙ୍କ ଆଡ଼େ ମନ ଦେବା ଭଳି ଅବସର ସେତେବେଳେ ଫଲଷ୍ଟାଫ୍‌ର ନ ଥାଏ । ସେ ନିଜ ଚିନ୍ତାରେ ମଗ୍ନ ଥାଏ । ତେଣୁ ବିରକ୍ତ ହୋଇ କହେ- 'ତମର ଦରକାରଟା କ'ଣ କହ ।'

ବେଶ୍ ବସେଇ ବସେଇ ସେଇ ଛଦ୍ମବେଶଧାରୀ କହନ୍ତି- ଆପଣଙ୍କର ସହୃଦୟତାର କଥା ଅନେକ ଶୁଣିଛି । ଏବେ ମୁଁ ମୋର ଟଙ୍କା ଥଳିଟିକୁ ନିରାପଦରେ ରଖିବା ଭଳି ଗୋଟାଏ ଜାଗା ପାଉ ନାହିଁ । ସେଇଥିପାଇଁ ଆପଣଙ୍କ ସାହାଯ୍ୟ ଲୋଡ଼ି ଏଠାକୁ ଆସିଛି । ଆପଣ ଯଦି ଅନୁଗ୍ରହ କରି ଏଇ ଟଙ୍କା ଥଳିଟି କିଛିଦିନ ପାଇଁ ଆପଣଙ୍କ ହେପାଜତରେ ରଖନ୍ତେ ତେବେ ମୁଁ ନିଶ୍ଚିତ ହୁଅନ୍ତି ।  ଆଉ ଗୋଟାଏ କଥା । ଏଇ ଇଲାକାରେ ଫୋର୍ଡ଼ ବୋଲି ଜଣେ ଭଦ୍ରଲୋକ ଅଛନ୍ତି । ତାଙ୍କ ସ୍ତ୍ରୀ ସହିତ ମୋର ବେଶ୍ ହୃଦ୍ୟତା ଅଛି । ତା'ର ମନ ପାଇବା ପାଇଁ ମୁଁ ବହୁ ମୂଲ୍ୟବାନ୍ ଉପହାର କିଣି ଅନେକ ଟଙ୍କା ନଷ୍ଟ କରିଛି । ପ୍ରତିଦାନରେ ପାଇଛି ତା' ମୁହଁର ମିଠା ହସରୁ ଟିକିଏ । ଉପହାର ନେଲାବେଳେ 'ମୁଁ ଏକାନ୍ତ ଭାବେ ତୁମର' ଏଇ ସ୍ତୁତିବାକ୍ୟ ଶୁଣାଇଲେ ବି ମୋର ଦୃଢ଼ ବିଶ୍ୱାସ ସେଇ ଦୁଷ୍ଟାନାରୀ ନିଶ୍ଚୟ ଅନ୍ୟ କାହାପ୍ରତି ଆକୃଷ୍ଟ । ଯଦି ଆପଣ ତା'ର ସେଇ ନୂତନ ପ୍ରେମିକ ଆଡ଼ୁ ତା' ମନ ଫେରାଇ ଆଣିପାରନ୍ତି, ତେବେ ଏ ଟଙ୍କାପଇସା ସବୁ ଆପଣଙ୍କର । ସେଥିପାଇଁ ତା ସହିତ ଆପଣଙ୍କୁ ପ୍ରେମର ଅଭିନୟ କରିବାକୁ ପଡ଼ିପାରେ ।

ଫଲଷ୍ଟାଫ୍ ଚାରିଆଡ଼େ ଥରେ ସତର୍କ ଦୃଷ୍ଟି ବୁଲାଇ ନେଇ କହେ-ଆପଣଙ୍କ କାମ ମୁଁ ଖୁବ୍ ଭଲ ଭାବରେ କରିଦେବି । ଆପଣ କିନ୍ତୁ ଏସବୁ କଥା ଭୁଲ୍‌ରେ ସୁଦ୍ଧା ଆଉ କାହାକୁ କହିବେ ନାହିଁ । ମୁଁ ବିଶ୍ୱସ୍ତ ସୂତ୍ରରୁ ଖବର ପାଇଛି ଯେ ଆଜି ରାତି ଦଶଟାରୁ ଏଗାରଟା ଭିତରେ ତାଙ୍କର ସ୍ୱାମୀ ଘରୁ ଅନୁପସ୍ଥିତ ରହିବେ । ସେଇ ସମୟରେ ମୁଁ ତାଙ୍କ ସହିତ ଦେଖା କରିବି । ଆପଣ ସେତିକିବେଳେ ପହଞ୍ଚିଗଲେ ସବୁ କଥା ପରିଷ୍କାର ହୋଇଯିବ ।

ଖବର ଶୁଣି ଫୋର୍ଡ଼ ଉତ୍ତେଜିତ ହୋଇ ଉଠିଲେ ମଧ୍ୟ ବାହାରେ କିଛି ପ୍ରକାଶ କରନ୍ତି ନାହିଁ । ଭାବନ୍ତି ସମୟଟା ତ ଜଣାପଡ଼ିଲା । ସେତେବେଳେ ଏଇ ବଦମାସ୍‌ଟାକୁ ଠିକ୍ ଜାଗାରେ ଧରାଯାଇପାରିବ ।

ଫାଦର ହ୍ୟୁ ଆଉ ଡଃ କେୟାସ୍‌ଙ୍କ ଭିତରେ ଲଢ଼େଇ ହେବାର କଥା ଥିଲା ଉଇଣ୍ଡସର ପଡ଼ିଆରେ । ସମୟ ଉତ୍ତୀର୍ଣ୍ଣ ହୋଇଯାଏ, କିନ୍ତୁ ହ୍ୟୁଙ୍କର ଦେଖା ମିଳେ ନାହିଁ । ଦର୍ଶକମଣ୍ଡଳୀ ଆଉ ନିଜେ ଡଃ କେୟାସ୍‌ଏଥିପାଇଁ ବିରକ୍ତ ହୋଇଯାଆନ୍ତି । ସ୍ଲେଣ୍ଡର, ସାଲୋ ଏବଂ ଗାର୍ଟର ପ୍ରଭୃତି ଯେତେବେଳେ ନିରାଶ ହୋଇ ଫେରିଯାଉଥିଲେ, ସେତିକିବେଳେ ଡଃ କେୟାସ୍‌ଙ୍କ ସହିତ ଏମାନଙ୍କର ଦେଖା ହୋଇଯାଏ, ତାଙ୍କ ମନ ଭଲ ନ ଥାଏ ।

ପ୍ରସଙ୍ଗକ୍ରମେ ସେମାନେ କହନ୍ତି, ପେଜ୍‌ଙ୍କ ଝିଅ ଆନି ହ୍ୟୁଙ୍କ ସହିତ ଭୋଜି ଖାଇବାର ସେମାନେ ଦେଖିଛନ୍ତି । ଶୁଣିବାମାତ୍ରେ ପେଜ୍ ହ୍ୟୁକୁ ଯଥେଷ୍ଟ ଶାସ୍ତି ଦେଇ ଝିଅକୁ ତା' କବଳରୁ ଉଦ୍ଧାର କରିବା ପାଇଁ ଛୁଟିଯାଆନ୍ତି ।

ଶ୍ରୀମତୀ ପେଜ୍ ଲମ୍ବା ଲମ୍ବା ପାହୁଣ୍ଡ ପକାଇ କୁଆଡ଼େ ଚାଲିଥାଆନ୍ତି । ରାସ୍ତାରେ ତାଙ୍କର ଫୋର୍ଡ଼ଙ୍କ ସହିତ ଦେଖା ହୋଇଯାଏ ।

ଫୋର୍ଡ଼ ପଚାରନ୍ତି- ଏତେ ବ୍ୟସ୍ତ ହୋଇ କୁଆଡ଼େ ବାହାରିଛନ୍ତି ?

ଶ୍ରୀମତୀ ପେଜ୍ କହନ୍ତି- 'ଗୋଟାଏ ଜରୁରୀ କାମରେ ଆପଣଙ୍କ ସ୍ତ୍ରୀଙ୍କ ପାଖକୁ ଯାଉଛି । ଟିକିଏ ତରତରରେ ଅଛି । ପରେ କଥା ହେବା' ।

ଫୋର୍ଡ଼ ଏଥିରୁ କିଛି ଅନୁମାନ କରିନିଅନ୍ତି । ସ୍ତ୍ରୀ ଆଉ ତା'ର ବାନ୍ଧବୀ, ଏଇ ନାରୀ ଦୁହେଁ ପ୍ରେମରେ ଏକେବାରେ ମସଗୁଲ୍ ହୋଇ ଉଠିଛନ୍ତି । ଆଜି ଏହାର ଗୋଟାଏ ଫଇସଲା ହୋଇଯିବ । ସେ ମନେ ମନେ ସ୍ଥିର କରି ନିଅନ୍ତି ।

ଏତିକିବେଳେ ସାଲୋ, ସ୍ଲେଣ୍ଡର, ପେଜ୍, ଗାର୍ଟର ଆଉ କେୟାସଙ୍କ ସହିତ ତାଙ୍କର ଦେଖା ହୋଇଯାଏ । ଏକା ସାଙ୍ଗରେ ଏମାନଙ୍କୁ ଦେଖି ତାଙ୍କର ଯେମିତି ବଳ ଆସିଯାଏ । ସେ କହନ୍ତି- ଆପଣମାନଙ୍କ ସାଙ୍ଗରେ ଦେଖା ହୋଇ ଭଲ ହେଲା । ମୋ ସାଙ୍ଗରେ ଚାଲନ୍ତୁ ଗୋଟାଏ ବଢ଼ିଆ ଖେଳ ଦେଖାଇବି ।

ସ୍ଲେଣ୍ଡାର କହେ-ଇଚ୍ଛା ଥିଲେ ବି ଆପଣଙ୍କର ଅନୁରୋଧ ରଖି ହେଉ ନାହିଁ । ଆଜି ଆନି ସହିତ ଡିନର ଖାଇବାର ଯୋଜନା ରହିଛି ।

ସ୍ଲେଣ୍ଡର କଥା ଶୁଣି କେୟାସ୍ ମନେ ମନେ କହନ୍ତି-ଏ କେମିତି ହେଲା ? କୁଇକ୍ଲି ତ କହିଗଲା, ଆନି ମୋତେ ହିଁ ଭଲପାଏ ବୋଲି ।

ସ୍ଲେଣ୍ଡରକୁ ଛାଡ଼ି ଅନ୍ୟ ସମସ୍ତେ ଫୋର୍ଡ଼ଙ୍କ ସହିତ ମଜା ଦେଖିବାକୁ ଚାଲନ୍ତି ।

ଶ୍ରୀମତୀ ଫୋର୍ଡ଼ଙ୍କ ବୈଠକଖାନାରେ ପହଞ୍ଚି ଯାଆନ୍ତି ଶ୍ରୀମତୀ ପେଜ୍ । ଦୁହିଁଙ୍କର କିଛି ସମୟ ଧରି କଥାବାର୍ତ୍ତା ଚାଲେ । ଶେଷକୁ ଶ୍ରୀମତୀ ଫୋର୍ଡ଼ ଘର ଭିତରକୁ ଚାଲିଯାଆନ୍ତି । ଦୁଆରର ଗୋଟାଏ ପାଖରେ ବଡ଼ ଝୁଡ଼ିଟିଏ ରଖାଯାଇଥାଏ । ସେ ପରିଚାରକମାନଙ୍କୁ ଡାକି କହନ୍ତି, ଶୁଣ, ଟିକିଏ ପରେ ମୁଁ ତମମାନଙ୍କୁ ଡାକିବି । ତମେମାନେ ମୋ ଡାକ ଶୁଣି ଏଇ ଝୁଡ଼ିଟାକୁ ଉଠାଇ ନଦୀ କୂଳକୁ ନେଇଯିବ, ଆଉ ସେଠି କାଦୁଅରେ ଫୋପାଡ଼ି ଦେଇ ଚାଲିଆସିବ, ବୁଝିଲ ତ ?

ସେମାନେ ରାଜି ହୋଇ ଚାଲିଯାଆନ୍ତି । ଶ୍ରୀମତୀ ଫୋର୍ଡ଼ ଫେରିଆସି ପୁଣି ବନ୍ଧୁଙ୍କ ସହିତ ଗପସପରେ ମଜି ଯାଆନ୍ତି । ଦୁଇ ଜଣଙ୍କର କଥା ଭିତରେ ଫଲଷ୍ଟାଫ୍‌ର ପରିଚାରକ ରବିନ୍ ଆସି ମୁହଁ ଦେଖାଏ । କହେ-ମୋର ମୁନିବ ଫଲଷ୍ଟାଫ୍ ଆସିଛନ୍ତି । ଶ୍ରୀମତୀ ପେଜ୍‌ଙ୍କୁ ସେଠାରେ ଦେଖି ରବିନ୍ କହେ- ଯାହା ହେଉ, ଆପଣ ବି ଏଇଠି ଉପସ୍ଥିତ ଅଛନ୍ତି । ଖୁସିର କଥା ।

ଶ୍ରୀମତୀ ପେଜ୍ କହନ୍ତି - ଆରେ ବାବୁ ଶୁଣ । ଏ ଖୁସିର ଖବରଟା ତୋର ମୁନିବ ଯେମିତି ନ ଜାଣନ୍ତି । ମୁଁ ଅନ୍ୟ ଘରେ ଯାଇ ବସୁଛି । ମୋ କଥା ତାଙ୍କୁ କହିବା ଦରକାର ନାହିଁ । ଶ୍ରୀମତୀ ପେଜ୍ ପାଖ ଘରକୁ ଚାଲିଯାଆନ୍ତି । ଶ୍ରୀମତୀ ଫୋର୍ଡ଼ ରବିନ୍‌କୁ କହନ୍ତି, ଏ କ'ଣ, ତୁ ଏପର୍ଯ୍ୟନ୍ତ ଏଠି ଠିଆ ହୋଇଛୁ ? ଭଦ୍ରଲୋକ ବାହାରେ ଅପେକ୍ଷା କରିଛନ୍ତି । ତୁ ପ୍ରଥମେ ତାଙ୍କୁ ଭିତରକୁ ଡାକିଆଣ ।

ରବିନ୍ ଦୌଡ଼ିଯାଇ ଫଲଷ୍ଟାଫ୍‌କୁ ଡାକି ଆଣେ । ଗୁଣୁଗୁଣୁ ହୋଇ ଗୀତଟିଏ ଗାଉ ଗାଉ ଫଲଷ୍ଟାଫ୍ ଭିତରକୁ ଆସେ । ଆବେଗପୂର୍ଣ୍ଣ କଣ୍ଠରେ କହେ - ଏଭଳି ନିର୍ଜନତାରେ ତମ ସହିତ ଯେ ଦେଖା ହେବ, ତା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଖୁସିରେ ମୁଁ ପାଗଳ ହୋଇଯିବି ।

ଶ୍ରୀମତୀ ଫୋର୍ଡ଼ଙ୍କର ସଂକ୍ଷିପ୍ତ ଉତ୍ତର- ସତରେ ତମର ସବୁକିଛି ସୁନ୍ଦର ।

ଆନନ୍ଦରେ ଆତ୍ମହରା ହୋଇ ଫଲଷ୍ଟାଫ୍ କହେ- ପ୍ରିୟେ ତମରି ପାଇଁ ଏ ଜୀବନ ରହିଛି । ମୁଁ ଜାଣେ, ଆମ ମିଳନର ପ୍ରତିବନ୍ଧକ ହେଉଛନ୍ତି ତମର ସ୍ୱାମୀ । ଏଇ କଣ୍ଟାଟାକୁ ଫୋପାଡ଼ି ଦେଇପାରିଲେ ଆମର ମିଳନ ହେବ ନିଷ୍କଣ୍ଟକ ।

ଶ୍ରୀମତୀ ଫୋର୍ଡ଼ କହନ୍ତି - ମୁଁ ଅତି ସାଧାରଣ ନାରୀ । ଆପଣଙ୍କର ଏଇ ପ୍ରେମ ପାଇବା ଭଳି ଯୋଗ୍ୟତା କ'ଣ ମୋର ଅଛି ?

ଫଲଷ୍ଟାଫ୍ କହେ- ଏ ତମେ କ'ଣ କହୁଚ ! ତମେ କ'ଣ କେବେ ଦର୍ପଣରେ ନିଜକୁ ଦେଖ ନାହିଁ ? ରାଜଉଆସରେ ସୁଦ୍ଧା ଏଭଳି ରୂପ ଥିବ କି ନାହିଁ ।

- ମୋ ମୁଣ୍ଡରେ ଅନ୍ୟ ଚିନ୍ତା ରହିଛି । ଶ୍ରୀମତୀ ଫୋର୍ଡ଼ କହନ୍ତି ।

- କେଉଁ କଥା ? କ'ଣ ତମକୁ ବିବ୍ରତ କରୁଛି ? ବ୍ୟସ୍ତ ହୋଇ ଫଲଷ୍ଟାଫ୍ ପଚାରେ

- ମୁଁ ଭାବୁଥିଲି ଶ୍ରୀମତୀ ପେଜ୍‌ଙ୍କ କଥା ।

- କାହିଁକି ? ଫଲଷ୍ଟାଫ୍‌ର ଉତ୍କଣ୍ଠିତ ପ୍ରଶ୍ନ ।

- କାହିଁକିନା ମୁଁ ବୁଝିପାରିଛି, ତମେ ମୋ ଅପେକ୍ଷା ଶ୍ରୀମତୀ ପେଜ୍‌କୁ ଯଥେଷ୍ଟ ଅଧିକ ଭଲ ପାଅ - ଶ୍ରୀମତୀ ଫୋର୍ଡ଼ ଦୃଢ଼ଭାବରେ କହନ୍ତି ।

- କାହା ସହିତ କାହାର ତୁଳନା । ତମ ରୂପର ଦୀପ୍ତି ନିକଟରେ ପେଜ୍‌ର ଛବି ନିହାତି ଫିକା । ତମ ଭଳି ସୁନ୍ଦରୀ ଅନ୍ତତଃ ଏପର୍ଯ୍ୟନ୍ତ ମୋ ଆଖିରେ ପଡ଼ି ନାହାନ୍ତି । ଅତୀତରେ ଲୋକେ ମୋତେ ମୋ ଚରିତ୍ର ନିମନ୍ତେ ଦୋଷୀ କରିଛନ୍ତି । ତେବେ ଏଣିକି କେହି ସେ କଥା କହିପାରିବେ ନାହିଁ । ଫଲଷ୍ଟାଫ୍ କହିଯାଏ ।

ଠିକ୍ ସେଇ ସମୟରେ ଦରଜା ପାଖରେ ଉଦୟ ହୁଏ ଭୃତ୍ୟ ରବିନ୍ । ଶ୍ରୀମତୀ ଫୋର୍ଡ଼ ତାକୁ ପଚାରନ୍ତି- କିଛି କହିବ ?

ସେ ବିନୀତ ଭାବରେ ଜଣାଏ -ବାହାରେ ଶ୍ରୀମତୀ ପେଜ୍ ଅପେକ୍ଷା କରିଛନ୍ତି । ତାଙ୍କୁ ଭିତରକୁ ଆସିବାକୁ କହିବି ?

- ଫଲଷ୍ଟାଫ୍ ଯେ ଏଠି ଅଛନ୍ତି ସେ କଥା ତାଙ୍କୁ କହି ନାହୁଁ ତ ? ଶ୍ରୀମତୀ ଫୋର୍ଡ଼ କୃତ୍ରିମ ଉତ୍କଣ୍ଠା ପ୍ରକାଶ କରନ୍ତି ।

- ନା-ନା, ତାଙ୍କୁ କିଛି କହି ନାହଁ । ରବିନ୍ ଜବାବ ଦିଏ । ଏଇ ଅବସ୍ଥାରେ କ'ଣ କରିବା ଉଚିତ ଠିକ୍ କରି ନ ପାରି ଫଲଷ୍ଟାଫ୍ ଘରସାରା ବୁଲିବାରେ ଲାଗେ । ତା'ପରେ ଦୌଡ଼ିଯାଇ ପର୍ଦ୍ଦା ପଛପଟେ ଆତ୍ମଗୋପନ କରେ ।

ଘରେ ପାଦ ଦେଇ ଶ୍ରୀମତୀ ପେଜ୍ ବେଶ୍ ଉଚ୍ଚକଣ୍ଠରେ କହିଚାଲନ୍ତି —ଶ୍ରୀମତୀ ଫୋର୍ଡ଼, ମୋର ମନେ ହେଉଛି ଗୋଟାଏ ଲଜ୍ଜାଜନକ ଘଟଣା ଘଟିବାକୁ ଯାଉଛି । ତମର ସ୍ୱାମୀ ଉଇଣ୍ଡସରର୍ କେତେକ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ନେଇ ଏଇଆଡ଼େ ଆସୁଛନ୍ତି ।

ଶ୍ରୀମତୀ ଫୋର୍ଡ଼ ଏହାର କାରଣ ଜାଣିବାକୁ ଚାହାନ୍ତି ।

ଶ୍ରୀମତୀ ପେଜ୍ ଉତ୍ତର ଦିଅନ୍ତି — 'କଥାଟା ତ ମୁଁ ବି ଜାଣି ନାହିଁ । ତେବେ ସେମାନଙ୍କ ପାଖ ଦେଇ ଆସିଲାବେଳେ ଏତିକି ଶୁଣିପାରିଲି ଯେ କୌଣସି ଏକ ବିଶେଷ ଲୋକର ଉପସ୍ଥିତିର ସମ୍ବାଦ ପାଇ ସେମାନେ ତାକୁ ଖୋଜିବାକୁ ଏ ଘରକୁ ଆସୁଛନ୍ତି ।'

- ଏ କଥା ସତ ଯେ, ମୋର ଜଣେ ବିଶିଷ୍ଟ ବନ୍ଧୁ ଏଠି ଅଛନ୍ତି । ଏବେ ଘରର ଇଜ୍ଜତ ବଞ୍ଚାଇବା ପାଇଁ ତମେ ବୁଦ୍ଧି କରି ମୋର ସେଇ ବନ୍ଧୁଙ୍କୁ ରକ୍ଷା କର । ଶ୍ରୀମତୀ ଫୋର୍ଡ଼ ବିବ୍ରତ ସ୍ୱରରେ କହନ୍ତି ।

ଶ୍ରୀମତୀ ପେଜ୍ କହନ୍ତି — 'ସେଠି ଯେଉଁ ବଡ଼ ଝୁଡ଼ିଟା ଦେଖାଯାଉଛି, ତମ ବନ୍ଧୁଙ୍କୁ ତା' ଭିତରେ ଢୁକାଇ ଉପରେ ମଇଳା ଲୁଗାପଟା ଢାଙ୍କିଦିଅ ।'

ଶ୍ରୀମତୀ ଫୋର୍ଡ଼ କହନ୍ତି- ତା'ପରେ ? ତା' ପରେ କ'ଣ କରିବାକୁ ହେବ ? ଶୀଘ୍ର କହ, ସେମାନେ ଆସିଯାଇପାରନ୍ତି ।

''- ତା' ପରେ ତମର ଚାକରମାନଙ୍କୁ କହ, ସେମାନେ ଝୁଡ଼ିଟାକୁ ନେଇ ବାହାରେ କୋଉଠି ଥୋଇ ଦେଇ ଆସନ୍ତୁ । ତା' ଭିତରେ ମଣିଷ ଥିବାର କେହି ସନ୍ଦେହ କରିପାରିବେ ନାହିଁ -'' ଶ୍ରୀମତୀ ପେଜ୍ ବନ୍ଧୁଙ୍କୁ ସାନ୍ତ୍ୱନା ଦିଅନ୍ତି ।

- ମୋର ବନ୍ଧୁଟି ଟିକିଏ ମୋଟାସୋଟା -ଏ ଝୁଡ଼ିଟା ଭିତରେ ପଶିପାରିବେ କି ନାହିଁ କେଜାଣି । ଶ୍ରୀମତୀ ଫୋର୍ଡ଼ ଅସହାୟ ଭାବରେ କହନ୍ତି ।

କହିବା ବାହୁଲ୍ୟ, ଏସବୁ କଥା ଫଲଷ୍ଟାଫ୍‌ର କାନରେ ପଡ଼େ । ସେ ଆଉ ବିଳମ୍ବ ନ କରି ପର୍ଦ୍ଦା ପଛରୁ ବାହାରି ଆସି କହେ -ହଁ ହଁ ପାରିବି -ଝୁଡ଼ି ଭିତରେ ଯେତେ କଷ୍ଟ ହେଲେ ବି ପଶିପାରିବି । ମାନସମ୍ମାନ ଆଉ ମାଡ଼ ହାତରୁ ରକ୍ଷା ପାଇବା ପାଇଁ ମୋତେ ସବୁ ସହିବାକୁ ପଡ଼ିବ ।

ଫଲଷ୍ଟାଫ୍‌କୁ ସେଠାରେ ଦେଖି ଶ୍ରୀମତୀ ପେଜ୍ ଚମକି ପଡ଼ିବାର ଛଳନା କରନ୍ତି । କହନ୍ତି- ଏ କ'ଣ ? ଆପଣ ଏଠି ! କି ଲଜ୍ଜାର କଥା !

ଫଲଷ୍ଟାଫ୍ ଅସ୍ଫୁଟ ସ୍ୱରରେ କ'ଣ କହୁ କହୁ ଶ୍ରୀମତୀ ପେଜ୍‌କୁ ଗୋଟିଏ ପାଖକୁ ନେଇଯାଏ । ତା' ପରେ ତାଙ୍କ କାନ ପାଖକୁ ମୁହଁ ନେଇ ଚାପା କଣ୍ଠରେ କହେ — ଶ୍ରୀମତୀ ଫୋର୍ଡ଼ଙ୍କ ସହିତ ମୋର ସମ୍ପର୍କକୁ ସତ ବୋଲି ଧରି ନେବ ନାହିଁ । ଏ କେବଳ ଏକ ଅଭିନୟ । ପ୍ରକୃତରେ ମୁଁ ତମକୁ ହିଁ ଭଲ ପାଏ ।

ଶ୍ରୀମତୀ ପେଜ୍ କହନ୍ତି- ସେ କଥା ପାଟିରେ ନ କହିଲେ ମଧ ମୁଁ ବୁଝିପାରେ । ତମେ ପ୍ରଥମେ ନିଜର ନିରାପତ୍ତା ବିଷୟରେ ଭାବ ।

ଫଲଷ୍ଟାଫ୍ ଆଉ ବିଳମ୍ବକରି କୌଣସିମତେ ଝୁଡ଼ି ଭିତରକୁ ପଶିଯାଏ । ଶ୍ରୀମତୀ ଫୋର୍ଡ଼ ମଇଳା ଲୁଗାପଟା ଆଣି ତା ଉପରେ ଲଦି ଦେଲେ । ପରିଚାରକମାନଙ୍କୁ ଡାକିବାରୁ ସେମାନେ ବହୁ କଷ୍ଟରେ ଭାରି ଝୁଡ଼ିଟାକୁ ବୋହି ବାହାର ଆଡ଼କୁ ଚାଲିଲେ । ଠିକ୍ ସେଇ ସମୟରେ ସାଙ୍ଗରେ କିଛି ଲୋକ ନେଇ ଫୋର୍ଡ଼ ଘର ଭିତରକୁ ପଶିଆସନ୍ତି ।

ଚାକରମାନଙ୍କ ସହିତ ତାଙ୍କର ଫାଟକ ପାଖରେ ଦେଖାହୁଏ। ସେ ପଚାରନ୍ତି- ସମସ୍ତେ ମିଶି ବାହାରିଚ କୁଆଡ଼େ ? ଆଉ ଏ ଝୁଡ଼ିରେ କ'ଣ ଅଛି ?

କଥାଟା ଅଡୁଆ ହୋଇଯାଇପାରେ ଭାବି ଶ୍ରୀମତୀ ଫୋର୍ଡ଼ କହନ୍ତି -ଏତେ ସବୁ କଥା ଜାଣିବା ତମର କି ଦରକାର ? ମଇଳା ଲୁଗାପଟା ଧୋବା ଘରକୁ ପଠାଉଛି । ବାଟ ଛାଡ଼, ସେମାନଙ୍କର ଡେରି ହେଉଛି ।

ଫୋର୍ଡ଼ ଘୁଞ୍ଚିଯିବାରୁ ଚାକରମାନେ ଝୁଡ଼ି ନେଇ ଚାଲିଯାଆନ୍ତି। ଫୋର୍ଡ଼ ବି ସଦଳବଳେ ଘର ଭିତରକୁ ପ୍ରବେଶ କରନ୍ତି । ସମସ୍ତେ ମିଶି ସେଇ ସଇତାନ୍‌କୁ ଖୋଜିବାରେ ଲାଗନ୍ତି । ଘର ଓଲଟ ପାଲଟ ହୋଇଯାଏ। ତେବେ ସେଇ ଧୂର୍ତ୍ତ ଶିଆଳର ପତ୍ତା ମିଳେ ନାହିଁ।

ହତାଶ ହୋଇ ସମସ୍ତେ ଆସି ବୈଠକଖାନାରେ ଗୁଣ୍ଡ ହୁଅନ୍ତି। ଫୋର୍ଡ଼ ଅପରାଧୀ ଭଳି ମୁହଁ ଶୁଖାଇ କହନ୍ତି, ବୃଥାରେ ଆପଣମାନଙ୍କୁ କଷ୍ଟ ଦେଲି। ସେଥିପାଇଁ ମୁଁ ଲଜ୍ଜିତ'।

—ଆପଣ ନିଜ ସ୍ତ୍ରୀଙ୍କୁ ଅକାରଣ ସନ୍ଦେହ କରି ନିଜେ କଷ୍ଟ ପାଉଛନ୍ତି, ଅନ୍ୟମାନଙ୍କୁ ବି କଷ୍ଟ ଦେଉଛନ୍ତି । ଶ୍ରୀମତୀ ଫୋର୍ଡ଼ ପ୍ରକୃତରେ ସତୀସାଧ୍ୱୀ ମହିଳା । ତାଙ୍କୁ ଅପମାନ ଦେବାକୁ ଯାଇ ଆପଣ ନିଜେ ଅପମାନିତ ହୋଇଛନ୍ତି। ଶ୍ରୀଯୁକ୍ତ ପେଜ୍ କହିଯାଆନ୍ତି।

ଫୋର୍ଡ଼ ନିଜର ଅପରାଧ ନିମନ୍ତେ କ୍ଷମା ପ୍ରାର୍ଥନା କରି ସମସ୍ତଙ୍କୁ ଖାଇବା ପାଇଁ ନିମନ୍ତ୍ରଣ କରନ୍ତି ।

॥ ୨ ॥

ପେଜ୍‌ଙ୍କ ଘର ଆଗ ରାସ୍ତାରେ ଫେନ୍‌ଟନ୍ ସହିତ ଆନି ଗପ କରୁଥାଏ । ଉଭୟେ ଉଭୟଙ୍କୁ ଭଲ ପାଆନ୍ତି। ସେମାନେ ବିବାହ କରି ଘର ବାନ୍ଧିବାର ସ୍ୱପ୍ନ ଦେଖୁଥାଆନ୍ତି। କିନ୍ତୁ ପେଜ୍ ଏ ବିବାହରେ ସମ୍ମତ ନୁହନ୍ତି । ଆନି ଫେନ୍‌ଟନ୍‌କୁ ପ୍ରାଣ ଦେଇ ଭଲପାଏ। ତେବେ ବାପାଙ୍କ ବିରୋଧରେ ଯିବାର ସାହସ ତା'ର ନ ଥାଏ। କ'ଣ କହିବ କିଛି ଭାବି ପାରୁ ନ ଥାଏ। ଫେନ୍‌ଟନ୍ ତାକୁ ବୁଝାଇବାକୁ ଯାଏ । ମାତ୍ର ଆନି ବାରମ୍ବାର ତା'ର ନିରୁପାୟତାର କଥା କହୁଥାଏ।

ଫେନ୍‌ଟନ୍ ରାଗିଯାଏ। କହେ—ମୋତେ ତେବେ କ'ଣ କରିବାକୁ କହୁଛ ?

- କୌଣସିମତେ ବାପାଙ୍କୁ ରାଜି କରାଅ- ଆନି କହେ।

- ଚେଷ୍ଟା କରି ଦେଖିବି। କିନ୍ତୁ ତମର ବାପା ଯେମିତି ଅବୁଝା ଲୋକ ତାଙ୍କର ମନ ପାଇବା ଏତେ ସହଜ ନୁହେଁ- ଫେନ୍‌ଟନ୍ ଜଣାଏ।

ଆନି ଚୁପ୍‌ଚାପ୍ ଘର ଭିତରକୁ ଚାଲିଯାଏ । ସେତିକିବେଳେ ସାଲୋ ଆଉ ସ୍ଲେଣ୍ଡର ପେଜ୍‌ଙ୍କ ଘରକୁ ଆସନ୍ତି । ପେଜ୍ ଆଉ ତାଙ୍କ ଶ୍ରୀମତୀ ସ୍ଲେଣ୍ଡର ସହିତ ଆନିର ବିବାହ ଦେବା ପାଇଁ ଇଛା କରନ୍ତି । ଆନି କିନ୍ତୁ ଏଇ ଲୋକଟିକୁ ଆଦୌ ସହିପାରେ ନାହିଁ ।

ବାପା-ମା'ଙ୍କୁ ଖୁସି କରିବା ପାଇଁ ଆନି ଆସି ବୈଠକଘରେ ସେମାନଙ୍କ ଆଗରେ ବସେ । ସାଲୋ କହନ୍ତି, 'ଆନି, ତମେ ତ ଜାଣ ଯେ,ମୋର ଆତ୍ମୀୟ ଏଇ ସ୍ଲେଣ୍ଡର ତମକୁ ପାଇପାରିଲେ ଧନ୍ୟ ହୋଇଯିବ ।'

ଆନି ଉତ୍ତର ଦିଏ- ତାଙ୍କର ଭଲ ପାଇବା କଥାଟା ସେ ନିଜେ ନ କହି ଆପଣଙ୍କ ଦ୍ୱାରା କୁହାଉଛନ୍ତି କାହିଁକି ?

ପେଜ୍ ଘରକୁ ଆସନ୍ତି । ସୌଜନ୍ୟ ବିନିମୟ କରିବା ପରେ ସେ ଝିଅକୁ କହନ୍ତି ଆନି ମୁଁ ଚାହେଁ ତୁ ସ୍ଲେଣ୍ଡରକୁ ବିବାହ କଲେ ସୁଖୀ ହେବୁ । ଏଇ ହେଲା ମୋର ଇଛା । କ'ଣ କହୁଛୁ ?

ଆନି କିଛି କହେ ନାହିଁ । ପେଜ୍ ସ୍ଲେଣ୍ଡର ଆଡ଼େ ଅନାଇ କହନ୍ତି, ମୁଁ ଜାଣେ, ତମେ ଆନିକୁ ବିବାହ କରିବା ନିମନ୍ତେ ଆଗ୍ରହୀ । ଏଭଳି ସ୍ଥିତିରେ ଦୁଇପକ୍ଷ ବସି ବିବାହର କଥାବାର୍ତ୍ତା, ସମୟ ଇତ୍ୟାଦି ସ୍ଥିର କରିନେବା ଉଚିତ, ନା କ'ଣ କହୁଛ ?

- ଆପଣ ଯାହା କହିବେ ସେଇଆ ହେବ । ମୋର ଏଥିରେ କହିବାର କ'ଣ ଅଛି ?

ପେଜ୍ ଆନିକୁ କହନ୍ତି , ଶୁଣ୍ ମା, ତୁ ଆଉ ଛୋଟଟିଏ ନୋହୁ । ସବୁ ଜାଣିବାର, ବୁଝିବାର ବୟସ ତୋର ହୋଇଛି । ସ୍ଲେଣ୍ଡର ସହିତ ଯେତେବେଳେ ତୋର ବିବାହ ସ୍ଥିର ହେଲା, ସେତେବେଳେ ଆଉ ଫେନ୍‌ଟନ୍ ଭଳି ବାରବୁଲା ପିଲା ସାଙ୍ଗରେ ମିଳାମିଶା କରିବା କ'ଣ ଦରକାର ? ଏଥିରେ ସମାଜରେ ବଦନାମ ହୁଏ । ଆଜିଠୁ ତା'ସହିତ ମିଳାମିଶା ବନ୍ଦ କର ।

ଆନି ବାପାଙ୍କୁ କିଛି କହିପାରେ ନାହିଁ । ମାଆଙ୍କ ପାଖରେ ଯାଇ କାନ୍ଦିବାରେ ଲାଗେ । କହେ- ଏଇ ବୋକା ଆଉ ଗଧଟା ସହିତ ତେବେ ମୁଁ ଜୀବନ କଟାଇବି ? ମୋର ରୁଚି ବୋଲି କିଛି ନାହିଁ ?

ଏଣେ ଶ୍ରୀମତୀ ଫୋର୍ଡ଼ଙ୍କ ପରିଚାରକମାନେ ଝୁଡ଼ି ସହିତ ଟେମସ୍ ନଦୀର କାଦୁଅରେ ଫଲଷ୍ଟାଫ୍‌କୁ ଫୋପାଡ଼ି ଦେଇ ଘରକୁ ଫେରିଯାଆନ୍ତି । କାଦୁଅ ଘାଣ୍ଟି ବହୁ କଷ୍ଟରେ ଫଲଷ୍ଟାଫ୍ କୂଳକୁ ଉଠିଆସେ ।

ପରଦିନ ସେ ଗାର୍ଟାରଙ୍କ ସରାଇଖାନାରେ ବସିଥାଏ । ଶ୍ରୀମତୀ ଫୋର୍ଡ଼ଙ୍କଠାରୁ କିଛି ଖବର ନେଇ କୁଇକ୍ଲି ସେଠାରେ ପହଞ୍ଚଯାଏ । ଶ୍ରୀମତୀ ଫୋର୍ଡ଼ଙ୍କ ନାମ ଶୁଣିବାମାତ୍ରେ ଫଲଷ୍ଟାଫ୍ ରାଗରେ ଜଳିଉଠେ । କହେ- ସେ ସ୍ତ୍ରୀ ଲୋକର ନାଆଁ ଆଉ ତୁ ମୋ ଆଗରେ ଧରନା । ଏତେବେଳଯାଏ କାଦୁଅ ପାଣିରେ ମୋ ପେଟ ଫୁଲି ରହିଛି ।

ବୁଦ୍ଧିମତୀ କୁଇକ୍ଲି ତାକୁ ବୁଝାଇବାକୁ ଯାଇ କହେ, ଦେଖନ୍ତୁ , ସବୁ କଥା ଶୁଣିଲେ କାଲିର ଘଟଣା ପାଇଁ ଆପଣ ମୋତେ ରାଗିପାରିବେ ନାହିଁ । ଶ୍ରୀମତୀ ଫୋର୍ଡ଼ ଖୁବ୍ ଦୁଃଖିତ ଆଉ ଲଜ୍ଜିତ ହୋଇ ପଡ଼ିଛନ୍ତି । ଚାକରଗୁଡ଼ାକ ବି ହୋଇଛନ୍ତି ସେମିତି !

କୁଇକ୍ଲିର କଥା ଶୁଣି ଫଲଷ୍ଟାପ୍ ଟିକିଏ ଶାନ୍ତ ହୁଏ । କହେ-ଘଟଣା କ'ଣ ?

-ଆଜି ଫୋର୍ଡ଼ ପକ୍ଷୀ ଶିକାର ପାଇଁ ଜଙ୍ଗଲକୁ ଯିବେ । ଆପଣ ଦୟାକରି ଯଦି ରାତି ଆଠଟାରୁ ଦଶଟା ଭିତରେ ତାଙ୍କ ଘରକୁ ଯାଆନ୍ତି, ତେବେ ସେ ଖୁବ୍ ଖୁସି ହେବେ । ଗତ କଥା ସବୁ ଭୁଲିଯାଆନ୍ତୁ ।

ଫଲଷ୍ଟାଫ୍ କହେ-'ଠିକ୍ ଅଛି । ତୁ ଶ୍ରୀମତୀ ଫୋର୍ଡ଼ଙ୍କୁ କହିବୁ ଯେ, ମୁଁ ସେଇ ସମୟରେ ତାଙ୍କ ଘରକୁ ଯିବି ।'

କୁଇକ୍ଲି ଚାଲିଯାଏ । ଏଥର ଫୋର୍ଡ଼ ବ୍ରୁକ୍‌ର ଛଦ୍ମବେଶରେ ସେଠାକୁ ଆସନ୍ତି । କଥାବାର୍ତ୍ତା ଭିତରେ ସେ ଫଲଷ୍ଟାଫ୍‌କୁ କହନ୍ତି- କାଲିତ ଆପଣ ଫୋର୍ଡ଼ଙ୍କ ଘରକୁ ଯାଇଥିଲେ । ସେଠି କଣ ସବୁ ହେଲା ?

-ଆଉ ଲଜ୍ଜାର କଥା ପଚାରନ୍ତୁ ନାହିଁ ଆଜ୍ଞା । କହିହେବ ନାହିଁ - ଫଲଷ୍ଟାଫ୍ କହେ ।

-କଣ ଏମିତି ସେଠି ଘଟିଲା ଯେ, ଆପଣ ଏମିତି କହୁଛନ୍ତି ? ଫୋର୍ଡ଼ ପଚାରନ୍ତି ।

-ଠିକ୍ ସମୟରେ ତ ଫୋର୍ଡ଼ଙ୍କ ଘରେ ପହଞ୍ଚଗଲି । ଘର ଖାଲି ଥିଲା । ମୁଁ ପ୍ରେମର ପ୍ରଥମ ପର୍ବଟା ଶେଷ କରି ଯେମିତି ଟିକିଏ ଅନ୍ତରଙ୍ଗ ହେବାକୁ ଆରମ୍ଭ କରିଛି, ସେଇଠୁ ତ ଆରମ୍ଭ ହୋଇଗଲା ଝମେଲା ।

-ଝମେଲା ମାନେ ? ଫୋର୍ଡ଼ କ'ଣ ଫେରିଆସିଲେ ?

-ଖାଲି ଯଦି ସେ ଫେରିଥାନ୍ତେ, ତେବେ କୌଣସିମତେ ପରିସ୍ଥିତିକୁ ସମ୍ଭାଳି ନେଇ ହୋଇଥାଆନ୍ତା । ସାଙ୍ଗରେ ପଲେ ଲୋକ ନେଇ ସେ ଆସିଲେ । ଆସିବା ମାତ୍ରେ ମୋତେ ଖୋଜିବା ଆରମ୍ଭ କରିଦେଲେ ।

-ଆପଣଙ୍କୁ ପାଇଲେ ?

-ନା ନା ପାଇ ନାହାନ୍ତି । ବେଳ ଥାଉଁ ଥାଉଁ ଶ୍ରୀମତୀ ଫୋର୍ଡ଼ ବୁଦ୍ଧି କରି ମୋତେ ଲୁଚାଇ ଦେଇଥିଲେ । ଏବେ ସେ କଥା ଭାବିଲେ ମୋ ଦେହ କ'ଣ ହୋଇଯାଉଛି । ମଇଳାରଖା ଗୋଟାଏ ଝୁଡ଼ିରେ ପୂରାଇ, ତା'ଉପରେ ଅସନା ଲୁଗାପଟା ଢାଙ୍କି ମୋତେ ଚାକରମାନଙ୍କ ଦ୍ୱାରା ବାହାରକୁ ପଠାଇଦେଲେ । ଫଲଷ୍ଟାଫ୍ ଘଟଣାର ବର୍ଣ୍ଣନା କରେ ।

-ଏ ତ ପ୍ରକୃତରେ ଅସହ୍ୟ ବ୍ୟାପାର ।

-କହନ୍ତୁ ନାଇଁ ସେ କଥା । ସେ ଦୁର୍ଗନ୍ଧ ଭିତରେ ମୋର ତ ଦମ୍ ବନ୍ଦ ହୋଇ ଯାଉଥାଏ । ଝାଳରେ ବିଲକୁଲ ଓଦା । ଡରରେ ହଲଚଲ ବି ହୋଇପାରୁ ନ ଥାଏ । ସେଥିରେ ପୁଣି ଗୋଟାଏ ମଇଳା ମୋଜା କେମିତି କେଜାଣି ମୋ ନାକ ପାଖରେ ଲାଗିଯାଇଥାଏ । ମୋର ତ ପେଟରୁ ଭାତ ବାହାରିବା ଭଳି ଅବସ୍ଥା ।

-ମୋରି ପାଇଁ ଆପଣଙ୍କର ଏ ଦୁର୍ଦ୍ଦଶା । ନିଜକୁ  ଦୋଷୀ ଭଳି ଲାଗୁଛି-ଅନୁଶୋଚନା ପ୍ରକାଶ କରି ଫୋର୍ଡ଼ ଜଣାନ୍ତି ।

-ଶେଷଟା ତ ଏ ପର୍ଯ୍ୟନ୍ତ ଶୁଣି ନାହାନ୍ତି । ତା'ପରେ ଚାକରମାନେ ଝୁଡ଼ି ସହିତ ମୋତେ ନେଇ କାଦୁଅ-ପାଣି  ଭିତରେ ଫୋପାଡ଼ି ଦେଇ ଆସନ୍ତି ।

-ଓଃ ମୁଁ ଯେ ଆଉ ଭାବିପାରୁ ନାହିଁ । ଏଭଳି ସାଂଘାତିକ ମହିଳା-ଯେତେ ଡାକିଲେ ବି ଆପଣ ଆଉ ମୋଟେ ଯିବେ ନାହିଁ । ଏହା ପରେ ସେ ହୁଏତ ଆପଣଙ୍କୁ ଜୀବନରୁ  ମାରି ଦେଇପାରେ- ଫୋର୍ଡ଼ କହନ୍ତି ।

-ତା'ହେଲେ ଆପଣ ମୋତେ ଯିବାକୁ ମନା କରୁଛନ୍ତି ? ଫଲଷ୍ଟାଫ୍ କାତର କଣ୍ଠରେ କହେ ।

-ଏତେ କଥା ଶୁଣିବା ପରେ ବି ମନା କରିବି ନାହିଁ ? ଆପଣ କ'ଣ କହୁଛନ୍ତି । ସେମାନେ ହେଲେ ଡାଆଣୀ । ସେମାନଙ୍କର ତ୍ରିସୀମା ବି ମାଡ଼ିବେ ନାହିଁ-  ଫୋର୍ଡ଼ ସାବଧାନ କରାଇ ନିଅନ୍ତି ।

-କିନ୍ତୁ ସେ ତ ପୁଣି ଡାକିଛନ୍ତି ।

ଓଃ କି ଭୟଙ୍କର ସ୍ତ୍ରୀରେ ବାବା, ପୁଣି ଡାକ ?

-ଦେଖନ୍ତୁ, ସେଦିନ ହୁଏତ ତାଙ୍କର ପ୍ରକୃତରେ କୌଣସି ଦୋଷ ନ ଥିଲା । ବଦମାସ୍ ଚାକରମାନେ ମୋତେ କାଦୁଅରେ ଫିଙ୍ଗି ଦେଇଥିଲେ- ଫଲଷ୍ଟାଫ୍ ଜଣାଏ ।

- ହୁଏତ ସେଇଆ ହୋଇପାରେ । ଆଚ୍ଛା, ଯିବେ କେତେବେଳେ ? ଫୋର୍ଡ଼ ଆଗ୍ରହରେ ପଚାରନ୍ତି ।

-ରାତି ଆଠଟାରୁ ଦଶଟା ଭିତରେ । ଫଲଷ୍ଟାଫ୍ ଘଣ୍ଟା ଆଡ଼େ ଅନାଇ ବ୍ୟସ୍ତ ହୋଇପଡ଼େ । କହେ—ଆପଣଙ୍କୁ ଆଜି ଆଉ ସମୟ ଦେଇପାରୁ ନାହିଁ । ପରେ ଦିନେ ବସିଲେ ହେବ । ଏବେ ମୋତେ ବାହାରିବାକୁ ହେବ । ଏତିକି କହି ସେ ବାହାରିପଡ଼େ ।

ଫୋର୍ଡ଼ ଜାଣନ୍ତି, ବଦମାସ୍‌ଟା ତାଙ୍କରି ଘରକୁ ଯାଉଛି । ତାଙ୍କର ରକ୍ତ ଗରମ ହୋଇଯାଏ । ଦାନ୍ତ କଡ଼ମଡ଼ କରି ସେ କହନ୍ତି, ସେଦିନ ସିନା ଝୁଡ଼ି ଭିତରେ ଲୁଚି ବଞ୍ଚିଗଲୁ । ଆଜି କିଏ ତୋ' ପିଠିରେ ପଡ଼ିବ, ଦେଖୁଚି, ତୁ ଚାଲ । ଏଥର ତୋପାଇଁ ଏମିତି ଶାସ୍ତିର ବ୍ୟବସ୍ଥା କରିବି ଯେମିତି ବଞ୍ଚିଥିବା ପର୍ଯ୍ୟନ୍ତ ମୋ ଦ୍ୱାର ମାଡ଼ିବାକୁ ମନ କରିବୁ ନାହିଁ ।

ଶ୍ରୀମତୀ ଫୋର୍ଡ଼ ସବୁ କଥା ଜଣାଇ ଶ୍ରୀମତୀ ପେଜ୍‌ଙ୍କୁ ଖଣ୍ଡେ ଚିଠି ଲେଖନ୍ତି ।

କୁଇକ୍ଲି ହାତରେ ପଠାଇ, ତାଙ୍କୁ ଶୀଘ୍ର ଆସିବା ପାଇଁ ଅନୁରୋଧ ଜଣାନ୍ତି ।

ଏ ଭିତରେ ଫଲଷ୍ଟାଫ୍ ଫୋର୍ଡ଼ଙ୍କ ଘରେ ପହଞ୍ଚିଯାଏ । ଯଥାରୀତି ଅଭିବାଦନ ପର୍ବ ସରିଲା ପରେ କହେ, ସେଦିନର ଘଟଣା ପାଇଁ ତମେ ଲଜ୍ଜିତ ଆଉ ଦୁଃଖିତ ହୋଇଛ ଶୁଣି ନିଜକୁ ଦୋଷୀ ଦୋଷୀ ଲାଗୁଛି । ଘଟଣା ପାଇଁ ମୋ ମନରେ କିନ୍ତୁ କୌଣସି ଗ୍ଳାନି ନାହିଁ । କାରଣ ମୁଁ ଜାଣେ, ଏଥିରେ ତମର କୌଣସି ଦୋଷ ନାହିଁ । ଚାକରଗୁଡ଼ାକ ବଜ୍ଜାତ୍ । ତମେ ବା କ'ଣ କରିଥାଆନ୍ତ ? ତଥାପି ତମେ ଅନୁତପ୍ତ ହୋଇଛ, ଏକଥା ଶୁଣିବା ପରେ ମୋର ସବୁ ରାଗ ଅନୁରାଗରେ ପରିଣତ ହୋଇଛି ।

-ମନ ଯାହା ଚାହେଁ ତା' କ'ଣ କେବେ ମିଳେ ? ତମ ସହିତ ମନଖୋଲି ପଦେ ରସାଳାପ କରିବି, ସେଥିରେ ବି ବାଧା । କେତେବେଳେ କିଏ ଆସିଯିବ, ସେଇ ଭୟରେ କଣ୍ଟା ହୋଇ ରହିଚି । ତମେ ଟିକିଏ ପାଖ ଘରେ ଅପେକ୍ଷା କରିବ ?

- କିଏ ଆଉ ଏତେବେଳେ ଆସିବ ? ତମ ସ୍ୱାମୀଙ୍କର ଫେରିବା କଥା ନାହିଁ ତ ? ଫଲଷ୍ଟାଫ୍ ଚିନ୍ତିତ ହୋଇ କହେ ।

-ନା, ତାଙ୍କୁ ନେଇ ଭାବୁ ନାହିଁ । ରାତି ଦଶଟା ପୂର୍ବରୁ ସେ ଫେରିବେ ନାହିଁ । ଚିନ୍ତା କରୁଛି ଶ୍ରୀମତୀ ପେଜ୍‌ଙ୍କ ବିଷୟରେ । କେତେବେଳେ ଯେ ଚାଲିଆସିବେ, କିଏ ଜାଣେ ?

ଶ୍ରୀମତୀ ପେଜ୍‌ଙ୍କ ନାମ ଶୁଣିବା ମାତ୍ରେ ଫଲଷ୍ଟାଫ୍ ଆତଙ୍କିତ ହୋଇଉଠେ । ଏକା ଦୌଡ଼କେ ଯାଇ ପାଖ ଘରେ ଲୁଚିଯାଏ । ଟିକିଏ ପରେ ସେଠାରେ ପ୍ରବେଶ କରନ୍ତି ଶ୍ରୀମତୀ ପେଜ୍ । ଆସୁ ଆସୁ ବଡ଼ ପାଟିରେ ଚିତ୍କାର କରି କହନ୍ତି- ଶୁଣିଲଣି ପୁଣି ଏକ ଝମେଲା...

ଶ୍ରୀମତୀ ଫୋର୍ଡ଼ କହନ୍ତି — ପୁଣି କେଉଁ ଝମେଲାର ଖବର ନେଇ ଆସିଛ ?

—ଆସିବାବେଳେ ଫୋର୍ଡ଼ଙ୍କୁ ବାଟରେ ଦେଖିଲି । ଘରକୁ ଆସୁଛନ୍ତି । ମନେହେଲା, ଖୁବ୍ ରାଗିକରି ଅଛନ୍ତି ।

-ବଡ଼ ମୁସ୍କିଲ୍ କଥା । ମୁଁ ଏବେ କରିବି କ'ଣ ? ପୁଣି ସେଇ ଝୁଡ଼ି ଭିତରେ ପୂରାଇବା କଥାଟା କରିବି ? ଶ୍ରୀମତୀ ଫୋର୍ଡ଼ ଚିନ୍ତିତ ସ୍ୱରରେ କହନ୍ତି ।

ସାଙ୍ଗେ ସାଙ୍ଗେ ଫଲଷ୍ଟାଫ୍ ଘର ଭିତରୁ ଦୌଡ଼ିଆସେ । ଭୀତତ୍ରସ୍ତ ଗଳାରେ କହେ- ଦୟାକରି ମୋତେ ସେଇ ଝୁଡ଼ି ଭିତରକୁ ଠେଲିଦିଅ ନାହିଁ । ତା' ଅପେକ୍ଷା ମୁଁ ବରଂ କୁଆଡ଼େ ପଳାଉଛି ।

-କୁଆଡ଼େ ପଳାଇବ ? କଥାଟା ଏତେ ସହଜ ବୋଲି ଭାବିଛ କି ? ଚାରିଆଡ଼େ ପହରା ବସିଯାଇଛି । ବାହାରକୁ ଗୋଡ଼ କାଢ଼ିବା ମାତ୍ରେ ଧରା ପଡ଼ିବେ । ଶ୍ରୀମତୀ ପେଜ୍ ସତର୍କ କରାଇଦିଅନ୍ତି ।

ଫଲଷ୍ଟାଫ୍ ବିଭ୍ରାନ୍ତ ଦୃଷ୍ଟିରେ ଚାରିଆଡ଼କୁ ଅନାଇ କହେ, 'ତା ହେଲେ ଚିମ୍‌ନି ଭିତରେ ଲୁଚିଯାଏଁ ।'

ଶ୍ରୀମତୀ ଫୋର୍ଡ଼ ଭୟ ପାଇଯାଇ କହନ୍ତି, ମାଲୋ ସେଇଟା କ'ଣ ଲୁଚିବାର ଜାଗା ? ଦୁନିଆର ଯେତେ ମାକଡ଼ସା, ଅସରପା, ମୂଷା, ଚୁଚୁନ୍ଦ୍ରା ସବୁ ତାରି ଭିତରେ ଠୁଳ ହୋଇଛନ୍ତି । ଅଳନ୍ଧୁରେ ଭର୍ତ୍ତି ହୋଇଛି । ତା' ଅପେକ୍ଷା ଗୋଟାଏ କାମ କରାଯାଉ । ଝିଅ ପୋଷାକ ପିନ୍ଧି ଆପଣ ବାହାରକୁ ଚାଲିଯାଆନ୍ତୁ । କେହି ଜାଣିପାରିବେ ନାହିଁ ।

କାନ୍ଦ କାନ୍ଦ ହୋଇ ଫଲଷ୍ଟାଫ୍ କହେ - ମୋର ଏଇ ବିଶାଳ ବପୁରେ ଝିଅ ପୋଷାକ । ସେମିତି ପୋଷାକ ମିଳିବ କୋଉଠୁ ?

- ଯାହା ମିଳିବ, ସେଇଥିରେ ଚଳାଇ ନେବାକୁ ହେବ । ସେମିତି ଗୋଟାଏ ଗାଉନ୍ ମୋ ପାଖରେ ଅଛି । ମୋର ଜଣେ ମାଉସୀ ବେଶ୍ ମୋଟାସୋଟା - ତାଙ୍କରି ଗାଉନ୍‌ଟା ଉପରେ ଅଛି । ଆଣି ଦେଉଛି ।

ଗାଉନ୍ ସହିତ ଟୋପିଟିଏ ବି ଆସିଯାଏ । ଶ୍ରୀମତୀ ଫୋର୍ଡ଼ ତାକୁ ଫଲଷ୍ଟାଫ୍‌କୁ ପିନ୍ଧାଇଦିଅନ୍ତି । ଇତିମଧ୍ୟରେ ଫୋର୍ଡ଼ ଘରକୁ ଆସିଯିବାରୁ ଶ୍ରୀମତୀ ଫୋର୍ଡ଼ ଫଲଷ୍ଟାଫ୍‌କୁ... ଉପର ଘରକୁ ପଠାଇ ଦିଅନ୍ତି । ଘରେ ପାଦ ଦେବା ମାତ୍ରେ ଫୋର୍ଡ଼ଙ୍କର ପାଟିତୁଣ୍ଡ ଆରମ୍ଭ ହୋଇଯାଏ । ଶ୍ରୀମତୀ ଫୋର୍ଡ଼ ବାହାରିଆସି ଏସବୁ ଗଣ୍ଡଗୋଳର କାରଣ ଜାଣିବାକୁ ଚାହାନ୍ତି ।

ଫୋର୍ଡ଼ ତୀବ୍ର ସ୍ୱରରେ କହନ୍ତି- ତମର ଧାରଣା ମୁଁ ବିନା କାରଣରେ ତମକୁ ସନ୍ଦେହ କରେ । ତମେ ନିଷ୍ପାପ, କଳଙ୍କହୀନ । ମୋରି ମନଟା କେବଳ ସଂକୀର୍ଣ୍ଣ !

- ସେଇଆ ତ । ତମର ମନ ସ୍ୱଚ୍ଛ ନୁହେଁ । ତମେ ସେଇଥିପାଇଁ ଅକାରଣରେ ସନ୍ଦେହ କରି ନିଜେ କଷ୍ଟ ପାଅ - ମୋତେ ବି କଷ୍ଟ ଦିଅ ।

ଫୋର୍ଡ଼ ତାଙ୍କର ବନ୍ଧୁମାନଙ୍କୁ ଡାକି କହନ୍ତି- 'ଆପଣମାନେ ଏଇ ଘରର ଉପର ତଳ ଅନ୍ଧିସନ୍ଧି - ଚାରିଆଡ଼େ ତନ୍ନତନ୍ନ କରି ଦେଖନ୍ତୁ । ସେ ବଦ୍‌ମାସ୍‌ଟା ଗଲା କୁଆଡ଼େ ? ତାକୁ ଖୋଜି ବାହାର କରିବାକୁ ହେବ ।'

ଶ୍ରୀମତୀ ପେଜ୍‌କୁ ଡାକି ଶ୍ରୀମତୀ ଫୋର୍ଡ଼ କହନ୍ତି- ସେମାନେ ଉପରକୁ ଯିବା ଆଗରୁ ତମେ ମୋର ଗୋଟାଏ କାମ କରିଦିଅ । ଉପରେ ଆମ ଘରେ କାମ କରୁଥିବା ସ୍ତ୍ରୀଲୋକର ବୁଢ଼ୀ-ମାଉସୀ ଅଛି । ତମେ ଯେମିତି ହେଲେ ତାକୁ ତଳକୁ ନେଇଆସ ।

ଫୋର୍ଡ଼ଙ୍କ କାନରେ ଏକଥା ପଡ଼ିବା ମାତ୍ରେ ସେ ଦପ୍ କରି ଜଳିଉଠନ୍ତି । ସ୍ତ୍ରୀଙ୍କର ଏଇ ଦୁର୍ବଳତାଟା ତାଙ୍କୁ ମୋଟେ ଭଲ ଲାଗେ ନାହିଁ । ବୁଢ଼ୀ ମଣିଷଟିଏ ଦେଖିଲେ ଦୟାରେ ତରଳି ଯାଆନ୍ତି । ସେ କହନ୍ତି- ପୁଣି ତମେ ସେଇ ବୁଢ଼ୀଟାକୁ ଘରେ ପୂରେଇଛ ? ଆଜି ତାକୁ ମୁଁ ଛୋଟା କରିଦେବି । ଗୋଡ଼ ଆଉ ଥିବନା, ସେ ପାହୁଣ୍ଡ ପକାଇ ଏଠିକି ଚାଲିଆସିବ ।

ଶ୍ରୀମତୀ ପେଜ୍ ଦୌଡ଼ିଯାଇ ଉପରୁ ଗାଉନ୍ ଆଉ ଟୋପି ପିନ୍ଧା ଫଲଷ୍ଟାଫ୍‌କୁ ନେଇ ଆସନ୍ତି । ଫୋର୍ଡ଼ ରାଗରେ ତା' ପିଠିରେ ଗୋଟା କେତେ ଉତ୍ତମ ମଧ୍ୟମ ବସାଇ ଦିଅନ୍ତି । ଗର୍ଜନ କରି କହନ୍ତି- ବଦ୍‌ମାସ୍ ବୁଢ଼ୀ, ଭଲ ଚାହୁଁ ତ ଚୁପ୍‌ଚାପ୍ ଏଠୁ ବାହାରିଯା । ଭୁଲ୍‌ରେ କେବେବି ଯେମିତି ଏଆଡ଼େ ନ ଆସୁ । ଆସିଲେ ଆଉ ଜୀବନ ନେଇ ଫେରିବୁ ନାହିଁ ।

ଏତିକି କହି ସେ ଧକ୍କା ମାରି ବୁଢ଼ୀକୁ ଘରୁ ବାହାର କରି ଦିଅନ୍ତି ।

ବୁଢ଼ୀବେଶଧାରୀ ଫଲଷ୍ଟାଫ୍ ପିଠିରେ ହାତ ବୁଲାଉ ବୁଲାଉ କୌଣସିମତେ ଘରୁ ବାହାରଆଡ଼େ ପଳାଇଯାଏ । ମନେ ମନେ ଭାବେ, ମଇଳା ଝୁଡ଼ି ଭିତରେ କାଦୁଅ ପାଣି ପିଇ ଅଣନିଃଶ୍ୱାସୀ ହେବା ଅପେକ୍ଷା ମାଡ଼ ଖାଇବା ବରଂ ଭଲ ।

ବୁଢ଼ୀ ଚାଲିଯିବା ପରେ ଫୋର୍ଡ଼ ନିଜର ବନ୍ଧୁମାନଙ୍କୁ ନେଇ ଚାରିଆଡ଼ ଖୋଜିବା ଆରମ୍ଭ କରନ୍ତି । ଇଭାନ୍ସ କହନ୍ତି, ଦେଖନ୍ତୁ ଆଜ୍ଞା, ମୋ ମନରେ ଗୋଟାଏ ସନ୍ଦେହ ହେଉଛି ।

ରାଗିଲା ସ୍ୱରରେ ଫୋର୍ଡ଼ କହନ୍ତି କି ଧରଣର ସନ୍ଦେହ ?

- ନା, କଥା କ'ଣ କି, ଏଇ ବୁଢ଼ୀ, ଯାହାକୁ ଆପଣ ମାଡ଼ ମାରି ବାହାର କରିଦେଲେ ମୋର ସନ୍ଦେହ ତାକୁ ନେଇ- ଇଭାନ୍ସ କହନ୍ତି ।

- କଥାଟା ପରିଷ୍କାର କରି କହନ୍ତୁ ତ- ଫୋର୍ଡ଼ ପଚାରନ୍ତି ।

- ମୁଁ ତା ଗଳା ତଳେ କଳା ଭଳି କ'ଣ ଗୋଟାଏ ଦେଖିଲି । ମନେ ହେଲା ଯେମିତି ସେଇଟା ଦାଢ଼ି । ସ୍ତ୍ରୀଲୋକର ଦାଢ଼ି କୁଆଡୁ ଆସିଲା ? ଇଭାନ୍ସ ନିଜ ସନ୍ଦେହର ବ୍ୟାଖ୍ୟା କରନ୍ତି ।

- ଆପଣ ଦାଢ଼ି ଦେଖିଲେ ? ହାୟ, ମୁଁ ତେବେ ନିଜ ହାତରେ ତାକୁ ଛାଡ଼ିଦେଲି । ଧରି ବି ଧରିପାରିଲି ନାହିଁ।

ଫୋର୍ଡ଼ଙ୍କର ବିଳାପ ଶୁଣି ଶ୍ରୀମତୀ ପେଜ୍ ହସିପକାନ୍ତି । ପେଜ୍ ଏହାର କାରଣ ଜାଣିବାକୁ ଚାହିଁବାରୁ ଶ୍ରୀମତୀ ଫୋର୍ଡ଼ ଆଉ ଶ୍ରୀମତୀ ପେଜ୍ ଦୁହେଁ ମିଶି ସବୁ କଥା ତାଙ୍କୁ ବୁଝାଇ ଦିଅନ୍ତି । ଫୋର୍ଡ଼ ସବୁ ଶୁଣିବା ପରେ ଲାଜରେ ମୁଣ୍ଡ ନୁଆଇଁ ଦିଅନ୍ତି । ସମସ୍ତଙ୍କ ଆଗରେ ସେ ସ୍ତ୍ରୀଙ୍କୁ କ୍ଷମା ମାଗି କହନ୍ତି- ଅନ୍ୟାୟଟା ମୋର । ଭୁଲ୍ ବୁଝି ମୁଁ ଅକାରଣରେ ତମକୁ ସନ୍ଦେହ କରିଛି । ତମ ମନରେ ଆଘାତ ଦେଇଛି । ପ୍ରକୃତରେ ସେଇ ବଦ୍‌ମାସ୍‌ଟାର କଦର୍ଯ୍ୟ ଆଚରଣରେ ମୁଁ କ୍ଷିପ୍ତ ହୋଇ ପଡ଼ିଥିଲି । ମୋ ମୁଣ୍ଡ ଠିକ୍ ନ ଥିଲା । ନ ଭାବିବା କଥା ଭାବିଛି । ନ କରିବା କଥା କରିଛି । ତମେ ପ୍ରକୃତରେ ନିରପରାଧ । ଏମିତି ଭୁଲ୍ ମୁଁ ଜୀବନରେ ଆଉ କେବେ କରିବି ନାହିଁ । ତମେ ମୋତେ କ୍ଷମା କର । ଟିକିଏ ରହି ପୁଣି ସେ କହନ୍ତି, ସଇତାନଟାକୁ ଏଇ ସାମାନ୍ୟ ଶାସ୍ତି ଦେଇ ଛାଡ଼ିଦେବାଟା ଉଚିତ ହେଲା ନାହିଁ । ସମସ୍ତେ ମିଶି ଗୋଟାଏ କିଛି କରନ୍ତୁ ଯେଉଁଥିରୁ କି ସେଇ ବଦ୍‌ମାସ୍ ଉଚିତ ଶିକ୍ଷା ପାଇବ ।

ଶ୍ରୀମତୀ ଫୋର୍ଡ଼ ଏହା ଭିତରେ ଭିତରକୁ ଯାଇ କଫିର ବ୍ୟବସ୍ଥା କରି ଫେରି ଆସନ୍ତି । ଫଲଷ୍ଟାଫ୍‌କୁ କିଭଳି ବେଇଜ୍ଜତ କରାଯାଇପାରିବ, ସେ କଥା ସମସ୍ତେ ଭାବିବାକୁ ଆରମ୍ଭ କରନ୍ତି । ଭଲ କରି ପାନେ ନ ଦେଲେ ସେ ବୁଦ୍ଧି ଶିଖିବ ନାହିଁ ।

ଶ୍ରୀମତୀ ପେଜ୍ କହନ୍ତି- ତାକୁ ଆଉ ଏଠାକୁ ଡାକି ଆଣିବା ସହଜ ହେବ ନାହିଁ । ଏଥର ନୂଆ କିଛି ଭାବିବାକୁ ହେବ । ମୋ ମନକୁ ଗୋଟାଏ କଥା ଆସୁଛି । ତାକୁ ଆମେ ଉଇଣ୍ଡସର ଜଙ୍ଗଲରେ ଦେଖା କରିବାକୁ ଡାକିବୁ । ସେ ଆସିବ ବନରକ୍ଷକର ବେଶରେ । ହର୍ନ ଭଳି ମଥାରେ ଦୁଇଟା ଶିଙ୍ଗ ଲଗାଇ ସେ ଆମ ପାଖକୁ ଆସିବ । ଗୋଟାଚାରି ପୁଅ ଝିଅଙ୍କୁ ଗୋପାଳ ଗୋପାଳୁଣୀ ବେଶରେ ସଜାଇବାକୁ ହେବ । ସେମାନେ ତାକୁ ଚିଡ଼େଇବେ । ଏମିତିକି ତା' ଦେହରେ ଜଳନ୍ତା ମହମବତିର ଚେଙ୍କା ଦେବାକୁ ବି ଭୁଲିବେ ନାହିଁ ।

ସମସ୍ତେ ଏଇ ଯୋଜନାଟିକୁ ପସନ୍ଦ କରନ୍ତି । ବେଶ୍ ମଜାଦାର ହେବ । ପେଟ ପୂରାଇ ଅନ୍ତତଃ ହସିବାର ସୁଯୋଗଟା ତ ମିଳିବ ।

ପୁଣିଥରେ କୁଇକ୍ଲିକୁ ଫଲଷ୍ଟାଫ୍ ପାଖକୁ ପଠାଯାଏ ।

ତାକୁ ଦେଖିବାମାତ୍ରେ ଫଲଷ୍ଟାଫ୍ ରାଗିଯାଏ । କହେ- ତୁ ବୋଧହୁଏ ମୋତେ ପୁଣି ଥରେ ନିମନ୍ତ୍ରଣ କରିବାକୁ ଆସିଛୁ ।

- ମନ କଥାଟା ଏତେ ଶୀଘ୍ର ବୁଝିଗଲେ ? ସେଇଥିପାଇଁ ତ ଶ୍ରୀମତୀ ଫୋର୍ଡ଼ ଆଉ ଶ୍ରୀମତୀ ପେଜ୍ ଦୁହେଁ ...

- ସେଇ ସବୁ ମାରାତ୍ମକ ସ୍ତ୍ରୀଲୋକଙ୍କର ନାଆଁ ମୋ ଆଗରେ ଧର ନାହିଁ । ସେମାନେ ନ ପାରନ୍ତି, ଏଭଳି କିଛି ନାହିଁ । ସଇତାନ୍‌ର ଚେଲା ଚାମୁଣ୍ଡା ସବୁ ।

- ପୂରା କଥାଟା ଜାଣିଲେ ଆପଣ କଦାପି ସେମାନଙ୍କ ଉପରେ ରାଗ କରିପାରିବେ ନାହିଁ । ସେଦିନ ଶ୍ରୀମତୀ ଫୋର୍ଡ଼ ଯେତେ ମାଡ଼ ଖାଇଛନ୍ତି, ତା' ଆପଣ ଜାଣନ୍ତି ?

- ମାଡ଼ ଖାଇଲେ କାହିଁକି ? ଫଲଷ୍ଟାଫ୍‌ର ଆଖିରେ ଉତ୍ସୁକତାର ଚିହ୍ନ ।

-ଅଳ୍ପକରେ କ'ଣ ଏତେ ବଡ଼ ଘଟଣା ବର୍ଣ୍ଣନା କରାଯାଇପାରିବ ? କୁଇକ୍ଲି ଗମ୍ଭୀର ହୋଇ କହେ । ଦେହର ବ୍ୟଥା ଏପର୍ଯ୍ୟନ୍ତ ବି ଦୂର ହୋଇ ନାହିଁ । ପିଠି ସାରା ଲମ୍ବା ଲମ୍ବା କଳାଦାଗ । ଜାଗାଏ ଜାଗାଏ ଫୁଲା ରହିଛି । କୁଇକ୍ଲିର କାହାଣୀ ଶୁଣିବାକୁ ଫଲଷ୍ଟାଫ୍ ମନରେ ଆଗ୍ରହ ନାହିଁ । ପ୍ରେମ ପାଇଁ ନିମନ୍ତ୍ରଣ କରି ଶେଷରେ କଣ ନା ପ୍ରହାର । ଆରେ ବାପ୍‌ରେ ।

ଫଲଷ୍ଟାଫ୍‌କୁ ଯେକୌଣସିମତେ ରାଜି କରାଇବାକୁ ପଡ଼ିବ । ଅବଶ୍ୟ କାଇଦା କାନୁନ୍ ସବୁ କୁଇକ୍ଲିକୁ ଭଲ ଭାବରେ ଜଣା ।

ଶ୍ରୀମତୀ ପେଜ୍ ଆଉ ଶ୍ରୀମତୀ ଫୋର୍ଡ଼ ଦୁହେଁ ଫଲଷ୍ଟାଫ୍‌ଙ୍କର ପ୍ରେମରେ ଉନ୍ମାଦ ହୋଇଛନ୍ତି । ମନଃପ୍ରାଣ ସବୁ ତାଙ୍କରି ପାଖରେ ବନ୍ଧା । ଦୁଇ ଜଣଙ୍କର କପାଳକୁ ସ୍ୱାମୀ ଦୁଇଟା ଜୁଟିଛନ୍ତି ଦୁଇଟା ପାଷାଣ...କଥା କଥାକେ କେବଳ ମାଡ଼ ଚଢ଼େଇ ଜାଣନ୍ତି । ପ୍ରେମ, ଭଲ ପାଇବା... ମନଃପ୍ରାଣ ସମର୍ପି ଦେବା, ଏସବୁ କଥା ଜାଣିବେ କାହୁଁ ?

ଏମିତି ନାନା କଥା ବର୍ଣ୍ଣନା କରି କୁଇକ୍ଲି ଖୁବ୍ ଅଳ୍ପ ସମୟ ମଧ୍ୟରେ ଫଲଷ୍ଟାଫ୍‌କୁ କାବୁ କରିନିଏ । ଫଲଷ୍ଟାଫ୍ ବୁଝିଯାଏ, ଯାହାସବୁ ଘଟିଗଲା ସେଥିରେ ବିଚାରୀ ଶ୍ରୀମତୀ ଫୋର୍ଡ଼ ବା ଶ୍ରୀମତୀ ପେଜ୍ କାହାରି କିଛି ଦୋଷ ନାହିଁ । ଦୈବାତ୍ ସେମାନଙ୍କର ହୃଦୟହୀନ ସ୍ୱାମୀମାନେ ସେଦିନ ସେଠି ପହଞ୍ଚି ଯାଇଥିଲେ । ସେଇଥିପାଇଁ ଏମାନଙ୍କର ଯୋଜନା ପଣ୍ଡ ହୋଇଗଲା ।

କୁଇକ୍ଲି ବ୍ୟାଖ୍ୟା କରେ, ଏଥର ସେଇଥିପାଇଁ ପୂରା ନୂଆ ପ୍ରକାରର ଚିନ୍ତା । ଦର୍ଶନ ଆଉ ମିଳନ ପାଇଁ ଏଥର ଘର ଫର କଥା ନୁହେଁ । ଦେଖା ହେବ ଏଥର ପାଖର ଗୋଟିଏ ଅରଣ୍ୟରେ । ସେଠି ସ୍ୱାମୀ ନାମକ ଜାନୁଆର୍‌ର ଉତ୍ପାତ ନ ଥିବ । ତା'ଛଡ଼ା ପ୍ରକୃତିର ଶାନ୍ତ ଆଉ ନିର୍ଜନ କୋଳରେ, ଛାୟା ଆଉ ଅନ୍ଧକାରର ଗୋଳିଆମିଶା ପରିବେଶରେ ମିଳନ ହେବ ନିବିଡ଼ ଆଉ ମଧୁର । ଓକ୍ ଗଛର ମୋଟା ଗଣ୍ଡିର ଆଢୁଆଳରେ ସେମାନେ ଫଲଷ୍ଟାଫ୍‌ଙ୍କୁ ଅପେକ୍ଷା କରିବେ । କେହି ଯେମିତି ଚିହ୍ନି ନ ପାରନ୍ତି, ସେଥିପାଇଁ ଫଲଷ୍ଟାଫ୍ ସେଠାକୁ ଯିବେ ବନରକ୍ଷକ ହର୍ନର ଛଦ୍ମବେଶରେ ।

ଫଲଷ୍ଟାଫ୍ କୁଇକ୍ଲିର କଥାର ସୁଅରେ ଭାସିଯାଇ ଗୋଟାଏ ପ୍ରକାରର ଅଦ୍ଭୁତ ରୋମାଞ୍ଚ ଅନୁଭବ କରେ । ଚାରିଆଡ଼େ ଅରଣ୍ୟର ନିର୍ଜନତା, ପକ୍ଷୀର କୂଜନ ସହିତ ଉତଳା ପବନର ମନକିଣା ସ୍ପର୍ଶ । ତାରି ଭିତରେ ପ୍ରିୟତମା ସହିତ ମିଳନ... ଆଃ... ଉତ୍ତେଜନାରେ ଫଲଷ୍ଟାଫ୍‌ର ଦୁଇ ଆଖି ବୁଜି ହୋଇଯାଏ ।

ଆଜି ସେଇ ମିଳନର ଦିନ । ମଥାରେ ଦୁଇଟି କୃତ୍ରିମ ଶିଙ୍ଗ ଲଗାଇ ହର୍ନର ଛଦ୍ମବେଶରେ ଫଲଷ୍ଟାଫ୍ ବନପଥ ଧରି ଆଗେଇଚାଲେ । ପ୍ରିୟ ସମାଗମ ପାଇଁ ଆଉ କେତେ ଡେରି ? ଜଣେ ନୁହେଁ ଦୁଇ ଜଣ ତନ୍ୱୀ, ଶ୍ୟାମା । ବିମ୍ବାଧରୀ... ଉତ୍ସୁକ ନେତ୍ରରେ ଅନାଇ ରହିଛନ୍ତି ତା'ର ଆଗମନକୁ । ପତ୍ରର ମର୍ମର ଭିତରେ ଶୁଣୁଛନ୍ତି ତା'ରି ପଦଧ୍ୱନି । ଗୋପନ ପ୍ରେମର ଏଇତ ଆନନ୍ଦ... ଫଲଷ୍ଟାଫ୍ ଦୁଇଥରର ଅପମାନ ଆଉ ତାଡ଼ନା ଭୁଲିଯାଏ । ନିର୍ଜନ ବନପଥ ତା'ର ପଦପାତରେ ଶବ୍ଦାୟିତ ହୋଇ ଉଠେ । ସେ ଆଗେଇ ଚାଲେ ।

॥ ୩ ॥

ଅରଣ୍ୟର ଅନ୍ୟ ପ୍ରାନ୍ତରେ ଆଉ ଏକ ମିଳନ ନିମନ୍ତେ ବ୍ୟବସ୍ଥା କରାଯାଇଥାଏ । ଶ୍ରୀଯୁକ୍ତ ପେଜ୍ ଠିକ୍ କରିଥାଆନ୍ତି, ସ୍ଲେଣ୍ଡର କୌଣସିମତେ ଭୁଲାଭୁଲି କରି ଆନିକୁ ଏଇ ଅରଣ୍ୟକୁ ନେଇ ଆସିବ । ଏଇଠି ପେଜ୍ କନ୍ୟା ସମ୍ପ୍ରଦାନ କରିବେ ସ୍ଲେଣ୍ଡରକୁ । ଏଠି ଆଉ ଫେନ୍‌ଟନ୍‌ର କରଣି କାଟୁ କରିବ ନାହିଁ । ବିଚରା ଶିଶୁପାଳ ହୋଇ ଫେରିବ । ଆନି ପିନ୍ଧିଥିବ ସାଦା ପୋଷାକ ।

ଶ୍ରୀମତୀ ପେଜ୍ ଝିଅର ମନ ବୁଝି ଏ ବିବାହ ପାଇଁ ରାଜି ନୁହନ୍ତି । ଝିଅ ଯାହାକୁ ନେଇ ଜୀବନ କଟାଇବ, ସେ ତା'ର ପସନ୍ଦ ନୁହେଁ । କ'ଣ ମିଳିବ ତାଙ୍କୁ ସେ ଧନସମ୍ପଦରୁ ? ସେ ଅବଶ୍ୟ ଜାମାତା ରୂପେ ଡଃ କେୟାସ୍‌ଙ୍କୁ ବାଛିଥାନ୍ତି । ଏ ବିବାହ ହୋଇପାରିଲେ ଝିଅ ଅନ୍ତତଃ

ସୁଖରେ ରହିବ । ସେ କେୟାସ୍‌କୁ ଗୋପନରେ କହି ରଖିଛନ୍ତି ଉଇଣ୍ଡସର ଜଙ୍ଗଲରେ ଯେତେବେଳେ ପେଜ୍ ଫଲଷ୍ଟାଫ୍‌କୁ ନେଇ ବ୍ୟସ୍ତ ଥିବେ, ସେଇ ସମୟରେ ସେ ଯେମିତି ଆନିକୁ ଗିର୍ଜାକୁ ନେଇ ତାକୁ ବିବାହ କରିନିଅନ୍ତି । ଆନି ପିନ୍ଧିଥିବ ସବୁଜ ଗାଉନ୍ ।

ସ୍ଲେଣ୍ଡର ଜାଣେ, ଆନିର ପରିଧାନରେ ଥିବ ଧଳା ପୋଷାକ । ଡଃ କେୟାସ୍ ଜାଣନ୍ତି ସେ ପିନ୍ଧିଥିବ ସବୁଜ ଗାଉନ୍ । ଦୁହେଁ ପୋଷାକର ରଙ୍ଗକୁ ମନେରଖି ଅପେକ୍ଷା କରିଥାଆନ୍ତି ।

ବଣର ଆଉ ଏକ ଅଂଶରେ ଆହୁରି ଏକ ଚମତ୍କାର ଖେଳ ଚାଲିଛି । ଇଭାନ୍ସ ହୋଇଛି ବନ ଦେବତା । ଆଉ ତାକୁ ଘେରି ରହିଛନ୍ତି କିଛି ପୁଅଝିଅ । ସେମାନେ ସବୁ ପରୀର ବେଶ ପିନ୍ଧିଛନ୍ତି । ପରୀ ଭିତରୁ ଜଣେ ଅଛି ସାଦା ପୋଷାକରେ । ବାକି କିଛି ସବୁଜ ପୋଷାକ ପିନ୍ଧିଛନ୍ତି । ସମସ୍ତେ ଅପେକ୍ଷା କରିଛନ୍ତି ।

ରାତ୍ରି ଧୀରେ ଧୀରେ ଓହ୍ଲାଇ ଆସେ । ଚାରିଆଡ଼େ ନୀରବତା । ଏହି ସମୟରେ କପାଳର ଦୁଇପଟେ ଦୁଇଟା ଶିଙ୍ଗ ଖଞ୍ଜି ଫଲଷ୍ଟାଫ୍ ଆଗେଇ ଚାଲିଛି ଓକ୍ ଗଛ ଆଡ଼େ । ଶ୍ରୀମତୀ ଫୋର୍ଡ଼ ତା' ଆଡ଼କୁ ଧାଇଁଆସନ୍ତି । ତା' କପାଳର ଶିଙ୍ଗଆଡ଼କୁ ଅନାଇ ମଧୁର ସ୍ୱରରେ କହନ୍ତି, ହେ ମୋର ପ୍ରିୟ ହରିଣ, ତମେ ଯେ ସତରେ ଆସିବ ଏକଥା ମୁଁ ଭାବି ପାରି ନାହିଁ ।

-ତମେ ଡାକିବ ଆଉ ମୁଁ ଆସିବି ନାହିଁ,ଏ କଥା କ'ଣ ହୋଇପାରେ ? ତମକୁ ପାଇବା ପାଇଁ ମୁଁ ପାଗଳ ହୋଇଗଲିଣି । ଫଲଷ୍ଟାଫ୍ ଏତିକି କହି ଶ୍ରୀମତୀ ଫୋର୍ଡ଼୍‌କୁ ଜଡ଼ାଇ ଧରେ ।

ନିଜକୁ ତା' ଆଲିଙ୍ଗନରୁ ମୁକ୍ତ କରି ଶ୍ରୀମତୀ ଫୋର୍ଡ଼ କହନ୍ତି ଶ୍ରୀମତୀ ପେଜ୍ ମଧ ମୋ ସାଙ୍ଗରେ ଅଛନ୍ତି । ତମେ ଅନ୍ଧାରରେ ଦେଖିପାରି ନାହଁ ।

ଠିକ୍ ସେଇ ସମୟରେ ଅରଣ୍ୟର ନିର୍ଜନତା ଖଣ୍ଡ ଖଣ୍ଡ କରି ଭାଙ୍ଗି ଅଦୂରରେ ଶିଙ୍ଗାଟିଏ ବାଜିଉଠେ । ଶ୍ରୀମତୀ ଫୋର୍ଡ଼ ଭୟ ପାଇବା ଭଳି ଛଳନା କରି କହନ୍ତି, ଶିଙ୍ଗା ବାଜୁଛି କୋଉଠି ? ମୋତେ ଭାରି ଭୟ ଲାଗୁଛି । ଚାଲ, ଏଠୁ ପଳାଇବା, କିଏ ଆସିଲା ଭଳି ଲାଗୁଛି ।

ଶ୍ରୀମତୀ ଫୋର୍ଡ଼ ଆଉ ଶ୍ରୀମତୀ ପେଜ୍ ଅନ୍ଧାରରେ ଫଲଷ୍ଟାଫ୍‌କୁ ଛାଡ଼ି ଧାଇଁ ପଳାନ୍ତି । କୁଆଡୁ ଦଳେ ପରୀ ଆସି ତାକୁ ଘେରିଯାଆନ୍ତି । ତା' ଭିତରୁ ଜଣେ ସାଜିଥାଏ ଭୂତ । ତା'ର ସେଇ ଭୟଙ୍କର ରୂପ ଦେଖି ଫଲଷ୍ଟାଫ୍‌ର ରକ୍ତ ପାଣି ଫାଟିଯାଏ । ପରୀମାନେ ଫଲଷ୍ଟାଫ୍‌ର ଚାରିଆଡ଼େ ନାଚ ଆରମ୍ଭ କରି ଦିଅନ୍ତି । ନାଚୁ ନାଚୁ କିଏ ତାକୁ ପୁଳାଏ ଚିମୁଟି ଦେଉଥାଏ ତ କେହି ପୁଣି କୌଣସି ଧାରୁଆ ଅସ୍ତ୍ରରେ ତାକୁ କେଞ୍ଚି ଦେଉଥାଏ । ଜଣେ ତ ଜଳନ୍ତା ମହମବତିଟାଏ ଆଣି ତା' ଦେହରେ ଚେଙ୍କା ଦେଇ ଚାଲିଥାଏ । ପରୀମାନଙ୍କ ଭିତରେ ଆନି ମଧ ଥାଏ । ସେ ସମସ୍ତଙ୍କୁ ଟିହାଉଥାଏ, ଫଲଷ୍ଟାଫ୍‌କୁ ଅଧିକରୁ ଅଧିକ ଯନ୍ତ୍ରଣା ଦେବା ପାଇଁ ।

ହଠାତ୍ ସେଠାକୁ ଆସେ ସ୍ଲେଣ୍ଡର । ସାଦା ପୋଷାକ ପିନ୍ଧା ଜଣକୁ ଧରିନେଇ ସେ ଦୌଡ଼ି ବାହାରିଯାଏ । ସେ ଚାଲିଯିବା ପରେ ପରେ ସେଠାକୁ ଆସନ୍ତି ଡଃ କେୟାସ୍ । ସେ ବି ଜଣେ ସବୁଜ ପୋଷାକଧାରୀକୁ ଟାଣିନେଇ ଚାଲିଯାଆନ୍ତି । ରହିଯାଆନ୍ତି ଫଲଷ୍ଟାଫ୍ ଆଉ ଆନି ।

ଫେନ୍‌ଟନ୍ ଅଦୂରରେ ଏଇ ସୁଯୋଗର ଅପେକ୍ଷାରେ ରହିଥାଏ । ସେ ଧାଇଁଆସି ଆନିକୁ ନେଇ ଚାଲିଯାଏ । ଏଥର ଅନ୍ଧାର ଭିତରେ ଫଲଷ୍ଟାଫ୍ ଏକା । ଦେହସାରା ଯନ୍ତ୍ରଣା । ଦୁଃଖ ଆଉ ଅପମାନରେ ସେ ତା'ର ଶିଙ୍ଗ ଦୁଇଟାକୁ ଟାଣିଆଣି ବାହାରେ ଫୋପାଡ଼ି ଦିଏ । ସେତିକିବେଳେ ଶ୍ରୀମତୀ ଫୋର୍ଡ୍, ଶ୍ରୀମତୀ ପେଜ୍ ସେମାନଙ୍କ ସ୍ୱାମୀ ଦୁହିଁଙ୍କୁ ନେଇ ସେଠାରେ ପହଞ୍ଚି ଯାଆନ୍ତି । ଏଭଳି ଯେ ଘଟିପାରେ, ତାହା ଫଲଷ୍ଟାଫ୍ ସ୍ୱପ୍ନରେ ସୁଦ୍ଧା ଭାବି ନ ଥାଏ । ସେ ଭୟ ଆଉ ଲଜ୍ଜାରେ ଅସ୍ଥିର ହୋଇ ଦୌଡ଼ିବାକୁ ଆରମ୍ଭ କରେ । ବାଧା ଦିଅନ୍ତି ଫୋର୍ଡ୍ । ପେଜ୍ ମଧ ଆଗେଇ ଆସନ୍ତି ।

ସୟତାନ୍‌ଟାକୁ ହାତ ପାଖରେ ପାଇ ଦୁହେଁ ମନର ଓରମାନ ମେଣ୍ଟାଇବାରେ ଲାଗନ୍ତି । ଫୋର୍ଡ୍ ଗର୍ଜନ କରି କହନ୍ତି, ଆଗରୁ ଦୁଇଥର ତମେ ମୋ ଆଖିରେ ଧୂଳି ଦେଇ ଚମ୍ପଟ ମାରିଛ । ଆଜି ଆଉ ମୁଁ ତମକୁ ଛାଡ଼ୁ ନାହିଁ ।

ଶ୍ରୀମତୀ ପେଜ୍ କହନ୍ତି, ଏଇ ଯେ ବନ୍ଧୁ, ଏଥର ତମର ନିଶ୍ଚୟ ବିଶ୍ୱାସ ହୋଇଯାଇଥିବ ଯେ ତମେ ଉଇଣ୍ଡସରର ନାରୀମାନଙ୍କୁ ଯେମିତି ଭାବ, ସେମାନେ ମୋଟେ ସେମିତି ନୁହନ୍ତି ।

- ସେ କଥା ମୁଁ ହାଡ଼େ ହାଡ଼େ ବୁଝିପାରିଲିଣି । ପ୍ରକୃତରେ ମୁଁ ଗୋଟାଏ ନିର୍ବୋଧ ।

- ଖାଲି କ'ଣ ନିର୍ବୋଧ । ଆହୁରି ଅନେକ ବିଶେଷଣ ତମର ପ୍ରାପ୍ୟ । ଯେମିତି ଗଧ, ବଳଦ, ଷଣ୍ଢ..ଏମିତି କେତେ ।

ଯାଜକ ଇଭାନ୍ସ କହନ୍ତି, ବନ୍ଧୁ ତମେ ଭୁଲିଯାଇଛ ଯେ ତମେ ଏବେ ଆଉ ଠିକ୍ ଯୁବକ ହୋଇ ନାହଁ । ପ୍ରୌଢ଼ ହୋଇ ଯିଏ ଯୁବସୁଲଭ ଆଚରଣ କରେ ସେ ନିଜେ ହାସ୍ୟାସ୍ପଦ ହୁଏ । ତା' ଅପେକ୍ଷା ତମେ ବରଂ ଈଶ୍ୱରଙ୍କର ନାମ କୀର୍ତ୍ତନ କର । କାମନା ପଛରେ ଏମିତି ଅନ୍ଧ ଭାବରେ ନ ଦୌଡ଼ି ଜନକଲ୍ୟାଣ ପାଇଁ ନିଜକୁ ଉତ୍ସର୍ଗ କର । ଦେଖିବ ଅନାବିଳ ଆନନ୍ଦ ପାଇବ ।

-ଆପଣମାନଙ୍କ ହାତରେ ଯେତେବେଳେ ଧରା ପଡ଼ିଛି, ସେତେବେଳେ ଯାହା କହିବେ ତା' ମାନିବାକୁ ମୁଁ ବାଧ- ଫଲଷ୍ଟାଫ୍ କହେ ।

ପେଜ୍ କହନ୍ତି ତା' ତ ତମକୁ ମାନିବାକୁ ପଡ଼ିବ । ମୋର ଆଦେଶ, ତମେ ଆଜି ରାତିରେ ଆମ ସାଙ୍ଗରେ ଖାଇବ । ଖାଇବାବେଳେ ମୋ ସ୍ତ୍ରୀର ଆଖିରେ ଆଖି ମିଳାଇ ଗପ କରିବାକୁ ହେବ , ହସିବାକୁ ହେବ । ସଙ୍କୋଚ କଲେ ଚଳିବ ନାହିଁ । କ'ଣ, ମୋର ଏ ପ୍ରସ୍ତାବରେ ତମେ ରାଜି ତ ?

-ଏତିକିବେଳେ ମୁହଁ ଶୁଖାଇ ସ୍ଲେଣ୍ଡର ଫେରିଆସେ । ତାକୁ ଦେଖି ପେଜ୍ କହନ୍ତି-ଏଇ ତ ତମେ, ସବୁ ଠିକ୍‌ଠାକ୍ ଚାଲିଛି ତ ? ଆଶା କରୁଛି, ତମେ ଆନିକୁ ନେଇ ଗଲାବେଳେ କିଛି ଝମେଲା ହୋଇ ନାହିଁ ।

- ନା ନେଲାବେଳେ ତ ଝମେଲା ହୋଇ ନାହିଁ । ତେବେ ଯାହାକୁ ନେଇଯାଇଛି ସେ ଆନି ନୁହେଁ । ପୋଷ୍ଟମାଷ୍ଟରଙ୍କ ଝିଅ । ସ୍ଲେଣ୍ଡର କହେ ।

ଇତି ମଧ୍ୟରେ କେୟାସ୍ ବି ଫେରିଆସନ୍ତି । ସେ ହତାଶ ସ୍ୱରରେ କହନ୍ତି- ଆନିକୁ ନେଇ ଖୁସିରେ ନାଚି ନାଚି ମୁଁ ଯେତେବେଳେ ଗିର୍ଜାରେ ପହଞ୍ଚେ, ସେତେବେଳେ ସେଠାର ଆଲୁଅରେ ଦେଖିପାରେ, ଯାହାକୁ ଧରି ଆଣିଛି, ସେ ମୋଟେ ଆନି ନୁହେଁ ନିଶଧାରୀ କେହି ଟୋକା ।

ସବାଶେଷରେ ସେଠାରେ ପହଞ୍ଚନ୍ତି ଆନି ଆଉ ଫେନ୍‌ଟନ୍ । ଲାଜ ଆଉ ଭୟ ମିଶା ସ୍ୱରରେ ଆନି କହେ- ବାପା, ମା-ତମମାନଙ୍କର ଇଚ୍ଛା ମୁଁ ପୂର୍ଣ୍ଣ କରିପାରି ନାହିଁ । ଏଥିପାଇଁ ତମେମାନେ ମୋତେ କ୍ଷମା କର । ତେବେ ଏହା ଛଡ଼ା ମୋର ଆଉ ଅନ୍ୟ ଉପାୟ ନ ଥିଲା । ଜଣକୁ ଭଲପାଇ, ଆଉ ଜଣକୁ ବିବାହ କରିବାକୁ ମୋର ବିବେକ ମୋତେ ବାଧା ଦେଲା । ଫେନ୍‌ଟନ୍‌କୁ ମୁଁ ଭଲପାଏ । ମନତ ଦୁଇଭାଗ କରିବାର ବସ୍ତୁ ନୁହେଁ ।

ପେଜ୍‌ଦମ୍ପତି ବରବଧୂଙ୍କୁ ଗ୍ରହଣ କରି ନିଅନ୍ତି । କହନ୍ତି 'ଈଶ୍ୱର ତମମାନଙ୍କର ମଙ୍ଗଳ କରନ୍ତୁ । ଦୁହେଁ ସୁଖୀ ହୁଅ ।'

# ଟ୍ରାଜେଡ଼ି



ମାକ୍‌ବେଥ୍



ଜୁଲିୟସ୍ ସିଜର



ହାମଲେଟ୍



ଆଣ୍ଟୋନି ଏଣ୍ଡ୍ କ୍ଲିଓପେଟ୍ରା

# ମାକ୍‌ବେଥ୍

॥ ୧ ॥

ଯୁଦ୍ଧକ୍ଷେତ୍ରରୁ ଫେରୁଥିଲେ ରାଜା ଡନ୍‌କାନ୍‌ଙ୍କର ଦୁଇ ବିଜୟୀ ସେନାପତି ମାକ୍‌ବେଥ୍ ଏବଂ ବାଙ୍କୋ। ସେମାନଙ୍କର ଲକ୍ଷ୍ୟ ଫୋରସ୍‌ର ପ୍ରାସାଦ। ସ୍କଟଲାଣ୍ଡର ଏଇ ପ୍ରଜାବତ୍ସଳ ରାଜାଙ୍କ ବିରୋଧରେ ହୋଇଥିବା ଗୋଟିଏ ବଡ଼ଧରଣର ବିଦ୍ରୋହକୁ ସେମାନେ ବିଫଳ କରି ଦେଇଛନ୍ତି। କେବଳ ସେତିକି ନୁହେଁ। ଏଇ ବିଦ୍ରୋହର ସୁଯୋଗ ନେଇ ନରୱେର ସୈନ୍ୟବାହିନୀ ସ୍କଟଲାଣ୍ଡ ଆକ୍ରମଣ ଆରମ୍ଭ କରିଦେଇଥିଲେ। ସେମାନଙ୍କୁ ସାହାଯ୍ୟ ଯୋଗାଇ ଦେଇଥିଲେ କଡ଼ୋରର ଅଧିପତି ଡନ୍‌କାନ୍‌ଙ୍କର ଜଣେ ସାମନ୍ତ। ମାକ୍‌ବେଥ୍‌ଙ୍କର ଅପୂର୍ବ ସାହସ ଆଉ ଅତୁଳନୀୟ ବୀରତ୍ୱ ଏଇ ତିନି ମିଳିତ ଶକ୍ତିର ଆକ୍ରମଣକୁ ପ୍ରତିହତ କରିଦେଇ ପାରିଛି। ଯୁଦ୍ଧର ଗତି ବଦଳି ଯାଇଛି।

ଶିବିରରେ ଗତ କେଇ ଦିନ ରାଜା ଡନ୍‌କାନ୍‌ଙ୍କର ବଡ଼ ଉଦ୍‌ବେଗ ଆଉ ଆଶଙ୍କା ଭିତରେ କଟିଯାଇଛି। ଯୁଦ୍ଧ ଜୟର ଖବର ପାଇ ଏବେ ସେ ଚିନ୍ତାମୁକ୍ତ ହୋଇଛନ୍ତି। ଅତି ଆଗ୍ରହରେ ପ୍ରତୀକ୍ଷା କରୁଛନ୍ତି ତାଙ୍କର ଦୁଇ ବିଜୟୀ ସେନାପତିଙ୍କୁ। ସେମାନଙ୍କୁ ସେ ସମ୍ମାନିତ କରିବେ।

ଆକାଶରେ କଳା କଳା ମେଘର ଫଉଜ ଚାରିଆଡ଼ ଛାଇ ଯାଇଛନ୍ତି। ଆକାଶର ଛାତି ଚିରି ବେଳେ ବେଳେ ଝଲସି ଉଠୁଛି ବିଦ୍ୟୁତ୍‌ର ସ୍ୱର୍ଣ୍ଣଦ୍ୟୁତି- ଠିକ୍ କୌଣସି ଅଶରୀରୀର ବଙ୍କା ହସ ଭଳି। ତା' ସହିତ ଶୁଣାଯାଉଛି ମେଘ କନ୍ୟାର ଅଟ୍ଟହାସ୍ୟ- ବଜ୍ରର କର୍ଣ୍ଣଦାହୀ ନିନାଦରେ। ପୃଥିବୀ ଥର ଥର ହୋଇ କମ୍ପି ଉଠୁଛି। ଏହିଭଳି ଦୁର୍ଯୋଗ ଭିତରେ ଫେରୁଥିଲେ ଦୁଇ ସେନାପତି।

ଆକାଶଆଡ଼େ ଅନାଇ ମାକ୍‌ବେଥ୍ ଚିନ୍ତା କରୁଥିଲେ, ପ୍ରକୃତିର ଏଇ ଯେ ରୁଦ୍ର ଆଉ ସୁନ୍ଦର ରୂପ - ତାହା ଅନେକ ଦିନରୁ ତାଙ୍କ ଆଖିରେ ପଡ଼ି ନାହିଁ। ବିଭୀଷିକା ମଧ୍ୟରେ ଯେ ସୌନ୍ଦର୍ଯ୍ୟ ଲୁଚିଥାଏ, ଏହା ସେ ପ୍ରଥମଥର ପାଇଁ ଅନୁଭବ କରୁଛନ୍ତି। ହଠାତ୍ ଗୋଟିଏ ବିଚିତ୍ର ଦୃଶ୍ୟ ଦେଖି ସେ ଅଟକି ଯାଆନ୍ତି। ବାଙ୍କୋ ମଧ୍ୟ ସେଇଆଡ଼େ ଅନାଇ ରହନ୍ତି।

ସେମାନେ ଦେଖନ୍ତି, ତିନୋଟି ଅଦ୍ଭୁତ ନାରୀ ମୂର୍ତ୍ତି - ନାରୀ - ଅଥଚ ମୁହଁରେ ଦାଢ଼ି- କଙ୍କାଳସାର ଚେହେରା। ବାଙ୍କୋ ପଚାରନ୍ତି - ଏମାନେ କ'ଣ ଜାଗତିକ ପ୍ରାଣୀ ନା କୌଣସି ପ୍ରେତମୂର୍ତ୍ତି ?

ପ୍ରକୃତରେ ସେମାନେ ହେଉଛନ୍ତି ଡାହାଣୀ - ତିନିଜଣଯାକ ମାକ୍‌ବେଥ୍‌ଙ୍କର ଅପେକ୍ଷାରେ ଥାଆନ୍ତି । ବାଙ୍କୋଙ୍କର କୌଣସି ପ୍ରଶ୍ନର ଉତ୍ତର ସେମାନେ ଦିଅନ୍ତି ନାହିଁ । ପ୍ରଥମ ଡାହାଣୀ ମାକ୍‌ବେଥ୍‌ଙ୍କୁ କହେ ଗ୍ଲାମିସ୍‌ର ରାଜାଙ୍କୁ ମୋର ଅଭିନନ୍ଦନ । ଦ୍ୱିତୀୟ ଡାହାଣୀ ଯୋଗ କରେ - କଡ଼ୋରର ଅଧିପତିଙ୍କୁ ସ୍ୱାଗତ କରୁଛି । ଶେଷ ତୃତୀୟ ଡାହାଣୀ କହେ - ସ୍କଟଲାଣ୍ଡର ଭାବୀ ସମ୍ରାଟ୍, ତମକୁ ସ୍ୱାଗତ ଜଣାଉଛି ।

ଡାହାଣୀମାନଙ୍କୁ ଦେଖି ମାକ୍‌ବେଥ୍ ଯେତିକି ଚକିତ ହୋଇ ନ ଥିଲେ, ସେମାନଙ୍କ କଥାରେ ତାହା ଅପେକ୍ଷା ଅଧିକ ଚମତ୍କୃତ ହେଲେ । ସେ ଗ୍ଲାମିସ୍‌ର ସାମନ୍ତ ହେବାକୁ ଯାଉଛନ୍ତି, ଏକଥା ସେ ଜାଣନ୍ତି । କିନ୍ତୁ କଡ଼ୋରର ଅଧିପତିଙ୍କ ବର୍ତ୍ତମାନରେ ସେ କିଭଳି ସେଠାର ସିଂହାସନରେ ବସିବେ ? ଆଉ ସ୍କଟଲାଣ୍ଡର ରାଜା, ସେ ତ ଅଳୀକ ସ୍ୱପ୍ନ ମାତ୍ର । ତାଙ୍କୁ ବିଚଳିତ ହୋଇପଡ଼ିବାର ଦେଖି ବାଙ୍କୋ ଡାହାଣୀମାନଙ୍କୁ କହନ୍ତି, ମୋର ଏଇ ବନ୍ଧୁଙ୍କ ସମ୍ପର୍କରେ ଅନେକ କଥା କହି ତମେମାନେ ତାଙ୍କୁ ବିବ୍ରତ କରି ଦେଇଛ । ମୋ ସମ୍ପର୍କରେ କ'ଣ ତମମାନଙ୍କର କିଛି ବକ୍ତବ୍ୟ ନାହିଁ ?

ପ୍ରଥମ ଡାହାଣୀ କହେ - 'ଗୋଟାଏ ଦିଗରୁ ବିଚାର କଲେ, ତମେ ମାକ୍‌ବେଥ୍‌ଠାରୁ ଛୋଟ, ପୁଣି ଅନ୍ୟ ଦିଗରୁ ଯଥେଷ୍ଟ ବଡ଼ ।'

ଦ୍ୱିତୀୟା ଯୋଗ କରେ - 'ଗୋଟାଏ ଦୃଷ୍ଟିରୁ ତମେ ମାକ୍‌ବେଥ୍ ଭଳି ଏତେ ସୁଖୀ ନୁହଁ । ପୁଣି ଅନ୍ୟ ଦିଗରୁ ତାଙ୍କଠୁଁ ଢେର୍ ସୁଖୀ ।'

ତୃତୀୟାର ବକ୍ତବ୍ୟ - 'ତମେ ନିଜେ ସ୍କଟଲାଣ୍ଡର ରାଜା ହେବ ନାହିଁ । କିନ୍ତୁ ତମ ବଂଶର ଅନେକେ ଏ ସୁଯୋଗ ପାଇବେ ।'

ଏହା ପରେ ତିନିଜଣଯାକ ଯେମିତି ପବନରେ ମିଳାଇ ଯାଆନ୍ତି ।

ବାଙ୍କୋ ଏବଂ ମାକ୍‌ବେଥ୍ ବିସ୍ମୟର ପ୍ରଥମ ଧକ୍କା ସମ୍ଭାଳି ନ ଉଠୁଣୁ ସେଠାରେ ଉପସ୍ଥିତ ହୁଅନ୍ତି ରାଜାଙ୍କର ଦୁଇ ଦୂତ । ସେମାନଙ୍କଠାରୁ ଜାଣିବାକୁ ମିଳେ ଯେ, ନରୱେ ବାହିନୀକୁ ସାହାଯ୍ୟ କରିଥିବାରୁ କଡ଼ୋର ଅଧିପତିଙ୍କୁ ପ୍ରାଣଦଣ୍ଡ ଦିଆଯାଇଛି ଏବଂ ତାଙ୍କ ସ୍ଥାନରେ ମାକ୍‌ବେଥ୍‌ଙ୍କୁ ନିଯୁକ୍ତି ଦିଆଯାଇଛି । ଯୁଦ୍ଧକ୍ଷେତ୍ରରେ ମାକ୍‌ବେଥ୍ ଯେଉଁ ବୀରତ୍ୱ ଦେଖାଇଛନ୍ତି, ସେଥିପାଇଁ ତାଙ୍କୁ ଏଇ ପୁରସ୍କାର ଦିଆଯାଇଛି । ଡାହାଣୀମାନଙ୍କର ଦୁଇଟି କଥା ସଦ୍ୟ ଫଳିଗଲା । ଆଉ ତୃତୀୟଟା ? ମାକ୍‌ବେଥ୍‌ଙ୍କ ମନ ତଳେ ଆଶାର ଶିଖାଟିଏ ଦାଉ ଦାଉ ହୋଇ ଜଳିବାରେ ଲାଗେ । ବାଙ୍କୋ ନୀରବରେ ତାଙ୍କୁ ଲକ୍ଷ୍ୟ କରୁଥାଆନ୍ତି । କହନ୍ତି - 'ବନ୍ଧୁ, ଅଶରୀରୀମାନଙ୍କର କିଛି କିଛି କଥା ଫଳିଗଲେ ମଧ ଏହାର ଅନ୍ତିମ ପରିଣାମ ଭଲ ହୁଏ ନାହିଁ ।'

ମାକ୍‌ବେଥ୍‌ଙ୍କର ଏ ସବୁ କଥାରେ ମନ ନାହିଁ । ତାଙ୍କ ଆଖି ଆଗରେ ସେତେବେଳେ ଗୋଟାଏ ସ୍ୱପ୍ନ - ରାଜମୁକୁଟ । ତା'ର ଅର୍ଥ ବର୍ତ୍ତମାନର ରାଜାଙ୍କର ମୃତ୍ୟୁ କିମ୍ବା ହତ୍ୟା । ସେ କଥା କ'ଣ ସମ୍ଭବ ? ତାଙ୍କର ରୋମ ଟାଙ୍କୁରି ଉଠେ ।

ଫୋରେସ୍ ଉଆସରେ ଥାଇ ଡନ୍‌କାନ୍ ଖବର ପାଇଯାଆନ୍ତି ଯେ, କଡ଼ୋରର ମୃତ୍ୟୁ ଦଣ୍ଡାଦେଶ କାର୍ଯ୍ୟକାରୀ ହୋଇଯାଇଛି । ସେ ଚିନ୍ତା କରନ୍ତି - ମଣିଷର ମୁହଁ କ'ଣ କେବେ ତା'ର ମନର ସୂଚୀପତ୍ର ହୋଇପାରେ ? କଡ଼ୋର ସାମନ୍ତଙ୍କ ଉପରେ ତାଙ୍କର କେତେ ବିଶ୍ୱାସ ଥିଲା । ସେଇ ବିଶ୍ୱାସର ପରିଣାମ କ'ଣ ହେଲା ?

ମାକ୍‌ବେଥ୍ ଆଉ ବାଙ୍କୋ ଆସୁଥିବାର ରାଜାଙ୍କ ଆଖିରେ ପଡ଼େ । ରାଜା ସିଂହାସନରୁ ଉଠିପଡ଼ି ମାକ୍‌ବେଥ୍‌ଙ୍କୁ ଆଲିଙ୍ଗନ କରନ୍ତି । ତାଙ୍କୁ 'ଭାଇ' ବୋଲି ସମ୍ବୋଧନ କରି ଜଣାଇ ଦିଅନ୍ତି ଯେ, ସେ ଆଜୀବନ ତାଙ୍କ ନିକଟରେ ଋଣୀ ରହିବେ । ଉତ୍ତରରେ ମାକ୍‌ବେଥ୍ ସେ କେବଳ ତାଙ୍କର କର୍ତ୍ତବ୍ୟ ମାତ୍ର କରିଛନ୍ତି ବୋଲି କହନ୍ତି । ଡନ୍‌କାନ୍ ବାଙ୍କୋଙ୍କ ଆଡ଼କୁ ପ୍ରୀତିପୂର୍ଣ୍ଣ ଦୃଷ୍ଟିରେ ଚାହିଁ ତାଙ୍କୁ ମଧ୍ୟ ପ୍ରଶଂସା କରନ୍ତି । ତା'ପରେ ଦୁଇଜଣଙ୍କୁ କହନ୍ତି ରାଜପୁତ୍ର ମାଲକମ୍‌କୁ ମୁଁ କାମ୍ବରଲାଣ୍ଡର ଯୁବରାଜ ପଦରେ ବସାଇବାକୁ ଚାହେଁ । ଏ ବିଷୟରେ ଆପଣମାନଙ୍କର ମତ କ'ଣ ?

ଉଭୟେ ପ୍ରସ୍ତାବକୁ ସମର୍ଥନ କରନ୍ତି ।

ଡନ୍‌କାନ୍ ମାକ୍‌ବେଥ୍‌ଙ୍କ ସହିତ ତାଙ୍କର ସମ୍ପର୍କକୁ ଆହୁରି ପ୍ରୀତିପୂର୍ଣ୍ଣ କରିବାକୁ ଚାହାନ୍ତି । ତେଣୁ ସେ ଇନଭାର୍ନେସ୍‌ରେ ଥିବା ମାକ୍‌ବେଥ୍‌ଙ୍କର ଦୁର୍ଗରେ ରାତିଟିଏ ଅତିଥି ରୂପରେ ରହିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । ଏହା ଏକ ବିରଳ ରାଜକୀୟ ସମ୍ମାନ । ଆତିଥ୍ୟରେ ଯେଉଁଭଳି ସାମାନ୍ୟ ତ୍ରୁଟି ନ ରହେ, ସେଇ ବ୍ୟବସ୍ଥା କରିବା ପାଇଁ ମାକ୍‌ବେଥ୍ ପୂର୍ବରୁ ଇନ୍‌ଭାର୍ନେସ୍ ଚାଲିଯାଆନ୍ତି । ମାଲକମ୍ ର ଯୌବରାଜ୍ୟ ତାଙ୍କୁ ଅସନ୍ତୁଷ୍ଟ କରିଥାଏ, ମାତ୍ର ତାହା ବାହାରେ ପ୍ରକାଶ କରନ୍ତି ନାହିଁ । ନିଜ ଉଚ୍ଚାକାଂକ୍ଷା ପଥରେ ଏହା ଏକ ବିରାଟ ପ୍ରତିବନ୍ଧକ ବୋଲି ତାଙ୍କର ମନେହୁଏ । ଯେକୌଣସିମତେ ଏହାକୁ ଦୂର କରିବା ପାଇଁ ସେ ମନେ ମନେ ସ୍ଥିର କରିନିଅନ୍ତି ।

ଡନ୍‌କାନ୍ କିନ୍ତୁ ମାକ୍‌ବେଥ୍‌ଙ୍କର ବୀରତ୍ୱର ପ୍ରଶଂସାରେ ଶତମୁଖ ହୋଇଥାଆନ୍ତି । ମାକ୍‌ବେଥ୍ ପୂର୍ବରୁ ଡାହାଣୀମାନଙ୍କର ତାଙ୍କ ସମ୍ପର୍କରେ ଭବିଷ୍ୟତ୍ ବାଣୀ ପ୍ରସଙ୍ଗଟି ତାଙ୍କ ସ୍ତ୍ରୀଙ୍କୁ ପତ୍ର ଦ୍ୱାରା ଜଣାଇ ଦେଇଥାଆନ୍ତି । ଏକଥା ମଧ୍ୟ ଲେଖିଥାଆନ୍ତି ଯେ ଅଳ୍ପ ବ୍ୟବଧାନରେ ସେମାନଙ୍କର ଦୁଇଟି ଭବିଷ୍ୟତ୍ ବାଣୀ ଯେତେବେଳେ ସତ୍ୟ ପ୍ରମାଣିତ ହୋଇସାରିଛି, ତାଙ୍କର ଦୃଢ଼ ବିଶ୍ୱାସ ଅଚିରେ ତୃତୀୟ କଥାଟି ମଧ୍ୟ ଫଳିଯିବ । ସେଇ ସୁଦିନରେ ଲେଡିମାକ୍‌ବେଥ୍ ହେବେ ସ୍କଟଲାଣ୍ଡର ରାଣୀ । ଲେଡି ଜାଣନ୍ତି ତାଙ୍କ ସ୍ୱାମୀ

ଉଚ୍ଚାଭିଳାଷୀ, କିନ୍ତୁ ସେ ବଡ଼ ଭଲ, ଖୁବ୍ ବେଶି ଭଲ -କାଦୁଅରେ ପଶିବାକୁ କଦାପି ଚାହାନ୍ତି ନାହିଁ । ଅଥଚ ରାଜା ସମ୍ମାନ ପାଇବାର ବାଟଟି ସବୁବେଳେ ପଙ୍କିଳ ।

ଲେଡି ସ୍ଥିର କରି ନିଅନ୍ତି, ସ୍ୱାମୀଙ୍କୁ ବାଟ କଢ଼ାଇ ଆଗକୁ ନେଇଯିବାର ଦାୟିତ୍ୱ ଏଣିକି ତାଙ୍କର । ଦରକାର ହେଲେ ସେ ଏଥିପାଇଁ ସ୍ୱାମୀଙ୍କୁ ବାଧ କରିବେ । ବାକ୍ୟବାଣରେ ତାଙ୍କୁ ଅସ୍ଥିର କରିବେ । ନ ହେଲେ ତାଙ୍କ ଦ୍ୱାରା କଦାପି ଏ କାର୍ଯ୍ୟ ହେବ ନାହିଁ । ଏହି ସମୟରେ ଦୂତଠାରୁ ସମ୍ବାଦ ମିଳେ ଯେ, ମହାରାଜ ଆଜି ରାତିରେ ତାଙ୍କର ଅତିଥି ହେବେ ଲେଡି ତତ୍‌କ୍ଷଣାତ୍ ନିଷ୍ପତ୍ତି ନେଇ ନିଅନ୍ତି । ସେ ଭାବନ୍ତି, ସୁଯୋଗ କାମ୍ୟ, ହୋଇପାରେ, ମାତ୍ର ସୁଲଭ୍ୟ ନୁହେଁ । ଆପେ ଯେଉଁ ସୁଯୋଗ ତାଙ୍କ ହାତ ପାଖରେ ଆସି ଉପସ୍ଥିତ ହୋଇଛି, ତାକୁ ସେ କଦାପି ବ୍ୟର୍ଥ ହେବାକୁ ଦେବେ ନାହିଁ । ନ୍ୟାୟ ଅନ୍ୟାୟ, ପାପପୁଣ୍ୟ - ଏ ସବୁକୁ ବର୍ତ୍ତମାନ ପାଇଁ ଭୁଲିଯିବାକୁ ହେବ ।

ଏହି ସମୟରେ ମାକ୍‌ବେଥ୍ ସେଠାକୁ ଆସନ୍ତି ।

ଲେଡିଙ୍କ ପାଟିରୁ ବାହାରିଯାଏ, ଗ୍ଲାମିସ୍ ଓ କଡ଼ୋରର ମହାନ୍ ଅଧିପତି, ତମେ ଅଧିକ ରାଜସମ୍ମାନ ଲାଭ କରିବାକୁ ଯାଉଛ । ତମର ଚିଠି ଭବିଷ୍ୟତ୍‌ର ସେଇ ଉଜ୍ଜ୍ୱଳ ସମ୍ଭାବନାକୁ ମୋ ଆଗରେ ଖୋଲି ଦେଇଛି ।

ମାକ୍‌ବେଥ୍‌ଙ୍କ ମନ ଖୁସି ହୋଇଯାଏ । ସେ ସ୍ତ୍ରୀଙ୍କୁ ଜଣାଇଦିଅନ୍ତି ଯେ, ରାଜା ଡନ୍‌କାନ୍ ତାଙ୍କ ଦୁର୍ଗରେ ରାତିଟି କଟାଇବେ ।

ଲେଡି ପ୍ରଶ୍ନ କରନ୍ତି - ସେ ଫେରିବେ କେବେ ?

ମାକ୍‌ବେଥ୍ କହନ୍ତି - ମାତ୍ର ଗୋଟିଏ ରାତିର ଅତିଥି ସକାଳେ ହିଁ ଫେରିଯିବେ । ଲେଡି ତୀକ୍ଷ୍ଣ ସ୍ୱରରେ କିନ୍ତୁ ଚାପା କଣ୍ଠରେ କହନ୍ତି - ତାଙ୍କ ଜୀବନରେ ସେଇ ସକାଳ ଆଉ କେବେବି ଆସିବ ନାହିଁ । ତମ ମୁହଁରୁ ଏଇ ଦୁଶ୍ଚିନ୍ତାର ଛାଇକୁ ପୋଛି ପକାଅ । ଅନେକେ ଅନେକ କିଛି ଭାବିପାରନ୍ତି । କାର୍ଯ୍ୟ ଶେଷ ନ ହେବା ପର୍ଯ୍ୟନ୍ତ ଯଥାସମ୍ଭବ ସ୍ୱାଭାବିକ ରହିବାକୁ ଚେଷ୍ଟା କର । ରାଜାଙ୍କୁ ଅଭ୍ୟର୍ଥନା ଜଣାଇବାକୁ ହେବ, ତାଙ୍କର ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ରାତିର ଦାୟିତ୍ୱ ମୋର । ଆଜି ରାତିରେ ଆମକୁ ଏମିତି ଗୋଟିଏ କାର୍ଯ୍ୟ କରିବାକୁ ହେବ, ଯାହା ଫଳରେ ଆମେ ସାର୍ବଭୌମ କ୍ଷମତା ପାଇଯାଇପାରିବା ।

ମାକ୍‌ବେଥ୍‌ଙ୍କ ମନରେ ତଥାପି ଦ୍ୱିଧା । ସେ କହନ୍ତି, ଆମେ ପରେ ଏ ବିଷୟରେ ଆଲୋଚନା କରିବା ।

ଡନ୍‌କାନ୍ ଆସିଯାଆନ୍ତି । ଦୁର୍ଗର ଅବସ୍ଥାନ ଦେଖି ଖୁବ୍ ଖୁସି ହୋଇଯାଆନ୍ତି । ବାଙ୍କୋଙ୍କୁ କହନ୍ତି, ଏଠାର ମୃଦୁମନ୍ଦ ପବନରେ ପଥର ସବୁ କ୍ଳାନ୍ତି ଦୂର ହୋଇଯିବ । ଲେଡିଙ୍କର ଆତିଥ୍ୟ

ତାଙ୍କୁ ମୁଗ୍ଧ କରେ । ଲେଡି ଅବଶ୍ୟ କହନ୍ତି ଯେ, ରାଜା ସେମାନଙ୍କୁ ଯେଉଁ ସମ୍ମାନ ଦେଇଛନ୍ତି, ତା' ପାଖରେ ଏ ସବୁ ସେବାଯତ୍ନ ନିତାନ୍ତ ତୁଚ୍ଛ । ଆହୁରି କହନ୍ତି, ଏଠି ଆମର ଯାହା କିଛି ଅଛି, ସେ ସବୁ ତ ଆପଣଙ୍କର ଦାନ । ଏଇ ସେବା ହେଉଛି ତା'ର ସାମାନ୍ୟ ପ୍ରତିଦାନ ମାତ୍ର ।

ମାକ୍‌ବେଥ୍‌ଙ୍କ ମନରେ ଝଡ଼ । ପରିକଳ୍ପିତ ହତ୍ୟାକାଣ୍ଡର ପ୍ରତିକ୍ରିୟା କ'ଣ ହୋଇ ପାରେ, ସେଇ କଥା ଭାବି ସେ ବ୍ୟସ୍ତ । ଯେଉଁ ବିଷପାତ୍ର ଆମେ ଅନ୍ୟ ହାତକୁ ଟେକି ଦେଉ, ନ୍ୟାୟର ବିଧାନରେ ତାହା କ'ଣ ଶେଷ ପର୍ଯ୍ୟନ୍ତ ନିଜ ପାଖକୁ ଫେରିଆସେ ନାହିଁ ? ରାଜା ଗଭୀର ବିଶ୍ୱାସ ନେଇ ତାଙ୍କ ଦୁର୍ଗକୁ ଆସିଛନ୍ତି । ସେ ତାଙ୍କର ଆତ୍ମୀୟ ଏବଂ ପ୍ରଜା ମଧ୍ୟ । ରାଜା ପୁଣି ତାଙ୍କର ଅତିଥି । ଅତିଥିଙ୍କୁ ଯେକୌଣସି ବିପଦରୁ ରକ୍ଷା କରିବା ହେଉଛି ଗୃହସ୍ୱାମୀର କର୍ତ୍ତବ୍ୟ, ତାଙ୍କୁ ହତ୍ୟା କରିବା ନୁହଁ । ପୁଣି ଡନ୍‌କାନ୍ ପ୍ରଜାପୀଡ଼କ ନୁହନ୍ତି । ପ୍ରଜାପାଳକ ରାଜାଙ୍କ ପ୍ରତି ସମସ୍ତଙ୍କର ସମବେଦନା ନିଶ୍ଚୟ ପ୍ରକାଶ ପାଇବ । ଶୋକର ଜୁଆର ଛୁଟିବ । ଆକାଶ ପାତାଳ ମାକ୍‌ବେଥ୍‌ଙ୍କର ନିନ୍ଦା ଆଉ ସମାଲୋଚନାରେ ଭରିଯିବ । ସେ ସବୁର କଥା ଚିନ୍ତା କରି ଯାହା କିଛି ପଦକ୍ଷେପ ନେବାକୁ ହେବ ।

ଲେଡି ମାକ୍‌ବେଥ୍ ଘର ଭିତରକୁ ଆସନ୍ତି । ମାକ୍‌ବେଥ୍ ତାଙ୍କୁ ରାଜାଙ୍କର ଖବର ପଚାରନ୍ତି । ଲେଡି କହନ୍ତି ଯେ, ରାଜା ରାତି ଖାଇବା ଶେଷ କରି ସାରିଲେଣି । ଏଥର ବିଶ୍ରାମ ନେବେ ।

ଅତି ସନ୍ତର୍ପଣରେ ମାକ୍‌ବେଥ୍ କହନ୍ତି - ଏଥର ଆମେ କିଛି କରିବା ଠିକ୍ ହେବ ନାହିଁ । ସେ ନିକଟରେ ମୋତେ ସମ୍ମାନିତ କରିଛନ୍ତି । ଆମେ ସବୁ ଶ୍ରେଣୀର ଲୋକଙ୍କଠାରୁ ପ୍ରଚୁର ଶ୍ରଦ୍ଧା ପାଇଛୁ । ଏବେ ଏଇ ହତ୍ୟାକାଣ୍ଡରେ ନିଜକୁ ଜଡ଼ିତ କଲେ ଆମେ ସବୁ କିଛି ହରାଇବା ।

ଲେଡି ସ୍ୱାମୀଙ୍କୁ ତୀବ୍ର ଭାବରେ ଭର୍ତ୍ସନା କରି କହନ୍ତି, ଏଇ ଆକାଙ୍କ୍ଷା ଯେତେବେଳେ, ତମ ମନରେ ସୃଷ୍ଟି ହେଲା, ସେତେବେଳେ ହୃଦୟରେ ଦମ୍ଭ ଥିଲା, ବୁକୁରେ ସାହସ ଥିଲା । ଏବେ ସେ ସବୁ କୁଆଡ଼େ ଗଲା ? ସତ୍ୟ ନିଷ୍ଠା ପାଇଁ ତମେ ସାରା ଜୀବନ କାପୁରୁଷ ହୋଇ ରହିଯିବ ।

ସ୍ତ୍ରୀଙ୍କର ଉଦ୍‌ବୋଧନରେ ମାକ୍‌ବେଥ୍‌ଙ୍କର ମନ ବଦଳିଯାଏ । କହନ୍ତି, ଏବେ ଅନୁଗ୍ରହ କରି ଚୁପ୍ ରହ । ପ୍ରକୃତ ପୁରୁଷର ଯାହା କରିବା ଉଚିତ ମୁଁ ସେଇଆ କରିବି । ସାହସ ଯାହାର ନାହିଁ, ସେ କେଉଁ ମଣିଷରେ ଗଣା ?

ଲେଡି ତଥାପି ଛାଡ଼ନ୍ତି ନାହିଁ । କହନ୍ତି ତମେ ଯେତେବେଳେ ଏଇ ପରିକଳ୍ପନା କଥା କହିଥିଲ, ସେତେବେଳେ ତମ ଭିତରେ ଦୃଢ଼ତା ଆଉ ସାହସ - ଏ ଦୁଇ ବସ୍ତୁ ଥିଲା । ଏବେ

ତମେ ଚାହୁଁଛ କେବଳ ଜଣେ ଭଲ ମଣିଷ ହେବ । ଏଇ ଚିନ୍ତା ତମର କର୍ମକ୍ଷମତାକୁ ଦୁର୍ବଳ କରି ଦେଇଛି । ମୁଁ ବି ଜଣେ ମାଆ - ସନ୍ତାନକୁ ସ୍ତନ୍ୟପାନ କରାଇବାର ମାଧୁରୀ ମୁଁ ମଧ ସ୍ୱୀକାର କରେ । କିନ୍ତୁ ମୁଁ ଯଦି କିଛି ପ୍ରତିଜ୍ଞା କରିଥାଆନ୍ତି, ତେବେ ସେଇ ସମୟରେ ତା'ର ମୁହଁ ବୁକୁରୁ ହଟାଇ ତା ମୁଣ୍ଡ ଛେଚି ଦିଅନ୍ତି ।

ସଂଶୟ ତଥାପି ମାକ୍‌ବେଥ୍‌କୁ ଛାଡ଼େ ନାହିଁ । ସେ କହନ୍ତି, ଯଦି ଆମେ ଏ କାର୍ଯ୍ୟରେ ବିଫଳ ହେଉ ?

ନିଜ ଉପରେ ଲେଡିଙ୍କର ଅଟଳ ବିଶ୍ୱାସ । ସେ କହନ୍ତି, ସାହସ ସହିତ ଦକ୍ଷତା ମିଶିଲେ କୌଣସି କାର୍ଯ୍ୟ ବ୍ୟର୍ଥ ହୁଏ ନାହିଁ । ପଥକ୍ଳାନ୍ତି ହେତୁ ରାଜା ଶୀଘ୍ର ଶୋଇପଡ଼ିବେ । ତାଙ୍କର ଦୁଇଦେହରକ୍ଷୀଙ୍କୁ ମୁଁ ଏତେ ମଦ ପିଆଇ ଦେବି ଯେ, ସେମାନେ ମଧ ଗଭୀର ନିଦ୍ରାରେ ଆଚ୍ଛନ୍ନ ହୋଇ ପଡ଼ିବେ । ସେତେବେଳେ ତମେ ଆଉ ମୁଁ ଡନ୍‌କାନ୍‌ଙ୍କୁ ନେଇ ଯାହା ଇଚ୍ଛା ତା' କରିପାରୁ । ଆମ କାର୍ଯ୍ୟର ଦାୟିତ୍ୱ - ଆମେ ସେଇ ରକ୍ଷୀ ଦୁଇଜଣଙ୍କ ମୁଣ୍ଡରେ ଲଦି ଦେବା । ମାକ୍‌ବେଥ୍ ସ୍ତ୍ରୀଙ୍କୁ ପ୍ରଶଂସା କରି କହନ୍ତି - ତମ ଭିତରେ ନାରୀର କୋମଳତା ଅପେକ୍ଷା ପୁରୁଷୋଚିତ କାଠିନ୍ୟ ହିଁ ଅଧିକ ରହିଛି ।

ମାକ୍‌ବେଥ୍ ନିଜ ନିଷ୍ପତ୍ତିରେ ଅଟଳ । ସେ ଲେଡିଙ୍କୁ କହନ୍ତି, ଯାଅ, ଉପରେ ଉପରେ ତମେ ଏଭଳି ଭାବ ଦେଖାଇବ, ଯାହା ତମର ଭିତରର ଚିନ୍ତାକୁ ସମ୍ପୂର୍ଣ୍ଣ ଢାଙ୍କି ଦେଇ ପାରୁଥିବ ।

କାର୍ଯ୍ୟ ଆରମ୍ଭ କରିବା ସମୟ ଆସନ୍ନ ।

॥ ୨ ॥

ମାକ୍‌ବେଥ୍‌ଙ୍କର ଦୁର୍ଗ । ମଧରାତ୍ରି ଅତିକ୍ରାନ୍ତ । ତଥାପି ବାଙ୍କୋ ଆଉ ତାଙ୍କର ପୁତ୍ର ଫ୍ଲିୟାନ୍ସ ଜାଗିରହିଛନ୍ତି । ବାଙ୍କୋଙ୍କ ମନରେ ନାନା ପ୍ରକାରର ଅସ୍ୱସ୍ତିକର ଚିନ୍ତା । ନିଦ ଆସିଲେ ମଧ ସେ ଜାଗ୍ରତ ରହିବାକୁ ଚାହାନ୍ତି । ମାକ୍‌ବେଥ୍ ସେଠାକୁ ଆସନ୍ତି । ତାଙ୍କର ପାଦ ଶବ୍ଦ କାନରେ ପଡ଼ିବା ମାତ୍ରେ ବାଙ୍କୋ ଚମକି ଉଠନ୍ତି । ତା'ପରେ ମାକ୍‌ବେଥ୍‌ଙ୍କ ଆଡ଼କୁ ଅନାଇ କହନ୍ତି - ତମେ ଶୋଇ ନାହଁ ? ଆମ ରାଜା କିନ୍ତୁ ଗଭୀର ନିଦ୍ରାରେ ସୁପ୍ତ । ଖଣ୍ଡିଏ ହୀରା ମାକ୍‌ବେଥ୍‌ଙ୍କ ହାତକୁ ବଢ଼ାଇ ଦେଇ ବାଙ୍କୋ ପୁଣି କହନ୍ତି, ତମ ସ୍ତ୍ରୀଙ୍କର ଆତିଥ୍ୟରେ ରାଜା ଅତ୍ୟନ୍ତ ମୁଗ୍ଧ । ସେ ତାଙ୍କୁ ଏଇଟି ଉପହାର ଦେଇଛନ୍ତି ।

ଦୁହେଁ କିଛିକ୍ଷଣ ଆଳାପ କରନ୍ତି । ପୁଣି ସେଇ ଡାହାଣୀମାନଙ୍କର କଥା ଉଠେ । ମାକ୍‌ବେଥ୍ ପରେ ତାଙ୍କ ସହିତ ଏ ବିଷୟରେ ଆଲୋଚନା କରିବେ ବୋଲି କହନ୍ତି ଏବଂ ଇଙ୍ଗିତ ଦିଅନ୍ତି ଯେ, ତାଙ୍କ କଥା ଅନୁସାରେ ଚଳିଲେ ବାଙ୍କୋ ସମ୍ମାନିତ ହେବେ । ବାଙ୍କୋ ଜଣାଇ ଦିଅନ୍ତି - ସମ୍ମାନ ତାଙ୍କର କାମ୍ୟ - ତେବେ ତାଙ୍କ ପାଇଁ ରାଜାଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ ହେଉଚି ସବୁଠାରୁ ବଡ଼ କଥା ।

ବାଙ୍କୋ ଆଉ ଫ୍ଲୟାନ୍ସ ଚାଲିଯିବାପରେ ମାକ୍‌ବେଥ୍ ସାଙ୍ଗରେ ଥିବା ବାଳକ ଭୃତ୍ୟଟିକୁ କହନ୍ତି, ଯାଇ ତୋ'ର ମାଆଙ୍କୁ କହ, ପାନୀୟ ପ୍ରସ୍ତୁତ ହୋଇଗଲେ ସେ ଘଣ୍ଟା ବଜାଇ ଜଣାଇଦେବେ । ପ୍ରକୃତରେ ସେଇ ଘଣ୍ଟାଧ୍ୱନି ହେବ ହତ୍ୟାକାଣ୍ଡର ପ୍ରସ୍ତୁତି ପର୍ବର ସମାପ୍ତିସୂଚକ ଇଙ୍ଗିତ ।

ମାକ୍‌ବେଥ୍‌ଙ୍କ ମନରେ ପୁଣି ଦୁର୍ବଳତା ଦେଖାଦିଏ । ବିବେକର ତୀବ୍ର ଦଂଶନରେ ମନ ତାଙ୍କର କ୍ଷତବିକ୍ଷତ ହୋଇଯାଏ । ତାଙ୍କର ମନେହୁଏ, ଗୋଟିଏ ରକ୍ତବୋଳା ଛୁରା ପବନରେ ଭାସି ଭାସି ଡନ୍‌କାନ୍‌ଙ୍କର ଶୟନ କକ୍ଷ ଆଡ଼େ ଚାଲିଛି ।

ଏତିକିବେଳେ ଘଣ୍ଟା ଧ୍ୱନି ଶୁଣାଯାଏ । ମାକ୍‌ବେଥ୍ ଧୀରେ ଧୀରେ ଡନ୍‌କାନ୍‌ଙ୍କ ଶୟନାଗାର ଆଡ଼କୁ ଆଗେଇ ଯାଆନ୍ତି ।

ରାଜାଙ୍କ ପ୍ରକୋଷ୍ଠରୁ ବାହାରିଆସନ୍ତି ଲେଡି । ସେ ଦେହରକ୍ଷୀ ଦୁହିଁଙ୍କୁ ପ୍ରଚୁର ମଦ୍ୟପାନ କରାଇ ସେମାନଙ୍କୁ ନିସ୍ତେଜ କରିଦେଇଛନ୍ତି । ନିଜେ ବି ନିଜକୁ ସତେଜ ରଖିବା ପାଇଁ କିଛି ପିଇଛନ୍ତି । ତାଙ୍କ କଥାରୁ ଜଣାପଡ଼େ, ସେ ନିଜେ ପ୍ରଥମେ ଛୁରା ଧରି ଡନ୍‌କାନ୍‌ଙ୍କ ପ୍ରକୋଷ୍ଠରେ ପ୍ରବେଶ କରିଥିଲେ । କିନ୍ତୁ ରାଜାଙ୍କୁ ଆଘାତ କରିପାରି ନାହାନ୍ତି । ସୁପ୍ତ ରାଜାଙ୍କର ମୁଖମଣ୍ଡଳ ସହିତ ତାଙ୍କ ପିତାଙ୍କର ଅଦ୍‌ଭୁତ ସାମଞ୍ଜସ୍ୟ ରହିଛି ବୋଲି ତାଙ୍କର ମନେ ହେଲା ।

ମାକ୍‌ବେଥ୍ ରାଜାଙ୍କ ପ୍ରକୋଷ୍ଠରୁ ବାହାରି ଆସନ୍ତି । ହାତରେ ରକ୍ତଭିଜା ଛୁରା, ଜଣାନ୍ତି, ସେ ତାଙ୍କ କାର୍ଯ୍ୟ ଶେଷ କରିଛନ୍ତି । ଠିକ୍ ହତ୍ୟାର ମୁହୂର୍ତ୍ତରେ ଜଣେ ରକ୍ଷୀ 'ଖୁନ୍' ବୋଲି ଚିତ୍କାର କରିଉଠେ, ଅନ୍ୟଜଣକ ନିଦ୍ରାବସ୍ଥାରେ ହସିଉଠେ । ଏଇ ଭୟଙ୍କର ଦୃଶ୍ୟ ଦେଖିବା ପାଇଁ ଯେମିତି ସେମାନଙ୍କର ନିଦ ପତଳା ହୋଇ ଯାଇଥିଲା । ତେବେ ସେମାନେ ସେଇଆଡ଼େ ଅନାଇ ହଠାତ୍ ପ୍ରାର୍ଥନା ଆରମ୍ଭ କରିଦିଅନ୍ତି ଏବଂ ଅଚିରେ ପୁଣି ଶୋଇପଡ଼ନ୍ତି । ସେଥିରୁ ଜଣେ ମାକ୍‌ବେଥ୍‌ଙ୍କର ରକ୍ତ ଲିପ୍ତ ହାତ ଦେଖି କହି ଉଠିଥିଲା- ଈଶ୍ୱର ଆମକୁ ରକ୍ଷା କରନ୍ତୁ । ମାକ୍‌ବେଥ୍ କହିଚାଲନ୍ତି, ଈଶ୍ୱରଙ୍କର କରୁଣା ମୋର ମଧ ଦରକାର ଥିଲା । ତେବେ ସେଇ ମୁହୂର୍ତ୍ତରେ ମୋ ମୁହଁରୁ ପ୍ରାର୍ଥନାର ଗୋଟିଏ ବି ଶବ୍ଦ ବାହାରିଲା ନାହିଁ । ସେ ପୁଣି କହନ୍ତି ମୋତେ ସ୍ପଷ୍ଟ ଶୁଣାଗଲା - କିଏ ଯେମିତି କହିଉଠେ ଆଉ ଶୋଇ ରହ ନାହିଁ । ମାକ୍‌ବେଥ୍ ନିଦ୍ରାକୁ ହତ୍ୟା କରିଛନ୍ତି । ମାକ୍‌ବେଥ୍ ଏଥର ମନେ ମନେ କହିଚାଲନ୍ତି - ସେଇ ସ୍ୱର ଯେମିତି ଘରସାରା ଭାସି ବୁଲୁଛି - ଆଉ ଶୋଇରହ ନାହିଁ । ଗ୍ଲାମିସ୍ ନିଦ୍ରାକୁ ହତ୍ୟା କରିଛି । କଡ଼ୋରର ରାଜା ଆଉ ଶୋଇବେ ନାହିଁ । ମାକ୍‌ବେଥ୍‌ଙ୍କର ନିଦ୍ରାର ମିଆଦ ଶେଷ ହୋଇଛି ।

ଲେଡି ତାଙ୍କୁ ସାହସ ଯୋଗାଇ ଦେଇ କହନ୍ତି ଏଣୁତେଣୁ ଗୁଡ଼ାଏ ଭାବି କାହିଁକି ତମେ ନିଜକୁ ଦୁର୍ବଳ କରି ପକାଉଛ ? ଶୀଘ୍ର ଏଇ ଛୁରାକୁ ରାଜାଙ୍କ ପାଖରେ ଥୋଇ ଦେଇ, ଦେହରକ୍ଷୀଙ୍କ ଦେହରେ ରକ୍ତ ବୋଳି ଦିଅ । ଆଉ ହାତଧୋଇ ପକାଅ ।

ମାକ୍‌ବେଥ୍‌ଙ୍କର ମନ ସେତେବେଳକୁ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ସାରିଥାଏ । ସେ ଆଦୌ ରାଜାଙ୍କ ଶୋଇବା ସ୍ଥାନକୁ ଯିବାପାଇଁ ରାଜି ହୁଅନ୍ତି ନାହିଁ । ଲେଡି ସ୍ୱାମୀଙ୍କୁ ଯଥେଷ୍ଟ ଭର୍ତ୍ସନା କରି ଅସମାପ୍ତ କାର୍ଯ୍ୟକୁ ପୂର୍ଣ୍ଣାଙ୍ଗ ରୂପ ଦେବା ପାଇଁ ନିଜେ ବାହାରି ପଡ଼ନ୍ତି । ହଠାତ୍ ଘରେ ଗୋଟିଏ ଶବ୍ଦ ଶୁଣି ମାକ୍‌ବେଥ୍ ଚମକି ପଡ଼ନ୍ତି । ତା'ପରେ ଅସ୍ପଷ୍ଟ ସ୍ୱରରେ କହିଚାଲନ୍ତି-ମୋର ହାତ ରକ୍ତାକ୍ତ । ମହା ସମୁଦ୍ରର ଅତଳାନ୍ତ ଜଳରେ ମଧ ଏହା ଧୁଆଯାଇ ପାରି ନାହିଁ ।

ଲେଡି ଫେରିଆସନ୍ତି । ସ୍ୱାମୀଙ୍କ କଥା ଶୁଣି କହନ୍ତି ଯେ ତାଙ୍କର ହାତ ମଧ ରାଜାଙ୍କର ରକ୍ତରେ ସିକ୍ତ । ତେବେ ତାଙ୍କର ହୃଦୟ ମାକ୍‌ବେଥ୍‌ଙ୍କ ହୃଦୟ ଭଳି ଏତେ ଦୁର୍ବଳ ନୁହେଁ । ଦରଜା ପାଖରୁ ଶବ୍ଦ ଶୁଣି ଦୁହେଁ ନିଜ ଘର ଆଡ଼େ ଚାଲିଯାଆନ୍ତି । ସାମାନ୍ୟ ଟିକିଏ ପାଣିରେ ଏଇ ହାତ ପରିଷ୍କାର ହୋଇଯିବ ବୋଲି ଲେଡି ଜଣାଇ ଦିଅନ୍ତି ।

ଦରଜାର ଶବ୍ଦ ବଢ଼ି ଚାଲିଥାଏ । ଶେଷରେ ଜଣେ ଦ୍ୱାରରକ୍ଷୀ ଦରଜା ଖୋଲିବାକୁ ଆସେ । କଞ୍ଚା ନିଦ ଭାଙ୍ଗିଯିବାରୁ ସେ ମହାବିରକ୍ତ । ମନେ ମନେ କହି ଚାଲିଥାଏ, ନରକର ରକ୍ଷୀ ବୋଧହୁଏ ତା'ଠୁ ଅନେକ ଆରାମ୍‌ରେ ଥିବେ । ବିବ୍ରତ ହୋଇ ଶେଷରେ ସେ ଦରଜା ଖୋଲିଦିଏ । ବାହାରେ ଠିଆ ହୋଇଥାଆନ୍ତି ମାକ୍‌ଡଫ୍ ଏବଂ ଲେନକ୍ସ । ସେମାନେ ରାଜାଙ୍କୁ ଜଗାଇବାକୁ ଆସିଥାଆନ୍ତି । ଭୋର୍‌ରୁ ତାଙ୍କର ଦୁର୍ଗ ଛାଡ଼ି ଚାଲିଯିବାର କଥା ମାକ୍‌ଡଫ୍ ଜାଣିବାକୁ ଚାହାନ୍ତି ମାକ୍‌ବେଥ୍ ନିଦରୁ ଉଠିଲେଣି କିମ୍ବା ନାହିଁ ? ମାକ୍‌ବେଥ୍ ହଠାତ୍ ସେଠାକୁ ଚାଲିଆସିବାରୁ ସେମାନେ ଅନୁମାନ କରନ୍ତି ଯେ, ଦରଜାର ଶବ୍ଦରେ ବୋଧହୁଏ ତାଙ୍କର ନିଦ ଭାଙ୍ଗିଯାଇଛି ।

ମାକ୍‌ଡଫ୍ ତାଙ୍କଠାରୁ ରାଜାଙ୍କ ବିଷୟରେ ଜାଣିବାକୁ ଚାହାନ୍ତି । ମାକ୍‌ବେଥ୍ ଉତ୍ତର ଦିଅନ୍ତି ଯେ, ସେ ଏ ପର୍ଯ୍ୟନ୍ତ ନିଦରୁ ଉଠି ନାହାନ୍ତି । କିଛି ସୌଜନ୍ୟ ବିନିମୟ ହୁଏ । ମାକ୍‌ଡଫ୍ ଡନ୍‌କାନ୍‌ଙ୍କର ଶୟନାଗାର ଆଡ଼େ ଚାଲନ୍ତି । ତାଙ୍କର ନିଦ ଭଙ୍ଗାଇବାକୁ ହେବ ।

ମାତ୍ର କେଇଟି ମୁହୂର୍ତ୍ତ ପରେ ମାକ୍‌ଡଫ୍ ଚିତ୍କାର କରୁ କରୁ ଧାଇଁ ଆସନ୍ତି । କହନ୍ତି ଯେ, ରାଜାଙ୍କୁ ହତ୍ୟା କରାଯାଇଛି । ମାକ୍‌ବେଥ୍ ଛଦ୍ମ ବିସ୍ମୟ ପ୍ରକାଶ କରି କହନ୍ତି -ଏ ସବୁ ତମେ କ'ଣ କହୁଛ !

ମାକ୍‌ଡଫ୍ ଲେନକ୍ସଙ୍କୁ କହନ୍ତି, ଯାଅ, ନିଜ ଆଖିରେ ସେଇ ଭୟଙ୍କର ଦୃଶ୍ୟ ଦେଖିଆସ । ମୋତେ ଆଉ କିଛି ପଚାର ନାହିଁ ।

ମାକ୍‌ବେଥ୍ ଏବଂ ଲେନକ୍ସ ଦ୍ରୁତ ଗତିରେ ରାଜାଙ୍କର ଶୟନାଗାର ଆଡ଼କୁ ଧାଇଁ ଯାଆନ୍ତି । ମାକ୍‌ଡଫ୍ ଚିତ୍କାର କରିବାରେ ଲାଗନ୍ତି । କହନ୍ତି - ଉଠ, ଜାଗ, ପାଗଳା ଘଣ୍ଟି ବଜାଇ ଦିଅ । ଏଠି ଭୟଙ୍କର ନରହତ୍ୟା, ରାଷ୍ଟ୍ରଦ୍ରୋହିତା ଘଟିଗଲାଣି । ବାଙ୍କୋ, ମାଲକମ୍ ତମମାନଙ୍କର କ'ଣ ମୃତ୍ୟୁ ହୋଇଗଲାଣି ! ଦୌଡ଼ିଆସ, ଏଇ ନାରକୀୟ କାଣ୍ଡ ଦେଖ ।

ପାଗଳା ଘଣ୍ଟି ବାଜି ଉଠେ । ଲେଡି ବ୍ୟସ୍ତ ହୋଇ ଧାଇଁଆସନ୍ତି । ପଚାରନ୍ତି, କ'ଣ, କ'ଣ ହୋଇଛି ? ଏ ଘଣ୍ଟି କାହିଁକି ବାଜୁଛି ?

ମାକ୍‌ଡଫ୍ କହନ୍ତି, ସର୍ବନାଶ ହୋଇଛି । ଏହି ସମୟରେ ବାଙ୍କୋ ଆସିଯାଆନ୍ତି । ମାକ୍‌ଡଫ୍ ତାଙ୍କୁ ଦୁଃସମ୍ବାଦଟି ଦିଅନ୍ତି । ଲେଡି 'ହାୟ ହାୟ' କରିଉଠନ୍ତି । କହନ୍ତି ଶେଷକୁ ମୋରି ଘରେ ଏ ଅଘଟଣ ଘଟିଗଲା !

ମାକ୍‌ବେଥ୍ ଓ ଲେନକ୍ସ ଫେରିଆସନ୍ତି । ମାକ୍‌ବେଥ୍ ଅଶ୍ରୁରୁଦ୍ଧ କଣ୍ଠରେ କହନ୍ତି ମୁଁ ଯଦି ଘଣ୍ଟାଏ ଖଣ୍ଡେ ପୂର୍ବରୁ ମରିଯାଇ ଥାଆନ୍ତି ତା' ହେଲେ ସେ ହୋଇଥାଆନ୍ତା ମୋର ସୁଖର ମରଣ । ମଣିଷର ଜୀବନ ଯେମିତି ଗୋଟାଏ ଖେଳଣା, ସବୁ ଅର୍ଥହୀନ ।'

ମାଲକମ୍ ଆଉ ଡୋନାଲ୍‌ବେନ୍ ଆସି ବାପାଙ୍କର ହତ୍ୟା ସମ୍ବାଦ ଶୁଣନ୍ତି । ଲେନକ୍ସ କହନ୍ତି, ମୋର ମନେହୁଏ, ଏ କାଣ୍ଡ ହେଉଛି ରକ୍ଷୀମାନଙ୍କର । ସେମାନଙ୍କ ଦେହ ଆଉ ଛୁରୀରେ ଏବେ ମଧ୍ୟ ରକ୍ତ ଲାଗି ରହିଛି । ମାକ୍‌ବେଥ୍ କହନ୍ତି- ରାଗରେ ଅନ୍ଧ ହୋଇ ସେ ଏଇ ଦୁଇ ନରାଧମଙ୍କୁ ହତ୍ୟା କରିଛନ୍ତି । ମାକଡଫ୍ କହନ୍ତି, କାର୍ଯ୍ୟଟି ଖୁବ୍ ଅନ୍ୟାୟ ହୋଇଛି ।

ମାକ୍‌ବେଥ୍ ବୁଝାଇବା ଭଳି କହନ୍ତି, ରାଜାଙ୍କର ସେଇ ରକ୍ତଲିପ୍ତ ବୀଭତ୍ସ ଚେହେରା ଦେଖି ସେ ନିଜକୁ କାବୁରେ ରଖିପାରି ନାହାନ୍ତି । ନିର୍ମମ ହତ୍ୟାର ପ୍ରତିଶୋଧ ନେଇଛନ୍ତି । ଲେଡିଙ୍କର ଶୋକର ବନ୍ଧ ଭାଙ୍ଗିଯାଇଥାଏ ।

ଡୋନାଲବେନ୍ ମାଲକାମ୍‌ଙ୍କୁ ଡାକି ଗୋପନରେ କହନ୍ତି : ଏଥର ବୋଧହୁଏ ସେମାନଙ୍କର ପାଳି ପଡ଼ିବ । ଜୀବନ ରକ୍ଷାପାଇଁ ତେଣୁ ଯଥାଶୀଘ୍ର ଏ ସ୍ଥାନ ତ୍ୟାଗ କରିବାହିଁ ସେମାନଙ୍କ ପାଇଁ ଭଲ ହେବ । ବାଙ୍କୋ ଶପଥ କରନ୍ତି ଯେ ଏଇ ପାପ କରିଛି ତାକୁ ଶାସ୍ତି ଦେବା ପାଇଁ ସେ ବଦ୍ଧପରିକର ।

ମାକ୍‌ବେଥ୍ ଓ ଅନ୍ୟମାନେ ଏହାପରର କର୍ତ୍ତବ୍ୟ ସ୍ଥିର କରିବା ନିମନ୍ତେ ପାଖଘରକୁ ଚାଲିଯାଆନ୍ତି । ରହିଯାଆନ୍ତି କେବଳ ମାକ୍‌ଡଫ୍, ମାଲକମ୍ ଏବଂ ଡୋନାଲବେନ୍ । ମାଲକମ୍ ସ୍କଟଲାଣ୍ଡ ଛାଡ଼ି ଇଂଲଣ୍ଡ ଚାଲିଯିବାର ଇଚ୍ଛା ପ୍ରକାଶ କରନ୍ତି । ଡୋନାଲବେନ୍‌ଙ୍କ ଇଚ୍ଛା ସେ ଆୟର୍ଲାଣ୍ଡ ଯିବେ । ସେ ଆହୁରି କହନ୍ତି, ସର୍ବନାଶର ଏଇ ମୁହୂର୍ତ୍ତରେ ଦୁହେଁ ଦୁହିଁଙ୍କଠାରୁ ଅଲଗା ରହିବା ହିଁ ସେମାନଙ୍କ ପାଇଁ ନିରାପଦ । ବର୍ତ୍ତମାନ ଯେଉଁଠି ସେମାନେ ଠିଆ ହୋଇଛନ୍ତି ସେଠାର ପ୍ରତ୍ୟେକ ସ୍ମିତ ହସ ପଛରେ ଲୁଚିରହିଛି ଶାଣିତ ଛୁରିକାର ବିଷାକ୍ତ ଧାର । ରକ୍ତ ସୂତ୍ରରେ ଯେଉଁମାନେ ଆତ୍ମୀୟ ଏ ସବୁ ଜଘନ୍ୟ କାଣ୍ଡ ପଛରେ ଅଧିକ କ୍ଷେତ୍ରରେ ସେଇମାନଙ୍କର କଳୁଷିତ ହାତ ହିଁ ସକ୍ରିୟ ଥାଏ । ସେ ଯେ ଏଥିପାଇଁ ମାକ୍‌ବେଥ୍‌ଙ୍କୁ ସନ୍ଦେହ କରନ୍ତି, ଏଥିରୁ

ତାହାର ସ୍ପଷ୍ଟ ସୂଚନା ମିଳେ । ମାଲକମ୍ ମଧ ତାଙ୍କ କଥାରେ ସମ୍ମତ ହୁଅନ୍ତି । ଦୁଇଜଣଯାକ ଘୋଡ଼ା ଚଢ଼ି ଦୁର୍ଗ ବାହାରକୁ ଚାଲିଯାଆନ୍ତି ।

ଦୁର୍ଗ ବାହାରେ ରାଜାଙ୍କର ସାଥୀ ରସ୍‌ଙ୍କ ସହିତ ଜଣେ ବୃଦ୍ଧଙ୍କର ଆଲୋଚନା ଚାଲିଥାଏ, ଏଇ ଜଘନ୍ୟ ହତ୍ୟାକାଣ୍ଡକୁ ନେଇ ।

ବୃଦ୍ଧ କହୁଥାନ୍ତି ତାଙ୍କର ଦୀର୍ଘ ଜୀବନକାଳ ମଧରେ ଗତରାତି ଭଳି ଦୁର୍ଯୋଗପୂର୍ଣ୍ଣ ରାତି ସେ କେବେ ଦେଖି ନାହାନ୍ତି । ରସ୍ ସମ୍ମତ ହୋଇ କହନ୍ତି ପ୍ରାକୃତିକ ଦୁର୍ଯୋଗ ସହିତ ହାତ ମିଳାଇଛି ମଣିଷର ଅପକର୍ମ । ସେଥିପାଇଁ ଦିନବେଳେ ବି ଓହ୍ଲାଇ ଆସିଛି ଅମାବାସ୍ୟାର ଅନ୍ଧକାର ।

ମାକଡଫ୍ ଆସି ଜଣାନ୍ତି ଯେ, ଏଇ ହତ୍ୟାକାଣ୍ଡ ନିମନ୍ତେ ଦୁଇ ଦେହରକ୍ଷୀଙ୍କୁ ସନ୍ଦେହ କରାଯାଉଛି । ତେବେ ରାଜାଙ୍କର ଦୁଇପୁଅ ମଧ ପୂରାପୂରି ସନ୍ଦେହମୁକ୍ତ ହୋଇ ନ ପାରନ୍ତି । କାରଣ ସମ୍ବାଦ ପାଇବା ମାତ୍ରେ ସେମାନେ ରାଜ୍ୟ ଛାଡ଼ି ପଳାଇଛନ୍ତି ।

ମାକ୍‌ବେଥ୍‌ଙ୍କର ରାଜା ଉପାଧି ଗ୍ରହଣ, ଅଭିଷେକ ନିମନ୍ତେ ପ୍ରସ୍ତୁତି ତଥା ଡନ୍‌କାନ୍‌ଙ୍କର ମରଦେହକୁ ତାଙ୍କର ପୂର୍ବପୁରୁଷର ସମାଧି କ୍ଷେତ୍ରକୁ ପ୍ରେରଣ । ଏ ସବୁ ଘଟଣା ଦ୍ରୁତ ଗତିରେ ଘଟିଚାଲେ ।

॥ ୩ ॥

ଫ୍ଲୋରେସ୍‌ର ପ୍ରାସାଦରେ ବସି ବାଙ୍କୋ ଚିନ୍ତା କରୁଥାଆନ୍ତି । ସେ ଭାବନ୍ତି, ମାକ୍‌ବେଥ୍‌ଙ୍କ ଜୀବନରେ ଡାହାଣୀମାନଙ୍କର ପ୍ରତ୍ୟେକଟି ଭବିଷ୍ୟତ୍‌ବାଣୀ ସତ୍ୟ ହୋଇଛି । ତାଙ୍କ ସମ୍ପର୍କରେ ମଧ ସେମାନେ କିଛି କଥା କହିଛନ୍ତି । ସେ ସବୁ ତେବେ ଘଟିବ ନାହିଁ କାହିଁକି ? ସେମାନେ କହିଛନ୍ତି, ବାଙ୍କୋଙ୍କର ବଂଶଧରମାନେ ରାଜା ହେବେ ।

ମାକ୍‌ବେଥ୍, ତାଙ୍କ ପତ୍ନୀ ଏବଂ ଅନ୍ୟ କେଇଜଣ ସାମନ୍ତ ସେଠାକୁ ଆସନ୍ତି । ସେଦିନ ରାତିରେ ଅନୁଷ୍ଠିତ ହେବାକୁ ଯାଉଥିବା ଭୋଜିସଭାରେ ଉପସ୍ଥିତ ରହିବାକୁ ମାକ୍‌ବେଥ୍ ବାଙ୍କୋଙ୍କୁ ନିବେଦନ କରନ୍ତି । ବାଙ୍କୋ ଜଣାଇଦିଅନ୍ତି ଯେ, ଶୀଘ୍ର ତାଙ୍କୁ ଅନ୍ୟତ୍ର ଯିବାକୁ ପଡ଼ିବ । ତେବେ ଫେରିଆସି ସେ ମାକ୍‌ବେଥ୍‌ଙ୍କର ରାଜା ହେବା ଉପଲକ୍ଷେ ଏ ଯେଉଁ ଭୋଜି ଦିଆଯାଉଛି, ତହିଁରେ ସେ ନିଶ୍ଚୟ ଯୋଗ ଦେବେ । ମାକ୍‌ବେଥ୍ ଜଣାଇ ଦିଅନ୍ତି, ମୃତ ରାଜାଙ୍କର ଦୁଇ ପୁତ୍ର ଯଥାକ୍ରମେ ଇଂଲଣ୍ଡ ଏବଂ ଆୟର୍ଲାଣ୍ଡରେ ଆଶ୍ରୟ ଗ୍ରହଣ କରିଛନ୍ତି । ସେମାନେ ତାଙ୍କର ଅପରାଧ ସ୍ୱୀକାର କରିବା ପରିବର୍ତ୍ତେ ଲୋକଙ୍କ ପାଖରେ ନାନା ମନଗଢ଼ା କାହାଣୀ କହିଚାଲିଛନ୍ତି । ଏହାଦ୍ୱାରା ରାଜ୍ୟର ସମ୍ମାନରେ ଆଞ୍ଚ ଆସୁଛି ।

ଏହା ପରେ ବାଙ୍କୋ ଏବଂ ତାଙ୍କର ପୁତ୍ର ଫ୍ଲିୟାନ୍ସ ପ୍ରାସାଦ ଛାଡ଼ି ଅନ୍ୟତ୍ର ଚାଲିଯାଆନ୍ତି । ମାକ୍‌ବେଥ୍‌ ସେମାନଙ୍କୁ ହତ୍ୟା କରିବା ପାଇଁ ଗୋପନରେ ଦୁଇ ଜଣ ଘାତକଙ୍କୁ ନିଯୁକ୍ତ କରନ୍ତି । ବାଙ୍କୋଙ୍କୁ ସେ ଭୟ କରିବାର ଯଥେଷ୍ଟ କାରଣ ରହିଛି । ପ୍ରଥମ କଥା ସେ ସାହସୀ ଆଉ ବୁଦ୍ଧିମାନ୍‌ । ଦ୍ୱିତୀୟ କଥା- ସେ ତାଙ୍କୁ ଖୁବ୍‌ ଭଲ ଭାବରେ ଜାଣନ୍ତି । ଡାହାଣୀମାନେ ପୁଣି ବାଙ୍କୋ ଏକ ରାଜବଂଶର ସ୍ରଷ୍ଟା ହେବେ ବୋଲି କହିଛନ୍ତି । ସେ କଣ ତେବେ ବାଙ୍କୋଙ୍କର ଉତ୍ତରାଧିକାରୀମାନଙ୍କ ନିମନ୍ତେ ରାଜରକ୍ତରେ ହସ୍ତ କଳୁଷିତ କରିଛନ୍ତି !

ମାକ୍‌ବେଥ୍‌ଙ୍କର ମାନସିକ ଅବସ୍ଥା ଲେଡି ଭଲ ଭାବରେ ଜାଣନ୍ତି । ସେ ବାରମ୍ବାର ସ୍ୱାମୀଙ୍କୁ ବୁଝାଉଥାଆନ୍ତି ଯେ, ଅତୀତ ପାଇଁ ବୃଥା ଉଦ୍‌ବେଗ ପ୍ରକାଶ କରି ସେ କାହିଁକି ଏତେ କଷ୍ଟ ପାଉଛନ୍ତି ? ମାକ୍‌ବେଥ୍‌ କିନ୍ତୁ ଭୟକୁ ଦୂରକରି ପାରନ୍ତି ନାହିଁ; ତାଙ୍କର ମନେହୁଏ, ସେ ଗୋଟାଏ ସାପକୁ ଉତ୍ତେଜିତ କରି ଦେଇଛନ୍ତି, ତାକୁ ମାରି ପାରି ନାହାନ୍ତି । ସେଇ ସାପ ଏବେ ଫଣା ଟେକି ତାଙ୍କରି ଆଡ଼କୁ ମାଡ଼ି ଆସୁଛି । ମନ ଭିତର ତାଙ୍କର ଯେଉଁଭଳି ଓଲଟ ପାଲଟ ହେଉଥାଏ, ସେ ଯନ୍ତ୍ରଣା ଅପେକ୍ଷା ମୃତ୍ୟୁ ବରଂ ଭଲ ବୋଲି ତାଙ୍କର ମନେ ହେଉଥାଏ । ମୃତ୍ୟୁରେ ରାଜା ଡନ୍‌କାନ୍‌ ଯେଉଁ ଶାନ୍ତି ପାଇଛନ୍ତି, ତାଙ୍କ କପାଳରେ ତାହାର କାଣିଚାଏ ମଧ ଜୁଟୁ ନାହିଁ ।

ଯାହାବି ହେଉ, ସେ ଦିନର ଭୋଜିସଭାରେ ନିଜକୁ ଯଥାସମ୍ଭବ ସ୍ୱାଭାବିକ ରଖିବାକୁ ଲେଡି ତାଙ୍କୁ ଅନୁରୋଧ କରନ୍ତି । ହସଖୁସି ଭିତରେ ନିଜର ଅସ୍ଥିରତାକୁ ଢାଙ୍କି ଦେବା ପାଇଁ କହନ୍ତି । ମାକ୍‌ବେଥ୍‌ ଉତ୍ତର ଦିଅନ୍ତି, 'ମନଭିତରେ ମୋର ଶତ ବୃଶ୍ଚିକର ଦଂଶନ ମନେ ରଖ, 'ବାଙ୍କୋ ଆଉ ଫ୍ଲିୟାନ୍ସ ଏବେ ମଧ ବଞ୍ଚିଛନ୍ତି ।' ଏହାପରେ ମାକ୍‌ବେଥ୍‌ ଲେଡିଙ୍କୁ ଗୋପନରେ ଆଉ ଏକ ଭୟଙ୍କର କାର୍ଯ୍ୟର ଆଭାସ ଦିଅନ୍ତି । ଶୁଣିବାମାତ୍ରେ ତାଙ୍କର ବଜ୍ରତୁଲ୍ୟ କଠୋର ହୃଦୟ ଦୋହଲିଯାଏ । ନାନା ଅଶୁଭ ଆଶଙ୍କାରେ ତାଙ୍କର ମନ ପୂର୍ଣ୍ଣ ହୋଇଯାଏ । ଏଥର ମାକ୍‌ବେଥ୍‌ ରାଣୀଙ୍କର ଦୁର୍ବଳତାକୁ ନେଇ ବ୍ୟଙ୍ଗ କରନ୍ତି ।

ବାଙ୍କୋ ଆଉ ତାଙ୍କର ପୁତ୍ରଙ୍କୁ ହତ୍ୟା କରିବା ପାଇଁ ଦୁଇ ଘାତକଙ୍କୁ ପଠାଇ ମଧ ମାକ୍‌ବେଥ୍‌ ନିଶ୍ଚିନ୍ତ ହୋଇପାରନ୍ତି ନାହିଁ । ସେମାନଙ୍କ ଉପରେ ନଜର ରଖିବା ନିମନ୍ତେ ସେ ଆଉଜଣଙ୍କୁ ସେମାନଙ୍କ ପଛେ ପଛେ ପଠାନ୍ତି ।

ତିନି ଘାତକ ଅନ୍ଧାର ଭିତରେ ଛପିରହି ଶିକାରକୁ ଅପେକ୍ଷା କରନ୍ତି । ବେଶୀକ୍ଷଣ ଅପେକ୍ଷା କରିବାକୁ ପଡ଼େ ନାହିଁ । ଘୋଡ଼ାଟାପୁ ସହିତ ବାଙ୍କୋଙ୍କର ସ୍ୱର ଶୁଣାଯାଏ । ପାଖରେ କିଏ ଅଛ, ଟିକିଏ ଆଲୁଅ ଦେଖାଅ । ଘାତକମାନେ ଘୋଡ଼ା ଛାଡ଼ି ପାଦରେ ଚାଲି ଚାଲି ବାଙ୍କୋ

ଆଉ ତାଙ୍କ ପୁଅକୁ ଅନୁସରଣ କରନ୍ତି । ହାତରେ ମଶାଲ ଧରି ବାଙ୍କୋ ଆଉ ତାଙ୍କ ପୁଅ ମଧ୍ୟ ଚାଲି ଚାଲି ଆସୁଥିଲେ । ପ୍ରଥମ ଘାତକ ଆଗେଇ ଆସି ବାଙ୍କୋଙ୍କୁ ଲକ୍ଷ୍ୟ କରି ଛୁରୀ ଚଳାଇଦିଏ । ବାଙ୍କୋ ସବୁ କଥା ବୁଝିପାରନ୍ତି । ବନ୍ଧୁଙ୍କର ବିଶ୍ୱାସଘାତକତା ତାଙ୍କୁ ଖୁବ୍ ବାଧେ । ତଥାପି ସେ ଧୈର୍ଯ୍ୟହରା ନ ହୋଇ ଚିତ୍କାର କରି ଫ୍ଲିୟାନ୍ସକୁ ପଳାଇ ଯିବା ନିମନ୍ତେ କହନ୍ତି । ସେ ବଞ୍ଚି ରହିଥିଲେ ତାଙ୍କର ବଂଶଧାରା ବଜାୟ ରହିବ । ପୁଣି ସେ ଅନ୍ୟାୟର ପ୍ରତିଶୋଧ ମଧ୍ୟ ନେଇପାରେ ।

ଏହିଭଳି ଭାବରେ ବାଙ୍କୋଙ୍କର ମୃତ୍ୟୁ ହୋଇଯାଏ ।

ମାକ୍‌ବେଥ୍‌ଙ୍କର ଭୋଜିସଭା ଜମି ଆସୁଥାଏ । ଅତିଥି ଆପ୍ୟାୟନରେ ମାକ୍‌ବେଥ୍ ଦମ୍ପତିଙ୍କର କୌଣସି ତ୍ରୁଟି ନାହିଁ । ଦୁଇଧାଡ଼ି ଅତିଥିଙ୍କ ମଝିରେ ମାକ୍‌ବେଥ୍‌ଙ୍କର ଆସନ । ସେ ସମସ୍ତଙ୍କ ସହିତ ମିଶିବାକୁ ଚାହାନ୍ତି । କଥା କହିବାକୁ ଚାହାନ୍ତି ।

ପ୍ରଥମ ଘାତକ ଫେରିଆସେ । ମାକ୍‌ବେଥ୍‌ଙ୍କୁ ଟିକିଏ ଦୂରକୁ ଡାକିନେଇ ଜଣାଏ ଯେ ସେ ବାଙ୍କୋକୁ ହତ୍ୟା କରିଛି । ତେବେ ଫ୍ଲିୟାନ୍ସ ବଞ୍ଚିଯାଇଛି । ମାକ୍‌ବେଥ୍‌ଙ୍କ ଅଶାନ୍ତି ବଢ଼ିଯାଏ । ସେ ଭାବନ୍ତି ବାଙ୍କୋର ପୁଅ ଆଜି ପଳାଇଛି, ତେବେ ସେ ପରେ ପ୍ରତିଶୋଧ ନେବ । ଘାତକକୁ ବିଦାୟ ଦେଇ ସେ ପୁଣି ଭୋଜିସଭାକୁ ଫେରିଆସନ୍ତି । ସମସ୍ତେ ଖୁସି । ମାକ୍‌ବେଥ୍ କହନ୍ତି, ଆଜି ଯଦି ବାଙ୍କୋ ଏଠାରେ ଉପସ୍ଥିତ ଥାଆନ୍ତେ, ତାହା ହେଲେ ଏ ଆୟୋଜନର ମର୍ଯ୍ୟାଦା ବଢ଼ିଯାଇଥାଆନ୍ତା ।

ହଠାତ୍ ମାକ୍‌ବେଥ୍ କ'ଣ ଦେଖି ଚମକି ପଡ଼ନ୍ତି । ତାଙ୍କ ପାଇଁ ଉଦ୍ଦିଷ୍ଟ ଆସନରେ ବସି ରହିଛି ବାଙ୍କୋର ପ୍ରେତାତ୍ମା । ଅବଶ୍ୟ ଅନ୍ୟ କାହାରି ଆଖିରେ ଏ ଦୃଶ୍ୟ ପଡ଼େ ନାହିଁ । ମାକ୍‌ବେଥ୍ ବିଚଳିତ ହୋଇ ନିଜକୁ ଯେମିତି ପ୍ରଶ୍ନ କରନ୍ତି , ବାଙ୍କୋଙ୍କୁ ହତ୍ୟା କଲା କିଏ ? ସେ ଅତିଥିମାନଙ୍କୁ ଲକ୍ଷ୍ୟ କରି କହିଚାଲନ୍ତି, ଆପଣମାନେ କେବେହେଲେ କହିପାରିବେ ନାହିଁ ଯେ, ଏ କାମ ମୁଁ କରିଛି । ଆପଣମାନଙ୍କ ରକ୍ତଚକ୍ଷୁ ଦେଖିବାରେ ମୁଁ ଅଭ୍ୟସ୍ତ ନୁହେଁ ।

ଆମନ୍ତ୍ରିତମାନେ ମନେ କରନ୍ତି, ମାକ୍‌ବେଥ୍‌ଙ୍କର ଶରୀର ସୁସ୍ଥ ନାହିଁ । ଲେଡ କୌଣସିମତେ ଅବସ୍ଥାଟାକୁ ସମ୍ଭାଳି ନେବାକୁ ଯାଇ କହନ୍ତି, ତାଙ୍କର ଏଇଟା ଗୋଟାଏ ପୁରୁଣା ରୋଗ । ମଝିରେ ମଝିରେ ବାହାରି ପଡ଼େ । ଆପଣମାନେ ସେଆଡ଼େ ମନ ନ ଦେଇ ଖାଇଚାଲନ୍ତୁ । ଦୂରକୁ ନେଇଯାଇ ଲେଡି ସ୍ୱାମୀଙ୍କୁ ଆହୁରି ଦୃଢ଼ ହେବା ପାଇଁ ପରାମର୍ଶ ଦିଅନ୍ତି । ସେ ବୁଝାଇ ଦିଅନ୍ତି; ଯାହା ତମେ ଦେଖିଲ, ତମର ମନର ଭୟ ହେତୁ ଦେଖିଲ । ମିଛକଥାଟାକୁ ସତ ବୋଲି ଧରିନେଇ ଶୂନ୍ୟ ଆସନଟାକୁ ଅନାଇ ରହିଲେ ଲୋକଙ୍କର ସନ୍ଦେହ ବଢ଼ିବ ।

ମାକ୍‌ବେଥ୍ ନିଜକୁ ବୁଝାନ୍ତି । ଆଗରୁ ମଣିଷ ମରିଗଲେ କଥା ଶେଷ ହୋଇ ଯାଉଥିଲା, ଏବେ ମୃତଦେହ ସୁଦ୍ଧା କବରରୁ ଉଠି ଆସୁଛି । କି ବିଡ଼ମ୍ବନା! ଲେଡି ତାଙ୍କ ସ୍ୱାମୀଙ୍କୁ ପୁଣି ସଭାକୁ ନେଇଆସନ୍ତି । ଅତିଥିମାନଙ୍କୁ ଅନାଇ ମାକ୍‌ବେଥ୍ କହନ୍ତି, ଆପଣମାନେ କିଛି ମନେକରିବେ ନାହିଁ । ଏଇଟା ହେଲା ମୋର ଗୋଟାଏ ପୁରୁଣା ରୋଗ । ଆସନ୍ତୁ, ପ୍ରଥମେ ଆପଣମାନଙ୍କର ସ୍ୱାସ୍ଥ୍ୟ ପାନ କରିବା, ଏମିତି ଗୋଟାଏ ମିଳନ ସଭାରେ ବାଙ୍କୋ ଅନୁପସ୍ଥିତ ଥିବାରୁ ଆମେ ସମସ୍ତେ ଦୁଃଖିତ । ସେ ଆଜି ଏଠାରେ ଥିଲେ ଆନନ୍ଦର ଷୋଳକଳା ପୂର୍ଣ୍ଣ ହୋଇଥାଆନ୍ତା ।

ପୁଣି ସେଇ ଦୃଶ୍ୟ । ବାଙ୍କୋର ପ୍ରେତାତ୍ମା !

ସେଇଆଡ଼କୁ ଅନାଇ ମାକ୍‌ବେଥ୍ ଚିତ୍କାର କରି ଉଠନ୍ତି । କହନ୍ତି ମୋ ଆଖି ଆଗରୁ ଦୂର ହୋଇଯା । ପାତାଳକୁ ଯାଆ କି ନରକକୁ ଯାଆ । ମୁଁ ଜାଣେ ତୁ ଏବେ ଅସ୍ଥି ମଜ୍ଜା ଶୂନ୍ୟ କଙ୍କାଳଟାଏ ମାତ୍ର, କଣ ବା କରିପାରିବୁ ?

ଲେଡି ପ୍ରଥମେ ମାକ୍‌ବେଥ୍‌ଙ୍କର ଏଇ ଅସୁସ୍ଥତା ପାଇଁ ଅତିଥିମାନଙ୍କଠାରୁ କ୍ଷମା ମାଗିନିଅନ୍ତି । ଘଟଣାଟିକୁ ସାଧାରଣ ଭାବେ ଗ୍ରହଣ କରିନେବାକୁ ଅନୁରୋଧ କରନ୍ତି । ମାକ୍‌ବେଥ୍ ତଥାପି ସେଇ ପ୍ରେତାତ୍ମା ଆଡ଼େ ଅନାଇ କହି ଚାଲିଥାଆନ୍ତି, ମୁଁ ଦୁର୍ବଳ ନୁହେଁ । ବଞ୍ଚି ଉଠି ବାଙ୍କୋ ଯଦି ତରବାରି ସାହାଯ୍ୟରେ ମୋତେ ଆକ୍ରମଣ କରେ, ତେବେବି ମୁଁ ଡରିବି ନାହିଁ ।

ପ୍ରେତାତ୍ମା ଅଦୃଶ୍ୟ ହୁଏ । ମାକ୍‌ବେଥ୍ ସଚେତନ ହୋଇଯାଆନ୍ତି । ଲେଡି ଏଥର ଅତିଥିମାନଙ୍କୁ ବିଦାୟ ଜଣାଇବାକୁ ବାଧ ହୁଅନ୍ତି । ରାଜାଙ୍କର ଆଶୁ ଆରୋଗ୍ୟ କାମନା କରି ସେମାନେ ବିଦାୟ ନେଇ ଚାଲିଯାଆନ୍ତି । ମାକ୍‌ବେଥ୍ ତଥାପି କହି ଚାଲିଥାଆନ୍ତି -ଆହୁରି ରକ୍ତପାତ ହେବ । ରକ୍ତ ବଦଳରେ ରକ୍ତ ଚାହି । ସମୟ ବର୍ତ୍ତମାନ ବଡ଼ ଖରାପ, ଅନେକେ ପଥରକୁ ହଲିବାର ଦେଖିଛନ୍ତି, ଦେଖିଛନ୍ତି ପୁଣି ଗଛଲତାକୁ ଚାଲବୁଲ୍ କରିବାର । ତା'ପରେ ରାଣୀଙ୍କ ଆଡ଼କୁ ଅନାଇ କହନ୍ତି, ରାତି କେତେ ହେଲା ?

ଲେଡି କହନ୍ତି-ପ୍ରାୟ ସକାଳ ହୋଇ ଆସିଲାଣି ।

ମାକ୍‌ବେଥ୍‌ଙ୍କର ମନେପଡ଼େ, ମାକ୍‌ଡଫ୍ ଭୋଜି ସଭାରେ ଯୋଗ ଦେବା ପାଇଁ ତାଙ୍କର ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଛି । ତାଙ୍କୁ ପୁଣି ଅସ୍ୱସ୍ତି ଲାଗେ, ଅଶାନ୍ତି ଆରମ୍ଭ ହୁଏ । ସେ ଠିକ୍ କରନ୍ତି, ପୁଣି ଡାହାଣୀମାନଙ୍କ ପାଖକୁ ଯିବେ । ତାଙ୍କ ଭବିଷ୍ୟତ୍ ବିଷୟରେ ପଚାରିବେ । କହିବେ, ନିଜ ସ୍ୱାର୍ଥ ପାଇଁ ବର୍ତ୍ତମାନ ସେ ଯେକୌଣସି କାମ କରିଯିବେ । ଏତେ ବାଟ ଚାଲିଆସିଛନ୍ତି ଯେ, ସେଠାରୁ ଫେରିବାର ଉପାୟ ନାହିଁ ।

ଲେଡି ସ୍ୱାମୀଙ୍କୁ ସମବେଦନା ପୂର୍ଣ୍ଣ କଣ୍ଠରେ କହନ୍ତି, ବର୍ତ୍ତମାନ ତମର କିଛିକ୍ଷଣ ଶୋଇବା ଦରକାର । ମାକ୍‌ବେଥ୍ ରାଜି ହୋଇଯାଆନ୍ତି ।

କିଛି ଦିନ କଟିଯାଏ । ମାକ୍‌ବେଥ୍‌ଙ୍କର ଅପଶାସନ ଆଉ ଅତ୍ୟାଚାରରେ ପ୍ରଜାମାନେ ଅଶାନ୍ତ ହୋଇଉଠନ୍ତି । ସେମାନେ ଆଶା କରନ୍ତି, ମୃତ ରାଜାଙ୍କର ପୁତ୍ର ମାଲକମ୍ ଇଂଲଣ୍ଡର ସାମରିକ ସାହାଯ୍ୟ ଗ୍ରହଣ କରି ଏଇ ଅପଶାସନର ହାତରୁ ସେମାନଙ୍କୁ ରକ୍ଷା କରିବେ । ଇତିମଧ୍ୟରେ ମାକଡଫ୍ ମଧ୍ୟ ଇଂଲଣ୍ଡ ଚାଲିଯାଇ ମାଲକମ୍‌ଙ୍କ ସହିତ ମିଳିତ ହୋଇଥିବାର ସମ୍ବାଦ ମିଳେ । ଏହା ଶୁଣି ମାକ୍‌ବେଥ୍ ଯୁଦ୍ଧ ପାଇଁ ପ୍ରସ୍ତୁତି ଆରମ୍ଭ କରିଦିଅନ୍ତି । ନିହତ ରାଜାଙ୍କର ଜଣେ ସଭାସଦ୍ ଲେନକ୍ସଙ୍କଠୁ ଜଣାଯାଏ ଯେ, ଡନ୍‌କାନ୍ ଏବଂ ବାଙ୍କୋଙ୍କର ଅସ୍ୱାଭାବିକ ମୃତ୍ୟୁ ଡନ୍‌କାନ୍‌ଙ୍କର ଦୁଇ ପୁତ୍ରଙ୍କର ପଳାୟନ, ମୃତ ରାଜାଙ୍କର ଦୁଇ ଦେହରକ୍ଷୀଙ୍କର ହତ୍ୟା, ମାକ୍‌ଡଫ୍‌ଙ୍କ ପ୍ରତି ମାକ୍‌ବେଥ୍‌ଙ୍କର ବିରୂପତା ଏ ସବୁ ଘଟଣାକୁ ସ୍କଟଲାଣ୍ଡବାସୀ ସହଜ ଭାବରେ ଗ୍ରହଣ କରୁ ନାହାନ୍ତି । କ୍ରମେ ମାକ୍‌ବେଥ୍‌ଙ୍କୁ କେନ୍ଦ୍ର କରି ସନ୍ଦେହର କଳାବାଦଲ ପୁଞ୍ଜୀଭୂତ ହେବାରେ ଲାଗିଛି ।

॥ ୪ ॥

ମାକ୍‌ବେଥ୍ ଡାହାଣୀମାନଙ୍କୁ ସାକ୍ଷାତ୍ କରିବାକୁ ବାହାରିଛନ୍ତି । ତାଙ୍କର ଲକ୍ଷ୍ୟ ଏକ ଗୁହା । ଡାହାଣୀମାନଙ୍କର ଆହ୍ୱାନରେ ସେମାନଙ୍କର ଗୁରୁ ଏକ ପ୍ରେତାତ୍ମାର ଆବିର୍ଭାବ ହୁଏ । ମାକ୍‌ବେଥ୍‌ଙ୍କୁ କୌଣସି ପ୍ରଶ୍ନ ପଚାରିବାକୁ ହୁଏ ନାହିଁ । କାରଣ ସେ ତାଙ୍କର ମନକଥା ଜାଣେ । ସେ ମାକ୍‌ବେଥ୍‌ଙ୍କୁ କହେ - ତମେ ମାକ୍‌ଡଫ୍ ଠାରୁ ସାବଧାନରେ ରହିବ । ପ୍ରେତାତ୍ମା -ଅଦୃଶ୍ୟ ହୁଏ । ଏକ ରକ୍ତାକ୍ତ ଶିଶୁ ବେଶରେ ଦ୍ୱିତୀୟ ପ୍ରେତାତ୍ମାର ଆବିର୍ଭାବ ଘଟେ । ସେ କହେ, ତମେ ସାହସର ସହିତ ନିଜର ସଂକଳ୍ପକୁ ରୂପ ଦେଇଚାଲ ରକ୍ତପାତ ପାଇଁ କୁଣ୍ଠା ବୋଧ କରିବ ନାହିଁ । ନାରୀଗର୍ଭରୁ ଭୂମିଷ୍ଠ କୌଣସି ବ୍ୟକ୍ତି ତମର କ୍ଷତି କରିପାରିବ ନାହିଁ । ଏତିକି କହି ଦ୍ୱିତୀୟ ପ୍ରେତ ଅଦୃଶ୍ୟ ହୁଏ ।

ମାକ୍‌ବେଥ୍‌ଙ୍କ ହୃତ ସାହସ ଫେରିଆସେ । ସେ ସ୍ଥିର କରନ୍ତି, ମାକ୍‌ଡଫ୍‌କୁ ଯେମିତି ହେଲେ ପୃଥିବୀରୁ ବିଦାୟ ଦେବେ ଏବଂ ତା'ପରେ ସେ ନିଶ୍ଚିନ୍ତରେ ଶୋଇପାରିବେ ।

ଏଥର ଆସେ ତୃତୀୟ ପ୍ରେତ, ହାତରେ ଗୋଟାଏ ଗଛ, ମୁଣ୍ଡରେ ମୁକୁଟ । ଶିଶୁ ବେଶୀ ସେଇ ପ୍ରେତାତ୍ମା କହେ- ସିଂହ ଭଳି ସାହସୀ ହୁଅ । ଯେତେଦିନଯାଏ ବର୍ଣ୍ଣାମ୍ ଅରଣ୍ୟ ଡନ୍‌ସିନାନ୍ ପାହାଡ଼ ଉପରକୁ ଉଠି ନ ଆସିଛି, ସେତେଦିନଯାଏ ତମକୁ କେହି ପରାଜିତ କରିପାରିବେ ନାହିଁ । ପ୍ରେତାତ୍ମା ବିଦାୟ ନିଏ । ଗଭୀର ଆତ୍ମବିଶ୍ୱାସ ନେଇ ମାକ୍‌ବେଥ୍ କହନ୍ତି, ଏମିତି କିଏ ଅଛି, ଯାହାର ମନର ଜୋରରେ ଗଛଲତା ମାଟିରେ ମାୟା କଟାଇ ଚାଲିବାକୁ ଆରମ୍ଭ କରିବେ !

ବାଙ୍କୋଙ୍କର ପୁଅ ରାଜା ହେବ କିମ୍ବା ନାହିଁ ଏକଥା ମଧ୍ୟ ମାକ୍‌ବେଥ୍‌ ଜାଣିବାକୁ ଚାହିଁଥିଲେ । ଏ ପ୍ରଶ୍ନର ଉତ୍ତର ଅବଶ୍ୟ ମିଳିଲା ନାହିଁ । ତେବେ ବାଧ କରିବାରୁ ଡାହାଣୀମାନେ ତାଙ୍କୁ ଗୋଟିଏ ଦୃଶ୍ୟ ଦେଖାଇଲେ । ଆଠଟା ଛାୟା - ଶେଷଜଣକ ବାଙ୍କୋ । ତାଙ୍କ ହାତରେ ଗୋଟିଏ ଗ୍ଲାସ । ମାକ୍‌ବେଥ୍‌ ଦେଖନ୍ତି, ସାତଜଣଙ୍କ ହାତରେ ରାଜଦଣ୍ଡ । ପଛରେ ବାଙ୍କୋ ଠିଆ ହୋଇ ତାଙ୍କ ଆଡ଼କୁ ଅନାଇ ହସୁଛନ୍ତି । ଅନ୍ୟ ମୂର୍ତ୍ତିମାନଙ୍କ ଆଡ଼କୁ ହାତଠାରି କଣ ଦେଖାଇ ଦେଉଛନ୍ତି । ଦୃଶ୍ୟ ଅଦୃଶ୍ୟ ହୋଇଯାଏ । ଡାହାଣୀମାନେ ମଧ୍ୟ ଚାଲିଯାଆନ୍ତି ।

ଫେରିବା ସମୟରେ ମାକ୍‌ବେଥ୍‌ ଖବର ପାଆନ୍ତି ଯେ, ମାକ୍‌ଡଫ୍‌ ଇଂଲଣ୍ଡ ପଳାଇ ଯାଇଛି । ମାକ୍‌ବେଥ୍‌ ସିଦ୍ଧାନ୍ତ ନିଅନ୍ତି, ସେ ମାକ୍‌ଡଫ୍‌ର ପ୍ରାସାଦ ଆକ୍ରମଣ କରି ତାଙ୍କ ସ୍ତ୍ରୀ, ପୁତ୍ର ଓ ଅନ୍ୟାନ୍ୟ ପରିଜନମାନଙ୍କୁ ହତ୍ୟା କରିବେ ।

ମାକ୍‌ଡଫ୍‌ଙ୍କ ପ୍ରାସାଦ ଫିଫିରେ । ଲେଡି ମାକ୍‌ବେଥ୍‌ ତାଙ୍କର ବନ୍ଧୁ ରସ୍‌ଙ୍କ ସହିତ ଆଳାପ କରୁଥାଆନ୍ତି । ଲେଡି କହନ୍ତି, ସ୍ତ୍ରୀ ପରିବାରଙ୍କୁ ଏପରି ବିପଦ ମୁହଁକୁ ଠେଲି ଦେଇ ମକ୍‌ଡଫ୍‌ର ଇଂଲଣ୍ଡ ପଳାଇଯିବା ଠିକ୍‌ ହୋଇ ନାହିଁ । ପଶୁପକ୍ଷୀମାନେ ସୁଦ୍ଧା ସେମାନଙ୍କର ସନ୍ତାନଙ୍କୁ ଶତ୍ରୁଠାରୁ ପ୍ରାଣ ଦେଇ ରକ୍ଷା କରିଥାଆନ୍ତି । ରସ୍‌ ତାଙ୍କୁ କହନ୍ତି, ମାକ୍‌ଡଫ୍‌ ବିଜ୍ଞ, ବିଚକ୍ଷଣ ଓ କର୍ତ୍ତବ୍ୟପରାୟଣ । ତେବେ ବର୍ତ୍ତମାନ ସମୟ ଖରାପ, ନାନା ଗୁଜବ୍‌ ଶୁଣା ଯାଉଛି । କେତେବେଳେ କ'ଣ ଘଟିବ କିଏ କହିବ ? ଏତିକି କହି ରସ୍‌ ଚାଲିଯାଆନ୍ତି ।

ଦୂତଠାରୁ ସମୂହ ବିପଦର ସମ୍ବାଦ ମିଳେ । ଶତ୍ରୁ ବର୍ତ୍ତମାନ ଖୁବ୍‌ ପାଖରେ । ନ ପଳାଇଲେ ଆଉ ରକ୍ଷା ନାହିଁ । କିନ୍ତୁ ସେଇ ସମୟ ଆଉ ମିଳେ ନାହିଁ । ଦଳେ ଘାତକ ପ୍ରବେଶ କରନ୍ତି । ଜଣେ ପ୍ରଶ୍ନ କରେ ମାକ୍‌ଡଫ୍‌ କାହାନ୍ତି ? ଲେଡି ତା'ଜଣାଇବାକୁ ଅସ୍ୱୀକାର କଲାରୁ ଘାତକ ମାକ୍‌ଡଫ୍‌କୁ ବିଶ୍ୱାସଘାତକ ବୋଲି କହେ । ମାକ୍‌ଡଫ୍‌ଙ୍କ ପୁତ୍ର ପ୍ରତିବାଦ କଲାରୁ ଘାତକ ତାକୁ ଛୁରୀ ମାରେ । ଲେଡି ମଧ୍ୟ ଛାଡ଼ ପାଆନ୍ତି ନାହିଁ ।

ଇଂଲଣ୍ଡରେ ରାଜା ଏଡ଼ୱାର୍ଡ୍‌ ଙ୍କ ପ୍ରାସାଦ ସମ୍ମୁଖରେ ମାଲକମ୍‌ ଏବଂ ମାକ୍‌ଡଫ୍‌ଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଥିଲା । ମାକ୍‌ବେଥ୍‌ ଙ୍କ କୁଶାସନରେ ସ୍କଟଲାଣ୍ଡର ଯେଉଁ ଦୁର୍ଦ୍ଦଶା ହୋଇଛି, ସେ କଥା ମାକ୍‌ଡଫ୍‌ ମାଲକମ୍‌ଙ୍କୁ ବୁଝାଉ ଥିଲେ । ସେ କହୁଥିଲେ, ଦେଶରେ ପ୍ରତିଦିନ ବିଧବାଙ୍କ ସଂଖ୍ୟା ବଢ଼ି ଚାଲିଛି । ଅନାଥ ଶିଶୁଙ୍କର କ୍ରନ୍ଦନ ରୋଳରେ ସ୍କଟଲାଣ୍ଡର ଆକାଶ ଆଜି ବିବର୍ଣ୍ଣ । ମାଲକମ୍‌ କହନ୍ତି ଯେ ସେ ତାଙ୍କ କଥା ବିଶ୍ୱାସ କରୁଛନ୍ତି । ସମୟ ହେଲେ ତା'ର ପ୍ରତିକାର କରାଯିବ । ମାକ୍‌ବେଥ୍‌ଙ୍କ ସମ୍ପର୍କରେ ସେ କହନ୍ତି, ଦିନେ ସେ ନ୍ୟାୟପରାୟଣ ଥିଲେ, ଆଜି ବିଶ୍ୱାସଘାତକ ହୋଇଛନ୍ତି । ମାକ୍‌ଡଫ୍‌ ଙ୍କର ସତ୍ୟ ନିଷ୍ଠାର ସେ ବହୁ ପ୍ରଶଂସା

କରନ୍ତି । ତେବେ ଶିଶୁ ଆଉ ନାରୀମାନଙ୍କୁ ବିପଦ ମୁହଁରେ ରଖି ଏକାକୀ ତାଙ୍କର ଇଂଲଣ୍ଡ ଚାଲିଆସିବା ଘଟଣାକୁ ସେ ପସନ୍ଦ କରୁ ନାହାନ୍ତି ।

ମାକ୍‌ଡଫ୍ କହନ୍ତି- ମାକ୍‌ବେଥ୍‌ଙ୍କ ଭଳି ଅତ୍ୟାଚାରୀର ସମସ୍ତ ସମ୍ପଦ ପାଇଲେ ମଧ୍ୟ ସେ ସଇତାନୀ କରିପାରିବେ ନାହିଁ । ମାତୃଭୂମିରେ ଯେଉଁ ଅତ୍ୟାଚାର ଚାଲିଛି ତାକୁ ବନ୍ଦ କରିବାର ଲକ୍ଷ୍ୟ ନେଇ ନିଜର ସ୍ତ୍ରୀ ପୁତ୍ରଙ୍କୁ ବିପଦ ମୁହଁରେ ରଖି ସେ ଏଠାକୁ ଚାଲି ଆସିଛନ୍ତି ।

ମାଲକମ୍ ବିଷଣ୍ଣ ହୋଇ କହନ୍ତି - ଜନ୍ମଭୂମିର ଶରୀରରୁ ଆଜି ରକ୍ତ ଝରୁଛି । ଦେଶକୁ ଅତ୍ୟାଚାରୀ କବଳରୁ ରକ୍ଷା କରିବା ପାଇଁ ସାହାଯ୍ୟ ଦରକାର । ଇଂଲଣ୍ଡର ରାଜା ଏଥିପାଇଁ ସୈନ୍ୟ ସାହାଯ୍ୟ ଯୋଗାଇ ଦେବାର ପ୍ରତିଶ୍ରୁତି ଦେଇଛନ୍ତି । ତେବେ ଏଇ ସମୟରେ ଅନ୍ୟ ଏକ ଚିନ୍ତା ତାଙ୍କୁ ଗ୍ରାସ କରୁଛି । ମାକ୍‌ବେଥ୍ ପରାଜିତ ହେଲେ ଶାସନ କ୍ଷମତା ତାଙ୍କ ହାତକୁ ଆସିବ । ତେବେ ସେଥିରେ ଦେଶର ଆର୍ଥିକ କ୍ଷତି ହେବ ନାହିଁତ ? ଆତ୍ମନିନ୍ଦାରେ ପ୍ରବୃତ୍ତ ମାଲକମ୍ କହି ଚାଲନ୍ତି, ତାଙ୍କ ଭିତରେ ଏଭଳି ସବୁ ଦୋଷ ରହିଛି, ଯାହା ପ୍ରକାଶ ପାଇଲେ, ତାହା ତୁଳନାରେ ମାକ୍‌ବେଥ୍ ମଧ୍ୟ ତୁଷାର ଶୁଭ୍ର ଜଣାଯିବେ । ମାକ୍‌ବେଥ୍ ରକ୍ତପିପାସୁ, ଲୋଭୀ, ମିଥ୍ୟାବାଦୀ ଆଉ ପ୍ରତାରକ ହେଲେ ଉଚ୍ଛୃଙ୍ଖଳ ମଧ୍ୟ ସେ, ବିଳାସୀ । ରାଜା ହେବାର କୌଣସି ଗୁଣ ତାଙ୍କର ନାହିଁ । ଅଛି କେବଳ ଅପରାଧପ୍ରବଣତା ।

ମାକ୍‌ଡଫ୍ ପୁଣି ଥରେ ସ୍କଟଲାଣ୍ଡର ଦୁର୍ଦ୍ଦଶାର କଥା ତାଙ୍କର ମନେ ପକାଇ ଦିଅନ୍ତି । କହନ୍ତି ତାଙ୍କ ପିତା ଡନ୍‌କାନ୍‌ଙ୍କର ସତ୍ୟନିଷ୍ଠା ଆଉ ଜନନୀଙ୍କ ଚାରିତ୍ରିକ ପବିତ୍ରତାର କଥା । ସ୍କଟଲାଣ୍ଡକୁ ବଞ୍ଚାଇବାର ସମସ୍ତ ଆଶା ଧୀରେ ଧୀରେ ଲୋପ ପାଇ ଯାଉଛି ବୋଲି ଦୁଃଖ ପ୍ରକାଶ କରନ୍ତି । ପ୍ରକୃତରେ ମାକ୍‌ଡଫ୍ ମାକ୍‌ବେଥ୍‌ଙ୍କର ଗୁପ୍ତଚର କିମ୍ବା ନୁହେଁ, ତାହା ଜାଣିବା ପାଇଁ ମାଲକମ୍ ଏତେବେଳଯାଏ ଆତ୍ମ ନିନ୍ଦାରେ ରତ ଥିଲେ । ଏଥର ସେ ମାକ୍‌ଡଫ୍‌ଙ୍କୁ କହନ୍ତି, ଏତେବେଳଯାଏ ନିଜ ସମ୍ପର୍କରେ ମୁଁ ଯାହା ସବୁ କହୁଥିଲି, ସେ ସବୁ ମିଥ୍ୟା । ପ୍ରକୃତରେ ଆପଣ ମୋତେ ଯାହା ଜାଣିଛନ୍ତି, ମୁଁ ସେଇଆ । କେବେ ପ୍ରତିଜ୍ଞା ଭଙ୍ଗ କରି ନାହିଁ । ଧନସମ୍ପଦରେ ଲୋଭ କରି ନାହିଁ । ଦେଶର ଅସହାୟତା ମୋତେ ମଧ୍ୟ ବ୍ୟଥିତ କରିଛି । ଯଥାଶୀଘ୍ର ଦଶହଜାର ସୈନ୍ୟ ନେଇ ମାକ୍‌ବେଥ୍‌କୁ ଶାସ୍ତି ଦେବା ପାଇଁ ସ୍କଟଲାଣ୍ଡ ଯାତ୍ରା କରିବି ।

ଏତିକିବେଳେ ରସ୍ ସେଠାକୁ ଆସନ୍ତି । ଦେଶର ଅବସ୍ଥା ବିପର୍ଯ୍ୟୟକୁ ନେଇ ପୁଣି ସେମାନଙ୍କ ମଧ୍ୟରେ କଥାବାର୍ତ୍ତା ଚାଲେ । ରସ୍ ଜଣାଇ ଦିଅନ୍ତି, ମାକ୍‌ବେଥ୍‌ଙ୍କ ଅତ୍ୟାଚାର ବର୍ତ୍ତମାନ ଶୀର୍ଷରେ । ଏହିଭଳି ସମୟରେ ଯଦି ସେମାନେ ସାହାଯ୍ୟ ନେଇ ପହଞ୍ଚନ୍ତି, ତେବେ ଲୋକମାନେ ସ୍ୱତଃସ୍ଫୂର୍ତ୍ତ ଭାବରେ ତାଙ୍କ ସହିତ ଯୁଦ୍ଧରେ ଯୋଗ ଦେବେ । ନାରୀମାନେ ମଧ୍ୟ

ନୀରବ ରହିବେ ନାହିଁ । ମାକ୍‌ଡଫ୍ କହନ୍ତି ଯେ, ସେମାନେ ସେଥିପାଇଁ ପ୍ରସ୍ତୁତ ହେଉଛନ୍ତି । ରସ୍ ମାକ୍‌ଡଫ୍‌ଙ୍କର ପାରିବାରିକ ବିପର୍ଯ୍ୟୟ ବିଷୟରେ ସୂଚନା ଦିଅନ୍ତି । ବିସ୍ତୃତ ଭାବରେ ସବୁ କଥା ବର୍ଣ୍ଣନା କରି ସେ କହନ୍ତି, ମାକ୍‌ଡଫ୍‌ଙ୍କର ପ୍ରାସାଦ ଧୂଳିସାତ୍ ହୋଇଛି । ତାଙ୍କର ସ୍ତ୍ରୀ ପୁତ୍ର ନିହତ, ଏଭଳିକି ପ୍ରାସାଦର କେହି ଆଉ ଜୀବିତ ନାହାନ୍ତି । ଏଭଳି ମର୍ମନ୍ତୁଦ ସମ୍ବାଦରେ ମାକ୍‌ଡଫ୍ ଏବଂ ମାଲକମ୍ ଦୁହେଁ ଦୁଃଖରେ ଭାଙ୍ଗି ପଡ଼ନ୍ତି । କିଛି ସମୟ ପରେ ଶୋକର ବେଗ କିଛି ଊଣା ହେବାରୁ ମାଲକମ୍ ଧୀର ଭାବରେ ଏଇ ବେଦନା ସହ୍ୟ କରିବାକୁ ମାକ୍‌ଡଫ୍‌ଙ୍କୁ ଅନୁରୋଧ କରନ୍ତି । କହନ୍ତି, ଏଇ ଆଘାତ ତମର ତରବାରିର ଧାରକୁ ଆହୁରି ଶାଣିତକରୁ । ତମର ଅନ୍ତରକୁ ଶତ୍ରୁ ବିରୋଧରେ ଆହୁରି ଉତ୍ତେଜିତ କରୁ । ମାକ୍‌ଡଫ୍ ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି ଯେ, ସ୍କଟଲାଣ୍ଡର ଏଇ ସଇତାନ୍‌କୁ ସେ ଯେମିତି ଥରେ ହେଲେ ତାଙ୍କର ମୁହାଁମୁହିଁ ହେବାର ସୁଯୋଗ ଦିଅନ୍ତି । ସେତେବେଳେ ଯଦି ମାକ୍‌ବେଥ୍ ରକ୍ଷା ପାଇଯାଏ, ତେବେ ସେ ଧରିନେବେ ଯେ, ଈଶ୍ୱର ତାଙ୍କୁ କ୍ଷମା କରିଛନ୍ତି । ମାଲକମ୍ ତାଙ୍କ ଧୈର୍ଯ୍ୟକୁ ପ୍ରଶଂସା କରନ୍ତି । କହନ୍ତି, ସୈନ୍ୟବାହିନୀ ପ୍ରସ୍ତୁତ । ଏବେ କେବଳ ଯାତ୍ରା ପାଇଁ ଯାହା ଅପେକ୍ଷା । ମୋର ବିଶ୍ୱାସ ସ୍କଟଲାଣ୍ଡର ଦୁଃଖ ଆଉ ଯନ୍ତ୍ରଣାର ରାତି ଶେଷ ହୋଇ ଆସୁଛି, ସକାଳ ହେବାକୁ ଆଉ ବେଶୀ ଡେରି ନାହିଁ ।

॥ ୫ ॥

ଡନ୍‌ସିନାନ୍ ପାହାଡ଼ ଉପରେ ମାକ୍‌ବେଥ୍ ଙ୍କର ପ୍ରାସାଦ । ଲେଡି ମାକ୍‌ବେଥ୍ ଅସୁସ୍ଥ । ନିଦ ଭିତରେ ସେ ବିଛଣାରେ ଉଠି ବସନ୍ତି । କାଗଜ ବାହାର କରି ଚିଠି ଲେଖନ୍ତି । ମନକୁ ମନ କଥା କହନ୍ତି । ତାଙ୍କୁ ଜଗି ରହନ୍ତି ଜଣେ ଚିକିତ୍ସକ ଆଉ ତାଙ୍କର ପରିଚାରିକା । ଚିକିତ୍ସକ ଦେଖନ୍ତି ନିଦ ଭିତରେ ଲେଡି ଗୋଟାଏ ବତୀଧରି ଆଗେଇ ଚାଲିଛନ୍ତି । ତାଙ୍କର ଆଖି, ଖୋଲା, କିନ୍ତୁ ତହିଁରେ ଚେତନାର ଲକ୍ଷଣ ନାହିଁ । ବେଳେ ବେଳେ ଦୁଇ ହାତ ଘଷୁଛନ୍ତି । ପରିଚାରିକା କହେ- ଏମିତି ହାତ ଧୋଇବା ଭଳି ଦୁଇ ହାତ ଘଷିବା ତାଙ୍କର ଗୋଟାଏ ଅଭ୍ୟାସ ହୋଇଯାଇଛି । ନିଦରେ ଲେଡି ବିଳିବିଳେଇ ଉଠନ୍ତି, କହନ୍ତି- ତାଙ୍କ ହାତର ଏଇ ଦାଗଗୁଡାକ କ'ଣ କେବେବି ଲିଭିବ ନାହିଁ ? ସେଇ ଅବସ୍ଥାରେ ସେ ସ୍ୱାମୀଙ୍କର ଭୟ ଭାଙ୍ଗିବାକୁ ଚେଷ୍ଟା କରନ୍ତି । କହନ୍ତି, ଏମିତି କଥା କଥାରେ ଚମକି ଉଠିଲେ ସବୁ ଉଦ୍ୟମ ପଣ୍ଡ ହୋଇଯିବ । ସେ ପୁଣି ମାକ୍‌ଡଫ୍‌ଙ୍କ ସ୍ତ୍ରୀଙ୍କ କଥା କହନ୍ତି । ରହି ରହି କହିଉଠନ୍ତି ମୋର ଏଇ ହାତ ଦୁଇଟା କ'ଣ କେବେବି ପରିଷ୍କାର ହେବ ନାହିଁ ? ହାତରେ ରକ୍ତର ଗନ୍ଧ । ସଂସାରର ସବୁ ଅତର ଢାଳି ଦେଲେ ବି ସେ ଗନ୍ଧ ମରିବ ନାହିଁ । ପୁଣି କହନ୍ତି- ବାଙ୍କୋକୁ କବର ଦିଆଯାଇଛି । ସେ ଆଉ ସେଠୁ କେବେବି ବାହାରିପାରିବ ନାହିଁ ।

ଏଇ ଅଧା ନିଦ ଅଧା ଜାଗରଣ ଅବସ୍ଥା ଭିତରେ ସେ ତାଙ୍କର ଆଉ ମାକ୍‌ବେଥ୍‌ଙ୍କର ସବୁ ଅପରାଧର କଥା ପ୍ରକାଶ କରି ଦିଅନ୍ତି । ଚିକିତ୍ସକ କହନ୍ତି- ପାପଗ୍ରସ୍ତ ମନ ଏହିଭଳି ଭାବରେ ତା'ର ଅନ୍ତର୍ମନର ସବୁ କଥା କହିପକାଏ । କୌଣସି ଡାକ୍ତର ଆଉ କିଛି କରିପାରିବ ନାହିଁ । ବର୍ତ୍ତମାନ କେବଳ ଈଶ୍ୱର ସହାୟ । ଚିକିତ୍ସକ ବିଦାୟ ନିଅନ୍ତି ।

ଡନ୍‌ସିନାନ୍ ପାହାଡ଼ର ପାଖାପାଖି ଅଞ୍ଚଳରେ କେଇଜଣ ସ୍କଟ୍ ଅଭିଜାତ ବ୍ୟକ୍ତିଙ୍କ ନେତୃତ୍ୱରେ ଗୋଟିଏ ସୈନ୍ୟବାହିନୀ ବର୍ନାମ୍ ଅରଣ୍ୟ ଆଡ଼କୁ ଆଗେଇଚାଲେ । ସେଇଠି ସେମାନେ ମାଲକମ୍, ମାକ୍‌ଡଫ୍ ଆଉ ସିଓ୍ୱାର୍ଡ଼ଙ୍କ ନେତୃତ୍ୱରେ ଇଂଲଣ୍ଡରୁ ଆଗତ ସୈନ୍ୟବାହିନୀ ସହିତ ମିଳିତ ହେବେ । ସେମାନଙ୍କଠାରୁ ଜଣାଯାଏ ଯେ, ଏତେଦିନ ପର୍ଯ୍ୟନ୍ତ ଯେଉଁମାନେ କେବଳ ଭୟରେ ମାକ୍‌ବେଥ୍‌ଙ୍କର ଅନୁଗତ ଥିଲେ, ସେମାନେ ମଧ୍ୟ ମାଲକମ୍ ଇତ୍ୟାଦିଙ୍କ ସହିତ ଯୋଗ ଦେଇଛନ୍ତି । ତେଣେ ଡନ୍‌ସିନାନ୍ ପାହାଡ଼ ଉପରେ ମାକ୍‌ବେଥ୍‌ଙ୍କର ପ୍ରାୟ ପାଗଳ ହୋଇଯିବା ଭଳି ଅବସ୍ଥା । ସେ ପ୍ରାଣପଣେ ଦୁର୍ଗ ରକ୍ଷା ନିମନ୍ତେ ଚେଷ୍ଟା କରୁଚନ୍ତି ।

ଡନ୍‌ସିନାନ୍ ପାହାଡ଼ରେ ବର୍ତ୍ତମାନ ପ୍ରେତାତ୍ମାମାନଙ୍କର ଭବିଷ୍ୟତ୍‌ବାଣୀ ହିଁ ହେଉଛି ମାକ୍‌ବେଥ୍‌ଙ୍କର ଏକମାତ୍ର ଭରସା । ଯେପର୍ଯ୍ୟନ୍ତ ବର୍ନାମ୍ ଅରଣ୍ୟ ଡନ୍‌ସିନାନ୍ ପାହାଡ଼ ଉପରକୁ ଚାଲି ଚାଲି ନ ଆସିଛି, ସେପର୍ଯ୍ୟନ୍ତ ତାଙ୍କର କୌଣସି ଭୟ ନାହିଁ । ପୁଣି ନାରୀ ଗର୍ଭଜାତ କୌଣସି ମଣିଷ ତାଙ୍କୁ ପରାଜିତ କରିପାରିବ ନାହିଁ । ଏ କଥାଟି ମଧ୍ୟ ପ୍ରେତ ତାଙ୍କୁ କହିଛି । ତଥାପି ମାକ୍‌ବେଥ୍ ଅସ୍ଥିର ହୋଇ ପଡୁଛନ୍ତି । ତାଙ୍କର ପୂର୍ବର ସେଇ ପ୍ରଚଣ୍ଡ ଆତ୍ମବିଶ୍ୱାସ ଯେମିତି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡୁଛି । ସେ ଉପଲବ୍ଧି କରୁଛନ୍ତି, ଶୁଷ୍କ ଆଉ ଜୀର୍ଣ୍ଣ ପଉଷ ପତ୍ର ଭଳି ତାଙ୍କର ଜୀବନ ଆଜି ଝରି ପଡ଼ିବାକୁ ବସିଛି । ଜୀବନର ହିସାବ ମିଳାଇବାକୁ ଯାଇ ସେ ବୁଝିପାରିଛନ୍ତି ଯେ, ଜୀବନସାରା ସେ ଶ୍ରଦ୍ଧା, ଆନୁଗତ୍ୟ, ସ୍ନେହ, ପ୍ରେମ, ବନ୍ଧୁତା, ଏ ସବୁ କିଛି ପାଇ ନାହାନ୍ତି । ପାଇଛନ୍ତି କେବଳ ନିରୁପାୟ ମଣିଷର ନିରୁଚ୍ଚାର ଅଭିଶାପ । ତଥାପି ସେ ବୀର, ଯୋଦ୍ଧା, ଶେଷ ଯୁଦ୍ଧର ପରିଣାମ ତାଙ୍କୁ ଦେଖିବାକୁ ହେବ । ଯେତେବେଳ ପର୍ଯ୍ୟନ୍ତ ତାଙ୍କ ଦେହରେ ବିନ୍ଦୁଏ ମାତ୍ର ରକ୍ତ ଥିବ, ସେତେବେଳ ପର୍ଯ୍ୟନ୍ତ ସେ ଯୁଦ୍ଧ ଚଳାଇ ଯିବେ । ପ୍ରୟୋଜନ ନ ଥିଲେ ମଧ୍ୟ ସେ ପରିଚାରକମାନଙ୍କୁ ଡାକି ତାଙ୍କ ଯୁଦ୍ଧର ପୋଷାକ ଦେବାକୁ କହନ୍ତି । ଚିକିତ୍ସକଙ୍କ ପାଖକୁ ଯାଇ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ସମ୍ବନ୍ଧରେ ବୁଝନ୍ତି । ଡାକ୍ତର ତାଙ୍କୁ ଜଣାଇଦିଅନ୍ତି ଯେ, ଲେଡି ମାକ୍‌ବେଥ୍‌ଙ୍କର ରୋଗ ଦେହର ନୁହେଁ, ମନର ମନକୁ ଏଥର ବିଶ୍ରାମ ଦେବାକୁ ହେବ ।

ମାକ୍‌ବେଥ୍ କହନ୍ତି, ସେ ବିଶ୍ରାମର ତେବେ ବ୍ୟବସ୍ଥା କର । ତମେ ତ ଡାକ୍ତର । ତମେ କ'ଣ ରୁଗ୍ଣ ମନର ଗଭୀରତା ଭିତରକୁ ମାଡ଼ି ଯାଇଥିବା ଦୁଃଖର ଚେରକୁ ଉପାଡ଼ି

ଦେଇପାରିବ ନାହିଁ ? ଚିକିତ୍ସକ ମାକ୍‌ବେଥ୍‌ଙ୍କ ମନର ଅବସ୍ଥା ଜାଣନ୍ତି । ତେଣୁ ସେ ବିନମ୍ର କଣ୍ଠରେ ଉତ୍ତର ଦିଅନ୍ତି - ସେଭଳି ଚିକିତ୍ସା କରିବାର ସାଧ ମୋର ନାହିଁ ମହାରାଜ ।

ମାକ୍‌ବେଥ୍ କ୍ରୋଧରେ ଜଳିଉଠି ଚିତ୍କାର କରନ୍ତି - 'ତାହାହେଲେ ତମେ ଏଠି କ'ଣ କରୁଛ ? ଯାଅ, କୁକୁରମାନଙ୍କୁ ଚିକିତ୍ସା କରିବା ଆରମ୍ଭ କରିଦିଅ । ଯାଅ, ମୋ ଆଗରୁ ଏଇ ମୁହୂର୍ତ୍ତରେ ବାହାରି ଯାଅ ।' ମାକ୍‌ବେଥ୍ ଉତ୍ତେଜିତ ହୋଇ ପଦଚାରଣା କରିବାକୁ ଆରମ୍ଭ କରିଦିଅନ୍ତି । ତାଙ୍କର ହାତ ମୁଠା ମୁଠା ହୋଇଯାଏ ।

ଶତ୍ରୁବାହିନୀ ଦ୍ରୁତ ଗତିରେ ଆଗେଇ ଆସୁଛନ୍ତି । ତଥାପି ମାକ୍‌ବେଥ୍‌ଙ୍କର ଭରସା ଅଛି ଡାହାଣୀମାନଙ୍କ ଭବିଷ୍ୟତ୍ ବାଣୀ ଉପରେ । ତାଙ୍କର ମୃତ୍ୟୁ ଏତେ ସହଜ ନୁହେଁ । ବର୍ନାମ୍ ଅରଣ୍ୟ ଡନ୍‌ସିନାନ୍ ପାହାଡ଼ ଉପରକୁ ଉଠିଆସିବା ଭିତରେ ରହିଛି ତାଙ୍କର ମୃତ୍ୟୁ ଭେଦ । ଏହା କ'ଣ କେବେ ସମ୍ଭବ ? ଅରଣ୍ୟର କ'ଣ ଚାଲିବା ଶକ୍ତି ଅଛି ? ସେ କଦାପି ମରିବେ ନାହିଁ ।

ବର୍ନାମ୍ ଅରଣ୍ୟରେ ଆଶ୍ରୟ ନେଇଛନ୍ତି ଇଂରେଜ ଓ ସ୍କଟ୍ ସାମନ୍ତମାନଙ୍କର ମିଳିତ ସେନା । ସେମାନଙ୍କର ଯୌଥବାହିନୀର ବିଜୟ ନିଶ୍ଚିତ । ପ୍ରବୀଣ ଇଂରେଜ ସେନାପତି ସିଓ୍ୱାର୍ଡ ସମସ୍ତଙ୍କୁ ଜଙ୍ଗଲରୁ ଖଣ୍ଡେ ଲେଖା ଗଛର ଡାଳ ଭାଙ୍ଗି ମୁଣ୍ଡ ଉପରେ ଧରିବାକୁ ଆଦେଶ ଦିଅନ୍ତି । ଶତ୍ରୁମାନେ ତାଙ୍କର ସୈନ୍ୟବାହିନୀର ପ୍ରକୃତ ସଂଖ୍ୟା କଦାପି ଜାଣିପାରିବେ ନାହିଁ । ଏହିଭଳି ଭାବରେ ସୈନ୍ୟବାହିନୀ ଡନ୍‌ସିନାନ୍ ଦୁର୍ଗ ଆଡ଼କୁ ଆଗେଇ ଚାଲନ୍ତି । ମାକ୍‌ବେଥ୍ ସେଇଠି ଥିବାର ଖବର ମିଳିଛି । ଦୁର୍ଗ ବାହାରର ପ୍ରତିରକ୍ଷା ବ୍ୟବସ୍ଥା ସେତେ ଦୃଢ଼ ନୁହେଁ । ବାଧା ଦେବା ପାଇଁ ପ୍ରାୟ କେହି ନାହାନ୍ତି ।

ମାକ୍‌ବେଥ୍ କିନ୍ତୁ ଅଲଗା ବିଶ୍ୱାସକୁ ଧରି ବସିଛନ୍ତି । ତାଙ୍କର ଧାରଣା ଇଂରେଜ ବାହିନୀ ଦୁର୍ଗ ବାହାରେ ହୁଏତ ଅନାହାରରେ ମରିବେ କିମ୍ବା ରୋଗରେ ପଡ଼ି ମୃତ୍ୟୁ ବରଣ କରିବେ । ମାକ୍‌ବେଥ୍ ମନେକରନ୍ତି, ଯଦି ତାଙ୍କ ନିଜ ଲୋକମାନେ ଶତ୍ରୁ ସହିତ ହାତ ମିଳାଇ ନ ଥାନ୍ତେ, ତେବେ ମୁହାଁମୁହିଁ ଲଢ଼େଇ କରି ସେ ନିଶ୍ଚୟ ଶତ୍ରୁମାନଙ୍କୁ ହଟାଇ ଦେଇ ପାରିଥାଆନ୍ତେ । ଗୃହ ଶତ୍ରୁ ଯଦି ବିଭୀଷଣ ପାଲଟିଯାଏ , ତେବେ ଶତ୍ରୁର ଶକ୍ତି ତ ବଢ଼ିବହିଁ । ତଥାପି ସେ କଦାପି ଆତ୍ମସମର୍ପଣ କରିବେ ନାହିଁ । ଯୁଦ୍ଧର ଫଳାଫଳ ନିଶ୍ଚୟ ତାଙ୍କ ସପକ୍ଷରେ ଯିବ ।

ଏତିକିବେଳେ ଅନ୍ଦରମହଲରୁ ନାରୀ କଣ୍ଠରେ କ୍ରନ୍ଦନର ରୋଳ ଉଠେ । ମାକ୍‌ବେଥ୍ ଚମକି ପଡ଼ନ୍ତି । କାହାର କ'ଣ ହେଲା ? ବେଶି ବେଳ ଯାଏ ଅପେକ୍ଷା କରିବାକୁ ପଡ଼େ ନାହିଁ । ଅନ୍ତଃପୁରରୁ ପରିଚାରିକା ଧାଇଁଆସି ଲେଡିଙ୍କର ପରଲୋକ ଯାତ୍ରାର ସମ୍ବାଦ ଦିଏ । ମାକ୍‌ବେଥ୍

ସ୍ତବ୍ଧ ହୋଇ ଯାଆନ୍ତି । ଅନେକ ସୁଖଦୁଃଖର ସାଥି ଚାଲିଗଲା । ଅନେକ ସ୍ୱପ୍ନ ଦେଖିଥିଲା ବିଚାରୀ। ସ୍ୱପ୍ନ କ'ଣ କେବେ ସତ୍ୟ ହୁଏ ? ତା'ରି ଉଦ୍ୟମରେ ତ ଆଜି ସ୍କଟ୍‌ଲାଣ୍ଡର ରାଜମୁକୁଟ ତାଙ୍କ ମଥାରେ ଶୋଭା ପାଉଛି । ଅନେକ ଉଚ୍ଚାକାଂକ୍ଷା ଥିଲା ତା'ର । ଭଲ ହୋଇଛି । ସେ ଉଦ୍ୟମ ଦେଖିଛି । ତା'ର ପରିଣାମ ଦେଖିବାକୁ ରହି ନାହିଁ ।

ସେ ଶୋକ କରିବେ କାହିଁକି ? ଘଟଣା ସବୁ ଯେମିତି ଦ୍ରୁତ ଗତିରେ ଘଟି ଚାଲିଥିଲା, ତହିଁରେ ସେ ଏକପ୍ରକାର ପଥର ହୋଇ ଯାଇଥିଲେ । ପତ୍ନୀଙ୍କର ତିରୋଧାନ ତେଣୁ ତାଙ୍କୁ ସେଭଳି ବିଚ଼ଳିତ କରେ ନାହିଁ। କେବଳ କହନ୍ତି - ଆଉ କିଛି ଦିନ ଅପେକ୍ଷା କରି ଯାଇଥିଲେ, ସବୁ କିଛି ନିଜ ଆଖିରେ ଦେଖିଯାଇଥାନ୍ତା । ସବୁ ଉଚ୍ଚାକାଂକ୍ଷାର ଯେ ପତନ ଦିଗଟିଏ ଥାଏ, ସେ କଥା ନିଜେ ଜାଣି ଯାଇଥାଆନ୍ତା ।

ହଠାତ୍ ମାକ୍‌ବେଥ୍ ଦାର୍ଶନିକ ହୋଇଉଠନ୍ତି । ସେ ଅନୁଭବ କରନ୍ତି ପ୍ରତି ମୁହୂର୍ତ୍ତରେ ମଣିଷ ମୃତ୍ୟୁ ଆଡ଼କୁ ପାଦ ଗଣି ଗଣି ଆଗେଇ ଚାଲିଛି । ମହାକାଳର ଅମୋଘ ନିର୍ଦ୍ଦେଶରେ ତାର ଜୀବନ ଚକ୍ର ଆବର୍ତ୍ତିତ । ଦୁନିଆ ରଙ୍ଗମଞ୍ଚରେ ଅଭିନୟ କରିବା ପାଇଁ ମଣିଷର ସୃଷ୍ଟି । ଏଠି ଥାଇ ସେ କିଛି ଆସ୍ଫାଳନ କରେ । କିଛି ବୁଝାମଣା କରେ । ତା'ପରେ ଦିନେ ପର୍ଦ୍ଦାର ଅନ୍ତରାଳକୁ ଚାଲିଯାଏ । କହିବାକୁ ଗଲେ ଜୀବନ ଅର୍ଥହୀନ, ଉଦ୍ଦେଶ୍ୟହୀନ ଏକ ପ୍ରହେଳିକା, ଏକ ଅସମାପ୍ତ ସଂଳାପ, ଯାହା କିଛି ଦମ୍ଭ ଆଉ ଅଭିମାନ ପ୍ରକାଶ କରୁ କରୁ ସରିଯାଏ ।

କାହାରି ମରଣରେ ସଂସାର ରଥ ଅଚଳ ହୋଇଯାଏ ନାହିଁ। ନିଜେ ବଞ୍ଚିଥିବା ପର୍ଯ୍ୟନ୍ତ ତମ ପାଇଁ ସଂସାର ଅଛି । ସେ ଏବେ ନିଜ ପାଇଁ ବଞ୍ଚିବେ ।

ଏତିକିବେଳେ ଦ୍ୱାରରକ୍ଷୀଠାରୁ ଏକ ଚମକପ୍ରଦ ସମ୍ବାଦ ଶୁଣିବାକୁ ମିଳେ । ସେ କହେ, ତା'ର ମନେ ହେଉଛି, ବର୍ନାମ୍ ଜଙ୍ଗଲଟା ଧୀରେ ଧୀରେ ଡନ୍‌ସିନାନ୍ ପାହାଡ଼ ଆଡ଼କୁ ଆଗେଇ ଆସୁଛି । ପ୍ରକୃତରେ ଜଙ୍ଗଲ ଚାଲିଆସୁଛି !! ଯାହାକୁ ସେ ଅସମ୍ଭବ ମଣିଥିଲେ, ତାହା ଏବେ ସମ୍ଭବ ହୋଇଛି ! ସେ ନିଜେ ଯାଇ ଏହି ଅଦ୍‌ଭୁତ ଦୃଶ୍ୟ ଦେଖିବେ । ସବୁ ଯେତେବେଳେ ଶେଷ ହେବାକୁ ଯାଉଛି, ସେତେବେଳେ ସେ ଆଉ ଡରିବେ କାହାକୁ ?

ଦୃଶ୍ୟଟା ଦେଖିବା ପରେ ସବୁ କଥା ତାଙ୍କ ନିକଟରେ ସ୍ପଷ୍ଟ ହୋଇଯାଏ । ପ୍ରତ୍ୟେକ ବନସ୍ପତିର ଆଢୁଆଳରେ ଚାଲୁଥିବା ମଣିଷର ରୂପକୁ ସେ ଦେଖିପାରନ୍ତି । ଏତେବେଳେ ଡାହାଣୀମାନଙ୍କର ଭବିଷ୍ୟତ୍ ବାଣୀର ଗୂଢ଼ାର୍ଥ ତାଙ୍କର ହୃଦ୍‌ବୋଧ ହୁଏ । ସେତେବେଳେ ସେ ଏହାକୁ ବୁଝି ନ ପାରି କେବଳ ବାହ୍ୟ ଅର୍ଥଟିକୁ ଗ୍ରହଣ କରିନେଇ ଉତ୍‌ଫୁଲ୍ଲ ହୋଇଥିଲେ । ବର୍ତ୍ତମାନ ଆଉ ପ୍ରତିକାରର ଉପାୟ ନାହିଁ। ତଥାପି ସେ ଶେଷ ଚେଷ୍ଟା କରିବେ । ଯାହାହେଲେ

ବି ସେ ଯେ ମାକ୍‌ବେଥ୍ ଏବଂ ଏପର୍ଯ୍ୟନ୍ତ ତାହାହିଁ ରହିଛନ୍ତି, ସେ କଥା ଆକ୍ରମଣକାରୀଙ୍କୁ ବୁଝାଇଦେବେ । ସେ ଯୁଦ୍ଧକରି ବୀରର ମୃତ୍ୟୁ ବରଣ କରିବେ ।

ଇତି ମଧ୍ୟରେ ମିଳିତବାହିନୀ ଦୁର୍ଗ ସମ୍ମୁଖକୁ ଚାଲିଆସିଥାଏ । ମାଲକମ୍ ସୈନ୍ୟମାନଙ୍କୁ ସେମାନେ ଧରିଥିବା ଡାଳସବୁକୁ ଫିଙ୍ଗି ଦେବା ପାଇଁ ଆଦେଶ ଦିଅନ୍ତି । ସୈନ୍ୟବାହିନୀ ଦୁର୍ଗ ଅବରୋଧ କରନ୍ତି ।

ମାକ୍‌ବେଥ୍‌ଙ୍କର ତଥାପି ଆଶା ଥାଏ । ଡାହାଣୀମାନେ କହିଥାନ୍ତି - କୌଣସି ନାରୀ ଗର୍ଭଜାତ ସନ୍ତାନ ହାତରେ ତାଙ୍କର ପରାଜୟ ଲେଖା ନାହିଁ । ଏତ ଏକ ଅସମ୍ଭବ କଥା । ଏଭଳି କ'ଣ କେହି ଥାଇପାରେ ଯେ କି ନାରୀ ଗର୍ଭରୁ ଜନ୍ମ ହୋଇ ନାହିଁ !

ଯୁଦ୍ଧ ଚାଲୁଥାଏ । ଏହି ସମୟରେ ଇଂରେଜ ସେନାପତି ସିଓ୍ୱାର୍ଡ଼ଙ୍କ ପୁତ୍ରର ମୃତ୍ୟୁ ହୁଏ, ସ୍କଟଲାଣ୍ଡ ବାହିନୀର ଆକ୍ରମଣରେ । ଅଟ୍ଟହାସ୍ୟ କରି ମାକ୍‌ବେଥ୍ ମନ୍ତବ୍ୟ ଦିଅନ୍ତି - 'ତମେ ନିଶ୍ଚୟ ନାରୀଗର୍ଭଜାତ । ତମ ଭଳି ଯେଉଁମାନେ ନାରୀର ଗର୍ଭରୁ ଜନ୍ମ ହୋଇଛନ୍ତି, ସେମାନଙ୍କୁ ଦେଖିଲେ ମୋର ଦୟା ହୁଏ ।'

ଏଥର ଯୁଦ୍ଧକ୍ଷେତ୍ରକୁ ଆସନ୍ତି ମାକ୍‌ଡଫ୍ । ସ୍ତ୍ରୀ - ପୁତ୍ରଙ୍କର ଅକାଳ ମୃତ୍ୟୁର ଦୁଃଖ ଏ ପର୍ଯ୍ୟନ୍ତ ମଧ୍ୟ ସେ ଭୁଲିପାରି ନାହାନ୍ତି । ପ୍ରତିଶୋଧର ଅଗ୍ନି ତାଙ୍କ ମନରେ ଏବେବି ଦାଉ ଦାଉ ଜଳୁଥାଏ । ତାଙ୍କୁ ସହଯୋଗ କରୁଥାଆନ୍ତି ମାଲ୍‌କମ୍ ଏବଂ ସିଓ୍ୱାର୍ଡ଼ ।

ସିଓ୍ୱାର୍ଡ଼ ପ୍ରକାଶ କରନ୍ତି, ଦୁର୍ଗରକ୍ଷକ ଆତ୍ମ ସମର୍ପଣ କରିସାରିଛି । ସ୍କଟବାହିନୀ ତରଫରୁ ସେଭଳି କୌଣସି ପ୍ରତିରୋଧ ମଧ୍ୟ ଦେଖାଯାଉ ନାହିଁ । ତେଣୁ ଏଥର ଯେ କୌଣସି ମୁହୂର୍ତ୍ତରେ ଦୁର୍ଗ ଭିତରକୁ ପ୍ରବେଶ କରାଯାଇପାରେ ।

ମାକ୍‌ବେଥ୍ ସେତେବେଳେ ରଣକ୍ଷେତ୍ରର ଅନ୍ୟ ଏକ ଅଂଶରେ ଯୁଦ୍ଧ ପରିଚାଳନା କରୁଥାଆନ୍ତି । ଆତ୍ମବିଶ୍ୱାସ ତଥାପି ଅତୁଟ ଥାଏ । ଏତିକିବେଳେ ତାଙ୍କୁ ଖୋଜି ଖୋଜି ଆସି ପହଞ୍ଚି ଯାଆନ୍ତି ମାକ୍‌ଡଫ୍ । ଦୁହିଁଙ୍କ ମଧ୍ୟରେ ତୀବ୍ର ବାକ୍ୟ ବିନିମୟ ହୁଏ ।

ମାକ୍‌ବେଥ୍ କହନ୍ତି - ଦୁର୍ଗ ମଧ୍ୟରେ ପ୍ରବେଶର ଅର୍ଥ ମାକ୍‌ବେଥ୍‌ର ପରାଜୟ ନୁହେଁ । ବଞ୍ଚିଥିବାଯାଏ ମୁଁ ଏ ସଂଗ୍ରାମ ଚାଲୁରଖିବି । ଆଉ ମୋର ମୃତ୍ୟୁ ଏକ ରହସ୍ୟ ମଧ୍ୟରେ ଆଚ୍ଛନ୍ନ । ଦେବତାମାନେ ମୋତେ ରକ୍ଷା କରୁଛନ୍ତି । ନାରୀ ଗର୍ଭଜାତ କୌଣସି ମନୁଷ୍ୟର ଆଘାତ ମୋର ବଜ୍ରତୁଲ୍ୟ ଶରୀର ମଧ୍ୟକୁ ପ୍ରବେଶ କରିପାରିବ ନାହିଁ । ଅଦୃଶ୍ୟ ଶକ୍ତିର କରୁଣାରୁ ମୁଁ ଏଇ ରକ୍ଷା କବଚଟି ପାଇଛି ।

ମାକ୍‌ଡଫ୍ ଏଥର ତାଙ୍କର ଜନ୍ମ ରହସ୍ୟ ପ୍ରକାଶ କରନ୍ତି । ସେ କହନ୍ତି, ସ୍ୱାଭାବିକ ଭାବରେ ମାତୃଗର୍ଭରୁ ମୋର ଜନ୍ମ ହୋଇ ନାହିଁ । ସମୟ ହେବା ପୂର୍ବରୁ ମାତୃଗର୍ଭରୁ ମୋତେ ବାହାର କରି ନିଆଯାଇଥିଲା । ଏହା କୌଣସି କଳ୍ପନା ନୁହଁ । ଦିବାଲୋକ ଭଳି ସତ୍ୟ ।

ମାକ୍‌ବେଥ୍‌ଙ୍କ ମଥାରେ ବଜ୍ର ଖସିପଡ଼େ । ବଞ୍ଚିବାର ଶେଷ ଆଶାଟିକକ ମଧ୍ୟ ଏହିଭଳି ଭାବରେ ତାଙ୍କର ଲୋପ ପାଇଯାଏ । ଡାହାଣୀମାନେ ଶେଷରେ ତାଙ୍କ ସହିତ ଏହିଭଳି ଖେଳ ଖେଳିଲେ ! ସେଇ ସଇତାନୀମାନଙ୍କ ଉପରେ ଭରସା କରିବା ହିଁ ତାଙ୍କର ଭୁଲ୍ ହୋଇଛି !

ସେ ଠିକ୍ କରନ୍ତି ଯୁଦ୍ଧକ୍ଷେତ୍ରରୁ ପଳାଇଯାଇ ପ୍ରଥମେ ନିଜର ଜୀବନ ରକ୍ଷା କରିବେ । ବଞ୍ଚିଥିଲେ ପରେ ଯେକୌଣସି ସମୟରେ ରାଜ୍ୟ ଉଦ୍ଧାର କରିବା ନିମନ୍ତେ ଚେଷ୍ଟା କରାଯାଇପାରିବ ।

ମାକ୍‌ଡଫ୍ ତାଙ୍କୁ ସେଇ ସୁଯୋଗଟିକି କ ମଧ୍ୟ ଦିଅନ୍ତି ନାହିଁ । ବାଛି ବାଛି ଏଭଳି ବାକ୍ୟବାଣମାନ ଛାଡ଼ନ୍ତି, ଯେଉଁଥିରେ ମାକ୍‌ବେଥ୍‌ଙ୍କର ପୌରୁଷକୁ ଆଘାତ ଲାଗେ । ଏସବୁ ହଜମ କରି ବଞ୍ଚିରହିବାର କୌଣସି ଅର୍ଥ ହୁଏ ନାହିଁ । ସ୍ଥିର ସଂକଳ୍ପ କରି ସେ ଯୁଦ୍ଧଭୂଇଁକୁ ଡେଇଁ ପଡ଼ନ୍ତି । ଏ ଲଢ଼ାଇ ତାଙ୍କର ବଞ୍ଚିବା ମରିବାର ଲଢ଼ାଇ ।

ଯୁଦ୍ଧ ଶେଷ ହେବାକୁ ବିଳମ୍ବ ହୁଏ ନାହିଁ । ସୈନ୍ୟସାମନ୍ତ ସବୁ ପୂର୍ବରୁ ଯାଇଥିଲେ । ଏକାକୀ ମାକ୍‌ବେଥ୍ ବା କେତେ ସମୟ ଯୁଦ୍ଧ କରନ୍ତେ ? ଅବିଳମ୍ବେ ବୀର ଭାବରେ ଯୁଦ୍ଧ କରୁ କରୁ ତାଙ୍କର ପତନ ହୁଏ ।

ମାଲକମ୍, ସିୱାର୍ଡ଼, ରସ୍, ଲେନକ୍ସ ପ୍ରଭୃତି ଗୋଟିଏ ଜାଗାରେ ଆସି ଏକତ୍ରିତ ହୁଅନ୍ତି । ମାକ୍‌ବେଥ୍‌ଙ୍କର ଛିନ୍ନମୁଣ୍ଡ ନେଇ ମାକ୍‌ଡଫ୍ ଆସନ୍ତି । ପତ୍ନୀପୁତ୍ର ହତ୍ୟାର ଉପଯୁକ୍ତ ପ୍ରତିଶୋଧ ସେ ନେଇଛନ୍ତି, ହତ୍ୟାକାରୀକୁ ନିଜ ହାତରେ ହତ୍ୟାକରି । ମାକ୍‌ଡଫ୍ ମାଲକମ୍‌ଙ୍କୁ ରାଜା ବୋଲି ସମ୍ବୋଧନ କରନ୍ତି । ଉପସ୍ଥିତ ଅନ୍ୟମାନେ ମଧ୍ୟ ତାଙ୍କୁ ଅଭିନନ୍ଦନ ଜଣାନ୍ତି । ସ୍କଟଲାଣ୍ଡ ଇତିହାସର ଏକ ରକ୍ତାକ୍ତ ଅଧ୍ୟାୟ ଏହିଭଳି ଭାବରେ ଶେଷ ହୁଏ ।

ଆକାଶରେ ଏଥର ନୂତନ ସୂର୍ଯ୍ୟୋଦୟ ହେବ ।

# ଜୁଲିୟସ୍ ସିଜର୍

॥ ୧ ॥

ରୋମ୍‌ରେ ଏବେ ମହାଉତ୍ସବ ଚାଲିଛି । ସମ୍ରାଟ୍ ପମ୍ପେଇ ଜୟକରି ରୋମ୍ ଫେରି ଆସିଛନ୍ତି । ତାଙ୍କୁ ଅଭିନନ୍ଦନ ଜଣାଇବାକୁ ଏଇ ଉତ୍ସବର ଆୟୋଜନ । ଅନେକ କାମଦାମ ଛାଡ଼ି ଭଲପୋଷାକ ପିନ୍ଧି ସମ୍ରାଟ୍‌ଙ୍କୁ ସମ୍ମାନ ଜଣାଇବାକୁ ରାସ୍ତାକୁ ବାହାରି ଆସିଛନ୍ତି ।

ସିଜରଙ୍କର କିଛି ବିରୋଧୀ ମଧ ଅଛନ୍ତି । ଆଲୋକ ପାଖେ ପାଖେ ଅନ୍ଧାର ଥିବା ଭଳି ଏମାନେ ସମାଜରେ ସବୁବେଳେ ଥାଆନ୍ତି । ବିରୋଧୀମାନଙ୍କ ଭିତରେ ଅଛନ୍ତି, ମେରୁଲାସ ଏବଂ ଫ୍ଲେବିୟାସ୍ । ଏ ଦିନଟିକୁ ଉତ୍ସବର ରଙ୍ଗ ଦେବାପାଇଁ ସେମାନଙ୍କର ଘୋର ଆପତ୍ତି । ବୁଲି ବୁଲି ଅନ୍ୟମାନଙ୍କୁ ପଚାରୁଥାଆନ୍ତି, କାମଦାମ ବନ୍ଦ ରଖି ସେମାନେ କାହିଁକି ଏମିତି ପାଗଳଙ୍କ ଭଳି ରାସ୍ତାରେ ବୁଲୁଛନ୍ତି ! ଜଣେ ମୋଚି ମଜାରେ କହେ, ଲୋକେ ଯେତେ ରାସ୍ତାରେ ବୁଲିବେ, ତାର ସେତେ ଲାଭ । ସେମାନଙ୍କ ଜୋତା ସବୁ ଖରାପ ହେବ, ଆଉ ତାକୁ ଯଥେଷ୍ଟ କାମ ମିଳିବ । ତା'ପରେ କହେ, ପ୍ରକୃତରେ ସିଜରଙ୍କୁ ଦେଖିବାକୁ ଆଉ ତାଙ୍କର ବିଜୟ ଉତ୍ସବରେ ଭାଗ ନେବାକୁ ହିଁ ସେ ବାହାରି ପଡ଼ିଛି ।

ଏକଥା ଶୁଣିଦେବା ପରେ ମେରୁଲାସ୍‌ର ରାଗ ହୋଇଯାଏ । ରୋମାନ୍ ନାଗରିକମାନଙ୍କୁ ଗାଳି ଦେଉ ଦେଉ ସେ କହେ- ସେଦିନ ତମେମାନେ ଏମିତି ବୀର ପମ୍ପେଇଙ୍କୁ ଦେଖିବାପାଇଁ ରାସ୍ତାରେ ଭିଡ଼ ଜମାଇଥିଲ । ତାଙ୍କର ରଥ ଦର୍ଶନରେ ତମମାନଙ୍କର ଆନନ୍ଦ ଧ୍ୱନି ରୋମ୍‌ର ଆକାଶକୁ ପୂର୍ଣ୍ଣ କରିଥିଲା । ଟାଇବର ନଦୀର ଜଳ ଉଚ୍ଛ୍ୱସିତ ହୋଇ ଉଠିଥିଲା । ଯିଏ ସେଇ ପମ୍ପେଇଙ୍କ ବଂଶଧରମାନଙ୍କର ରକ୍ତପାତ ଘଟାଇ ଯୁଦ୍ଧ ଜୟ କରିବାର ଆନନ୍ଦରେ ମାତାଲ୍ ହୋଇ ପଡ଼ିଛି , ଆଜି ତମେମାନେ ତାରି ପଥରେ ଫୁଲର ଅର୍ଘ୍ୟ ଦେବାକୁ ଆସିଛ !

ଫ୍ଲେବିୟାସ୍ ଉପଦେଶ ଦେଇ କହେ ତମେମାନେ ବରଂ ଟାଇବର କୂଳରେ ଗୁଣ୍ଡ ହୋଇ ତମମାନଙ୍କର କୃତ କର୍ମପାଇଁ ଅନୁତାପ କର । ତମମାନଙ୍କର ଅଶ୍ରୁଜଳରେ ଟାଇବର କୂଳ ଲଂଘନ କରୁ ।

ଲୋକମାନେ ତାଙ୍କ ବାଟରେ ଚାଲିଯାଆନ୍ତି । ଫ୍ଲେବିୟାସ୍ ମେରୁଲାସକୁ ରାଜଧାନୀ ଆଡ଼କୁ ଯିବାକୁ କହେ । ଆହୁରି କହେ ଯେ ବାଟରେ ଯାଉ ଯାଉ ସିଜରଙ୍କୁ ସ୍ୱାଗତ ଜଣାଇବା ପାଇଁ ଯେତେ ଆୟୋଜନ ଦେଖିବ ତାଙ୍କ ବିଜୟଗୌରବର ସ୍ମାରକୀରୂପେ ଯେତେ ଯାହା ଆଖିରେ ପଡ଼ିବ, ସେସବୁ ଯେମିତି ହେଲେ ଭାଙ୍ଗି ନଷ୍ଟ କରିଦେବ । ପୁଣି ଯେଉଁଠି ଏସବୁ ନିର୍ବୋଧ ଲୋକଗୁଡ଼ାକ ଏକାଠି ହୋଇଥିବାର ଦେଖିବ ସେଠୁ ସେମାନଙ୍କୁ ତଡ଼ିଦେବ ।

ମେରୁଲାସ୍ କହେ - ତମେ ବୋଧହୁଏ ଭୁଲିଯାଉଛ ଯେ ଆଜି ରୋମ୍‌ରେ ଲୁପରକାଲିୟା ନାମକ ପର୍ବ ମଧ୍ୟ ପାଳିତ ହେଉଛି ।

ଫ୍ଲେଭିୟସ୍ କହେ - ପର୍ବ କଥା ଛାଡ଼ । ଯେମିତି ହେଲେ ଆମକୁ ସିଜରର ଏଇ ଲୋକପ୍ରିୟତାକୁ ନଷ୍ଟ କରିବାକୁ ହେବ । ତାର ଉଚ୍ଚାକାଂକ୍ଷା ଯେମିତି ଡେଣା ମେଲି ଆକାଶକୁ ଛୁଇଁବାକୁ ଚେଷ୍ଟା କରୁଛି ଡେଣା କାଟିଦେଲେ ସେ ପୁଣି ଓହ୍ଲାଇ ଆସିବ ଏଇ ଧରଣୀର ଧୂଳିକୁ । ତା ଯଦି ନ କରାଯାଏ ତେବେ ସମସ୍ତଙ୍କୁ ସେ ଦାସତ୍ୱର ବନ୍ଧନରେ ବାନ୍ଧିଦେବ ।

ସିଜର ସଦଳବଳେ ରୋମ୍‌ର ଚୌକ୍‌ରେ ଆସି ପହଞ୍ଚନ୍ତି । ପଛରେ ଅନୁସରଣ କରୁଥାଆନ୍ତି ବିଶାଳ ଜନତା । ସିଜର ତାଙ୍କର ବନ୍ଧୁ ଆଣ୍ଟୋନିଙ୍କୁ ମନେ କରାଇ ଦିଅନ୍ତି - ଲୁପରକାଲିୟା ଦୌଡ଼ ସମୟରେ ସେ ଯେମିତି ସିଜରଙ୍କ ସ୍ତ୍ରୀ କାଲପୂର୍ଣ୍ଣିଆକୁ ଛୁଇଁବାକୁ ଭୁଲି ନ ଯାଆନ୍ତି । କାରଣ ଏଇ ପବିତ୍ର ଅବସରରେ ଯେ କୌଣସି ବନ୍ଧ୍ୟା ନାରୀକୁ ସ୍ପର୍ଶ କଲେ, ଅଚିରେ ତାର ବନ୍ଧ୍ୟାଦୋଷ ବିନଷ୍ଟ ହୁଏ - ଏହାହିଁ ହେଉଛି ଲୋକ ବିଶ୍ୱାସ ।

ଆଣ୍ଟୋନି ସିଜରଙ୍କୁ ନିର୍ଭର ପ୍ରତିଶ୍ରୁତି ଦିଅନ୍ତି । କହନ୍ତି, ସିଜର କିଛି କହିଲେ ଧରିନେବାକୁ ହେବ ଯେ ସେ କାମ କରାଯାଇସାରିଛି ।

ସିଜର ସନ୍ତୁଷ୍ଟ ହୋଇ କହନ୍ତି, ଦେଖ ଉତ୍ସବ ପାଳନରେ ଯେମିତି କୌଣସି ତ୍ରୁଟି ନ ରହିଯାଏ ।

ହଠାତ୍ ଜନତା ମଧ୍ୟରୁ ଜଣେ ଜ୍ୟୋତିଷ ଚିତ୍କାର କରି ସିଜରଙ୍କୁ ସତର୍କ କରିଦିଅନ୍ତି, ପନ୍ଦର ମାର୍ଚ୍ଚରୁ ତମକୁ ସତର୍କ ରହିବାକୁ ହେବ ।

ସିଜର୍ ତାକୁ ଉପେକ୍ଷା କରି ଉତ୍ସବସ୍ଥଳ ଆଡ଼େ ସଦଳବଳେ ଚାଲିଯାଆନ୍ତି । ସେଠି ରହିଯାଆନ୍ତି କେବଳ ବ୍ରୁଟସ୍ ଓ କାସିୟସ୍ । କାସିୟସ୍‌ଙ୍କ ପ୍ରଶ୍ନର ଉତ୍ତରରେ ବ୍ରୁଟସ୍ ତାଙ୍କୁ ଜଣାଇ ଦିଅନ୍ତି ଯେ ଉତ୍ସବ ଦେଖିବାକୁ ସେ ଯାଉ ନାହାନ୍ତି । ଆମୋଦପ୍ରମୋଦ ପାଇଁ ତାଙ୍କର କୌଣସି ଆଗ୍ରହ ନାହିଁ । ଆଣ୍ଟୋନିଙ୍କର ପ୍ରାଣୋଚ୍ଛଳତା ମଧ୍ୟ ତାଙ୍କଠାରେ ନାହିଁ । ବରଂ କାସିୟସ୍‌ଙ୍କର ଯାହା କହିବାର ଅଛି କୁହନ୍ତୁ; ସେ ଶୁଣିବେ ।

ତାଙ୍କ କଥାର ରୁକ୍ଷତା କାସିୟସ୍‌ଙ୍କୁ କ୍ଷୁଣ୍ଣ କରେ । ସେ କହନ୍ତି, ମୁଁ ଦେଖୁଛି, କିଛିଦିନ ହେଲା, ତମେ ଯେମିତି ବଦଳି ଯାଉଛ । ତମଠାରେ ପୂର୍ବର ସେ ଉଷ୍ମତା ନାହିଁ । ତମେ ତମର ବନ୍ଧୁମାନଙ୍କ ପ୍ରତି ମଧ୍ୟ ବିନା କାରଣରେ ରୁକ୍ଷ ହୋଇଯାଉଛ ।

କାସିୟସ୍‌ଙ୍କର ଅନୁଯୋଗ ବ୍ରୁଟସ୍ ଙ୍କୁ ଲଜ୍ଜିତ କରେ । ସେ କହନ୍ତି, କିଛି ବ୍ୟକ୍ତିଗତ କାରଣରୁ କିଛି ଦିନ ହେଲା ମୁଁ ଅଶାନ୍ତ ହୋଇ ରହିଛି । ବନ୍ଧୁମାନଙ୍କୁ କେବେ ଅବହେଳା କରିବା କଥା ଭାବି ନାହିଁ । ତମକୁ କହିବାରେ ଦ୍ୱିଧା ନାହିଁ ଯେ, ଆଜି ମୁଁ ଏକ ତୀବ୍ର ଅନ୍ତର୍ଦ୍ୱନ୍ଦ୍ୱରେ

ଜର୍ଜରିତ ହୋଇ ପଡ଼ିଛି । କାସିୟସ୍ ଏହା ପରେ ନାନା ସ୍ତୋକ ବାକ୍ୟରେ ବନ୍ଧୁଙ୍କୁ ଭୁଲାଇବାକୁ ଚେଷ୍ଟା କରନ୍ତି । ଲଘୁ ସ୍ୱରରେ କହନ୍ତି- ନିଜକୁ କେହି କେବେ ଦେଖିପାରେ ନାହିଁ । ତମ ପାଇଁ ମୁଁ ଦର୍ପଣଟିଏ ହୋଇ ତମର ଗୁଣାବଳୀର ପ୍ରଚାର କରାଇବି ।

ଏତିକିବେଳେ ଉତ୍ସବସ୍ଥଳଆଡୁ ହଟ୍ଟଗୋଳ ଆଉ ବାଦ୍ୟରୋଳ ଶୁଣାଯାଏ । ବ୍ରୁଟସ୍ କହନ୍ତି, ମୋର ଆଶଙ୍କା, ଜନତା ହୁଏତ ସିଜର୍‌ଙ୍କୁ ସମ୍ରାଟ୍ ରୂପେ ନିର୍ବାଚିତ କଲେ । କାସିୟସ୍ ପ୍ରଶ୍ନ କରନ୍ତି- ଏଥିରେ ତମର ଭୟ କରିବାର କ'ଣ ଅଛି ? ବ୍ରୁଟସ୍ କହନ୍ତି- ସିଜର୍‌ଙ୍କୁ ମୁଁ ଶ୍ରଦ୍ଧା କରେ । ତେବେ ସେ ରାଜା ହୁଅନ୍ତୁ, ଏହା ମୁଁ ଚାହେଁ ନାହିଁ । ବ୍ରୁଟସ୍ ଏଥର ମନର କଥା କହିବାକୁ ଆରମ୍ଭ କରନ୍ତି- ଦେଖ ବନ୍ଧୁ, ଜନ୍ମ ସମୟରୁ ଆମେ ତିନିଜଣଯାକ ଏକାଭଳି ବଢ଼ି ଉଠିଛୁ । ମନେଥିବ, ଥରେ ଟାଇବର ସ୍ରୋତରୁ ତମେ ବୁଡ଼ନ୍ତ ସିଜରଙ୍କୁ ଉଦ୍ଧାର କରିଥିଲ । ଆଜି ସେଇ ସିଜରଙ୍କୁ ରାଜସମ୍ମାନ ଜଣାଇବାକୁ ହେବ ! ସ୍ପେନ୍‌ରେ ଥିବାବେଳେ ମୂର୍ଚ୍ଛାରୋଗରେ ସେ କମ୍ପୁଥିବା ଅବସ୍ଥାରେ ମୁଁ ତାଙ୍କୁ ଦେଖିଛି । ଗୋଟାଏ ରୁଗ୍ଣ ଆଉ ଅସହାୟ । ନାରୀ ଭଳି ସେ ପାଣି ମାଗୁଥିଲେ । ସେଇ ଦୁର୍ବଳମନା ଲୋକ ଆଜି ପୃଥିବୀ କମ୍ପାଇ ମୋ ଉପରେ ଆଧିପତ୍ୟ ଦେଖାଇବ ! ବ୍ରୁଟସ୍ କହିଚାଲନ୍ତି, ଆଜି ସିଜର ଦୈତ୍ୟଟାଏ ଭଳି ମାଡ଼ିଚାଲିଛି, ଆଉ ଅନ୍ୟମାନେ ଅସହାୟ ଭଳି ତାକୁ ମାନି ନେଉଛନ୍ତି ! କାସିୟସ୍ କହନ୍ତି, ଭାବି ଦେଖିଲେ, ବ୍ରୁଟସ୍ ଆଉ ସିଜର୍ - ପାର୍ଥକ୍ୟ ଯାହା, ତାହା ଏଇ ଦୁଇଟା ନାମରେ ମାତ୍ର । ସିଜର୍‌ଙ୍କର ଏମିତି କ'ଣ ଅଛି, ଯାହା ବ୍ରୁଟସ୍‌ଙ୍କର ନାହିଁ ? ସିଜର୍‌ଙ୍କ ଭଳି ବ୍ରୁଟସ୍ ମଧ ଜନତାର ନେତୃତ୍ୱ ନେଇପାରନ୍ତି । କାସିୟସ୍ ସୂଚନା ଦିଅନ୍ତି ଯେ, ସାଧାରଣ ମଣିଷ ମନେକରନ୍ତି, ରୋମ୍‌ରେ ଆଜି ମଣିଷ ଭଳି ମଣିଷ ଜଣେ ମାତ୍ର ଅଛନ୍ତି ଏବଂ ସେ ହେଉଛନ୍ତି ବ୍ରୁଟସ୍ ।

କାସିୟସ୍‌ଙ୍କର ମନ୍ତବ୍ୟ ବ୍ରୁଟସ୍‌ଙ୍କୁ ସ୍ପର୍ଶ କରେ । ସେ କହନ୍ତି, ତମର ଏଇ ମନ୍ତବ୍ୟର ସବୁ କିଛି ମୋ ନିକଟରେ ସ୍ପଷ୍ଟ ନ ହେଲେ ମଧ କିଛି କିଛି ବୁଝିପାରୁଛି । ଏ ବିଷୟରେ ମୋର ମତାମତ ପରେ ଜଣାଇବି । ତମ କଥାକୁ ଭଲଭାବେ ବିଚାର କରି ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଏ ବିଷୟରେ ଅଧିକ ଆଲୋଚନା କରିବି । ସେ ପର୍ଯ୍ୟନ୍ତ ତମେ କେବଳ ଏତିକି ମନେରଖ ଯେ, ଦେଶର ଏଇ ଦୁର୍ଦ୍ଦିନରେ ବ୍ରୁଟସ୍ ବରଂ ଜଣେ ସାଧାରଣ ମଳିମୁଣ୍ଡିଆ ହୋଇ ରହିବାକୁ ପସନ୍ଦ କରିବ, କିନ୍ତୁ ସେମାନଙ୍କୁ ଛୋଟ କରି କେବେବି ନିଜେ ବଡ଼ ହେବାର ଚେଷ୍ଟା କରିବ ନାହିଁ ।

ଉତ୍ସବ ସମାପ୍ତ ହେଲା ପରେ ସିଜର୍ ଫେରିଆସନ୍ତି । ତାଙ୍କର ଚେହେରା ବଦଳିଯାଇଥିବା ଭଳି କାସିୟସ୍ ଏବଂ ବ୍ରୁଟସ୍ ଲକ୍ଷ୍ୟ କରନ୍ତି । ରାଗରେ ତାଙ୍କର ଭ୍ରୂକୁଟୀ କୁଟିଳ ହୋଇରହିଛି । ବନ୍ଧୁମାନେ ବିମର୍ଷ । କାଲପୂର୍ଣ୍ଣିଆଙ୍କ ମୁହଁ ମଧ ଫିକା ପଡ଼ିଯାଇଛି ।

ବ୍ରୁଟସ୍ କାସ୍‌କାଙ୍କୁ ଧରି ବ୍ୟାପାରଟାର ରହସ୍ୟ ଜାଣିବାକୁ ଚାହାନ୍ତି । କାସ୍‌କା କହନ୍ତି- ଉତ୍ସବ ଭିତରେ ଆଣ୍ଟୋନି ତିନିଥର ସିଜର୍‌ଙ୍କୁ ରାଜମୁକୁଟ ପ୍ରଦାନ କରନ୍ତି ଏବଂ ସେ ତାହା ପ୍ରତ୍ୟାଖ୍ୟାନ କରନ୍ତି । ଲୋକମାନେ ତହିଁରେ ଖୁସି ହୋଇ ତାଙ୍କର ଜୟଧ୍ୱନି କରିଉଠନ୍ତି ଏବଂ ଶେଷଥର ଲୋକେ ଟୋପି ଉଡ଼େଇ ତାଙ୍କୁ ଅଭିନନ୍ଦନ ମଧ୍ୟ ଜଣାନ୍ତି । ତେବେ ତହିଁରୁ ଏତେ ଦୁର୍ଗନ୍ଧ ବାହାରେ ଯେ ସିଜର୍ ମୂର୍ଚ୍ଛିତ ହୋଇ ପଡ଼ିଯାଆନ୍ତି । ବକ୍ତବ୍ୟ ଶେଷକରି କାସ୍‌କା ଲଘୁକଣ୍ଠରେ ମନ୍ତବ୍ୟ ଦିଅନ୍ତି, ସେ ଅବସ୍ଥାରେ ମୁଁ ନା ହସିପାରୁଛି ନା ହସ ଚାପିପାରୁଛି ! ମୋର ଆଶଙ୍କା, ପାଟି ଖୋଲିବାମାତ୍ରେ ଏ ଦୁର୍ଗନ୍ଧରୁ ମେଣ୍ଟାଏ ମୋ ଭିତରକୁ ପଶିଯାଇପାରେ ।

ବ୍ରୁଟସ୍ ଜଣାଇ ଦିଅନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ସିଜର୍‌ଙ୍କର ପୂର୍ବରୁ ମୂର୍ଚ୍ଛାରୋଗ ଅଛି ।

କାସିୟସ୍ ଶ୍ଳେଷର ସହିତ କହନ୍ତି, 'ସିଜର୍ ତ ସମ୍ପୂର୍ଣ୍ଣ ସୁସ୍ଥ । ବରଂ ତମ ଦୁହିଁଙ୍କର ଏଇ ରୋଗଟି ଅଛି ବୋଲି ମୋର ଧାରଣା ।'

କାସ୍‌କା ଆହୁରି କହନ୍ତି- ଚେତା ଫେରିବା ପରେ ସିଜର୍ ନିଜର ଏଇ ଅସୁସ୍ଥତା ପାଇଁ ଜନତାଙ୍କ ପାଖରୁ କ୍ଷମା ମାଗନ୍ତି । ଲୋକେ ସେଥିରେ ଆହୁରି ଉତ୍‌ଫୁଲ୍ଲ ହୋଇଉଠନ୍ତି । ଏଇସବୁ ଘଟଣା ପରେ ସିଜର୍ ବିଷଣ୍ଣ ହୋଇ ଚାଲି ଆସିଛନ୍ତି ।

ବ୍ରୁଟସ୍ ସେମାନଙ୍କଠାରୁ ବିଦାୟ ନେଇ ଚୁପ୍‌ଚାପ୍ ଚାଲିଯାଆନ୍ତି । କାସିୟସ୍ ଠିକ୍ କରନ୍ତି ଯେ, ସେ କିଛି ବେନାମୀ ଚିଠି ଝରକାବାଟ ଦେଇ ବ୍ରୁଟସ୍‌ଙ୍କ ଘର ଭିତରକୁ ପକାଇଦେବେ । ସେଥିରେ ବ୍ରୁଟସ୍‌ଙ୍କ ପ୍ରତି ଶ୍ରଦ୍ଧା ନିବେଦିତ ହୋଇଥିବ ଏବଂ ସିଜର୍‌ଙ୍କ ଉଚ୍ଚାକାଂକ୍ଷାର କଥା ମଧ୍ୟ ସୂଚିତ ହୋଇଥିବ । ସେଥିରେ ବ୍ରୁଟସ୍‌ଙ୍କ ମନ ନିଶ୍ଚୟ ବଦଳିଯିବ ।

କାସିୟସ୍‌ଙ୍କ ସମ୍ପର୍କରେ ସିଜର୍‌ଙ୍କର ଧାରଣା କିନ୍ତୁ ଖୁବ୍ ଭଲ ନ ଥାଏ । କଥାପ୍ରସଙ୍ଗରେ ସେ ଆଣ୍ଟୋନିଙ୍କୁ କହିଥାଆନ୍ତି ଯେ ସେ କାସିୟସ୍‌ଙ୍କୁ ଏଡ଼ାଇ ଯିବାକୁ ଚାହାନ୍ତି । କାରଣ ସେ ପଢ଼ାପଢ଼ି ନେଇ ବ୍ୟସ୍ତ ଥାଆନ୍ତି, ତାଙ୍କର ପର୍ଯ୍ୟବେକ୍ଷଣ ଶକ୍ତି ଯଥେଷ୍ଟ, ସେ ଖେଳାଖେଳି ଭଲ ପାଆନ୍ତି ନାହିଁ, ଗୀତ ଶୁଣନ୍ତି ନାହିଁ, କ୍ୱଚିତ୍ ହସନ୍ତି, ହସିଲେ ମଧ୍ୟ ତହିଁରେ ଭରିଥାଏ ଶ୍ଳେଷ, ଏ ଧରଣର ଲୋକ ଅନ୍ୟକୁ ଉପରକୁ ଉଠିବାର ଦେଖିଲେ ଆଦୌ ଖୁସି ହୁଅନ୍ତି ନାହିଁ ।

ସେଦିନ ବଡ଼ ଦୁର୍ଯୋଗ । ରାତି ହୋଇଥାଏ । ପ୍ରଚଣ୍ଡ ବେଗରେ ଝଡ଼ ବହୁଥାଏ । ଆକାଶର ଛାତି ଚିରି ଝଲକି ଉଠୁଥାଏ ବିଦ୍ୟୁତ୍‌ଶିଖା । କଡ଼କଡ଼ ଶବ୍ଦରେ ବଜ୍ରପାତ ହେଉଥାଏ । ଏଇ ଦୁର୍ଯୋଗ ଭିତରେ ବି କାସ୍‌କା ବାହାରକୁ ବାହାରିଥାଆନ୍ତି । ସିସେରୋଙ୍କ ସହିତ ଦେଖାହୁଏ । ପ୍ରକୃତିର ଏଇ ପ୍ରଳୟ ତାଣ୍ଡବ ବିଷୟରେ ସେମାନଙ୍କର କଥାବାର୍ତ୍ତା ହୁଏ । କାସ୍‌କା କହନ୍ତି, ଝଡ଼ର ପ୍ରଚଣ୍ଡ ରୂପ ସେ ଅନେକ ଦେଖିଛନ୍ତି, କିନ୍ତୁ ଏଭଳି ଅଗ୍ନିବର୍ଷୀ ଝଡ଼ ସେ ପୂର୍ବରୁ କେବେ

ଦେଖି ନାହାନ୍ତି । ତାଙ୍କର ମନେହେଉଛି ମଣିଷର ପାପରେ କ୍ରୁଦ୍ଧ ହୋଇ ଦେବତାମାନେ ଯେମିତି ଅଭିଶାପ ବର୍ଷା କରୁଛନ୍ତି ! କାସ୍କା ସେ ନିଜେ ଦେଖିଥିବା ଆଉ କେତୋଟି ଅଦ୍ଭୁତ ତଥା ଅସ୍ୱାଭାବିକ ଦୃଶ୍ୟର କଥା କହନ୍ତି । ତାଙ୍କର ବିଶ୍ୱାସ ଏସବୁ ଘଟଣା ହେଉଛି ଭବିଷ୍ୟତ୍ ଦୁର୍ବିପାକର ସୂଚକ ।

ସିସେରୋ ବିଦାୟ ନେଇ ଚାଲିଯାଆନ୍ତି । କାସିୟସ୍ ଆସନ୍ତି । କାସ୍କା ତାଙ୍କୁ ମଧ ସେଇ ଦୁର୍ଯୋଗର କଥା କହନ୍ତି । ପଚାରନ୍ତି, ଏଭଳି ଦୁର୍ଯୋଗରେ ତମେ ଘରୁ ବାହାରିଛ କାହିଁକି ? କାସିୟସ୍ କହନ୍ତି, ଏ ଭୟଙ୍କର ଦୁର୍ଯୋଗ ଅପେକ୍ଷା ଆହୁରି ବିଭୀଷିକାପୂର୍ଣ୍ଣ କେହି ଆମ ଭିତରେ ଅଛନ୍ତି । ଏମିତିରେ ସେ ସାଧାରଣଠାରୁ ଅଧିକ ଶକ୍ତିଧର ନୁହନ୍ତି ସତ, ତେବେ ଏକ ଅଶୁଭ ଧ୍ୱଂସାତ୍ମକ ଶକ୍ତି ନେଇ ତାଙ୍କର ଜନ୍ମ । ସେ କାହା କଥା କହୁଛନ୍ତି, କାସ୍କା ବୁଝିଯାଆନ୍ତି । କାସିୟସ୍ କହିଚାଲନ୍ତି, ରୋମାନ୍‌ମାନଙ୍କ ମଧରେ ପୂର୍ବର ସେଇ ତେଜବୀର୍ଯ୍ୟ ଆଉ ନାହିଁ, ସେମାନେ ଏବେ ନାରୀଧର୍ମୀ ହୋଇପଡ଼ିଲେଣି । ଦାସତ୍ୱର ବନ୍ଧନରେ ଆବଦ୍ଧ ।

କାସ୍କା କହନ୍ତି, ସମ୍ଭବତଃ, ପରଦିନ ହେଉଥିବା ସିନେଟ୍ ବୈଠକରେ ସଭ୍ୟମାନେ ସିଜର୍‌ଙ୍କୁ ରାଜା କରିବାକୁ ଚାହିଁବେ ।

ଆବେଗପୂର୍ଣ୍ଣ କଣ୍ଠରେ କାସିୟାସ୍ କହନ୍ତି, ତାହାହେଲେ ତାଙ୍କୁ ଆତ୍ମହତ୍ୟା କରିବାକୁ ପଡ଼ିବ । ଦେବତାମାନଙ୍କୁ ସେ ପ୍ରାର୍ଥନା କରନ୍ତି ଯେ ସେମାନେ ଯେମିତି ଦୁର୍ବଳକୁ ଶକ୍ତି ଦିଅନ୍ତୁ ଏବଂ ଅତ୍ୟାଚାରୀମାନଙ୍କୁ ଧ୍ୱଂସ କରନ୍ତୁ । କାସିୟସ୍‌ଙ୍କର ଲକ୍ଷ୍ୟ ଥାଏ, ସିଜର୍‌ଙ୍କ ବିରୋଧରେ ପ୍ରବଳ ଜନମତ ସୃଷ୍ଟି କରିବା । କାସ୍କା ତାଙ୍କ କଥାରେ ରାଜି ହୋଇ କହନ୍ତି, ଏଇ ଦୁଃଖର ଅନ୍ତ ଘଟାଇବା ପାଇଁ କାସିୟସ୍‌ଙ୍କ ସହିତ ମିଶି ସେ ମଧ ସଂଘବଦ୍ଧ ଆନ୍ଦୋଳନ ସୃଷ୍ଟି କରିବା ନିମନ୍ତେ ଉଦ୍ୟମ କରିବେ । କାସିୟସ୍ ପ୍ରକାଶ କରନ୍ତି, ଏ ବ୍ୟାପାରରେ ସେ ଇତିମଧରେ କିଛି କାର୍ଯ୍ୟ କରିଛନ୍ତି ଓ କେତେଜଣ ମହତ୍ ହୃଦୟ ବ୍ୟକ୍ତିଙ୍କର ସମର୍ଥନ ମଧ ଲାଭ କରିଛନ୍ତି ।

ଏତିକିବେଳେ ସିନ୍ନା ନାମରେ କାସିୟସ୍‌ଙ୍କର ଜଣେ ଅନୁଚର ସେଠାକୁ ଆସେ ଏବଂ କହେ ଯଦିଓ ଏ ଭିତରେ ଅନେକେ ତାଙ୍କର ଦଳଭୁକ୍ତ ହୋଇସାରିଛନ୍ତି, ତଥାପି ବ୍ରୁଟସ୍‌ଙ୍କୁ ସେମାନଙ୍କ ଭିତରେ ପାଇବା ନିତାନ୍ତ ଦରକାର । କାସିୟସ୍ ତାଙ୍କୁ ସେ ବିଷୟରେ ନିଶ୍ଚିନ୍ତ ରହିବାକୁ କହନ୍ତି ଏବଂ କେତୋଟି ବେଶ୍ ଗୁରୁତ୍ୱପୂର୍ଣ୍ଣ କାଗଜ ସହରର ଚାରିଆଡ଼େ ବାଣ୍ଟିଦେଇ ଆସିବାକୁ ଆଦେଶ ଦିଅନ୍ତି ।

ସିନ୍ନା ଚାଲିଯିବା ପରେ କାସିୟାସ୍ ଏବଂ କାସ୍କାଙ୍କ ଭିତରେ ସ୍ଥିର ହୁଏ ଯେ, ସକାଳେ ପ୍ରଥମେ ସେମାନେ ବ୍ରୁଟସ୍ ସହିତ ଦେଖାକରିବେ । କାସ୍କା କହନ୍ତି, ବ୍ରୁଟସ୍ ଜନତାର ଅତ୍ୟନ୍ତ ପ୍ରିୟ । ସେ ଯଦି ଦଳରେ ରହନ୍ତି, ତେବେ ସେମାନଙ୍କର କୌଣସି କାର୍ଯ୍ୟ ଅପରାଧ ବୋଲି

ଗଣ୍ୟ ହେବ ନାହିଁ । କାସିୟସ୍ କାସ୍କାଙ୍କୁ ସମର୍ଥନ କରି କହନ୍ତି, ଏଭଳି କାର୍ଯ୍ୟରେ ବ୍ରୁଟସ୍‌ଙ୍କ ଭୂମିକା କ'ଣ ତାହା ତାଙ୍କୁ ବେଶ୍ ଭଲଭାବରେ ଜଣା ।

॥ ୨ ॥

ରୋମ୍‌ରେ ବ୍ରୁଟସ୍‌ଙ୍କର ବଗିଚା-ଘର । ଭୋର ହେବା ଆଗରୁ ସେ ବିଛଣା ଛାଡ଼ନ୍ତି । ଅନ୍ଧାର କଟି ନ ଥାଏ । ଭୃତ୍ୟକୁ ପଢ଼ାଘରେ ଆଲୁଅ ଦେବାକୁ କହି ସେ ସିଜର୍‌ଙ୍କ ସମ୍ପର୍କରେ ଭାବିବାକୁ ଆରମ୍ଭ କରନ୍ତି । ସେ ଜାଣନ୍ତି ଦେଶକୁ ବଞ୍ଚାଇବାକୁ ହେଲେ ସିଜର୍‌ଙ୍କୁ ମରିବାକୁ ହେବ । ହତ୍ୟାର ସମର୍ଥନରେ ସେ ଯୁକ୍ତିମାନ ଠିଆ କରିବାରେ ଲାଗନ୍ତି । ବ୍ୟକ୍ତିଗତ ଭାବରେ ସିଜର୍‌ଙ୍କ ସହିତ ତାଙ୍କର ସମ୍ପର୍କ ଖରାପ ନୁହେଁ । କିନ୍ତୁ ରାଜପଦରେ ଅଭିଷିକ୍ତ ହେବାମାତ୍ରକେ ସେ ସାପଭଳି ଭୟଙ୍କର ହୋଇଉଠିବେ । ତେଣୁ ଅଣ୍ଡା ଅବସ୍ଥାରୁ ଯେମିତି ସାପକୁ ମାରିବାକୁ ହୁଏ, ସେମିତି କ୍ଷମତା ପାଇବା ଆଗରୁ ସିଜର୍‌ଙ୍କୁ ମାରିବା ଛଡ଼ା ଅନ୍ୟ ଉପାୟ ନାହିଁ । ଭୃତ୍ୟ ଆଲୋକ ଆଣି ଆସେ, ତା'ସହିତ ଆଣେ ଖଣ୍ଡେ ଚିଠି । ସେଥିରେ ଲେଖାଅଛି, ରୋମ୍‌ର ମଙ୍ଗଳପାଇଁ ଅତ୍ୟାଚାରୀମାନଙ୍କ ଉପରେ ଆଘାତ ହାଣିବାକୁ । କେତେଦିନ ରୋମ୍ ଏ କଷ୍ଟ ସହିବ ? ବ୍ରୁଟସ୍ ଶପଥ କରନ୍ତି, ତାଙ୍କଦ୍ୱାରା ଯଦି ସମ୍ଭବ ହୁଏ, ତେବେ ଏହାର ପ୍ରତିକାର ସେ ନିଶ୍ଚୟ କରିବେ । ମାର୍ଚ୍ଚମାସରୁ ଅଧା ଚାଲିଗଲାଣି । ଯାହା କରିବାର କଥା ଶୀଘ୍ର କରିବାକୁ ହେବ ।

ସକାଳ ହୋଇଆସୁଥାଏ । କାସିୟସ୍ ସାଙ୍ଗରେ ଅନେକେ ତାଙ୍କ ସାଙ୍ଗରେ ଦେଖା କରିବାକୁ ଆସନ୍ତି । ସେମାନଙ୍କର ଟୋପି କାନ ପର୍ଯ୍ୟନ୍ତ ଟଣାଯାଇଛି । ମୁହଁ ସବୁ ଏମିତି ଢଙ୍କାଯାଇଛି ଯେ, ସେମାନଙ୍କୁ ଚିହ୍ନି ହେଉ ନାହିଁ । ସେ ଜାଣନ୍ତି, ସେମାନେ ସବୁ ଷଡ଼ଯନ୍ତ୍ରକାରୀ । ସେ ମନେ ମନେ ଭାବନ୍ତି, ରାତିରେ ଯଦି ସେମାନଙ୍କୁ ଏମିତି ମୁହଁଛପାଇ ବୁଲିବାକୁ ହୁଏ, ତେବେ ଦିନବେଳେ ସେମାନେ ଏଇ ମୁହଁ କେଉଁଠି ଲୁଚାଇବେ ?

କାସିୟସ୍‌ଙ୍କ ସାଙ୍ଗରେ ଥିଲେ କାସ୍କା, ଡେସିୟସ୍, ସିନ୍ନା, ମେଟିଲସ୍, ସିମ୍ବର ଓ ଟ୍ରେବୋନିୟସ୍ । କାସିୟସ୍ ଜଣାଇଦିଅନ୍ତି ଯେ ସେମାନେ ସମସ୍ତେ ବ୍ରୁଟସ୍‌ଙ୍କ ସମ୍ପର୍କରେ ଖୁବ୍ ଉଚ୍ଚଧାରଣା ପୋଷଣ କରନ୍ତି । ସେ ନିଜେ ସେମାନଙ୍କର ସଂକଳ୍ପ ସାଧନ ନିମନ୍ତେ ଶପଥ କରିବାକୁ ପ୍ରସ୍ତୁତ । ତେବେ ବ୍ରୁଟସ୍ ଅନ୍ୟପ୍ରକାରର ମଣିଷ । ସେ କହନ୍ତି, ପ୍ରେରଣା ପାଇଁ ପ୍ରତ୍ୟେକ ରୋମୀୟର ମଳିନମୁଖ ହିଁ ଯଥେଷ୍ଟ । ସମସ୍ତେ ସିଜାର୍‌ଙ୍କ ଅତ୍ୟାଚାରରୁ ମୁକ୍ତି ପାଇବା ପାଇଁ ଐକ୍ୟବଦ୍ଧ ହୋଇଛନ୍ତି । ସେଥିପାଇଁ ଶପଥ କରିବାର ପ୍ରୟୋଜନ ନାହିଁ । ସିସେରୋ ପ୍ରବୀଣ, ତାଙ୍କୁ ଏଇ ଦଳରେ ଗ୍ରହଣ କରାଯିବ କିମ୍ବା ନାହିଁ ସେ ବିଷୟରେ କିଛି ଆଲୋଚନା ହୁଏ ।

ମେନେଲାସ ତାଙ୍କୁ ଗ୍ରହଣ କରିବା ସପକ୍ଷରେ । କହନ୍ତି, ତାଙ୍କ ଭଳି ପ୍ରବୀଣ ଦଳରେ ଥିଲେ ସହଜରେ ସମସ୍ତଙ୍କର ସମର୍ଥନ ମିଳିବ । ବ୍ରୁଟସ୍, କାସିୟସ୍ ପ୍ରଭୃତି ତରୁଣ ନେତାମାନଙ୍କର ଉଦ୍ଦାମତା ଓ ତରଳତା ତାଙ୍କର ପରିଣତ ବିଚାରବୁଦ୍ଧି ଦ୍ୱାରା ନିୟନ୍ତ୍ରିତ ହୋଇପାରିବ । ଲୋକଙ୍କ ଆଖିରେ ସେ ସବୁ ପଡ଼ିବ ନାହିଁ ।

ବ୍ରୁଟସ୍ କହନ୍ତି, ସିସେରୋ କଦାପି ଅନ୍ୟ ମତ ଦ୍ୱାରା ପ୍ରଭାବିତ ହୁଅନ୍ତି ନାହିଁ । ସେଥିପାଇଁ ତାଙ୍କୁ ବାଦ୍‌ଦେବା ଭଲ । ସିଜର୍‌ଙ୍କୁ ଛାଡ଼ି ଅନ୍ୟ କାହାକୁ ହତ୍ୟା କରାଯିବ କିମ୍ବା ନାହିଁ, ସେ ବିଷୟରେ କିଛି ସମୟ ଆଲୋଚ଼ନା ଚାଲେ । କାସିୟସ୍ କହନ୍ତି- ଏ ଧରଣର ଘଟଣା ଯେମିତି ଭବିଷ୍ୟତ୍‌ରେ ନ ଘଟେ, ସେଥିପାଇଁ ଆଣ୍ଟୋନିଙ୍କୁ ମଧ୍ୟ ହତ୍ୟା କରାଯିବା ଦରକାର । ତେବେ ଏଥିରେ ମଧ୍ୟ ବ୍ରୁଟସ୍ ଆପତ୍ତି କରନ୍ତି । ତାଙ୍କ ମତରେ ଖୁବ୍ ବେଶି ରକ୍ତପାତ ଲୋକମାନଙ୍କ ମନରେ ବିପରୀତ ପ୍ରତିକ୍ରିୟା ସୃଷ୍ଟି କରିପାରେ । ବ୍ରୁଟସ୍ ଆହୁରି କହନ୍ତି, 'ଆମେ ସିଜର୍‌ଙ୍କୁ କଂସେଇ ଭଳି ହତ୍ୟା କରୁ ନାହୁଁ । ଆମର ସଂଗ୍ରାମ ତାଙ୍କର ରାଜନୀତିକ ମତବାଦ ବିରୋଧରେ । ସେଥିପାଇଁ ତାଙ୍କୁ ମରିବାକୁ ହେବ । ଏଥିରେ କିନ୍ତୁ କୌଣସି ବ୍ୟକ୍ତିଗତ ଆକ୍ରୋଶ ନାହିଁ । ଆମର ଏଇ କାର୍ଯ୍ୟରେ କୌଣସି ହିଂସାଭାବ ନ ରହିଲେ ଭଲ । କୌଣସି ଏକ ବୃହତ୍ତର ପ୍ରୟୋଜନ ଏବଂ ମହତ୍ତର ଉଦ୍ଦେଶ୍ୟ ସାଧନ ନିମନ୍ତେ ଏହି କାର୍ଯ୍ୟ କରାଯାଇଛି ବୋଲି ଯେମିତି ଜଣାଯାଏ ।

ସେ ଆହୁରି କହନ୍ତି, ଶରୀରରୁ ମୁଣ୍ଡଟି କଟିଗଲେ ହାତ ଆପେ ଆପେ ଅକାମି ହୋଇଯାଏ । ସେମିତି ସିଜର୍‌ଙ୍କର ଅବର୍ତ୍ତମାନରେ ଆଣ୍ଟୋନି ଆପେ ନିଷ୍କ୍ରିୟ ହୋଇଯିବେ । କାସିୟସ୍ ତଥାପି କହନ୍ତି, ଆଣ୍ଟୋନିଙ୍କ ସମ୍ପର୍କରେ ତାଙ୍କର ଭୟ ଅଛି, କାରଣ ସେ ସିଜର୍‌ଙ୍କୁ ଗଭୀର ଶ୍ରଦ୍ଧା କରନ୍ତି । ବ୍ରୁଟସ୍ ତାଙ୍କୁ ଭରସା ଦିଅନ୍ତି ।

ସିଜର୍ ସେଦିନ ଘରୁ ବାହାରିବେ କିମ୍ବା ନାହିଁ, ସେ ବିଷୟରେ ସଂଶୟ ଦେଖାଯାଏ । କାରଣ ସମ୍ପ୍ରତି ସେ ଅତି କୁସଂସ୍କାରାଛନ୍ନ ହୋଇ ପଡ଼ିଛନ୍ତି । ରାତିରେ ଯାହାସବୁ ଘଟିଗଲା ଏବଂ ଜ୍ୟୋତିଷର ସତର୍କବାଣୀ ଏସବୁ ଫଳରେ ସିଜର୍ ପରିଷଦକୁ ନ ଆସି ମଧ୍ୟ ପାରନ୍ତି । ଡେସିୟସ୍ କହନ୍ତି, ସେ ତୋଷାମଦ ଦ୍ୱାରା ସିଜର୍‌ଙ୍କ ସିଦ୍ଧାନ୍ତକୁ ବଦଳାଇ ଦେଇପାରନ୍ତି । ସିଜର୍ ଏଇ ଜିନିଷଟିକୁ ଖୁବ୍ ପସନ୍ଦ କରନ୍ତି । ଠିକ୍ ହୁଏ, ସମସ୍ତେ ମିଶି ସକାଳ ଆଠଟା ସମୟରେ ସିଜର୍‌ଙ୍କ ଘରକୁ ଯିବେ ଏବଂ ତାଙ୍କୁ ପରିଷଦକୁ ନେଇଆସିବେ ।

ସମସ୍ତେ ଚାଲିଯିବା ପରେ ମଧ୍ୟ ବ୍ରୁଟସ୍ ଭାବୁଥାଆନ୍ତି । ପାଖରେ ଆସି ଠିଆ ହୁଅନ୍ତି ତାଙ୍କ ସ୍ତ୍ରୀ ପୋର୍ସିଆ । ବ୍ରୁଟସ୍ କହନ୍ତି- ଏତେ ସକାଳୁ କାହିଁକି ଉଠିଲ ? ଥଣ୍ଡା ଲାଗିଯାଇପାରେ, ତମର ଶରୀର ଦୁର୍ବଳ । ପୋର୍ସିୟା ଉତ୍ତର ଦିଅନ୍ତି, କଥାଟା ବ୍ରୁଟସ୍‌ଙ୍କ ପାଇଁ ମଧ୍ୟ ସତ୍ୟ ।

କିଛିଦିନ ହେବ ସେ ବ୍ରୁଟସ୍‌ଙ୍କୁ ଅସ୍ଥିର ଏବଂ ବ୍ୟସ୍ତ ହେବାର ଲକ୍ଷ୍ୟ କରୁଛନ୍ତି । ଏହାର କାରଣ କ'ଣ ? କ'ଣ ଏମିତି ଦୁଃଖ ତାଙ୍କ ମନରେ ରହିଛି, ଯାହା ସେ ପୋର୍ସିୟାଙ୍କ ନିକଟରେ ମଧ୍ୟ ପ୍ରକାଶ କରୁ ନାହାନ୍ତି !

ବ୍ରୁଟସ୍ ଏଡ଼ାଇଯିବାକୁ ଚାହିଁଲେ ମଧ୍ୟ ପୋର୍ସିଆ ଛାଡ଼ିବାର ପାତ୍ରୀ ନୁହନ୍ତି । କହନ୍ତି, ସ୍ତ୍ରୀ ହିସାବରେ ଏସବୁ କଥା ତାଙ୍କର ଜାଣିବାର ଅଧିକାର ରହିଛି । ଏତେ ଭୋରରୁ ଏ ଯେଉଁ ମୁଖୋସ୍ ପିନ୍ଧା ଲୋକ ତାଙ୍କ ପାଖକୁ ଆସିଥିଲେ, ସେମାନେ କିଏ ? ମୁଁ ତମର ସ୍ତ୍ରୀ, ଅଥଚ୍ ତମର କୌଣସି ଗୋପନ କଥା ଜାଣିବାର ଅଧିକାର ମୋର ନାହିଁ, ଏ କି କଥା ? ଖାଲି କ'ଣ ତୁମକୁ ସାହଚର୍ଯ୍ୟ ପ୍ରଦାନ କରିବା ମୋର ଦାୟିତ୍ୱ ? ତମେ ମୋତେ ସବୁକଥା କହ । ପ୍ରତିଶ୍ରୁତି ଦେଉଛି, ତମର କଥା ଗୋପନ ରହିବ ।

ଅଗତ୍ୟା ବ୍ରୁଟସ୍ ସବୁକଥା ପୋର୍ସିଆଙ୍କୁ ବୁଝାଇଦେବା ପାଇଁ ପ୍ରତିଶ୍ରୁତି ଦିଅନ୍ତି । ଏତିକିବେଳେ ସେମାନଙ୍କର ଆଳାପରେ ବାଧା ପଡ଼େ । ବାହାରେ କେହି ଆସିଥିବାର ସୂଚନା ମିଳେ । ଲିଗାରିୟସ୍ ନାମକ ଜଣେ ଅସୁସ୍ଥ ବୀର ବ୍ରୁଟସ୍‌ଙ୍କ ସହିତ ଦେଖାକରିବାକୁ ଆସିଛନ୍ତି । ସେ କହନ୍ତି, ସମସ୍ତ ଅସୁସ୍ଥତାକୁ ଭୁଲି ଏଠାକୁ ଆସିଛନ୍ତି । ବ୍ରୁଟସ୍‌ଙ୍କ ସହିତ ମିଶି ସେ ଦେଶପାଇଁ କାମ କରିବାକୁ ଚାହାନ୍ତି । କହନ୍ତି- ମୋତେ କୁଆଡ଼େ ଯିବାକୁ ହେବ, କଣ କରିବାକୁ ହେବ, ସେ ବିଷୟରେ ମୋର କୌଣସି ଧାରଣା ନାହିଁ । ଆପଣଙ୍କ ପାଖରେ ଅଛି - ଏତିକି ମୋପାଇଁ ଯଥେଷ୍ଟ ।

ତେଣେ ନିଜ ଘରେ ସିଜର୍ ଅସ୍ଥିର ହୋଇପଡ଼ିଛନ୍ତି । ଝଡ଼, ବୃଷ୍ଟି, ବଜ୍ରପାତ ପ୍ରଭୃତି ତାଙ୍କୁ ଚଞ୍ଚଳ କରିପକାଉଛି, ରାତିରେ ଘୁମନ୍ତ କାଲପୂର୍ଣ୍ଣିଆ ତିନି ତିନିଥର ଚିତ୍କାର କରି ଉଠିଛନ୍ତି । ତାଙ୍କର ଗୋଟିଏ କଥା- କିଏ ଅଛ ବଞ୍ଚାଅ । ସିଜର୍‌ଙ୍କୁ ସେମାନେ ଖୁନ୍ କରୁଛନ୍ତି ! ସିଜର୍ ଭୃତ୍ୟକୁ ଆଦେଶ ଦିଅନ୍ତି- ସେ ଯେମିତି ତତ୍‌କ୍ଷଣାତ୍ ପୁରୋହିତଙ୍କ ପାଖକୁ ଯାଏ ଏବଂ ତାଙ୍କର ନିରାପତ୍ତା ନିମନ୍ତେ ଦେବତାମାନଙ୍କୁ ପୂଜା କରିବାପାଇଁ ଅନୁରୋଧ ଜଣାଏ । ତାଙ୍କର ସାଫଲ୍ୟ ସମ୍ପର୍କରେ ପୁରୋହିତମାନଙ୍କର ମନ୍ତବ୍ୟ ମଧ୍ୟ ଜାଣିଆସିବାକୁ ସେ ଯେପରି ଆଦୌ ଭୁଲି ନ ଯାଏ ।

କାଲପୂର୍ଣ୍ଣିଆ ସେଦିନ ଘରୁ ନ ବାହାରିବା ପାଇଁ ସିଜର୍‌ଙ୍କୁ ଅନୁରୋଧ କରନ୍ତି । ସିଜର୍ ଏହାକୁ ପ୍ରତ୍ୟାଖ୍ୟାନ କରି କହନ୍ତି, 'ଯେଉଁସବୁ ଘଟଣା ତମକୁ ଭୟ ଦେଖାଉଛି, ସେସବୁ କେବଳ ସିଜର୍‌ର ପିଠି ଦେଖୁଛି, ସାମ୍‌ନା ଦେଖୁ ନାହିଁ । ଥରେ ସେଠି ଆଖି ପଡ଼ିଗଲେ ପଳାଇବାପାଇଁ ବାଟ ପାଇବ ନାହିଁ ।

କାଲପୂର୍ଣ୍ଣିଆଙ୍କର ଭୟ ତଥାପି ଦୂର ହୁଏ ନାହିଁ । ଗତରାତିରେ ଅନେକ ଅଲୌକିକ ଅସ୍ୱାଭାବିକ ଘଟଣା ଘଟିଯାଇଛି । କବର ଖୋଲିଯାଇ ତା'ଭିତରର ମୃତଦେହ ଦେଖାଯାଇଛି, ପବନରେ ଶୁଣାଯାଇଛି ଯୁଦ୍ଧର ଶବ୍ଦ । ରାଜପଥବ୍ୟାପୀ ପ୍ରେତାତ୍ମାର ନୃତ୍ୟ ଚାଲିଛି । ନିଶ୍ଚୟ ଏସବୁ ଘଟଣା ଅମଙ୍ଗଳର ସୂଚକ । ତେଣୁ କାଲପୂର୍ଣ୍ଣିଆ ଆତଙ୍କିତ ।

ସିଜର୍ କହନ୍ତି, ଯାହା ଦେବତାମାନଙ୍କର ଅଭିପ୍ରେତ, ତାହା ନିଶ୍ଚୟ ଘଟିବ । ତେଣୁ ସେ ନିଶ୍ଚେ ଯିବେ । ଯାହାସବୁ ଘଟିଯାଇଛି, ତାଙ୍କ ପାଇଁ ତାହା ଅର୍ଥହୀନ । କାଲପୂର୍ଣ୍ଣିଆ ତଥାପି କହନ୍ତି, 'ଭିକାରିର ମୃତ୍ୟୁରେ ଆକାଶରେ ଧୂମକେତୁର ଉଦୟ ହୁଏ ନାହିଁ । କିନ୍ତୁ ରାଜାଙ୍କର ତିରୋଧାନରେ ସାରା ଆକାଶ ଜଳିଉଠେ ।

ସିଜର୍ ଉତ୍ତର ଦିଅନ୍ତି- ନିଜ ଜୀବନରେ କାପୁରୁଷ ବାରମ୍ବାର ମରୁଥାଏ । ସାହସୀର ମୃତ୍ୟୁ ହୁଏ ଥରେ । ମୃତ୍ୟୁ ଯେତେବେଳେ ଅନିବାର୍ଯ୍ୟ, ସେତେବେଳେ ତାକୁ ଭୟପାଇବା ଗୋଟାଏ ଅଦ୍ଭୁତ କଥା ନୁହେଁ ?

ଭୃତ୍ୟ ଆସି ଜଣାଏ, ଜ୍ୟୋତିଷମାନେ ତାଙ୍କୁ ବାହାରକୁ ଯିବାପାଇଁ ବାରଣ କରୁଛନ୍ତି । ସିଜର୍ କିନ୍ତୁ ଯିବାପାଇଁ ଦୃଢ଼ପ୍ରତିଜ୍ଞ । କାଲପୂର୍ଣ୍ଣିଆ ତଥାପି ଅନୁରୋଧ କରନ୍ତି, ଅସୁସ୍ଥତା ଦେଖାଇ ସିଜର୍ ନିଜେ ନ ଯାଆନ୍ତୁ ଏବଂ ପରିଷଦରେ ତାଙ୍କ ତରଫରୁ ଯୋଗଦିଅନ୍ତୁ ଆଣ୍ଟୋନି ।

ଇତିମଧ୍ୟରେ ସିଜର୍‌ଙ୍କୁ ସିନେଟ୍‌କୁ ନେଇଯିବାପାଇଁ ଡେସିୟସ୍ ଆସନ୍ତି । ସିଜର୍ ତାଙ୍କୁ ନିର୍ଦ୍ଦେଶ ଦିଅନ୍ତି, ମୁଁ ଆଜି ସିନେଟ୍‌କୁ ଆସୁ ନ ଥିବା କଥା ତମେ ଯାଇ ସେଠାରେ କହ । କାରଣ ଦେଖାଇବା ଦରକାର ନାହିଁ । 'ସିଜର୍ ଆସୁ ନାହାନ୍ତି'- କେବଳ ଏତିକି କହିଦେବା ଯଥେଷ୍ଟ । ତମକୁ କିନ୍ତୁ ପ୍ରକୃତ କାରଣଟି ଜଣାଉଛି, ମୋ ପତ୍ନୀ କାଲି ରାତିରେ ଅନେକ ଖରାପ ସ୍ୱପ୍ନ ଦେଖିଛନ୍ତି । ତା'ଭିତରେ ରହିଛି ମୋ ଶରୀରରୁ ପ୍ରଚୁର ରକ୍ତସ୍ରାବ ହେଉଥିବା ଏବଂ ତହିଁରେ ରୋମୀୟମାନେ ହସିହସି ହାତ ଧୋଉଥିବା ଭଳି ବୀଭତ୍ସ ଦୃଶ୍ୟ । ଏଥିରୁ ସେ ବିପଦର ଆଭାସ ପାଇ ମୋତେ ଘରେ ରହିବାପାଇଁ ନିବେଦନ କରିଛନ୍ତି । ତେଣୁ ତାଙ୍କ ଅନୁରୋଧକୁ ସମ୍ମାନ ଜଣାଇ ମୁଁ ଆଜି କୁଆଡ଼େ ଯାଉ ନାହିଁ ।

ଡେସିୟସ୍ ସେଇ ସ୍ୱପ୍ନର ଅନ୍ୟ ଏକ ବ୍ୟାଖ୍ୟା ଶୁଣାନ୍ତି । କହନ୍ତି, ଏଥିରୁ ଏହାହିଁ ଜଣାଯାଉଛି ଯେ, ଆପଣଙ୍କ ଦ୍ୱାରା ମହାନ୍ ରୋମ୍ ସାମ୍ରାଜ୍ୟ ବିଭିନ୍ନ ଦେଶର ରକ୍ତଶୋଷଣ କରି ପୁନରୁଜ୍ଜୀବିତ ଏବଂ ଗୌରବାନ୍ୱିତ ହେବ । ଆପଣ ଆଜି ଯଦି ସିନେଟ୍‌କୁ ନ ଯାଆନ୍ତି, ତେବେ ଏହାର ମତ ବଦଳିଯାଇପାରେ । କେହି ହୁଏତ ପରିହାସରେ ସିନେଟ୍‌କୁ ଭାଙ୍ଗି ଦେବାପାଇଁ କହିପାରନ୍ତି । ଆପଣଙ୍କ ପତ୍ନୀ ଯେଉଁଦିନ ଶୁଭସ୍ୱପ୍ନ ଦେଖିବେ, ସେଦିନ ସିନେଟ୍ ପୁଣି ବସିପାରେ ବୋଲି ବ୍ୟଙ୍ଗ କରିପାରନ୍ତି । ଲୋକେ ଆପଣଙ୍କୁ କାପୁରୁଷ ମନେ କରିବେ ।

ଡେସିୟସ୍‌ଙ୍କ କଥାରେ ସିଜର୍‌ଙ୍କର ମନ ବଦଳିଯାଏ । ସେ କହନ୍ତି, କିଛିକ୍ଷଣପାଇଁ ମୁଁ ଯେ ଭୟ ପାଇଯାଇଥିଲି, ଏଥିପାଇଁ ମୁଁ ଲଜ୍ଜିତ । ତା'ପରେ ସେ ପୋଷାକ ଆଣିବାକୁ ଆଦେଶ ଦେଇ ସିନେଟ୍‌କୁ ଯିବାପାଇଁ ପ୍ରସ୍ତୁତି ଆରମ୍ଭ କରିଦିଅନ୍ତି । ଇତିମଧ୍ୟରେ ବ୍ରୁଟସ୍ ଏବଂ ଅନ୍ୟମାନେ ମଧ୍ୟ ତାଙ୍କୁ ନେଇଯିବା ପାଇଁ ଆସି ପହଞ୍ଚନ୍ତି । ବ୍ରୁଟସ୍‌ଙ୍କୁ ଦେଖି ସିଜର୍ ଖୁସି ହୁଅନ୍ତି । ଆଣ୍ଟୋନି ମଧ୍ୟ ଆସିଯାଆନ୍ତି । ଶେଷରେ ପ୍ରସ୍ତୁତି ପର୍ବ ଶେଷକରି ସିଜର୍ ସିନେଟ୍ ଉଦ୍ଦେଶ୍ୟରେ ବାହାରିପଡ଼ନ୍ତି ।

ଯିବାବାଟରେ ତାଙ୍କୁ ଅପେକ୍ଷା କରିଥାଆନ୍ତି ଆର୍ଟେମିଡୋରାସ - ତାଙ୍କର ଜଣେ ଶୁଭେଚ୍ଛୁ । ତାଙ୍କର ଉଦ୍ଦେଶ୍ୟ ଥାଏ ସିଜର୍‌ଙ୍କୁ ଖଣ୍ଡିଏ ଚିଠି ଦେବେ । ଚିଠିରେ କାସିୟସ୍‌ଙ୍କ ଠାରୁ ଦୂରରେ ରହିବାପାଇଁ ସିଜର୍‌ଙ୍କୁ ସତର୍କ କରାଇ ଦିଆଯାଇଥାଏ । ଆହୁରି ଲେଖାଯାଇଥାଏ ଯେ, ତାଙ୍କ ବିରୋଧରେ ଗୋଟାଏ ଗୋଷ୍ଠୀ ସଂଘବଦ୍ଧ ହୋଇଛନ୍ତି । ସେମାନଙ୍କ ପ୍ରତି ସେ ଯେମିତି ତୀକ୍ଷ୍ଣ ଦୃଷ୍ଟି ରଖନ୍ତି ।

॥ ୩ ॥

ରାଜପଥ ଧରି ସଦଳବଳେ ସିଜର୍ ଆଗେଇ ଚାଲନ୍ତି । ଲକ୍ଷ୍ୟ ସିନେଟ୍ । ବାଟରେ ଜ୍ୟୋତିଷଙ୍କ ସହିତ ତାଙ୍କର ଦେଖାହୋଇଯାଏ । ପରିହାସ କରି ତାଙ୍କୁ କହନ୍ତି- ମାର୍ଚ୍ଚ ପନ୍ଦର ତାରିଖ ତ ଆସିଗଲା । ଉତ୍ତରରେ ଜ୍ୟୋତିଷ କହନ୍ତି- ଆସିଛି, କିନ୍ତୁ ଯାଇ ନାହିଁ । ଆର୍ଟେମିଡୋରାସ୍ ଚିଠିଟି ସିଜର୍‌ଙ୍କ ହାତକୁ ବଢ଼ାଇଦେବାକୁ ଚେଷ୍ଟାକରି ମଧ୍ୟ ସଫଳ ହୋଇ ପାରନ୍ତି ନାହିଁ । ସିଜର୍ ତାଙ୍କୁ ପାଗଳ ବୋଲି ସନ୍ଦେହ କରନ୍ତି ଏବଂ ସମସ୍ତଙ୍କୁ ନେଇ ସିନେଟ୍ ଭିତରେ ପ୍ରବେଶ କରନ୍ତି । ଟ୍ରେବୋନିୟସ୍ କଣ ଗୋଟାଏ ବାହାନା କରି ଆଣ୍ଟୋନୀଙ୍କୁ ସେଠାରୁ ଦୂରକୁ ନେଇଯାଏ । ମେଟେଲାସ୍ ନତଜାନୁ ହୋଇ ସିଜର୍‌ଙ୍କ ନିକଟରେ ତା'ର ଭାଇର ମୁକ୍ତି ପ୍ରାର୍ଥନା କରେ । ନିର୍ବାସନ ଦଣ୍ଡ ବାତିଲ୍ କରିଦେବାକୁ ଅନୁରୋଧ କରେ ।

ସିଜର୍ କହନ୍ତି, ଆଇନ୍‌ର ବିଧାନ ଅନୁସାରେ ତମ ଭାଇକୁ ଦଣ୍ଡ ଦିଆଯାଇଛି । ତମର ତୋଷାମଦରେ ତରଳିଯାଇ ମୁଁ ତାକୁ ମୁକ୍ତି ଦେଇପାରିବି ନାହିଁ । ସିଜର୍ କେବେ ଅନ୍ୟାୟ କରେ ନାହିଁ ।

ବ୍ରୁଟସ୍ ଆଗେଇଆସି ଦଣ୍ଡିତର ମୁକ୍ତିପାଇଁ ପୁଣି ଅନୁରୋଧ କରନ୍ତି । ସିଜର୍ ଆଶ୍ଚର୍ଯ୍ୟ ହୋଇ କହନ୍ତି, 'ମୁଁ ଧ୍ରୁବତାରା ଭଳି ସ୍ଥିର ଏବଂ ଅଚଳ । ଆକାଶର ସବୁ ତାରା ଭିତରେ ଅଛି ଅଗ୍ନିର ଉତ୍ତାପ । ସେମାନେ ସମସ୍ତେ କିରଣ ଦିଅନ୍ତି । କିନ୍ତୁ କେବଳ ଏଇ ଗୋଟାଏ ତାରା ହିଁ ସ୍ଥାନ ପରିବର୍ତ୍ତନ କରେ ନାହିଁ । ମଣିଷ ଭିତରେ ମୁଁ ମଧ୍ୟ ସେହିଭଳି । ରକ୍ତମାଂସଧାରୀ ସାଧାରଣ ମଣିଷ ସହଜରେ ଭୟ ପାଇଥାଏ । କିନ୍ତୁ ମୁଁ ଏଭଳି ଜାଣେ, ଯାହାର ପରାଜୟ ନାହିଁ ଏବଂ

ମୋର ଗତିପଥ ମଧ ଅପ୍ରତିହତ । ସିମ୍ବରକୁ ଯେଉଁ ଦଣ୍ଡ ଦିଆଯାଇଛି, ତାହାକୁ ରଦ୍ଦ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।

କଥାବାର୍ତ୍ତା ଚାଲୁଥିବା ସମୟରେ କାସ୍‌କା ଆଗେଇ ଆସି ସିଜର୍‌ଙ୍କୁ ଛୁରୀମାରେ । ତା'ପରେ ସମସ୍ତେ ମିଶିଯାଆନ୍ତି । ସମସ୍ତଙ୍କ ଶେଷରେ ବ୍ରୁଟସ୍ । ଆଖି ବୁଜିବା ପୂର୍ବରୁ ଗଭୀର ହତାଶାର ସଙ୍ଗେ ସିଜର୍ କହନ୍ତି- ବ୍ରୁଟସ୍, ଶେଷକୁ ତମେ ବି !!

ସିନେଟ୍ ଭିତରେ ଗୋଳମାଳ ଆରମ୍ଭ ହୋଇଯାଏ । ମଞ୍ଚଆଡ଼କୁ ଯିବାକୁ ଚାହାନ୍ତି କାସିୟସ୍ ଓ ବ୍ରୁଟସ୍ । ଆଣ୍ଟୋନୀଙ୍କର ଭୃତ୍ୟ ଆସି ବ୍ରୁଟସ୍‌ଙ୍କୁ ଜଣାଏ - ସେ ଯଦି ଆଣ୍ଟୋନୀଙ୍କର ନିରାପତ୍ତାର ପ୍ରତିଶ୍ରୁତି ଦିଅନ୍ତି, ତେବେ ଆଣ୍ଟୋନୀ ଏଠାକୁ ଆସିବେ । ତା'ସହିତ ସିଜର୍‌ଙ୍କୁ ହତ୍ୟା କରିବାର ସଙ୍ଗତ କାରଣ ଯଦି ତାଙ୍କୁ ବୁଝାଇ ଦିଆଯାଇପାରେ ତେବେ ସେ ଜୀବନସାରା ବ୍ରୁଟସ୍‌ଙ୍କର ଅନୁଗତ ହୋଇରହିବେ ।

ବ୍ରୁଟସ୍ ତାଙ୍କୁ ସେ ପ୍ରତିଶ୍ରୁତି ଦିଅନ୍ତି । ଆଣ୍ଟୋନୀ ସଭାକକ୍ଷରେ ପ୍ରବେଶ କରନ୍ତି । ସିଜର୍‌ଙ୍କ ମୃତ୍ୟୁରେ ସେ ଶୋକାହତ । ତାଙ୍କ ମୃତ୍ୟୁର ଏଇ ଭୟଙ୍କର ମୁହୂର୍ତ୍ତରେ ଆଣ୍ଟୋନୀଙ୍କର ଯଦି ମୃତ୍ୟୁ ହୋଇଯାଏ ତାହା ହେଲେ ସେ ନିଜକୁ ଭାଗ୍ୟବାନ୍ ମନେ କରିବେ ବୋଲି ଜଣାଇ ଦିଅନ୍ତି । ବ୍ରୁଟସ୍‌ଙ୍କୁ ଲକ୍ଷ୍ୟ କରି ସେ ଆହୁରି କହନ୍ତି- ଜଣେ ମହାନ୍ ବ୍ୟକ୍ତିର ପବିତ୍ର ରକ୍ତରେ ରଞ୍ଜିତ ହୋଇ ଆପଣଙ୍କର ତରବାରି ଧନ୍ୟ ହୋଇଛି । ଯଦି ଆପଣମାନେ ସହ୍ୟ କରିପାରୁ ନାହାନ୍ତି, ତାହାହେଲେ ମୋର ଅନୁରୋଧ, ଆପଣମାନେ ସେଇ ରକ୍ତଲିପ୍ତ ହାତରେ ମୋତେ ମଧ ହତ୍ୟାକରି ଆପଣମାନଙ୍କର ଅଭିଳାଷ ପୂରଣ କରନ୍ତୁ । ସିଜର୍‌ଙ୍କ ମୃତଶରୀର ନିକଟରେ ମୃତ୍ୟୁବରଣ କରିବାର ଏଇ ଦୁର୍ଲ୍ଲଭ ସୁଯୋଗ ମୁଁ ହଜାରେ ବର୍ଷ ବଞ୍ଚିଲେ ମଧ ପାଇବି ନାହିଁ । ପୁଣି ଆପଣମାନଙ୍କ ଭଳି ବୀର ସନ୍ତାନଙ୍କ ହାତରେ ମୃତ୍ୟୁବରଣ କରିବା ମଧ ପରମ ସୌଭାଗ୍ୟର ବିଷୟ ।

ବ୍ରୁଟସ୍ ତାଙ୍କୁ ଭରସାଦେଇ କହନ୍ତି, ଆପାତଃ ଦୃଷ୍ଟିରେ ଆମେ ସବୁ ହତ୍ୟାକାରୀ ସତ୍ୟ, ମାତ୍ର ଆମ ହୃଦୟରେ କରୁଣାର ମଧ ଅଭାବ ନାହିଁ । ସିଜର୍‌ଙ୍କ ପ୍ରତି ସହାନୁଭୂତି ଥିବାସତ୍ତ୍ୱେ ରୋମ୍‌ର ସାଧାରଣ ଜନତାଙ୍କର ହିତ ଦୃଷ୍ଟିରୁ ଆମକୁ ଏହି କାମ କରିବାକୁ ହୋଇଛି ।

କାସିୟସ୍ ଆଣ୍ଟୋନୀଙ୍କୁ କହନ୍ତି, ଦେଶର ନୂତନ ପ୍ରଶାସକମାନଙ୍କ ମଧରେ ଆପଣ ମଧ ଜଣେ ହେବେ ।

ଆଣ୍ଟୋନୀ କହନ୍ତି- ଆପଣମାନଙ୍କର ବିଚାରବୁଦ୍ଧି ଉପରେ ମୋର ସନ୍ଦେହ ନାହିଁ । ତେଣୁ ଆପଣମାନଙ୍କ ସହିତ ମୁଁ ହାତ ମିଳାଇବି । ଏହାପରେ ସେ ପୁଣି ବିଳାପ କରିବାକୁ ଆରମ୍ଭ କରିଦିଅନ୍ତି ।

ଏଥର କାସିୟସ୍ ଦୃଢ଼କଣ୍ଠରେ କହନ୍ତି, 'ଆପଣ ଆମମାନଙ୍କ ସହିତ ଠିକ୍ କେଉଁ ଧରଣର ସମ୍ପର୍କ ରଖିବାକୁ ଚାହାନ୍ତି, ତାହା ସ୍ପଷ୍ଟ କରନ୍ତୁ ।'

ଆଣ୍ଟୋନୀ ଜବାବ୍ ଦିଅନ୍ତି- ସେ ସେମାନଙ୍କ ସାଙ୍ଗରେ ଅଛନ୍ତି ସତ୍ୟ, ତେବେ ସିଜର୍‌ଙ୍କ ନିଷ୍ଠୁର ହତ୍ୟାର ପ୍ରକୃତ କାରଣ ଜାଣିବାକୁ ଚାହାନ୍ତି ।

ବ୍ରୁଟସ୍ କହନ୍ତି, 'ଏ ବିଷୟରେ ଆମର ଯୁକ୍ତି ଏତେ ବଳିଷ୍ଠ ଯେ, ସିଜର୍‌ଙ୍କର ପୁତ୍ର ହୋଇଥିଲେ ସୁଦ୍ଧା ଆପଣ ଆମ ମତକୁ ସମର୍ଥନ କରନ୍ତେ ।

ଆଣ୍ଟୋନୀ ସେତେବେଳେ ଆଉ ଗୋଟିଏ ଅନୁଗ୍ରହ ପ୍ରାର୍ଥନା କରନ୍ତି । ସେ ଚାହାନ୍ତି ସିଜର୍‌ଙ୍କ ମୃତଦେହ, ଚୌକର ଉଚ୍ଚମଞ୍ଚରେ ରଖାଯାଉ । ତାଙ୍କର ଶେଷକୃତ୍ୟ ସମୟରେ ବନ୍ଧୁ ହିସାବରେ ଆଣ୍ଟୋନୀଙ୍କୁ କିଛି କହିବାର ଅନୁମତି ଦିଆଯାଉ ।

ବ୍ରୁଟସ୍ ଅନୁମତି ଦେଇଦିଅନ୍ତି । କାସିୟସ୍ ତାଙ୍କୁ ଅନ୍ତରାଳକୁ ଡାକିନେଇ କହନ୍ତି... ଶେଷକୃତ୍ୟ ସମୟରେ ଆଣ୍ଟୋନୀଙ୍କୁ କିଛି କହିବାର ସୁଯୋଗ ଦିଆଯିବା ଠିକ୍ ନୁହେଁ । ତାଙ୍କ କଥା ଶୁଣି ଜନତା ବିଚଳିତ ହୋଇଯାଇପାରନ୍ତି । ତେବେ ବ୍ରୁଟସ୍ ଏଥର ମଧ ତାଙ୍କୁ ଭରସା ଦେଇ କହନ୍ତି, ମଞ୍ଚରୁ ମୁଁ ପ୍ରଥମେ କହିବି । ଜନତାଙ୍କୁ ସିଜର୍‌ଙ୍କ ମୃତ୍ୟୁର କାରଣ ବୁଝାଇବି । ଆଣ୍ଟୋନୀ ଅସଙ୍ଗତ କିଛି କହିଲେ ମୁଁ ତାର ପ୍ରତିବାଦ କରିବି । ପୂର୍ଣ୍ଣ ରାଜକୀୟ ମର୍ଯ୍ୟାଦା ସହିତ ତାଙ୍କର ଶେଷକୃତ୍ୟ ସମ୍ପନ୍ନ କରିବାକୁ ହେବ । ତାହାଦ୍ୱାରା ଆମ ସମ୍ପର୍କରେ ଲୋକମାନଙ୍କର ଧାରଣା ଭଲ ହେବ । ସେଥିରେ କାସିୟସ୍‌ଙ୍କ ଆଶଙ୍କା ଦୂର ହୁଏ ନାହିଁ । ବ୍ରୁଟସ୍ ଆଣ୍ଟୋନୀଙ୍କୁ ସିଜର୍‌ଙ୍କ ମୃତଦେହ ନେଇଯିବା ପାଇଁ ଅନୁମତି ଦିଅନ୍ତି । ତା'ପରେ କହନ୍ତି, ଆଣ୍ଟୋନୀ ତାଙ୍କର ବକ୍ତୃତାରେ ସିଜର୍‌ଙ୍କର ଯେତେ ପ୍ରଶଂସା କରିବାର କରନ୍ତୁ । ତେବେ ବ୍ରୁଟସ୍‌ଙ୍କ ପ୍ରତି କୌଣସି ଆକ୍ଷେପ ଚଳିବ ନାହିଁ । ସେ ବକ୍ତୃତା ଦେବେ ବ୍ରୁଟସ୍ କହିସାରିବା ପରେ ସେଇ ଗୋଟିଏ ମଞ୍ଚରୁ ।

ଆଣ୍ଟୋନୀ ରାଜି ହୁଅନ୍ତି । ବ୍ରୁଟସ୍‌ଙ୍କୁ ଛାଡ଼ି ଅନ୍ୟମାନେ ସେଠାରୁ ବିଦାୟ ନିଅନ୍ତି । ଆଣ୍ଟୋନୀ ସିଜର୍‌ଙ୍କ ମୃତଦେହ ଆଗରେ କହନ୍ତି, ସେ ତାଙ୍କର ହତ୍ୟାକାରୀମାନଙ୍କ ସହିତ ଭଦ୍ର ଭାବରେ କଥା କହିଛନ୍ତି । ତେବେ ସେ ଭବିଷ୍ୟବାଣୀ କରୁଛନ୍ତି ଯେ, ଏ ଦେଶର ପ୍ରତ୍ୟେକ ମଣିଷ ଏଣିକି ହେବେ ଅଭିଶପ୍ତ । ଇଟାଲୀର ଚାରିଆଡ଼େ ଆରମ୍ଭ ହୋଇଯିବ ଗୃହଯୁଦ୍ଧ ।

ସେତିକିବେଳେ ସିଜର୍‌ଙ୍କ ଭୃତ୍ୟଠାରୁ ଜଣାଯାଏ ଯେ, ତାଙ୍କର ଭ୍ରାତୁଷ୍ପୁତ୍ର ଅକ୍ଟୋଭିୟସ୍ ସିଜର୍ ଏଠାକୁ ଆସୁଛନ୍ତି; କାରଣ ସମ୍ରାଟ୍ ତାଙ୍କୁ ଆସିବାପାଇଁ ଚିଠି ଲେଖିଥିଲେ । ସିଜର୍‌ଙ୍କ ମୃତଦେହ ଦେଖି ସେ କାନ୍ଦିଉଠେ । ଆଣ୍ଟୋନୀ ତାକୁ କହନ୍ତି, 'ଏଠାରେ ଯାହା ଯାହା ଘଟିଯାଇଛି, ତୁମେ ଯାଇ ତୁମର ନୂତନ ମୁନିବଙ୍କୁ ସବୁ ଜଣାଇବ । ଅକ୍ଟୋଭିୟସ୍‌ଙ୍କ ପକ୍ଷରେ ମଧ ରୋମ୍

ବର୍ତ୍ତମାନ ନିରାପଦ ନୁହେଁ । ତେବେ ମୁଁ ପ୍ରଥମେ ସିଜର୍‌ଙ୍କ ମୃତଦେହ ବଜାର ଆଡ଼କୁ ନେଇଯିବି । ସେଠାରେ ବକ୍ତୃତାଦେଇ ଏଇ ହତ୍ୟାକାଣ୍ଡ ପ୍ରତି ଜନତାର ପ୍ରତିକ୍ରିୟା ଏବଂ ହତ୍ୟାକାରୀମାନଙ୍କ ପ୍ରତି ସେମାନଙ୍କର ମନୋଭାବ ଲକ୍ଷ୍ୟ କରିବି । ସେ ସବୁ ଦେଖି ତମେ ଅକ୍ଟୋଭିୟସ୍‌ଙ୍କୁ ଏଠାର ସବୁ ଖବର ଜଣାଇବ । ତା'ପରେ ସେ ଯାହା ଠିକ୍ ଭାବିବେ କରିବେ ।

ଦୁଇଜଣ ସିଜର୍‌ଙ୍କ ମୃତଦେହକୁ ନେଇ ସେଠାରୁ ଚାଲିଯାଆନ୍ତି ।

ରୋମ୍‌ର ବଜାର ଇଲାକାରେ ବ୍ରୁଟସ୍ ଆଉ କାସିୟସ୍‌ଙ୍କୁ ଜନତା ଘେରିଯାଆନ୍ତି । ସେମାନେ ହତ୍ୟାର କାରଣ ଜାଣିବାକୁ ଚାହାନ୍ତି । ଜନତାର ଗୋଟିଏ ଭାଗ ବ୍ରୁଟସ୍‌ଙ୍କୁ ସମର୍ଥନ କରୁଥାଏ । ଆଉ ଗୋଟାଏ ଭାଗ କାସିୟସ୍‌ଙ୍କ ସହିତ ଅନ୍ୟ ଅଞ୍ଚଳକୁ ଚାଲିଯାଏ । କାସିୟସ୍ ସେମାନଙ୍କୁ ସବୁକଥା ବୁଝାଇ ଦେବାର ଦାୟିତ୍ୱ ନିଅନ୍ତି । ବ୍ରୁଟସ୍ ମଞ୍ଚ ଉପରକୁ ଉଠନ୍ତି ଏବଂ ତାଙ୍କର ବକ୍ତବ୍ୟ ଆରମ୍ଭ କରନ୍ତି । ସେ କହନ୍ତି, ସିଜର୍‌ଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଅନ୍ୟ କାହାରିଠାରୁ କିଛି କମ୍ ନୁହେଁ । ତଥାପି ସେ ତାଙ୍କ ବିରୋଧରେ ବିଦ୍ରୋହ କରିଛନ୍ତି । କାରଣ ସେ ସିଜର୍‌ଙ୍କୁ କମ୍ ଭଲପାଆନ୍ତି ବୋଲି ନୁହେଁ । ରୋମ୍‌କୁ ଅଧିକ ଭଲପାଆନ୍ତି ବୋଲି । ବ୍ରୁଟସ୍ ଜନତାଙ୍କୁ ପ୍ରଶ୍ନ କରନ୍ତି- ସିଜର୍‌ଙ୍କୁ ଭଲପାଇ ଆପଣମାନେ ଦାସତ୍ୱ ବରଣ କରି ନେବାକୁ ଚାହାନ୍ତି, କି ତାଙ୍କ ମୃତ୍ୟୁ ବିନିମୟରେ ଚାହାନ୍ତି ସ୍ୱାଧୀନତା ? ସିଜର୍ ମୋତେ ସ୍ନେହ କରୁଥିଲେ । ତାଙ୍କ ପାଇଁ ମୁଁ ଜୀବନସାରା କାନ୍ଦୁଥିବି । ତାଙ୍କର ବୀରତ୍ୱ ପ୍ରତି ମୋର ଶ୍ରଦ୍ଧା ରହିଛି । କିନ୍ତୁ ସେଥିରେ ସ୍ୱେଚ୍ଛାଚାରୀ । ସେଇଥିପାଇଁ ମୁଁ ତାଙ୍କୁ ହତ୍ୟାକରିଛି । ଏଭଳି କୌଣସି ହୀନ ମଣିଷ କ'ଣ ଏଠି ଉପସ୍ଥିତ ଅଛନ୍ତି, ଯିଏ ଦାସତ୍ୱ ଚାହାନ୍ତି ? ଯଦି କେହି ଅଛନ୍ତି, ତେବେ ମୁଁ ତାଙ୍କ ପାଖରେ ଅପରାଧୀ । ଏଭଳି କେହି ଅଛନ୍ତି, ଯିଏ ଦେଶକୁ ଭଲ ପାଆନ୍ତି ନାହିଁ ? ଯଦି କେହି ଥାଆନ୍ତି, ତେବେ ମୁଁ ତାଙ୍କ ପାଖରେ ଅପରାଧୀ ।

ବ୍ରୁଟସ୍ ନୀରବ ହୁଅନ୍ତେ ଜନତାଙ୍କଠାରୁ ଆୱାଜ୍ ଉଠେ- ନା, ସେଭଳି କେହି ଏଠି ନାହାନ୍ତି । ବ୍ରୁଟସ୍ ପୁଣି ଆରମ୍ଭ କରନ୍ତି- ତେବେ ମୁଁ କାହାରି ପାଖରେ କିଛି ଅନ୍ୟାୟ କରି ନାହିଁ । ଦୀର୍ଘଶ୍ୱାସ ଟାଣି ସେ କହନ୍ତି- ସିଜର୍‌ଙ୍କ ହତ୍ୟାର କାରଣ ପରିଷଦର କାର୍ଯ୍ୟ ବିବରଣୀରେ ଲିପିବଦ୍ଧ ହୋଇଛି । ଯିଏ ଚାହାନ୍ତି, ଦେଖିପାରିବେ ।

ଏତିକିବେଳେ ସିଜର୍‌ଙ୍କ ମୃତଦେହ ନେଇ ଆଣ୍ଟୋନି ଆସନ୍ତି । ସେ ଆଡ଼କୁ ଅନାଇ ବ୍ରୁଟସ୍ କହନ୍ତି- ଏଇ, ସିଜର୍‌ଙ୍କ ମୃତଦେହ ଆସୁଛି । ସାଙ୍ଗରେ ଅଛନ୍ତି ଶୋକାକୁଳ ଆଣ୍ଟୋନି । ଏଇ ମୃତ୍ୟୁରେ ତାଙ୍କର କୌଣସି ଭୂମିକା ନାହିଁ । ତେବେ ନୂତନ ପ୍ରଜାତନ୍ତ୍ରର ପ୍ରଶାସନରେ ତାଙ୍କର ସ୍ଥାନ ରହୁଛି । ଆପଣମାନଙ୍କର ସମସ୍ତଙ୍କର ରହିବ । ରୋମ୍‌ର ମଙ୍ଗଳପାଇଁ ମୁଁ ମୋର

ସବୁଠାରୁ ପ୍ରିୟ ମଣିଷଟିକୁ ହତ୍ୟା କରିଛି । ଦେଶର ପ୍ରୟୋଜନ ହେଲେ ନିଜକୁ ମଧ୍ୟ ହତ୍ୟା କରିବାକୁ ପଛେଇ ଯିବି ନାହିଁ ।

ବ୍ରୁଟସ୍‌ଙ୍କ ବକ୍ତୃତାରେ ରୋମାନ୍‌ମାନେ ମୁଗ୍ଧ, ବିହ୍ୱଳିତ । ସେମାନେ ତାଙ୍କୁ ଜୟମାଲ୍ୟ ପିନ୍ଧାଇବାକୁ ଚାହାନ୍ତି । ତାଙ୍କର ପୂର୍ବପୁରୁଷମାନଙ୍କ ଭଳି ତାଙ୍କର ମଧ୍ୟ ଗୋଟିଏ ପ୍ରତିମୂର୍ତ୍ତି ସ୍ଥାପନ କରିବାକୁ ଚାହାନ୍ତି । ଜଣେ ଚିତ୍କାର କରି କହନ୍ତି, ବ୍ରୁଟସ୍‌ଙ୍କୁ ସିଜର୍‌ଙ୍କ ଆସନରେ ବସାଯାଉ । ବ୍ରୁଟସ୍ ଜନତାଙ୍କଠାରୁ ବିଦାୟ ଚାହାନ୍ତି । ସିଜର୍‌ଙ୍କର ମରଦେହ ପ୍ରତି ଯଥାଯୋଗ୍ୟ ଶ୍ରଦ୍ଧା ପ୍ରଦର୍ଶନ ନିମନ୍ତେ ନିବେଦନ କରନ୍ତି । ଆଣ୍ଟୋନିଙ୍କର କଥା ଶୁଣିବାକୁ ମଧ୍ୟ ଅନୁରୋଧ କରନ୍ତି ।

ମଞ୍ଚକୁ ଉଠି ଆଣ୍ଟୋନି ପ୍ରଥମେ କହନ୍ତି ଯେ, ବ୍ରୁଟସ୍‌ଙ୍କ ପାଇଁ ସେ ଆଜି ଜନତାଙ୍କର ସମ୍ମୁଖୀନ ହେବାର ସୌଭାଗ୍ୟ ଲାଭ କରିଛନ୍ତି । ମୁଁ ଏଠାକୁ ଆସିଛି ସିଜର୍‌ଙ୍କ ମରଦେହକୁ ସମାଧିସ୍ଥ କରିବାର ବ୍ୟବସ୍ଥା କରିବାପାଇଁ । ମଣିଷ ଜୀବନସାରା ଯେଉଁ ଅନ୍ୟାୟ କରିଯାଏ, ତା'ର ସ୍ମୃତି ମୃତ୍ୟୁ ପରେ ମଧ୍ୟ ଥାଏ । କିନ୍ତୁ ଭଲକାମ ତା'ର ଦେହ ସହିତ ସମାଧି ନିଏ ମାଟିଗର୍ଭରେ । ସିଜର୍‌ଙ୍କ କ୍ଷେତ୍ରରେ ସେଇଆ ହେଉ । ମହାମାନ୍ୟ ବ୍ରୁଟସ୍ କହିଲେ, ସିଜର୍ ଥିଲେ ଉଚ୍ଚାକାଂକ୍ଷୀ ଏବଂ ସ୍ୱେଚ୍ଛାଚାରୀ । ତାହା ଯଦି ହୁଏ, ତେବେ ସେଇ ଅପରାଧର ପ୍ରାୟଶ୍ଚିତ୍ତ ସେ କରିଯାଇଛନ୍ତି । ସିଜର୍ ଥିଲେ ମୋର ବନ୍ଧୁ, ମୋର ପରମ ବିଶ୍ୱାସଭାଜନ ଏବଂ ନ୍ୟାୟପରାୟଣ । ବିଦେଶରୁ ସେ ଅନେକ ବନ୍ଦୀଙ୍କୁ ରୋମ୍ ଆଣିଛନ୍ତି । ସେମାନଙ୍କ ପ୍ରଦତ୍ତ ଅର୍ଥରେ ସାଧାରଣ କୋଷାଗାର ପୁଷ୍ଟ ହୋଇଛି । ସେଇ ତାହାହେଲେ ତାଙ୍କର ଉଚ୍ଚାକାଂକ୍ଷାର ପରିଚୟ ! ସମସ୍ତେ ଦେଖିଛନ୍ତି, ଲୁପରକାଲିୟା ଉତ୍ସବ ସମୟରେ ମୁଁ ନିଜ ହାତରେ ତିନି ତିନିଥର ତାଙ୍କୁ ରାଜମୁକୁଟ ପିନ୍ଧାଇଦେବାକୁ ଚେଷ୍ଟା କରିଥିଲି, ତିନିଥରଯାକ ତାଙ୍କୁ ସେ ପ୍ରତ୍ୟାଖ୍ୟାନ କରିଛନ୍ତି । ଏଇ କ'ଣ ତାଙ୍କର ଉଚ୍ଚାକାଂକ୍ଷାର ନିଦର୍ଶନ ? ତଥାପି ବ୍ରୁଟସ୍ କହିଲେ- ସେ ଉଚ୍ଚାଭିଳାଷୀ ଏବଂ ବ୍ରୁଟସ୍ ନିଶ୍ଚୟ ଜଣେ ସମ୍ମାନିତ ବ୍ୟକ୍ତି । ସେ ବା ମିଛ କହିବେ କାହିଁକି ?

ବ୍ରୁଟସ୍‌ଙ୍କ କଥା ଖଣ୍ଡନ କରିବା ମୋର ଲକ୍ଷ୍ୟ ନୁହେଁ । ମୁଁ ଯାହା ଜାଣିଛି କେବଳ ସେତିକି କହୁଛି । ଦିନେ ଆପଣମାନେ ସିଜର୍‌ଙ୍କୁ ଭଲପାଉଥିଲେ । ତା'ର କାରଣ ମଧ୍ୟ ଥିଲା । ନ୍ୟାୟବିଚାରର ଅଧିଷ୍ଠାତ୍ରୀ ଦେବୀ, ଆଜି ପଶୁଗୋଷ୍ଠୀର ଅକ୍ତିୟାରରେ ।

ଆଣ୍ଟୋନିଙ୍କର ବକ୍ତବ୍ୟ ଲୋକଙ୍କ ମନରେ ଦାଗ କାଟେ । କିଏ କହେ- ସିଜର୍‌ଙ୍କ ଜାଗାରେ ଯିଏ ଆସିବ, ସେ ହୁଏତ ତାଙ୍କଠାରୁ ବି ଖରାପ ହୋଇପାରେ । ଅନ୍ୟଜଣେ କହେ- ଯିଏ ରାଜମୁକୁଟକୁ ପ୍ରତ୍ୟାଖ୍ୟାନ କରିଦେଇପାରେ, ତାଙ୍କୁ କେମିତି ଉଚ୍ଚାକାଂକ୍ଷୀ

କୁହାଯାଇପାରିବ ? ଆଣ୍ଟୋନିଙ୍କର ସେଇ ଶୋକଗ୍ରସ୍ତ କରୁଣ ମୂର୍ତ୍ତି ମଧ ଅନେକଙ୍କର ସମବେଦନା ଆକର୍ଷଣ କରେ । ଆଣ୍ଟୋନି ପୁଣି କହିବାକୁ ଆରମ୍ଭ କରନ୍ତି । ସେ ସିଜର୍‌ଙ୍କ ସ୍ୱାକ୍ଷର ଥିବା ଖଣ୍ଡେ କାଗଜ ଦେଖାଇ କହନ୍ତି, ଏ ହେଉଛି ସିଜର୍‌ଙ୍କ ଉଇଲ୍, ତାଙ୍କର ଶେଷ ଇଚ୍ଛାପତ୍ର । ଏଇ ଉଇଲ୍ ପଢ଼ିଲେ ରୋମାନ୍‌ମାନେ ମୃତ ସିଜର୍‌ଙ୍କ ପ୍ରତି ଶ୍ରଦ୍ଧାରେ ଅବନତ ହୋଇପଡ଼ିବେ । ତାଙ୍କ ଦେହରେ ସୃଷ୍ଟି ହୋଇଥିବା କ୍ଷତସବୁକୁ ନିଜର ପିନ୍ଧାଲୁଗା ଦ୍ୱାରା ପୋଛିଦେବେ ।

ଉଇଲ୍ ସମ୍ପର୍କରେ ଜାଣିବାପାଇଁ ଜନତାଙ୍କ ମନରେ ପ୍ରଚଣ୍ଡ କୌତୂହଳ ସୃଷ୍ଟି ହୁଏ । ଆଣ୍ଟୋନି ଅବଶ୍ୟ ଏତେ ସହଜରେ ଉଇଲ୍‌ର ବିଷୟବସ୍ତୁ ଜନତାଙ୍କ ନିକଟରେ ପ୍ରକାଶ କରନ୍ତି ନାହିଁ । ଛୋଟ ଛୋଟ କଥା କହି ସେମାନଙ୍କ କୌତୂହଳ ବଢ଼ାଇ ଦିଅନ୍ତି । ଅବସ୍ଥା ଏମିତି ହୁଏ ଯେ ଜନତା ବ୍ରୁଟସ୍, କାସିୟସ୍ ପ୍ରଭୃତିଙ୍କୁ ବିଶ୍ୱାସଘାତକ, ଖୁନୀ, ସଇତାନ୍ ପ୍ରଭୃତି ଶବ୍ଦରେ ଭର୍ତ୍ସନା କରିବାରେ ଲାଗନ୍ତି । ଏଥର ଆଣ୍ଟୋନି ମଞ୍ଚରୁ ଓହ୍ଲାଇ ସିଜର୍‌ଙ୍କ ମରଦେହ ନିକଟରେ ଯାଇ ଠିଆହୁଅନ୍ତି । ଶ୍ରୋତାମାନଙ୍କୁ ମୃତଦେହର ଚାରିଆଡ଼େ ଠିଆ ହେବାପାଇଁ ଅନୁରୋଧ କରନ୍ତି । ଆବେଗପୂର୍ଣ୍ଣ କଣ୍ଠରେ କହନ୍ତି, ଯଦି ତମମାନଙ୍କ ଆଖିରେ ଲୁହ ଥାଏ, ତେବେ ସେଇ ଲୁହ ଏହାଙ୍କ ଉଦ୍ଦେଶ୍ୟରେ ତର୍ପଣ କର । ସିଜର୍‌ଙ୍କ ପୋଷାକ ପ୍ରତି ଜନତାର ଦୃଷ୍ଟି ଆକର୍ଷଣ କରି କହନ୍ତି, ନାର୍ଭିଲ୍ ଜୟ କରିବା ପରେ ଏକ ଗ୍ରୀଷ୍ମ ସନ୍ଧ୍ୟାରେ ସେ ପ୍ରଥମେ ଏଇ ପୋଷାକ ପିନ୍ଧିଥିଲେ । ଆଜି କାସିୟସ୍ ତାଙ୍କ ହାତର ଛୁରୀରେ ଏହାକୁ ବିଦ୍ଧ କରିଛନ୍ତି । ଆପଣମାନେ ଦେଖନ୍ତୁ, କାସ୍‌କା ଏଠି କେତେବଡ଼ କ୍ଷତଟାଏ ସୃଷ୍ଟି କରିଛନ୍ତି ! ଆଉ ତାଙ୍କର ପ୍ରିୟତମ ବନ୍ଧୁ ବ୍ରୁଟସ୍ ଛୁରୀ ମାରିଛନ୍ତି ଏଇଠି । ସେତେବେଳେ ସିଜର୍‌ଙ୍କ ଦେହରୁ ଯେଉଁ ରକ୍ତ ବହିଯାଉଥିଲା, ସେଇ ରକ୍ତର ଧାରା ଜାଣିବାକୁ ଚାହୁଁଥିଲା, ପ୍ରକୃତରେ ସେଇ ନିର୍ଦ୍ଦୟ ଆଘାତ ବ୍ରୁଟସ୍‌ଙ୍କ ଦ୍ୱାରା ସୃଷ୍ଟି ହୋଇଛି କିମ୍ବା ନାହିଁ ! ବ୍ରୁଟସ୍‌ଙ୍କୁ ସେ କେତେ ଭଲପାଉଥିଲେ, ତାହା ଆପଣମାନେ ଜାଣନ୍ତି । ମହାମାନ୍ୟ ସିଜର୍ ଯେତେବେଳେ ବ୍ରୁଟସ୍‌ଙ୍କୁ ଆଘାତ କରିବାର ଦେଖିଲେ, ସେତେବେଳେ ଅସ୍ତ୍ରର ଆଘାତ ଅପେକ୍ଷା ସେଇ ଅକୃତଜ୍ଞତାର ଆଘାତ ତାଙ୍କୁ ଗଭୀର ପୀଡ଼ା ଦେଇଥିଲା ।

ଆଣ୍ଟୋନିଙ୍କର ବକ୍ତୃତା ରୋମାନ୍‌ମାନଙ୍କୁ ଯେମିତି ପାଗଳ କରିଦେଲା ସେମାନେ ଚିତ୍କାରକରି କହିବାରେ ଲାଗିଲେ, ଆମେ ଏଇ ହତ୍ୟାର ପ୍ରତିଶୋଧ ନେବୁ । ପ୍ରତିଶୋଧ- ଭୀଷଣ ପ୍ରତିଶୋଧ । ସେମାନଙ୍କୁ ଖୋଜି ବାହାରକର । ନିଆଁରେ ପୋଡ଼ିପକାଅ, ଜଣେ ବିଶ୍ୱାସଘାତକ ଯେମିତି ବଞ୍ଚି ନ ପାରେ- ଏଇ ସବୁ ଧ୍ୱନିରେ ରୋମ୍‌ର ଆକାଶ ଭରିଗଲା । ଆଣ୍ଟୋନି ସେତେବେଳେ ସେମାନଙ୍କର ନେତା, ପଥ ପ୍ରଦର୍ଶକ ।

ଆଣ୍ଟୋନି କହିଚାଲିଥାଆନ୍ତି- ମୁଁ ବ୍ରୁଟସ୍‌ଙ୍କ ଭଳି ବାଗ୍ମୀ ନୁହଁ । ଜଣେ ସାଧାରଣ ମୋଟାବୁଦ୍ଧିର ମଣିଷ । ସେଥିପାଇଁ ମୋତେ କହିବାର ସୁଯୋଗ ମିଳିଛି । ଯଦି ମୁଁ ଜଣେ ଭଲ ବାଗ୍ମୀ ହୋଇଥାଆନ୍ତି, ତେବେ ମୋର ଜ୍ୱାଳାମୟୀ ଭାଷଣରେ ରାଜ୍ୟର ପ୍ରତ୍ୟେକ ପଥରଖଣ୍ଡ ବିଦ୍ରୋହ କରି ଉଠନ୍ତେ । ଆଣ୍ଟୋନିଙ୍କର ଇଙ୍ଗିତ ଥିଲା ଅତ୍ୟନ୍ତ ସ୍ପଷ୍ଟ । ଜନତା କ୍ରୋଧରେ ଗର୍ଜିଉଠନ୍ତି- ଆମେ ମଧ୍ୟ ବିଦ୍ରୋହ କରିବୁ ।

ବନ୍ଧୁଗଣ- ଆଣ୍ଟୋନି କହିବାକୁ ଆରମ୍ଭ କରନ୍ତି- ଆପଣମାନଙ୍କୁ ସେ କେତେ ଭଲ ପାଉଥିଲେ, ତା'ଆପଣମାନେ ଜାଣି ନାହାନ୍ତି । ମୁଁ ତାଙ୍କ ଉଇଲ୍ କଥା କହୁଥିଲି । ସେଥିରେ ଲେଖା ଅଛି... ଜନତା ଗର୍ଜି ଉଠେ- ଆମେ ଜାଣିବାକୁ ଚାହୁଁ ।

ଉଇଲ୍‌ଟି ଦେଖାଇ ଆଣ୍ଟୋନି କହନ୍ତି- ଏ ହେଉଛି ତାଙ୍କର ମୋହର-ଛାପ ଇଚ୍ଛାପତ୍ର । ଏହା ମାଧ୍ୟମରେ ସେ ରୋମ୍‌ର ପ୍ରତ୍ୟେକ ନାଗରିକଙ୍କୁ ପଚ୍‌ସ୍ତରୀ ଡ୍ରାକମା କରି ଦେଇଯାଇଛନ୍ତି । ଏହାଛଡ଼ା ଟାଇବର ନଦୀ ତୀରରେ ସ୍ଥିତ ବଗିଚାଘର- ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଦାନକରି ଦେଇଯାଇଛନ୍ତି । ଏଇ ହେଲେ ସିଜର୍ । ଏଭଳି ମଣିଷ କ'ଣ ଆଉ କେବେ ଆସିବେ ? ବୋଧହୁଏ ନା- ଜନତା ଚିତ୍କାର କରିଉଠନ୍ତି- ସିଜର୍‌ଙ୍କ ମରଦେହ ସତ୍କାର ହୋଇସାରିବା ପରେ ତାଙ୍କରି ଶେଷ କୃତ୍ୟର ନିଆଁରେ ଆମେ ବିଶ୍ୱାସଘାତକମାନଙ୍କର ଘର ପୋଡ଼ି ଦେବୁ । ସେମାନଙ୍କର ସବୁକିଛି ଧ୍ୱଂସ କରିଦେବୁ ।

ଆଣ୍ଟୋନି ଯାହା ଚାହିଁଥିଲେ, ତା'ଠୁ ଯଥେଷ୍ଟ ଅଧିକ ପାଇଯାଇଛନ୍ତି । ରୋମାନ୍‌ମାନେ ସେତେବେଳେ କ୍ଷିପ୍ତ । ସେମାନେ ସିଜର୍‌ଙ୍କ ଶେଷକୃତ୍ୟର ନିଆଁରୁ ମଶାଲ ଜଳାଇ ଷଡ଼ଯନ୍ତ୍ରକାରୀମାନଙ୍କର ଘରଦ୍ୱାର ପୋଡ଼ି ଦେବାକୁ ଚାହିଁଲେ । ଜଣେ ଭୃତ୍ୟ ଆସି ଆଣ୍ଟୋନିଙ୍କୁ ଖବର ଦିଏ- ଅକ୍ଟେଭିୟସ୍ ସିଜର୍ ରୋମ୍‌ରେ ପହଞ୍ଚିସାରିଛନ୍ତି । ସେ ଆଉ ଲେପିଡସ୍ ଏବେ ସିଜର୍‌ଙ୍କ ଘରେ ଅଛନ୍ତି । ଆଣ୍ଟୋନି ସେଠାକୁ ଯାଇଁ ସେମାନଙ୍କ ସହିତ ଦେଖା କରିବେ ବୋଲି କହନ୍ତି । ଭୃତ୍ୟ ଆହୁରି କହେ- ଅକ୍ଟେଭିୟସ୍ କହୁଥିଲେ ଯେ ବ୍ରୁଟସ୍ ଆଉ କାସିୟସ୍ ରୋମ୍ ନଗରୀର ଫାଟକ ପାରିହୋଇ ଜୀବନ ନେଇ ପଳାଉଛନ୍ତି । ଆଣ୍ଟୋନି ହସନ୍ତି ।

ରୋମାନ୍‌ମାନେ ରାଗରେ ଅନ୍ଧ । ସିନ୍ନା ନାମକ କବି ଆସୁଥିଲେ ସିଜର୍‌ଙ୍କ ଅନ୍ତ୍ୟେଷ୍ଟି ଦେଖିବାପାଇଁ । ତାଙ୍କୁ ମଧ୍ୟ ନାଗରିକମାନେ ଘେରିଯାଇ ପ୍ରଶ୍ନବାଣରେ ଜର୍ଜରିତ କରନ୍ତି । ମନେକରନ୍ତି- ଏ ମଧ୍ୟ ଷଡ଼ଯନ୍ତ୍ରକାରୀମାନଙ୍କ ମଧ୍ୟରୁ ଜଣେ । କବି କହନ୍ତି- ମୁଁ ଷଡ଼ଯନ୍ତ୍ରକାରୀ ସିନ୍ନା ନୁହେଁ । ମୁଁ କବି । ଜଣେ ନାଗରିକ ପରିହାସ କରି କହିପକାନ୍ତି- ଖରାପ କବିତା ଲେଖୁଥିବାରୁ ତାଙ୍କୁ ଖଣ୍ଡ ଖଣ୍ଡ କରିଦିଅ ।

ସିନ୍ନାଙ୍କୁ ଛାଡ଼ି ସେମାନେ ବ୍ରୁଟସ୍, କାସିୟସ୍ ପ୍ରଭୃତିଙ୍କ ପଛରେ ଛୁଟନ୍ତି ।

॥ ୪ ॥

ଅକ୍ଟୋଭିୟସ୍ ଏବଂ ଲେପିଡସ୍ ଆଣ୍ଟୋନିଙ୍କ ଘରକୁ ଆସନ୍ତି । ରାଜଦ୍ରୋହ ଏବଂ ହତ୍ୟା ଅଭିଯୋଗରେ ଯେଉଁମାନଙ୍କୁ ମରିବାକୁ ହେବ, ସେମାନଙ୍କର ଏକ ତାଲିକା ଆଣ୍ଟୋନି ପ୍ରସ୍ତୁତ କରିଛନ୍ତି । ତାଲିକାରେ ଲେପିଡସ୍‌ଙ୍କର ଭାଇ ଏବଂ ଆଣ୍ଟୋନିଙ୍କର ଭଣଜାର ନାମ ମଧ୍ୟ ରହିଛି । ପ୍ରାଣଦଣ୍ଡ ନିମନ୍ତେ ଲେପିଡସ୍ ଏବଂ ଆଣ୍ଟୋନି ସ୍ୱୀକୃତି ମଧ୍ୟ ଦେଇସାରିଛନ୍ତି । ଲେପିଡସ୍ ଚାଲିଯିବାରୁ ଆଣ୍ଟୋନି ଅକ୍ଟୋଭିୟସ୍‌ଙ୍କୁ ପଚାରନ୍ତି, ଲେପିଡସ୍ ଲୋକଟା ବୋକା ତାକୁ ସାମ୍ରାଜ୍ୟର ଏକତୃତୀୟାଂଶ ଦେବାଟା କଣ ଠିକ୍ ହେବ ? ଅକ୍ଟୋଭିୟସ୍ ପାଲଟା ପ୍ରଶ୍ନ କରନ୍ତି, 'ତା'ହେଲେ ତା'ର ସାହାଯ୍ୟ ନେଲି କାହିଁକି ? ଆଣ୍ଟୋନି ଉତ୍ତର ଦିଅନ୍ତି- ତାକୁ ବର୍ତ୍ତମାନ କିଛି ସମ୍ମାନ ଦିଆଯାଉଛି ଠିକ୍, କିନ୍ତୁ ପ୍ରକୃତରେ ସେ ହେଉଛି ସୁବର୍ଣ୍ଣ ଭାର ବୋହୁଥିବା ଏକ ଗର୍ଦ୍ଦଭ । ତାକୁ ପରିଚାଳନା କରିବାର ଦାୟିତ୍ୱ ଆମର । ଆମ ନିର୍ଦ୍ଦେଶରେ ସେ କାମ କରିବ । କାମ ସରିଗଲେ ତାକୁ ବିଦାୟ ଦେବାକୁ ହେବ । ସେତେବେଳେ ଗଧଟିଏ ଭଳି ସେ ପଡ଼ିଆରୁ ପଡ଼ିଆକୁ ଚରି ବୁଲିବ । ଅକ୍ଟୋଭିୟସ୍ କହନ୍ତି, ଯାହାହେଉ ସେ ଜଣେ ସାହସୀ ଯୋଦ୍ଧା ।

ଶେଷରେ ନିଷ୍ପତ୍ତି କରାଯାଏ ଯେ, ସେମାନଙ୍କର ମିତ୍ରଶକ୍ତିକୁ ଠୁଳ କରାଯିବ । ଆଲୋଚନା ଦ୍ୱାରା କିଭଳି ବିପଦର ମୁକାବିଲା କରିବାକୁ ହେବ, ତାହା ଠିକ୍ କରାଯିବ ।

ଏପଟେ ବ୍ରୁଟସ୍ ଓ କାସିୟସ୍‌ଙ୍କ ସମ୍ପର୍କରେ ଫାଟ ଦେଖାଦିଏ । ଦୁହେଁ ମନେ କରନ୍ତି ଯେ, ଅନ୍ୟଜଣକ ତାଙ୍କ ପ୍ରତି ଅନ୍ୟାୟ କରୁଛନ୍ତି । ଖୋଲାଖୋଲି ଭାବରେ କଥାବାର୍ତ୍ତା କରିବାକୁ କାସିୟସ୍ ସସୈନ୍ୟେ ବ୍ରୁଟସ୍‌ଙ୍କ ଶିବିରକୁ ଆସନ୍ତି । ଉଭୟେ ସେମାନଙ୍କର ସୈନ୍ୟଙ୍କୁ କିଛି ଦୂର ଯିବା ନିମନ୍ତେ କହି କଥାବାର୍ତ୍ତା ଆରମ୍ଭ କରନ୍ତି । କାସିୟସ୍‌ଙ୍କର ଅଭିଯୋଗ ଘୁଷ୍ ନେବାର ଅପରାଧରେ ବ୍ରୁଟସ୍ ଲୁସିୟସ୍‌ଙ୍କୁ ଶାସ୍ତି ଦେଇଛନ୍ତି ଏବଂ ଲୋକ ସମ୍ମୁଖରେ ଅପମାନ ଦେଇଛନ୍ତି । ତାଙ୍କୁ ସମର୍ଥନ ଜଣାଇ କାସିୟସ୍ ଚିଠି ଲେଖିଲେ ମଧ୍ୟ ବ୍ରୁଟସ୍ ତାକୁ ଗ୍ରହଣ କରି ନାହାନ୍ତି । ବ୍ରୁଟସ୍‌ଙ୍କର ପାଲଟା ଅଭିଯୋଗ - କାସିୟସ୍ ଏ ଧରଣର ଚିଠି ଲେଖିଲେ କାହିଁକି ? କାସିୟସ୍‌ଙ୍କ ବକ୍ତବ୍ୟ - ଏଭଳି ସମୟରେ ଏ ଧରଣର ଛୋଟ ଅପରାଧ ଉପରେ ଗୁରୁତ୍ୱ ଦିଆଯିବା ଉଚିତ ନୁହେଁ । ଏଥର ବ୍ରୁଟସ୍ କାସିୟସ୍‌ଙ୍କର ନିଜର ଲାଞ୍ଚ ନେବାର ଅଭ୍ୟାସ ଅଛି ବୋଲି ଅଭିଯୋଗ କରନ୍ତି । ଅଯୋଗ୍ୟ ଲୋକମାନଙ୍କଠୁଁ ଟଙ୍କା ଖାଇ ସେ ସେମାନଙ୍କୁ ଉଚ୍ଚପଦରେ ବସାଇଛନ୍ତି । ବ୍ରୁଟସ୍ ଓ କାସିୟସ୍‌ଙ୍କ ଭିତରେ ବାଦାନୁବାଦ କ୍ରମେ ତୀବ୍ର ହୋଇଉଠେ । ପନ୍ଦର ମାର୍ଚ୍ଚ କଥା ମନେ ପକାଇ ଦେଇ ବ୍ରୁଟସ୍ କହନ୍ତି, ନ୍ୟାୟ ବିଚାରର ସ୍ୱାର୍ଥ ରକ୍ଷାପାଇଁ କ'ଣ ତେବେ ସିଜରଙ୍କ ହତ୍ୟା କରାଯାଇ ନାହିଁ ? ଯେଉଁମାନେ ଏ ଯୁଗର ଶ୍ରେଷ୍ଠ ମଣିଷଟିକୁ ହତ୍ୟା କରିଛନ୍ତି,

ସେମାନଙ୍କ ଭିତରୁ ଜଣେ ଦୁର୍ନୀତିକୁ ସମର୍ଥନ କରିବ ଏବଂ ଉତ୍କୋଚ ନେଇ ହାତକୁ କଳୁଷିତ କରିବ ? ତୀବ୍ର ବାଦାନୁବାଦ ପରେ କାସିୟସ୍ ଏକପ୍ରକାର ଭାଙ୍ଗିପଡ଼ନ୍ତି । ତାଙ୍କର ଅଭିମାନ ଫଳରେ ଶେଷରେ ଦୁଇପକ୍ଷ ମଧ୍ୟରେ ବୁଝାମଣା ହୋଇଯାଏ । ଦ୍ୱନ୍ଦ୍ୱ ଶେଷ ହୁଏ, ଭଲପାଇବା ଭିତରେ । ବ୍ରୁଟସ୍ କାସିୟସ୍‌ଙ୍କୁ ଦିଅନ୍ତି ତାଙ୍କର ଚରମ ଦୁଃଖର ସମ୍ବାଦ - ପୋର୍ସିଆଙ୍କର ମୃତ୍ୟୁ ହୋଇଯାଇଛି । ବ୍ରୁଟସ୍‌ଙ୍କର ଅନୁପସ୍ଥିତିରେ ଅଧୈର୍ଯ୍ୟ ହୋଇ ଏବଂ ଆଣ୍ଟୋନି ତଥା ଅକ୍ଟେଭିୟସ୍ ଶକ୍ତିଶାଳୀ ହୋଇ ଉଠୁଛନ୍ତି ଭାବି ସେ ଆତ୍ମହତ୍ୟା କରିଛି । ଉଭୟ ପାନପାତ୍ର ହାତରେ ଧରି ଦୁଃଖ ଭୁଲିବାକୁ ଚେଷ୍ଟା କରନ୍ତି ।

କିଛି ପରେ ସେଠାକୁ ଆସନ୍ତି ଦୁହିଁଙ୍କର ଦୁଇ ଅନୁଗାମୀ ଟିଟିନିୟସ୍ ଓ ମେସାଲା । ବ୍ରୁଟସ୍ ମେସାଲାଙ୍କୁ ଜଣାନ୍ତି ଯେ, ସେ ଖବର ପାଇଛନ୍ତି ଅକ୍ଟେଭିୟସ୍ ଓ ଆଣ୍ଟୋନି ଏକ ବିରାଟ ସୈନ୍ୟବାହିନୀ ନେଇ ଫିଲିପ୍ପି ଆଡ଼କୁ ଅଗ୍ରସର ହେଉଛନ୍ତି । ମେସାଲା କହନ୍ତି, ଅକ୍ଟେଭିୟସ୍, ଆଣ୍ଟୋନି ଓ ଲେପିଡସ୍ ସିନେଟ୍‌ର ଶହେ ଜଣ ସଦସ୍ୟଙ୍କୁ ହତ୍ୟା କରିଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ସିସେରୋ । ପୋର୍ସିଆଙ୍କ କଥା ଉଠେ । ବ୍ରୁଟସ୍ କହନ୍ତି, ଆମକୁ ବି ଦିନେ ମରିବାକୁ ହେବ । ଏ ମୃତ୍ୟୁ ଶୋକ ମୁଁ ସହ୍ୟ କରିପାରିବି । ବ୍ରୁଟସ୍ ପୁଣି କାମର କଥା ଭିତରକୁ ଫେରିଆସନ୍ତି । ସେମାନେ ସେନା ନେଇ ଫିଲିପି ଆଡ଼କୁ ଅଗ୍ରସର ହେବା ଉଚିତ କିମ୍ବା ନୁହେଁ, ଏ ବିଷୟରେ ଆଲୋଚନା ଚାଲେ । କାସିୟସ୍ କହନ୍ତି, ତା' ନ କରି ଆମେ ବରଂ ସେମାନଙ୍କୁ ଅପେକ୍ଷା କରିବା । ସେଥିରେ ସେମାନଙ୍କର ପ୍ରଚୁର ରସଦ୍ ଶେଷ ହୋଇଯିବ: ଏବଂ ପଥଶ୍ରମରେ ସୈନ୍ୟମାନେ ମଧ୍ୟ କ୍ଳାନ୍ତ ହୋଇ ପଡ଼ିବେ । ସେମାନଙ୍କର ବହୁ କ୍ଷୟକ୍ଷତି ହେବ । ସେଇ ସମୟରେ ସେମାନେ ବିଶ୍ରାମ ନେବାକୁ ଚାହିଁବେ ।

ବ୍ରୁଟସ୍ କିନ୍ତୁ ଅନ୍ୟ କଥା କହନ୍ତି । ତାଙ୍କ ମତରେ ସେମାନଙ୍କ ଶିବିର ଏବଂ ଫିଲିପି ଭିତରେ ଯେଉଁସବୁ ଜନପଦ ରହିଛି, ସେଠାର ଲୋକ ଆମକୁ ସାହାଯ୍ୟ କରୁଛନ୍ତି ଭୟରେ-ଭକ୍ତିରେ ନୁହେଁ । ସେମାନଙ୍କର ସମର୍ଥନ ତେଣୁ ଆନ୍ତରିକ ନୁହେଁ । ଶତ୍ରୁବାହିନୀ ସେଇ ବାଟ ଦେଇ ଆସିବା ସମୟରେ ସେଇଠୁ ସୈନ୍ୟ ସଂଗ୍ରହ କରି ନିଜର ଶକ୍ତି ବଢ଼ାଇବେ । ଏ ବିଷୟରେ ମୁଁ ନିଶ୍ଚିତ- ତା' ଅପେକ୍ଷା ଆମେ ବରଂ ସେଇମାନଙ୍କ ସାହାଯ୍ୟ ନେଇ ଫିଲିପିରେ ଶତ୍ରୁମାନଙ୍କର ମୁହାଁମୁହିଁ ହେବା ।

କାସିୟସ୍ ତଥାପି ବୁଝାଇବାକୁ ଚାହାନ୍ତି । ବ୍ରୁଟସ୍ ନିଜ ମତରେ ଅଟଳ ରୁହନ୍ତି । ତାଙ୍କର ଯୁକ୍ତି - ସବୁ ମଣିଷଙ୍କର ଜୀବନ-ସମୁଦ୍ରରେ ଆସେ ସୌଭାଗ୍ୟର ଜୁଆର - ତାରି ସୁଯୋଗରେ ମଣିଷ ତା'ର ଆକାଙ୍କ୍ଷିତ ସୁଖ ଓ ସମ୍ପଦ ଲାଭ କରେ । ତା'ର ସୁଯୋଗ ନେଇ ନ ପାରିଲେ,

ଜୀବନର ଜୟଯାତ୍ରା ଦୁଃଖର ବାଲିବନ୍ଧରେ ଆବଦ୍ଧ ହୋଇଯାଏ । ଶେଷରେ ବ୍ରୁଟସ୍‌ଙ୍କ କଥାରେ କାସିୟସ୍‌ଙ୍କୁ ରାଜି ହେବାକୁ ପଡ଼େ । ଠିକ୍ ହୁଏ, ପରଦିନ ସକାଳୁ ସେମାନଙ୍କର ଫିଲିପ୍ପି ଅଭିଯାନ ଆରମ୍ଭ ହେବ ।

ବ୍ରୁଟସ୍‌ଙ୍କ ଆଖିରେ ନିଦ ନାହିଁ । ଲୁସିୟସ୍‌ଙ୍କୁ କିଛି ବଜାଇବାକୁ କହନ୍ତି । ଟିକିଏ ବଜାଇବା ପରେ ସେ ଶୋଇପଡ଼େ । ବ୍ରୁଟସ୍ ତଥାପି ନିଦ୍ରାହୀନ । ଏତିକିବେଳେ ସେଠାରେ ସିଜର୍‌ଙ୍କର ପ୍ରେତାତ୍ମା ଆବିର୍ଭୂତ ହୁଏ । ବୋଧହୁଏ ତାଙ୍କ ଆଖିର ଭ୍ରମ । ମାତ୍ର ପ୍ରେତାତ୍ମା ତାଙ୍କ ଆଡ଼କୁ ଆଗେଇ ଆସେ । ଭୟରେ ତାଙ୍କର ରକ୍ତ ଶୀତଳ ହୋଇଯାଏ । ରୋମ୍ ଟାଙ୍କୁରି ଉଠେ । ସେ ପଚାରନ୍ତି, କ'ଣ ପାଇଁ ଆସିଛ ? ପ୍ରେତାତ୍ମା କହେ - ଫିଲିପ୍ପିର ପ୍ରାନ୍ତରରେ ତମ ସହିତ ମୋର ଆଉ ଥରେ ଦେଖାହେବ - କେବଳ ଏତିକି ଜଣାଇବା ପାଇଁ ମୁଁ ଆସିଛି । ଆଉଥରେ ସେଇ କଥା କହି ପ୍ରେତାତ୍ମା ଅଦୃଶ୍ୟ ହୋଇଯାଏ ।

ବ୍ରୁଟସ୍ ତାଙ୍କ ଅନୁଚରଙ୍କୁ ଉଠାଇ ଦିଅନ୍ତି, କିଛି ଦେଖିଛନ୍ତି କି ନାହିଁ ବୋଲି ସେମାନଙ୍କୁ ପଚାରନ୍ତି । କେହି କିଛି ଦେଖି ନ ଥାନ୍ତି । ବ୍ରୁଟସ୍ କାସିୟସ୍‌ଙ୍କୁ ଖବର ଦିଅନ୍ତି- ସେ ଯେମିତି ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ତାଙ୍କର ସେନା ନେଇ ଅଗ୍ରସର ହୁଅନ୍ତି । ବ୍ରୁଟସ୍ କିଛି ପରେ ଯାତ୍ରା ଆରମ୍ଭ କରିବେ ।

॥ ୫ ॥

ଅକ୍ଟୋଭିୟସ୍ ସୈନ୍ୟ ନେଇ ଫିଲିପ୍ପିର ପ୍ରାନ୍ତରରେ ଶତ୍ରୁ ସେନାର ଅପେକ୍ଷାରେ ଥାଆନ୍ତି । ତାଙ୍କର ପ୍ରତ୍ୟାଶା ଅନୁସାରେ କାର୍ଯ୍ୟ ହୋଇଛି । ବ୍ରୁଟସ୍ ଓ କାସିୟସ୍‌ଙ୍କ ମିଳିତ ବାହିନୀ ନିଜ ଇଲାକାରେ ନ ରହି ଏଇଆଡ଼େ ଅଗ୍ରସର ହେଉଛନ୍ତି ।। ଦୂତଠାରୁ ଖବର ମିଳେ ଶତ୍ରୁମାନେ ପରମ ବିକ୍ରମରେ ଆଗକୁ ବଢୁଛନ୍ତି । ଯୁଦ୍ଧ ପାଇଁ ପ୍ରସ୍ତୁତି ଆରମ୍ଭ ହେବା ଆବଶ୍ୟକ । ଆଣ୍ଟୋନି ଅକ୍ଟୋଭିୟସ୍‌ଙ୍କୁ ବାମ ଦିଗରୁ ଧୀରେ ଧୀରେ ଅଗ୍ରସର ହେବା ନିମନ୍ତେ ପରାମର୍ଶ ଦିଅନ୍ତି । ଅକ୍ଟୋଭିୟସ୍ କିନ୍ତୁ ଓଲଟା କଥା କହନ୍ତି । ତାଙ୍କ ମତରେ ଆଣ୍ଟୋନି ବାମ ଦିଗରୁ ଆକ୍ରମଣ କରନ୍ତୁ; ସେ ଡାହାଣ ଦିଗରୁ ଆସିବେ । ଏହାକୁ ନେଇ ଦୁହିଁଙ୍କ ଭିତରେ କଥା କଟାକଟି ଚାଲେ ।

ସେନା ନେଇ ବ୍ରୁଟସ୍ ଓ କାସିୟସ୍ ଆସିଯାଆନ୍ତି । ଅକ୍ଟୋଭିୟସ୍ ଓ ଆଣ୍ଟୋନି ସ୍ଥିର କରନ୍ତି ପ୍ରଥମେ ଶତ୍ରୁ ଆକ୍ରମଣ କରୁ - ତା' ପରେ ସେମାନେ ପ୍ରତ୍ୟୁତ୍ତର ଦେବେ ।

ବ୍ରୁଟସ୍ ଓ କାସିୟସ୍ ଆସିଯିବାରୁ ଦୁଇପକ୍ଷ ଭିତରେ ବାକ୍ ଯୁଦ୍ଧ ଆରମ୍ଭ ହୋଇଯାଏ । ଅକ୍ଟୋଭିୟସ୍ କହନ୍ତି - ଯୁଦ୍ଧ ପୂର୍ବରୁ ଏସବୁ କଥାର କ'ଣ ଦରକାର ? ଏଇ ମୁଁ ମୋର

ତରବାରି କୋଷମୁକ୍ତ କରୁଛି; ସିଜରଙ୍କ ଦେହର ବତ୍ରିଶଟି ଆଘାତର ପ୍ରତିଶୋଧ ନେଇ ନ ସାରିବା ପର୍ଯ୍ୟନ୍ତ ଏହା କୋଷବଦ୍ଧ ହେବ ନାହିଁ ।

ଅକ୍ଟେଭିୟସ୍ ଚାଲିଯାଆନ୍ତି । କାସିୟସ୍ କହନ୍ତି ଝଡ଼ ଉଠୁ, ସମୁଦ୍ର ଉତ୍ତାଳ ହେଉ, ତଥାପି ନୌକା ଭସାଇବାକୁ ହିଁ ହେବ । ଭୟରେ ପଛେଇ ଗଲେ ଚଳିବ ନାହିଁ । ତାଙ୍କ ମନରେ ହୁଏତ କିଛି ସନ୍ଦେହ ରହିଯାଇଥାଏ । ସେ କହନ୍ତି, ଆସିବା ବାଟରେ ଦୁଇଟା ଇଗଲ୍ ସେମାନଙ୍କର ପତାକା ଉପରେ ବସିଥିଲେ । ଆଜି ସକାଳେ ଉଡ଼ିଯାଇଛନ୍ତି । ବଦଳରେ କୁଆ, ଶାଗୁଣା ଆଉ ଚିଲ ମୁଣ୍ଡ ଉପରେ ଉଡ଼ି ବୁଲୁଛନ୍ତି । ସେମାନଙ୍କର ବିଶାଳ କଳାଛାୟା
ଅଶୁଭ ଏକ ଚନ୍ଦ୍ରାତପ ଭଳି ସେମାନଙ୍କ ସୈନ୍ୟବାହିନୀକୁ ଢାଙ୍କି ରଖିଛି । ଏ ସବୁ ଭଲ ଲକ୍ଷଣ ନୁହେଁ ବୋଲି ତାଙ୍କର ଧାରଣା । ମେସାଲା ସେ ସବୁରେ ବିଶ୍ୱାସ ନ କରିବାକୁ  ପରାମର୍ଶ ଦିଅନ୍ତି  । କାସିୟସ୍ କହନ୍ତି, ସମ୍ପୂର୍ଣ୍ଣ ନ ହେଲେ ମଧ ଏଥିରୁ କିଛି କିଛି ସେ ବିଶ୍ୱାସ କରନ୍ତି । ତେବେ ସେ ଉଦ୍ୟମୀ -ତାଙ୍କର ସାହସ ଅଛି । ବ୍ରୁଟସ୍ କହନ୍ତି, ସେ ମଧ ଏହି ମାନସିକତାରେ ବିଶ୍ୱାସୀ । କାସିୟସ୍‌ଙ୍କ ସଂଶୟ ତଥାପି ଦୂର ହେଉ ନ ଥାଏ । ସେ କହନ୍ତି, ଯଦିଓ ଏତେଦିନଯାଏ ଦେବତାମାନେ ସେମାନଙ୍କ ପ୍ରତି ସୁପ୍ରସନ୍ନ ଅଛନ୍ତି, କିନ୍ତୁ ଜୀବନ ଅନିଶ୍ଚିତ । ତେଣୁ ଖରାପଟାକୁ ଗ୍ରହଣ କରି ନେବା ହିଁ ଭଲ । ଯଦି ସେମାନେ ଏଇ ଯୁଦ୍ଧରେ ହାରିଯାଆନ୍ତି, ତେବେ ବ୍ରୁଟସ୍‌ଙ୍କ ସହିତ ଆଉ କଥା କହିବାର ସୁଯୋଗ ମିଳିବ ନାହିଁ । ବ୍ରୁଟସ୍ କହନ୍ତି, ସେଭଳି ଯଦି କିଛି ହୁଏ, ତେବେ ସେ ଭାଗ୍ୟର ନିଷ୍ପତ୍ତିକୁ ମାନିନେବେ, କିନ୍ତୁ କାପୁରୁଷ ଭଳି ଆତ୍ମହତ୍ୟା କରିବେ ନାହିଁ । ଏହାପରେ ସେମାନେ ପରସ୍ପରଠାରୁ ବିଦାୟ ନେଇ ଯୁଦ୍ଧ ନିମନ୍ତେ ପ୍ରସ୍ତୁତି ଆରମ୍ଭ କରନ୍ତି ।

ଯୁଦ୍ଧ ଆରମ୍ଭ ହୋଇଯାଏ । ଆରମ୍ଭରୁ ଯୁଦ୍ଧର ଗତି ଅକ୍ଟେଭିୟସ୍ ଏବଂ ଆଣ୍ଟୋନିଙ୍କ ପକ୍ଷରେ ଯାଏ । ପିଣ୍ଡାରସ୍ ନାମକ ଜଣେ ଅନୁଚର କାସିୟସ୍‌କୁ ପଳାୟନ କରିବା ନିମନ୍ତେ ଅନୁରୋଧ ଜଣାଏ, କାରଣ ଆଣ୍ଟୋନି ତାଙ୍କ ଶିବିରରେ ପ୍ରବେଶ କରିସାରି ଥାଆନ୍ତି । ଦୂରରେ କିଛି ଜ୍ୱଳନ୍ତ ତମ୍ବୁ ଆଡ଼କୁ  ଇଂଗିତ କରି କାସିୟସ୍ ପ୍ରଶ୍ନ କରନ୍ତି ଏ ତମ୍ବୁ କ'ଣ ସେମାନଙ୍କର  ? ଉତ୍ତର ଆସେ - ହଁ । କାସିୟସ୍‌ଙ୍କ ନିର୍ଦ୍ଦେଶରେ ଟିଟିନିୟାସ୍ ଦ୍ରୁତ ଘୋଡ଼ା ଛୁଟାଇ ଯୁଦ୍ଧର ପ୍ରକୃତ ସ୍ଥିତି ଜାଣିବା ନିମନ୍ତେ ଯାଆନ୍ତି । ପିଣ୍ଡାରସ୍‌ଠାରୁ ଜଣାଯାଏ ବାଟରେ ଶତ୍ରୁସୈନ୍ୟ ତାଙ୍କୁ ଘେରି ଯାଇଛନ୍ତି  । କାସିୟସ୍ ଏଥର ପିଣ୍ଡାରସ୍‌କୁ ଅନୁରୋଧ କରନ୍ତି ତରବାରିରେ ତାଙ୍କୁ ଆଘାତ କରିବାକୁ । ପିଣ୍ଡାରସ୍ ଆଦେଶ ପାଳନ କରେ । ଏହାପରେ ସେ କାସିୟସ୍‌ଙ୍କ ତରବାରିରେ ନିଜକୁ ଆଘାତ କରି ଆତ୍ମହତ୍ୟା କରେ ।

ଟିଟିନିୟସ୍ ଓ ମେସାଲା ଆସି ମୃତଦେହ ଦୁଇଟି ଦେଖନ୍ତି । ଟିଟିନୟସ୍ ଦୁଃଖରେ ଭାଙ୍ଗିପଡ଼ନ୍ତି । ଆବେଗପୂର୍ଣ୍ଣ କଣ୍ଠରେ ଅସ୍ତାୟମାନ ସୂର୍ଯ୍ୟ ସହିତ କାସିୟସ୍‌ଙ୍କୁ ତୁଳନା କରନ୍ତି ।

କାସିୟସ୍‌ଙ୍କ ମୃତ୍ୟୁରେ ରୋମ୍‌ର ଗୌରବ ସୂର୍ଯ୍ୟ ଯେ ଚିରକାଳ ନିମନ୍ତେ ଅସ୍ତମିତ ହୋଇଛନ୍ତି ଏଇ କଥା ବାରମ୍ବାର ପ୍ରକାଶ କରନ୍ତି । ଏହା ପରେ ଆରମ୍ଭ ହେବ ଝଡ଼ ବର୍ଷା । ଦୁର୍ଭାଗ୍ୟର ଅନ୍ଧକାର ମାଡ଼ି ଆସିବ ।

ପ୍ରକୃତରେ କିନ୍ତୁ ଟିଟିନିୟାସ୍‌ଙ୍କୁ ଯେଉଁମାନେ ଘେରି ଯାଇଥିଲେ ସେମାନେ ମିତ୍ର ପକ୍ଷର ସୈନ୍ୟ । ସେମାନେ ଟିଟିନିୟାସ୍ କଣ୍ଠରେ ଜୟମାଲ୍ୟ ପିନ୍ଧାଇ ଦେଇ କାସିୟସ୍‌ଙ୍କୁ ସୁସମ୍ବାଦ ଦେବା ନିମନ୍ତେ ଅନୁରୋଧ କରୁଥିଲେ । ଏଭଳି ବିପର୍ଯ୍ୟୟରେ କାସିୟସ୍‌ଙ୍କର ବିୟୋଗ ଦୁଃଖ ସହ୍ୟ କରି ନ ପାରି ଟିଟିନିୟସ୍ ମଧ ଆତ୍ମହତ୍ୟା କରନ୍ତି ।

ବ୍ରୁଟସ୍‌ର ଏବଂ ଅନ୍ୟମାନେ ଆସି ଏହି ଦୁର୍ଘଟଣା ଦେଖନ୍ତି । ଶୋକ କରି ବ୍ରୁଟସ୍ ତାଙ୍କର ଉପଲବ୍ଧିକୁ ପ୍ରକାଶ କହନ୍ତି । ସିଜର ତମେ ଏବେ ମଧ ଅପରାଜିତ । ତୁମେ ନାହଁ ସତ, କିନ୍ତୁ ତମର ସୂକ୍ଷ୍ମ ଶରୀର ଅବାଧରେ ଚାରିଆଡ଼େ ଘୂରିବୁଲୁଛି । ଆଉ ଆମ ତରବାରିକୁ ବାଧ କରିଛି ଆମ ନିଜକୁ ଆଘାତ କରିବାକୁ । କାସିୟସ୍ ଓ ଟିଟିନିୟସ୍‌ଙ୍କ ଆଡ଼କୁ ଅନାଇ ବ୍ରୁଟସ୍ ପ୍ରଶ୍ନ କରନ୍ତି - ଜୀବିତ ରୋମାନ୍‌ମାନଙ୍କ ମଧରେ ଆଉ ଏମାନଙ୍କ ଭଳି ମଣିଷ ମିଳିବେ କି ? ରୋମ୍‌ରେ ଆଉ କ'ଣ କେବେ ଏମାନଙ୍କ ଭଳି ମଣିଷ ଜନ୍ମ ନେବେ ? ଉତ୍ତର ନିଜେ ଦେଇ କହନ୍ତି - ଅସମ୍ଭବ ।

କାସିୟସ୍‌ଙ୍କ ମୃତଦେହକୁ ସଂସ୍କାର ନିମନ୍ତେ ପଠାଇ ସେ ପୁଣି ଯୁଦ୍ଧ ଆରମ୍ଭ କରିବାର ନିର୍ଦ୍ଦେଶ ଦିଅନ୍ତି ।

ଯୁଦ୍ଧ ପୂରା ଦମ୍‌ରେ ଚାଲିଥାଏ । ବ୍ରୁଟସ୍ ନିଜର ସେନାଙ୍କୁ ଉଦ୍‌ବୁଦ୍ଧ କରିଚାଲିଥାଆନ୍ତି । କିନ୍ତୁ ଗୋଟିକ ପରେ ଗୋଟିଏ ତାଙ୍କର ପ୍ରିୟ ଅନୁଚରମାନେ ଯୁଦ୍ଧକ୍ଷେତ୍ରରେ ଟଳି ପଡୁଥାଆନ୍ତି । ଆଣ୍ଟୋନି ଖବର ପାଆନ୍ତି ଯେ ବ୍ରୁଟସ୍ ବନ୍ଦୀ ହୋଇଛନ୍ତି । ମାତ୍ର ସେମାନେ ପ୍ରକୃତରେ ଲୁସିୟସ୍‌ଙ୍କୁ ବ୍ରୁଟସ୍ ବୋଲି ଧରିନେଇ ଥାଆନ୍ତି । ଆଣ୍ଟୋନି ସେମାନଙ୍କର ଭୁଲ ଭାଙ୍ଗି ଦିଅନ୍ତି ଏବଂ ତାଙ୍କ ସହିତ ଖରାପ ବ୍ୟବହାର ନ କରିବାକୁ ସେମାନଙ୍କୁ ଆଦେଶ ଦିଅନ୍ତି ।

ବ୍ରୁଟସ୍ ତାଙ୍କର ମାତ୍ର କେତେଜଣ ଅନୁଚରଙ୍କ ସହିତ ଗୋଟିଏ ପାହାଡ଼ ଉପରେ ବିଶ୍ରାମ ନେଉଥାଆନ୍ତି । ଖବର ମିଳେ ଯେ, ତାଙ୍କର ପଥ ପ୍ରଦର୍ଶନକାରୀର କୌଣସି ପତ୍ତା ମିଳୁ ନାହିଁ । ହୁଏତ ସେ ଶତ୍ରୁ ହାତରେ ବନ୍ଦୀ ଅଥବା ନିହତ ହୋଇଛି । ଗଭୀର ହତାଶାରେ ଭାଙ୍ଗିପଡ଼ି ବ୍ରୁଟସ୍ କହନ୍ତି - ମୃତ୍ୟୁର ଏ ଯେଉଁ ଶୋଭାଯାତ୍ରା ଆମ ଆଗରେ ଚାଲିଛି, ସେଥିରେ ତାହାହିଁ ହୋଇଥିବାର ସମ୍ଭବ । ବ୍ରୁଟସ୍ ଏଥର ତାଙ୍କ ଦୁଇ ଅନୁଚରଙ୍କୁ ଅନୁରୋଧ କରନ୍ତି,

ସେମାନେ ତାଙ୍କୁ ହତ୍ୟା କରନ୍ତୁ । ସେମାନେ ଏଥିରେ ଅସମ୍ମତ ହେବାରୁ ବ୍ରୁଟସ୍ କହନ୍ତି ସିଜରଙ୍କର ପ୍ରେତାତ୍ମା ଦୁଇରାତି ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇଛନ୍ତି । ଥରେ ସର୍ଡିସ୍ୟାରେ, ଆଉ ଗତରାତିରେ ଫିଲିପିର ପ୍ରାନ୍ତରରେ । ସେ ଆହୁରି କହନ୍ତି, ମୁଁ ଜାଣେ ମୋର ଦିନ ଶେଷ ହୋଇ ଆସୁଛି । ଯୁଦ୍ଧର ଗତିରୁ ତାହାର ସୂଚନା ମଧ୍ୟ ମିଳୁଛି । କେତେ ଦିନ ଆଉ ଏମିତି ଅପେକ୍ଷା କରିବି ?

ତା'ପରେ ସେ ଭଲିଉମନିୟାସ୍‌ଙ୍କୁ ବନ୍ଧୁତ୍ୱର ଦ୍ୱାହି ଦେଇ ତରବାରିର ମୁଠିଟା ଧରିବାକୁ କହନ୍ତି, ଯାହା ଉପରେ ସେ କୁଦି ପଡ଼ିବେ । କ୍ଲିଟସ୍ ବ୍ରୁଟସ୍‌ଙ୍କୁ ଅନୁରୋଧ କରେ- ସମୟ ନଷ୍ଟ ନ କରି ପଳାଇଯିବାକୁ । ବ୍ରୁଟସ୍ ସମସ୍ତଙ୍କୁ ବିଦାୟ ସମ୍ଭାଷଣ ଜଣାଇ କହନ୍ତି ଯେ ସେ ଆଜୀବନ ମଣିଷର ବିଶ୍ୱାସ ଅର୍ଜନ କରିଛନ୍ତି । ଏ ଯୁଦ୍ଧରୁ ଅକ୍ଟୋଭିୟସ୍ ଆଉ ଆଣ୍ଟୋନି ଯାହା ପାଇବେ, ତା ଠାରୁ ଏ ପ୍ରାପ୍ତି କିଛି କମ୍ ନୁହେଁ । ବ୍ରୁଟସ୍‌ର ଜୀବନ କାହାଣୀ ଆଜିଠାରୁ ଶେଷ ହୋଇ ଯାଉଛି । ତା ଆଖିରେ ରାତ୍ରିର ଅନ୍ଧକାର ଛାଇ ଯାଉଛି । ଯେଉଁ ବିଶ୍ରାମ ଟିକିଏ ପାଇବା ପାଇଁ ସେ ସାରା ଜୀବନ ପରିଶ୍ରମ କରି ଆସିଛନ୍ତି, ଆଜି ସେଇ ଚିର ବିଶ୍ରାମର ସମୟ ଆସିଛି ।

ଚାରିଆଡୁ - 'ପଳାଅ ପଳାଅ' ରବ ଉଠେ । ବ୍ରୁଟସ୍ ତାଙ୍କର ଅନୁଚରଙ୍କୁ କହନ୍ତି - ତମେମାନେ ଯାଅ । ମୁଁ ମଧ୍ୟ ଯାଉଛି ତମ ପଛେ ପଛେ । ସମସ୍ତେ ଚାଲିଯାଆନ୍ତି । ତେବେ ଷ୍ଟ୍ରାଟୋ ରହିଯାଏ । ତା'ହାତରେ ତରବାରି ଦେଇ ତା' ଉପରେ ଡେଇଁପଡ଼ି ବ୍ରୁଟସ୍ ମୃତ୍ୟୁବରଣ କରନ୍ତି । କୁଦି ପଡ଼ିବା ଆଗରୁ କହନ୍ତି - ସିଜର୍, ବର୍ତ୍ତମାନ ଯେଉଁ ଇଚ୍ଛା ନେଇ ମୁଁ ଆତ୍ମହତ୍ୟା କରୁଛି, ତମକୁ ହତ୍ୟା କଲା ସମୟରେ ମୋ ଭିତରେ ତା'ର ଅର୍ଦ୍ଧେକ ଇଚ୍ଛା ମଧ୍ୟ ନ ଥିଲା ।

ଅକ୍ଟୋଭିୟସ୍, ଆଣ୍ଟୋନି ଏବଂ ଅନ୍ୟମାନେ ଆସନ୍ତି । ସେମାନେ ଦେଖନ୍ତି ବ୍ରୁଟସ୍ ବର୍ତ୍ତମାନ ସମସ୍ତ ଜୟ ପରାଜୟର ଉର୍ଦ୍ଧ୍ୱକୁ ଚାଲିଯାଇଛନ୍ତି । ଆଣ୍ଟୋନି କହନ୍ତି - ବ୍ରୁଟସ୍ ଥିଲେ ସମସ୍ତ ରୋମାନ୍‌ମାନଙ୍କ ମଧ୍ୟରେ ମହତ୍ତମ । ଅନ୍ୟମାନେ ବ୍ୟକ୍ତିଗତ ଈର୍ଷା ଓ ଅସୂୟାରୁ ସିଜରଙ୍କୁ ହତ୍ୟା କରିଥିବା ବେଳେ ଏକମାତ୍ର ବ୍ରୁଟସ୍‌ହିଁ ଜନତାର କଲ୍ୟାଣ ବିଷୟ ଚିନ୍ତାକରି ସେଇ ଅପ୍ରିୟ କାର୍ଯ୍ୟଟି କରିଥିଲେ । ସେ ଥିଲେ ଶାନ୍ତିପ୍ରିୟ ଏବଂ ସକଳ ସଦ୍- ଗୁଣର ଆଧାର । ମଣିଷ ଭଳି ମଣିଷଟିଏ ଥିଲେ ସେ ।

ଅକ୍ଟୋଭିୟସ୍ କହନ୍ତି - ତାଙ୍କର ଗୁଣାବଳୀର ସ୍ୱୀକୃତିସ୍ୱରୂପ ଉପଯୁକ୍ତ ମର୍ଯ୍ୟାଦାର ସହିତ ତାଙ୍କର ଶେଷକୃତ୍ୟ ସମ୍ପନ୍ନ କରାଯିବ ।

# ହାମଲେଟ୍

॥ ୧ ॥

ଶୀତରାତି । ଏଲସିନୋର ଦୁର୍ଗ ପ୍ରାଚୀର ଉପରେ ପହରା ଦେଉଛି ଫ୍ରାନ୍‌ସିସ୍‌କୋ । ମଧ୍ୟରାତ୍ରି ଅତିକ୍ରାନ୍ତ । ପ୍ରହରୀ - ପରିବର୍ତ୍ତନର ସମୟ ହୋଇଛି । ଆସି ଉପସ୍ଥିତ ହୁଏ ବାର୍ନାଡୋ । ଦ୍ୱିତୀୟ ପ୍ରହରୀ । ଫ୍ରାନ୍‌ସିସ୍‌କୋଠାରୁ ଦାୟିତ୍ୱ ଗ୍ରହଣ କରିବ । ଦୁର୍ଗର ଅନ୍ୟ ପ୍ରାନ୍ତରୁ ହୋରାସିଓ ଓ ମାର୍ସେଲାସ୍ ତା' ସହିତ ଦେଖା କରିବାକୁ ଆସନ୍ତି । ସେମାନେ ମଧ ଦୁର୍ଗର ପ୍ରହରୀ । କିଛି କଥାବାର୍ତ୍ତା ହେବା ପରେ ହୋରାସିଓ ବାର୍ନାଡ଼ୋକୁ ପଚାରେ, ଆଜି ରାତିରେ ବି କ'ଣ ସେ ଆବିର୍ଭୂତ ହୋଇଥିଲା ?

ମୁଁ ତ କିଛି ଦେଖି ନାହିଁ । ବାର୍ନାଡ଼ୋ ଜଣାଏ ।

ମାର୍ସେଲାସ ବାର୍ନାଡ଼ୋକୁ କହେ - ହୋରାସିଓ ଏକଥା ଆଦୌ ବିଶ୍ୱାସ କରୁ ନାହିଁ । କହୁଛି ସେଇଟା କୁଆଡ଼େ ଆମର କଳ୍ପନା । ନିଜ ଆଖିରେ ନ ଦେଖିବା ପର୍ଯ୍ୟନ୍ତ ବିଶ୍ୱାସ କରିବ ନାହିଁ । ସେଥିପାଇଁ ମୁଁ ତାକୁ ନେଇ ଆସିଛି । ଯଦି ସେଇ ପ୍ରେତ ଆଜି ଆସେ, ତାହାହେଲେ ସେ ନିଜେ ପ୍ରମାଣ ପାଇଯିବ । ହୋରାସିଓ ତାଚ୍ଛଲ୍ୟ କରି କହେ - ଆଜି ଆଉ ସେ ଆସିବ ନାହିଁ ।

ବାର୍ନାଡ଼ୋ କହେ - କିଛି ସମୟ ବସ । ତମର ଅବିଶ୍ୱାସ ଦୂର ହୋଇଯିବ । ଆମେ ଲାଗଲାଗ ଦୁଇ ରାତି ଦେଖିଲୁଣି । ବାର୍ନାଡ଼ୋ ଯେତେବେଳେ ତା'ର ଅଭିଜ୍ଞତା ବର୍ଣ୍ଣନା କରୁଥିଲା ଠିକ୍ ସେତିକିବେଳେ ପ୍ରେତର ଆବିର୍ଭାବ ହୁଏ । ମାର୍ସେଲାସ୍ ଚିତ୍କାର କରି ଉଠେ - ଏଇ ଦେଖ । ଏଇ ପୁଣି ଆସିଛି ।

ବାର୍ନାଡ଼ୋ କହେ - ଠିକ୍ ଆମର ମୃତ ରାଜାଙ୍କ ଭଳି । ନୁହେଁ ?

ମାର୍ସେଲାସ୍ ହୋରାସିଓକୁ କହେ - ତମେ ପଢ଼ାଶୁଣା କରିଥିବା ଲୋକ । ତମେ ବରଂ ତା ସହିତ କଥା କୁହ ।

ଟିକିଏ ଇତସ୍ତତଃ କରି ହୋରାସିଓ ପ୍ରେତାତ୍ମା ଉଦ୍ଦେଶ୍ୟରେ କହେ -ତମେ ଏଇ ରାତିରେ ଯୋଦ୍ଧା ବେଶରେ କାହିଁକି ଆସୁଛ ? ପ୍ରେତ କିଛି କହେ ନାହିଁ । ଧୀରେ ଧୀରେ ଅଦୃଶ୍ୟ ହୋଇଯାଏ ।

ହୋରାସିଓର ଚେହେରା ଫିକା ପଡ଼ିଯାଏ । ଦେହ ଥରିବାରେ ଲାଗେ । ସେ କହେ ନିଜ ଆଖିରେ ଦେଖି ନ ଥିଲେ ମୁଁ ବିଶ୍ୱାସ କରି ନ ଥାନ୍ତି ।

-ଦେଖିବାକୁ ଆମ ରାଜାଙ୍କ ଭଳି, ନୁହେଁ ?

-ପୂରାପୂରି । ହୋରାସିଓ କହେ ନରଓ୍ୱେ ଆକ୍ରମଣ ସମୟରେ ସେ ଯେମିତି ପୋଷାକ ପିନ୍ଧିଥିଲେ, ଏବି ଠିକ୍ ସେହି ପୋଷାକ ପିନ୍ଧିଛି । ଖାଲି ରାଗରେ ଭୂରୁ କୁଂଚିତ ହୋଇ ଅଛି ଯାହା । ମାର୍ସେଲାସ୍ କହେ- ଏହା ଆଗରୁ ବି ଦୁଇଥର ଠିକ୍ ଏଇ ବେଶରେ ପ୍ରେତ ଦେଖା ଦେଇଛି ।

-କାହିଁକି ସେ ବାରମ୍ବାର ଆସୁଛି, ଜାଣେନା - ହୋରାସିଓ କହେ- ତେବେ ମୋର ମନେହୁଏ, ଆମ ରାଜ୍ୟରେ ଅଦ୍‌ଭୁତ କିଛି ଘଟିବାକୁ ଯାଉଛି । ଏ ଘଟଣା ତାହାରି ସୂଚକ ।

ମାର୍ସେଲାସ୍ ହୋରାସିଓକୁ ପଚାରେ - ଏବେ ଏମିତି କଡ଼ା ପହରାର ବ୍ୟବସ୍ଥା କାହିଁକି କରାଯାଉଛି କହତ । ପ୍ରତିଦିନ କମାଣ ବା ବସାଯାଉଛି କାହିଁକି ? ରବିବାରରେ ବି ଆମର ଛୁଟି ନାହିଁ, ଘଟଣା କ'ଣ ? ହୋରାସିଓ କହେ- ଯାହା ଶୁଣିବାକୁ ମିଳୁଛି, କହୁଛି - ଶୁଣ । ଥରେ ଆମର ମୃତରାଜା ନରଓ୍ୱେର ଫର୍ଟିନ୍‌ବ୍ରାସଙ୍କ ଆକ୍ରମଣର ସମ୍ମୁଖୀନ ହୋଇଥିଲେ । ସେଦିନ ହାମଲେଟ୍ ତାଙ୍କୁ ହତ୍ୟା କରନ୍ତି । ସେତେବେଳେ ତାଙ୍କ ରାଜ୍ୟର କିଛି ଅଂଶ ଆମ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଏବେ ଶୁଣାଯାଉଛି, ତାଙ୍କ ପୁଅ ନିଜ ହୃତ ରାଜ୍ୟାଂଶର ପୁନରୁଦ୍ଧାର ପାଇଁ ଚେଷ୍ଟା କରୁଛି । ସେଇଥିପାଇଁ ଏତେ ସତର୍କତା ।

ବାର୍ନାଡୋ କହେ - ହୁଏତ ସେଥିପାଇଁ ବି ରାଜାଙ୍କ ଆତ୍ମା ଆବିର୍ଭୂତ ହେଉଛି ।

ହୋରାସିଓ କହେ- ଶୁଣିଛି ରୋମ୍‌ରେ ଜୁଲିୟସ ସିଜରଙ୍କ ପତନ ସମୟରେ ଏମିତି ସବୁ ଅଦ୍‌ଭୁତ ବ୍ୟାପାର ଘଟିଥିଲା । ତା' କଥା ଶେଷ ହେବା ଆଗରୁ ପ୍ରେତ ପୁଣି ଥରେ ଆବିର୍ଭୂତ ହୁଏ । ତା'ର ଦୁଇ ହାତ ଦୁଇ ଆଡ଼କୁ ପ୍ରସାରିତ । ହୋରାସିଓ ପୁଣି ଥରେ ତାକୁ ସମ୍ବୋଧନ କରି କହେ— କଥା କହିପାରୁଥିଲେ କହ -ଯଦି ତମର ମଙ୍ଗଳ ପାଇଁ ଆମେ କିଛି କରିପାରୁ ତେବେ କହ, ଯଦି ଦେଶର ଭବିଷ୍ୟତ୍ କିଛି ଜାଣିଥାଅ ତେବେ ବି କହ । ସେଥିରେ ହୁଏତ କୌଣସି ବିପର୍ଯ୍ୟୟକୁ ଏଡ଼ାଇ ଦେଇ ହେବ ।

ପ୍ରେତ କ'ଣ ଗୋଟାଏ କହିବାକୁ ଯାଏ । ଏତିକିବେଳେ କୁକୁଡ଼ା ବୋବାଇ ଉଠେ । ବାଧା ଦେବା ପୂର୍ବରୁ ମାର୍ସେଲାସ୍ ବର୍ଚ୍ଛାନେଇ ପ୍ରେତ ଆଡ଼େ ଝପଟିଯାଏ, କିନ୍ତୁ ପ୍ରେତ ସେତେବେଳକୁ ଅଦୃଶ୍ୟ ହୋଇ ସାରିଥାଏ । ହୋରାସିଓ ଓ ତା'ର ବନ୍ଧୁମାନେ ସ୍ଥିର କରନ୍ତି, ଏସବୁ ଘଟଣା ହାମଲେଟ୍‌କୁ ଜଣାଇବାକୁ ହେବ ।

ପ୍ରାସାଦର ଦରବାର କକ୍ଷ । ରାଣୀ ଗାରଟ୍ରୁଡ଼୍‌କୁ ନେଇ ରାଜା କ୍ଲଡ଼ିୟସ୍ ପ୍ରବେଶ କରନ୍ତି । ପଛେ ପଛେ ଆସନ୍ତି ସଭାସଦ୍‌ମାନେ । ତହିଁରେ ଅଛନ୍ତି ପଲୋନିୟସ୍, ତାଙ୍କ ପୁଅ ଲେୟାର୍ଟେସ୍, କର୍ଣ୍ଣେଲିୟସ୍ ପ୍ରଭୃତି । ଅଛନ୍ତି ପୁଣି ତରୁଣ ହାମଲେଟ୍ ।

ରାଜା କହନ୍ତି - ଆମେ ଜାଣୁ ରାଜକୁମାର ହାମଲେଟ୍ ଏବେ ମଧ ମୋର ସ୍ୱର୍ଗତ ଭ୍ରାତା - ତାଙ୍କର ପିତାଙ୍କୁ ଭୁଲିପାରି ନାହାନ୍ତି । ଏ ଦୁଃଖ ଆମର, ଏ ରାଜ୍ୟର ସମସ୍ତଙ୍କର । ତଥାପି ଆମେ ଧୈର୍ଯ୍ୟର ସହ ଏହାକୁ ସହ୍ୟ କରିଚାଲିଛୁ । ଦୁଃଖକୁ ତା'ର ସୀମା ମଧ୍ୟରେ ରଖି ମୁଁ ପୂର୍ବତନ ରାଣୀଙ୍କୁ ସ୍ତ୍ରୀ ରୂପେ ଗ୍ରହଣ କରିଛି । ଆପଣମାନେ ଏ ଘଟଣାକୁ ସ୍ୱାଭାବିକ ଭାବେ ଗ୍ରହଣ କରି ନେଇଛନ୍ତି । ସେଥିଲାଗି ମୁଁ କୃତଜ୍ଞ । ଆପଣମାନେ ଆହୁରି ଜାଣନ୍ତି ଯେ ତରୁଣ ଫର୍ଟିନବ୍ରାସ୍ ଆମକୁ ଦୁର୍ବଳ ଭାବି କିମ୍ବା ଆମର ଭାଇଙ୍କର ମୃତ୍ୟୁରେ ଆମର ଐକ୍ୟରେ ଫାଟ ଦେଖାଦେଇଛି ମନେକରି ଆମ ପାଖରୁ ତା'ର ପିତାଙ୍କର ହୃତ ଅଞ୍ଚଳକୁ ଫେରସ୍ତ ଚାହିଁଛି । ସେଇଥିପାଇଁ ମୁଁ ଆଜି ଏଇ ସଭାର ଆହ୍ୱାନ କରିଛି । ଆମେ ବର୍ତ୍ତମାନ ନରଓ୍ୱେକୁ ଆମର ପ୍ରତିନିଧି ପଠାଇବା । ଫର୍ଟିନବ୍ରାସ୍‌ର କକା ଅସୁସ୍ଥ ବୋଲି ଶୁଣୁଛି । ସେ ନିଜର ଭ୍ରାତୁଷ୍ପୁତ୍ରର ଅଭିସନ୍ଧିର କଥା କିଛି ଜାଣନ୍ତି ନାହିଁ । କର୍ଣ୍ଣେଲିୟସ୍ ଆଉ ଭଲଟିମାଣ୍ଡ ତମେ ଦୁହେଁ ସେଇ ବୃଦ୍ଧ ରାଜାଙ୍କ ପାଖକୁ ଯାଅ ଏବଂ ତାଙ୍କୁ ମୋର ଚିଠିଟି ଦିଅ । ଦୁହେଁ ଚାଲିଯାଆନ୍ତି ।

ଏହା ପରେ ରାଜା ତରୁଣ ଲେୟାର୍ତ୍ତେସ୍ ଆଡ଼କୁ ଅନାଇ କହନ୍ତି , ତମର ଖବର କ'ଣ ? ତମେ କ'ଣ ଚାହଁ ?

ଲେୟାର୍ତ୍ତେସ୍ କହେ - ଆପଣଙ୍କ ଅଭିଷେକ ଉତ୍ସବରେ ଯୋଗ ଦେବା ପାଇଁ ମୁଁ ଫ୍ରାନ୍ସରୁ ଆସିଛି । ତାପରେ ଫେରିଯିବି । ଏଥର ମୋତେ ଅନୁମତି ଦିଅନ୍ତୁ ।

ରାଜା ସମ୍ମତ ହୁଅନ୍ତି । ତା'ପରେ ହାମଲେଟ୍‌କୁ କହନ୍ତି - ତମେ ଏମିତି ବିଷଣ୍ଣ ଦେଖାଯାଉଛ କାହିଁକି ?

- ନା'ତ । ମୁଁ ତ ଏବେ ଆନନ୍ଦ ଆଲୋକରେ ଘୂରି ବୁଲୁଛି । ହାମଲେଟ୍‌ର ଉତ୍ତରରେ ଶ୍ଳେଷ । ତାକୁ ବୁଝାଇବାକୁ ରାଣୀ ଆଗେଇ ଆସନ୍ତି । କହନ୍ତି - ବାପାଟା ପରା, ଏମିତି ମୁହଁ ଲଦି ରହନା । ତମେ ଡେନ୍‌ମାର୍କର ରାଜାଙ୍କୁ ନିଜର ବନ୍ଧୁଭାବରେ ଗ୍ରହଣ କର । ମୃତ ପିତାଙ୍କ ପାଇଁ ଆଉ ମନ ଦୁଃଖ କର ନାହିଁ । ତମେ ଜାଣ, ସମସ୍ତଙ୍କୁ ଦିନେନା ଦିନେ ବିଦାୟ ନେବାକୁ ହେବ । ମୃତ୍ୟୁ ହେଉଛି ପ୍ରକୃତିର ବନ୍ଧନରୁ ଚିରନ୍ତନତାରେ ପହଞ୍ଚିବା ପାଇଁ ମୁକ୍ତିର ମାର୍ଗ ।

-ହଁ, ମାଡାମ -ହାମଲେଟ୍ ମୁଣ୍ଡ ହଲାଏ ।

-ତା' ହେଲେ ତମେ ଏଇ ମୃତ୍ୟୁ କୁ ନେଇ ଏତେ ଚିନ୍ତିତ କାହିଁକି ?

-ଠିକ୍ କଥା, ମୁଁ ଏଇ ଶୋକସୂଚକ କଳା ପୋଷାକ ପିନ୍ଧିଛି । ବେଳେ ବେଳେ ଦୀର୍ଘଶ୍ୱାସ ଛାଡୁଛି । ଲୁହବି କେବେ କେବେ ବୋହିଯାଉଥିବ । ଏ ସବୁ ବାହ୍ୟ ଲକ୍ଷଣ - ଶୋକପାଇଁ ଏ

ଅଭିନୟ ଯେ କେହି କରିପାରିବ । କିନ୍ତୁ ଏ ସବୁ ଛାଡ଼ି ମୋ ମନରେ ଅନ୍ୟ ପ୍ରକାରର ଏକ ଅନୁଭୂତି ହେଉଛି ।

ରାଜା କହନ୍ତି – ତମେ ଆବେଗପ୍ରବଣ । ଆବେଗପ୍ରବଣ ହୃଦୟ ହେଉଛି ଦୁଃଖ – ବୀଜ ପାଇଁ ଉର୍ବର କ୍ଷେତ୍ର । ମୃତ ରାଜାଙ୍କ ପାଇଁ ଶୋକ ପାଳନର କର୍ତ୍ତବ୍ୟ ତମେ ଠିକ୍ ଭାବରେ କରୁଛ । କିନ୍ତୁ ତୁମେ ଯେମିତି ତମର ପିତାଙ୍କୁ ହରାଇଛ, ସେମିତି ଦିନେ ତମର ପିତା ମଧ ତାଙ୍କର ପିତାଙ୍କୁ ହରାଇଛନ୍ତି । ତାଙ୍କ ପିତା ତାଙ୍କ ପିତାଙ୍କୁ । ଶୋକ ପାଳନ ପୁତ୍ରର କର୍ତ୍ତବ୍ୟ । ତେବେ ସୀମା ଭିତରେ ରହିଲେ ସବୁ ଭଲ । ସୀମା ଡେଇଁଲେ ତାହା ହୋଇଯାଏ ଧୈର୍ଯ୍ୟହୀନତା – ଯାହା ଅନିବାର୍ଯ୍ୟ, ତାକୁ ନେଇ ମାତ୍ରାହୀନ ଶୋକର ଅର୍ଥ ହେଉଛି ଦେବତାମାନଙ୍କ ପ୍ରତି ଅନ୍ୟାୟ କରିବା । ମୃତ ଆତ୍ମା ପ୍ରତି ଅପମାନ ଆଉ ପ୍ରକୃତିର ନିୟମର ବିରୁଦ୍ଧାଚରଣ । ମୃତ୍ୟୁ ଏକ ଜାଗତିକ ସତ୍ୟ । ଆମେ ଚାହୁଁ ତମେ ଏହି ମାତ୍ରାତିରିକ୍ତ ଶୋକ ପରିତ୍ୟାଗ କର । ମୋତେ ତୁମର ପିତା ରୂପେ ଗ୍ରହଣ କର । ଲୋକମାନଙ୍କୁ ଜଣାଇଦିଅ ମୋ ପରେ ସିଂହାସନ ଉପରେ ତମର ଅଧିକାର । ଜଣେ ଦାୟିତ୍ୱପୂର୍ଣ୍ଣ ସ୍ନେହଶୀଳ ପିତା ରୂପରେ ମୁଁ ତାହା ତୁମକୁ ହସ୍ତାନ୍ତର କରିବି । ତମେ ଉଇଟେନବର୍ଗର ବିଦ୍ୟାଳୟକୁ ଫେରିବାକୁ ଚାହୁଁଛ, ସେଥିରେ ମୋର ଆପତ୍ତି ଅଛି । ଆମେ ବରଂ ଅନୁରୋଧ କରିବୁ, ତମେ ଆମ ଆଖି ଆଗରେ ଏଇଠାରେ ରହ –

ରାଣୀ ମଧ ତାକୁ ସେଇ ଅନୁରୋଧ କରନ୍ତି । ହାମଲେଟ୍ ଡେନ୍‌ମାର୍କରେ ରହିବାପାଇଁ ରାଜି ହୁଏ । ରାଜା ଏହି ନିଷ୍ପତ୍ତିରେ ଅତ୍ୟନ୍ତ ଆନନ୍ଦିତ ବୋଲି ଜଣାଇଦିଅନ୍ତି ।

ହାମଲେଟ୍ ବ୍ୟତୀତ ଅନ୍ୟ ସମସ୍ତେ ଚାଲିଯାଆନ୍ତି । ତା' ମନରେ ଅନେକ ଚିନ୍ତା । ତା'ର ମନେହୁଏ, ଏଇ ରକ୍ତମାଂସର ଶରୀର ମହାଶୂନ୍ୟରେ ମିଳାଇଗଲେ ଭଲ ହୁଅନ୍ତା । ଡେନ୍‌ମାର୍କ ଆଜି ତା'ପାଇଁ ଏକ ଅରଣ୍ୟ ହୋଇପଡ଼ିଛି । ଦୁଇମାସ ପୂରି ନାହିଁ, ତା'ର ପିତା ଚାଲିଯାଇଛନ୍ତି । ରାଣୀଙ୍କ ପ୍ରତି ତାଙ୍କର ସ୍ନେହର ଅଭାବ ନ ଥିଲା, ଅଥଚ୍ ଏଇ ଅଳ୍ପଦିନ ଭିତରେ ସେ ତା'ର କକାଙ୍କୁ ବିବାହ କରିବସିଛନ୍ତି ! ନାରୀର ନାମ ହିଁ ହେଉଛି ଦୁର୍ବଳତା, ହାମଲେଟ୍ ଭାବେ ।

ଏଭଳି ଚିନ୍ତା ମଧରୁ ହାମଲେଟ୍ ନିଜକୁ ମୁକ୍ତ ରଖିବାକୁ ଚାହେଁ । ତଥାପି ତାହା ବାରମ୍ବାର ତା'ର ମନ ଭିତରକୁ ପଶିଆସେ । ମାତ୍ର କିଛିଦିନ ଆଗରୁ ମା ପିତାଙ୍କର ମୃତ୍ୟୁ ଦେଖିଛନ୍ତି, ଅଥଚ୍ ଆଜି ସେ ପିତାଙ୍କର ସମ୍ପୂର୍ଣ୍ଣ ବିପରୀତ ଚରିତ୍ରର କାକାଙ୍କୁ ବିବାହ କରିବସିଛନ୍ତି । ଏତେ ଶୀଘ୍ର... ହାମଲେଟ୍‌ର ମନେହୁଏ, ଏହା କଦାପି ଉଚିତ ନୁହେଁ । ତଥାପି ତାକୁ ନୀରବ ରହିବାକୁ ପଡ଼ିବ ।

ହୋରାସିଓ, ମାର୍ସେଲାସ୍ ଏବଂ ବାର୍ନାଡ଼ୋ ପ୍ରଭୃତି ଆସନ୍ତି । ସେମାନଙ୍କୁ ଦେଖି ହାମଲେଟ୍ ଖୁସି ହୁଏ । ବିଶେଷକରି ହୋରାସିଓକୁ ଦେଖି । କାରଣ ହୋରାସିଓ ଉଇଟେନ୍ ବର୍ଗରେ ତା'ର

ସହପାଠୀ । ତାକୁ ସେ ପ୍ରଶ୍ନ କରେ - ବିଦ୍ୟାଳୟ ଛାଡ଼ି ଏ ଅସମୟରେ ତମେ ଏଠି କ'ଣ କରୁଛ ? ହୋରାସିଓ ଜଣାଏ- ମୃତ ରାଜାଙ୍କର ଶେଷକୃତ୍ୟରେ ଯୋଗଦେବା ପାଇଁ ମୋତେ ଆସିବାକୁ ହୋଇଛି ।

ଶ୍ଳେଷର ସହିତ ହାମଲେଟ୍ କହେ, ବନ୍ଧୁ, ଥଟ୍ଟା କର ନାହିଁ । ବରଂ କହ ମୋ ମାଆଙ୍କ ବିବାହ ଉତ୍ସବରେ ଯୋଗ ଦେବାପାଇଁ ଆସିଛ ।

ହୋରାସିଓ ହାମଲେଟ୍‌ର ଦୁଃଖ ବୁଝେ । କହେ- ଜାଣେ, ତମେ ଖୁବ୍ ଆଘାତ ପାଇଛ ।

- ବନ୍ଦ କର, ହାମଲେଟ୍‌ର କଥାରେ ତୀବ୍ର କ୍ଷୋଭ ପ୍ରକାଶ ପାଏ । ଶେଷକୃତ୍ୟ ପାଇଁ ରନ୍ଧା ଯାଇଥିବା ମାଂସ ବର୍ତ୍ତମାନ ବିବାହ ଭୋଜିରେ ପରିବେଷଣ କରାଯାଉଛି । ନିଜକୁ ଟିକିଏ ସମ୍ଭାଳି ନେଇ ହାମଲେଟ୍ କହେ- ମୁଁ ବୋଧହୁଏ ମୋର ପିତାଙ୍କୁ ଦେଖୁଛି ।

ତିନିଜଣଯାକ ଚମକି ପଡ଼ନ୍ତି । 'ଦେଖୁଛ, କିନ୍ତୁ କେଉଁଠି ?'

'ମନଦର୍ପଣରେ, ହୋରାସିଓ ।'-

ହୋରାସିଓ ଏଥର ଗମ୍ଭୀର କଣ୍ଠରେ କହେ- ମୁଁ ବୋଧହୁଏ ତାଙ୍କୁ ଗତକାଲି ରାତିରେ ଭେଟିଛି ।

- କାହାକୁ ଦେଖୁଛ ?

- ତମର ପିତାଙ୍କୁ । ହୋରାସିଓ ସବୁ କଥା ବର୍ଣ୍ଣନା କରିଯାଏ ।

ହାମଲେଟ୍ କହେ- ଏ ତ ବଡ଼ ଅଦ୍ଭୁତ ଘଟଣା । ସେମାନଙ୍କଠାରୁ ସେ ସବୁ ବିଷୟ ତନ୍ନତନ୍ନ କରି ବୁଝିନିଏ । ତା'ପରେ ପ୍ରେତାତ୍ମା ସହିତ ନିଜେ ସାକ୍ଷାତ୍ କରିବାର ସିଦ୍ଧାନ୍ତ ନିଏ । କହେ- ପ୍ରେତାତ୍ମା ଯଦି ପ୍ରକୃତରେ ବାବାଙ୍କର ହୁଏ, ତେବେ ମୁଁ ନିଶ୍ଚୟ ତାଙ୍କୁ ସାକ୍ଷାତ୍ କରିବି । କାହାରି କଥା ଶୁଣିବି ନାହିଁ । ତମେମାନେ ଏକଥା ଆଉ କାହାରିକୁ କହିବ ନାହିଁ । ରାତି ଏଗାରଟାରୁ ବାରଟା ଭିତରେ ଦୁର୍ଗପାଚେରି ଉପରେ ତମମାନଙ୍କ ସହିତ ଦେଖାହେବ ।

ତିନିଜଣଯାକ କହନ୍ତି- ଆମେ ଆପଣଙ୍କ ସହିତ ଅଛୁ ।

ସେମାନେ ଚାଲିଯିବା ପରେ ହାମଲେଟ୍ ପୁଣି ଭାବିବାକୁ ଆରମ୍ଭ କରେ । ଅସ୍ତ୍ରସଜାରେ ସଜିତ ପିତାଙ୍କର ପ୍ରେତାତ୍ମା ! ଏ ତ ଭଲ ଲକ୍ଷଣ ନୁହଁ । କେଉଁଠି କିଛି ଅନ୍ୟାୟ ନିଶ୍ଚୟ ହୋଇଛି । ରାତିପର୍ଯ୍ୟନ୍ତ ଯେମିତି ହେଲେ ଅପେକ୍ଷା କରିବାକୁ ପଡ଼ିବ । ସବୁକିଛି ସେତେବେଳେ ଜଣାପଡ଼ିଯିବ ।

ଲେୟାର୍ଟେସ୍ ର ଫ୍ରାନ୍ସ ଫେରିଯିବାର ସମୟ ହୋଇଯାଏ । ଯିବାପୂର୍ବରୁ ସେ ଭଉଣୀ ଅଫେଲିଆକୁ କହେ- ମୁଁ ଭାବୁଛି ତୋ'ପ୍ରତି ହାମଲେଟ୍ ର ଏ ଯେଉଁ ଦୁର୍ବଳତା ପ୍ରକାଶ ପାଉଛି ତା'ଉପରେ ଗୁରୁତ୍ୱ ଦେବାର ଦରକାର ନାହିଁ । ସେ ରାଜକୁମାର । ସେମାନଙ୍କ ପାଇଁ ପ୍ରେମ ଏକ ଖେଳ, ସେ ପୁଣି ଡେନ୍‌ମାର୍କର ଭାବୀ ରାଜା । ତେଣୁ ତା'ର ବିବାହରେ ଇଚ୍ଛାର କୌଣସି

ମୂଲ୍ୟ ନାହିଁ । ରାଷ୍ଟ୍ର ଯାହାକୁ ଚାହିଁବ, ସେ ହିଁ ହେବ ଡେନ୍‌ମାର୍କର ରାଣୀ । ରାଜା ହେବା ପରେ ହାମଲେଟ୍ ଯଦି ତଥାପି ତତେ ଭଲପାଉଥିବାର କଥା କହେ, ତେବେ ତାକୁ ବିଶ୍ୱାସ କରାଯାଇପାରେ । ବର୍ତ୍ତମାନ ଏଇସବୁ ବ୍ୟାପାରରେ ମାତିଲେ ତୋ'ପାଇଁ ତାହା କ୍ଷତିକାରକ ହୋଇପାରେ । ତେଣୁ ମୋର ଉପଦେଶ, ଏବେ ତା'ଠାରୁ ଯଥାସମ୍ଭବ ଦୂରତ୍ୱ ରଖିବା ହିଁ ଭଲ ।

ଅଫେଲିଆ ଏ ବିଷୟରେ ସତର୍କ ରହିବ ବୋଲି ଭାଇକୁ ଜଣାଇ ପାଦ୍ରୀ ଭଳି କେବଳ ତାକୁ ଉପଦେଶ ଦେଇ ନିଜେ ଉଚ୍ଛୃଙ୍ଖଳ ହେବାଭଳି ଅପରାଧ ନ କରିବାକୁ କହେ । ଲେୟାର୍ଟେସ୍ ତାକୁ ପ୍ରତିଶ୍ରୁତି ଦିଏ । ପଲୋନିୟସ୍ ପୁଅକୁ ଶୀଘ୍ର ବାହାରି ପଡ଼ିବାପାଇଁ କହନ୍ତି । ଜାହାଜ ଛାଡ଼ିବାର ସମୟ ହେଉଛି । ବିଦାୟ ଦେବା ପୂର୍ବରୁ ସେ ପୁଅକୁ ଉପଦେଶ ଦେଇ କହନ୍ତି, ନିଜର ସ୍ୱଭାବ ଆଉ ଚରିତ୍ରକୁ ସବୁବେଳେ ଠିକ୍ ରଖିବ । ନିଜର ଚିନ୍ତାକୁ ବାହାରେ ପ୍ରକାଶ କରିବ ନାହିଁ କିମ୍ବା କୌଣସି ଅସଂଯତ ଚିନ୍ତାକୁ କାର୍ଯ୍ୟରେ ପରିଣତ କରିବ ନାହିଁ । ପରିଚୟ ବଢ଼ାଅ - କିନ୍ତୁ ତାହା ଯେଭଳି କଦାଚାରରେ ଶେଷ ନ ହୁଏ । ବିପଦ ହିଁ ହେଉଛି ବନ୍ଧୁତ୍ୱର କଷଟି । କୌଣସି ଦଳ ସହିତ ଆମୋଦପ୍ରମୋଦରେ ଯୋଗ ଦେବ ନାହିଁ କିମ୍ବା ସଂଘର୍ଷ ଭିତରକୁ ମଧ ଯିବ ନାହିଁ । ଶୁଣିବ ସମସ୍ତଙ୍କ କଥା, ତେବେ କାମ କରିବ ନିଜର ବିବେକର ନିର୍ଦ୍ଦେଶରେ । ଅତିରିକ୍ତ ବ୍ୟୟ ସମ୍ପର୍କରେ ସତର୍କ ରହିବ । ଅନ୍ୟଠୁ କଦାପି ଋଣ କରିବ ନାହିଁ କିମ୍ବା ଅନ୍ୟକୁ ଋଣ ଦେବ ନାହିଁ । ତା'ହେଲେ ଅର୍ଥ ଆଉ ବନ୍ଧୁ ଉଭୟ ହରାଇବ ।

ଲେୟାର୍ଟେସ୍ ବିଦାୟ ନେଇ ଚାଲିଯାଏ । ପଲୋନିୟସ୍ ଭାଇଭଉଣୀ ମଧରେ ହୋଇଥିବା କଥାବାର୍ତ୍ତା ସମ୍ପର୍କରେ ଜାଣିବାକୁ ଚାହାନ୍ତି । ଦ୍ୱିଧାଗ୍ରସ୍ତ ମନ ନେଇ ଅଫେଲିଆ ଜଣାଏ ଯେ, ସେ ତାକୁ ହାମଲେଟ୍ ବିଷୟରେ କିଛି କହୁଥିଲେ ।

ପଲୋନିୟସ୍ କହନ୍ତି- ହାମଲେଟ୍ ଏବେ ମଝିରେ ମଝିରେ ତୋ'ସହିତ ସମୟ କଟାଉଛି । ତୋତେ ଅନେକ ପ୍ରତିଶ୍ରୁତି ଦେଉଛି- ଏ କଥା ମୁଁ ମଧ ଶୁଣିଛି । ସେ କ'ଣ ସବୁ କହୁଛି, ମୋତେ କହ । କାରଣ ସବୁକଥା ବୁଝିଲାଭଳି ବୟସ ଏବେବି ତୋର ହୋଇ ନାହିଁ । ଏ ପରିବାରର ସମ୍ମାନ ତୋ'ଉପରେ ନ୍ୟସ୍ତ ରହିଛି । କ'ଣ ସେ କହୁଛି, ମୋତେ ସବୁ କହିଯାଏ ।

ଅଫେଲିଆ ଜଣାଏ, ସେ ତାଙ୍କର ଭଲପାଇବା କଥା ହିଁ କହୁଛନ୍ତି । ପଲୋନିୟସ୍ ତାଚ୍ଛଲ୍ୟ ପ୍ରକାଶ କରି କହନ୍ତି- ଭଲପାଇବା, ପୁଣି ସିଏ ! ଛିଃ ଛିଃ, ତୁ ତା'କଥାରେ ବିଶ୍ୱାସ କରୁଛୁ ? ମୁଁ ତତେ କହୁଛି- ଏସବୁ ପିଲାଖେଳ କଥା, ତା'ର କୌଣସି ମୂଲ୍ୟ ନାହିଁ ।

ବାଧାଦେଇ ଅଫେଲିଆ କହେ- କିନ୍ତୁ ସେ ତ କୌଣସି ମର୍ଯ୍ୟାଦା ଲଂଘି ନାହାନ୍ତି ।

ସେଇଟା ହେଲା ଫେସନ୍- ପଲୋନିୟସ୍‌ଙ୍କ ଗଳାରେ ତାଚ୍ଛଲ୍ୟର ସ୍ୱର ।

- ସେ ଶପଥ କରିଛନ୍ତି ବାବା ।

- ସେଇଟା ତୋତେ ଫାନ୍ଦରେ ପକାଇବା ପାଇଁ । ତହିଁରେ ହୁଏତ କିଛି ଆଲୋକ ଅଛି, ମାତ୍ର ଉତ୍ତାପ ନାହିଁ । ଶପଥକୁ ଆଲୋକ ବୋଲି ଭାବିଲେ ତୁ ଭୁଲ୍ କରିବୁ । ଆଜିଠୁ ତା'ସହିତ ମିଳାମିଶା ବନ୍ଦ କର । ବେଶି ପ୍ରଶ୍ରୟ ଦେବୁ ନାହିଁ । ଶପଥ ହେଉଛି କୁପଥରେ ପରିଚାଳିତ କରିବାର ଏକ ବାହାନା । ତୁ ମୋ କଥା ମାନିବୁ... କହ ମାନିବୁ ତ ?

ସେଦିନ ମଧରାତ୍ରରେ ଦୁର୍ଗ ପ୍ରାଚୀର ଉପରେ ହୋରାସିଓ ଏବଂ ମାର୍ଶେଲାସ ସହିତ ଉପସ୍ଥିତ ହୋଇଛି ହାମଲେଟ୍ । ପ୍ରାସାଦ ଭିତରୁ ଶୁଣାଯାଉଛି ବାଦ୍ୟବାଜଣା- ଉପରୁ ତୋପ ଧ୍ୱନି । ହୋରାସିଓ ପ୍ରଶ୍ନର ଉତ୍ତରରେ ହାମଲେଟ୍ କହେ- ଏଇଟା ହେଉଛି ଏଠାର ବିବାହ ସମୟର ଏକ ରୀତି । ଅର୍ଥ ହେଉଛି, ରାଜା ଆଜି ରାତ୍ରିଭୋଜନରେ ଯୋଗ ଦେଉଛନ୍ତି । ତେବେ ମୋ ମତରେ ଏ ରୀତି ପାଳନ କରା ନ ଗଲେ ବରଂ ଅଧିକ ଶୋଭନୀୟ ହୁଅନ୍ତା ।

ଆଲୋଚନା ଚାଲିଥିବା ସମୟରେ ପ୍ରେତାତ୍ମାର ଆବିର୍ଭାବ ହୁଏ । ହାମଲେଟ୍ ଚିତ୍କାର କରି କହେ- ଈଶ୍ୱର ଆମକୁ ରକ୍ଷା କରନ୍ତୁ । ତମେ ଦୁଷ୍ଟ ବା ଶିଷ୍ଟ ଯାହା ହୁଅନା କାହିଁକି, ଯେଉଁ ବେଶରେ ଆସିଛ, ମୁଁ ତମ ସହିତ ନିଶ୍ଚୟ କଥାବାର୍ତ୍ତା ହେବି । ଆମକୁ ଆଉ ଅନ୍ଧାର ଭିତରେ ରଖ ନାହିଁ । କହ.. ଏ ସବୁର ଅର୍ଥ କ'ଣ ? କାହିଁକି ପ୍ରତିଦିନ ଅଧରାତିରେ ତମେ ଏଠାକୁ ଆସୁଛ ? ଆମଠୁ' କ'ଣ ଚାହୁଁଛ ? ସ୍ପଷ୍ଟ ଭାବରେ କହ ।

ହାତର ଇସାରାରେ ପ୍ରେତ ହାମଲେଟ୍‌କୁ ଡାକେ । ହୋରାସିଓ ଓ ମାର୍ଶେଲାସ୍ ତାକୁ ପ୍ରେତ ସହିତ ଯିବାକୁ ବାରଣ କରନ୍ତି । ତେବେ ଦୃଢ଼ପ୍ରତିଜ୍ଞ ହାମଲେଟ୍ ବନ୍ଧୁମାନଙ୍କର ବାରଣ ସତ୍ତ୍ୱେ ପ୍ରେତକୁ ଅନୁସରଣ କରେ । ଦୁଇବନ୍ଧୁ ମଧ ପଛେ ପଛେ ଯାଆନ୍ତି । ସେମାନେ ବିଶ୍ୱାସ କରନ୍ତି, ଡେନ୍‌ମାର୍କରେ କିଛି ଅଶୁଭ ଘଟଣା ଘଟିଛି ବା ଘଟିବ । ସେଥିପାଇଁ ପ୍ରେତର ଆବିର୍ଭାବ ।

ଦୁର୍ଗର ଅନ୍ୟ ପ୍ରାନ୍ତକୁ ନେଇଯାଇ ପ୍ରେତ ହାମଲେଟ୍‌କୁ କହେ- ମୋ କଥା ମନ ଦେଇ ଶୁଣ । ମୁଁ ହେଉଛି ତମ ପିତାଙ୍କର ଆତ୍ମା । ମୋ ପ୍ରତି ଯେଉଁ ଅନ୍ୟାୟ କରାଯାଇଛି, ସେ କଥା ଶୁଣିଲେ ତମର ହୃଦୟ ହାହାକାର କରି ଉଠିବ । ତରୁଣ ରକ୍ତ ତମର କଠିନ ହୋଇଯିବ । ରୋମ ଟାଙ୍କୁରି ଉଠିବ । ଯଦି କେବେ ପିତାଙ୍କୁ ପ୍ରକୃତରେ ଭଲ ପାଇଥାଅ, ତେବେ ଏଇ ଅନ୍ୟାୟ ଆଉ ନିଷ୍ଠୁର ହତ୍ୟାର ପ୍ରତିଶୋଧ ନିଶ୍ଚୟ ନେବ ।

- ହତ୍ୟା !! ହାମଲେଟ୍ ଚମକି ଉଠେ ।

- ହଁ, ଜଘନ୍ୟ ଷଡ଼ଯନ୍ତ୍ରମୂଳକ ଏକ ନିଷ୍ଠୁର ହତ୍ୟା । ପ୍ରେତାତ୍ମା ପ୍ରକାଶ କରେ ।

- ହତ୍ୟାକାରୀ କିଏ ? ତା'ର ନାମ ଶୀଘ୍ର କହ । ପ୍ରତିଶୋଧ ନେବି ।

- ଶୁଣ ହାମଲେଟ୍, ଡେନ୍‌ମାର୍କର ଲୋକେ ଜାଣନ୍ତି, ଯେତେବେଳେ ମୁଁ ବଗିଚାରେ ଶୋଇଥିଲି, ସେତେବେଳେ ଗୋଟାଏ ସାପ ମୋତେ କାମୁଡ଼ିଦିଏ ଓ ସେଇଥିରେ ମୋର ମୃତ୍ୟୁ ହୁଏ । କିନ୍ତୁ ସେମାନେ ଜାଣନ୍ତି ନାହିଁ ଯେ, ଯେଉଁ ସାପ ମୋତେ କାମୁଡ଼ିଥିଲା, ସେଇ ଆଜି ଡେନ୍‌ମାର୍କର ସିଂହାସନରେ ଆସୀନ ।

- କାକା !!

- ହଁ, ସେଇ ପଶୁ ଆଉ ବିଶ୍ୱାସଘାତକ । ବଡ଼ କୌଶଳରେ ସେ ଏଇ କାର୍ଯ୍ୟଟି କରିଛି । ଚାତୁର୍ଯ୍ୟ ଆଉ ଆକର୍ଷଣୀୟ ଶକ୍ତି ଦ୍ୱାରା ରାଣୀଙ୍କର ମନକୁ ଜୟ କରିଛି । ଅଥଚ ତମେ ଜାଣ । ସେଇ ବ୍ୟଭିଚାରିଣୀକୁ ମୁଁ କେବେ ସ୍ନେହ ଦେବାରେ ଊଣା କରି ନାହିଁ । ଆଜି ସେ ଏକ ନଷ୍ଟ ଚରିତ୍ରର ଆୟତ୍ତରେ । କି ଅଧଃପତନ !

ସେଦିନ ଦି'ପହରେ ମୋର ପ୍ରାତ୍ୟହିକ ଅଭ୍ୟାସବଶତଃ ମୁଁ ଯେତେବେଳେ ବଗିଚାରେ ଶୋଇପଡ଼ିଥିଲି, ତମର କାକା ଛପି ଛପି ସେଠାକୁ ଆସେ । ହାତରେ ତା'ର ହେବୋନା ଗଛର ରସରୁ ଶିଶିଏ । ସେଇ ଉତ୍କଟ ବିଷକୁ ସେ ମୋ କାନରେ ଢାଳିଦିଏ । ରକ୍ତ ସହିତ ମିଶି ସେଇ ବିଷ ଗୋଟିଏ ମୁହୂର୍ତ୍ତରେ ମୋର ମୃତ୍ୟୁ ଘଟାଇଦିଏ । ମୋର ରାଜ୍ୟ, ସିଂହାସନ, ସ୍ତ୍ରୀ, ଏଭଳିକି ମୋର ପ୍ରାଣପର୍ଯ୍ୟନ୍ତ ମୁଁ ହରାଏ, ଆଉ ତା'ର ଉପଲକ୍ଷ ହୁଏ ମୋର ପ୍ରାଣାଧିକ ଭାଇ । ତମ ଶରୀରରେ ଯଦି ପ୍ରକୃତରେ ମୋ ରକ୍ତର ଧାରା ପ୍ରବାହିତ ହେଉଥାଏ, ତେବେ ତମେ ଏଇ ଅନ୍ୟାୟକୁ କଦାପି ବରଦାସ୍ତ କର ନାହିଁ । ଡେନ୍‌ମାର୍କର ସିଂହାସନ ବିଳାସ ଆଉ ବ୍ୟଭିଚାରର ସ୍ଥାନ ନ ହେଉ । ତେବେ ତମର ମାଆ ବିରୋଧରେ ତମେ କୌଣସି ପଦକ୍ଷେପ ନିଅ ନାହିଁ । ତା'ର ବ୍ୟବସ୍ଥା କରିବେ ଈଶ୍ୱର । ସେ ବରଂ ବିବେକର ତୀବ୍ର ଯନ୍ତ୍ରଣା ସହୁ । ଏଥର ମୁଁ ବିଦାୟ ନେବି । ଏଇ କଥା ତମକୁ କହିବାପାଇଁ ମୁଁ ନିତି ନିତି ଏଠାକୁ ଆସୁଥିଲି । ମୋର କାମ ଶେଷ ହୋଇଛି ।

ପ୍ରେତ ବିଦାୟ ନେଇ ଚାଲିଯାଏ ।

ହାମଲେଟ୍ ସ୍ତବ୍ଧ ହୋଇ ବସିରହେ । ସେ ଯାହା ଶୁଣୁଥିଲା, ସେ ସବୁ କ'ଣ ସତ୍ୟ ? ଆହା, କେଡ଼େ ଯନ୍ତ୍ରଣା ଦେଇ ପଶୁଟା ତା'ର ସ୍ନେହଶୀଳ ପିତାଙ୍କୁ ହତ୍ୟା କରିଛି ! ଆଉ ତା'ର ଗର୍ଭଧାରିଣୀ, ସେ ବା ଏହି ନାରକୀୟ ଘଟଣାକୁ ସମର୍ଥନ କଲେ କିପରି ? କାଞ୍ଚନ ହରାଇ କାଚ଼ଖଣ୍ଡେ କାନିରେ ବାନ୍ଧିବାକୁ ଯାଉଛନ୍ତି ବୋଲି ତାଙ୍କର ଧାରଣା ହେଲା ନାହିଁ ? ମୃତପିତାଙ୍କୁ ସ୍ମରଣ କରି ସେ କହେ- ବହୁତ ଯନ୍ତ୍ରଣା ପାଇଲ । ଆଜିଠାରୁ ତମର ନିର୍ଦ୍ଦେଶ ହିଁ ହେବ ମୋର ଧ୍ୟେୟ । ସେଇ ସଇତାନ୍ ଏବଂ ସଇତାନୀ ଦୁଇଟାଙ୍କୁ ଯେପର୍ଯ୍ୟନ୍ତ ଶାସ୍ତି ନ ଦେଇଛି, ସେପର୍ଯ୍ୟନ୍ତ ମୋର ସ୍ୱସ୍ତି ନାହିଁ ।

ହୋରାସିଓ ଓ ମାର୍ସେଲାସ୍ ହାମଲେଟ୍‌କୁ ନିରାପଦ ଦେଖି ଖୁସି ହୁଅନ୍ତି । ତେବେ ତା'ର କଥାବାର୍ତ୍ତାରେ କିଛି ପାଗଲାମି ସେମାନେ ଲକ୍ଷ୍ୟ କରନ୍ତି ।

ହାମଲେଟ୍ ହଠାତ୍ କହେ- ଡେନ୍‌ମାର୍କର ସିଂହାସନରେ ଗୋଟାଏ ସଇତାନ୍ ବସିଛି ।

ହୋରାସିଓ କହେ- ଏଇ କଥାଟା ଜଣାଇବା ପାଇଁ କବର ଭିତରୁ ଜଣେ ପ୍ରେତାତ୍ମାକୁ ଉଠି ଆସିବାକୁ ହେଲା ? ଏ କି ଧରଣର କଥା କୁମାର ?

- ତମେ ଠିକ୍ କହିଛ । ହାମଲେଟ୍ କହେ- ବର୍ତ୍ତମାନଠାରୁ ଆମର ବାଟ ଅଲଗା । ତମେ ତମ କାମରେ ଯାଅ । ମୁଁ ବି ମୋ କାମରେ ଯାଉଛି ।

ଏ କଥାରେ ହୋରାସିଓ ଦୁଃଖ ପାଏ । ତା' ବୁଝିପାରି ହାମଲେଟ୍ ଦୁଃଖ ପ୍ରକାଶ କରେ । ହୋରାସିଓ କିଛି ମନେ କରି ନାହିଁ ବୋଲି କହେ ।

- ଅନେକ ଅପରାଧ ଜମା ହୋଇଗଲାଣି ହୋରାସିଓ, - 'ହାମଲେଟ୍ କହେ- ତମେମାନେ ମୋର ବନ୍ଧୁ । ଶିକ୍ଷିତ ଏବଂ ସୈନିକ ମଧ । ମୋର ଗୋଟାଏ ଛୋଟ ଅନୁରୋଧ । ଏଠି ଯାହା ଘଟିଲା ବା ଦେଖିଲ, ତାହା ଅନୁଗ୍ରହ କରି କାହା ଆଗରେ ପ୍ରକାଶ କରିବ ନାହିଁ । ଦୁହେଁ ଶପଥ କରନ୍ତି । ଏଇ ଅଦ୍ଭୁତ ବ୍ୟାପାର ଚିରକାଳ ପାଇଁ ସେମାନଙ୍କର ମନରେ ବନ୍ଦ ହୋଇ ରହିବ । କେହି ଜାଣିବେ ନାହିଁ ।

ସ୍ୱର୍ଗ ଓ ମର୍ତ୍ତ୍ୟରେ ଏଭଳି ଅନେକ କିଛି ଅଛି, ଯାହା ତମର ଚିନ୍ତାର ଅତୀତ ହୋରାସିଓ । ମୋ କଥା ମନ ଦେଇ ଶୁଣ । ଆଜିଠାରୁ ମୁଁ ଏଭଳି ଅଦ୍ଭୁତ ଆଚରଣ କରିବି ଯେ, ତମେମାନେ ମଧ ମୋ ସହିତ ସମ୍ପର୍କ ରଖିବାକୁ ଭୟ କରିବ । ବନ୍ଧୁ, ତମମାନଙ୍କ ପ୍ରତି ଏଇ ହତଭାଗ୍ୟ ହାମଲେଟ୍‌ର ସ୍ନେହଶ୍ରଦ୍ଧା କିନ୍ତୁ ଅତୁଟ ରହିବ । ଯାହା ଶପଥ କରିଛ, ମନେରଖିବ । ବର୍ତ୍ତମାନ ସମୟ ଖରାପ । ଏ ଏକ ଅଭିଶପ୍ତ କାଳ । ଜାଣେନା- ଏହାକୁ ବଦଳାଇବା ପାଇଁ ମୋତେ କାହିଁକି ଜନ୍ମ ନେବାକୁ ପଡ଼ିଲା !

॥ ୨ ॥

ଲେୟାର୍ଟେସ୍ ଯିବାର କିଛିଦିନ ପରେ ପଲୋନିୟସ୍ ତା'ର ଖବର ନେବାପାଇଁ ରେନାଲ୍ଡୋ ନାମକ ଜଣେ ବ୍ୟକ୍ତିକୁ ତା'ପାଖକୁ ପଠାନ୍ତି । ସେଠାରେ ପହଞ୍ଚି ତାକୁ କ'ଣ କରିବାକୁ ହେବ ଭଲ ଭାବରେ ବୁଝାଇଦିଅନ୍ତି । ତାକୁ ସାକ୍ଷାତ୍ କରିବା ପୂର୍ବରୁ ସେଠାରେ ତା'ର ଆଚରଣ ସମ୍ପର୍କରେ ଭଲକରି ବୁଝିବା, ସେଠାରେ ଡେନ୍‌ମାର୍କବାସୀମାନେ କିଭଳି ରହନ୍ତି- ସେ ବିଷୟରେ ଖବର ନେବା, ଲେୟାର୍ଟେସ୍‌ର ପରିଚିତମାନଙ୍କଠାରୁ ତା' ବିଷୟରେ ଜାଣିବା - ଏଇ ସବୁ କାମ ତାକୁ କରିବାକୁ ପଡ଼ିବ । ବନ୍ଧୁମାନଙ୍କଠାରୁ ସତକଥା ବାହାର କରିବାପାଇଁ ଲେୟାର୍ଟେସ୍‌ର ଉଚ୍ଛୃଙ୍ଖଳତା କଥା କହିପାର, ତେବେ ସୀମା ଭିତରେ ରହି । କହିପାର, ଏସବୁକୁ ତାରୁଣ୍ୟର

ସ୍ୱାଭାବିକ ପରିଣତି ବୋଲି । ଏସବୁ ଛୋଟ ଛୋଟ ନିଷ୍ପାପ ବଦ୍‌ନାମ୍ ଦେଇରଖିଲେ ତା'ର ପରିଚିତ ବନ୍ଧୁ ତା' ସମ୍ପର୍କରେ ତମକୁ ବିସ୍ତୃତ ବିବରଣୀ ଦେଇପାରିବେ । ସେଥିରୁ ତା'ସମ୍ପର୍କରେ ପ୍ରକୃତ ସତ୍ୟଟା ବାହାରି ଆସିବ ।

ଏଇ ସବୁ ଉପଦେଶ ଦେଇ ସେ ରେନାଲ୍ଡୋକୁ ବିଦାୟ ଦେଲା ପରେ ଅଫେଲିଆକୁ ଭେଟନ୍ତି । ତା' ମୁହଁରେ ଭୟର ଚିହ୍ନ । ପଲେନିୟସ୍ ଜେରା କରି ତା'ଠାରୁ ଏହାର କାରଣଟି ଜାଣିନିଅନ୍ତି । ଅଫେଲିଆର ବକ୍ତବ୍ୟ- ସେ ଯେତେବେଳେ ତା'ଘରେ ବସି ସିଲାଇ କରୁଥିଲା ସେଠାକୁ ହାମଲେଟ୍ ଆସେ । ଉଦ୍‌ଭ୍ରାନ୍ତ ଚେହେରା । ଜାମାରେ ବୋତାମ ଦିଆଯାଇ ନାହିଁ । ମୁଣ୍ଡର ଟୋପି କୁଆଡ଼େ ପଡ଼ିଛି, ମୋଜା ମଇଳା... ସେଥିରେ ସେ ଭୟ ପାଇଯାଇଛି ।

ପଲୋନିୟସ୍ ଧରିନିଅନ୍ତି, ଏସବୁ ପାଗଳାମି ପ୍ରେମର ଫଳ । ହାମଲେଟ୍ କଣ କହିଲା- ଏହା ଜାଣିବା ନିମନ୍ତେ ସେ ଉତ୍ସୁକ ହୋଇଉଠନ୍ତି ।

ଅଫେଲିଆ କହେ- ସେ ମୋର ଗୋଟାଏ ହାତ ଜୋରରେ ଧରି ଅନ୍ୟ ହାତରେ ମୋତେ ତାଙ୍କ ଆଖି ଆଗକୁ ଟାଣିନିଅନ୍ତି । କିଛିକ୍ଷଣ ସ୍ଥିର ଦୃଷ୍ଟିରେ କ'ଣ ଦେଖନ୍ତି । ମୁଁ ମୋ ହାତଟାକୁ ଟାଣିଆଣିବାରୁ ତିନିଥର ଉପରତଳ କରି ମୁଣ୍ଡ ହଲାନ୍ତି । ଲମ୍ବା ଦୀର୍ଘଶ୍ୱାସଟିଏ ଛାଡ଼ନ୍ତି । ତା'ପରେ ମୋତେ ଛାଡ଼ିଦିଅନ୍ତି ।

ପଲୋନିୟସ୍ ଚିନ୍ତିତ ଦେଖାଯାଆନ୍ତି । କହନ୍ତି, ତୁ ମୋ ସାଙ୍ଗରେ ଚାଲ । ରାଜା କେଉଁଠି ଅଛନ୍ତି ପ୍ରଥମେ ଦେଖିବା । ଏ ତ ନିଶ୍ଚିତ ପାଗଳାମିର ଲକ୍ଷଣ । ମୋର ବିଶ୍ୱାସ, ପ୍ରେମରୁ ହିଁ ଏହା ହୋଇଛି । ତୁ କ'ଣ ନିକଟରେ ତାକୁ କିଛି କଡ଼ା କଥା କହିଛୁ ?

- ନା ତ, ତେବେ ତମ କଥାନୁସାରେ, ମୁଁ ତାଙ୍କର ଚିଠି ଫେରାଇଦେଇଛି । ମୋ ପାଖକୁ ଆସିବାକୁ ମଧ ମନା କରି ଦେଇଥିଲି ।

ପଲୋନିୟସ୍ କହନ୍ତି- ଏସବୁ ପାଇଁ ସେ ପାଗଳ ହୋଇଯାଇଛି । ମୋର ଆଉ ଟିକିଏ ସାବଧାନ ହେବା ଉଚିତ ଥିଲା । ହୁଏତ ସେ ତୋତେ ମାରିଦେବା ପାଇଁ ଆସିଥିଲା । ଯାହା ହେଉ, ଏସବୁ ରାଜା ଜାଣିବା ଦରକାର ।

ହାମଲେଟ୍ ର ଆଚାର ବ୍ୟବହାରରେ ପରିବର୍ତ୍ତନ ଘଟିଯାଇଛି । ରାଜାଙ୍କ କାନରେ ଏକଥା ପଡ଼େ । ସେ ହାମଲେଟ୍ ର ସମବୟସୀ ଦୁଇ ସଭାସଦ୍‌ଙ୍କୁ ଅନୁରୋଧ କରିଥିଲେ, ତାହା ସହିତ ମିଳାମିଶା କରି ତା'ର ମନ ବଦଳାଇବା ପାଇଁ । ଅନ୍ତତଃ ତା'ର ଦୁଃଖର କାରଣଟା ଜାଣିନେବା ପାଇଁ । ରାଣୀ ମଧ ରାଜାଙ୍କୁ ସମର୍ଥନ କରି ଯଥାଶୀଘ୍ର ହାମଲେଟ୍ ସହିତ ଦେଖା କରିବାପାଇଁ ସେମାନଙ୍କୁ କହନ୍ତି ।

ପଲୋନିୟସ୍ ସମ୍ବାଦ ଆଣନ୍ତି, ନରୱେକୁ ଯାଇଥିବା ଦୂତମାନେ ଫେରିଆସିଛନ୍ତି । ରାଜା ତାଙ୍କୁ ତାରିଫ୍ କରି କହନ୍ତି- ତମେ ତ ଦେଖୁଛି ସୁଖବର ଆଣିବାରେ ଓସ୍ତାଦ୍ ।

ବିନୟରେ ଟଗଳିଯାଇ ପଲୋନିୟସ୍ କହନ୍ତି- ମୁଁ ତ ମହାରାଜ ଆପଣଙ୍କର ଆଉ ଈଶ୍ୱରଙ୍କର, ଏ ଦୁଇ ଶକ୍ତିର ସେବାପାଇଁ ନିଜକୁ ଉତ୍ସର୍ଗ କରିଦେଇଛି । ଆଉ ଗୋଟିଏ ସମ୍ବାଦ ହେଉଛି- ମୁଁ ହାମଲେଟ୍ ର ପାଗଳାମିର କାରଣଟା ବି ଜାଣିନେଇଛି ।

- ସତରେ ନା କ'ଣ ? ତେବେ କହିଯାଅ । ଶୁଣିବା ପାଇଁ ମୁଁ ବ୍ୟଗ୍ର ।

- ପ୍ରଥମେ ବରଂ ଆପଣ ଦୂତମାନଙ୍କ କଥା ଶୁଣିନିଅନ୍ତୁ । ମୋ ଖବରଟା ପରେ -

- ତମେ ସେମାନଙ୍କୁ ଡାକିଆଣ- ପଲୋନିୟସ୍ ଚାଲିଯାଆନ୍ତି । ରାଜା ରାଣୀଙ୍କୁ କହନ୍ତି- ଶୁଣିଲ ତ, ପୁଅ ତମର ହଠାତ୍ ଏମିତି କାହିଁକି ବଦଳିଯାଉଛି, ଏ ତା'ର କାରଣ ଜାଣିପାରିଛି ।

ରାଣୀ କହନ୍ତି- ମୋର ମନେହୁଏ, ପିତାଙ୍କର ମୃତ୍ୟୁ ଆଉ ଆମର ଏଇ ତରବର ହୋଇ ବିବାହ କରିବା, ଏହାହିଁ ହେଉଛି ତା'ର ଦୁଃଖର କାରଣ ।

ରାଣୀଙ୍କ କଥା ଶୁଣି ରାଜା ଉତ୍ତର ଦିଅନ୍ତି - ସେମିତି ହେଲେ ତାକୁ ଅନ୍ୟତ୍ର ପଠାଇବାକୁ ପଡ଼ିବ ।

ନରଓ୍ୱେ ପ୍ରତ୍ୟାଗତ ଦୂତଦ୍ୱୟ ରାଜାଙ୍କୁ ସୁଖବର ହିଁ ଦିଅନ୍ତି । ନରଓ୍ୱେର ବୃଦ୍ଧରାଜା ସେମାନଙ୍କ କଥା ଶୁଣି ଓ ବିଷୟର ଗୁରୁତ୍ୱ ବୁଝି ପୁତୁରାକୁ ଗିରଫ କରି ଆଣିବାକୁ ଆଦେଶ ଦିଅନ୍ତି । ପୁତୁରା ଆସି ଶପଥ ନେଇଛି ଯେ, ସେ ସମ୍ରାଟ୍‌ଙ୍କ ବିରୋଧରେ କେବେବି ଅସ୍ତ୍ର ଉଠାଇବ ନାହିଁ । ସମ୍ରାଟ୍ ସନ୍ତୁଷ୍ଟ ହୋଇ ତାକୁ ପ୍ରତିବର୍ଷ ତିନିଶହ କ୍ରାଉନ୍ ଦେବାକୁ ପ୍ରତିଶ୍ରୁତି ଦେଇଛନ୍ତି ।

ଦୂତମାନଙ୍କୁ ଧନ୍ୟବାଦ ଜଣାଇ ରାଜା କହନ୍ତି- ଏ ବ୍ୟବସ୍ଥା ଆମପାଇଁ ଉତ୍ତମ ।

ଦୂତଦ୍ୱୟ ବିଦାୟ ନେବା ପରେ ପଲୋନିୟସ୍ କହିବାକୁ ଆରମ୍ଭ କରନ୍ତି- ଅପରାଧ କ୍ଷମା କରିବେ ମହାରାଜ । ମୋର ବିଶ୍ୱାସ, ଆପଣଙ୍କ ମହାନ୍‌ପୁତ୍ର ପାଗଳ ହୋଇଯାଇଛନ୍ତି ।

ରାଣୀ ବାଧା ଦେଇ କହନ୍ତି- ତମେ କେମିତି ଜାଣିଲ ?

ପଲୋନିୟସ୍ କହନ୍ତି- ମାଡାମ୍, ସତ୍ୟ ଜାଣିବାପାଇଁ କଷ୍ଟ କରିବାକୁ ପଡ଼େ ନାହିଁ । ଦୁଃଖର ସହିତ ଜଣାଉଛି, ଘଟଣାଟା ସତ୍ୟ । ପାଗଳାମିର କାରଣ ହେଉଛି ମୋ ଝିଅ । ତାକୁ ତ ଆପଣମାନେ ଜାଣନ୍ତି । ତା'ଠୁ ମୁଁ ଏଇ ଚିଠିଟା ପାଇଛି । ଏଥିରେ ମୋ ଝିଅ ପ୍ରତି କୁମାରଙ୍କର ପ୍ରଗାଢ଼ ପ୍ରେମର ସୂଚନା ରହିଛି । ଅନୁମତି ନେଇ ପଢୁଛି ।

ଚିଠି ପଢ଼ା ଶେଷ ହୋଇଯାଏ । ରାଜା ପ୍ରଶ୍ନ କରନ୍ତି, ତମର ଝିଅ ଏଇ ଭଲପାଇବାକୁ କିଭଳି ଭାବରେ ଗ୍ରହଣ କରିଛି, ତା' କିନ୍ତୁ ତମେ ଏପର୍ଯ୍ୟନ୍ତ କହି ନାହଁ ।

ପଲୋନିୟସ୍ ପାଲଟା ପ୍ରଶ୍ନ କରନ୍ତି, ମୋ ସମ୍ପର୍କରେ ଆପଣଙ୍କ ଧାରଣା କ'ଣ ?

- ଆପଣ ଜଣେ ବିଶ୍ୱାସୀ ଆଉ ସତ୍ ମଣିଷ ।

- ଏଇ ପ୍ରମାଣ ଦେଇପାରିଲେ ମୁଁ ଖୁସି ହେବି । ଏଇ ପ୍ରେମ ତେଣା ମେଲିବାର ଯେତେବେଳେ ମୁଁ ଦେଖିଲି, ସେତେବେଳେ ମୁଁ ମୋର ଝିଅକୁ ସ୍ପଷ୍ଟ କହିଦେଲି ହାମଲେଟ୍ ରାଜପୁତ୍ର । ତୋ'କପାଳରେ ସେ ନାହାନ୍ତି । ତୁରନ୍ତ ପରାମର୍ଶ ଦେଲି, ଘର ଭିତରେ ନିଜକୁ ବନ୍ଦୀକରି ରଖ । ଯୁବରାଜଙ୍କ ସହ ଦେଖା କର ନାହିଁ । ତାଙ୍କର କୌଣସି ଲୋକକୁ ପ୍ରଶ୍ରୟ ଦିଅ ନାହିଁ । ତାଙ୍କଠୁ କୌଣସି ଉପହାର ମଧ ଗ୍ରହଣ କର ନାହିଁ । ମୋ ଉପଦେଶ ସେ ମାନିନେଲା ସିନା- ତେବେ ହାମଲେଟ୍ ଦୁଃଖ ପାଇ ଫେରିଗଲେ । ସେବେଠୁ ସେ କିଛି ଖାଉ ନ ଥିବା ଫଳରେ ଦୁର୍ବଳ ହୋଇପଡ଼ିଛନ୍ତି ଏବଂ ତାଙ୍କର ପାଗଳାମି ହେଉଛି ଏସବୁର ଫଳ । ପଲୋନିୟସ୍‌ଙ୍କ ବକ୍ତବ୍ୟ ଶେଷ ହୁଏ ।

ରାଜା ପ୍ରଶ୍ନ କରନ୍ତି- ଏସବୁ କଥାକୁ କୌଣସିମତେ ପରୀକ୍ଷା କରାଯାଇପାରନ୍ତା ନାହିଁ ?

ପଲୋନିୟସ୍ କହନ୍ତି- ସେ କଥା ମଧ ଭାବିଛି । ଆପଣ ତ ଜାଣନ୍ତି, କେବେ କେବେ ଯୁବରାଜ ଘଣ୍ଟା ଘଣ୍ଟା ଧରି ପଦଚାରଣା କରନ୍ତି । ରାଣୀ ସ୍ୱୀକାର କରନ୍ତି ।

ସେତିକିବେଳେ ମୁଁ ମୋର ଝିଅକୁ ତାଙ୍କ ପାଖରେ ଛାଡ଼ିଦେବି - ପଲୋନିୟସ୍ କହନ୍ତି । ମୁଁ ଆଉ ଆପଣମାନେ ଆଢୁଆଳରେ ଥାଇ ତାଙ୍କର ଆଚରଣ ଲକ୍ଷ୍ୟ କରିବା । ଯଦି ମୋର କଥା ପ୍ରମାଣିତ ନ ହୁଏ, ତେବେ ମୁଁ ଚାକିରି ଛାଡ଼ିଦେଇ ଚାଷବାସ କରିବି ।

ରାଜା ଏ ପ୍ରସ୍ତାବ ଗ୍ରହଣ କରନ୍ତି । ଦେଖାଯାଏ ହାମଲେଟ୍ ହାତରେ ଖଣ୍ଡେ ବହି ଧରି ଏଇଆଡ଼େ ଆସୁଛି । ତା'ର ସେଇ ବେଦନାକ୍ଲିଷ୍ଟ ରୂପ ରାଣୀଙ୍କୁ ବିଷଣ୍ଣ କରିଦିଏ । ରାଜା ଓ ରାଣୀ ଚାଲିଯିବା ପରେ ପଲୋନିୟସ୍ ଆଗେଇଯାଇ ହାମଲେଟ୍‌ଙ୍କ ସହିତ କଥାବାର୍ତ୍ତା କରିବାକୁ ଚେଷ୍ଟା କରନ୍ତି । କହନ୍ତି- କେମିତି ଅଛ ହାମଲେଟ୍ ? ତମେ କ'ଣ ମୋତେ ଚିହ୍ନିପାରୁଛ ?

ହାମଲେଟ୍ ଉତ୍ତର ଦିଅନ୍ତି- ମୁଁ ବେଶ୍ ଭଲ ଅଛି । ଆଉ ତମେ - ତମେ ତ ଜଣେ ମାଛ ବେପାରୀ ।

- ନା ହଜୁର, ମୁଁ ମୋଟେ ତା'ନୁହେଁ ।

- ତା'ହେଲେ ମୋର ଧାରଣା, ତମେ ଜଣେ ସତ୍‌ଲୋକ ।

- ସତ୍‌ଲୋକ ?

- ହଁ, ପୃଥିବୀରେ ଦଶହଜାରରେ ଜଣେ ସତ୍ ।

- ସେ କଥା ସତ ହଜୁର୍ ।

- ତମର କ'ଣ ଝିଅ ଅଛି ? ହାମଲେଟ୍ ପଚାରେ ।

- ଅଛି ଆଜ୍ଞା ।

ଅଫେଲିଆକୁ ନେଇ ହାମଲେଟ୍ କିଛି ସମୟ ଏଣୁତେଣୁ ଗପିଯାଏ । ପଲୋନିୟସ୍ ପ୍ରସଙ୍ଗ ବଦଳାଇ ପ୍ରଶ୍ନ କରନ୍ତି- କି ବହି ପଢୁଛନ୍ତି ହଜୁର୍ ?

ହାମଲେଟ୍ କହେ- ଶବ୍ଦ.. ଖାଲି ଶବ୍ଦର ଭଣ୍ଡାର । ପାଗଳାମି ବଢ଼ିଚାଲେ । ଏହି ସମୟରେ ରାଜପାରିଷଦଦ୍ୱୟଙ୍କୁ ଦେଖି ହାମ୍‌ଲେଟ୍ ସ୍ୱାଭାବିକ ଭାବରେ ପଚାରେ.. ଖବର କ'ଣ ? ଜଣେ କହେ- କହିବା ଭଳି କିଛି ନାହିଁ । ତେବେ ଏତିକି କୁହାଯାଇପାରେ ଯେ ପୃଥିବୀଟା ପୂର୍ବ ଅପେକ୍ଷା ଭଲ ହେବାରେ ଲାଗିଛି ।

-ତମର ତଥ୍ୟ ଭୁଲ୍ । ହାମଲେଟ୍ କହେ- ତମରି କଥା କହୁଛି, ତମେମାନେ ଏମିତି କ'ଣ ଅପରାଧ କରିଛ ଯେ ତମମାନଙ୍କୁ କାରାଗାରରେ ରହିବାକୁ ପଡୁଛି ?

ଜଣେ ଆଶ୍ଚର୍ଯ୍ୟ ହୋଇ କହନ୍ତି- କାରାଗାରରେ ?

- ଜାଣ ନାହିଁ ? ଡେନ୍‌ମାର୍କ ତ ଏବେ ଗୋଟାଏ କାରାଗାର ।

- ତେବେ ପୃଥିବୀଟା ମଧ୍ୟ ସେଇଆ ।

- ହଁ, ତେବେ ସେଥିରେ ଅନେକ କୋଠରି ଅଛି । ସେଥିରେ ସବୁଠାରୁ କଦର୍ଯ୍ୟ କୋଠରି ମଧ୍ୟରୁ ଡେନ୍‌ମାର୍କ ଗୋଟାଏ ।

- ଆମେ ସେମିତି ଭାବୁ ନାହୁଁ ।

- ତା'ହେଲେ ତମପାଇଁ ନୁହେଁ । ହାମଲେଟ୍ କହେ । ଭଲମନ୍ଦ ବୋଲି କିଛି ନାହିଁ । ସେସବୁ ଆମ ମନର ସୃଷ୍ଟି । ମୋ ପାଇଁ ଡେନ୍‌ମାର୍କ ହେଉଛି ଏକ ବନ୍ଦୀଶାଳା ।

- ଆପଣଙ୍କର ଉଚ୍ଚାକାଂକ୍ଷା ପାଇଁ ହୁଏତ ଡେନ୍‌ମାର୍କକୁ ଗୋଟାଏ କାରାଗାର ମନେହେଉଛି । ଆପଣଙ୍କ ମନ ଯାହା ଚାହୁଁଛି ଡେନ୍‌ମାର୍କରେ ସେ ସବୁର ଘୋର ଅଭାବ ।

ହାମଲଟ୍ କହିଯାଏ, ହା ଈଶ୍ୱର, ମୁଁ ଗୋଟାଏ ବାଦାମ ଖୋଳପା ଭିତରେ ରହି ମଧ୍ୟ ନିଜକୁ ଅସୀମ ବିଶ୍ୱର ରାଜା ବୋଲି ଭାବିପାରନ୍ତି, ଯଦି ମୁଁ ଖରାପ ସ୍ୱପ୍ନ ଦେଖୁ ନ ଥାନ୍ତି । ଆଚ୍ଛା, ତମେମାନେ ଏ ପ୍ରାସାଦକୁ କାହିଁକି ଆସିଛ ?

- ଆପଣଙ୍କ ସହିତ ସାକ୍ଷାତ୍ କରିବା ଛଡ଼ା ଅନ୍ୟ କିଛି କାରଣ ନାହିଁ, ଜଣେ କହେ ।

ହାମଲେଟ୍ କହେ- ମୁଁ ତ ଜଣେ ଭିକାରି । ସାଧାରଣ ଧନ୍ୟବାଦଟିଏ ଦେବାର ପାତ୍ର ନୁହେଁ । ତଥାପି ଧନ୍ୟବାଦ ଜଣାଉଛି । ସତକରି କହ- ତମେମାନେ ନିଜେ ଏଠାକୁ ଆସିଛ ନା ତମମାନଙ୍କୁ କେହି ପଠାଇଛି ? ସେମାନଙ୍କ ମୁହଁରେ ଅସ୍ୱସ୍ତି ପ୍ରକାଶ ପାଏ । ହାମଲେଟ୍ କହିଚାଲେ-ତମମାନଙ୍କୁ କାହିଁକି ପଠାଯାଇଛି କହ । ତମମାନଙ୍କର ଚାହାଣିରେ ଏକ

ସ୍ୱୀକାରୋକ୍ତିର ଚିହ୍ନ ମୁଁ ଦେଖିପାରୁଛି । ବିନୟ ତାକୁ ଢାଙ୍କି ପାରୁ ନାହିଁ । । ମୁଁ ଜାଣେ, ରାଜା ଆଉ ରାଣୀ ତମମାନଙ୍କୁ ମୋ ପାଖକୁ ପଠାଇଛନ୍ତି ।

ଶେଷପର୍ଯ୍ୟନ୍ତ ପାରିଷଦ ଦୁହେଁ ସେ କଥା ସ୍ୱୀକାର କରନ୍ତି ।

ହାମଲେଟ୍ ପୁଣି କହେ- କାହିଁକି, ତା ବି କହି ଦେଉଛି । ଏବେ ମୁଁ ମୋର ସ୍ୱାଭାବିକ ପ୍ରସନ୍ନଭାବ ହଜାଇ ଦେଇଛି । ସମସ୍ତ ସାମାଜିକତା ପରିତ୍ୟାଗ କରିଛି । ପୃଥିବୀଟା ମୋପାଇଁ ଏକ ବନ୍ଧ୍ୟା, ଭୂଖଣ୍ଡରେ ପରିଣତ ହୋଇଛି । ଆକାଶର ଚମତ୍କାର ଚନ୍ଦ୍ରାତପ ପୃଥବୀକୁ ଢାଙ୍କିରଖିଛି । ତା'ଉପରେ ପୁଣି ପଡୁଛି ସୁନେଲି କିରଣ । ମଣିଷ କି ଆଶ୍ଚର୍ଯ୍ୟ ସୃଷ୍ଟି ! ଭିତରେ ତା'ର କେତେ ମହାନତା, କେତେ ସମ୍ଭାବନା, କେତେ ପ୍ରଶଂସନୀୟ ଗୁଣ ! ପୃଥିବୀର ଏଇ ଅପାର ସୌନ୍ଦର୍ଯ୍ୟ ମୋ ପାଖରେ କିନ୍ତୁ ଅତ୍ୟନ୍ତ ତୁଚ୍ଛ । ଏ ପୃଥିବୀ ଏକ ଧୂଳିର ପିଣ୍ଡ ମାତ୍ର । ନର ବା ନାରୀ କେହି ମୋତେ ଆନନ୍ଦ ଦେଇପାରନ୍ତି ନାହିଁ । 'ଯଦିଓ ତମମାନଙ୍କର ହସ ହସ ମୁହଁରୁ ତାହା ପ୍ରକାଶ ପାଉଛି ।'

ଜଣେ ସଭାସଦ୍ ପ୍ରତିବାଦ କରି କହନ୍ତି , ନା ଆଜ୍ଞା, ସେଭଳି କୌଣସି ଚିନ୍ତା ମୋ ମୁଣ୍ଡରେ ନାହିଁ, -

ତେବେ ମୁଁ ଯେତେବେଳେ କହିଲି ଯେ, ମଣିଷ ମୋତେ ଆନନ୍ଦ ଦିଏ ନାହିଁ, ଏମିତି ହସିଲ କାହିଁକି ?

ଅନ୍ୟଜଣକ କହନ୍ତି - ମଣିଷ ଯଦି ଆପଣଙ୍କୁ ଆନନ୍ଦ ଦେଇପାରୁ ନାହିଁ, ତେବେ ଅଭିନେତାମାନେ ତ ଆପଣଙ୍କ ପାଖରୁ କୌଣସି ସମର୍ଥନ ପାଇବେ ନାହିଁ । ଆମେ ଏଠାକୁ ଆସିଲା ବେଳେ ସେମାନଙ୍କୁ ଦେଖିଲୁ । ସେମାନେ ଆପଣଙ୍କୁ ଖୁସି କରିବା ପାଇଁ ଏଇଆଡ଼େ ଆସୁଛନ୍ତି ।

କଥା କଥାରେ ହାମଲେଟ୍ ଜାଣିପାରନ୍ତି ଅଭିନେତାମାନେ ବିନା ପାରିଶ୍ରମିକରେ ଏଠାରେ ଅଭିନୟ ଦେଖାଇବେ । ସେ କହନ୍ତି, କି ଅଦ୍‌ଭୁତ ! ମୋ କାକାଙ୍କ ପାଇଁ ସେମାନେ ବିନା ପାରିଶ୍ରମିକରେ ଅଭିନୟ କରିବେ, ଅଥଚ ମୋର ପିତାଙ୍କ ଅମଳର ସେମାନେ ଶହେ ଡୁକାଟ୍ ଯାଏ ପାରିଶ୍ରମିକ ପାଉଥିଲେ !

ପଲୋନିୟସ୍ ହାମଲେଟ୍‌କୁ ଅଭିନେତାମାନଙ୍କର ଆଗମନ ବାର୍ତ୍ତା ଶୁଣାନ୍ତି । ତାଙ୍କ ସ୍ୱଭାବସୁଲଭ ଭଙ୍ଗୀରେ ସେମାନଙ୍କ ସମ୍ପର୍କରେ ଅନେକ କଥା କହିଯାଆନ୍ତି । ହାମଲେଟ୍ ତାଙ୍କର ପାଗଳାମି ଜାରି ରଖନ୍ତି ।

ଅଭିନେତାମାନେ ଆସନ୍ତି । ହାମଲେଟ୍ ସେମାନଙ୍କୁ 'The murder of golanza' ନାଟକର ଅଭିନୟ ଦେଖାଇବାକୁ କହନ୍ତି । ପୁଣି କହନ୍ତି - ଆଗାମୀ କାଲି ରାତିରେ ଅଭିନୟ

ହେବ, ତେବେ ତହିଁରେ ସେ ବାରଚୌଦ ଧାଡ଼ି ଯୋଗ କରି ଦେବେ । ଅଭିନେତାମାନେ ସେତକ ଆବୃତ୍ତି କରିବେ ।

ସମସ୍ତେ ଚାଲିଯିବା ପରେ ଅନୁଶୋଚନାରେ ହାମଲେଟ୍ ଭାଙ୍ଗି ପଡ଼ନ୍ତି । ସମୟ ବହି ଯାଉଛି । ପିତୃହତ୍ୟାର ପ୍ରତିଶୋଧ ପାଇଁ ସେ କିଛି କରିପାରୁ ନାହାନ୍ତି । ତେବେ ସେ ଜାଣନ୍ତି ଅଭିନୟ ଭିତରେ ତାଙ୍କ ପିତୃହତ୍ୟାର ଦୃଶ୍ୟ ଦେଖାଇଲେ ରାଜାଙ୍କ ମନରେ ପ୍ରତିକ୍ରିୟା ନିଶ୍ଚୟ ପ୍ରକାଶ ପାଇବ । ତାଙ୍କ ଚେହେରାରେ ତା' ଫୁଟି ଉଠିବ । ସେତେବେଳେ ସେ ଲକ୍ଷ୍ୟ ରଖିବେ । ରାଜାଙ୍କ ଚାହାଣିରୁ ହିଁ ସତ୍ୟ ପ୍ରକାଶ ପାଇବ । ରାଜାଙ୍କର ବିବେକ ହାମଲେଟ୍ ଙ୍କ ପାଖରେ ଧରା ପଡ଼ିଯିବ ।

॥ ୩ ॥

ସଭାସଦ୍‌ଦ୍ୱୟ ଫେରିଯାଇ ରାଜାଙ୍କୁ ଜଣାନ୍ତି ଯେ, ହାମଲେଟ୍ ସେମାନଙ୍କୁ ଭଲ ମନରେ ଗ୍ରହଣ କରିଛନ୍ତି ସତ୍ୟ, ତେବେ ତାଙ୍କ ମନ କଥା କିଛି କହି ନାହାନ୍ତି । ପାଗଳ ଭଳି ଅଭିନୟ କରି ସେ କଥାକୁ ଏଡ଼ାଇ ଯାଇଛନ୍ତି । ଅନ୍ୟ ପ୍ରଶ୍ନର ଉତ୍ତର କିନ୍ତୁ ସ୍ପଷ୍ଟ ଭାବରେ ଦେଇଛନ୍ତି । ହାମଲେଟ୍ କୁ କୌଣସି ମନୋବିନୋଦନ ଆଡ଼କୁ ଆକୃଷ୍ଟ କରା ଯାଇପାରିଛି କି ନାହିଁ - ରାଣୀ ଏହା ଜାଣିବାକୁ ଚାହାନ୍ତି । ଜଣେ ସଭାସଦ୍ କହନ୍ତି -ଦଳେ ଅଭିନେତାଙ୍କୁ ନିମନ୍ତ୍ରଣ କରାଯାଇଛି । ସେମାନଙ୍କ ସହିତ କଥାବାର୍ତ୍ତା ବେଳେ ହାମଲେଟ୍ ବେଶ୍ ଖୁସି ଥିଲେ । ସେମାନଙ୍କୁ ଆଜି ରାତିରେ ଅଭିନୟ ଦେଖାଇବାକୁ ଡକାଯାଇଛି । କ'ଣ ଅଭିନୟ କରିବେ ହାମଲେଟ୍ ସେମାନଙ୍କୁ କହି ଦେଇଛନ୍ତି ।

ପଲୋନିୟସ୍ କହନ୍ତି - ସେ କହିଛନ୍ତି, ରାଜା ଯେମିତି ନିଶ୍ଚୟ ଅଭିନୟ ଦେଖିବାକୁ ଆସନ୍ତି । ରାଜା କହନ୍ତି ଯେ ସେ ନିଶ୍ଚୟ ଯିବେ । ଅଭିନୟ ଆଡ଼କୁ ତା'ର ମନ ଯାଇଛି ଶୁଣି ତାଙ୍କୁ ବେଶି ଭଲ ଲାଗୁଛି । ସଭାସଦ୍ ଦୁହିଁଙ୍କୁ କହନ୍ତି , ତମେ ଦୁହେଁ ଏଥି ପାଇଁ ହାମଲେଟ୍‌କୁ ଭଲକରି ଉତ୍ସାହିତ କର ହୁଏତ ତା'ର ମନ ବଦଳି ଯାଇପାରେ । ସଭାସଦ୍ ଦୁହେଁ ଓ ରାଣୀ ଚାଲି ଯାଆନ୍ତି ।

ହାମଲେଟ୍‌କୁ ଡକାଇ ପଠାଯାଏ । ଅଫେଲିଆ ସହିତ ତାଙ୍କୁ କିଛି ସମୟ ରହିବାକୁ ଦିଆଯାଇ ତାଙ୍କ ମନର ପ୍ରତିକ୍ରିୟା ରାଜା ଲକ୍ଷ୍ୟ କରିବାକୁ ଚାହାନ୍ତି । ଯିବା ପୂର୍ବରୁ ରାଣୀ ଅଫେଲିଆକୁ କହିଯାଆନ୍ତି, ତମର ସୌନ୍ଦର୍ଯ୍ୟ ପାଇଁ ହାମଲେଟ୍‌ର ଆଜି ଏ ଦୁର୍ଦ୍ଦଶା । ତମେ ତମର ମଧୁର ବ୍ୟବହାର ଦ୍ୱାରା ତାର ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବ ବୋଲି ମୋର ବିଶ୍ୱାସ । ଅଫେଲିଆ ଚେଷ୍ଟା କରିବ ବୋଲି ପ୍ରତିଶ୍ରୁତି ଦିଏ ।

ହାମଲେଟ୍ ଆସେ । ମନରେ ଅନେକ ଦ୍ୱନ୍ଦ୍ୱ । ପ୍ରତିକୂଳ ପରିବେଶ ସହିତ ସେ ସଂଗ୍ରାମ କରିବ କିମ୍ବା ସବୁ ଯନ୍ତ୍ରଣାକୁ ମନ ଭିତରେ ଚାପି ରଖିଦେବ । ନିଜ ଭିତରେ ସେ କଣ ମନର ଯନ୍ତ୍ରଣାକୁ ଲୁଚାଇ ରଖିପାରିବ ? ପୃଥିବୀ କ୍ରମଶଃ ଦୁଃଖୀ ହୋଇଯାଉଛି । ଜୀବନ ଯନ୍ତ୍ରଣା , ଶୋଷକର ପୀଡ଼ନ, ମଣିଷର ଅହମିକା, ବିଚାରରେ ବିଳମ୍ବ ପଦପଦବୀର ଅହଙ୍କାର ଅସହଣୀୟ ହୋଇ ଉଠୁଛି । ମୃତ୍ୟୁ ପରେ ଅଜଣା ଜଗତର ରହସ୍ୟ ବିରୋଧରେ ସଂଗ୍ରାମ କରିବାର ଇଚ୍ଛାକୁ ଦୁର୍ବଳ କରିଦେଉଛି । ଫଳରେ ସେଇ ଦୋଷତ୍ରୁଟିକୁ ମାନିନେବାକୁ ମଣିଷ ବାଧ ହେଉଛି । ଚିନ୍ତା ମଣିଷକୁ ଭୀରୁ କରିଦିଏ, ସିଦ୍ଧାନ୍ତକୁ କାର୍ଯ୍ୟରେ ପରିଣତ କରିବାକୁ  ଦିଏ ନାହିଁ । କର୍ମତତ୍ପରତାକୁ  ନଷ୍ଟ କରିଦିଏ ।

ଅଫେଲିଆ ଆଗେଇ ଆସି ହାମ୍‌ଲେଟକୁ କୁଶଳ ପ୍ରଶ୍ନ କରେ । କହେ -ମୋ ପାଖରେ ଆପଣ ଦେଇଥିବା କିଛି ସ୍ମାରକ ରହିଯାଇଛି । ଅନେକ ଦିନରୁ  ସେ ସବୁ  ଫେରାଇ ଦେବାକୁ ମୁଁ ଭାବୁଛି । ଅନୁଗ୍ରହ କରି ଗ୍ରହଣ କରନ୍ତୁ ।

ମୁଁ ତ ତୁମକୁ କିଛି ଦେଇ ନାହିଁ ।

- ଆପଣ ଯେ ଦେଇଥିଲେ, ତାହା ଆପଣ ଜାଣନ୍ତି । ସେତେବେଳେ ଅନେକ ମଧୁର କଥା ମଧ କହିଥିଲେ ଯାହା ସେ ସବୁର ଗୁରୁତ୍ୱ ବଢ଼ାଇ ଦେଇଥିଲା । ତେବେ ବର୍ତ୍ତମାନ ଆଉ ତା'ର ପ୍ରୟୋଜନ ନାହିଁ । ତେଣୁ ଫେରାଇ ଦେଉଛି ।

ହାମଲେଟ୍ କହେ - ଦିନେ ମୁଁ ତମକୁ ଭଲ ପାଇଥିଲି ।

-ଅନ୍ତତଃ ସେଇ କଥା ବିଶ୍ୱାସ କରିବାକୁ  ଆପଣ ମୋତେ ବାଧ କରିଥିଲେ ।

- ତେବେ ମୋତେ ତୁମେ ବିଶ୍ୱାସ ନ କରିବା ଉଚିତ ଥିଲା । ମୁଁ ତୁମକୁ ଭଲ ପାଉ ନ ଥିଲି । ମୁଁ ତେବେ ପ୍ରତାରିତ ହୋଇଥିଲି ?

ହଠାତ୍ ପ୍ରସଙ୍ଗ ବଦଳାଇ ହାମଲେଟ୍ କହେ - ତମେ ବରଂ କୌଣସି ମଠରେ ଯାଇ ରହ । ଖାଲିଟାରେ ଗୁଡ଼ାଏ ପାପୀଙ୍କୁ  ଜନ୍ମଦେବ କାହିଁକି  ? ସମସ୍ତେ ଖରାପ, କାହାକୁ ବିଶ୍ୱାସ କର ନାହିଁ । ତା'ପରେ  ପଚାରେ - ତମର ବାପା କାହାନ୍ତି  ?

-ଘରେ  ଅଛନ୍ତି ।

- ତମେ ତାଙ୍କୁ ଘରେ ବନ୍ଦ କରି ରଖ । ବାହାରେ ସେ ମୂର୍ଖ ଭଳି ଆଚରଣ କରନ୍ତି । ହାମଲେଟ୍ କହିଚାଲେ-ମୁଁ ତମର ବେଶଭୂଷାର କଥା ଶୁଣିଛି । ଈଶ୍ୱର ତମମାନଙ୍କୁ  ଗୋଟାଏ ପ୍ରକାରର ମୁହଁ ଦେଇଛନ୍ତି, ଆଉ ତମେ ତାକୁ ଅନ୍ୟ ପ୍ରକାରେ ବଦଳାଇ ଦିଅ । ମଠହିଁ ତମର ଉପଯୁକ୍ତ ସ୍ଥାନ -ଏହା କହି ହାମଲେଟ୍ ଚାଲିଯାଏ ।

ଅଫେଲିଆ ଦୁଃଖ କରେ । କିଭଳି ମଣିଷର କି ପରିଣତି । ଦିନେ ସେ ଥିଲେ ପୁରୁଷ ସମାଜର ଆଦର୍ଶ । ମୁଁ ଏମିତି ହତଭାଗୀ ଯେ ମୁଁ ତାଙ୍କୁ ହାତରେ ପାଇ ମଧ ହରାଇଛି ।

ରାଜା ଓ ପଲୋନିୟସ୍ ଆସନ୍ତି । ରାଜା କହନ୍ତି - ହାମଲେଟ୍‌ର କଥାରେ ହୁଏତ ସଂଗତିର କିଛି ଅଭାବ ଅଛି । ମାତ୍ର ପାଗଳାମି ଭଳି ତ ମନେ ହେଲା ନାହିଁ । ତା' ମନଭିତରେ ଏଭଳି କିଛି ରହିଛି ଯେଉଁଥିପାଇଁ ସେ ଦୁଃଖ - ବ୍ୟାଧିରେ ଭୋଗୁଛି । ତାକୁ ବରଂ ମୁଁ ଇଂଲଣ୍ଡ ପଠାଇଦେବି । ସେଠାରେ ସେ ଆମର ପାଉଣା- ପତ୍ର ଆଦାୟର ବ୍ୟବସ୍ଥା ଦେଖିବ । ପରିବେଶ ବଦଳିଲେ ତା'ର ମନ ହୁଏତ ବଦଳିଯିବ । ତମେ କ'ଣ ମନେ କରୁଛ ?

ପଲୋନିୟସ୍ କହନ୍ତି - ଭଲ ହେବ ବୋଲି ତ ମନେ ହେଉଛି । ଉପେକ୍ଷିତ ପ୍ରେମରୁ ତାଙ୍କର ଏଇ ଦୁଃଖର ଆରମ୍ଭ । ଅଫେଲିଆକୁ କହନ୍ତି - ତମ ଦୁହିଁଙ୍କ କଥା ଆଉଥରେ କହିବାକୁ ହେବ ନାହିଁ । ଅନ୍ତରାଳରୁ ଆମେ ସବୁ ଶୁଣିଛୁ । ସମ୍ରାଟ୍, ଆପଣ ଯାହା ଉଚିତ ମନେ କରୁଛନ୍ତି ସେଇଆ କରନ୍ତୁ । ତେବେ ମୋ ମତରେ ରାଣୀ ତାଙ୍କ ସହିତ ଥରେ କଥାବାର୍ତ୍ତା ହେଲେ ହୁଏତ ଏ ଦୁଃଖର କାରଣଟା ଜାଣିପାରନ୍ତେ । ଆପଣ ଅନୁମତି ଦେଲେ - ମୁଁ ଅନ୍ତରାଳରେ ଥାଇ ଦୁହିଁଙ୍କର କଥା ଶୁଣିବି । ଯଦି ରାଣୀ କିଛି ଜାଣି ନ ପାରନ୍ତି ତେବେ ଆପଣ ତାଙ୍କୁ ଇଂଲଣ୍ଡ ପଠାନ୍ତୁ କି ଆଉ କେଉଁଠିକି ପଠାନ୍ତୁ ଯାହା କରିବାର କରିବେ ।

ରାଜା ସମ୍ମତ ହୋଇ କହନ୍ତି, ସେଇଆ କରିବା । ଭଲକରି ନ ବୁଝି ହଠାତ୍ କୌଣସି ସିଦ୍ଧାନ୍ତ ନେବା ଠିକ୍ ନୁହେଁ ।

ଅଭିନୟ ପୂର୍ବରୁ ହାମଲେଟ୍ ଅଭିନେତାମାନଙ୍କୁ ବୁଝାଉଥାନ୍ତି - ଦେଖ, ମୁଁ ଯେମିତି ଉଚ୍ଚାରଣ କରୁଛି ତମେମାନେ ସେଇଭଳି କରିବ । ହାତ ବେଶି ହଲାଇବ ନାହିଁ । ହଲାଇଲେ ବି ଧୀରେ ଧୀରେ । ବେଶି ନିରୀହ ଅଭିନୟ ବି ଭଲ ନୁହେଁ । ନିଜର ବିଚାର ବୁଦ୍ଧି ଖଟାଇବ । ଅଙ୍ଗଭଙ୍ଗୀ ସଂଳାପ ଅନୁଯାୟୀ ହେବା ସ୍ୱାଭାବିକ ଅଭିନୟରେ 'ଅତି'ଟା ଭଲ ନୁହେଁ ।

ଅଭିନେତାମାନେ କହନ୍ତି -କୁମାର , ଆପଣଙ୍କ କଥାରେ ଆମର ଦୋଷତ୍ରୁଟି ଅନେକ ଦୂର ହୋଇଯାଇଛି ।

- ତ୍ରୁଟି ଆଦୌ ରହିବା ଉଚିତ ନୁହେଁ । କେବଳ ହସାଇବା ନାଟକର ଲକ୍ଷ୍ୟ ନୁହଁ । ଏଇ ନାଟକରେ କିଛି ଗଭୀର ପ୍ରଶ୍ନ ରହିଛି ଯାହା ଦର୍ଶକମାନଙ୍କୁ ଚିନ୍ତାର ଖୋରାକ୍ ଯୋଗାଇବ ।

ଅଭିନେତାମାନଙ୍କୁ ପ୍ରସ୍ତୁତ ହେବାକୁ କହି ହାମଲେଟ୍ ହୋରାସିଓକୁ ଅଭିନୟର ପ୍ରକୃତ ଉଦ୍ଦେଶ୍ୟ ସମ୍ପର୍କରେ କହନ୍ତି । ତାକୁ ନିର୍ଦ୍ଦେଶ ଦିଅନ୍ତି, ରାଜାଙ୍କୁ ବିଷ ଦେବା ଦୃଶ୍ୟରେ ସେ ଯେମିତି କାକାଙ୍କର ପ୍ରତିକ୍ରିୟା ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖେ । ଦୃଶ୍ୟଟାକୁ ସେ କେମିତି ଗ୍ରହଣ କରୁଛନ୍ତି ତା'ବୁଝିବାକୁ ଚେଷ୍ଟା କରେ ।

ରାଜାରାଣୀ ଆସନ୍ତି । ରାଜା ହାମଲେଟ୍‌କୁ କୁଶଳ ପ୍ରଶ୍ନ ପଚାରନ୍ତି । ଉତ୍ତରରେ ହାମଲେଟ୍ ତାର ପାଗଳାମି ବଜାୟ ରଖେ । ତା'ପରେ ପଲୋନିୟସ୍ କୁ ପଚାରେ - ଆପଣ

ଥରେ ବିଶ୍ୱବିଦ୍ୟାଳୟରେ ଅଭିନୟ କରିଥିଲେ , ନୁହେଁ ? ପଲୋନିୟସ୍ କହନ୍ତି ସେତେବେଳେ ଭଲ ଅଭିନେତା ଭାବରେ ମୋର ସୁନାମ ଥିଲା ।

-କେଉଁ ଭୂମିକାରେ ଅଭିନୟ କରିଥିଲେ ?

-ଜୁଲିୟସ ସିଜରଙ୍କ ଭୂମିକାରେ । ମୋତେ ହତ୍ୟା କରାଯାଏ । ବ୍ରୁଟସ୍ ଏହି କାମଟି କରେ । ରାଣୀ ହାମଲେଟ୍‌କୁ ଡାକନ୍ତି । ପାଖରେ ବସିବାକୁ କହନ୍ତି । ଅଫେଲିଆକୁ ଦେଖାଇ ହାମଲେଟ୍ କହେ, ନା, ମା ବରଂ ତା'ର ସାହଚର୍ଯ୍ୟ ଅଧିକ ଆକର୍ଷଣୀୟ । ପଲୋନିୟସ୍ ଉତ୍ସାହର ସହିତ ରାଜାଙ୍କର ଦୃଷ୍ଟି ଆକର୍ଷଣ କରି କହନ୍ତି - ଦେଖୁଛନ୍ତି ତ ମହାରାଜ !

ହାମଲେଟ୍ ଅଫେଲିଆ ପାଖକୁ ଯାଇ କହେ - ମୁଁ ତମ କୋଳରେ ଶୋଇବି । ଭୟପାଇ ନା'ନା' କହି ଅଫେଲିଆ ଦୂରକୁ ଘୁଞ୍ଚିଯାଏ ।

-ମୁଁ କେବଳ ମୋର ମଥାଟା ତମ କୋଳରେ ରଖିବି ।

ଅଫେଲିଆ ବାଧ ହୋଇ ରାଜି ହୁଏ । ହାମଲେଟ୍ ଏଣୁ ତେଣୁ କଥା କହିଚାଲେ ।

'ଗୋଲଞ୍ଜାର ହତ୍ୟାକାଣ୍ଡ ' -ନାଟକ ଆରମ୍ଭ ହୁଏ । ପ୍ରଥମେ ଏକ ରାଜଦମ୍ପତିଙ୍କର ପ୍ରେମ- ସମ୍ପର୍କର ଦୃଶ୍ୟ ଅଭିନୀତ ହୁଏ । ତା'ପରେ ପ୍ରବେଶ କରେ ଖଳନାୟକ ଆନନ୍ । ରାଜା ସତେବେଳେ ସୁପ୍ତ । ଆନନ୍ ରାଜାଙ୍କର ମୁକୁଟ ଖୋଲି ପାଖରେ ରଖେ । ତାପରେ ବିଷ ବାହାର କରି ରାଜାଙ୍କ କାନରେ ଢାଳିଦେଇ ଚାଲିଯାଏ । ରାଣୀ ଆସି ମୃତ ରାଜାଙ୍କୁ ଦେଖି ଶୋକରେ ଅଧୀର ହୋଇପଡ଼ନ୍ତି । ଖଳନାୟକ ପୁଣି ଆସେ । ରାଣୀଙ୍କୁ ସାନ୍ତ୍ୱନା ଦିଏ । ମୃତ ଦେହ ବାହାର କରି ନିଆଯାଏ । ଖଳନାୟକ ନାନା ଉପହାର ଦେଇ ରାଣୀଙ୍କୁ ଖୁସି କରିବାକୁ ଚେଷ୍ଟା କରେ । ରାଣୀ ପ୍ରଥମେ କଠୋର ହେଲେ ମଧ ପରେ ତାର ଭଲ ପାଇବାକୁ ସ୍ୱୀକାର କରି ନିଅନ୍ତି ।

ଅଭିନୟ ଦେଖି ଅଫେଲିଆ କୌତୂହଳୀ ହୋଇ ଉଠେ । ହାମଲେଟ୍ ତାର ଛୋଟ ଛୋଟ ପ୍ରଶ୍ନର ଉତ୍ତର ଦିଏ । ପୁଣି ଅଭିନୟ ଆରମ୍ଭ ହୁଏ । ହାମଲେଟ୍ ରାଣୀଙ୍କୁ ପଚାରେ - ମାଆ, ନାଟକ କେମିତି ଲାଗୁଛି ? ସ୍ୱାଭାବିକ ଭାବେ ରାଣୀ ଉତ୍ତର ଦିଅନ୍ତି - ପ୍ରେମର ଅଭିନୟରେ ନାୟିକା ସୀମା ଅତିକ୍ରମ କରିଯାଉଛି ।

ରାଜା କିନ୍ତୁ ଭିତରେ ଭିତରେ ଅସ୍ଥିର ହୋଇ ପଡ଼ନ୍ତି । ହାମଲେଟ୍ ତାଙ୍କୁ ଶ୍ଳେଷର ସହିତ କହେ- ଏତ ଅଭିନୟ ମାତ୍ର । ବାସ୍ତବ ଦୁନିଆରେ ମନ୍ଦ ବୋଲି କିଛି ନାହିଁ ।

ଅଭିନୟ ଆଗେଇ ଚାଲେ । ରାଜା ଆଉ ସହ୍ୟ କରିପାରନ୍ତି ନାହିଁ । ଉଠିପଡ଼ନ୍ତି । ଚିତ୍କାର କରି କହନ୍ତି - ଆଲୁଅ ଦେଖାଅ - ମୁଁ ଚାଲିଯିବି ।

ପଲୋନିୟସ୍ ଚିତ୍କାର କରନ୍ତି - ଆଲୁଅ-ଆଲୁଅ -ଆଣ

ସମସ୍ତେ ଉଠି ଚାଲିଯାଆନ୍ତି । ହାମଲେଟ୍ ଆଉ ହୋରାସିଓ ରହିଯାଆନ୍ତି । ହାମଲେଟ ଖୁସି । କାରଣ ତାର ପରିକଳ୍ପନା ସଫଳ ହୋଇଛି । ସତ୍ୟ ଆବିଷ୍କୃତ ହୋଇଛି । ହୋରାସିଓକୁ ପଚାରେ -ତମେ ଦେଖିଲତ ?

-ଦେଖିଚି ହାମଲେଟ୍ ।

-ବିଷ ପ୍ରୟୋଗର ଦୃଶ୍ୟ ।

-ଖୁବ୍ ଭଲକରି ଲକ୍ଷ୍ୟ କରିଛି ।

ଅନେକ ଦିନ ପରେ ହାମଲେଟ୍ ପ୍ରାଣ ଖୋଲି ହସିଉଠେ । ପାଟିକରି କହେ - ବାଦ୍ୟକାରଗଣ, ବଜାଅ - ଖୁବ୍ ଜୋର୍‌ରେ ବାଦ୍ୟ ବଜାଅ । ରାଜାଙ୍କୁ ନାଟକ ଭଲ ଲାଗି ନାହିଁ - 'କିଛି ବାଜଣା ଚାଲୁ । '

ସଭାସଦ୍‌ମାନଙ୍କଠାରୁ ଖବର ମିଳେ ଯେ ରାଜା ଅସୁସ୍ଥ ହୋଇ ପଡ଼ିଛନ୍ତି ।

- ବୋଧହୁଏ ଅତିରିକ୍ତ ମଦ୍ୟପାନ ହେତୁ ହାମଲେଟ୍ ଶ୍ଳେଷପୂର୍ଣ୍ଣ କଣ୍ଠରେ କହେ ।

- 'ନା କ୍ରୋଧରେ ଉନ୍ମତ୍ତ ହୋଇଥିବା ହେତୁ ।' ଉତ୍ତର ମିଳେ ।

- ଖବରଟା ଏଠି ମୋତେ ନ ଦେଇ ତାଙ୍କର ଚିକିତ୍ସକମାନଙ୍କୁ ଦେଲେ ବୋଧହୁଏ ଭଲ ହୁଅନ୍ତା ।' କାରଣ ମୁଁ ତାଙ୍କୁ ସୁସ୍ଥ କରିବାକୁ ଗଲେ, ସେ ଆହୁରି ରାଗିଯିବେ ।' ହାମଲେଟ୍ ଗଳାରେ ତଥାପି ଶ୍ଳେଷ ।

ଜଣେ ସଭାସଦ୍ କହନ୍ତି - ଆପଣ ନିଜେ ଏତେ ଉତ୍ତେଜିତ ହେଉଛନ୍ତି କାହିଁକି ? ସ୍ଥିର ହୋଇ ଆମ କଥା ଶୁଣନ୍ତୁ । ରାଣୀ ଆମକୁ ଆପଣଙ୍କ ପାଖକୁ ପଠାଇଛନ୍ତି ।

- ଭଲକଥା, ଶୁଣୁଛି । କହନ୍ତୁ ।

- ଶୋଇବା ପୂର୍ବରୁ ରାଣୀ ଆପଣଙ୍କ ସାଙ୍ଗେ ଦେଖାକରିବାକୁ ଚାହାନ୍ତି ।

ହାମଲେଟ୍ କହେ - ବେଶ୍ ଦେଖା କରିବି । ମୋ ସାଙ୍ଗରେ ଆପଣମାନଙ୍କର ଆଉ କିଛି କାମ ଅଛି ?

ହାମଲେଟ୍‌ର ଏଇ ରୂଢ଼ ବ୍ୟବହାର ସଭାସଦ୍‌ଙ୍କୁ ଆହତ କରେ । ଜଣେ କହନ୍ତି - ଗୋଟିଏ ସମୟରେ ଆପଣ ଆମ ସାଙ୍ଗରେ ଭଲ ବ୍ୟବହାର କରୁଥିଲେ । ହଠାତ୍ ଏଇ ମନ ବଦଳିଯିବାର କାରଣ କ'ଣ ଜାଣିପାରୁକି ? ହାମଲେଟ୍ କିଛି ଉତ୍ତର ଦିଏ ନାହିଁ ।

ପଲୋନିୟସ୍ ଆସି କହନ୍ତି - ରାଣୀ ବର୍ତ୍ତମାନ ଆପଣଙ୍କ ସହିତ ଦେଖା କରିବାକୁ ଚାହାନ୍ତି । ହାମଲେଟ୍‌ର ପାଗଳାମି ବଢ଼ିଯାଏ । ରାଣୀଙ୍କ ସହିତ ଦେଖା କରିବାକୁ ସେ ରାଜି ହୁଏ ।

ହାମଲେଟ୍‌ର କ୍ରୋଧ ଓ ଦୁଃଖର କାରଣ ବର୍ତ୍ତମାନ ରାଜାଙ୍କ ନିକଟରେ ସ୍ପଷ୍ଟ । ସେ ଜାଣନ୍ତି ହାମଲେଟ୍ ବର୍ତ୍ତମାନ ତାଙ୍କ ଜୀବନପାଇଁ ବିପଜ୍ଜନକ । ସେ ଯଥାଶୀଘ୍ର ତାକୁ ଇଂଲଣ୍ଡ

ପଠାଇବାକୁ ଚାହାନ୍ତି । ସାଙ୍ଗରେ ଯିବେ ପୂର୍ବର ଦୁଇ ସଭାସଦ୍ । ତାଙ୍କର ପ୍ରକୃତ ଉଦ୍ଦେଶ୍ୟ - ଏଇମାନଙ୍କ ଦ୍ୱାରା ସେ ହାମଲେଟ୍‌କୁ ହତ୍ୟା କରିବେ ।

ପଲୋନିୟସ୍ ଆସି ଜଣାନ୍ତି - ହାମଲଟ୍ ବର୍ତ୍ତମାନ ରାଣୀଙ୍କ ସହିତ ଦେଖା କରିବାକୁ ଯାଉଛନ୍ତି । ମୁଁ ପର୍ଦ୍ଦା ଆଢୁଆଳରେ ରହି ସେମାନଙ୍କ କଥା ଶୁଣିବି । ଆପଣ ଶୋଇବାକୁ ଯିବା ପୂର୍ବରୁ ସବୁ ଜଣାଇଯିବି ।

ରାଜା ଅପରାଧବୋଧରେ ଜର୍ଜରିତ । ସେ ଜାଣନ୍ତି ତାଙ୍କର ହାତ ଭ୍ରାତୃରକ୍ତ ଲିପ୍ତ । ଏ କଳଙ୍କକୁ ପ୍ରଳୟର ବର୍ଷା ମଧ ଧୋଇପାରିବ ନାହିଁ । ଯେଉଁଥିପାଇଁ ତାଙ୍କର ଏଇ ଅପରାଧ; ତାହା ବର୍ତ୍ତମାନ ବିପନ୍ନ । ରାଜମୁକୁଟ, ରାଣୀ - ସବୁ ହୁଏତ ତାଙ୍କ ହାତରୁ ଚାଲିଯିବ । ଏହାର ସୁରକ୍ଷା ପାଇଁ ତାଙ୍କୁ ଆହୁରି ଅପରାଧ କରିବାକୁ ହେବ । ପାପ ମୁକ୍ତିପାଇଁ ସେ ପ୍ରାର୍ଥନା କରିବାକୁ ବସନ୍ତି । ଏତିକିବେଳେ ହାମଲେଟ୍ ପ୍ରବେଶ କରେ । ପ୍ରାର୍ଥନାରତ ରାଜାଙ୍କୁ ଦେଖି ସେ ଭାବେ,ଏଇ ହେଉଛି ପିତୃହତ୍ୟା ନିମନ୍ତେ ପ୍ରତିଶୋଧ ନେବା ପାଇଁ ଉପଯୁକ୍ତ ସମୟ । ତରବାରିର ଗୋଟାଏ ଚୋଟରେ ତାଙ୍କୁ ପରଲୋକକୁ ପଠାଇ ଦେଇ ହେବ । ହାମଲେଟ୍ ତଥାପି ନିଜକୁ ସମ୍ଭାଳି ନିଏ । ପ୍ରାର୍ଥନା କରୁ କରୁ ମୃତ୍ୟୁ ହେଲେ ଏଇ ପାପୀ ତ ସ୍ୱର୍ଗକୁ ଯିବ । ତେଣୁ ଏ ସମୟରେ ନୁହେଁ । ଅନ୍ୟ କୌଣସି ସମୟ —ଯେତେବେଳେ କି ଇଏ ଅନ୍ୟ କୌଣସି କୁକୀର୍ତ୍ତିରେ ରତ ଥିବ, ସେତିକିବେଳେ ତାକୁ ହତ୍ୟା କରିବାକୁ ହେବ । ତହିଁରେ ତା'ର ନରକ ଗତି ହିଁ ହେବ ।

ହାମଲେଟ୍ ମା'ଙ୍କୁ ଦେଖା କରିବାକୁ ଡାକିଡାକି ଆସେ । ପଲୋନିୟସ୍ ପର୍ଦ୍ଦା ଅନ୍ତରାଳରେ ଆତ୍ମଗୋପନ କରନ୍ତି । ହାମଲେଟ୍ ଆସି ତାକୁ ଡକାଇ ପଠାଇବାର କାରଣ ଜାଣିବାକୁ ଚାହେଁ । ରାଣୀ କହନ୍ତି — ତୁ ବାବାଙ୍କ ମନରେ ଖୁବ୍ ଦୁଃଖ ଦେଇଛୁ । ହାମଲେଟ୍ କହେ —ତମେ ବି ତ ମୋର ବାବାଙ୍କର ମନରେ କମ୍ ଦୁଃଖ ଦେଇ ନାହଁ ।

- ଏଇଟା ମୋ ପ୍ରଶ୍ନର ଉତ୍ତର ନୁହେଁ - ରାଣୀ କହନ୍ତି ।

- ତମ ପ୍ରଶ୍ନର ଉତ୍ତର ତମ ଭିତରେ ହିଁ ଅଛି ।

- ମୋ ସହିତ ଏଭଳି ବ୍ୟବହାର କରିବାର ଅର୍ଥ ?

କଥାରୁ କଥା ବଢ଼େ । ହାମଲେଟ୍ ସହିତ ରାଣୀ ମଧ ଉତ୍ତେଜିତ ହୋଇଉଠନ୍ତି । କହନ୍ତି - କ'ଣ କରିବାକୁ ଚାହୁଁ ତୁ ? ମୋତେ ମାରିବାକୁ ଚାହୁଁ ? ହାମଲେଟ୍ କିଛି କହିବା ପୂର୍ବରୁ ରାଣୀ ହଠାତ୍ 'ରକ୍ଷାକର, ରକ୍ଷାକର' ବୋଲି ଚିତ୍କାର କରି ଉଠନ୍ତି । କ'ଣ ହୋଇଛି କିଛି ବୁଝି ନ ପାରି ପର୍ଦ୍ଦା ପଛପଟେ ଲୁଚିଥିବା ପଲୋନିୟସ୍ ମଧ ଭୟ ପାଇଯାଇ 'ରକ୍ଷାକର, ରକ୍ଷାକର' ବୋଲି ପାଟି କରି ଉଠନ୍ତି ।

ତୀବ୍ର ଉତ୍ତେଜନାରେ ହାମଲେଟ୍ ନିଜର ତରବାରି ବାହାର କରି ପର୍ଦ୍ଦା ପଛପଟରୁ ଆସୁଥିବା ଶବ୍ଦ ଲକ୍ଷ୍ୟ କରି ଭୁସିଦିଏ । ପର୍ଦ୍ଦା ପଛପଟରୁ ପଲୋନିୟସ୍‌ଙ୍କର ଆର୍ତ୍ତନାଦ ଶୁଣାଯାଏ । ରାଣୀ କହନ୍ତି — ଏ ତୁ କ'ଣ କଲୁ ହାମ୍‌ଲେଟ୍ ?

ହାମଲେଟ୍ ଉତ୍ତର ଦିଏ - ଜାଣେନା । ତା'ପରେ କିଛି ସମୟ ପରେ ପଚାରେ - ସେ କ'ଣ ରାଜା ?

ରାଣୀ କାନ୍ଦୁ କାନ୍ଦୁ କହନ୍ତି - କ'ଣ ତୁ କଲୁ ! ଏଭଳି ରକ୍ତାକ୍ତ କାଣ୍ଡ ...

- ରାଜାଙ୍କୁ ମାରି ତାଙ୍କର ଭାଇଙ୍କୁ ବିବାହ କରିବା ଭଳି ବ୍ୟାପାର - ନୁହେଁ ? ହାମଲେଟ୍ କଣ୍ଠରେ ଶ୍ଳେଷ ।

- ରାଜାଙ୍କୁ ମାରି !!

- 'ସେଇ କଥା ତ କହୁଛି ।' ପର୍ଦ୍ଦା ଘୁଞ୍ଚାଇ ହାମଲେଟ୍ ଦେଖେ ମୃତ ବ୍ୟକ୍ତି ପଲୋନିୟସ୍ । ଅବିଚଳିତ ଭାବେ ସେ କହେ - ପଲୋନିୟସ୍ ! ମୁଁ ତମକୁ ରାଜା ବୋଲି ଭାବିଥିଲି । ଯାହାହେଉ, ଯାହା ତମର ଭାଗ୍ୟରେ ଥିଲା ତାହାହିଁ ହୋଇଛି ।

ଟିକିଏ ରହି କାନ୍ଦକାନ୍ଦ ଗଳାରେ ରାଣୀ ହାମଲେଟ୍‌କୁ କହନ୍ତି - ମୁଁ ଏମିତି କ'ଣ କରିଛି ଯେ, ତୁ ମୋତେ ଯାହା ତୋ'ର ପାଟିକୁ ଆସୁଛି, ତାହା କହିଯାଉଛୁ ! ମୋ ପ୍ରତି ଏଭଳି ନିଷ୍ଠୁର ବ୍ୟବହାର କରିବାର ଅର୍ଥ କ'ଣ ?

ହାମଲେଟ୍ କଠୋର ଭାବେ ରାଣୀଙ୍କୁ ଦୋଷ ଦେଇ ଚାଲେ । କିନ୍ତୁ ରାଣୀ କିଛି ବୁଝି ନ ପାରି ପୁଣି ପ୍ରଶ୍ନ କରନ୍ତି —ମୁଁ କ'ଣ କରିଛି ?

ହାମଲେଟ୍‌ର କଥାରୁ ସ୍ପଷ୍ଟ କିଛି ବୁଝାଯାଏ ନାହିଁ । ରାଣୀ ଅନୁନୟ କରି କହନ୍ତି - ହାମଲେଟ୍ ଆଉ କିଛି କହନା । ତୋ'ର କଥା ଛୁରୀ ଭଳି ମୋତେ ଆଘାତ ଦେଉଛି । ହାମଲେଟ୍ ତଥାପି କହିଚାଲେ ।

ଏଭଳି ସମୟରେ ହାମଲେଟ୍‌ର ପିତାଙ୍କର ପ୍ରେତର ଆବିର୍ଭାବ ହୁଏ । ତେବେ ହାମଲେଟ୍ କେବଳ ତାଙ୍କୁ ଦେଖିବାକୁ ପାଏ । ତାଙ୍କୁ ଉଦ୍ଦେଶ୍ୟ କରି ହାମଲେଟ୍ କହେ - ମୋତେ ତମେ ରକ୍ଷାକର । ରାଣୀ କିଛି ବୁଝି ନ ପାରି ଚିତ୍କାର କରି କହନ୍ତି - ଏ ତ ବଦ୍ଧ ପାଗଳ !

ପ୍ରେତାତ୍ମା ମା'ଙ୍କ ସହିତ ଭଲ ବ୍ୟବହାର କରିବା ନିମନ୍ତେ ହାମଲେଟ୍‌କୁ ଉପଦେଶ ଦିଅନ୍ତି । ରାଣୀ ହାମଲେଟ୍‌କୁ ପଚାରନ୍ତି, ତୁ କାହା ସାଙ୍ଗରେ କଥାବାର୍ତ୍ତା କରୁଛୁ ?

ତମେ କିଛି ଦେଖିପାରୁ ନାହଁ ? ତାଙ୍କ କଥା ଶୁଣିପାରୁ ନାହଁ ?

- ନା' ତ!

- ଦେଖ - ପ୍ରେତାତ୍ମା ଆଡ଼କୁ ହାତ ବଢ଼ାଇ କହେ - ଦେଖ ମୋର ପିତା କିଭଳି ଚୁପ୍‌ଚାପ୍ ମୁଣ୍ଡନୁଆଇଁ ଚାଲିଯାଉଛନ୍ତି । ହେଇ , ସେ ଚାଲିଗଲେ ।

ରାଣୀ ବୁଝାନ୍ତି ... ସେ ତୋର କଳ୍ପନା ହାମଲେଟ୍ ।

- ନା' କଳ୍ପନା ନୁହେଁ । ପାଗଳାମି ବି ନୁହେଁ । ଦେଖ ମୋର ନାଡ଼ି ବି ତମଭଳି ଠିକ୍‌ଠାକ୍ ଚାଲୁଛି । ମା ପାପ ସ୍ୱୀକାର କର । ଯାହା ଘଟିଯାଇଛି ତା'ପାଇଁ ଅନୁତାପ କର । ଯାହା ହେବାକୁ ଯାଉଛି, ତାକୁ ଏଡ଼ାଇଯାଅ । ଅନାବନା ଘାସ ମୂଳରେ ସାର ଦେଇ ତାକୁ ପୁଷ୍ଟ କର ନାହିଁ ।

ଚାପା କାନ୍ଦଣାର ସହିତ ରାଣୀ କହନ୍ତି - ହାମଲେଟ୍, ତୁ ମୋର ମନଭାଙ୍ଗି ଦେଇଛୁ ।

- ମନର ଖରାପ ଅଂଶକୁ କାଢ଼ି ଫୋପାଡ଼ି ଦିଅ ମା । ଅନ୍ୟ ଅଂଶକୁ ନେଇ ପବିତ୍ର ଜୀବନ କଟାଅ । ମୁଁ ଯାହା କରିଛି, ସେଥିପାଇଁ ମୁଁ ଅନୁତାପ କରୁଛି । କିନ୍ତୁ ଏକଥା ମଧ କହୁଛି ଯେ, ତାହା ଈଶ୍ୱରଙ୍କ ଇଛା । ମୋତେ ନିଷ୍ଠୁର ହେବାକୁ ପଡ଼ିବ । ଆଉ ଖରାପ ସମୟ ଦେଖିବାକୁ ମୁଁ ଚାହେନା -

ରାଣୀ କହନ୍ତି - ଏବେ ମୁଁ କ'ଣ କରିବି ?

- ରାଜାଙ୍କୁ ତ୍ୟାଗ କର । ମୁଁ କିନ୍ତୁ ପାଗଳ ନୁହେଁ । ମୋତେ ସେଭଳି ଅଭିନୟ କରିବାକୁ ପଡୁଛି ।

ହାମଲେଟ୍‌ର କଥାରେ ରାଣୀଙ୍କ ହୃଦୟ ତରଳିଯାଏ । କହନ୍ତି, ଜୀବନ ଥିବାଯାଏ ମୁଁ ତୋର କଥା ବାହାରେ ପ୍ରକାଶ କରିବି ନାହିଁ ।

ହାମଲେଟ୍ କହେ - ତମେ ନିଶ୍ଚୟ ଜାଣ ଯେ ମୋତେ ଇଂଲଣ୍ଡ ଯିବାକୁ ହେବ ।

- ମୁଁ ତ ଭୁଲି ଯାଇଥିଲି । ସେ କଥା କ'ଣ ପୂରା ଠିକ୍ ହୋଇଗଲାଣି ?

- ହଁ ମୁଁ ଚିଠି ପାଇଛି । ମୋର ଦୁଇ ସହପାଠୀ ମଧ ଯିବେ । ସେମାନେ ମୋର ଧ୍ୱଂସର ପଥ ପରିଷ୍କାର କରିଦେବେ । ଠିକ୍ ଅଛି , ସେଇଆ ହେଉ ।

ମା'ଙ୍କୁ ଶୁଭରାତ୍ରି ଜଣାଇ ପଲୋନିୟସ୍‌ଙ୍କ ମୃତ ଦେହ ନେଇ ହାମଲେଟ୍ ଚାଲିଯାଏ ।

॥ ୪ ॥

ରାଣୀଙ୍କୁ ଦୀର୍ଘଶ୍ୱାସ ଛାଡ଼ିବାର ଦେଖି ରାଜା କହନ୍ତି, ମନେ ହେଉଛି , କିଛି ଗୋଟାଏ ଘଟିଛି । ତମ ପୁଅ କାହିଁ ?

ରାଣୀ ପୁଣି ଦୀର୍ଘଶ୍ୱାସ ପକାଇ ସେଦିନ ରାତିରେ ହାମଲେଟ୍ ହାତରେ ପଲୋନିୟସ୍‌ଙ୍କର ମର୍ମନ୍ତୁଦ ମୃତ୍ୟୁର କଥା କହନ୍ତି ।

ରାଜା ଆତଙ୍କରେ କହନ୍ତି, କି ଦୁଃଖର କଥା ! ମୁଁ ଯଦି ସେଠି ଥାଆନ୍ତି, ତେବେ ମୋର ମଧ ସେଇ ପରିଣତି ହୋଇଥାଆନ୍ତା । ଏବେ ଏଇ ରକ୍ତକ୍ଷୟୀ ଘଟଣାର କି କୈଫିୟତ୍ ଦେବି ? ଲୋକେ ତ ମୋର ଦୋଷ ଦେବେ । କହିବେ - ସେଭଳି ପାଗଳକୁ ଖୋଲା ଛଡ଼ାଯାଉଥିଲା କାହିଁକି ? ତେବେ ଆମେ ତାକୁ ଏତେ ଭଲ ପାଉ ଯେ, ତା ସମ୍ପର୍କରେ ଯାହା କରାଯିବା କଥା, ତାହା କରାଯାଉ ନାହିଁ । କିନ୍ତୁ ସେ ଗଲା କୁଆଡ଼େ ? ରାଣୀ କହନ୍ତି ସମ୍ଭବତଃ ସେ ମୃତଦେହର ବ୍ୟବସ୍ଥା କରିବା ପରେ ଏବେ ଅନୁତପ୍ତ ହୋଇ କାନ୍ଦୁଛି ।

ରାଜା କହନ୍ତି - ଦେଖ ରାଣୀ , ସନ୍ଧ୍ୟା ହୋଇ ଆସୁଛି । ଆମେ ବର୍ତ୍ତମାନ ତାକୁ ଜାହାଜରେ ଚଢ଼ାଇ ଦେବା । ତା'ପରେ ସମସ୍ତ ବୁଦ୍ଧି ଖଟାଇ ପ୍ରଜାମାନଙ୍କର ମୁହାଁମୁହିଁ ହେବାକୁ ପଡ଼ିବ ।

ହାମଲେଟ୍‌ର ଦୁଇ ସହପାଠୀ ସଭାସଦ୍‌ଙ୍କୁ ଡକାଇ ରାଜା କହନ୍ତି -ହାମଲେଟ୍ ପାଗଳ ଅବସ୍ଥାରେ ପଲୋନିୟସ୍‌ଙ୍କୁ ହତ୍ୟା କରିଛି । ତାକୁ ଖୋଜି ବାହାର କର । ତାକୁ ଯେକୌଣସିମତେ ବୁଝାବୁଝି କରି ତା'ଠାରୁ ପଲୋନିୟସ୍‌ଙ୍କର ଦେହଟାକୁ ଉଦ୍ଧାର କର । ଶୁଣ ରାଣୀ, ଯାହା ଘଟିଯାଇଛି, ଆଉ ମୁଁ ଯାହା କରିବାକୁ ଯାଉଛି - ସବୁ କଥା ବନ୍ଧୁମାନଙ୍କୁ କହିବାକୁ ପଡ଼ିବା କି ଅଶାନ୍ତି ଯେ ପିଲାଟା ସୃଷ୍ଟି କଲା !

ସହପାଠୀଦ୍ୱୟ ଦୁର୍ଗର ଗୋଟିଏ ସ୍ଥାନରେ ହାମଲେଟ୍‌କୁ ଭେଟିବା ପରେ ତାକୁ ପଲୋନିୟସ୍‌ଙ୍କ ମୃତ ଦେହ ସମ୍ପର୍କରେ ପଚାରନ୍ତି । ହାମଲେଟ୍‌ର ଉତ୍ତରରୁ କଥାଟା ସ୍ପଷ୍ଟ ହୁଏ ନାହିଁ କିମ୍ବା ମୃତ ଦେହ ମଧ ମିଳେ ନାହିଁ । ତେବେ ହାମଲେଟ୍ ରାଜାଙ୍କ ପାଖକୁ ଯିବା ପାଇଁ ରାଜି ହୋଇଯାଏ ।

ରାଜା ତାଙ୍କର ବିଶ୍ୱସ୍ତ ବନ୍ଧୁମାନଙ୍କୁ ଜଣାଇ ଦିଅନ୍ତି ଯେ, ସେ ହାମଲେଟ୍‌କୁ ଇଂଲଣ୍ଡ ପଠାଇ ଦେବାପାଇଁ ସ୍ଥିର କରିଛନ୍ତି । ଜନତା ଅବଶ୍ୟ ହାମଲେଟ୍‌କୁ ଭଲ ପାଆନ୍ତି, କିନ୍ତୁ ସେ ଯେଉଁ ଅପରାଧ କରିଛି, ତା' କଥା ବିଚାର କରି ଏବଂ ପରିସ୍ଥିତିକୁ ନିୟନ୍ତ୍ରଣ କରିବାର ଅଭିପ୍ରାୟରେ ତାଙ୍କୁ ଏଭଳି କଠୋର ନିଷ୍ପତ୍ତି ନେବାକୁ ହେଉଛି । ରୋଗ ବଢ଼ିଗଲେ ଅସ୍ତ୍ରୋପଚାର ଦ୍ୱାରା ତାକୁ ଭଲ କରିବାକୁ ହୁଏ । ସହପାଠୀଙ୍କ ସହ ହାମଲେଟ୍ ଆସେ । ରାଜା ତାକୁ ପଲୋନିୟସ୍‌ଙ୍କ ମୃତ ଦେହ ବିଷୟ ପଚାରନ୍ତି । ହାମଲେଟ୍ କଥାରୁ କିଛି ସ୍ପଷ୍ଟ ହୁଏ ନାହିଁ । ରାଜା କହନ୍ତି - ତମର କାର୍ଯ୍ୟ ପାଇଁ ତ ଆମେ ସବୁ ଦୁଃଖିତ । ତମର ନିରାପତ୍ତା ପାଇଁ ମଧ ଚିନ୍ତିତ । ସେଥିପାଇଁ ତମକୁ ଇଂଲଣ୍ଡ ପଠାଇ ଦେବାର ନିଷ୍ପତ୍ତି ନିଆଯାଉଛି । ଜାହାଜ ପ୍ରସ୍ତୁତ ଅଛି, ଅନୁକୂଳ ପବନ ବି ବହୁଛି । ତା'ଛଡ଼ା ତମର ସହପାଠୀ ମଧ ପ୍ରସ୍ତୁତ ଅଛନ୍ତି । ତମେ ଏବେ ଯାତ୍ରା ଆରମ୍ଭ କରିପାର ।

ହାମଲେଟ୍ ପ୍ରତିବାଦ ନ କରି ଚାଲିଯାଏ । ରାଜା ତାଙ୍କର ଅନୁଚରମାନଙ୍କୁ ଯେକୌଣସିମତେ ହାମଲେଟ୍‌କୁ ବୁଝାଇ ଜାହାଜରେ ଉଠାଇ ଦେବାପାଇଁ ଆଦେଶ ଦିଅନ୍ତି ।

ସମସ୍ତେ ଚାଲିଯିବା ପରେ ରାଜା ଚିନ୍ତା କରନ୍ତି । ଇଂଲଣ୍ଡ ରାଜାଙ୍କର ଯଦି ତାଙ୍କପ୍ରତି ସାମାନ୍ୟ ଭୟ ଥାଏ, ତେବେ ସେ ତାଙ୍କର ଆଦେଶ ନିଶ୍ଚୟ ପାଳନ କରିବେ । ସେ ଯେଉଁ ପତ୍ର ତାଙ୍କୁ ଲେଖିଛନ୍ତି, ତହିଁରେ ସେ ହାମଲେଟ୍‌କୁ ହତ୍ୟା କରିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି । ରାଜା ଭାବନ୍ତି ବର୍ତ୍ତମାନ ପରିସ୍ଥିତିରେ ହାମଲେଟ୍‌ର ଅପସାରଣ ଏବଂ ମୃତ୍ୟୁ ହିଁ କେବଳ ତାଙ୍କର ମାନସିକ ଶାନ୍ତି ଫେରାଇ ଆଣିପାରିବ ।

ସୈନ୍ୟ ସହିତ ଫର୍ଟିନ୍‌ବ୍ରାସ୍ ଡେନ୍‌ମାର୍କରେ ପହଞ୍ଚିଯାଆନ୍ତି । ପୋଲାଣ୍ଡ ବିରୋଧରେ ହେଉଥିବା ଅଭିଯାନରେ ତାଙ୍କୁ ଡେନ୍‌ମାର୍କ ଭିତରି ଦେଇ ସୈନ୍ୟଚାଳନା କରିବାକୁ ହେବ । ଏ ସମ୍ପର୍କରେ ସେ ରାଜାଙ୍କ ସହିତ ଆଲୋଚନା କରିବାକୁ ଚାହାନ୍ତି । ଜଣେ ସେନାପତିଙ୍କୁ ସେ ରାଜାଙ୍କ ସହିତ ଦେଖା କରିବାକୁ ଆଦେଶ ଦିଅନ୍ତି । ତେବେ ତା'ପୂର୍ବରୁ ସେଠାରେ ଆସି ଉପସ୍ଥିତ ହୁଏ ହାମଲେଟ୍ । ତା' ସହିତ ଥାଆନ୍ତି ତା'ର ସହପାଠୀଦ୍ୱୟ । ସେମାନେ ବନ୍ଦର ଆଡ଼େ ଯାଉଛନ୍ତି । ସେନାବାହିନୀ ଆଡ଼େ ଅନାଇ ହାମଲେଟ୍ ଏସବୁ କାହାର ସୈନ୍ୟ ବୋଲି ଜାଣିବାକୁ ଚାହେଁ । ନରୱେର ସେନା ବୋଲି ଜାଣିସାରିବା ପରେ ସେ ସେମାନଙ୍କର ଉଦ୍ଦେଶ୍ୟ ସମ୍ପର୍କରେ ଜାଣିବାକୁ ଚାହେଁ । ସେନାନାୟକ କହନ୍ତି - ସେମାନେ ପୋଲାଣ୍ଡ ଅଭିଯାନରେ ବାହାରିଛନ୍ତି । ସେନାର ନେତୃତ୍ୱ ଗ୍ରହଣ କରିଛନ୍ତି ନରୱେ ରାଜାଙ୍କ ଭ୍ରାତୁଷ୍ପୁତ୍ର ଫର୍ଟିନ୍‌ବ୍ରାସ୍ । ସେମାନଙ୍କର ଲକ୍ଷ୍ୟ ପୋଲାଣ୍ଡର ଏକ ଉସର ଅଞ୍ଚଳର ଅଧିକାର । ପୋଲାଣ୍ଡ ମଧ ନିଜ ଅଞ୍ଚଳର ସୁରକ୍ଷା ପାଇଁ ପ୍ରସ୍ତୁତ ଥିବାର ସମ୍ବାଦ ସେମାନେ ପାଇଛନ୍ତି ।

ହାମଲେଟ୍ ମୃଦୁ ସ୍ୱରରେ କହେ - ଏଇ ସାମାନ୍ୟ ବନ୍ଧ୍ୟାଭୂମି ଖଣ୍ଡ ପାଇଁ ହୁଏତ ଦୁଇହଜାର ଲୋକ ମରିବେ, କୋଡ଼ିଏହଜାର ମୁଦ୍ରା ବ୍ୟୟ ହେବ । ଏ ଅପଚୟ ବନ୍ଦ କରାଯାଇପାରନ୍ତା ନାହିଁ ?

ହାମଲେଟ୍ ଭାବିଚାଲେ - ସମସ୍ତ ପରିସ୍ଥିତି ବର୍ତ୍ତମାନ ମୋର ପ୍ରତିକୂଳ । ମୁଁ ବା ଏଥିପାଇଁ କ'ଣ କରିପାରିବି ? ମଣିଷ କ'ଣ କେବଳ ନିଦ୍ରା ଆଉ ଆହାର ଭିତରେ ଜୀବନ କଟାଇ ଦେବା ପାଇଁ ଜନ୍ମ ହୋଇଛି ? ତା'ହେଲେ ପଶୁ ଆଉ ତା'ଭିତରେ ପାର୍ଥକ୍ୟ କ'ଣ ? ଈଶ୍ୱର ଆମକୁ ବିଚାରବୁଦ୍ଧି, ଦୂରଦୃଷ୍ଟି ଆଉ ଯୁକ୍ତିବୋଧ ଦେଇଛନ୍ତି । ସେ ସବୁ କ'ଣ ଏମିତି ନଷ୍ଟ ହେବା ପାଇଁ ? ମୁଁ ଏବେ ବି ବଞ୍ଚିଛି । ଆଗରେ ମୋର କେବଳ ଗୋଟାଏ କାମ । ସେଥିପାଇଁ ମୋର ମନବଳ ଅଛି, ଉପାୟ ମଧ୍ୟ ରହିଛି । ନରୱେର ଏଇ ସେନା ବିଶାଳ, କିନ୍ତୁ ତା'ର ନେତୃତ୍ୱରେ ଅଛି ଜଣେ ତରୁଣ ଯୁବକ । ତା'ମନରେ ଅବଶ୍ୟ ଆକାଂକ୍ଷା ଅଛି । ତେବେ ଏ

ଆକାଂକ୍ଷାର ଲକ୍ଷ୍ୟ କ'ଣ ? ଅଣ୍ଡାଖୋଳ ଭଳି ଭଙ୍ଗୁର ଏକ ଭୂମିଖଣ୍ଡ ପାଇଁ ତା'ର ଏ ଯାତ୍ରା । ଉପଯୁକ୍ତ କାରଣ ବ୍ୟତୀତ ମହତ୍ ବ୍ୟକ୍ତି କେବେବି ଉତ୍ତେଜିତ ହୁଏ ନାହିଁ । ତେବେ ଯେଉଁଠି ସମ୍ମାନ ହାନିର ଆଶଙ୍କା ଥାଏ, ସେଠାରେ ସେମାନେ ଦ୍ୱନ୍ଦ୍ୱରେ ପ୍ରବୃତ୍ତ ହେବାକୁ ଭୁଲନ୍ତି ନାହିଁ । ମୋର ପିତାଙ୍କୁ ହତ୍ୟା କରାଯାଇଛି, ମା କଳଙ୍କିନୀ, ତଥାପି ମୁଁ ଉତ୍ତେଜିତ ନୁହେଁ । ଅଥଚ ଆଖି ଆଗରେ ଦେଖୁଛି କୋଡ଼ିଏହଜାର ଲୋକ ଗୋଟାଏ ଭୁଲ୍ ଆଦର୍ଶପାଇଁ ମୃତ୍ୟୁଆଡ଼କୁ ଆଗେଇ ଚାଲିଛନ୍ତି । ଏଣିକି ମୋର କେବଳ ଗୋଟିଏ ମାତ୍ର କାମନା - ଆଉ ସେ କାମନା ହେଉଛି ରକ୍ତର କାମନା ।

ପିତାଙ୍କର ଅସ୍ୱାଭାବିକ ମୃତ୍ୟୁରେ ଅଫେଲିଆ ପ୍ରାୟ ଉନ୍ମାଦିନୀ । ରହି ରହି ତାଙ୍କର ସ୍ମୃତି ମନକୁ ଆସେ ଏବଂ ସେ ହାହାକାର କରି ଉଠେ । ଛାତିରେ ହାତବାଡ଼େଇ, ମୁଣ୍ଡବାଳ ଟାଣି ଧୂଳିରେ ଲୋଟିଯାଏ । ଗଭୀର ଶୋକ ତାକୁ ପ୍ରାୟ ଆଚ୍ଛନ୍ନ କରି ରଖେ ।

ରାଣୀ ତାହା ସହିତ ଦେଖା କରିବାକୁ ଚାହାନ୍ତି ନାହିଁ । ତେବେ ହୋରାସିଓର ଅନୁରୋଧରେ ସେ ତାକୁ ଡାକିପଠାନ୍ତି । ଉନ୍ମତ୍ତ ଅବସ୍ଥାରେ ଅଫେଲିଆ ଆସି ଶୋକ ସଂଗୀତ ଗାଇବାକୁ ଆରମ୍ଭ କରେ । ରାଜା ଆଉ ରାଣୀ ତା' ସହିତ କଥାବାର୍ତ୍ତା କରିବାକୁ ଚାହାନ୍ତି । ମାତ୍ର କିଛି ଫଳ ହୁଏ ନାହିଁ । ଅଫେଲିଆ ଚାଲିଯାଏ । ରାଜା ତା' ପଛେ ପଛେ ହୋରାସିଓକୁ ପଠାନ୍ତି ।

ରାଣୀଙ୍କୁ କହନ୍ତି - ଅବିଚାରିତ କର୍ମର ପରିଣାମ ଦେଖି ଲତା ପିତାର ମୃତ୍ୟୁରେ ବିଚାରୀ ଉନ୍ମାଦ ହୋଇଯାଇଛି । ଶୁଣ - ଦୁଃଖ କେବେହେଲେ ଏକା ଆସେ ନାହିଁ । ପଲୋନିୟସ୍ ନିହତ ହେଲେ ପୁତ୍ର ନିଜ ଦୋଷରେ ନିର୍ବାସିତ ହେଲା । ଏଣେ ପଲୋନିୟସ୍‌ର ମୃତ୍ୟୁ ପାଇଁ ଲୋକଙ୍କର ନାନା କଥା ଶୁଣିବାକୁ ପଡୁଛି । ସେଥିରେ ଅଫେଲିଆର ଏଇ ଅବସ୍ଥା ! ଶୁଣୁଛି ତା' ଭାଇ ଦେଶକୁ ଫେରି ଆତ୍ମଗୋପନ କରିଛି । ସବୁରି ଉପରେ ଏ ଲୋକ ନିନ୍ଦା —

ରାଣୀ ଦୁଃଖରେ କହନ୍ତି - ସବୁ ଆମର ଦୁର୍ଭାଗ୍ୟ ।

ବାହାରୁ ଗଣ୍ଡଗୋଳର ଶବ୍ଦ ଶୁଣାଯାଏ । ଦରଜା ଭାଙ୍ଗି ଏକ ବିକ୍ଷୁବ୍ଧ ତଥା ସଶସ୍ତ୍ର ଜନତା ସାଙ୍ଗରେ ନେଇ ପ୍ରବେଶ କରେ ଲେୟାର୍ଟେସ୍ । ତା' ଆଦେଶରେ ଜନତା ବାହାରେ ରହିଯାଆନ୍ତି । ସେ ଏକା ରାଜାଙ୍କ ସହିତ ଆଲୋଚନା କରିବାକୁ ଆଗେଇଆସେ । ତୀବ୍ର କଣ୍ଠରେ ତାଙ୍କୁ କହେ - ମୋ ପିତାଙ୍କୁ ଫେରାଇ ଦେ ।

ରାଣୀ କହନ୍ତି - ଶାନ୍ତ ହୋଇ ଭଦ୍ରଭାବରେ କଥା କହ ଲେୟାର୍ଟେସ୍ ।

ଲେୟାର୍ଟେସ୍‌ର ପ୍ରତିଟି ରକ୍ତ ବିନ୍ଦୁ ସେତେବେଳେ ଉତ୍ତେଜିତ । ସେ ରାଣୀଙ୍କୁ ଅଗ୍ରାହ୍ୟ କରେ ।

ରାଜା ତାକୁ ପ୍ରଶ୍ନ କରନ୍ତି - ତମେ ଏଭଳି ହେଉଛ କାହିଁକି ? ହଠାତ୍ ଏଇ ବିଦ୍ରୋହର କାରଣ ବା କ'ଣ ?

- ମୋ ପିତା କାହାନ୍ତି ?

- ସେ - ସେ ମୃତ ।

ଏଥର ରାଜାଙ୍କ ତରଫରୁ ରାଣୀ କହନ୍ତି ତାଙ୍କର ହତ୍ୟା କିନ୍ତୁ ରାଜାଙ୍କ ଦ୍ୱାରା ହୋଇ ନାହିଁ ।

- ତା'ହେଲେ କିଭଳି ତାଙ୍କର ମୃତ୍ୟୁ ହେଲା ? ମୋତେ କୁହାଯାଉ । ଯାହା ଘଟିଲେ ଘଟୁ, ମୁଁ ନିଶ୍ଚୟ ଏହାର ପ୍ରତିଶୋଧ ନେବି ।

ଏତିକିବେଳେ ଅଫେଲିଆ ସେଠାରେ ପ୍ରବେଶ କରେ । ତାର ସେଇ ଅର୍ଦ୍ଧଉନ୍ମାଦ ଅବସ୍ଥା ଦେଖି ଲେୟାର୍ଟେସ୍ ର କ୍ରୋଧ ଆହୁରି ବଢ଼ିଯାଏ । ସେ ପୁଣି ପଚାରେ - କେଉଁ କାରଣରୁ ତାର ପିତାଙ୍କର ମୃତ୍ୟୁର କାରଣ ଏ ପର୍ଯ୍ୟନ୍ତ କାହାରିକୁ ଜଣାଇ ଦିଆଯାଇ ନାହିଁ ? କାହିଁକି ଗୋପନରେ ତାଙ୍କର ଶେଷ କ୍ରିୟା ସମ୍ପନ୍ନ ହୋଇଛି ? କାହିଁକି ଏଥିପାଇଁ ଆନୁଷ୍ଠାନିକ କ୍ରିୟାକର୍ମର ବ୍ୟବସ୍ଥା କରାଯାଇ ନାହିଁ କିମ୍ବା କୌଣସି ସମାରୋହ ହୋଇ ନାହିଁ ? ଜନତା ଆଜି ଏସବୁର କାରଣ ଜାଣିବାକୁ ଚାହେଁ ।

ରାଜା କହନ୍ତି - ଏସବୁର କାରଣ ଜାଣିବାର ଅଧିକାର ତୁମର ନିଶ୍ଚୟ ଅଛି । ଅପରାଧ ଯେତେବେଳେ ଜଣେ କରିଛି, ସେ ଯିଏ ହେଉନା କାହିଁକି, ଶାସ୍ତି ତାକୁ ଭୋଗିବାକୁ ପଡ଼ିବ । ତମେ ମୋ ସହିତ ଆସ । ମୁଁ ତମକୁ ସବୁ ବୁଝାଇ ଦେଉଛି ।

ରାଜା ଲେୟାର୍ଟେସ୍‌କୁ ନେଇ ଭିତରକୁ ଚାଲିଯାଆନ୍ତି ।

ହୋରାସିଓ ସହିତ ଦେଖା କରିବାକୁ ଆସନ୍ତି କେତେ ଜଣ ନାବିକ । ସେମାନଙ୍କଠାରୁ ହାମଲେଟ୍‌ର ଚିଠି ମିଳେ । ସେ ଲେଖିଛି ଇଂଲଣ୍ଡ ଯିବା ବାଟରେ ତାଙ୍କର ଜାହାଜ ଜଳଦସ୍ୟୁମାନଙ୍କ ଦ୍ୱାରା ଆକ୍ରାନ୍ତ ହୁଏ । ସେମାନଙ୍କ ସହିତ ଯୁଦ୍ଧରେ ସେ ବନ୍ଦୀ ହୁଏ । ତେବେ ଦସ୍ୟୁମାନେ ତା ସହିତ ବେଶ୍ ଭଲ ବ୍ୟବହାର କରୁଛନ୍ତି । ପ୍ରତିବଦଳରେ ହାମଲେଟ୍ ମଧ୍ୟ ସେମାନଙ୍କର କିଛି ଉପକାର କରିବାକୁ ଚାହେଁ ।

ସେ ହୋରାସିଓକୁ ଅନୁରୋଧ କରୁଛି, ପତ୍ରବାହକମାନଙ୍କୁ ରାଜାଙ୍କ ସହିତ ସାକ୍ଷାତ୍ କରାଇଦେବା ନିମନ୍ତେ । ସେଇମାନେ ହୋରାସିଓକୁ ହାମଲେଟ୍ ପାଖକୁ ନେଇ ଆସିବେ । ତା'ର ସହପାଠୀଦ୍ୱୟ ଇଂଲଣ୍ଡ ପଥରେ ଯାତ୍ରା କରିଛନ୍ତି ।

ହୋରାସିଓ ନାବିକମାନଙ୍କର ରାଜାଙ୍କ ସହିତ ସାକ୍ଷାତ୍‌ର ବ୍ୟବସ୍ଥା କରିଦିଏ ।

ଲେୟାର୍ଟେସ୍‌ର ପିତାଙ୍କୁ କିଏ ହତ୍ୟା କରିଛି, ରାଜା ତାକୁ ସ୍ପଷ୍ଟ ଭାବରେ ବୁଝାଇ ଦିଅନ୍ତି । ସବୁ ଜାଣି ମଧ ରାଜା ଏପର୍ଯ୍ୟନ୍ତ ଏହାର କୌଣସି ପ୍ରତିକାର କାହିଁକି କରି ନାହାନ୍ତି ବୋଲି ଲେୟାର୍ଟେସ୍ ଜାଣିବାକୁ ଚାହେଁ । ରାଜା ଜଣାନ୍ତି - ତାହାର ଦୁଇଟା କାରଣ । ପ୍ରଥମତଃ, ହାମଲେଟ୍ ରାଣୀଙ୍କର ପୁତ୍ର । ଦ୍ୱିତୀୟତଃ, ସେ ଖୁବ୍ ଲୋକପ୍ରିୟ । ଲୋକେ ତାକୁ ଏତେ ଭଲପାଆନ୍ତି ଯେ ସେମାନଙ୍କ ଦରବାରରେ ହାମଲେଟ୍‌ର ସମସ୍ତ ଦୋଷ ଗୁଣରେ ପରିଗଣିତ ହେବ । ଏଣେ ବର୍ତ୍ତମାନର ଜନମତ ରାଜାଙ୍କ ବିରୋଧରେ ରହିଛି ।

ସେଥିପାଇଁ ମୁଁ ମୋର ପିତାଙ୍କୁ ହରାଇଥିଲେ ବି, ଆଉ ମୋର ଭଉଣୀ ଉନ୍ମାଦ ହୋଇଯାଇଥିଲେ ବି କିଛି ପ୍ରତିକାର କରାଯିବ ନାହିଁ ? ନା - ପ୍ରତିଶୋଧ ମୋତେ ନିଶ୍ଚୟ ନେବାକୁ ହେବ ।

ରାଜା କହନ୍ତି - ଏହାପରେ ତମେ ଅନେକ କଥା ଜାଣିପାରିବ । ବିପଦକୁ ପିଲାଖେଳ ମନେକରି ନୀରବ ରହିବି, ମୋତେ ତୁମେ ଏତେ ଅପଦାର୍ଥ ଭାବ ନାହିଁ ।

ଲେୟାର୍ଟେସ୍ ଆଗରେ ହାମଲେଟ୍‌ର ଚିଠି ରାଜାଙ୍କର ହସ୍ତଗତ ହୁଏ । ସେଥିରୁ ଜଣାଯାଏ ଯେ ହାମଲେଟ୍ ବର୍ତ୍ତମାନ ନିଃସ୍ୱ ଅବସ୍ଥାରେ ଡେନ୍‌ମାର୍କରେ ହିଁ ରହିଛି । ସେ ଏବେ ଅନୁତପ୍ତ । କ୍ଷମା ପ୍ରାର୍ଥନା କରୁଛି । ରାଜା ଯେମିତି ହେଲେ ତା'ର ପ୍ରତ୍ୟାବର୍ତ୍ତନର ବ୍ୟବସ୍ଥା କରନ୍ତୁ ।

ଚିଠି ପାଇଁ ରାଜାଙ୍କୁ ନିଜର ପରିକଳ୍ପନା ବଦଳାଇବାକୁ ପଡ଼େ । ପ୍ରଥମେ ସେ ଲେୟାର୍ଟେସ୍‌କୁ ତାଙ୍କ କଥା ମାନି ଚାଲିବାକୁ କହନ୍ତି । ରାଜା ଜାଣନ୍ତି, ଲେୟାର୍ଟେସ୍ ଅସି ଚାଳନାରେ ସୁଦକ୍ଷ । ବିଶ୍ୱବ୍ୟାପୀ ତା'ର ଖ୍ୟାତି । ଏଥିପାଇଁ ହାମଲେଟ୍ ତା'ପ୍ରତି ଈର୍ଷାନ୍ୱିତ ହୋଇ ପଡ଼ିଥିବାର ସେ ଲକ୍ଷ୍ୟ କରିଛନ୍ତି । ହାମଲେଟ୍ ଫେରିଆସୁ । ରାଜା ତା'ଆଗରେ ଲେୟାର୍ଟେସ୍‌ର ଦକ୍ଷତା ବିଷୟରେ ପ୍ରଶଂସା କରିବେ । ତା'ପରେ ଏକ ଅସି ଚାଳନାର ପ୍ରଦର୍ଶନୀରେ ଉଭୟଙ୍କୁ ଏକାଠି କରାଯାଇପାରିବ । କୌଣସି ଚକ୍ରାନ୍ତର କଥା ମନରେ ନ ଥିବାରୁ ହାମଲେଟ୍ କଦାପି ଏ ବିଷୟରେ ସତର୍କ ହେବ ନାହିଁ । ତେଣୁ ଅନାୟାସରେ ଲେୟାର୍ଟେସ୍ ତା'ର ପିତୃହତ୍ୟାର ପ୍ରତିଶୋଧ ନେଇପାରିବ ।

ସବୁକଥା ଶୁଣି ଲେୟାର୍ଟେସ୍ ଉତ୍ସାହିତ ହୋଇପଡ଼େ । ସେ କହେ - ତରବାରିରେ ମୁଁ ବିଷ ବୋଳି ଦେଇଥିବି । ସେଥିରେ ମୃତ୍ୟୁ ଅନିବାର୍ଯ୍ୟ ହେବ ।

ଧୂର୍ତ୍ତରାଜା ଏଥର ପରିକଳ୍ପନାକୁ ଆଉ ଟିକିଏ ବିସ୍ତୃତ କରନ୍ତି । କହନ୍ତି ତମେ ଦୁହେଁ ଯେତେବେଳେ ଯୁଦ୍ଧରେ କ୍ଳାନ୍ତ ହୋଇ ପଡ଼ିବ ସେତେବେଳେ ମୁଁ ତମ ହାତକୁ ବଢ଼ାଇଦେବି ଶୀତଳ ପାନୀୟ । ହାମଲେଟ୍‌ର ପାନୀୟରେ ମିଶିଥିବ ତୀବ୍ରବିଷ । ତମର

ତରବାରି ଦାଢ଼ରୁ ବର୍ତ୍ତିଗଲେ ମଧ ଏଥିରୁ ତା'ର ଆଉ ମୁକ୍ତି ନାହିଁ । ଆମର ଉଦ୍ଦେଶ୍ୟ ସିଦ୍ଧ ହେବ ।

ରାଣୀ ଏକ ଦୁଃସମ୍ବାଦ ନେଇ ପ୍ରବେଶ କରନ୍ତି । ଜଳବୁଡ଼ିରେ ଅଫେଲିଆର ମୃତ୍ୟୁ ହୋଇଛି । ନଦୀ ମଧକୁ ଅବନତ ଏକ ଶାଖାରେ ଭାର ଦେଇ ସେ ହୁଏତ ଫୁଲଟାଏ ଆଣିବାକୁ ଚେଷ୍ଟା କରୁଥିଲା । ହଠାତ୍ ସେଇ ଶାଖାଟା ଭାଙ୍ଗିଯିବାରୁ ସେ ନଦୀରେ ପଡ଼ିଯାଏ ଏବଂ ଦେଖୁ ଦେଖୁ ଅତଳାନ୍ତ ଜଳରେ ତଳେଇ ଯାଏ । ଏଇ ସମ୍ବାଦରେ ଲେୟାର୍ଟେସ୍‌ର ପ୍ରତିଶୋଧ କାମନା ଆହୁରି ତୀବ୍ର ହୋଇଉଠେ ।

ହୋରାସିଓ ଏବଂ ହାମଲେଟ୍ ଅଫେଲିୟାର ସମାଧି କ୍ଷେତ୍ର ନିକଟକୁ ଆସନ୍ତି । କବର ଖୋଳୁଥିବା ଲୋକଟି ସେତେବେଳେ ଗୀତ ଗାଉଥାଏ । ହାମଲେଟ୍ କହେ ଦେଖ ବନ୍ଧୁ, ଏଭଳି ମୁହୂର୍ତ୍ତରେ ସୁଦ୍ଧା ଲୋକଟି ଗୀତ ବୋଲିପାରୁଛି । କି ଧରଣର କାର୍ଯ୍ୟ ସେ କରୁଛି ହୁଏତ ତା'ର ଗୁରୁତ୍ୱ ସେ ବୁଝି ନାହିଁ । ହୋରାସିଓ କହେ - ଏ କାର୍ଯ୍ୟ ତା'ର ପ୍ରତି - ଦିନର । ତାହାହିଁ ତାକୁ ଅନୁଭୂତିଶୂନ୍ୟ କରିଛି ।

ହାମଲେଟ୍ ଏଥିରେ ରାଜି ହୁଏ । କବର ଖୋଳୁ ଖୋଳୁ ତା'ଭିତରୁ ବାହାରିପଡ଼େ ମଣିଷ ମୁଣ୍ଡର ଗୋଟାଏ ପୁରୁଣା କଙ୍କାଳ । ଲୋକଟି ତାକୁ ଅବଜ୍ଞାରେ ଦୂରକୁ ଫିଙ୍ଗିଦିଏ । ହାମଲେଟ୍ କହେ - ଏଇ କଙ୍କାଳର ଗୋଟିଏ ସମୟରେ ଜିଭ ଥିଲା, ସେ ଗୀତ ବୋଲିପାରୁଥିଲା । ହୋଇପାରେ ଏହା କୌଣସି ରାଜନୀତିଜ୍ଞର କଙ୍କାଳ; ଯିଏକି ନିଜକୁ ଈଶ୍ୱରଙ୍କର ସମକକ୍ଷ ବୋଲି ଭାବୁଥିଲା । ଅଥଚ ଏଇ ଲୋକଟି କେତେ ସହଜରେ ତାକୁ ଦୂରକୁ ଫୋପାଡ଼ିଦେଲା । ଅଥବା ଏହାର ମାଲିକ ହୋଇଥିବେ କୌଣସି ଭଦ୍ରସନ୍ତାନ, ଦେଖାହେବା ମାତ୍ରେ ହିଁ ସମ୍ଭାଷଣ କରୁଥିବେ, 'ସୁପ୍ରଭାତ, କେମିତି ଅଛନ୍ତି !' ଏମିତି କୌଣସି ପାରିଷଦଙ୍କର ବି ହୋଇପାରେ, ଯିଏ କାହାର ଘୋଡ଼ା ମାଗିବାକୁ ଯାଇ ତାକୁ ପ୍ରଶଂସାରେ ପୋତି ପକାଉଥିବେ ! ହୋଇପାରେ କିମ୍ବା ନୁହଁ ?

ହୋରାସିଓ ରାଜି ହୁଏ ।

ନରକରୋଟି ସମ୍ପର୍କୀୟ ଚର୍ଚ୍ଚା ଆଗେଇ ଚାଲେ - ହୋଇପାରେ ଏହା ଏକ ବିଳାସୀ ଯୁବକର - ଯେ କି କୃମି-କୀଟ ତୁଲ୍ୟ ପ୍ରଣୟିନୀର ଆୟତ୍ତରେ ଥିଲା । ମନ୍ତବ୍ୟର ଧାରା ପ୍ରବାହ ଚାଲେ । କବର ଖୋଳୁ ଖୋଳୁ ଲୋକଟି ଗୀତ ଗାଇ ଚାଲିଥାଏ । ହାମଲେଟ୍ ତାକୁ ପଚାରେ - କାହାର କବର ଖୋଳୁଛ ?

ଲୋକଟି ଥଟ୍ଟା କରି କହେ— ମୋର, ଆଉ କାହାର ?

- ଭିତରେ ଯେତେବେଳେ ଅଛ, କବର ନିଶ୍ଚୟ ତମର । କବର ଖୋଳାଳି କହେ - କବର ଜଣେ ନାରୀଙ୍କର । ହାମଲେଟ୍ ସହିତ ଏଇ ଲୋକଟିର ଆଳାପ ଜମିଯାଏ । ହାମଲେଟ୍ ତାକୁ ପଚାରେ - ତମେ କେବେଠୁ ଏଇ କାମ କରୁଛ ?

- ଯେଉଁଦିନ ଆମର ପୂର୍ବତନ ରାଜା ଫର୍ଟିନ୍‌ବ୍ରସ୍‌ଙ୍କୁ ପରାସ୍ତ କରନ୍ତି - ସେଇଦିନରୁ । ଲୋକଟି କହେ ।

- ସେ ଆଜିକୁ କେତେ ଦିନ ତଳର କଥା ?

- ଏତିକି ବି ଜଣା ନାହିଁ ? ଏ ରାଜ୍ୟର ବୋକା ଲୋକଟି ବି ଏ କଥା ଜାଣେ । ସେଇଦିନ ଆମ ଯୁବରାଜ ହାମ୍‌ଲେଟ୍‌ଙ୍କର ଜନ୍ମ । ଆଜି ଅବଶ୍ୟ ସେ ପାଗଳ ହୋଇଯିବାରୁ ତାଙ୍କୁ ଇଂଲଣ୍ଡ ପଠାଯାଇଛି ।

- ସେ ପାଗଳ ହେଲେ କେମିତି ?

ଲୋକଟି ଏହାର ଉତ୍ତର ଦେଇପାରେ ନାହିଁ । ହାମଲେଟ୍ ଏଥର ଅନ୍ୟ ପ୍ରସଙ୍ଗର ଅବତାରଣା କରେ । କହେ - ଆଚ୍ଛା, ତମେ ତ ଅନେକ ଦିନ ଧରି ଏ କାମ କରୁଛ । କେତେଦିନ ପର୍ଯ୍ୟନ୍ତ ମଣିଷ ଦେହ ପଚି ନ ଯାଇ ଅବିକୃତ ରହିପାରିବ ଜାଣ ?

ମୃତ୍ୟୁ ଆଗରୁ ଯଦି ସଢ଼ିବା ଆରମ୍ଭ ହୋଇ ନ ଥାଏ - ଏମିତି ତ ଆଜିକାଲି ବହୁକ୍ଷେତ୍ରରେ ହେଉଛି - ତେବେ ଆଠ-ନଅ ବର୍ଷ ରହେ । ଚମଡ଼ା - କାରବାରୀର ମୃତ ଦେହ - ନଅବର୍ଷ ନିଶ୍ଚୟ ରହିବ ।

- କାହିଁକି ?

- ବ୍ୟବସାୟ କରୁ କରୁ ତା' ନିଜ ଚମଡ଼ା ଏତେ ମୋଟା ହୋଇଯାଏ ଯେ, ସହଜରେ ପଚେନାହିଁ ।

ଫୋପାଡ଼ି ଦେଇଥିବା କରୋଟିକୁ ନିର୍ଦ୍ଦେଶ କରି ହାମଲେଟ୍ ପଚାରେ - ଏଇଟା କାହାର ଜାଣ ?

- ଏଇଟା ହେଲା ବିଦୂଷକ ୟୋରିକ୍‌ଙ୍କର । କରୋଟିଟା ହାତକୁ ନେଇ ହାମଲେଟ୍ କହେ,' ବିଚରା ୟୋରିକ୍ ! ମୁଁ ତାଙ୍କୁ ଚିହ୍ନିଥିଲି । ହସ ଖୁସି ଆଉ ରସିକତାରେ ପରିପୂର୍ଣ୍ଣ ଜଣେ ମଣିଷ । କେତେଥର ସେ ମୋତେ ତାଙ୍କ କାନ୍ଧରେ, ପିଠିରେ ବସାଇଛନ୍ତି । କେତେଥର ମୁଁ ତାଙ୍କଠୁଁ ଚୁମା ଖାଇଛି । ଆଜି ସେ କାହାନ୍ତି, ତାଙ୍କର ରସିକତା ବା କାହିଁ ? ତାଙ୍କ ସହ ହସୁଥିବା ଜଣେ କେହିବି ନାହାନ୍ତି ।

ଏଥର ହୋରାସିଓଙ୍କୁ ହାମଲେଟ୍ ପ୍ରଶ୍ନ କରେ - ସମ୍ରାଟ୍ ଆଲେକ୍‌ଜାଣ୍ଡରଙ୍କର ମୃତ ଦେହ ଏମିତି ବିକୃତ ହୋଇଯାଇଥିବ ବୋଲି ତମେ ମନେ କର ?

- ହଁ, ତାହାହିଁ ସ୍ୱାଭାବିକ ।

- ତାଙ୍କ ମୁହଁରୁ ବି ଏମିତି ଦୁର୍ଗନ୍ଧ ବାହାରୁଥିବ ?

- ନିଶ୍ଚୟ ।

- ଆମର ପରିଣତି କି ଶୋଚନୀୟ ! ନୁହେଁ ହୋରାସିଓ ?

- ଏସବୁ ଅତିରିକ୍ତ ହୋଇଯାଉଛି ବନ୍ଧୁ । ହୋରାସିଓ କହେ ।

- ନା ନା ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ପରେ ତାଙ୍କ ଦେହକୁ କବର ଦିଆଯାଇଥିଲା- ସେ ଦେହ ପରିଣତ ହୋଇଥିଲା ଧୂଳିକଣାରେ । ତା' ପୁଣି ହେଲା ମାଟି । ଆଉ ସେଇ ମାଟିରୁ ପ୍ରସ୍ତୁତ କରାଗଲା ମଦବୋତଲର ଠିପି । ସମ୍ରାଟ୍ ସିଜରଙ୍କ ଦେହ ବି ସେମିତି ମାଟି ହୋଇଛି, ଆଉ ସେଥିରେ ପାଚେରିର ଫାଟ ସବୁକୁ ବନ୍ଦ କରାଯାଉଛି ।

ଅଫେଲିଆର ଶବାଧାର ସହ ପ୍ରବେଶ କରନ୍ତି ରାଜା, ରାଣୀ, ଲେୟାର୍ଟେସ୍, ପୁରୋହିତ ଆଉ ଅନୁଚରମାନେ । ହୋରାସିଓ ଏବଂ ହାମଲେଟ୍ ଅନ୍ତରାଳରେ ଥାଇ ସେମାନଙ୍କର କାର୍ଯ୍ୟ ଲକ୍ଷ୍ୟ କରନ୍ତି । ସମସ୍ତ ଆନୁଷ୍ଠାନିକ କାର୍ଯ୍ୟକ୍ରମ ଶେଷ ହୋଇଥିବାର ପୁରୋହିତ ଜଣାଇଦିଅନ୍ତି । ମୃତ୍ୟୁ ଅସ୍ୱାଭାବିକ ହୋଇଥିଲେ ମଧ ଶାସ୍ତ୍ରୀୟ ବିଧିବିଧାନ ଅନୁସାରେ ମୃତକର ପାରଲୌକିକ କ୍ରିୟା ଶେଷ ହୋଇଛି ବୋଲି କହନ୍ତି ।

ଅଫେଲିଆକୁ ସମାଧିସ୍ଥ କରାଯାଏ । ତା'ର ସମାଧି ଉପରେ ଫୁଲ ଚଢ଼ାଇବାକୁ ଯାଇ ରାଣୀ କହନ୍ତି, ଆଶା ଥିଲା, ପୁତ୍ରବଧୂ ରୂପରେ ତୁମକୁ ବରଣ କରି ଫୁଲରେ ଫୁଲରେ ତମର ବାସରଗୃହ ଭରି ଦେଇଥାଆନ୍ତି । — ଆଜି ସେଇ ଫୁଲରେ ମୋତେ ତମର ସମାଧି ମଣ୍ଡନ କରିବାକୁ ହେଉଛି !

ଲେୟାର୍ଟେସ୍ ଦୁଃଖରେ ଚିତ୍କାର କରି କହେ ... ଥରକପାଇଁ ସମାଧିରେ ମାଟି ପକାଇବା ବନ୍ଦ କର, ମୁଁ ତାକୁ ଶେଷଥର ପାଇଁ ମନ ପୂରାଇ ଦେଖିନିଏ । ସମାଧି ଭିତରକୁ ଡେଇଁପଡ଼ି ଲେୟାର୍ଟେସ୍ ପୁଣି କହେ ... ଏଥର ଜୀବିତ ଆଉ ମୃତ - ଦୁଇ ଜଣଙ୍କ ଉପରେ ମାଟି ଚାପାଦିଅ । ମାଟି ପକାଇ ଏହାକୁ ପର୍ବତ ଭଳି ଉଚ୍ଚ କରିଦିଅ -

ଶୋକବିହ୍ୱଳ ହାମଲେଟ୍ ଏଥର ଆସି ସମାଧି ଉପରେ ପଡ଼ିଯାଏ । ଲେୟାର୍ଟେସ୍ ଓ ହାମଲେଟ୍ ଭିତରେ ହାତାହାତି ଆରମ୍ଭ ହୋଇଯାଏ । ରାଜା ଆଉ ରାଣୀ ବାଧା ଦେବାକୁ ଆଗେଇ ଆସନ୍ତି । ହୋରାସିଓ ଓ ଅନ୍ୟମାନେ ଦୁହିଁଙ୍କୁ ଛଡ଼ାଛଡ଼ି କରିଦିଅନ୍ତି । ସେମାନେ କବର ଭିତରୁ ବାହାରକୁ ଆସନ୍ତି ।

ଆବେଗପୂର୍ଣ୍ଣ କଣ୍ଠରେ ହାମଲେଟ୍ କହିଚାଲେ - 'ଅଫେଲିଆକୁ ମୁଁ ଭଲ ପାଉଥିଲି । ହଜାର ହଜାର ଭାଇଙ୍କର ସ୍ନେହଠାରୁ ତାହା ଯଥେଷ୍ଟ ଅଧିକ । ଲେୟାର୍ଟେସ୍‌କୁ ଉଦ୍ଦେଶ୍ୟ କରି

ସେ କହେ, ତମେ ତମର ଭଲ ପାଇବାପାଇଁ କ'ଣ କରିପାର, କହ । ତମେ କାନ୍ଦିପାର, ଦ୍ୱନ୍ଦ୍ୱଯୁଦ୍ଧରେ ମାତିପାର, ଅନଶନ କରିପାର, ତମେ କ'ଣ ନିଜକୁ ଖଣ୍ଡ ଖଣ୍ଡ କରି ଦେଇପାରିବ ? ମୁଁ ତା କରିବି । ତମେ ଯଦି ତା' ସହିତ ସମାଧି ନିଅ, ମୁଁ ବି ନେବି । '

ରାଣୀ କହନ୍ତି - 'ଏସବୁ ହାମଲେଟ୍‌ର ସାମୟିକ ଉନ୍ମତ୍ତତା । ତା'ପରେ ସେ ଏକ ବିଷଣ୍ଣ ସ୍ତବ୍ଧତାରେ ମ୍ଳାନ ହୋଇ ତା'ର ମୁହଁକୁ ଅନାଇ ବସିରହିବ ।'

ହାମଲେଟ୍ ବିଳାପ କରୁ କରୁ ଚାଲିଯାଏ । ରାଜା ହୋରାସିଓକୁ ତାକୁ ଦେଖିବାପାଇଁ କହନ୍ତି । ହୋରାସିଓ ତାକୁ ଅନୁସରଣ କରେ ।

ରାଜା ଲେୟାର୍ଟେସ୍‌କୁ ଡାକି କହନ୍ତି - ଆମର ଗତରାତିର ଆଲୋଚନାକୁ ସ୍ମରଣ କରି ଧୈର୍ଯ୍ୟ ଧର । ରାଣୀଙ୍କୁ କହନ୍ତି, ଘଣ୍ଟାଏ ଖଣ୍ଡେ ବିଶ୍ରାମ ନେବା ପରେ ବାକି ଯାହା କରାଯିବାର କରାଯିବ ।

ହୋରାସିଓ ନିକଟରେ ହାମଲେଟ୍ ନିଜର ଅନ୍ତର୍ଦ୍ୱନ୍ଦ୍ୱ ପ୍ରକାଶ କରେ । କହେ ରାତି ରାତି ମୁଁ ଶୋଇପାରୁ ନାହିଁ । ସବୁବେଳେ ମନେହେଉଛି, କୌଣସି ଶୃଙ୍ଖଳାବଦ୍ଧ କଏଦୀଠାରୁ ମୋ ଅବସ୍ଥା ଆହୁରି ଖରାପ । ବେଳେବେଳେ ଅନେକ ଚିନ୍ତା କରି କରାଯାଇଥିବା ଚକ୍ରାନ୍ତ ବ୍ୟର୍ଥ ହୋଇଗଲେ ମଧ ହଠାତ୍ ନେଇଥିବା ସିଦ୍ଧାନ୍ତ ସଫଳ ହୋଇଯାଏ ।

ଏହା ପରେ ସେ ଜଣାଏ, କିପରି ସେ ରାଜାଙ୍କର ଆଦେଶପତ୍ରଟି ସଂଗ୍ରହ କରିଛି । ଆଦେଶପତ୍ରଟି ରାଜାଙ୍କର ବିଶ୍ୱାସଘାତକତାର ଏକ ପ୍ରାମାଣିକ ଦଲିଲ । ଇଂଲଣ୍ଡ ରାଜାଙ୍କ ପାଖକୁ ଲେଖା ସେଇ ପତ୍ରରେ ଲିପିବଦ୍ଧ ହୋଇଛି, ହାମଲେଟ୍ ଏକ ଦାନବଠାରୁ ମଧ ଅଧିକ ଭୟଙ୍କର । ତେଣୁ ପତ୍ରପ୍ରାପ୍ତି ମାତ୍ରକେ ତାକୁ ଯେମିତି ହତ୍ୟା କରାଯାଏ ।

ଏ କ'ଣ ସମ୍ଭବ ? ହୋରାସିଓ ବିସ୍ମିତ ହୁଏ ।

ଆଦେଶନାମାଟି ହୋରାସିଓ ହାତରେ ଦେଇ ହାମଲେଟ୍ କହେ - ସମୟ କରି ପଢ଼ିନେବ ।

ସେଇ ବିପଦ ସମୟରେ ସେ କ'ଣ କରିଥିଲା ହାମଲେଟ୍ ତା'ର ବର୍ଣ୍ଣନା ଦେଇଯାଏ । ବିପଦରେ ପଡ଼ି ମୋ ମୁଣ୍ଡ ସକ୍ରିୟ ହୋଇଉଠେ । ମୁଁ ସେଇ ମୁହୂର୍ତ୍ତରେ ନୂଆ ଏକ ଆଦେଶନାମା ପ୍ରସ୍ତୁତ କରେ । ସେଥିରେ ଲେଖେଁ - ଏଇ ପତ୍ର ପାଇବା ମାତ୍ରେ ପତ୍ରବାହକମାନଙ୍କୁ ଯେମିତି ତତ୍କ୍ଷଣାତ୍ ହତ୍ୟା କରାଯାଏ ।

ହୋରାସିଓ ଜାଣିବାକୁ ଚାହେଁ ହାମଲେଟ୍ ମୋହରର ଛାପ ପାଇଲା କେଉଠୁଁ ? ହାମଲେଟ କହେ -ଦୈବକ୍ରମେ ମୋ ଟଙ୍କା ଥଳିଭିତରେ ଥିଲା ସେଇ ମୋହରର ଛାପ -ଥିବା

ମୁଦି ଆଉ ସେଇ ଛାପ ରାଜାଙ୍କ ମୋହରର ଅନୁରୂପ । ଆଦେଶନାମା ବଦଳର କଥା କେହି ଜାଣିପାରିଲେ ନାହିଁ । ତା' ପର ଦିନ ଜଳଦସ୍ୟୁମାନଙ୍କ ସହିତ ଲଢ଼େଇ ହୁଏ ।

ଏହା ପରେ ହାମଲେଟ୍ ହୋରାସିଓକୁ ପଚାରେ - ଯେଉଁ ଦୁଷ୍ଟ ମୋର ପିତାଙ୍କୁ ହତ୍ୟା କରିଛି, ମୋର ମା'ଙ୍କୁ ଭୁଲବାଟରେ ନେଇଯାଇଛି, ମୋ ଜୀବନହାନିର ଚେଷ୍ଟା କରିଛି, ତାକୁ ହତ୍ୟା କରିବା ସମୀଚୀନ ହେବ କିମ୍ବା ନୁହେଁ ? ତା'ର ପାପ କାର୍ଯ୍ୟକୁ ପ୍ରଶ୍ରୟ ଦେଲେ ନରକର ଅଭିଶାପ ମୋ ଉପରେ ପଡ଼ିବ ନାହିଁ ?

ଅଫେଲିଆର ଶେଷକ୍ରିୟା ସମୟରେ ଲେୟାର୍ଟେସ୍ ପ୍ରତି ନିଜର ବ୍ୟବହାରରେ ହାମଲେଟ୍ ଅନ୍ୟାୟ କରିଥିଲା ବୋଲି ହୋରାସିଓ ନିକଟରେ ସ୍ୱୀକାର କରେ । ତା' ଠାରୁ ସେ କ୍ଷମା ମାଗିନେବ ବୋଲି କହେ ।

ରାଜାଙ୍କର ଜଣେ ଅନୁଚରଠାରୁ ହାମଲେଟ୍ ଖବର ପାଏ ଯେ ସେ ହାମଲେଟ୍ ଆଉ ଲେୟାର୍ଟେସ୍ ମଧ୍ୟରେ ଅସି-କ୍ରୀଡ଼ାର ବ୍ୟବସ୍ଥା କରିଛନ୍ତି । ନିଜସ୍ୱ ଶ୍ଳେଷରୀତିରେ କିଛି କହିବା ପରେ ହାମଲେଟ୍ ଏଥିପାଇଁ ରାଜି ହୋଇଯାଏ । ଆଉଜଣେ ପାରିଷଦ ଆସି ଜାଣିବାକୁ ଚାହାନ୍ତି ହାମଲେଟ୍ କେବେ ଏଇ ପ୍ରତିଯୋଗିତା ପାଇଁ ପ୍ରସ୍ତୁତ ହୋଇପାରିବେ ? ହାମଲେଟ୍ ଉତ୍ତର ଦିଏ ଯେ ସେ ସବୁବେଳେ ପ୍ରସ୍ତୁତ । ପାରିଷଦ ଆହୁରି ଜାଣନ୍ତି ଯେ, ରାଣୀ ଚାହାନ୍ତି, ଅସି ଯୁଦ୍ଧରେ ପ୍ରବୃତ୍ତ ହେବା ପୂର୍ବରୁ ହାମଲେଟ୍ ଯେମିତି ଲେୟାର୍ଟେସ୍ ସହିତ ସୌଜନ୍ୟ ବିନିମୟ କରିବାକୁ ନ ଭୁଲେ । ହାମଲେଟ୍ ସେଥିରେ ବି ରାଜି ।

ପାରିଷଦ ଚାଲିଯିବା ପରେ ହୋରାସିଓ ନିଜର ଆଶଙ୍କା ପ୍ରକଟ କରେ । ତା'ର ଆଶଙ୍କା ହାମଲେଟ୍ ଏଇ ପ୍ରତିଯୋଗିତାରେ ହାରିଯିବ । ହାମଲେଟ୍ ସେ କଥା ମାନେ ନାହିଁ । ସେ କହେ- ଲେୟାର୍ଟେସ୍ ଫ୍ରାନ୍ସରେ ଥିବା ବେଳେ ସେ ନିୟମିତ ତରବାରି ଚାଳନାର ଅଭ୍ୟାସ କରିଛି । ସେ ଅବଶ୍ୟ ଅନ୍ତର୍ଦ୍ୱନ୍ଦ୍ୱରେ ଭୋଗୁଛି । ତେବେ କ୍ରୀଡ଼ାରେ ତା'ର ପ୍ରଭାବ ପଡ଼ିବ ନାହିଁ ।

ହୋରାସିଓ କହେ- ଯଦି ତମ ମନରେ ଏଥିପାଇଁ ଆଗ୍ରହ ନ ଥାଏ, ତେବେ ସେଇଆକୁ ମାନି ଚଳିବା ଉଚିତ । ସମସ୍ତେ ଆସିଲେ ମୁଁ ଜଣାଇଦେବି ଯେ, ତମେ ଏଥିପାଇଁ ବର୍ତ୍ତମାନ ପ୍ରସ୍ତୁତ ନୁହଁ ।

ହାମଲେଟ୍ ପ୍ରତିବାଦ ଜଣାଇ କହେ - ମୃତ୍ୟୁ ଅନିବାର୍ଯ୍ୟ, ଆଉ ସମସ୍ତଙ୍କର ଜୀବନରେ ଥରେ ମାତ୍ର ଆସେ । ସେଥିପାଇଁ ପ୍ରସ୍ତୁତ ହୋଇଥିବା ବରଂ ଭଲ । ଏଇ ପ୍ରସ୍ତୁତିଟା ହିଁ ବଡ଼ କଥା । ମଣିଷ ଯାହା ଛାଡ଼ିଯାଏ, ତା' ଉପରେ ଯେତେବେଳେ ତା'ର କୌଣସି ଅଧିକାର ନ ଥାଏ, ସେତେବେଳେ ଯାହା ରହିବାର ରହୁ, ଯାହା ହେବାର ହୋଇଯାଉ ।

ଯୁଦ୍ଧରେ ପ୍ରବୃତ୍ତ ହେବା ପୂର୍ବରୁ ହାମଲେଟ୍ ଲେୟାର୍ଟେସ୍‌ର ହାତରେ ହାତ ରଖେ, ନିଜ ଆଚରଣ ପାଇଁ କ୍ଷମା ପ୍ରାର୍ଥନା କରେ । ଲେୟାର୍ଟେସ୍ ଉତ୍ତର ଦିଏ-ପ୍ରତିଶୋଧ କାମନାରେ ମୁଁ ଜର୍ଜରିତ ହେଲେ ବି ବର୍ତ୍ତମାନ ତମ କଥାରେ ସନ୍ତୁଷ୍ଟ ।

ଖୋଲା ମନରେ ଆଗେଇଆସି ହାମଲେଟ୍ ତରବାରି ମାଗେ । ଲେୟାର୍ଟେସ୍‌କୁ କହେ - ମୁଁ ତୁମର ସମକକ୍ଷ ପ୍ରତିଦ୍ୱନ୍ଦ୍ୱୀ ନୁହେଁ । ମୋର ଦୁର୍ବଳତା ତମର କୁଶଳତାର ଆକାଶରେ ଉଜ୍ଜ୍ୱଳ ନକ୍ଷତ୍ର ତୁଲ୍ୟ ଦେଦୀପ୍ୟମାନ ହେବ ।

- ତମେ କ'ଣ ମୋତେ ଉପହାସ କରୁଛ ?

- ନା ମୁଁ ଶପଥ କରି କହୁଛି ।

ରାଜାଙ୍କର ଆଦେଶରେ ଦୁଇ ପ୍ରତିଦ୍ୱନ୍ଦ୍ୱୀଙ୍କୁ ଅସ୍ତ୍ର ଦିଆଯାଏ । ରାଜା କହନ୍ତି - ଏ ପ୍ରତିଯୋଗିତାରେ ଯଦି ହାମଲେଟ୍ ଜୟ ଲାଭ କରେ, ତେବେ ତା'ର ସମ୍ମାନରେ ଦୁର୍ଗର ସମସ୍ତ ତୋପ ଏକାଥରକେ ଗର୍ଜି ଉଠିବ । ହାମଲେଟ୍‌ର ଦୀର୍ଘ ଆୟୁ କାମନା କରି ତାକୁ ଏଭଳି ଏକ ମୂଲ୍ୟବାନ୍ ରତ୍ନ ଉପହାର ଦିଆଯିବ, ଯାହା ଡେନ୍‌ମାର୍କର ଚାରିଜଣ ରାଜାଙ୍କର ମୁକୁଟଖଚିତ ରତ୍ନଠାରୁ ମଧ୍ୟ ଅଧିକ ମୂଲ୍ୟବାନ୍ ।

ଅସି-ଯୁଦ୍ଧ ଆରମ୍ଭ ହୋଇଯାଏ । ପରପର ଦୁଇବାର ହାମଲେଟ୍‌ର ତରବାରି ଲେୟାର୍ଟେସ୍‌କୁ ଆଘାତ କରେ । ରାଜା ମନ୍ତବ୍ୟ କରନ୍ତି - ଆମ ପୁତ୍ର ହିଁ ଜିତିବ । ହାମଲେଟ୍‌କୁ ଧଇଁସଇଁ ହେବାର ଦେଖି ରାଣୀ ଚିନ୍ତିତ ହୋଇପଡ଼ନ୍ତି । ନିଜର ରୁମାଲରେ ତା'ର ଝାଳ ପୋଛିଦେବା ପାଇଁ ଆଗେଇ ଆସନ୍ତି । ତେବେ ଇତିମଧ୍ୟରେ ରାଣୀଙ୍କ ତ୍ରୁଟି ପାଇଁ ଗୋଟିଏ ସର୍ବନାଶ ହୋଇଯାଏ । ହାମଲେଟ୍ ପାଇଁ ରଖା ଯାଇଥିବା ବିଷାକ୍ତ ପାନୀୟ ସେ ନିଜେ ପିଇ ଦିଅନ୍ତି । ରାଜା ବାଧା ଦେବାର ସୁଯୋଗ ପାଆନ୍ତି ନାହିଁ ।

ଖେଳ ପୁଣି ଆରମ୍ଭ ହୁଏ । ଏଥର ଲେୟାର୍ଟେସ୍ ହାମଲେଟ୍‌କୁ ଆଘାତ କରେ । ଏ ଆଘାତ ଯେ କେବଳ ଖେଳର ଆଘାତ ନୁହେଁ, ହାମଲେଟ୍ ତା' ବୁଝିପାରେ । ତୁମୁଳ ସଂଗ୍ରାମ ଚାଲେ । ଯୁଦ୍ଧଭିତରେ ଅସ୍ତ୍ର ବଦଳ କରାଯାଏ । ଲେୟାର୍ଟେସ୍‌ର ତରବାରି ହାମଲେଟ୍ ହାତକୁ ଆସେ । ହାମଲେଟ୍‌ର ତରବାରି ଯାଏ ଲେୟାର୍ଟେସ୍ ହାତକୁ । ତା'ପରେ ଲେୟାର୍ଟେସ୍‌କୁ ଆଘାତ କରେ ହାମଲେଟ୍ ।

ରାଜା ଚିତ୍କାର କରି ଉଠନ୍ତି - ସେମାନଙ୍କୁ ଅଲଗା କରିଦିଅ । ରାଗରେ ସେମାନେ ପାଗଳ ହୋଇଯାଇଛନ୍ତି । ଲେୟାର୍ଟେସ୍‌କୁ ଆଉ ଥରେ ଆଘାତ କରେ ହାମଲେଟ୍ । ଏ ଭିତରେ ରାଣୀ ପଡ଼ିଯାନ୍ତି । ବିଷକ୍ରିୟା ଆରମ୍ଭ ହୋଇଯାଇଥାଏ ।

ଲେୟାର୍ଟେସ୍ ବୁଝିପାରେ, ତା'ର ସମୟ ଶେଷ ହୋଇଆସୁଛି । ସେ କହେ - ମୋ ବିଶ୍ୱାସଘାତକତା ପାଇଁ ମୁଁ ଆଜି ନିଜେ ମରିବାକୁ ଯାଉଛି ।

ରାଣୀଙ୍କର କ'ଣ ହେଲା ବୋଲି ହାମଲେଟ୍ ଜାଣିବାକୁ ଚାହେଁ । ରାଜା ପ୍ରକୃତ ଘଟଣା ଲୁଚାଇ କହନ୍ତି - ତମମାନଙ୍କର ରକ୍ତପାତ ଦେଖି ସେ ଅଜ୍ଞାନ ହୋଇପଡ଼ିଛନ୍ତି । କିନ୍ତୁ ରାଣୀ କହିଉଠନ୍ତି - ନା ନା - ଏଇ ମଦରେ ବିଷ ଥିଲା । ହାମଲେଟ୍ ମୁଁ ବିଷାକ୍ତ ମଦ ପିଇଦେଇଛି ।

ହାମଲେଟ ନିକଟରେ ସବୁ କିଛି ସ୍ପଷ୍ଟ ହୋଇଯାଏ । ଲେୟାର୍ଟେସ୍ ବି ପଡ଼ିଯାଏ । କହେ - ଏଇ ତରବାରିର ଧାରରେ ରହିଛି ଆମ ମୃତ୍ୟୁର ବୀଜ । ତମେ ମଧ ମୃତ୍ୟୁ ଦ୍ୱାରରେ । ପୃଥିବୀର କୌଣସି ଔଷଧ ତମକୁ ବଞ୍ଚାଇ ପାରିବ ନାହିଁ । ତମର ଆୟୁଷ ଆଉ ଅଧଘଣ୍ଟା ମାତ୍ର । ମୁଁ ତ ମରୁଛି । ବିଷ ପ୍ରୟୋଗରେ ତମ ମା'ଙ୍କର ମୃତ୍ୟୁ ହୋଇଛି । ସବୁ କିଛି ପାଇଁ ଦାୟୀ ଏଇ ରାଜା । ତରବାରିର ଧାରରେ ବିଷ ରହିଛି ଜାଣି ହାମଲେଟ୍ ସେଇ ତରବାରିକୁ ରାଜାଙ୍କ ଛାତିରେ ଭୁସି ଦିଏ । ପ୍ରାଣଭୟରେ ଆର୍ତ୍ତନାଦ କରୁ କରୁ ରାଜା ଅନ୍ୟ ଦର୍ଶକମାନଙ୍କୁ ଅନୁରୋଧ କରନ୍ତି - ଆପଣମାନେ ମୋତେ ବଞ୍ଚାନ୍ତୁ । ମୁଁ କେବଳ ଆହତ ହୋଇଛି ।

ହାମଲେଟ୍ ଏଥର ତା' ମାଆ ପାନ କରିଥିବା ଅବଶିଷ୍ଟ ପାନୀୟତକ ଜୋର୍ କରି ରାଜାଙ୍କ ପାଟିରେ ଢାଳିଦିଏ ।

ମୃତ୍ୟୁ କୋଳରେ ଢଳିପଡ଼ିବା ପୂର୍ବରୁ ଲେୟାର୍ଟେସ୍ କହିଯାଏ - ବିଚାର ଠିକ୍ ହୋଇଛି । ବିଷ ସେଇ ମିଶାଇଥିଲେ । ହାମଲେଟ୍, ତମେ ମୋତେ କ୍ଷମାକର । ମୋର ଓ ମୋ ପିତାଙ୍କର ମୃତ୍ୟୁର ଅପରାଧରୁ ତମେ ମୁକ୍ତ । ମୁଁ ବି ତମ ମୃତ୍ୟୁର ଦାୟରୁ ମୁକ୍ତ ହେଲି ।

ହାମଲେଟ୍ ହୋରାସିଓକୁ କହେ - ବନ୍ଧୁ ମୁଁ ବିଦାୟ ନେଉଛି । ଆଜି ଯେଉଁମାନେ ନୀରବରେ ଏଇ ରକ୍ତାକ୍ତ କାଣ୍ଡ ଦେଖିଗଲେ ସେମାନଙ୍କୁ ସବୁ କଥା କୁହାଯାଇପାରିଲା ନାହିଁ । ଏଇ ଯାହା ଦୁଃଖ । ମୃତ୍ୟୁ ଦୂତ ମୋତେ ବନ୍ଦୀ କଲେଣି । କିନ୍ତୁ ତମେ ସେମାନଙ୍କୁ ସବୁ କଥା ବୁଝାଇଦେବ । ଏଇ ଯନ୍ତ୍ରଣାକ୍ଲିଷ୍ଟ ପୃଥିବୀରେ ଆଉ କିଛିଦିନ ବଞ୍ଚିରହି ତମେ ମୋର କାହାଣୀ ବିବୃତ କରିବ । ସେମାନଙ୍କର କୌତୂହଳ ଦୂର କରିବ ।

ଦୂରରୁ ସେନାର ଆଗେଇ ଆସିବାର କୋଳାହଳ ଶୁଣାଯାଏ । ଯୁବକ ଫର୍ଟିନ୍‌ବ୍ରସ୍ ପୋଲାଣ୍ଡ ବିଜୟ କରି ଫେରୁଛନ୍ତି । ହାମଲେଟ୍ ତା'ର ମୃତ୍ୟୁ ପୂର୍ବରୁ ଭବିଷ୍ୟବାଣୀ କରିଯାଏ ।

ଏଣିକି ଡେନ୍‌ମାର୍କର ଶାସନ ଦାୟିତ୍ୱ ଗ୍ରହଣ କରିବେ ଫର୍ଟିନ୍‌ବ୍ରସ୍ । ହୋରାସିଓକୁ ତାଙ୍କୁ ସବୁ କଥା ବୁଝାଇ ଦେବାକୁ କହେ । ଶେଷଥର ପାଇଁ ହାମଲେଟ୍ କଣ୍ଠରୁ ନିର୍ଗତ ହୁଏ — ନୀରବତା... ଏଥର କେବଳ ନୀରବତା ।

ଇଂରେଜ ରାଜଦୂତଙ୍କ ସହିତ ଫର୍ଟିନ୍‌ବ୍ରସ୍ ଆସନ୍ତି । ହାମଲେଟ୍‌ର ମୃତ୍ୟୁ ସମ୍ବାଦ ସେ ପାଇଛନ୍ତି । ଗଭୀର ଶୋକରେ ସେ କହନ୍ତି - ହେ ମୃତ୍ୟୁ, ମାତ୍ର ଗୋଟିଏ ବାଣରେ ତମେ ଏତେ ବଡ଼ ରାଜପୁରୁଷକୁ ହତ୍ୟା କରିପାରିଲ !

ଇଂଲଣ୍ଡରୁ ସମ୍ବାଦ ଆସେ - ହାମଲେଟ୍‌ର ଦୁଇ ସହପାଠୀଙ୍କର ମୃତ୍ୟୁ ହୋଇଛି । ଏ ସମ୍ବାଦ ଆଣେ ଜଣେ ଅନୁଚର । ରାଜାଙ୍କୁ ନିହତ ଅବସ୍ଥାରେ ଦେଖି ସେ କହେ—ଏ ସମ୍ବାଦ ଯାହାଙ୍କୁ ଶୁଣାଇବା ପାଇଁ ଆସିଛି, ସେ ତ ଏ ଦୁନିଆର ମାୟା କଟାଇ ବିଦାୟ ନେଇଗଲେଣି । ଆଉ ଆମକୁ ଧନ୍ୟବାଦ ଦେବ କିଏ ?

ହୋରାସିଓ କହେ - ସେ ବଞ୍ଚିଥିଲେ ବି ତମେ ଧନ୍ୟବାଦ ପାଇ ନ ଥାନ୍ତ । କାରଣ ସେ ଏଇ ନିର୍ଦ୍ଦେଶ ଦେଇ ନ ଥିଲେ । ସବୁ କଥା କହିବା ପୂର୍ବରୁ ମୁଁ ଏଇ ମୃତ ଦେହଗୁଡ଼ିକ ଗୋଟାଏ ଉଚ୍ଚମଞ୍ଚରେ ରଖିବାକୁ ଚାହେଁ । ତା'ପରେ ମୁଁ ଜନତା ସମ୍ମୁଖରେ ଏ ଘଟଣା ଆମୂଳଚୂଳ ବର୍ଣ୍ଣନା କରିବି ।

ଫର୍ଟିନ୍‌ବ୍ରସ୍ କହନ୍ତି - ଆମେ ଶୁଣିବାକୁ ପ୍ରସ୍ତୁତ । ଯେଉଁମାନେ ଏଥିପାଇଁ ଆଗ୍ରହୀ ସେମାନେ ଶୀଘ୍ର ସମବେତ ହୁଅନ୍ତୁ ।

ଫର୍ଟିନ୍‌ବ୍ରସ୍ ଡେନ୍‌ମାର୍କର ଅଧିକାର ଲାଭ କରନ୍ତି । ସେ ନିର୍ଦ୍ଦେଶ ଦିଅନ୍ତି - ହାମଲେଟ୍‌ର ମରଦେହ ମଞ୍ଚ ଉପରେ ସ୍ଥାପନ କରାଯାଇ ତାଙ୍କୁ ବୀର ସୈନିକର ସମ୍ମାନ ଦିଆଯାଉ । ବଞ୍ଚିଥିଲେ ସେ ହିଁ ହୋଇଥାଆନ୍ତେ ଡେନ୍‌ମାର୍କର ରାଜା ।

ଫର୍ଟିନ୍‌ବ୍ରସ୍ ଆହୁରି ନିର୍ଦ୍ଦେଶ ଦିଅନ୍ତି, ସାମରିକ ପ୍ରଥାନୁସାରେ, ସାମରିକ ସଙ୍ଗୀତ ବାଦନ ସହିତ ମରଦେହ ସମାଧିସ୍ଥଳକୁ ନିଆଯିବ ଏବଂ ତାଙ୍କର ସମ୍ମାନରେ ତୋପଧ୍ୱନି କରାଯିବ ।

# ଆଣ୍ଟୋନି ଏଣ୍ଡ୍ କ୍ଲିଓପେଟ୍ରା

॥ ୧ ॥

ମିଶରର ଆଲେକଜାଣ୍ଡ୍ରିଆ ସହରରେ କ୍ଲିଓପେଟ୍ରାଙ୍କର ପ୍ରାସାଦ। ସେଠାରେ ଆଳାପରତ ଥିଲେ ଡିମିଟ୍ରିୟସ୍ ଏବଂ ଫାଇଲୋ । ଆଲୋଚନା ହେଉଥିଲା ଆଣ୍ଟୋନିଙ୍କ ସମ୍ପର୍କରେ । ସେ ବୀର, ଯୁଦ୍ଧ ବିଦ୍ୟାରେ ଦକ୍ଷ, ତେବେ ସମ୍ପ୍ରତି କ୍ଲିଓପେଟ୍ରାଙ୍କ ପ୍ରତି ଅତିରିକ୍ତ ଆସକ୍ତ । ତାଙ୍କୁ ସନ୍ତୋଷ ଦେବାରେ ବ୍ୟସ୍ତ ।

ଦୂରରୁ ଆଣ୍ଟୋନି କ୍ଲିଓପେଟ୍ରା ପ୍ରଭୃତିଙ୍କୁ ଆସୁଥିବାର ଦେଖି ଫାଇଲୋ କହେ— ଏଇ ସେମାନେ ଆସୁଛନ୍ତି । ଯାହା କହିଲି - ତମେ ସେ ସବୁର ଚାକ୍ଷୁଷ ପ୍ରମାଣ ପାଇଯିବ । ଆଖି କାନ ଖୋଲା ରଖିଲେ ହେଲା । ସେମାନେ ଅନ୍ତରାଳକୁ ଚାଲିଯାଆନ୍ତି ।

କ୍ଲିଓପେଟ୍ରା କହୁଥାଆନ୍ତି - ପ୍ରେମ କଥାତ ଶୁଣୁଛି । କହିପାରିବ, ତା'ର ପରିମାଣ କେତେ ? ଆଣ୍ଟୋନି ଉତ୍ତର ଦିଅନ୍ତି - ପ୍ରେମରେ ଅଛି ଭିକ୍ଷାର୍ଥୀର ବ୍ୟାକୁଳତା - ତେବେ ତାକୁ ସହ୍ୟ କରାଯାଇପାରେ ।

ମୃଦୁହାସ୍ୟ କରି କ୍ଲିଓପେଟ୍ରା କହନ୍ତି - ମୁଁ ଗୋଟାଏ ସୀମା ଠିକ୍ କରି ଦେଉଛି । ପ୍ରେମର ପରିସୀମା ହେବ ସେତିକି ।

ଆଣ୍ଟୋନି ହସିଉଠନ୍ତି । କହନ୍ତି - ତେବେ ତମକୁ ଏକ ନୂତନ ପୃଥିବୀ ଖୋଜିବାକୁ ହେବ ।

ଦୂତ ଆସି ଜଣାଏ -ରୋମ୍‌ରୁ ସମ୍ବାଦ ଆସିଛି ।

କ୍ଲିଓପେଟ୍ରା ବ୍ୟଙ୍ଗାତ୍ମକ କଣ୍ଠରେ କହନ୍ତି - ଯାଅ, ଯାଅ, ଶୁଣିଆସ । ହୁଏତ ତମର ସ୍ତ୍ରୀ ଫୁଲଭିୟା ରାଗି ଯାଇଛନ୍ତି କିମ୍ବା ସେଇ ଦାଢ଼ିଆ ସିଜର କିଛି ଜରୁରୀ ଖବର ଦେଇଛନ୍ତି ।

ଆଣ୍ଟୋନି ଲଘୁ ସ୍ୱରରେ କହନ୍ତି- ତେବେ ମୋର ଏଇ ପ୍ରେମର ଅବସ୍ଥା କ'ଣ ହେବ ?

କ୍ଲିଓପେଟ୍ରା ଉତ୍ତର ଦିଅନ୍ତି - ତମେ ଆଉ ବୃଥା ସମୟ ନଷ୍ଟ କରନାହିଁ । ଦୂତମାନଙ୍କୁ ଡାକ । ମୁଁ ମିଶରର ରାଣୀ । ତମେ କିନ୍ତୁ ସିଜରଙ୍କର ଆଜ୍ଞାବହ । ଫୁଲଭିୟାର ଭର୍ତ୍ସନାରେ ଏବେ ମଧ୍ୟ ତମର ମୁହଁ ରଙ୍ଗା ପଡ଼ିଯାଏ ।

ଆଣ୍ଟୋନି କବିତ୍ୱ ଆରମ୍ଭ କରନ୍ତି - ଭାସିଯାଉ ରୋମ୍-ଦେଶ ଟାଇବର ସ୍ରୋତ, ଭାଙ୍ଗିପଡୁ ଯେତେକ ତୋରଣ, ମିଶର, ପ୍ରାଣପ୍ରିୟ ତୀର୍ଥଭୂମି ମିଶର ମୋହର; ଭୁଲି ନାହିଁ ନ ଭୁଲିବି ତୋତେ । ରାଜପଣ ଅଚଳ ସମ୍ପଦ, ମୂଲ୍ୟହୀନ ମୋର ପାଶେ , ପ୍ରେମପୂର୍ଣ୍ଣ ଆଲିଙ୍ଗନ

ପ୍ରିୟା ବାହୁଡୋର, ଜୀବନର ଯା' କିଛି ମହତ୍ତ୍ୱ ତାହା ଏଇ ଅଭାବରେ ତା'ର - ଏ ପୃଥିବୀ ରୁକ୍ଷ ମରୁସ୍ଥଳୀ -

କ୍ଲିଓପେଟ୍ରା ହସି ହସି କହନ୍ତି - ଚମତ୍କାର କବିତା । ତମେ ବିବାହ କରିଛ, ଅଥଚ ସ୍ତ୍ରୀ କୁ ଭଲପାଇ ନାହିଁ । ଏ କଥା ବିଶ୍ୱାସ କଲାଭଳି ବୋକା କିନ୍ତୁ ମୁଁ ନୁହେଁ ।

ଆଣ୍ଟୋନି କହନ୍ତି - ଏଭଳି ଗୋଟାଏ ରୋମାଣ୍ଟିକ୍ ମୁହୂର୍ତ୍ତକୁ ଏଇ ଶୁଷ୍କ ତର୍କ ବିତର୍କରେ ନଷ୍ଟ କରି ଲାଭ ନାହିଁ । ଜୀବନର ଗୋଟିଏ ମୁହୂର୍ତ୍ତ ଯେମିତି ଆନନ୍ଦ ଶୂନ୍ୟ ନ ହୁଏ, ତା' ଆମକୁ ଦେଖିବାକୁ ହେବ । ଆଜି ରାତିରେ କ'ଣ ଖେଳର ବ୍ୟବସ୍ଥା ଅଛି ?

କ୍ଲିଓପେଟ୍ରା କହନ୍ତି - ପ୍ରଥମେ ଦୂତମାନେ କି ଖବର ଆଣିଲେ, ଶୁଣିଆସ ।

- କଳହପ୍ରିୟାରାଣୀ, ଆଜି ଆଉ ଦୂତଫୂତ ନୁହେଁ । ଆଜି ରାତିରେ ଆମେ ପଥେପଥେ ଘୁରି ବୁଲିବୁ, ଆଉ ନାଗରିକମାନଙ୍କର ଆଚାର ବିଚାର ଲକ୍ଷ୍ୟ କରିବୁ । ଗତକାଲି ଠାରୁ ତାହା ସ୍ଥିର ହୋଇରହିଛି ।

ଦୂତଠାରୁ ଆଣ୍ଟୋନି ଶୁଣିବାକୁ ପାଆନ୍ତି ଯେ, ରୋମ୍‌ରେ ତାଙ୍କର ସ୍ତ୍ରୀ ଆଉ ଭାଇଙ୍କର ବିରୋଧରୁ ପ୍ରାୟ ଯୁଦ୍ଧର ସୂତ୍ରପାତ ହୋଇଥିଲା । ପରେ ଅବଶ୍ୟ ତାର ସମାଧାନ ହୋଇଯାଇଛି । ସେମାନେ ଏକତ୍ର ଅକ୍ଟୋଭିୟସ୍ ସିଜରଙ୍କ ବିରୋଧରେ ଯୁଦ୍ଧ ମଧ୍ୟ କରିଛନ୍ତି । ତେବେ ପରିଣାମ ଭଲ ହୋଇ ନାହିଁ । ପ୍ରଥମ ସଂଘର୍ଷରେ ହିଁ ସେମାନେ ଇଟାଲୀରୁ ବିତାଡ଼ିତ ହୁଅନ୍ତି । ଅନ୍ୟ ଦିଗରେ ଲେବିୟେନସ୍ ପାର୍ଥିୟାର ସୈନ୍ୟବାହିନୀ ଦ୍ୱାରା ଏସିଆ ଜୟ କରିଛନ୍ତି । ତାଙ୍କର ବିଜୟ ଯାତ୍ରା ସିରିଆରୁ ଲିଭିୟା ଓ ଆୟୋନିୟା ପର୍ଯ୍ୟନ୍ତ ପ୍ରସାରିତ । ଆଣ୍ଟୋନି ଅନୁଭବ କରନ୍ତି, ତାଙ୍କର ଅନୁପସ୍ଥିତି ରୋମ୍ ପାଇଁ କ୍ଷତିକର ହୋଇପଡୁଛି । ମନେ ମନେ କିନ୍ତୁ କହନ୍ତି, ମିଶର ରାଣୀଙ୍କର ଏଇ ବନ୍ଧନ ଏଥର ଛିଣ୍ଡାଇବାକୁ ପଡ଼ିବ । ଅନ୍ତତଃ ଦେଶପାଇଁ ଏହା କରିବାକୁ ହିଁ ହେବ । ଆହୁରି ଏକ ଦୁଃସମ୍ବାଦ ମଧ୍ୟ ତାଙ୍କୁ ଶୁଣିବାକୁ ହୁଏ । ଫୁଲଭିୟା ସିସିୟନ୍‌ରେ ମୃତ୍ୟୁ ବରଣ କରିଛନ୍ତି । ଆଣ୍ଟୋନି ଭାବନ୍ତି, ଜଣେ ମହୀୟସୀ ତାଙ୍କ ଜୀବନରୁ ବିଦାୟ ନେଲେ । ଦିନେ ତାଙ୍କୁ ମୁଁ ମୋଠୁଁ ଦୂରରେ ରଖିବାକୁ ଚାହିଁଥିଲି । ଆଜି ତାଙ୍କୁ ଫେରିପାଇବାକୁ ପ୍ରାଣ ବାରମ୍ବାର ଆକୁଳ ହୋଇଉଠୁଛି । ଯେମିତି ହେଉ, ଏଇ କୁହୁକିନୀ ନାରୀର ମାୟା କଟାଇବାକୁ ପଡ଼ିବ । ନ ହେଲେ ଆହୁରି କେତେ କ୍ଷତି ହୋଇଯିବ, କିଏ ଜାଣେ ?

ବନ୍ଧୁ ଏନୋବାରବାସ୍‌ଙ୍କୁ ମଧ୍ୟ ସେ ସେଇ କଥା କହନ୍ତି । ଥଟ୍ଟା କରି ଏନୋବାରବାସ୍ କହନ୍ତି, ଏଠାକାର ନାରୀମାନଙ୍କୁ ତମେ ମାରିବାକୁ ଚାହଁ ନା କ'ଣ ? ଆମେ ଏ ଜାଗା ଛାଡ଼ିଲେ, ମରିବା ଛଡ଼ା ସେମାନଙ୍କର ଅନ୍ୟ ଗତି ନାହିଁ । ସେଇଟା କ'ଣ ଠିକ୍ ହେବ ? ପୁଣି କ୍ଲିଓପେଟ୍ରାଙ୍କର କ'ଣ ହେବ ?

ଆଣ୍ଟୋନି କହନ୍ତି - ତାଙ୍କ ସହିତ ଆଦୌ ଦେଖାହୋଇ ନ ଥିଲେ ବୋଧହୁଏ ଭଲ ହୋଇଥାଆନ୍ତା ।

ଲଘୁ ସ୍ୱରରେ ଏନୋବାରବାସ୍ କହନ୍ତି - ତା'ହେଲେ ଈଶ୍ୱରଙ୍କର ସୃଷ୍ଟିର ଏକ ବିସ୍ମୟ ତମର ଅଦେଖା ରହିଯାଇଥାଆନ୍ତା ।

ଆଣ୍ଟୋନି କହନ୍ତି - ଜାଣିଛ, ଫୁଲଭିୟା ମୃତ୍ୟୁବରଣ କରିଛନ୍ତି ।

ଏନୋବାରବାସ୍ ତଥାପି ଲଘୁଭାବରେ କଥା କହିଚାଲନ୍ତି ।

ତାଙ୍କୁ ମୃଦୁ ଧମକ ଦେଇ ଆଣ୍ଟୋନି କହନ୍ତି - ରୋମ୍‌ରେ ଅନେକ ଦରକାରୀ କାମ ବାକି ରହିଗଲାଣି । ସେକ୍ସସ୍ ପମ୍ପିୟସ୍ ସିଜରଙ୍କ ବିରୋଧରେ ବିଦ୍ରୋହ କରିଛି । ତାକୁ ବାଧା ଦେବାକୁ ହେବ ।

ଆଣ୍ଟୋନିଙ୍କର ବିଦାୟ ଯେ ଆସନ୍ନ ଏକଥା କ୍ଲିଓପେଟ୍ରାଙ୍କ କାନରେ ଉଠେ । ସେ ବ୍ୟାକୁଳ—କ'ଣ କରିବେ, ଠିକ୍ କରିପାରନ୍ତି ନାହିଁ । ଆଣ୍ଟୋନିଙ୍କୁ ଖୋଜିବାକୁ ସହଚରୀ ମାନଙ୍କୁ ଆଦେଶ ଦିଅନ୍ତି । କହନ୍ତି, ସେ ଯଦି ବିଷଣ୍ଣ ଥାଆନ୍ତି, ତେବେ କହିବ ମୁଁ ଖୁସି ଅଛି । ଆଉ ଯଦି ଉତ୍‌ଫୁଲ୍ଲ ଥାଆନ୍ତି, ତେବେ ଜଣାଇବ, ମୁଁ ଅସୁସ୍ଥ । ସହଚରୀ ଚାରମିୟାନ୍ ତାଙ୍କୁ ପରାମର୍ଶ ଦିଏ, ଆଣ୍ଟୋନିଙ୍କ ଉପରେ କୌଣସି ଚାପ ସୃଷ୍ଟି ନ କରିବା ପାଇଁ । କ୍ଲିଓପେଟ୍ରା କିନ୍ତୁ କହନ୍ତି - ତା' ନିତାନ୍ତ ବୋକାମି ହେବ । ମୁଁ ତାଙ୍କୁ ଚିରଦିନ ପାଇଁ ହରାଇବି ।

ଆଣ୍ଟୋନିଙ୍କୁ ଦେଖିବାମାତ୍ରେ କ୍ଲିଓପେଟ୍ରା ଅସୁସ୍ଥ ଅନୁଭବ କରନ୍ତି । ଆଣ୍ଟୋନିଙ୍କ ପ୍ରତି ତାଙ୍କର କ୍ଷୋଭ ଜାତ ହୁଏ । ତାଙ୍କୁ କିଛି କହିବାର ସୁଯୋଗ ନ ଦେଇ ସେ ପ୍ରଥମେ ଅଭିଯୋଗ କରନ୍ତି - ତମେ ନିଶ୍ଚୟ ତମ ସ୍ତ୍ରୀ ନିକଟକୁ ଫେରିଯାଉଛ । ଯାଅ, ଯାଅ - ଆଉ କେବେବି ଏଠାକୁ ଯେମିତି ଫେରି ନ ଆସ । କେହି ଯେମିତି କହିବାକୁ ସାହସ ନ କରନ୍ତି ଯେ, ମୁଁ ତମକୁ ବାନ୍ଧିରଖିଛି । ଜାଣେ, ତମ ଉପରେ ମୋର କୌଣସି ଅଧିକାର ନାହିଁ । କିନ୍ତୁ ମନେରଖ, ମୁଁ ବି ମିଶରର ରାଣୀ—ଯିବାପାଇଁ କୌଣସି ବାହାନା ଦେଖାଇବାର ଦରକାର ନାହିଁ । ଦିନେ ଯେ ଥିଲା ପୃଥିବୀର ଶ୍ରେଷ୍ଠ ଯୋଦ୍ଧା, ଆଜି ସେ ଶ୍ରେଷ୍ଠ ମିଥ୍ୟାବାଦୀ - ରାଣୀ କ୍ରୋଧରେ ଗର୍ଜିବାରେ ଲାଗନ୍ତି ।

ଆଣ୍ଟୋନି ନିଜର ରୋମ୍ ଫେରିବାର କାରଣ ଜଣାନ୍ତି । ପମ୍ପେଇର ବିଦ୍ରୋହ, ସ୍ତ୍ରୀଙ୍କର ମୃତ୍ୟୁ—ଏ ସବୁ କଥା କହିଯାଆନ୍ତି ।

କ୍ଲିଓପେଟ୍ରା ପ୍ରଥମେ ଅବିଶ୍ୱାସର ହସ ହସନ୍ତି । ପରେ ସମ୍ବାଦ ସତ୍ୟ ବୋଲି ଜାଣି କହନ୍ତି - ମୁଁ ଭାବୁଛି, ମୋର ମୃତ୍ୟୁକୁ ତମେ କିଭଳି ଗ୍ରହଣ କରିବ !

ଆଣ୍ଟୋନି ତାଙ୍କୁ ବୁଝାଇବାକୁ ଚାହାନ୍ତି । ଅଶାନ୍ତି ସୃଷ୍ଟି ନ କରି ମର୍ଯ୍ୟାଦାର ସହିତ ତାଙ୍କୁ ବିଦାୟ ଦେବା ନିମନ୍ତେ ଅନୁରୋଧ କରନ୍ତି । କହନ୍ତି - ମୁଁ ଯେଉଁଠାରେ ଥାଏ ନା କାହିଁକି ତମେ ଚିରକାଳ ମୋ ହୃଦୟରେ ରହିବ । ମୋର ବିଶ୍ୱାସ, ମୁଁ ମଧ୍ୟ ତମ ଭିତରେ ବଞ୍ଚିରହିବି । ଏଥର ବିଦାୟ ଦିଅ ।

ଆଣ୍ଟୋନି ଚାଲିଯାଆନ୍ତି ।

ରୋମ୍‌ରେ ଅକ୍ଟାଭିୟାସ୍ ସିଜାର୍‌ଙ୍କ ପାଖରେ ଖବର ପହଞ୍ଚେ ମିଶରରେ ଆଣ୍ଟୋନି ରାଣୀ କ୍ଲିଓପେଟ୍ରାଙ୍କ ସହିତ ବିଳାସ ବ୍ୟସନରେ ସମୟ କାଟୁଛନ୍ତି । ଶାସନ କାର୍ଯ୍ୟରେ ତାଙ୍କର ବିନ୍ଦୁମାତ୍ର ଆଗ୍ରହ ନାହିଁ ।

ଲେପାଇଡସ୍ ଆଣ୍ଟୋନିଙ୍କୁ ସମର୍ଥନ କରି କହନ୍ତି, ଆଣ୍ଟୋନିଙ୍କର ଯେ କିଛି ଭଲ ଗୁଣ ନାହିଁ, ଏହାତ କୁହାଯାଇପାରିବ ନାହିଁ । ତେବେ ବିଳାସବ୍ୟସନ ହେଲା ବଂଶଗତ ବ୍ୟାପାର । ସେଇଟା ସେ ଛାଡ଼ିପାରିବେ ନାହିଁ । ସିଜାର୍ କହନ୍ତି - ତମେ ତାଙ୍କୁ ଅଧିକ ପ୍ରଶ୍ରୟ ଦେଉଛ । ସେ ଶାସନ ବଦଳରେ ମଉଜ କରି ବୁଲିବ । ରାଣୀଙ୍କ ସହିତ ଦିନ କଟାଇବ, ଭୋଜିସଭାର ଆୟୋଜନ କରିବ, ଆଉ ତମେ ତାକୁ ଭଲ ବୋଲି ପ୍ରଶଂସାପତ୍ର ଦେବ । ଏବେ ତାଙ୍କୁ ଏଇ ମଉଜ ମଜଲିସ୍ ଯେମିତି ହେଲେ ଛାଡ଼ିବାକୁ ହେବ ।

ଦୂତ ଆସି ଦୁହିଁଙ୍କୁ ଜଣାଏ, ପମ୍ପେଇ ନୌଶକ୍ତିରେ ବଳୀୟାନ୍ । ପୁଣି ତାଙ୍କ ସହିତ ହାତ ମିଳାଇଛନ୍ତି ସିଜର୍‌ଙ୍କୁ ଭୟ କରୁଥିବା କିଛି ରାଜା । ଏବେ ତାଙ୍କ ସହିତ ଯୋଗ ଦେଇଛନ୍ତି ମେନିକ୍ରେଟସ୍ ଆଉ ମେନାସ୍ ନାମକ ଦୁଇ ଦୁର୍ଦ୍ଧର୍ଷ ଜଳଦସ୍ୟୁ । ସେମାନେ ଇଟାଲୀକୁ ପଶିଆସି ଲୁଟତରାଜ କରୁଛନ୍ତି । ଫଳରେ ରୋମ୍‌ର ନୌବାଣିଜ୍ୟ ପ୍ରାୟ ବନ୍ଦ । ଯୁଦ୍ଧ ପୂର୍ବରୁ ହିଁ ପମ୍ପେଇର ନାମରେ ଆତଙ୍କ ସୃଷ୍ଟି ହେଉଛି ।

ଆଣ୍ଟୋନିଙ୍କ ପ୍ରସଙ୍ଗ ଉଠେ । ସିଜର୍ କହନ୍ତି, ମୋଡ଼େନାରେ ହାରିଯିବା ପରେ ଦେଶରେ ଦୁର୍ଭିକ୍ଷ ସୃଷ୍ଟି ହୋଇଥିଲା । ଆଣ୍ଟୋନି ଭୀମ ବିକ୍ରମରେ ସେଇ ଦୁର୍ଭିକ୍ଷ ବିରୋଧରେ ସଂଗ୍ରାମ କରିଥିଲେ । ଆଜି ବୋଧହୁଏ ତାଙ୍କର ସେଇ ମନୋବଳ ନାହିଁ । ଚକ୍ଷୁଲଜ୍ଜାବଶତଃ ଏବେବି ଯଦି ସେ ରୋମ୍ ଫେରିଆସନ୍ତି, ଆମେ ଦୁହେଁ ମିଶି ଯୁଦ୍ଧ କରିପାରୁ । ସାଧାରଣ ସଭା ଡାକିବା ମଧ୍ୟ ଦରକାର । ଆମର ନିଷ୍କ୍ରିୟତାର ସୁଯୋଗ ନେଇ ପମ୍ପେଇ ତା'ର ଶକ୍ତି ବଢ଼ାଇବାରେ ଲାଗିଛି ।

କ୍ଲିଓପେଟ୍ରା ସେତେବେଳଯାଏ ବି ଆଚ୍ଛନ୍ନ ଅବସ୍ଥାରେ ଅଛନ୍ତି । ଆଣ୍ଟୋନିଙ୍କର ବିଚ୍ଛେଦ ସେ ସହ୍ୟ କରିପାରୁ ନାହାନ୍ତି । ବାରମ୍ବାର ସହଚରୀମାନଙ୍କୁ ପଚାରୁଛନ୍ତି — କହିପାରିବ ଆଣ୍ଟୋନି ଏବେ କେଉଁଠି ଥିବେ ? ସେ ଘୋଡ଼ା ଉପରେ ବସି ଯାଉଛନ୍ତି ନା ପାଦରେ ଚାଲି ଚାଲି ?

ତାଙ୍କୁ ପିଠିରେ ବସାଇ ଯାଉଥିବା ଘୋଡ଼ାର କି ସୌଭାଗ୍ୟ ! ସେ କ'ଣ ଏବେ ଗୁଣୁଗୁଣୁ ହୋଇ ଗୀତ ବୋଲୁଥିବେ ?

ଆଣ୍ଟୋନିଙ୍କ ପାଖକୁ ଆଲେକ୍ସସ୍ ଆସେ । ମୁକ୍ତାଟିଏ ରାଣୀଙ୍କୁ ଦେଇ କହେ ଯେ ଏଇଟି ତାଙ୍କୁ ଆଣ୍ଟୋନିଙ୍କର ଉପହାର । ଦେବା ପୂର୍ବରୁ ସେ ଏଥିରେ ଚୁମ୍ବନର ଦାଗ ଆଙ୍କି ଦେଇଛନ୍ତି । କହିଛନ୍ତି ଉପହାରଟି ସାମାନ୍ୟ, ତେବେ ଏହା ପରେ ସେ ରାଣୀଙ୍କ ସିଂହାସନ ନାନା ରାଜ୍ୟ ଦ୍ୱାରା ଆବୃତ କରିଦେବେ । ସମସ୍ତ ପ୍ରାଚ୍ୟଖଣ୍ଡ ତାଙ୍କର ପ୍ରଭୁତ୍ୱ ସ୍ୱୀକାର କରିବ ।

କ୍ଲିଓପେଟ୍ରା ପଚାରନ୍ତି - ଆଣ୍ଟୋନି ବିଷଣ୍ଣ ଥିଲେ କିମ୍ବା ପ୍ରଫୁଲ୍ଲ ମନରେ ଥିଲେ । ଆଲେକ୍ସସ୍ କହେ - ଖୁବ୍ ବିଷଣ୍ଣ କିମ୍ବା ଅତ୍ୟନ୍ତ ପ୍ରଫୁଲ୍ଲିତ ଅବସ୍ଥାରେ ମୁଁ ତାଙ୍କୁ ଦେଖି ନାହିଁ । କ୍ଲିଓପେଟ୍ରା ଆଣ୍ଟୋନିଙ୍କୁ ଚିଠି ଲେଖିବାକୁ ସ୍ଥିର କରନ୍ତି ।

॥ ୨ ॥

ମେସିନାରେ ପମ୍ପେଇଙ୍କ ପ୍ରାସାଦ । ତାଙ୍କ ଛଡ଼ା ଉପସ୍ଥିତ ଅଛନ୍ତି ମେନିକ୍ରେଟସ୍ ଏବଂ ମେନାସ୍ । ଯୁଦ୍ଧ ବିଷୟରେ ଆଲୋଚନା ଚାଲିଛି । ପମ୍ପେଇ କହନ୍ତି - ନ୍ୟାୟୋଚିତ ପଥରେ ଚାଲିଲେ ଆମେ ଦେବତାମାନଙ୍କର ସହାୟତା ପାଇବା । ଯୁଦ୍ଧରେ ଜୟଲାଭ କରିବା । ଲୋକେ ମୋତେ ଶ୍ରଦ୍ଧା କରନ୍ତି । ଜଳଯୁଦ୍ଧରେ ମୁଁ ଅପରାଜେୟ । ମାର୍କ ଆଣ୍ଟୋନି ମିଶରର ବନ୍ଦୀ । ଯୁଦ୍ଧ ପାଇଁ ତାଙ୍କର ପ୍ରସ୍ତୁତି ନାହିଁ । ସିଜର୍ ଦେଶର ଲୋକଙ୍କଠାରୁ ଅର୍ଥ ଆଦାୟ କରୁଛି । ଫଳରେ ତା'ପାଇଁ ଜନସମର୍ଥନ ପ୍ରାୟ ନାହିଁ । ଲେପାଇଡସ୍ ଦୁଇପକ୍ଷକୁ ତୋଷାମଦ କରି ଖୁସି ରଖିବାକୁ ଚାହେଁ । ତେଣୁ କେହି ତାକୁ ଗୁରୁତ୍ୱ ଦିଅନ୍ତି ନାହିଁ ।

ମେନିକ୍ରେଟସ୍ କହନ୍ତି- ସିଜର ଏବଂ ଲେପାଇଡସ୍ ଦୁହେଁ ଯୁଦ୍ଧ ପାଇଁ ଆସୁଛନ୍ତି । ସେମାନଙ୍କ ଶକ୍ତି ମଧ କିଛି କମ୍ ନୁହେଁ ।

ପମ୍ପେଇ କହନ୍ତି- ଏ ସମ୍ବାଦ ସତ୍ୟ ନୁହେଁ । ସେମାନେ ଆଣ୍ଟୋନିଙ୍କୁ ଅପେକ୍ଷା କରିଛନ୍ତି । ଆଣ୍ଟୋନି କ୍ଲିଓପେଟ୍ରାଙ୍କର ମନୋରଞ୍ଜନରେ ବ୍ୟସ୍ତ ।

ପମ୍ପେଇଙ୍କ ବନ୍ଧୁ ଭେରିୟସ୍ ଆସନ୍ତି । ତାଙ୍କଠାରୁ ଶୁଣିବାକୁ ମିଳେ ଯେ ଆଣ୍ଟୋନି ଯେକୌଣସି ମୁହୂର୍ତ୍ତରେ ରୋମ୍‌ରେ ପହଞ୍ଚୁଥିବାର ସମ୍ବାଦ ସେ ପାଇଛନ୍ତି । ପମ୍ପେଇ ତଥାପି ମାନିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । ମିଶରର ବିଧବାରାଣୀଙ୍କ ଉଷ୍ମ ଆଲିଙ୍ଗନ ଛାଡ଼ି ଆଣ୍ଟୋନି କଦାପି ଏଇ ସବୁ ଛୋଟମୋଟ ଯୁଦ୍ଧ ପାଇଁ ଆସିବେ ନାହିଁ ବୋଲି କହନ୍ତି । ମେନାସ୍ ଯୋଗ କରନ୍ତି ଯଦିବା ସେ ଆସନ୍ତି, ତେବେ ସିଜର୍‌ଙ୍କ ସହିତ ତାଙ୍କର ପଟିବ ନାହିଁ । ଆଣ୍ଟୋନିଙ୍କ ସ୍ତ୍ରୀ ସିଜର୍‌ଙ୍କ ଉପରେ ସନ୍ତୁଷ୍ଟ ନ ଥିଲେ । ତାଙ୍କ ଭାଇ ମଧ ସିଜରଙ୍କ ବିରୋଧରେ ବିଦ୍ରୋହ କରିଥିଲେ ।

ପମ୍ପେଇ କହନ୍ତି - ଅବଶ୍ୟ ଶକ୍ତିଶାଳୀ ଶତ୍ରୁ ଆଗରେ ନିଜ ଭିତରର ଛୋଟ ଛୋଟ ବିରୋଧକୁ ଦୂର କରିବାକୁ ହୋଇଥାଏ । ଈଶ୍ୱରଙ୍କ ଇଚ୍ଛା ହିଁ ପୂର୍ଣ୍ଣ ହେବ । ତେବେ ତିଷ୍ଠି ରହିବାକୁ ହେଲେ ଆମକୁ ଆମର ସମସ୍ତ ଶକ୍ତିର ପ୍ରୟୋଗ କରିବାକୁ ହେବ ।

ବୈଠକ ଚାଲିଛି ଲେପାଇଡସ୍‌ଙ୍କ ଘରେ । ତାଙ୍କୁ ଛାଡ଼ି ଉପସ୍ଥିତ ଅଛନ୍ତି ଆଣ୍ଟୋନି, ସିଜର ଏବଂ ଅନ୍ୟମାନେ । ବୈଠକର ଉଦ୍ଦେଶ୍ୟ ହେଉଛି ଦେଶର ବିପତ୍ତି ସମୟରେ ନିଜ ଭିତରେ ଥିବା ସମସ୍ତ ବିଭେଦ ଦୂର କରି ଶତ୍ରୁ ବିରୋଧରେ ଐକ୍ୟବଦ୍ଧ ସଂଗ୍ରାମ ନିମନ୍ତେ ବଦ୍ଧପରିକର ହେବା ।

ସିଜର ପ୍ରଥମେ ଆଣ୍ଟୋନିଙ୍କର ଦୀର୍ଘକାଳ ମିଶର ବାସ ସମ୍ପର୍କରେ ଅନୁଯୋଗ କରନ୍ତି । ଆଣ୍ଟୋନି ଓଲଟା ପ୍ରଶ୍ନ କରନ୍ତି- ତହିଁରେ ତମର କ'ଣ କ୍ଷତି ହେଲା ?

ସିଜର କହନ୍ତି - କ୍ଷତିତ କିଛି ନାହିଁ; ଯଦି ସେଠାରୁ ରାଷ୍ଟ୍ର ବିରୋଧୀ କାର୍ଯ୍ୟ କିଛି କରା ନ ଯାଏ । କିନ୍ତୁ ତମେ ଜାଣ, ତମର ସ୍ତ୍ରୀ ଓ ଭାଇ ମୋ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ଶୁଣିଛି - ଏହା ପଛରେ ଥିଲା ତମର ପ୍ରୋତ୍ସାହନ ।

ଆଣ୍ଟୋନି ଏ ଅଭିଯୋଗ ଖଣ୍ଡନ କରନ୍ତି । କହନ୍ତି, ତାହା ସହିତ ମୋର କୌଣସି ସମ୍ପର୍କ ନାହିଁ । ପ୍ରମାଣ ପାଇଁ ମୁଁ ତମକୁ କିଛି ଚିଠିପତ୍ର ଦେଖାଇପାରେ, ଯାହା ମୋର ନିର୍ଦ୍ଦୋଷତା ଜଣାଇ ଦେବ । ପ୍ରକୃତରେ ମୁଁ ମିଶରରେ ରହିଯିବା ହେତୁ ହିଁ ଫୁଲଭିୟା ଏଭଳି ଯୁଦ୍ଧ ଘୋଷଣା କରିପାରିଥିଲା ।

ବାକ୍ ବିତଣ୍ଡା ଟିକିଏ କମିବାରୁ ସିଜରଙ୍କ ବନ୍ଧୁ ଏଗ୍ରିପ୍ପା ପ୍ରସ୍ତାବ ଦିଅନ୍ତି-ତମ ଦୁହିଁଙ୍କର ଏକତା ହିଁ ବର୍ତ୍ତମାନ ରୋମ୍ ପାଇଁ ଏକାନ୍ତ ଆବଶ୍ୟକ । ଏଥିପାଇଁ ସିଜରଙ୍କ ଭଉଣୀ ଅକ୍ଟାଭିଆ ସହିତ ଆଣ୍ଟୋନିଙ୍କର ବିବାହ ପ୍ରସ୍ତାବ ମୁଁ ଦେଉଛି । ସିଜର ବିଦ୍ରୂପ କରି କହନ୍ତି-ସେ କଥା କହନା ଏଗ୍ରିପ୍ପା କଥାଟା କ୍ଲିଓପେଟ୍ରାର କାନରେ ପଡ଼ିଲେ ତମକୁ ତା'ଠୁ ଏଣୁତେଣୁ ଶୁଣିବାକୁ ପଡ଼ିପାରେ ।

ତେବେ ଆଣ୍ଟୋନିଙ୍କ ବ୍ୟବହାରରୁ ଜଣାଯାଏ ଯେ, ଏ ସମ୍ବନ୍ଧରେ ତାଙ୍କର ଆଗ୍ରହ ଅଛି । ସେ ସିଜରଙ୍କ ମତାମତ ଜାଣିବାକୁ ଚାହାନ୍ତି । ଏ ପ୍ରସ୍ତାବ ଯେ ପ୍ରକୃତରେ ସିଜରଙ୍କର- ଏ କଥା ଜାଣିବା ପରେ ଆଣ୍ଟୋନି ନିଜ ହାତ ସିଜରଙ୍କ ଆଡକୁ ବଢ଼ାଇ ଦେଇ କହନ୍ତି ଏ ଶୁଭ ଉଦ୍ଦେଶ୍ୟକୁ ସେ ଉପେକ୍ଷା କରିବାକୁ ଚାହାନ୍ତି ନାହିଁ । ସିଜର ମଧ୍ୟ ହାତ ବଢ଼ାଇ ଦେଇ କହନ୍ତି ମୁଁ ମୋର ପ୍ରାଣାଧିକା ପ୍ରିୟ ଭଉଣୀକୁ ତମ ହାତରେ ଦେଲି । ଏଇ କର ମର୍ଦ୍ଦନ ଭିତରେ ଦୁଇବନ୍ଧୁଙ୍କର ନୂତନ ସମ୍ପର୍କର ଭିତ୍ତି ପଡ଼େ । ପମ୍ପେଇ ବିରୋଧରେ କି କି ପଦକ୍ଷେପ ନିଆଯାଇପାରେ ସେ ବିଷୟରେ କିଛି ଆଲୋଚନା କରାଯାଇ ବୈଠକ ଶେଷ ହୁଏ ।

ଆଣ୍ଟୋନିଙ୍କୁ ରୋମ୍ ଛାଡ଼ି କେତେ ଦିନ ପାଇଁ ବାହାରକୁ ଯିବାକୁ ହେଉଛି । ସ୍ତ୍ରୀ ଅକ୍ଟାଭିୟା ଏବଂ ସିଜରଙ୍କ ଠାରୁ ସେ ବିଦାୟ ନେଲେ । ସ୍ତ୍ରୀଙ୍କୁ କହନ୍ତି- ଏହିଭଳି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ମୋତେ ତମଠାରୁ ମଝିରେ ମଝିରେ ବାହାରକୁ ଯିବାକୁ ପଡ଼ିବ । ଅକ୍ଟାଭିୟା ଉତ୍ତର ଦିଏ — ସେଇ ଦିନମାନଙ୍କରେ ସେ ଆଣ୍ଟୋନିଙ୍କ ପାଇଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବ ।

ଦୁହେଁ ବିଦାୟ ନେଇ ଗଲା ପରେ ହଠାତ୍ ଏକ ଜ୍ୟୋତିଷର ଉଦୟ ହୁଏ । ସେ ମିଶର ଫେରିଯିବା ପାଇଁ ଆଣ୍ଟୋନିଙ୍କୁ ପରାମର୍ଶ ଦିଏ । ସେ କହେ— ସିଜରଙ୍କ ଠାରୁ ଯଥାସମ୍ଭବ ଦୂରରେ ରୁହନ୍ତୁ । ଆପଣଙ୍କର ସଦ୍‌ଗୁଣର ବ୍ୟବହାର କରି ସିଜର ଦିନକୁ ଦିନ ଆଗକୁ ବଢ଼ିବେ । ସେଥିରେ ଆପଣଙ୍କର କିଛି ଲାଭ ହେବାର ସମ୍ଭାବନା ନାହିଁ ।

ଜ୍ୟୋତିଷଙ୍କ କଥା ଆଣ୍ଟୋନିଙ୍କ ମନରେ ଦାଗ କାଟେ । ସେ ଭାବନ୍ତି, ଏ ତ ଠିକ୍ କଥା । ଦେଖାଯାଇଛି ଯେ ଭାଗ୍ୟ ସବୁବେଳେ ସିଜରଙ୍କ ପକ୍ଷରେ । କୁକୁଡ଼ା ଲଢ଼େଇରେ ତାଙ୍କରି କୁକୁଡ଼ାଟା ଜିତେ । ପଶା ଖେଳରେ ଦାନ ତାଙ୍କରି କଥାରେ ପଡ଼େ । ଶାନ୍ତି ପାଇଁ ଅବଶ୍ୟ ମୁଁ ସିଜରଙ୍କ ଭଉଣୀକୁ ବିବାହ କରିଛି । ତଥାପି ମୁଁ ମିଶର ଯିବି । ପ୍ରାଚ୍ୟରେ ହିଁ ମୋର ସୁଖ ନିହିତ ।

ଆଲେକ୍‌ଜାଣ୍ଡ୍ରିୟା ପ୍ରାସାଦରେ ଅସ୍ଥିରତା ମଧ୍ୟରେ କ୍ଲିଓପେଟ୍ରାଙ୍କର ଧମୟ ବିତେ । ତାଙ୍କୁ କିଛି ଭଲ ଲାଗେ ନାହିଁ । କେତେବେଳେ ଗୀତ ଶୁଣନ୍ତି ତ କେତେବେଳେ ବିଲିୟାର୍ଡ ଖେଳନ୍ତି । କେତେବେଳେ ଅବା ମାଛ ଧରିବାକୁ ଯାଆନ୍ତି । କହନ୍ତି ମାଛ ଧରିବାକୁ ସେ ନଦୀ ଭିତରକୁ ଯିବେ । ବନଶୀରେ ଗୋଟାଏ ପରେ ଗୋଟାଏ ମାଛ ଟାଣି ଆଣି ଭାବିବେ ଯେ, ପ୍ରତ୍ୟେକ ମାଛ ହେଉଛନ୍ତି ଜଣେ ଜଣେ ଆଣ୍ଟୋନି । ସହଚରୀ ତାଙ୍କୁ ମନେ ପକାଇ ଦିଏ । ଅତୀତରେ ସେ ଆଉ ଆଣ୍ଟୋନି ଦୁହେଁ ଯେତେବେଳେ ମାଛ ଧରିବାର ଖେଳରେ ମାତୁଥିଲେ ସେତେବେଳେ ବୁଡ଼ାଳି ଗୋଟାଏ ପରେ ଗୋଟାଏ ମଲାମାଛ ଆଣ୍ଟୋନିଙ୍କ ବନଶୀରେ ଗୁନ୍ଥି ଦେଉଥିଲା ଆଉ ସେଇଟାକୁ ସେ ବଡ଼ ଆଗ୍ରହରେ ଟାଣି ଆଣୁଥିଲେ ।

କ୍ଲିଓପେଟ୍ରା ଦୀର୍ଘଶ୍ୱାସ ପକାଇ କହନ୍ତି- ସେ ସବୁ ସୁଖର ଦିନ ସରିଯାଇଛି । ସେତେବେଳେ ମଜାରେ ମଜାରେ କେତେଥର ମୁଁ ତାଙ୍କୁ ରଗାଇ ଦେଇଛି । ରାତିରେ ଖୁସି ବି କରି ଦେଇଛି । ପରଦିନ ମୋ ସହିତ ମଦ୍ୟ ପାନ କରି ସେ ମୋରି ବିଛଣାରେ ଶୋଇ ପଡ଼ିଛନ୍ତି ।

ଦିନେ ଦୂତ ଆସେ ଇଟାଲୀରୁ । ଆଣ୍ଟୋନିଙ୍କ ସମ୍ବାଦ ଜାଣିବା ପାଇଁ କ୍ଲିଓପେଟ୍ରା ଛୁଟିଆସନ୍ତି । ଦୂତକୁ କହନ୍ତି- ଯଦି ଶୁଣାଅ ସେ ସୁସ୍ଥ ଅଛନ୍ତି ତେବେ ଯଥେଷ୍ଟ ପୁରସ୍କାର ପାଇବ । ରାଜାମାନେ କେବେ ବି ପାଉ ନ ଥିବା, ମୋ ହସ୍ତ ଚୁମ୍ବନ କରିବାର ସୁଯୋଗ ମଧ ମୁଁ

ତୁମକୁ ଦେବି । ଦୂତ ଇତସ୍ତତଃ କରି ଆଣ୍ଟୋନି ସିଜରଙ୍କ ଭଉଣୀକୁ ବିବାହ କରିଥିବାର ହୃଦୟ ବିଦାରକ ସମ୍ବାଦଟି ଦିଏ । କ୍ରୋଧ ଆଉ ଦୁଃଖରେ କ୍ଲିଓପେଟ୍ରା ପାଗଳ ହୋଇଯାଆନ୍ତି । ଦୂତକୁ ଛୁରି ମାରିବାକୁ ଉଦ୍ୟତ ହୁଅନ୍ତି । ପରେ ନିଜକୁ ରୋକି ଚାରମିୟାନ୍‌କୁ କହନ୍ତି— ମୋ ହୃଦୟରୁ ଆଣ୍ଟୋନି ଚିରଦିନ ପାଇଁ ପୋଛି ହୋଇଯାଆନ୍ତୁ । କେବଳ ଜାଣିବାକୁ ମନ ହୁଏ, ଅକ୍ଟାଭିୟା କେତେ ସୁନ୍ଦରୀ, ଯାହାକୁ ଦେଖି ଆଣ୍ଟୋନି ସବୁ ଭୁଲିଗଲେ !

ମାଇସେନିୟାମ୍‌ଠାରେ ଦୁଇ ପକ୍ଷଙ୍କର ସାକ୍ଷାତ୍ ହୁଏ । ଗୋଟିଏ ପଟେ ପମ୍ପେଇ ଓ ମେନାସ୍ । ଅନ୍ୟ ପଟେ ସିଜର, ଆଣ୍ଟୋନି, ଲେପାଇଡସ୍ ଏବଂ ଏଗ୍ରିପ୍ପା । ପମ୍ପେଇ କହନ୍ତି ଆମ ଲୋକ କିଛି ଆପଣମାନଙ୍କ ହାତରେ ବନ୍ଦୀ ହୋଇଛନ୍ତି । ଆମେ ବି ସେମିତି ଆପଣଙ୍କ ଲୋକଙ୍କୁ ଧରିଛୁ । ତେଣୁ ଯୁଦ୍ଧ ପୂର୍ବରୁ ଆଲୋଚନା ଦ୍ୱାରା କୌଣସି ସମାଧାନ କରାଯାଇପାରେ କିମ୍ବା ନାହିଁ, ତାହା ଦେଖିବାକୁ ହେବ । ସିଜର କହନ୍ତି- ଆମର ସର୍ତ୍ତ ଆମେ ପୂର୍ବରୁ ପତ୍ର ଦ୍ୱାରା ଜଣାଇ ଦେଇଛୁ । ଆପଣମାନେ ତାକୁ ଗ୍ରହଣ କରିନେଲେ ଯୁଦ୍ଧର ପ୍ରୟୋଜନ ହେବ ନାହିଁ ।

ପମ୍ପେଇ ଅନ୍ୟ ପ୍ରସଙ୍ଗ ଅବତାରଣା କରନ୍ତି, କହନ୍ତି - କହିପାରିବେ, ମୁଁ ଓ ମୋର ଆତ୍ମୀୟମାନେ ଥାଉଁ ଥାଉଁ ମୁଁ ମୋର ପିତୃହତ୍ୟାର ପ୍ରତିଶୋଧ ନେବାକୁ ଚାହିଁବି ନାହିଁ କାହିଁକି ? ମୋର ନୌବାହିନୀ ପ୍ରସ୍ତୁତ । ରୋମ୍ ଦିନେ ବିନା କାରଣରେ ମୋର ପିତାଙ୍କୁ ଦଣ୍ଡ ଦେଇଥିଲା । ସେଇ ଅପରାଧର ଦଣ୍ଡ ଦେବା ପାଇଁ ମୁଁ ନିଶ୍ଚୟ ଚାହିଁବି ।

ଆଣ୍ଟୋନି କହନ୍ତି - ଆପଣ ଆମକୁ ଭୟ ଦେଖାଇବେ ନାହିଁ । ନୌଯୁଦ୍ଧରେ ଆମେ ମଧ୍ୟ ଆପଣଙ୍କୁ ଉଚିତ ଜବାବ୍ ଦେଇପାରିବୁ । ଆଉ ସ୍ଥଳଯୁଦ୍ଧରେ ଆମେ ଯେ ଆପଣଙ୍କର ବହୁ ଉର୍ଦ୍ଧ୍ୱରେ ତା'ତ ଆପଣଙ୍କର ଅଜଣା ରହିବା କଥା ନୁହେଁ ।

ଆଲୋଚନା ଅନ୍ୟ ଆଡ଼କୁ ମୁହାଁଇବାର ଦେଖି ଲେପାଇଡସ୍ କହନ୍ତି - ଏ ପ୍ରସଙ୍ଗ ବର୍ତ୍ତମାନ ପାଇଁ ଥାଉ । ପମ୍ପେଇ, ଆପଣ ଆମର ସର୍ତ୍ତ ସମ୍ପର୍କରେ କ'ଣ ଭାବିଛନ୍ତି, ସେ କଥା ବରଂ କହନ୍ତୁ ।

ପମ୍ପେଇ ଉତ୍ତର ଦିଅନ୍ତି - ଆପଣମାନେ ଆମକୁ ସିସିଲି ଆଉ ସାର୍ଡ଼ିନିୟା ଦେବାକୁ ଚାହିଁଛନ୍ତି । ବଦଳରେ ମୋତେ ସମୁଦ୍ରପଥକୁ ଜଳଦସ୍ୟୁ ମୁକ୍ତ କରିବାକୁ ପଡ଼ିବ । ତା' ସହିତ ନିର୍ଦ୍ଧାରିତ ପରିମାଣର ଗହମ ମଧ୍ୟ ରୋମ୍ ପଠାଇବାକୁ ହେବ । ତା'ହେଲେ ଜାଣିରଖନ୍ତୁ, ମୁଁ ଆପଣମାନଙ୍କର ସର୍ତ୍ତ ଗ୍ରହଣ କରିନେବାକୁ ପ୍ରସ୍ତୁତ ହୋଇ ଆସିଛି । କିନ୍ତୁ ଆଣ୍ଟୋନିଙ୍କର ଔଦ୍ଧତ୍ୟ ମୋର ଧୈର୍ଯ୍ୟହାନି ଘଟାଉଛି । ଶୁଣନ୍ତୁ ଆଣ୍ଟୋନି - ଆପଣଙ୍କର ଜାଣିରଖିବା ଉଚିତ ଯେ, ଯେତେବେଳେ ଆପଣଙ୍କର ଭାଇ ଓ ସିଜରଙ୍କ ଭିତରେ ଯୁଦ୍ଧ ଚାଲୁଥିଲା, ସେତେବେଳେ ଆପଣଙ୍କ ମାଆ ସିସିଲିରେ ଆଶ୍ରୟ ନେଇଥିଲେ । ଆମେ ତାଙ୍କର ଆତିଥ୍ୟରେ କୌଣସି ତ୍ରୁଟି କରି ନାହୁଁ ।

ପମ୍ପେଇଙ୍କ ବକ୍ତବ୍ୟକୁ ଗ୍ରହଣ କରିନେଇ ଆଣ୍ଟୋନି କହନ୍ତି - ହଁ, ମୁଁ ସେକଥା ଶୁଣିଛି ଏବଂ ସେଥିପାଇଁ ମୋର କୃତଜ୍ଞତା ମଧ ଜଣାଉଛି । ଏଥିପାଇଁ ମୁଁ ଆପଣଙ୍କ ଠାରେ ଋଣୀ ।

ପମ୍ପେଇ ଆଣ୍ଟୋନିଙ୍କ ଆଡ଼କୁ ବନ୍ଧୁତ୍ୱର ହାତ ବଢ଼ାଇ ଦିଅନ୍ତି । କହନ୍ତି - ଏଠି ଆପଣଙ୍କ ସହିତ ଦେଖାହେବ ବୋଲି ଭାବି ନ ଥିଲି ।

ରହସ୍ୟ କରି ଆଣ୍ଟୋନି କହନ୍ତି - ପ୍ରାଚ୍ୟର କୋମଳ ଶଯ୍ୟା ଛାଡ଼ି ଠିକ୍ ସମୟରେ ଚାଲିଆସିପାରିଛି । ତାହା ମଧ କେବଳ ଆପଣଙ୍କ ପାଇଁ ।

ଆଲୋଚନା ସଫଳ ହୋଇଥିବାରୁ ଲେପାଇଡସ୍‌·ଆନନ୍ଦ ପ୍ରକାଶ କରନ୍ତି । ପରସ୍ପରକୁ ଭୋଜି ସଭାପାଇଁ ନିମନ୍ତ୍ରଣ କରିବାର କଥା ମଧ ଉଠେ । ପମ୍ପେଇ ଆଣ୍ଟୋନିଙ୍କୁ କହନ୍ତି - ଆପଣଙ୍କ ଖାଦ୍ୟସୂଚୀରେ ବିଖ୍ୟାତ ମିଶରୀୟ ରାନ୍ଧଣା କିନ୍ତୁ ନିଶ୍ଚୟ ରହିବା ଉଚିତ । ଶୁଣିଛି, ସେଠାରେ ଯାଇ ଜୁଲିୟସ୍ ସିଜର କୁଆଡ଼େ ମୋଟା ହୋଇଯାଇଥିଲେ ।

ବ୍ୟଙ୍ଗପୂର୍ଣ୍ଣ କଣ୍ଠରେ ଆଣ୍ଟୋନି କହନ୍ତି, ତେବେତ ଆପଣ ଅନେକ କଥା ଜାଣନ୍ତି ।

ସୌଜନ୍ୟମୂଳକ ଆଉ କିଛି କଥାବାର୍ତ୍ତା ପରେ ପମ୍ପେଇ ସମସ୍ତଙ୍କୁ ତାଙ୍କ ଜାହାଜକୁ ଆମନ୍ତ୍ରଣ କରନ୍ତି ।

ସମସ୍ତେ ଚାଲିଯିବା ପରେ ଏନୋବାରବାସ୍ ଏବଂ ମେନାସ୍ ନିଜ ଭିତରେ ଆଳାପ କରୁଥାଆନ୍ତି । ଆଣ୍ଟୋନି ଓ ଅକ୍ଟାଭିୟାଙ୍କର ବିବାହ ପ୍ରସଙ୍ଗରେ ଚର୍ଚ୍ଚା ହୁଏ । ମେନାସ୍ କହେ ଏ ବିବାହରେ ପ୍ରେମ ଅପେକ୍ଷା ରାଜନୀତିଟାହିଁ ବଡ଼ ବୋଲି ମୋର ମନେ ହେଉଛି । ଏନୋବାରବାସ୍ ତାଙ୍କୁ ସମର୍ଥନ କରେ । କହେ-ତେବେ ଭବିଷ୍ୟତ୍‌ରେ ଏ ସମ୍ପର୍କ ହିଁ ହେବ ସେମାନଙ୍କ ଗଳାର ଫାଶ । ଅକ୍ଟାଭିୟା ଧର୍ମଭୀରୁ ଶୀତଳ ପ୍ରକୃତିର ଝିଅ, କଥାବାର୍ତ୍ତା ବିଶେଷ କରେ ନାହିଁ । ମେନାସ୍ କହେ - ଏଭଳି ସ୍ତ୍ରୀ ପାଇବା ତ ଭାଗ୍ୟର କଥା । ଏନୋବାରବାସ୍ କହେ ଯିଏ ନିଜେ ସେଭଳି ନୁହେଁ, ସେ କେବେ ଚାହିଁବ ନାହିଁ । ଆଣ୍ଟୋନି ତାଙ୍କର ମିଶରୀୟ ଖାଦ୍ୟ ପାଖକୁ ହିଁ ଫେରିଯିବେ । ତା'ପରେ ଅକ୍ଟାଭିୟାର ଦୀର୍ଘଶ୍ୱାସ ସିଜରଙ୍କ ମନରେ ଯେଉଁ ନିଆଁ ଜାଳିବ, ତହିଁରୁ ଆରମ୍ଭ ହେବ ବିବାଦ ।

ପମ୍ପେଇଙ୍କ ଜାହାଜରେ ସମସ୍ତେ ମଦ୍ୟପାନ କରି ମତୁଆଲା ହୋଇଯାଆନ୍ତି । ସମସ୍ତଙ୍କ କଥାବାର୍ତ୍ତାରେ ସଙ୍ଗତିହୀନତା - ନାନା ପ୍ରସଙ୍ଗ ଆସେ ।

ମେନାସ୍ ପମ୍ପେଇଙ୍କୁ ଅନ୍ତରାଳକୁ ନେଇଯାଇ ପଚାରେ - ହଜୁର, ଆପଣ କ'ଣ ପୃଥିବୀର ଅଧୀଶ୍ୱର ହେବାକୁ ଚାହାନ୍ତି ?

- ତମେ ଏ ସବୁ କ'ଣ କହୁଛ ?

- ଠିକ୍ କଥା କହୁଛି । ସିଜର୍ ଆଣ୍ଟୋନି ଆଉ ଲେପାଇଡସ୍ - ଏ ତିନିହେଁ ବର୍ତ୍ତମାନ ଦୁନିଆର ମାଲିକ । ଏମାନେ ବର୍ତ୍ତମାନ ଆପଣଙ୍କ ଜାହାଜରେ । ହୁକୁମ୍ ପାଇଲେ ଏଇ ମୁହୂର୍ତ୍ତରେ ଜାହାଜର ଦଉଡ଼ି କାଟିଦେବି । ଦୂରକୁ ଭାସିଗଲେ ଏମାନଙ୍କୁ ସହଜରେ ଶେଷ କରିଦେଇ ହେବ । ତା'ପରେ ଆପଣଙ୍କର ପଥ ନିଷ୍କଣ୍ଟକ । ପାରାକାମଟା କରିସାରି ମୋତେ ଜଣାଇଥିଲେ ମୋର କିଛି କହିବାର ନ ଥିଲା । ଏବେ କିନ୍ତୁ ଏଥିରେ ମୋର ସମ୍ମାନ ଜଡ଼ିତ । ଏହା କରିବାକୁ କେବେବି ଦେବି ନାହିଁ - ପମ୍ପେଇ କହନ୍ତି ।

ଜାହାଜରେ ଆମୋଦ ପ୍ରମୋଦ ଚାଲିଥାଏ ।

॥ ୩ ॥

ସିରିଆ ଯୁଦ୍ଧରେ ଜୟଲାଭ କରିଛନ୍ତି, ଆଣ୍ଟୋନିଙ୍କର ସେନାପତି ଭେଣ୍ଟିଡିଅସ୍ ସେଠାର ଯୁବରାଜ ପାକୋରସ୍ ଯୁଦ୍ଧରେ ନିହତ ! ସେନାପତି କହନ୍ତି - ଏତେ ଦିନରେ କ୍ରେସସ୍‌ଙ୍କ ମୃତ୍ୟୁର ପ୍ରତିଶୋଧ ନିଆଗଲା । ତାଙ୍କର ସାଥି ସିଲିୟସ୍ କହନ୍ତି - ତମେ ବରଂ ପଳାତକମାନଙ୍କୁ ଅନୁସରଣ କର । ତମର ନେତା ଆଣ୍ଟୋନି ସେଥିରେ ଖୁସି ହୋଇ ତମକୁ ବିଜୟ ରଥରେ ଚଢ଼ାଇ ବୁଲାଇବେ । ସେନାପତି ଉତ୍ତର ଦିଅନ୍ତି - ବହୁତ ହୋଇଛି । ଆଉ ନୁହେଁ । ବହୁ ସମୟରେ ତଳର ଲୋକେ ଅନେକ ବଡ଼ ବଡ଼ କାମ କରନ୍ତି । ସିଜର ଆଉ ଆଣ୍ଟୋନି ଅନେକ ସମୟରେ ସେମାନଙ୍କ ନିମ୍ନସ୍ଥ କର୍ମଚାରୀମାନଙ୍କ ପାଇଁ ବିଜୟୀ ହୋଇଛନ୍ତି । ଏଇ ସିରିଆରେ ସେନାପତି ସିସିୟସ୍ ନାଆଁ କରିବାରୁ ଆଣ୍ଟୋନିଙ୍କ ସୁନଜରରୁ ବଞ୍ଚିତ ହୋଇଥିଲା । ତେଣୁ ଉଚ୍ଚାକାଂକ୍ଷା ଜଣେ ସାଧାରଣ ସୈନିକ ପାଇଁ ହୁଏତ କ୍ଷତିକାରକ ହୋଇପାରେ । ବରଂ ମୁଁ ଆଣ୍ଟୋନିଙ୍କୁ ଜଣାଇବି ଯେ, ତାଙ୍କରି ନାମର ଯାଦୁବଳରେ ଯୁଦ୍ଧରେ ବିଜୟ ଲାଭ ହୋଇଛି । ସେ ଏଥେନ୍ସ ଯିବେ, ତେଣୁ ଶୀଘ୍ର ଯାଇ ତାଙ୍କୁ ଭେଟିବାକୁ ହେବ ।

ସିଜରଙ୍କ ପ୍ରାସାଦରେ ଆଣ୍ଟୋନି ଓ ଅକ୍ଟାଭିୟାଙ୍କର ବିଦାୟ ନେବାର ସମୟ ଆସିଯାଏ । ସିଜର କହନ୍ତି - ତମେ ମୋ ସ୍ନେହର ଭଉଣୀକୁ ନେଇଯାଉଛ । ତା' ସହିତ ମୋ ସତ୍ତାର ଗୋଟାଏ ଅଂଶ ମଧ୍ୟ ତମ ସହିତ ଚାଲିଯାଉଛି । ଆମ ଭିତରେ ଯେଉଁ ପ୍ରୀତିର ସମ୍ପର୍କ ଗଢ଼ିଉଠିଛି, ତାକୁ ବଞ୍ଚାଇ ରଖ । ଆଣ୍ଟୋନି କହନ୍ତି—ମୋତେ ଅବିଶ୍ୱାସ କରି ଦୁଃଖ ଦିଅ ନାହିଁ । ତମେ ଯାହା ଭୟ ପାଉଛ, ତାହା କେବେବି ଘଟିବ ନାହିଁ; ରୋମାନ୍‌ମାନଙ୍କ ସେବାପାଇଁ ଈଶ୍ୱର ତମକୁ ସୁସ୍ଥ ରଖିଥାଆନ୍ତୁ । ଭଉଣୀକୁ ବିଦାୟ ଦେବା ପୂର୍ବରୁ ସିଜର ସମସ୍ତଙ୍କୁ ସୁଖୀ ରଖିବା ନିମନ୍ତେ ତାକୁ ଉପଦେଶ ଦିଅନ୍ତି । ଅକ୍ଟାଭିୟା ଆଖିକୁ ଲୁହ ଆସିଯାଏ । ସିଜର ତାକୁ ଆଶ୍ୱାସନା ଦେଇ କହନ୍ତି ଯେ, ସେ ତା' ସହିତ ଯୋଗାଯୋଗ ରଖିବେ । ଆଣ୍ଟୋନି କହନ୍ତି- ସିଜର ଭଲପାଇବାକୁ ମୁଁ ମଧ୍ୟ ଜାଣେ । ଏହାର ପ୍ରମାଣ ତମେ ପାଇବ ।

ଲେପାଇଡସ୍ କହନ୍ତି - ନକ୍ଷତ୍ର ତମର ପଥ ଆଲୋକିତ କରନ୍ତୁ ।

ଆଲେକ୍‌ଜାଣ୍ଡ୍ରିଆରେ ବସି କ୍ଲିଓପେଟ୍ରା ଦୂତଠାରୁ ଅକ୍ଟାଭିୟାଙ୍କ ସମ୍ପର୍କରେ ସବୁ ଜାଣିବାକୁ ଚାହାନ୍ତି - ପଚାରନ୍ତି ସେ କ'ଣ ମୋ ଭଳି ଦୀର୍ଘ ?

- ନା ମାଡାମ୍ ।

- ତା' କଣ୍ଠସ୍ୱର କ'ଣ ତୀକ୍ଷ୍ଣ କିମ୍ବା ସେ ମୃଦୁଭାଷୀ ?

- ମୃଦୁଭାଷୀ ହିଁ ହେବେ ।

କ୍ଲିଓପେଟ୍ରା ଖୁସି ହୁଅନ୍ତି । ତେବେ ଆଣ୍ଟୋନି ବେଶିଦିନ ତାକୁ ନେଇ ସନ୍ତୁଷ୍ଟ ରହିପାରିବେ ନାହିଁ । ଦୂତ ଆହୁରି ଜଣାଏ - ଅକ୍ଟାଭିୟା ଚାଲନ୍ତି ମୃଦୁ ଛନ୍ଦରେ । ତାଙ୍କ ଭିତରେ ଯେମିତି ପ୍ରାଣସତ୍ତାର ଘୋର ଅଭାବ ।

- ବୟସ କେତେ ହେବ ?

- ମନେହୁଏ ତିରିଶ ।

- ମୁହଁଟା ମନେ ପକାଇ ପାରୁଛ ? ଗୋଲ ନା ଲମ୍ବା ?

- ନା ଗୋଲ.. ଟିକିଏ ବେଶି ବର୍ତ୍ତୁଳ ...

କ୍ଲିଓପେଟ୍ରା ଆହୁରି ଖୁସି ହୁଅନ୍ତି । ଅଧିକାଂଶ କ୍ଷେତ୍ରରେ ଏ ଧରଣର ଲୋକ ନିର୍ବୋଧ ହୁଅନ୍ତି । ବାଳର ରଙ୍ଗ କେମିତି ?

ଖଇରିଆ... କପାଳଟା ନୀଚ ।

ଖୁସି ହୋଇ ରାଣୀ କହନ୍ତି - ତମର ଗୋଟାଏ ମୋହର ପାଉଣା ରହିଲା । ଗତଥର ତମକୁ ବଡ଼ କଡ଼ା କଥା କହିଥିଲି, କିଛି ମନେକରିବ ନାହିଁ । ତମେ ଏ କାମ ପାଇଁ ଖୁବ୍ ଉପଯୁକ୍ତ । ଏବେ ପ୍ରସ୍ତୁତ ହୁଅ । ମୋର ଚିଠି ଲେଖା ଶେଷ ହୋଇଛି । ରାଣୀ ବ୍ୟସ୍ତ ହୋଇ ପଡ଼ନ୍ତି ।

ସିଜର୍ ଆଉ ଆଣ୍ଟୋନିଙ୍କ ବନ୍ଧୁତ୍ୱ ତାସ୍‌ର ଘର ଭଳି ଦ୍ରୁତ ଭାଙ୍ଗିପଡ଼େ । ଆଣ୍ଟୋନିଙ୍କର ଅଭିଯୋଗ - ସିଜର୍ ପମ୍ପେଇଙ୍କ ବିରୋଧରେ ନୂଆ କରି ଯୁଦ୍ଧ ଆରମ୍ଭ କରିଛନ୍ତି । ତା'ଛଡ଼ା ଜନତାଙ୍କୁ ନିଜ ପକ୍ଷକୁ ଆଣିବା ପାଇଁ ସେମାନଙ୍କୁ ଗୋଟାଏ ଉଇଲ୍ ପଢ଼ି ଶୁଣାଉଛନ୍ତି । ଆଣ୍ଟୋନିଙ୍କ ବିଷୟରେ ମଧ୍ୟ ଲୋକଙ୍କ ଆଗରେ ଯାହାତାହା କହି ବୁଲୁଛନ୍ତି ।

ଅକ୍ଟାଭିୟା ଅନୁନୟ କରି କହନ୍ତି - ସବୁ କିଛି ବିଶ୍ୱାସ କର ନାହିଁ । ଦୁହିଁଙ୍କ ଭିତରେ କଳହ ହେଲେ ମୋତେ ଦୁଇଜଣଙ୍କ ପାଇଁ ପ୍ରାର୍ଥନା କରିବାକୁ ପଡ଼ିବ । ଏଭଳି କାହାରି ଜୀବନରେ ଘଟି ନାହିଁ । ଈଶ୍ୱର ଯେତେବେଳେ ଶୁଣିବେ ଗୋଟାଏ ମୁହୂର୍ତ୍ତରେ ମୁଁ ମୋର ସ୍ୱାମୀଙ୍କର

ମଙ୍ଗଳ କାମନା କରି ପର ମୁହୂର୍ତ୍ତରେ ମୋର ଭାଇଙ୍କର ଶୁଭ କାମନା କରୁଛି -ସେତେବେଳେ ସେ ହସିବେ । ଥରେ କହିବି, ସ୍ୱାମୀଙ୍କୁ ବିଜୟୀ କର - ଆଉଥରେ କହିବି ମୋର ଭାଇ ଜୟଲାଭ କରନ୍ତୁ - ସେଇଟା ହେବ ଖୁବ୍ ହାସ୍ୟାସ୍ପଦ ବ୍ୟାପାର ।

ଆଣ୍ଟୋନି କହନ୍ତି - ଯାହାକୁ ତମେ ଯୋଗ୍ୟ ମନେ କରୁଛ ତାକୁ ସମର୍ଥନ କର । ତେବେ ମୁଁ ଯଦି ତାଙ୍କ ପାଖରେ ମୁଣ୍ଡ ନୁଆଁଏ, ମୋର ସମ୍ମାନ ରହିବ ନାହିଁ । ପାରୁଛ ଯଦି ତମେ ନିଜେ ଏହାର ସମାଧାନ କର ।

- କ୍ଷମତାର ଏଇ ଲଢ଼େଇ ମୋତେ ଦୁର୍ବଳ କରି ପକାଉଛି । ମୋର ପୃଥିବୀ ଦୁଇଭାଗ ହୋଇଯାଉଛି ।

- ଯେତେବେଳେ ତମେ ଜାଣିବ - ଏ ଦ୍ୱନ୍ଦ୍ୱ ପାଇଁ କିଏ ଦାୟୀ - ସେତେବେଳେ ତମେ ତା' ପ୍ରତି ବିରୂପ ହୋଇପାର । ଏଥର ଯିବାପାଇଁ ପ୍ରସ୍ତୁତ ହୁଅ । ପସନ୍ଦଯୋଗ୍ୟ ସାଥୀ ଆଉ ପ୍ରଚୁର ଅର୍ଥ ନେବାକୁ ଭୁଲିବ ନାହିଁ - ଆଣ୍ଟୋନି କହନ୍ତି ।

ପମ୍ପେଇଙ୍କ ସହିତ ସିଜର୍‌ଙ୍କ ଯୁଦ୍ଧ ସମ୍ପର୍କରେ ଅଧିକ ସମ୍ବାଦ ଆସେ । ଯୁଦ୍ଧରେ ଲେପାଇଡସ୍ ସିଜର୍‌ଙ୍କୁ ପୂର୍ଣ୍ଣ ସହଯୋଗ କରିଥିଲେ ହେଁ ସିଜର୍ ତାଙ୍କର ଭୂମିକାକୁ ଅସ୍ୱୀକାର କରନ୍ତି । କେବଳ ସେତିକି ନୁହେଁ । ସାମାନ୍ୟ ଏକ ଅପମାନଜନକ ଚିଠି ଲେଖିବାର ଅପରାଧରେ ସେ ପମ୍ପେଇଙ୍କୁ ବନ୍ଦୀ କରି ରଖିଛନ୍ତି । ସବୁ ଶୁଣି ଆଣ୍ଟୋନି ତାଙ୍କ ବୋକାମି ପାଇଁ ଲେପାଇଡସ୍‌ଙ୍କୁ ପ୍ରଥମେ ନିନ୍ଦା କରନ୍ତି ।

ସିଜର୍ ମଧ୍ୟ ନିଜ ଉଆସରେ ନିଜ ଲୋକଙ୍କୁ ଆଣ୍ଟୋନି ଓ କ୍ଲିଓପେଟ୍ରାଙ୍କ ବିରୋଧରେ ଅନେକ କଥା କହନ୍ତି । ଆଲେକଜାଣ୍ଡ୍ରିଆରେ ସୁନା ସିଂହାସନରେ ବସିଛନ୍ତି ଆଣ୍ଟୋନି ଓ କ୍ଲିଓପେଟ୍ରା । ତାଙ୍କ ପାଦ ପାଖରେ ବସାଯାଇଛି- ସିଜର୍ ବଂଶରେ ବୈଧ ବଂଶଧର ଏଇ ସିଜର୍‌ଙ୍କୁ । ସେମାନେ ତ ଅବୈଧ ... କ୍ଲିଓପେଟ୍ରାଙ୍କୁ ମିଶର, ସିରିଆ, ସାଇପ୍ରସ୍ ଓ ଲିଡ଼ିୟାର ରାଣୀ କରାଯାଉଥିଲା - ସେଇ କ୍ଲିଓପେଟ୍ରାଙ୍କୁ ଦେବୀ ରୂପରେ ଜନତାଙ୍କ ସମ୍ମୁଖରେ ଉପସ୍ଥିତ ହେବା ପାଇଁ ସୁଯୋଗ ଦିଆଯାଇଥିଲା । ସେଥିପାଇଁ ଆଣ୍ଟୋନି ମୋ ପାଖରେ କୃତଜ୍ଞ ନ ରହି - ମୋ ବିରୋଧରେ ଏଣୁ ତେଣୁ ଅଭିଯୋଗ କରୁଛନ୍ତି ! ସିସିଲିରେ ପମ୍ପେଇଙ୍କ ରାଜ୍ୟ ଲୁଟ୍ କରି ଆମେ କୁଆଡ଼େ ତାଙ୍କୁ ତାଙ୍କର ଭାଗ ଦେଇ ନାହୁଁ । ଆମକୁ କୁଆଡ଼େ କେତୁଟା ଜାହାଜ ଧାର୍ ଦିଆ ଯାଇଥିଲା । ଏପର୍ଯ୍ୟନ୍ତ ଫେରସ୍ତ ଦିଆଯାଇ ନାହିଁ । ଲେପାଇଡସ୍‌କୁ ତଡ଼ି ଦେଇ ଆମେ କୁଆଡ଼େ ତା'ର ସର୍ବସ୍ୱ ଆତ୍ମସାତ୍ କରିଛୁ ଇତ୍ୟାଦି : ଏଗ୍ରିପ୍ପା କହନ୍ତି - ଏ ସବୁ ଅଭିଯୋଗର ଉତ୍ତର ଦିଆଯିବା ଆବଶ୍ୟକ ।

- ଉତ୍ତର ଦିଆସରିଛି । ସିଜର୍ କହନ୍ତି - ଦୂତ ଯାଇଛି । ମୁଁ କହିଛି - ଲେପାଇଡସ୍ ବୃଥାରେ ଆମର ବଦ୍‌ନାମ୍ କରୁଥିଲା । ତେଣୁ ତାକୁ ହଟାଇବା ଦରକାର ଥିଲା । ଆହୁରି ଜଣାଇଛି - ମୁଁ ଯାହା ଦଖଲ କରିଛି, ତାର ଅଂଶ ଆଣ୍ଟୋନିକୁ ଦେବାକୁ ପ୍ରସ୍ତୁତ ଅଛି । କିନ୍ତୁ ସେ ଯେଉଁ ରାଜ୍ୟ ସବୁ ଅଧିକାର କରିଛି, ତା'ର ଅଂଶ ମୋତେ ଦେବାକୁ ହେବ ।

ଏହି ସମୟରେ ଅକ୍ଟାଭିୟା ଆସନ୍ତି । ସିଜରଙ୍କର ମନେ ହୁଏ, ହୁଏତ ଆଣ୍ଟୋନି ତାଙ୍କୁ ଘରୁ ବାହାର କରିଦେଇଛି । ଅକ୍ଟାଭିୟା ସିଜର୍‌ଙ୍କୁ ଆଶ୍ୱସ୍ତ କରନ୍ତି । କହନ୍ତି—ସେଭଳି ଭାବିବାର କୌଣସି କାରଣ ନାହିଁ । ସିଜର୍ କହନ୍ତି -ତା'ହେଲେ ତୁ ଏମିତି ଆଡ଼ମ୍ବରଶୂନ୍ୟ ଭାବରେ ଆସିଲୁ କାହିଁକି ? ତୁ ସିଜର୍‌ର ଭଉଣୀ, ଆଣ୍ଟୋନିର ସ୍ତ୍ରୀ । ତୁ ଘରୁ ବାହାରକୁ ବାହାରିଲା ମାତ୍ରେ ଆଗରେ ଥିବେ ସୈନ୍ୟବାହିନୀ - ସାଙ୍ଗରେ ଥିବେ ଦାସଦାସୀ - ଦୂରରୁ ଜଣାପଡ଼ିଯିବ ଯେ ତୁ ଆସୁଛୁ -

ଅକ୍ଟାଭିୟା କହନ୍ତି - ସେଭଳି ଆସିବାରେ କୌଣସି ଅସୁବିଧା ନ ଥିଲା । କିନ୍ତୁ ନିଜ ଇଚ୍ଛାରେ ମୁଁ ଏଭଳି ଆସିଛି । ଆଣ୍ଟୋନିଙ୍କଠୁଁ ଶୁଣିଲି - ତମେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଛ । ତାଙ୍କର ଅନୁମତି ନେଇ ହିଁ ମୁଁ ଏଠାକୁ ଆସିଛି ।

ବିଦ୍ରୂପ କରି ସିଜର୍ କହନ୍ତି - ଅନୁମତିଟା ନିଶ୍ଚୟ ସେ ଶୀଘ୍ର ଦେଇଛି । କାରଣ ତା'ର ଓ ତା'ର ସଙ୍ଗିନୀ ମଧ୍ୟରେ ତୁ ଥିଲୁ ମୂର୍ତ୍ତିମତୀ ବାଧାସ୍ୱରୂପ ।

ସିଜର୍‌ଙ୍କୁ ବାଧାଦେଇ ଅକ୍ଟାଭିୟା କହନ୍ତି - ସେମିତି କହ ନାହିଁ ।

ସିଜର୍ କହିଚାଲନ୍ତି - ତୋ ପ୍ରତି ଯାହା ସବୁ ଅନ୍ୟାୟ କରାହେଉଛି, ମୁଁ ସେ ସବୁ ଜାଣେ । କ୍ଲିଓପେଟ୍ରା ତାକୁ ବାନ୍ଧିରଖିଛି । ଆଣ୍ଟୋନିର ରାଜ୍ୟ ଏବେ ଏକ ବାରବନିତାର ଆୟତ୍ତରେ । ଅନ୍ୟ ରାଜାମାନଙ୍କୁ ନେଇ ସେ ଏବେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଛି । ଆଣ୍ଟୋନି ନିଜେ ଅନେକ ରାଜାଙ୍କୁ ନେଇ ଦଳ ଭାରି କରୁଛି ।

ଅକ୍ଟାଭିୟା କହନ୍ତି - ମୋର ଦୁଇ ନିକଟ ଆତ୍ମୀୟ ଆଜି ପରସ୍ପର ବିରୋଧରେ ଅସ୍ତ୍ର ଉତ୍ତୋଳନ କରୁଛନ୍ତି - ଏହାହିଁ ହେଉଛି ମୋର ଦୁର୍ଭାଗ୍ୟ ।

ସିଜର୍ ଉତ୍ତର ଦିଅନ୍ତି - ତୁ ଆସିବାରୁ ମୁଁ ଖୁସି ହୋଇଛି । ତୋର ଚିଠି ଆମର ମତପାର୍ଥକ୍ୟକୁ ସାମୟିକ ଭାବେ ଅଟକାଇଥିଲା । ତତେ ଯେ ମୂଳରୁ ସବୁକଥା ଭୁଲ୍ ବୁଝାଯାଉଛି, ଏହା ମୁଁ ଜାଣିଲି । ଆହୁରି ଜାଣିଲି ଯେ, ଆମେ ସବୁ ବିପଦାପନ୍ନ । ନିଜେ ଖୁସି ରହ । ଏଠା ବିଷୟ ନେଇ ମନ କଷ୍ଟ କରନା । ସବୁ ଭବିତବ୍ୟ ହାତରେ ଛାଡ଼ିଦେ । ତୋ' ଛଡ଼ା ପ୍ରିୟ ମୋର ଆଉ କେହି ନାହିଁ । ଯେତେବେଳେ ଚାହିଁବୁ ଏଠାକୁ ଆସିପାରୁ ।

ସିଜର୍‌ଙ୍କ ସହକର୍ମୀ କହନ୍ତି - ରୋମ୍‌ର ପ୍ରତ୍ୟେକ ମଣିଷ ଆପଣଙ୍କୁ ଭଲ ପାଆନ୍ତି । ସେମାନଙ୍କର ଆପଣଙ୍କ ପାଇଁ ସହାନୁଭୂତି ରହିଛି । କେବଳ ଏଇ ଲମ୍ପଟ ଆଣ୍ଟୋନି ଆପଣଙ୍କ ପ୍ରତି ବିମୁଖ ।

ଆଶ୍ଚର୍ଯ୍ୟ ହୋଇ ଅକ୍ଟାଭିୟା କହନ୍ତି - ସତରେ ନା କ'ଣ ?

ସିଜର୍ ଉତର ଦିଅନ୍ତି । କହନ୍ତି ପ୍ରକୃତରେ ସେଇଆ ଭଉଣୀ , ତୁ ଟିକିଏ ଧୈର୍ଯ୍ୟ ଧର ।

ଆକ୍ଟିୟାମ୍‌ରେ ଆଣ୍ଟୋନିଙ୍କର ଶିବିର ପଡ଼ିଛି । ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ଅଛନ୍ତି ସ୍ୱୟଂ କ୍ଲିଓପେଟ୍ରା । ତାଙ୍କର ଉପସ୍ଥିତି ଏନୋବାରବାସ୍‌ଙ୍କର ପସନ୍ଦ ନୁହେଁ । ସେ ଜାଣନ୍ତି ତହିଁରେ ଆଣ୍ଟୋନିଙ୍କର ଚିତ୍ତ ଚାଞ୍ଚଲ୍ୟ ବଢ଼ିବ । ସେ ଏଇ କଥା କ୍ଲିଓପେଟ୍ରାଙ୍କୁ ଜଣାନ୍ତି ମଧ୍ୟ । କହନ୍ତି ଯେ, ରୋମାନ୍‌ମାନେ କହୁଛନ୍ତି କ୍ଲିଓପେଟ୍ରାଙ୍କ ଦାସଦାସୀମାନେ କୁଆଡ଼େ ଯୁଦ୍ଧ ପରିଚାଳନା କରୁଛନ୍ତି ।

ଏକଥା ଶୁଣି କ୍ଲିଓପେଟ୍ରା ରାଗିଯାଇ କହନ୍ତି—ରୋମ୍ ଚୁଲିକୁ ଯାଉ । ମୁଁ ମୋ ରାଜ୍ୟର ମୁଖ୍ୟ । ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ରହିବା ମୋର କର୍ତ୍ତବ୍ୟ ଏବଂ ମୁଁ ତାହା କରିବି ।

ସେନାପତି କାନିଡିୟସ୍‌ଙ୍କ ସହ ଆଲୋଚନା କରୁ କରୁ ଆଣ୍ଟୋନି ଆସନ୍ତି । ଏତେ ଶୀଘ୍ର ସିଜର୍ ଆୟୋନୀୟ ସମୁଦ୍ର ପାରି ହୋଇ ଟୋରିନ୍ ଅଧିକାର କରି ନେବାଟା ଆଶ୍ଚର୍ଯ୍ୟର କଥା । ଆମେ ଏବେ ନୌଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହେବା ଆବଶ୍ୟକ । କାନିଡିୟସ୍ ଓ ଏନୋବାରବାସ୍ ସ୍ଥଳଯୁଦ୍ଧ ନିମନ୍ତେ ପରାମର୍ଶ ଦେଲେ ହେଁ ଆଣ୍ଟୋନି ନିଜ ସିଦ୍ଧାନ୍ତରେ ଅଟଳ ରହନ୍ତି । ଏନୋବାରବାସ୍ ପୁଣି କହନ୍ତି- ନୌଯୁଦ୍ଧରେ ଆମ ଲୋକ ସେମିତି ନିପୁଣ ନୁହନ୍ତି । ଅନ୍ୟ ଦିଗରେ ସିଜର୍‌ଙ୍କ ନୌସେନା ପମ୍ପେଇ ବିରୋଧରେ ଯୁଦ୍ଧକରି ଜୟ ଲାଭ କରିଛି । ସିଜର୍‌ଙ୍କ ଜାହାଜ ହାଲୁକା । ଆମ ଜାହାଜ ସବୁ ଭାରି । ପୁଣି ଆମେ ଏବେ ସ୍ଥଳଯୁଦ୍ଧ ନିମନ୍ତେ ସମ୍ପୂର୍ଣ୍ଣ ପ୍ରସ୍ତୁତ । ଆମ ପାଇଁ ତାହାହିଁ କରିବା ଉଚିତ । ନୌଯୁଦ୍ଧରେ ବ୍ୟାପୃତ ହେଲେ ଆମର ସ୍ଥଳବାହିନୀ କର୍ମହୀନ ହୋଇ ବସି ରହିବ । ଆପଣଙ୍କ ଦକ୍ଷତାର ଉପଯୋଗ ହୋଇପାରିବ ନାହିଁ ।

ଆଣ୍ଟୋନି ଓ କ୍ଲିଓପେଟ୍ରା ଜଳ ଯୁଦ୍ଧ ନିମନ୍ତେ ଦୃଢ଼ ପ୍ରତିଜ୍ଞ । ସବୁ ଯୁକ୍ତି ବ୍ୟର୍ଥ ହୁଏ । କ୍ଲିଓପେଟ୍ରା କହନ୍ତି - ମୋର ଷାଠିଏଟା ଜାହାଜ । ସିଜର୍‌ଙ୍କର ତା'ଠୁ କମ୍ ।

ଆଣ୍ଟୋନି ଦମ୍ଭର ସହିତ କହନ୍ତି - ମୋର ଅତିରିକ୍ତ ଜାହାଜ ସବୁକୁ ପୋଡ଼ିଦେଇ ସମାନସଂଖ୍ୟକ ଜାହାଜ ନେଇ ମୁଁ ସିଜର୍ ସହିତ ଯୁଦ୍ଧ କରିବି । ହାରିଗଲେ ସ୍ଥଳ ଯୁଦ୍ଧତ ଅଛି ।

ଆଣ୍ଟୋନି ସମସ୍ତଙ୍କୁ ଜାହାଜକୁ ଯିବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ଏହି ସମୟରେ ଜଣେ ସୈନ୍ୟ ଆସି ଆବେଦନ କରେ - ହଜୁର, ନୌଯୁଦ୍ଧର ପରିକଳ୍ପନା ଛାଡ଼ନ୍ତୁ । ଆମ ଜାହାଜର

ଅବସ୍ଥା ଭଲ ନୁହେଁ । ଭଙ୍ଗା ତକ୍ତା ଉପରେ ଭରସା କରିବେ ନାହିଁ । ମୋ କଥାରେ ବିଶ୍ୱାସ କରନ୍ତୁ । ମାଟିରେ ଠିଆ ହୋଇ ଯୁଦ୍ଧ କରିବା ହିଁ ଆମ ପାଇଁ ଭଲ । ତାର ଏହି ଆବେଦନ ବ୍ୟର୍ଥ ହୁଏ । ଆଣ୍ଟୋନି ଓ କ୍ଲିଓପେଟ୍ରା ଏନୋବାରବାସ୍‌ଙ୍କୁ ନେଇ ଚାଲିଯାଆନ୍ତି ।

କାନିଡିୟସ୍ ଦୁଃଖ କରି କହନ୍ତି - ଆମର ନେତା ଏବେ ନିଜ ବୁଦ୍ଧିରେ କାମ କରୁ ନାହାନ୍ତି । ଆମେ ଏବେ ଜଣେ ନାରୀର ଦାସ । ତେବେ ସ୍ଥଳଯୁଦ୍ଧ ପାଇଁ ପୂରା ପ୍ରସ୍ତୁତି ରଖିବାକୁ ହେବ । ସିଜର୍ ଦ୍ରୁତ ଗତିରେ ଆଗକୁ ବଢ଼ୁଛନ୍ତି ।

ଯୁଦ୍ଧରେ ଆଣ୍ଟୋନିଙ୍କର ଶୋଚନୀୟ ପରାଜୟ ଘଟେ । ଯୁଦ୍ଧରୁ ଫେରି ଏନୋବାରବାସ୍ ହାହୁତାଶ କରିବାରେ ଲାଗନ୍ତି । ଓଃ ମୁଁ ଆଉ ଦେଖିପାରୁ ନାହିଁ । ଷାଠିଏଟା ଜାହାଜ ମୁହଁ ବୁଲାଇ ପଳାଇବାକୁ ଆରମ୍ଭ କଲା ! ସେନାପତି ସ୍କାରାସ୍ ମଧ ତାଙ୍କ ସହିତ ଏକମତ ହୁଅନ୍ତି । ତାଙ୍କ କଥାରୁ ଜଣାଯାଏ, ଆଣ୍ଟୋନି ଓ କ୍ଲିଓପେଟ୍ରା ଦୁହେଁ ଯୁଦ୍ଧ ଛାଡ଼ି ପଳାଇଛନ୍ତି । ସ୍କାରାସ୍ କହନ୍ତି ଏଭଳି ଲଜ୍ଜା ମୁଁ ଜୀବନରେ ପାଇ ନାହିଁ । ପୌରୁଷ, ସମ୍ମାନ - ଏଭଳି କେବେ ଧୂଳିରେ ମିଶିବାର ଦେଖି ନାହିଁ ।

କାନିଡିୟସ୍ ନୌଯୁଦ୍ଧର ଶୋଚନୀୟ ପରିଣାମକୁ ନେଇ ଦୁଃଖ ପ୍ରକାଶ କରନ୍ତି । କହନ୍ତି- ଆମର ନେତା ଯଦି ନିଜ ବୁଦ୍ଧିରେ ଚାଲନ୍ତେ, ତେବେ ଫଳାଫଳ ଅନ୍ୟ ରକମର ହୁଅନ୍ତା । ତାହା ନ କରି ସେ ପୃଷ୍ଠଭଙ୍ଗ ଦେବାର ଦୃଷ୍ଟାନ୍ତ ସ୍ଥାପନ କଲେ । କାନିଡିୟସ୍ କହନ୍ତି ଯେ ସେ ତାଙ୍କ ସୈନ୍ୟ ଓ ଅଶ୍ୱ ସହିତ ସିଜରଙ୍କ ନିକଟରେ ଆତ୍ମ ସମର୍ପଣ କରିବେ । ଏନୋବାରବାସ୍ କିନ୍ତୁ କହନ୍ତି - ଯଦିଓ କୌଣସି ଯଥାର୍ଥତା ନାହିଁ, ତଥାପି ମୁଁ ଆଣ୍ଟୋନିଙ୍କୁ ଅନୁସରଣ କରିବି ।

ବ୍ୟର୍ଥତା ଓ ଗ୍ଲାନିର ବୋଝ ବୋହି ଆଣ୍ଟୋନି ଫେରନ୍ତି କ୍ଲିଓପେଟ୍ରାଙ୍କର ପ୍ରାସାଦକୁ । ସେ ଆଉ ପୂର୍ବର ଆଣ୍ଟୋନି ନୁହନ୍ତି । ତାଙ୍କର ମନୋବଳ ଭାଙ୍ଗିଯାଇଛି । ଆଗରେ କେବଳ ଅନ୍ଧାର । ଅନୁଚରମାନଙ୍କୁ କହନ୍ତି, ମୋର ଗୋଟାଏ ଜାହାଜ ଅବଶିଷ୍ଟ ରହିଛି । ସେଥିରେ ଯଥେଷ୍ଟ ସୁନା ଅଛି । ତମେମାନେ ନିଜ ଭିତରେ ତାକୁ ବାଣ୍ଟିନିଅ । ହୁଏତ ପଳାଅ କିମ୍ବା ସିଜରଙ୍କ ଦଳରେ ଯୋଗଦିଅ । କିନ୍ତୁ କେହି ଏଥିରେ ରାଜି ହୁଅନ୍ତି ନାହିଁ ।

ଆଣ୍ଟୋନି ବୁଝାନ୍ତି, ମୁଁ ନିଜେ ତ ପଳାତକ । ସୈନ୍ୟମାନଙ୍କୁ ସେଇଆ କରିବାକୁ କହୁଛି । ବନ୍ଧୁମାନେ, ବେଳ ଥାଉ ଥାଉ ପଳାଅ । ମୋ ବାଟ ମୁଁ ସ୍ଥିର କରି ନେଇଛି । ସେଠି ତମମାନଙ୍କର ପ୍ରୟୋଜନ ନାହିଁ । ବନ୍ଦରରେ ମୋର ଯାହା କିଛି ଅଛି, ସବୁ ନେଇଯାଅ । ବନ୍ଧୁମାନଙ୍କ ପାଖକୁ ଚିଠି ଲେଖି ଦେଉଛି । କେହି ବାଧା ଦେବେ ନାହିଁ । ସେ ସବୁ ତମର କାମରେ ଲାଗିବ । ଦୁଃଖ କର ନାହିଁ । ଏଠୁ ସିଧା ସମୁଦ୍ରକୂଳକୁ ଯାଇ ଜାହାଜରେ ଥିବା ଧନସମ୍ପଦ ଅଧିକାର କର । ମୋତେ ଟିକିଏ ଏକା ରହିବାକୁ ଦିଅ । ପରେ ତମ ସହିତ ଦେଖାହେବ ।

ଅନୁଚରମାନେ ଚାଲିଯିବା ପରେ କ୍ଲିଓପେଟ୍ରା ଆସନ୍ତି । ନିଜ ଦୁର୍ଭାଗ୍ୟର ଚିନ୍ତାରେ ମଗ୍ନ ରହି ଆଣ୍ଟୋନି ତାଙ୍କର ଆଗମନ ବିଷୟ ଜାଣିପାରନ୍ତି ନାହିଁ ।

ଆଣ୍ଟୋନି ଦୁଃଖ କରି କହନ୍ତି, ଫିଲିପ୍ପି ଯୁଦ୍ଧରେ ସିଜର ତାଙ୍କର ତରବାରି ବାହାର କରି ନାହାନ୍ତି । ମୁଁ ହିଁ କାସିୟସ୍‌କୁ ଆଘାତ କରିଥିଲି । ମୁଁ ହିଁ ବ୍ରୁଟସ୍‌କୁ ଶେଷ କରିଥିଲି । ସିଜର୍‌ର କୌଣସି ଅଭିଜ୍ଞତା ନ ଥିଲା । ସେନାପତିମାନେ ହିଁ ଥିଲେ ଭରସା । ଆଉ ଏବେ....

କ୍ଲିଓପେଟ୍ରା ସାନ୍ତ୍ୱନା ଦେବାକୁ ଚେଷ୍ଟା କରନ୍ତି । ଆଣ୍ଟୋନି କିନ୍ତୁ ତାଙ୍କୁ ଆକ୍ଷେପ କରି କହନ୍ତି, ହାୟ ମିଶରର ରାଣୀ, ଏ ତମେ ମୋତେ କେଉଁଠିକି ନେଇ ଆସିଲ ? ମୋର ନିଦାରୁଣ ଲଜ୍ଜାକୁ ମୁଁ କେଉଁଠି ଲୁଚାଇବି ?

କ୍ଲିଓପେଟ୍ରା ନିଜର ତ୍ରୁଟି ସ୍ୱୀକାର କରନ୍ତି । କହନ୍ତି ତମେ ଯେ ମୋ କଥା ମାନିଯିବ ଏ ବିଶ୍ୱାସ ମୋର ନ ଥିଲା ।

ଆଣ୍ଟୋନି କହନ୍ତି- ମୋର ହୃଦୟ ଯେ ତମକୁ ଅନୁସରଣ କରେ, ଏକଥା ତମେ ଭଲକରି ଜାଣ । ତମର ଉଚିତ ଥିଲା, ମୋତେ ଠିକ୍ ବାଟ ଦେଖାଇବା ।

କ୍ଲିଓପେଟ୍ରା କହନ୍ତି - କ୍ଷମା କର ।

-ତମେ ଜାଣ, ତମ ପାଖରେ ମୁଁ କେତେ ଅସହାୟ ଆଉ ଦୁର୍ବଳ ।

କ୍ଲିଓପେଟ୍ରା ଏଥର ଅଶ୍ରୁସଜଳ କଣ୍ଠରେ କହନ୍ତି -କ୍ଷମା କର ।

ଅଶ୍ରୁ ସମ୍ବରଣ କର ରାଣୀ , ଯାହା ହାରିଛି ବା ଜିତିଛି , ସେସବୁ ତମର ବିନ୍ଦୁଏ ଅଶ୍ରୁଜଳ ଅପେକ୍ଷା ଅଧିକ ନୁହେଁ । ତମେ ମୋତେ ଥରେ ଚୁମ୍ବନ କର - ସେଇଥିରେ ମୋର ସବୁ କ୍ଷତି ପୂରଣ ହୋଇଯିବ ।

ମିଶରରେ ସିଜର୍‌ଙ୍କ ଶିବିର । ଆଣ୍ଟୋନିଙ୍କ ପାଖରୁ ଜଣେ ଦୂତ ଆସେ । ଆଣ୍ଟୋନିଙ୍କର ଅନୁରୋଧ - ତାଙ୍କୁ ଯେମିତି ମିଶରରେ ରହିବା ପାଇଁ ଅନୁମତି ଦିଆଯାଏ । ଯଦି କୌଣସି କାରଣରୁ ତାହା ସମ୍ଭବ ହେଉ ନାହିଁ ତେବେ ସେ ଏଥେନ୍ସରେ ଜଣେ ସାଧାରଣ ନାଗରିକ ଭାବେ ରହିବାକୁ ଚାହିଁବେ । କ୍ଲିଓପେଟ୍ରାଙ୍କ ତରଫରୁ ଆଣ୍ଟୋନି ଜଣାଇଛନ୍ତି ଯେ ସେ ସିଜର୍‌ଙ୍କ ଶକ୍ତି ନିକଟରେ ପରାଜୟ ସ୍ୱୀକାର କରୁଛନ୍ତି । ତେବେ ସେ ତାଙ୍କର ସାର୍ବଭୌମ କ୍ଷମତାର ଅଧୀନରେ ତାଙ୍କ ବଂଶଧରମାନଙ୍କ ପାଇଁ ଟଲେମିର ରାଜମୁକୁଟ ପ୍ରାର୍ଥନା କରୁଛନ୍ତି । ସିଜର୍ ଜଣାଇ ଦିଅନ୍ତି, ଆଣ୍ଟୋନିଙ୍କର କୌଣସି ଅନୁରୋଧ ରକ୍ଷା କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ତେବେ ମିଶରର ରାଣୀ ଯଦି ତାଙ୍କର ପ୍ରିୟ ବନ୍ଧୁଙ୍କୁ ହତ୍ୟା କରନ୍ତି କିମ୍ବା ମିଶରରୁ ବହିଷ୍କୃତ କରନ୍ତି ତେବେ ତାଙ୍କ କଥା ରଖାଯିବ ।

ଦୂତ ଚାଲିଯିବା ପରେ ସେ ତାଙ୍କ ସହକାରୀ ଥାଇରିୟସ୍‌କୁ କହନ୍ତି, ଏଥର ତମର ବାକ୍‌ପଟୁତାର ପରୀକ୍ଷା ନିଆଯିବ । ତମକୁ ଆଣ୍ଟୋନି ପାଖରୁ କ୍ଲିଓପେଟ୍ରାଙ୍କୁ ଦୂରେଇ ଆଣିବାକୁ ହେବ । ଯାହା ସେ ଚାହିଁବେ, ଦେବ - ବରଂ ବେଶ କରି ଦେବ । ଜୋରଜବରଦସ୍ତି ନୁହଁ । କୌଶଳ ପ୍ରୟୋଗ କରି ତାଙ୍କୁ ଆଣିବାକୁ ହେବ । ତା' ସହିତ ଆଣ୍ଟୋନିର କାର୍ଯ୍ୟକଳାପ ଉପରେ ମଧ୍ୟ ତୀକ୍ଷ୍ଣ ଦୃଷ୍ଟି ରଖିବ ।

ଦୂତଠାରୁ ଆଣ୍ଟୋନି ସବୁକଥା ଶୁଣନ୍ତି । ରାଗରେ ତାଙ୍କ ମୁହଁ ଲାଲ୍ ପଡ଼ିଯାଏ । ବିଦ୍ରୂପର ସହ କ୍ଲିଓପେଟ୍ରାଙ୍କୁ କହନ୍ତି - ତେବେ ସିଜର୍ ପାଖକୁ ମୋର ଏଇ ମଥାଟା ପଠାଇ ଦିଅ । ସେ ତମର ସବୁ ପ୍ରାର୍ଥନା ମଞ୍ଜୁର କରିଦେବ । ତା'ପରେ ଦୂତକୁ କହନ୍ତି, ତମେ ଆଉ ଥରେ ତାଙ୍କ ପାଖକୁ ଯାଅ । ତାଙ୍କୁ କହ - ମୁଁ ତାଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କରୁଛି । ସେଇଠି ଜୟ ପରାଜୟ ନିର୍ଣ୍ଣୀତ ହେବ । ଠିକ୍ ଅଛି, ମୁଁ ବରଂ ତାଙ୍କୁ ଗୋଟାଏ ଚିଠି ଲେଖି ସବୁକଥା ଜଣାଇ ଦେଉଛି ।

ଥାଇରିୟସ୍ କ୍ଲିଓପେଟ୍ରାଙ୍କୁ କହନ୍ତି, ସେ ଯାହା ଚାହାନ୍ତି ସିଜର୍ ସବୁ ଦେବାକୁ ପ୍ରସ୍ତୁତ । ତାଙ୍କର କେବଳ ଗୋଟାଏ ସର୍ତ୍ତ, ଆଣ୍ଟୋନିଙ୍କୁ ଛାଡ଼ି ତାଙ୍କର ଆନୁଗତ୍ୟ ସ୍ୱୀକାର କରିବାକୁ ହେବ । କ୍ଲିଓପେଟ୍ରା କହନ୍ତି, ତମେ ଯାଇ ସିଜର୍‌ଙ୍କୁ କହ, ମୁଁ ତାଙ୍କ ବିଜୟ ଗୌରବ ମଣ୍ଡିତ ହାତରେ ଚୁମ୍ବନ କରୁଛି । ମୋ ମୁକୁଟ ଶୀଘ୍ର ତାଙ୍କ ପାଦତଳେ ସ୍ଥାନ ପାଇବ । ନିମ୍ନ ସ୍ୱରରେ କହନ୍ତି - ତା' ସହିତ ମିଶରର ସର୍ବନାଶର ପଦଧ୍ୱନି ମଧ୍ୟ ମୋ କାନରେ ବାଜୁଛି ।

ଥାଇରିୟସ୍ ରାଣୀଙ୍କ ନିଷ୍ପତ୍ତିରେ ଖୁସି ହୋଇ କହନ୍ତି - ଆପଣ ଠିକ୍ ପଥ ହିଁ ବାଛି ନେଇଛନ୍ତି ।

ଏହି ସମୟରେ ଆଣ୍ଟୋନି ଓ ଏନୋବାରବାସ୍ ଆସନ୍ତି । ଥାଇରିୟସ୍‌କୁ ଦେଖି ଆଣ୍ଟୋନି ପଚାରନ୍ତି - ତମେ କିଏ ?

ଥାଇରିୟସ୍ କହନ୍ତି- ସମ୍ପ୍ରତି ମୁଁ ପୃଥିବୀର ଯୋଗ୍ୟତମ ବ୍ୟକ୍ତିଙ୍କର ସେବାରେ ନିଯୁକ୍ତ । ଆଣ୍ଟୋନି ସବୁକଥା ବୁଝିପାରି ଦମ୍ଭର ସହିତ କହନ୍ତି, ଦିନେ ଯାହାର ଆଦେଶରେ ରାଜନ୍ୟମଣ୍ଡଳୀ ପରିଚାଳିତ ହେଉଥିଲେ, ମୁଁ ସେଇ ଆଣ୍ଟୋନି । ତା'ପରେ ଜଣେ ଅନୁଚରକୁ ଡାକି ଆଦେଶ ଦିଅନ୍ତି- ଲୋକଟା ତା'ର ଔଦ୍ଧତ୍ୟପାଇଁ କ୍ଷମା ପ୍ରାର୍ଥନା ନ କରିବା ପର୍ଯ୍ୟନ୍ତ ତାକୁ ଚାବୁକ୍‌ରେ ପିଟୁଥାଅ ।

କ୍ଲିଓପେଟ୍ରାଙ୍କର ଚରିତ୍ରକୁ ନେଇ ନାନା ଆକ୍ଷେପ କରନ୍ତି । ଥାଇରିୟସ୍ କ୍ଷମା ମାଗିବାରୁ ଅନୁଚର ତାକୁ ନେଇ ଆଣ୍ଟୋନିଙ୍କ ପାଖକୁ ଆସେ । ଆଣ୍ଟୋନି ତାକୁ କହନ୍ତି - ତମର ଦଶା ଏଠି କ'ଣ ହୋଇଛି, ସେ କଥା ସିଜର୍‌ଙ୍କୁ ଜଣାଅ । ମୁଁ ସିଜର୍‌ର ଔଦ୍ଧତ୍ୟ ଦେଖି କ୍ଷୁବ୍ଧ । ସେ

ବାରମ୍ବାର ଦେଖାଇ ଦେବାକୁ ଚାହେଁ- ବର୍ତ୍ତମାନ ମୁଁ କ'ଣ ହୋଇଛି, କିନ୍ତୁ ଭୁଲି ଯାଇଛି, ମୁଁ କ'ଣ ଥିଲି ।

ଥାଇରିୟସ୍ ଚାଲିଯିବା ପରେ ଆଣ୍ଟୋନିଙ୍କର ସବୁ ରାଗ ଯାଇ ପଡ଼େ କ୍ଲିଓପେଟ୍ରାଙ୍କ ଉପରେ । କହନ୍ତି - ଏଥର ତେବେ ସିଜର୍‌କୁ ସନ୍ତୁଷ୍ଟ କରିବା ପାଇଁ ତା' ଆଖିରେ ଆଖି ମିଳାଅ । ଦୀର୍ଘଶ୍ୱାସ ଛାଡ଼ି କ୍ଲିଓପେଟ୍ରା କହନ୍ତି- ତମେ ମୋତେ ଆଜି ମଧ ଚିହ୍ନିପାରି ନାହଁ । ଆଣ୍ଟୋନି, ତମ ଆଡୁ ମୁହଁ ଫେରାଇନେବା ଅପେକ୍ଷା ମୋ ପାଇଁ ବରଂ ମୃତ୍ୟୁ ହିଁ ଶ୍ରେୟସ୍କର ।

ଆଣ୍ଟୋନି ପୁନର୍ବାର ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ତେବେ ଏଥର ସ୍ଥଳଯୁଦ୍ଧ । କ୍ଲିଓପେଟ୍ରାଙ୍କୁ କହିଲେ - ଯଦି ମୁଁ ଶତ୍ରୁରକ୍ତରେ ସ୍ନାନକରି ରଣାଙ୍ଗନରୁ ଫେରି ଆସିପାରେ ତେବେ ସେଦିନ ତମର ଏଇ ମୁଖ ଚୁମ୍ବନ କରିବାର ଗୌରବ ଲାଭ କରିବି ।

ଆବେଗପୂର୍ଣ୍ଣ କଣ୍ଠରେ କ୍ଲିଓପେଟ୍ରା କହନ୍ତି - ଏହାହିଁ ହେଉଛି ତମର ଉପଯୁକ୍ତ କଥା । ଆସ, ଗୋଟାଏ ରାତି ପାଇଁ ଆମେ ଉତ୍ସବର ଆନନ୍ଦରେ ଜୀବନ ପାତ୍ର ଭରିଦେବା । ରୋମକର ଫେନିଳ ମଦ୍ୟ ପାତ୍ରରେ ରାତ୍ରି ହୋଇଉଠୁ ରୋମାଞ୍ଚକ ।

କ୍ଲିଓପେଟ୍ରା କହନ୍ତି - ଆଜି ମୋର ଜନ୍ମଦିନ । ଦିନେ ଏଥିପାଇଁ କୌଣସି ଉତ୍ସବର ଆୟୋଜନ କରାଯାଉ ନ ଥିଲା । ଆଜି ତମରି ଇଚ୍ଛା ପୂର୍ଣ୍ଣ ହେଉ । ଆଜି ତମେ ପୂର୍ବର ସେଇ ଆଣ୍ଟୋନି, ଆଉ ମୁଁ ତମର ସେଇ କ୍ଲିଓପେଟ୍ରା ।

॥ ୪ ॥

ଥାଇରିୟସ୍‌ଠାରୁ ସବୁ ଶୁଣି ସିଜର୍ ଆସ୍ଫାଳନ କରି କହନ୍ତି - ଏଡ଼େ ଆସ୍ପର୍ଦ୍ଧା ତା'ର ? ମୋତେ ଶାସନ କରୁଛି ! ମୋର ଲୋକକୁ ପୁଣି ଚାବୁକ୍ ମାରୁଛି ! ମୋ ସହିତ ଦ୍ୱନ୍ଦ୍ୱଯୁଦ୍ଧ ଲଢ଼ିବ ନା ?

ସିଜର୍‌ଙ୍କ ବନ୍ଧୁମାନେ ପରାମର୍ଶ ଦିଅନ୍ତି - ଆଣ୍ଟୋନି ବର୍ତ୍ତମାନ କ୍ରୋଧୋନ୍ମତ୍ତ ଏବଂ ଏଇଟା ହିଁ ହେଉଛି ତାଙ୍କୁ ଆଘାତ କରିବାର ପ୍ରକୃଷ୍ଟ ସମୟ । କ୍ରୁଦ୍ଧ ମଣିଷ ପଥ ନିର୍ଣ୍ଣୟରେ ତ୍ରୁଟି କରିଥାଏ । ସିଜର୍ ମଧ ସେମାନଙ୍କ ସହିତ ଏକମତ ହୁଅନ୍ତି । ଠିକ୍ ଅଛି, କାଲି ତେବେ ଅନ୍ତିମ ଲଢ଼ାଇଟା ହୋଇଯାଉ । ଆମ ସେନାରେ ଯେଉଁମାନେ ପୂର୍ବରୁ ଆଣ୍ଟୋନିଙ୍କ ଦଳରେ ଥିଲେ ସେଇମାନେ ହିଁ ତାକୁ ଧରି ଆଣିପାରିବେ । ଆଜି ସେନାଙ୍କ ପାଇଁ ଗୋଟାଏ ଭଲ ଭୋଜିର ବ୍ୟବସ୍ଥା ହେଉ ।

ଆଣ୍ଟୋନି ତାଙ୍କ ସେନାଙ୍କୁ ଉତ୍ସାହିତ କରି କହନ୍ତି - କାଲି ଆମର ଲଢ଼ାଇ ହେବ ଜଳ ଆଉ ସ୍ଥଳରେ । ମୁଁ ହୁଏତ ଜୟଲାଭ କରିବି କିମ୍ବା ସମ୍ମାନର ସହିତ ମୃତ୍ୟୁ ବରଣ କରିବି । ଜୀବନକୁ ପାଣି ଛଡ଼ାଇ ତମେମାନେ କ'ଣ ଯୁଦ୍ଧ ପାଇଁ ପ୍ରସ୍ତୁତ ?

ସୈନ୍ୟମାନେ ସମସ୍ୱରରେ ଉତ୍ତର ଦିଅନ୍ତି - ଆମେ ପ୍ରସ୍ତୁତ ।

ପରଦିନ ସକାଳୁ କ୍ଲିଓପେଟ୍ରାଙ୍କର ପ୍ରାସାଦରେ ସାଜସାଜରବ ପଡ଼ିଯାଏ । ସୈନ୍ୟମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅନ୍ତି । ଆଣ୍ଟୋନିଙ୍କୁ ଯୁଦ୍ଧ ବେଶରେ ସଜାଇ ଦେବାକୁ ଆଗେଇ ଆସନ୍ତି କ୍ଲିଓପେଟ୍ରା ସ୍ୱୟଂ । ସମସ୍ତେ ଯୁଦ୍ଧକ୍ଷେତ୍ରକୁ ଯାତ୍ରା କରନ୍ତି ।

ଆଲେକ୍‌ଜାଣ୍ଡ୍ରିଆକୁ ସମ୍ବାଦ ଆସେ, ଆଣ୍ଟୋନିଙ୍କର ଏତେକାଳର ବନ୍ଧୁ ଏନୋବାରବାସ୍ ସିଜର୍‌ଙ୍କ ଶିବିରରେ ଯୋଗ ଦେଇଛନ୍ତି । ଆଣ୍ଟୋନି ତିଳେମାତ୍ର ବିଚଳିତ ନ ହୋଇ ଏନୋବାରବାସ୍‌ଙ୍କ ଜିନିଷପତ୍ର ତାଙ୍କ ପାଖକୁ ପଠାଇ ଦେବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ତାଙ୍କୁ ଶୁଭେଚ୍ଛା ଜଣାଇ ଚିଠି ଲେଖିବାକୁ ମଧ କହି ଦିଅନ୍ତି । ସେଥି ସହିତ କେବଳ ଏତିକି ଲେଖି ଦେବାକୁ କହନ୍ତି ଯେ, ତାଙ୍କର ଆନୁଗତ୍ୟ ପରିବର୍ତ୍ତନର କୌଣସି ଆବଶ୍ୟକତା ନ ଥିଲା । ନିଜକୁ ଆଣ୍ଟୋନି ଚେତାଇ ଦିଅନ୍ତି - ଦୁର୍ଭାଗ୍ୟ ସମୟରେ ସତ୍ ଲୋକ ମଧ ଅସତ୍ ହୋଇଯାଏ ।

ସିଜର୍ ଏଗ୍ରିପ୍ପାଙ୍କୁ ଯୁଦ୍ଧ ଆରମ୍ଭ କରିବା ପାଇଁ ଆଦେଶ ଦିଅନ୍ତି । ସେ କହନ୍ତି - ଆଣ୍ଟୋନିଙ୍କୁ ଯେଭଳି ଜୀବନ୍ତ ରୂପରେ ତାଙ୍କ ସମ୍ମୁଖରେ ଉପସ୍ଥିତ କରାଯାଏ । ପୁଣି ଆଣ୍ଟୋନିଙ୍କ ଦଳରୁ ଯେଉଁମାନେ ତାଙ୍କ ଶିବିରରେ ଯୋଗ ଦେଇଛନ୍ତି, ସେମାନଙ୍କୁ ଯୁଦ୍ଧଭୂମିର ସମ୍ମୁଖ ଭାଗରେ ରଖାଯିବାର ଆଦେଶ ମଧ ଦିଅନ୍ତି । ଏଥିରେ ଆଣ୍ଟୋନିଙ୍କର ପ୍ରଥମ ଆକ୍ରମଣର ଚାପ ତାଙ୍କ ନିଜ ଲୋକଙ୍କ ଉପରେ ହିଁ ପଡ଼ିବ । ଏନୋବାରବାସ୍ ନିଜର ତ୍ରୁଟି ବୁଝିପାରନ୍ତି । ଦଳଛଡ଼ାମାନଙ୍କ ପ୍ରତି ସିଜର୍‌ଙ୍କ ବିଶ୍ୱାସ ନାହିଁ ଏବଂ ତାଙ୍କ ଠାରୁ ସମ୍ମାନ ଲାଭର କୌଣସି ଆଶା ତେଣୁ ନାହିଁ । ଆଣ୍ଟୋନି ତାଙ୍କର ସବୁ ଜିନିଷପତ୍ର ପଠାଇ ଦେଇଥିବାର ଖବର ସେ ପାଆନ୍ତି । ଆଣ୍ଟୋନିଙ୍କର ଏଇ ମହାନୁଭବତା ତାଙ୍କର ବିବେକକୁ ପୀଡ଼ା ଦିଏ । ଅନୁଶୋଚନା ମଧରେ ସେ ସିଦ୍ଧାନ୍ତ ନିଅନ୍ତି ଯେ, ଆଣ୍ଟୋନିଙ୍କ ବିରୋଧରେ ଯୁଦ୍ଧ କରିବା ଅପେକ୍ଷା ସେ ବରଂ ମୃତ୍ୟୁବରଣ କରିବେ ଏବଂ ସେଇଟା ହିଁ ହେବ ତାଙ୍କର ଅନ୍ୟାୟ ନିଷ୍ପତ୍ତିର ଉପଯୁକ୍ତ ଶାସ୍ତି ।

ଘନ ଘନ ଭେରୀ ବାଜିଉଠି ଯୁଦ୍ଧର ସୂଚନା ଦିଏ । କିଛିକ୍ଷଣ ମଧରେ ଯୁଦ୍ଧର ଗତି ଆଣ୍ଟୋନିଙ୍କର ଅନୁକୂଳ ହୁଏ । ସିଜର୍ ନିଜ ଶିବିରକୁ ଫେରିଯିବା ପାଇଁ ବାଧ ହୁଅନ୍ତି । ଗୁରୁତର ଭାବରେ ଆହତ ହୁଅନ୍ତି ଆଣ୍ଟୋନିଙ୍କର ସେନାପତି ସ୍କାରାସ୍ । ଆଣ୍ଟୋନି ତାଙ୍କର ବୀରତ୍ୱର ଭୂରିଭୂରି ପ୍ରଶଂସା କରି ତାଙ୍କୁ ପୁରସ୍କୃତ କରିବାର ପ୍ରତିଶ୍ରୁତି ଦିଅନ୍ତି ।

ଅନୁତାପଦଗ୍ଧ ଏନୋବାରବାସ୍ ସିଜର୍‌ଙ୍କ ଶିବିରରେ ଆତ୍ମହତ୍ୟା କରନ୍ତି । ଚେତନା ହରାଇବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ କହୁଥାଆନ୍ତି - ଆଣ୍ଟୋନି, ମୋତେ କ୍ଷମାକର, ମୁଁ ବିଶ୍ୱାସଘାତକ, ପଳାତକ ।

ପରଦିନ ଆଣ୍ଟୋନି ତାଙ୍କ ସୈନ୍ୟମାନଙ୍କୁ କହନ୍ତି- ଆଜି ସିଜର୍ ନୌଯୁଦ୍ଧପାଇଁ ପ୍ରସ୍ତୁତ ହୋଇଛି । ଆମେ ସମୁଦ୍ରରେ ସେମାନଙ୍କର ମୁକାବିଲା କରିବା । କିନ୍ତୁ ଆମର ପଦାତିକବାହିନୀ ନଗର ନିକଟବର୍ତ୍ତୀ ପାହାଡ଼ ପାଖରେ ଅପେକ୍ଷା କରିବେ । ସିଜର୍ ଅବଶ୍ୟ ତାଙ୍କର ସେନାପତିଙ୍କୁ ସ୍ଥଳଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ଆଦେଶ ଦିଅନ୍ତି । କାରଣ ତାଙ୍କ ପାଖରେ ଖବର ପହଞ୍ଚେ ଯେ, ଆଣ୍ଟୋନିଙ୍କର ଦକ୍ଷସେନା ରଣତରୀ ନେଇ ଆଗେଇ ଆସୁଛନ୍ତି । ପାହାଡ଼ ଉପରୁ ନୌଯୁଦ୍ଧ ଆରମ୍ଭ ହୋଇ ନ ଥିବାର ଆଣ୍ଟୋନି ଲକ୍ଷ୍ୟ କରନ୍ତି । ସେ ଖବର ସଂଗ୍ରହ କରିବାକୁ ଯାଆନ୍ତି ଏବଂ ସେଇଠି ଦୁଃସମ୍ବାଦଟି ତାଙ୍କର ହସ୍ତଗତ ହୁଏ । କ୍ଲିଓପେଟ୍ରା ବିଶ୍ୱାସଘାତକତା କରିଛନ୍ତି । ତାଙ୍କର ନୌବାହିନୀ ଶତ୍ରୁ ନିକଟରେ ଆତ୍ମସମର୍ପଣ କରିଛନ୍ତି । ଗଭୀର ହତାଶାରେ ଆଣ୍ଟୋନି କହନ୍ତି, ଦେଖିଲି ଆମର ନୌସେନା ମଥାର ଟୋପି ଖୋଲି ଶତ୍ରୁ ସୈନ୍ୟମାନଙ୍କ ସହିତ ଆନନ୍ଦରେ ମତ୍ତ, ଯେମିତି ବହୁ ଦିନପରେ ପୁରୁଣା ବନ୍ଧୁମାନଙ୍କ ସହିତ ସେମାନଙ୍କର ସାକ୍ଷାତ୍ ହେଉଛି ! କୁଳଟା ନାରୀ, ଶେଷରେ ତମେ ଏଇ ଧୂର୍ତ୍ତଲୋକଟା ପାଖରେ ମୋତେ ବିକିଦେଲ ! ସ୍କାରସ୍‌ଙ୍କ ଆଡ଼କୁ ଅନାଇ ଆଣ୍ଟୋନି କହନ୍ତି, ସମସ୍ତଙ୍କୁ ପଳାଇବାକୁ କହିଦିଅ । ସବୁ ଶେଷ ହୋଇଯାଇଛି । ସ୍କାରସ୍ ଚାଲିଯିବା ପରେ ମଧ୍ୟ ଆଣ୍ଟୋନିଙ୍କର ଆକ୍ଷେପ ଚାଲିଥାଏ । କାଲି ସକାଳର ସୂର୍ଯ୍ୟୋଦୟ ଦେଖିବା ଆଉ ମୋ ଭାଗ୍ୟରେ ନାହିଁ । ସୌଭାଗ୍ୟ ଆଜି ମୋ ଠାରୁ ବହୁ ଦୂରବର୍ତ୍ତୀ । ମୋ ପ୍ରତି ଏଭଳି ବିଶ୍ୱାସଘାତକତା ! ମିଶରର ରାଣୀଙ୍କର ମିଥ୍ୟାଚାର - ତାଙ୍କର ସେଇ ସର୍ବନାଶ । ରୂପ... କ୍ଲିଓପେଟ୍ରା ପ୍ରବେଶ କରନ୍ତି । ତାଙ୍କୁ ଦେଖିବାମାତ୍ରେ ଆଣ୍ଟୋନି ଚିତ୍କାର କରି ଉଠନ୍ତି -କଳଙ୍କିନୀ, ମୋ ଆଖି ଆଗରୁ ଦୂର ହୋଇଯାଅ ।

କ୍ଲିଓପେଟ୍ରା ତାଙ୍କର ରାଗର କାରଣ ଜାଣିବାକୁ ଚାହାନ୍ତି । କିନ୍ତୁ ଆଣ୍ଟୋନି ତାଙ୍କୁ ପୂର୍ବଭଳି ଭର୍ତ୍ସନା କରିଚାଲନ୍ତି । ସିଜରଙ୍କ ବିଜୟ ଉତ୍ସବରେ ଯୋଗ ଦେବା ନିମନ୍ତେ ତାଙ୍କୁ ପରାମର୍ଶ ଦିଅନ୍ତି ।

କ୍ଲିଓପେଟ୍ରା ସେତେବେଳେ ଚାଲିଯାଆନ୍ତି । ଆଣ୍ଟୋନିଙ୍କ କ୍ରୋଧ ପ୍ରଶମିତ ହୁଏ ନାହିଁ । କହିଚାଲନ୍ତି- ତମେ ତ ଏଠୁ ପଳାଇଯାଇ ରକ୍ଷା ପାଇଗଲ କ୍ଲିଓପେଟ୍ରା, ମୋର କ୍ରୋଧ ଯଦି ଏଇଠି ତମକୁ ଭସ୍ମକରି ଦେଇଥାଆନ୍ତା, ତେବେ ମୁଁ ଖୁସି ହୋଇଥାଆନ୍ତି । ଗୋଟାଏ ମୃତ୍ୟୁରେ ଅନେକ ଜୀବନ ରକ୍ଷା ପାଇଯାଇଥାଆନ୍ତା । ପୂର୍ବପୁରୁଷମାନଙ୍କର ସହାୟତା ପ୍ରାର୍ଥନା କରି ସେ କହିଚାଲନ୍ତି - ଏ ଡାହାଣୀଟାକୁ ଶେଷ କରିବାରେ ଆପଣମାନେ ମୋତେ ସହାୟ ହୁଅନ୍ତୁ । ରୋମ୍‌ର ସେଇ ଧୂର୍ତ୍ତ ଲୋକଟା ପାଖରେ ଯେ ମୋତେ ବିକି ଦେଲା - କେବେବି ତା'ର ମଙ୍ଗଳ ହେବ ନାହିଁ ।

ଅନ୍ତଃପୁରେ କ୍ଲିଓପେଟ୍ରା ଚାରମିୟାନ୍‌କୁ କହନ୍ତି - ଆଣ୍ଟୋନି ପାଗଳ ହୋଇଯାଇଛନ୍ତି । ଏତେ କ୍ରୋଧ ତାଙ୍କର ମୁଁ କେବେ ଦେଖି ନାହିଁ । ଚାରମିୟାନ୍ ପରାମର୍ଶ ଦିଏ ... ରାଣୀ କିଛି ଦିନ ନିଜକୁ ଅନ୍ତରୀଣ ରଖନ୍ତୁ । ଆଣ୍ଟୋନିଙ୍କୁ ଖବର ଦିଆଯାଉ ଯେ, ତାଙ୍କର ମୃତ୍ୟୁ ହୋଇଯାଇଛି । ରାଜି ହୋଇ କ୍ଲିଓପେଟ୍ରା ସହଚରୀ ମାର୍ଡିୟାନ୍‌କୁ ନିର୍ଦ୍ଦେଶ ଦିଅନ୍ତି ଯେ ସେ ଯାଇ ଆଣ୍ଟୋନିଙ୍କୁ ତାଙ୍କର ଆତ୍ମହତ୍ୟାର ସମ୍ବାଦ ଜଣାଇ ଦିଅନ୍ତୁ । ଏ ସମ୍ବାଦରେ ଆଣ୍ଟୋନିଙ୍କର ପ୍ରତିକ୍ରିୟା କଣ, ତାହା ତାଙ୍କୁ ଜଣାଇ ଦିଆଯାଉ ।

ଆଣ୍ଟୋନି ତାଙ୍କର ଅନୁଚରକୁ କହନ୍ତି, କେବେ କେବେ ମେଘଖଣ୍ଡ ମଧ ଡ୍ରାଗନ୍ ଭଳି ମନେହୁଏ କିମ୍ବା ଭାଲୁ ସିଂହ କି ଦୁର୍ଗଭଳି ଦେଖାଯାଏ । ମାତ୍ର ପ୍ରକୃତରେ ମେଘ ଏସବୁ କିଛି ନୁହେଁ ... ତା' କେବଳ ମେଘ । ଆଜି ତମର ନେତା ଆଣ୍ଟୋନିର ଦେହଟା ଥିଲେ ମଧ ତା'ର ପ୍ରକୃତ ସତା ସେଠାରେ ନାହିଁ । ମୁଁ ମିଶର ପାଇଁ ଯୁଦ୍ଧ କଲି, ଆଉ ସେଇ ରାଣୀ- ଯେ ମୋର ଏକାନ୍ତ ଆପଣାର ବୋଲି ମନେ କରିଥିଲି ସେ ସିଜର୍‌ଙ୍କ ସହିତ ବନ୍ଧୁତ୍ୱ କରି ମୋତେ ଏକାକୀ ଛାଡ଼ିଗଲେ !

ଏରସ୍ କାନ୍ଦିବାକୁ ଆରମ୍ଭ କରେ । ତାକୁ କାନ୍ଦିବାକୁ ବାରଣ କରି ଆଣ୍ଟୋନି କହନ୍ତି ଏବେ ଆମ ଆଗରେ କେବଳ ଗୋଟାଏ ପଥ ଖୋଲା । ତାହା ହେଉଛି କୌଣସିମତେ ନିଜକୁ ଶେଷ କରିଦେବା ।

ମାର୍ଡିୟନ୍ ପ୍ରବେଶ କରେ । ଆଣ୍ଟୋନିଙ୍କ କଥା ଶେଷ ହୋଇ ନ ଥାଏ । ସେ କ୍ଲିଓପେଟ୍ରାଙ୍କୁ ଲକ୍ଷ୍ୟ କରି କହୁଥାଆନ୍ତି - ନୀଚ୍ ନାରୀ -ସେ ମୋର ସମସ୍ତ ଶକ୍ତି ନିଃଶେଷ କରି ଦେଇଛି । ମାର୍ଡ଼ିୟନ୍ ବାଧା ଦେଇ କହେ - ନା ହଜୁର, ମୋର ମାଲିକ ଆପଣଙ୍କୁ ଭଲପାଉଥିଲେ । ତାଙ୍କର ଭାଗ୍ୟ ସମ୍ପୂର୍ଣ୍ଣଭାବେ ଆପଣଙ୍କ ଭାଗ୍ୟ ସହିତ ଯୁକ୍ତ ।

ମାର୍ଡିୟନ୍ କଥାରେ ଆଣ୍ଟୋନି ପୁଣି ଉତେଜିତ ହୋଇପଡ଼ନ୍ତି । କହନ୍ତି -ତୁ ଚୁପ୍ କର । ଶୀଘ୍ର ସେଇ ବିଶ୍ୱାସଘାତିନୀ ଉପଯୁକ୍ତ ଶାସ୍ତି ପାଇବ । ସେ ଶାସ୍ତି ହେବ ମୃତ୍ୟୁ ।

ମାର୍ଡିୟନ୍ ଶାନ୍ତ ଭାବରେ କହେ-ଜଣକର ମୃତ୍ୟୁ ଥରେ ମାତ୍ର ହୁଏ ହଜୁର । ଆଉ ସେ କାର୍ଯ୍ୟଟା ସେ ନିଜ ହାତରେ କରିସାରିଛନ୍ତି । ଶେଷ ସମୟରେ ତାଙ୍କ ତୁଣ୍ଡରେ ଥିଲା- ଆଣ୍ଟୋନି, ମହାନ୍ ଆଣ୍ଟୋନି - ଆପଣଙ୍କୁ ସେ ଏହିଭଳି ଭଲପାଉଥିଲେ ।

ଆଣ୍ଟୋନି ବିମୂଢ଼ ! ସେ ମୃତ !

ଶୋକାହତ ଆଣ୍ଟୋନି ଏରସ୍‌କୁ କହନ୍ତି- ଅନେକ ଦିନର କାମ ଆଜି ଶେଷ ହୋଇଛି । ଏବେ ମୁଁ ଶୋଇବି । ଏରସ୍, ତୁ ,ଏଠୁ ଚାଲିଯା ।

ଶୋକାଭିଭୂତ ଆଣ୍ଟୋନି କ୍ଲିଓପେଟ୍ରାଙ୍କୁ ଲକ୍ଷ୍ୟ କରି କହନ୍ତି - ମୁଁ ଅଶ୍ରୁପୂର୍ଣ୍ଣ ନୟନରେ ତମକୁ କ୍ଷମା ମାଗିବି । ଆଉ ବଞ୍ଚି ରହିବାର ଅର୍ଥ ହେଉଛି କେବଳ ଯନ୍ତ୍ରଣା । ସବୁ ଆଲୁଅ ଲିଭିଯାଇଛି । ସବୁ ଶେଷ ହୋଇଯାଇଛି । ରାଣୀ, ମୁଁ ତମ ପାଖକୁ ଆସୁଛି, ଅପେକ୍ଷା କର ।

ଏରସ୍‌କୁ ଡାକି ଆଣ୍ଟୋନି କହନ୍ତି - କ୍ଲିଓପେଟ୍ରା ମୃତ- ମୋର ଜୀବନ ଏଭଳି ଘୃଣିତ ଯେ, ଦେବତାମାନେ ମଧ ତାକୁ ଦୟା ଦେଖାଇବାରୁ ବିରତ । ମୋର ଆଦେଶ, ତମେ ମୋତେ ହତ୍ୟାକର । ମୋର ସମୟ ଶେଷ ହୋଇଛି ।

ଏରସ୍ ସେଇ ମର୍ମନ୍ତୁଦ ଆଦେଶ ପାଳନ କରିବାକୁ ଅସ୍ୱୀକୃତ ହେବାରୁ ଆଣ୍ଟୋନି କହନ୍ତି, ତୁ କ'ଣ ରୋମ୍‌ର କୌଣସି ଝରକା ପାଖରେ ବସି ଦେଖିବାକୁ ଚାହୁଁ ଯେ, ତୋର ପ୍ରଭୁ ବନ୍ଦୀ ଅବସ୍ଥାରେ ସିଜର୍‌ର ରଥ ଚକ ସହିତ ଟଣା ହୋଇଚାଲିଛି ! ମନେ ନାହିଁ, ତୋତେ ଯେଉଁଦିନ ମୁକ୍ତି ଦେଇଥିଲି, ତୁ ପ୍ରତିଶ୍ରୁତି ଦେଇଥିଲୁ ଯେ ମୋର ଆଦେଶ ପ୍ରାଣ ଦେଇ ପାଳନ କରିବୁ । ତରବାରି ଖୋଲି ଆଗେଇ ଆ ...

ଏରସ୍ କରୁଣ କଣ୍ଠରେ କହେ- ତା' ହେଲେ ଆପଣ ଆପଣଙ୍କର ମୁହଁକୁ ମୋ ଆଡୁ ଘୁରାଇ ନିଅନ୍ତୁ । ଆଘାତ ପୂର୍ବରୁ ଆପଣଙ୍କୁ ଶେଷ ବିଦାୟ ଜଣାଉଛି । ଆଣ୍ଟୋନି ମୁହଁ ବୁଲାଇନେବା ମାତ୍ରେ ଏରସ୍ ନିଜ ତରବାରିରେ ନିଜକୁ ଆଘାତ କରି ମୃତ୍ୟୁବରଣ କରେ ।

ଅଭିଭୂତ ହୋଇପଡ଼ି ଆଣ୍ଟୋନି କହନ୍ତି - ବୀର ଏରସ୍, ତୁ ମୋ ଠାରୁ ବି ମହାନ୍ । ନିଜର ଜୀବନ ଦେଇ ତୁ ମୋତେ ବାଟ ଦେଖାଇଦେଲୁ । ରାଣୀଙ୍କ ସହିତ ତୁ ମଧ ମହତ୍ତ୍ୱର ଏକ ଦୃଷ୍ଟାନ୍ତ ରଖିଦେଲୁ । ଏରସ୍, ଜଣେ ଅନୁଗତ ଶିଷ୍ୟଭଳି ବର୍ତ୍ତମାନ ତୋର ପ୍ରଭୁ ତୋର ଅନୁସରଣ କରିବ । ଆଣ୍ଟୋନି ନିଜର ତରବାରି ଖୋଲି ତା' ଉପରକୁ ଡେଇଁ ପଡ଼ନ୍ତି ଏବଂ ଗୁରୁତର ଭାବେ ଆହତ ହୋଇ ମୃତ୍ୟୁକୁ ପ୍ରତୀକ୍ଷା କରନ୍ତି ।

ଆଣ୍ଟୋନିଙ୍କ ସନ୍ଧାନରେ ଅନେକେ ବାହାରି ପଡ଼ିଥିଲେ । କ୍ଲିଓପେଟ୍ରାଙ୍କର ଦୁଇ ଅନୁଚର ସେଠାକୁ ଆସି ତାଙ୍କୁ ଏଇ ଅବସ୍ଥାରେ ପଡ଼ିଥିବାର ଦେଖନ୍ତି । ଆଣ୍ଟୋନି ପ୍ରଥମ ଅନୁଚରକୁ ଅନୁରୋଧ କରନ୍ତି ଯେ ଶେଷ ଆଘାତଟା ହାଣି ସେ ଯେମିତି ତାଙ୍କୁ ଏଇ ଯନ୍ତ୍ରଣାରୁ ମୁକ୍ତି ଦିଏ । କିନ୍ତୁ ଆଣ୍ଟୋନିଙ୍କୁ ବିସ୍ମିତ କରି ସେ ଜଣାଏ ଯେ, କ୍ଲିଓପେଟ୍ରା ତାକୁ ତାଙ୍କ ପାଖକୁ ପଠାଇଛନ୍ତି । ଆଣ୍ଟୋନିଙ୍କର ପ୍ରଶ୍ନର ଉତ୍ତରରେ ସେ ଜଣାଏ, ରାଣୀ ନିଜକୁ ଅନ୍ତରୀଣ ରଖିଛନ୍ତି । କିନ୍ତୁ ସେ ଯାହା ଆଶଙ୍କା କରିଥିଲେ, ଶେଷକୁ ତାହାହିଁ ଘଟିଯାଇଛି । ରାଣୀ ଯେତେବେଳେ ଜାଣିଲେ ଯେ, ସେ ସିଜର୍‌ଙ୍କ ପକ୍ଷ ନେଇଛନ୍ତି ବୋଲି ଆପଣ ତାଙ୍କୁ ସନ୍ଦେହ କରୁଛନ୍ତି ଏବଂ ଆପଣଙ୍କର କ୍ରୋଧ ସହଜରେ ଦୂର ହେବ ନାହିଁ, ସେତେବେଳେ ସେ ନିଜକୁ ମୃତ ବୋଲି

ଆପଣଙ୍କ ପାଖକୁ ଖବର ପଠାଇଥିଲେ ଏବଂ ତାହାର ପରିଣାମ କ'ଣ ହୋଇପାରେ ଅନୁମାନ କରି ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି । କିନ୍ତୁ ବୋଧହୁଏ ବଡ଼ ଡେରି ହୋଇଗଲା ।

ଆଣ୍ଟୋନି କହନ୍ତି - ହଁ, ଡେରି ହୋଇଗଲା । ତାଙ୍କର ଅନୁରୋଧରେ ଆହତ ଅବସ୍ଥାରେ ତାଙ୍କୁ କ୍ଲିଓପେଟ୍ରାଙ୍କ ପାଖକୁ ନିଆହୁଏ । କ୍ଲିଓପେଟ୍ରା ତାଙ୍କୁ ଏଇ ଅବସ୍ଥାରେ ଦେଖି କାନ୍ଦିଉଠନ୍ତି । ଆଣ୍ଟୋନି ତାଙ୍କୁ ସାନ୍ତ୍ୱନା ଦେଇ କହନ୍ତି - ସ୍ଥିର ହୁଅ । ଅନ୍ତତଃ ସିଜର୍ ଆଣ୍ଟୋନିକୁ ହତ୍ୟା କରପାରି ନାହିଁ । ବିଜୟ ଆଣ୍ଟୋନିର ହିଁ ହୋଇଛି ।

ଅଶ୍ରୁପୂର୍ଣ୍ଣ କଣ୍ଠରେ କ୍ଲିଓପେଟ୍ରା କହନ୍ତି - ଠିକ୍ କହିଚ ତମେ, ଆଣ୍ଟୋନି ବ୍ୟତୀତ ଆଣ୍ଟୋନିଙ୍କୁ ଆଉ କେହି ପରାଜିତ କରିପାରିବେ ନାହିଁ ।

ଆଣ୍ଟୋନି କହନ୍ତି - ରାଣୀ ମୁଁ ତ ବିଦାୟ ନେଉଛି ; କିନ୍ତୁ ମୃତ୍ୟୁକୁ କିଛି ସମୟ ଅପେକ୍ଷା କରିବା ପାଇଁ ଅନୁରୋଧ କରିଛି । ମୁଁ ମୋର କ୍ଲିଓପେଟ୍ରାଙ୍କୁ ଶେଷଥର ପାଇଁ ଚୁମ୍ବନ ଦେଇଯିବି ।

କ୍ଲିଓପେଟ୍ରା କହନ୍ତି - ମୋତେ କ୍ଷମା କର । ମୁଁ ସବୁ ସାହସ ହରାଇ ଦେଇଛି । ମୁଁ ଜାଣେ, ମୋତେ ଧ୍ୱଂସ ନ କରି ସିଜର୍ ସନ୍ତୁଷ୍ଟ ହେବ ନାହିଁ । କ୍ଲିଓପେଟ୍ରାଙ୍କ ଅନୁରୋଧରେ ସମସ୍ତେ ଆଣ୍ଟୋନିଙ୍କୁ ଉଠାଇ ଦିଅନ୍ତି । କ୍ରନ୍ଦନରତ ହୋଇ କ୍ଲିଓପେଟ୍ରା କହନ୍ତି, ଯାହାକୁ ଅବଲମ୍ବନ କରି ତମେ ବଞ୍ଚିଥିଲ, ତାରି ଚୁମ୍ବନରେ ତମର ମୃତ୍ୟୁ ହେଉ । ଯଦି ମୋର ଏଇ ଓଷ୍ଠର ଶକ୍ତି ଥାଆନ୍ତା, ତାହାହେଲେ ମୁଁ ତମର ମୃତ୍ୟୁକୁ ଶୋଷି ନେଇପାରନ୍ତି ।

ଆଣ୍ଟୋନି କହନ୍ତି - ମୁଁ ତ ଯାଉଛି । ମୋତେ ମଦ ଦିଅ । ଟିକିଏ କଥା କହିବାକୁ ଦିଅ । ରାଣୀ ତମେ ସିଜର୍ ପାଖରେ ଆତ୍ମସମର୍ପଣ କର । ତମର ସମ୍ମାନ ଓ ନିରାପତ୍ତା ବଜାୟ ରହିବ । କ୍ଲିଓପେଟ୍ରା ତାଙ୍କର ସିଦ୍ଧାନ୍ତ ଜଣାନ୍ତି । କହନ୍ତି - ସମ୍ମାନ ଆଉ ନିରାପତ୍ତା ଦୁଇଟା ଏକାଠି କଦାପି ରହିପାରିବ ନାହିଁ । ମୁଁ ମୋର ବିଚାର ବୁଦ୍ଧି ଓ ଶକ୍ତି ଉପରେ ହିଁ ଭରସା ରଖିବି ।

ଆଣ୍ଟୋନି ମହାନିଦ୍ରାରେ ଢଳେଇଯିବା ପୂର୍ବରୁ କହିଯାଆନ୍ତି - ମୋର ଶେଷ ମୁହୂର୍ତ୍ତର କଥା ଭାବି ଦୁଃଖ କର ନାହିଁ, ବରଂ ମୋର ଗୌରବରେ ଦୀପ୍ତ ଦିନଗୁଡ଼ିକର କଥା ମନେ ପକାଅ - ସେ ଦିନ ମୁଁ ହିଁ ଥିଲି ପୃଥିବୀର ଶ୍ରେଷ୍ଠ ସମ୍ରାଟ୍ ।

ଆଖିର ପାଣିରେ ରାଣୀଙ୍କର ବୁକୁ ଭାସିଯାଏ । 'ତମେ ତ ଚାଲିଯାଉଛ, ମୋତେ ତେବେ କାହା ହାତରେ ଦେଇଯାଉଛ ? ତୁମକୁ ଛାଡ଼ି ଏ ଦୁନିଆ ମୋ ପାଇଁ ଏକ ରୁକ୍ଷ ମରୁପ୍ରାନ୍ତର - ଏଠି ମୁଁ ଦିନ କଟାଇବି କେମିତି ?

ଆଣ୍ଟୋନିଙ୍କର ଆଖି ବନ୍ଦ ହୋଇଯାଏ । ତାଙ୍କର ସକଳ ଯାତନାର ଶେଷ ହୁଏ ।

ରାଣୀ ଚେତା ହରାନ୍ତି । ଶୋକ ଛଡ଼ା ତାଙ୍କର ଆଉ କରିବାର ବା କ'ଣ ଅଛି ?

॥ ୫ ॥

ଆଣ୍ଟୋନି ପରାଜିତ । ସିଜର୍‌ଙ୍କ ଶିବିରରେ ଆନନ୍ଦର ହିଲ୍ଲୋଳ । ଖୁସିରେ ସିଜର୍ ତାଙ୍କର ବନ୍ଧୁ ଡୋଲାବେଲାଙ୍କୁ ଡାକି କହନ୍ତି - ଆଣ୍ଟୋନି ପାଖକୁ ଯାଇ ତାକୁ ମୋର ବଶତା ସ୍ୱୀକାର କରିବାକୁ କହ ! ବିଚରା ବଡ଼ ଭାଙ୍ଗି ପଡ଼ିଛି ।

ଏହି ସମୟରେ ଆଣ୍ଟୋନିଙ୍କ ଅନୁଚର ଆସି ତାଙ୍କର ମୃତ୍ୟୁ ସମ୍ବାଦ ଜଣାଏ ।

ସିଜର୍ ପ୍ରଥମେ ବିଶ୍ୱାସ କରିପାରନ୍ତି ନାହିଁ । କହନ୍ତି- ଆଣ୍ଟୋନି ଭଳି ବଡ଼ ମାପର ମଣିଷ ଚିର ବିଦାୟ ନେଲେ ପୃଥିବୀ କମ୍ପି ଉଠିବ, ଧରଣୀ ଦୁଇଫାଳ ହୋଇଯିବ । ସବୁ କିଛି ଓଲଟପାଲଟ ହୋଇଯିବ । ସିଂହମାନେ ରାଜପଥରେ ଘୂରି ବୁଲିବେ, ଆଉ ନାଗରିକମାନେ ଆତ୍ମଗୋପନ କରିବେ ଗୁମ୍ଫା ଭିତରେ । ଆଣ୍ଟୋନିର ମୃତ୍ୟୁ ଅର୍ଥ ଏକ ସାଧାରଣ ମଣିଷର ମୃତ୍ୟୁ ନୁହେଁ । ସେଇ ନାମ ସହିତ ଜଡ଼ିତ ରହିଛି ଅର୍ଦ୍ଧେକ ପୃଥିବୀ ।

ଦୂତ ଜଣାଏ - ପ୍ରକୃତରେ ସେ ବିଦାୟ ନେଇଛନ୍ତି ହଜୁର । କୌଣସି ବିଚାରାଳୟର ରାୟରେ ନୁହେଁ କିମ୍ବା ଭଡ଼ାଟିଆ ହତ୍ୟାକାରୀର ଗୁପ୍ତ ଛୁରିକାରେ ନୁହେଁ । ନିଜ ହାତରେ ନିଜର ପ୍ରାଣ ନେଇ ସେ ଆପଣାର ସମ୍ମାନ ରକ୍ଷା କରିଛନ୍ତି । ଆଣ୍ଟୋନିଙ୍କର ତରବାରି ଦେଖାଇ ଦୂତ କହେ - ଏ ସେଇ ଅସ୍ତ୍ର, ଯେଉଁଥିରେ ତାଙ୍କର ମୃତ୍ୟୁ ହୋଇଛି । ଦେଖନ୍ତୁ ଏବେବି ଏଥିରେ ତାଙ୍କ ରକ୍ତର ଦାଗ ଲାଗିରହିଛି ।

ଏଇ ମର୍ମନ୍ତୁଦ ସମ୍ବାଦରେ ରାଜସଭା ସ୍ତବ୍ଧ ହୋଇଯାଏ । ଏଗ୍ରିପ୍ପା କହନ୍ତି - ବିଚିତ୍ର ବ୍ୟାପାର- ଆମେ ଯାହା ଚାହିଁଥିଲୁ, ତାହାହିଁ ଘଟିଛି, ଅଥଚ ଆମେମାନେ ଶୋକାକୁଳ ! ସମସ୍ତେ ଆଣ୍ଟୋନିଙ୍କ ଚରିତ୍ରର ମହାନତାକୁ ନେଇ ଆଲୋଚନା କରନ୍ତି ଗଭୀର ଦୁଃଖର ସହିତ ସିଜର୍ କହନ୍ତି - ବନ୍ଧୁ ମୁଁ ହେଉଛି ତମର ମୃତ୍ୟୁର କାରଣ । କିନ୍ତୁ ତମେ ଜାଣ, ଏହାଛଡ଼ା ଅନ୍ୟ ଉପାୟ ନ ଥିଲା । ଦେହରେ ବ୍ୟାଧି ହେଲେ ତାକୁ ବାହାରେ ଫୋପାଡ଼ି ଦେବାକୁ ହୁଏ । ତଥାପି ମୁଁ ଦୁଃଖ ପାଇଛି । ତମେ ଥିଲ ଉଦାର ହୃଦୟ ସମ୍ରାଟ୍, ମୋର ଭାଇ, ପ୍ରତିଯୋଗୀ । ରାଜ୍ୟ ପରିଚାଳନାରେ ହେଉ କିମ୍ବା ଯୁଦ୍ଧରେ ହେଉ, ତମର ସାହଚର୍ଯ୍ୟ ମୁଁ ପାଇଛି ।

ଜଣେ ମିଶରୀୟ ଦୂତ ପ୍ରବେଶ କରି ଜଣାଏ ଯେ, କ୍ଲିଓପେଟ୍ରା ତାଙ୍କର ମନୁମେଣ୍ଟରେ ସିଜର୍‌ଙ୍କ ନିର୍ଦ୍ଦେଶର ଅପେକ୍ଷାରେ ଅଛନ୍ତି । ସିଜର୍ କହନ୍ତି ତାଙ୍କୁ ମନ ଦୁଃଖ ନ କରିବାକୁ କହ । ଶୀଘ୍ର ଏଠାରୁ କେହି ତାଙ୍କ ପାଖକୁ ଯିବ । ତାଙ୍କ ପ୍ରତି ସମ୍ମାନ ଆଉ ଅନୁଗ୍ରହ ଉଭୟ ପ୍ରଦର୍ଶିତ ହେବ । ସିଜର୍ ସୌଜନ୍ୟ ଦେଖାଇବାକୁ ଜାଣେ ।

ଦୂତ ଚାଲିଯାଏ ।

ସିଜର୍ ସହକାରୀ ପ୍ରୋକ୍ୟୁଲାସ୍‌କୁ ଡାକି କହନ୍ତି, କ୍ଲିଓପେଟ୍ରାଙ୍କ ପାଖକୁ ଯାଇ ତାଙ୍କୁ ସାନ୍ତ୍ୱନା ଦିଅ । ତାଙ୍କୁ କୌଣସି ଲଜ୍ଜାଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ । ନ ହେଲେ ସେ ଆତ୍ମହତ୍ୟା କରି ଆମକୁ ଫାଙ୍କି ଦେଇପାରନ୍ତି । ତାଙ୍କୁ ରୋମ ନେଇଗଲେ, ତାହା ହେବ ଏକ ଐତିହାସିକ ଘଟଣା । ଶୀଘ୍ର ଯାଅ, ଆଉ ରାଣୀଙ୍କର ମନୋଭାବ ଲକ୍ଷ୍ୟ କରି ଫେରିଆସ । ସିଜର୍ ଗାଲ୍ଲାସ୍‌କୁ ତାଙ୍କ ସାଙ୍ଗରେ ଯିବା ପାଇଁ ଆଦେଶ ଦିଅନ୍ତି । ସେମାନେ ଚାଲିଯିବା ପରେ ମଧ୍ୟ ନିଶ୍ଚିନ୍ତ ନ ହୋଇ ସିଜର୍ ପୁଣି ଡୋଲାବେଲାଙ୍କୁ ରାଣୀଙ୍କ ପାଖକୁ ପଠାନ୍ତି ।

କ୍ଲିଓପେଟ୍ରାଙ୍କ ସହିତ ପ୍ରୋକ୍ୟୁଲାସ୍ ସାକ୍ଷାତ୍ କରନ୍ତି । କହନ୍ତି- ସିଜରଙ୍କଠାରୁ ଆପଣ କ'ଣ ଚାହାନ୍ତି, ତାହା ଜାଣିବା ପାଇଁ ସେ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି :

କ୍ଲିଓପେଟ୍ରା ପ୍ରଥମେ ତାଙ୍କ ନାମ ଜାଣିନେଇ କହନ୍ତି - ଆଣ୍ଟୋନିଙ୍କ ଠାରୁ ମୁଁ ତମର ନାମ ଶୁଣିଛି । ସେ ତମକୁ ବିଶ୍ୱାସ କରିବା ପାଇଁ କହିଥିଲେ । ତେବେ ବର୍ତ୍ତମାନ ବିଶ୍ୱାସ-ଅବିଶ୍ୱାସ - ଏସବୁରେ ମୋର କିଛି ଯାଏଆସେ ନାହିଁ । ତମର ପ୍ରଭୁ ଯଦି ଜଣେ ରାଣୀଙ୍କୁ ଭିକାରୁଣୀ ବୋଲି ମନେ କରିଥାନ୍ତି ତେବେ ତାଙ୍କୁ କହ, ମୁଁ ତାଙ୍କ ଠାରୁ ଏକ ରାଜତ୍ୱ ଚାହେଁ, ତା'ଠୁ କିଛି କମ୍ ନୁହେଁ । ସେ ଯଦି ବିଜିତ ମିଶରକୁ ମୋର ପୁତ୍ର ପାଇଁ ମୋତେ ପ୍ରତ୍ୟର୍ପଣ କରିବାକୁ ପ୍ରସ୍ତୁତ ଥାଆନ୍ତି ତେବେ ଯଥେଷ୍ଟ ହେବ ଏବଂ ମୁଁ ତାଙ୍କୁ ନତଜାନୁ ହୋଇ ଧନ୍ୟବାଦ ଜଣାଇବି ।

ପ୍ରୋକ୍ୟୁଲାସ୍ କହନ୍ତି - ଆପଣ ଖୁସିରେ ରହନ୍ତୁ, ଚିନ୍ତା କରିବେ ନାହିଁ । ଆପଣଙ୍କ କଥା ମୁଁ ତାଙ୍କୁ କହିବି । ତାଙ୍କଠାରେ ସୌଜନ୍ୟର ଅଭାବ ନାହିଁ । ଯାହାର ଯାହା ପ୍ରୟୋଜନ, ସେ ସବୁ ଦେଇଥାନ୍ତି । ଆପଣଙ୍କର ପ୍ରାର୍ଥନା ମଧ୍ୟ ସେ ପୂରଣ କରିବେ ।

କ୍ଲିଓପେଟ୍ରା କହନ୍ତି - ମୁଁ ତାଙ୍କର ଅନୁଗତ ବୋଲି ତାଙ୍କୁ ଜଣାଅ । ତାଙ୍କ ଆଦେଶ ଅପେକ୍ଷାରେ ରହିବି ।

ତେବେ ପ୍ରୋକ୍ୟୁଲାସ୍ ପଛେ ପଛେ ରାଣୀ ମନୁମେଣ୍ଟରୁ ଓହ୍ଲାଇ ଆସୁଥିବା ବେଳେ ଗାଲ୍ଲାସ୍ ତାଙ୍କୁ ବନ୍ଦୀ କରନ୍ତି । ରାଣୀ ଛୁରୀ ବାହାର କରି ଆତ୍ମହତ୍ୟାର ଚେଷ୍ଟା କରନ୍ତି । ପ୍ରୋକ୍ୟୁଲାସ୍ ତାଙ୍କ ହାତରୁ ଅସ୍ତ୍ର କାଢ଼ିନେଇ କହନ୍ତି - ଆତ୍ମହତ୍ୟା ଦ୍ୱାରା ମୋ ପ୍ରଭୁଙ୍କର ବଦାନ୍ୟତାକୁ ଛୋଟ କରିବେ ନାହିଁ ।

ପ୍ରଚେଷ୍ଟା ବ୍ୟର୍ଥ ହୋଇଯିବାରୁ କ୍ଲିଓପେଟ୍ରା ହାହାକାର କରିଉଠନ୍ତି । କହନ୍ତି- ମୃତ୍ୟୁ ଆଜି ମୁଁ ତମକୁ ଭିକାରୁଣୀ ଭଳି ଆବାହନ କରୁଛି । ମୋତେ ଗ୍ରହଣ କର ।

ପ୍ରୋକ୍ୟୁଲାସ୍ ତାଙ୍କୁ ଧୈର୍ଯ୍ୟ ଧରିବାକୁ ନିବେଦନ କରନ୍ତି ।

ରାଣୀ କହିଚାଲନ୍ତି, ଏବେ ମୋର ଆହାର, ନିଦ୍ରା ସବୁ ବନ୍ଦ । ନିଜର ଏହି ପ୍ରାସାଦକୁ ମଧ ମୁଁ ଧ୍ୱଂସ କରିଦେବି । ସିଜର୍ ଯାହା କରିବାର କରିଯା'ନ୍ତୁ । ମୁଁ ତମର ପ୍ରଭୁଙ୍କ ଦରବାରରେ ଶୃଙ୍ଖଳିତ ଅବସ୍ଥାରେ ଠିଆ ହେବା ପାଇଁ ପ୍ରସ୍ତୁତ ନୁହେଁ କିମ୍ବା ତାଙ୍କର ଧୂର୍ତ୍ତ ଆଖିର ବିଦ୍ରୂପ ସହ୍ୟ କରିବା ଭଳି ଧୈର୍ଯ୍ୟ ମଧ ମୋର ନାହିଁ । ସିଜର୍ ହୁଏତ ମୋତେ ରୋମ୍‌ର ଇତର ଜନତାଙ୍କ ଆଗରେ ଠିଆ କରାଇ ପୈଶାଚିକ ଆନନ୍ଦ ପାଇବାକୁ ଚାହାନ୍ତି । ତା ଅପେକ୍ଷା ମୁଁ ବରଂ ମିଶରର କୌଣସି କ୍ଷୁଦ୍ର ଗର୍ତ୍ତରେ କବର ନେବାକୁ ଚାହିଁବି କିମ୍ବା ନୀଳନଦୀର କାଦୁଅ ଉପରେ ଶୋଇପଡ଼ିବି । ସେଠାରେ ଜଳମକ୍ଷିକା ମୋର ଚେହେରାକୁ ବିକୃତ କରିପକାନ୍ତୁ, ତା' ସହ୍ୟ କରିବାକୁ ପ୍ରସ୍ତୁତ କିମ୍ବା କୌଣସି ଉଚ୍ଚ ପିରାମିଡ୍ ଉପରେ ମୋତେ ଫାଶୀ ଦେଲେ ମଧ ମୋର ଆପତ୍ତି ନାହିଁ ।

ବାଧା ଦେଇ ପ୍ରୋକ୍ୟୁଲାସ୍ କହନ୍ତି- ଏସବୁ ଭୟଙ୍କର କଳ୍ପନା ବନ୍ଦ କରନ୍ତୁ । ପ୍ରକୃତରେ ଏ ସବୁର କୌଣସି କାରଣ ନାହିଁ ।

ଏତିକିବେଳେ ଡୋଲାବେଲା ଆସି କହନ୍ତି ଯେ ପ୍ରୋକ୍ୟୁଲାସ୍‌ଙ୍କୁ ସିଜର୍ ଡାକିଛନ୍ତି, ସେ ବରଂ ରାଣୀଙ୍କୁ ଦେଖାଶୁଣା କରିବେ । ଯିବା ପୂର୍ବରୁ ପ୍ରୋକ୍ୟୁଲାସ୍ ପୁଣି ପଚାରିଛନ୍ତି ସିଜର୍‌ଙ୍କୁ ତେବେ କ'ଣ କହିବି, କୁହନ୍ତୁ ।

କ୍ଲିଓପେଟ୍ରା କହନ୍ତି - କେବଳ ଜଣାଅ, ମୋର ମୃତ୍ୟୁ ଆସନ୍ନ ।

ଡୋଲାବେଲା ପଚାରନ୍ତି, ମହାରାଣୀ, ଆପଣ କ'ଣ ପୂର୍ବରୁ ମୋକଥା ଶୁଣିଛନ୍ତି ? ରାଣୀଙ୍କର ମନେପଡ଼େ ନାହିଁ । ତେବେ ତାଙ୍କଠାରୁ ସହାନୁଭୂତି ପାଇ ରାଣୀ ତାଙ୍କ ମନର ଏକ ଗୋପନ ସ୍ୱପ୍ନର ପ୍ରସଙ୍ଗ ତାଙ୍କ ନିକଟରେ ବର୍ଣ୍ଣନା କରନ୍ତି । ରାଣୀ କହନ୍ତି - ମୁଁ ଆଣ୍ଟୋନି ନାମକ ଜଣେ ମହାନ୍ ସମ୍ରାଟ୍‌ଙ୍କୁ ସ୍ୱପ୍ନରେ ଦେଖିଥିଲି । ତାଙ୍କର ମୁଖମଣ୍ଡଳ ଥିଲା ଆକାଶ ଭଳି, ସୂର୍ଯ୍ୟ ଚନ୍ଦ୍ର ତାଙ୍କର ଚଲାପଥ ଆଲୋକିତ କରୁଥିଲେ । ମହାସମୁଦ୍ର ଭଳି ତାଙ୍କର ବିସ୍ତାର । ତାଙ୍କ ହାତରେ ଥିଲା ପୃଥିବୀ । ତାଙ୍କ ଗଳାରେ ସପ୍ତସ୍ୱର ଖେଳୁଥିଲା - ତେବେ ପୃଥିବୀକୁ ପ୍ରକମ୍ପିତ କରିବାକୁ ଇଚ୍ଛା କଲେ ସେଇ ଗଳାରୁ ବାହାରି ଆସୁଥିଲା ପ୍ରଳୟର ବଜ୍ରନାଦ । ତାଙ୍କର ବଦାନ୍ୟତାରେ ଶୀତର ସ୍ପର୍ଶ ବଦଳରେ ହେମନ୍ତର ଶସ୍ୟ ସମ୍ଭାର ପୂର୍ଣ୍ଣ ହେଉଥିଲା, ତମେ ମୋର ଏଇ ସ୍ୱପ୍ନର ମଣିଷ କଥା ଚିନ୍ତା କରିପାରିବ ?

- ନା ମାଡାମ୍ - ଡୋଲାବେଲା ଜଣାନ୍ତି ।

- ଅଥଚ ସେଇ ଆଣ୍ଟୋନି ଥିଲେ ରକ୍ତମାଂସଧାରୀ ମଣିଷ - ସମସ୍ତଙ୍କ ଭଳି ଟାଙ୍କର ମଧ ଛାଇ ପଡୁଥିଲା ।

ଡୋଲାବେଲା ବୁଝିପାରନ୍ତି - ରାଣୀ କ୍ରମଶଃ ନିଜର ଭାରସାମ୍ୟ ହରାଉଛନ୍ତି । ସେ କହନ୍ତି- ମାଡାମ୍ ଆପଣଙ୍କ ଭଳି ଆପଣଙ୍କର କ୍ଷତିର ପରିମାଣଟା ମଧ ଖୁବ୍ ବଡ଼ । କିନ୍ତୁ ଆପଣ ତାକୁ ଠିକ୍ ରୂପେ ସହ୍ୟ କରି ଚାଲିଛନ୍ତି । ଆପଣଙ୍କ ଦୁଃଖରେ ମୁଁ ଅଭିଭୂତ ।'

କ୍ଲିଓପେଟ୍ରା ସମ୍ବିତ୍ ଫେରିପାଆନ୍ତି । କହନ୍ତି- ଧନ୍ୟବାଦ୍ କିନ୍ତୁ ସିଜର୍ ମୋତେ ନେଇ କ'ଣ କରିବାକୁ ଚାହାନ୍ତି, ଏ ବିଷୟରେ ତମର କିଛି ଧାରଣା ଅଛି ?

ଡୋଲାବେଲା କହନ୍ତି - ଅଛି, କିନ୍ତୁ ତାହା ମୁଁ ଆପଣଙ୍କ ନିକଟରେ ପ୍ରକାଶ କରିପାରିବି ନାହିଁ । କ'ଣ ଭାବିନେଇ ସେ ଧୀରେ ଧୀରେ ସିଜର୍ ତାଙ୍କୁ ରୋମ୍ ନେଇଯାଇ ସେଠାରେ ସାଧାରଣ ଜନତାଙ୍କ ଦରବାରରେ ଉପସ୍ଥିତ କରାଇବାର ଚିନ୍ତା ସମ୍ପର୍କରେ କହିଦିଅନ୍ତି । ସଦଳବଳେ ସିଜର୍ ଆସି ଉପସ୍ଥିତ ହୁଅନ୍ତି । କିଛି ଶ୍ଳେଷର ସହିତ ପଚାରନ୍ତି - କିଏ ମିଶରର ରାଣୀ ? ଡୋଲାବେଲା ରାଣୀଙ୍କୁ କହନ୍ତି - ମାଡାମ୍ - ଏଇ ହେଉଛନ୍ତି ଆମର ସମ୍ରାଟ୍ ।

କ୍ଲିଓପେଟ୍ରା ନତଜାନୁ ହୋଇ ଅଭିବାଦନ ଜଣାନ୍ତି ।

ସୌଜନ୍ୟ ଦେଖାଇ ସିଜର୍ କହନ୍ତି - ଉଠନ୍ତୁ ରାଣୀ । ଆପଣଙ୍କୁ ନତଜାନୁ ହେବାକୁ ପଡ଼ିବ ନାହିଁ ।

- ଈଶ୍ୱର ତାହାହିଁ ଚାହାନ୍ତି ଏବଂ ତାଙ୍କର ଆଦେଶ ମୋତେ ମାନିବାକୁ ହେବ - ରାଣୀ କହନ୍ତି ।

ସିଜର୍ କହନ୍ତି, ଆମ ସମ୍ପର୍କରେ ଖରାପ କିଛି ଭାବିବେ ନାହିଁ । ଆପଣ ଆମର ଯେଉଁ କ୍ଷତି କରିଛନ୍ତି, ସେ ସବୁକୁ ଏକ ଦୁର୍ଘଟଣା ବୋଲି ମୁଁ ଧରିନେଉଛି ।

ପୃଥିବୀପତି, ମୁଁ ହୁଏତ ମୋର କଥା ଠିକ୍ ଭାବେ ଉପସ୍ଥାପିତ କରିପାରୁ ନାହିଁ । ତେବେ ମୋର ଦୁର୍ବଳତା ସ୍ୱୀକାର କରୁଛି ।

- ଆମ ଇଚ୍ଛାନୁସାରେ ଚାଲିଲେ ଆପଣଙ୍କର କୌଣସି କ୍ଷତି ହେବ ନାହିଁ । ବରଂ ଭଲ ହେବ । ତେବେ ଆପଣ ଯଦି ଆଣ୍ଟୋନି ଭଳି ପ୍ରତିଶୋଧର ପଥ ଗ୍ରହଣ କରିନିଅନ୍ତି, ତେବେ ଆପଣଙ୍କୁ ଅନୁତାପ କରିବାକୁ ପଡ଼ିବ । ମୋ ଉପରେ ଆସ୍ଥା ରଖିଲେ ଆପଣଙ୍କ ସନ୍ତାନମାନଙ୍କର ନିରାପତ୍ତାର ଦାୟିତ୍ୱ ମୁଁ ଗ୍ରହଣ କରିବି ।

କ୍ଲିଓପେଟ୍ରା କହନ୍ତି, ସିଜରଙ୍କ ଆଦେଶ ନିଶ୍ଚୟ ପାଳିତ ହେବ । ତା' ପରେ ନିଜର ଟଙ୍କାପଇସା, ଗହଣାଗଣ୍ଠି, ବାସନପତ୍ର ସିଜର୍‌ଙ୍କୁ ଦେଖାଇ ସେ କହନ୍ତି - ଏତିକି ମାତ୍ର ମୋର

ଅଛି । ଏ ସବୁର ଠିକ୍ ମୂଲ୍ୟ ମଧ୍ୟ ହିସାବ କରାଯାଇଛି । ତେବେ ଛୋଟ ମୋଟ ଜିନିଷକୁ ଧରାଯାଇ ନାହିଁ । ନିଜର ସହକାରୀ ସେଲ୍ୟୁକସ୍‌କୁ ପଚାରନ୍ତି – ମୋର ଯାହା କିଛି ସବୁ ଏତିକି ନା ଆଉ କିଛି ଅଛି ? ସତ୍ୟ କହିବ ।'

ରାଣୀଙ୍କୁ ଚମକାଇ ସେଲ୍ୟୁକସ୍ ଅନ୍ୟ କଥା କହେ । 'ମାଡାମ୍, ଯାହା ସତ୍ୟ ନୁହେଁ ତା' କହିବା ଅପେକ୍ଷା ମୁଁ ବରଂ ଚୁପ୍ ରହିବି ।'

ଉତ୍ତେଜିତ କ୍ଲିଓପେଟ୍ରା କହନ୍ତି – ମୁଁ ତେବେ ଆଉ କିଛି ଲୁଚାଇ ରଖିଛି ?

ସେଲ୍ୟୁକସ୍ କହେ – ଆପଣ ଏଠାରେ ଯାହା ପ୍ରକାଶ କରିଛନ୍ତି, ତା'ର ସମମୂଲ୍ୟର ସମ୍ପତ୍ତି ଆପଣ ଆପଣଙ୍କ ପାଖରେ ରଖିଛନ୍ତି ।

ରାଣୀଙ୍କର ଅପ୍ରସ୍ତୁତ ଭାବ ଲକ୍ଷ୍ୟ କରି ସିଜର୍ କହନ୍ତି – ଏଥିରେ ଲଜ୍ଜିତ ହେବାର କିଛି ନାହିଁ । ଆପଣ ବୁଦ୍ଧିମତୀ ଭଳି କାର୍ଯ୍ୟ କରିଛନ୍ତି ।

କ୍ଷୁବ୍ଧ ରାଣୀ କହନ୍ତି – ମୋ ଜିନିଷ ଏବେ ଆପଣଙ୍କର । ଯଦି ମୁଁ ମିଶର ଫେରିପାଏ, ତେବେ ଏ ପଦାର୍ଥ ପୁଣି ମୋର ହୋଇପାରେ । କିନ୍ତୁ ସେଲ୍ୟୁକସ୍‌ର ଅକୃତଜ୍ଞତା ମୋତେ ଆହତ କରିଛି । ତା'ପରେ ସେ ସେଲ୍ୟୁକସ୍‌କୁ କହନ୍ତି – ମୋ ଆଗରୁ ଦୂର ହୋଇ ଯା', ସଇତାନ୍ କୁକୁର – ତୋତେ ମୁଁ ଚିହ୍ନି ରଖିଲି ।

ସିଜର୍ ବାଧା ଦିଅନ୍ତି – ରାଣୀ, ପ୍ରଥମେ ମୋ କଥା ଶୁଣନ୍ତୁ ..

– ଆପଣ ମୋ ସହିତ ଦେଖା କରିବାକୁ ଆସି ମୋତେ ସମ୍ମାନିତ କରିଛନ୍ତି – କ୍ଲିଓପେଟ୍ରା କହନ୍ତି – କିନ୍ତୁ ଏଇ ଲୋକଟାର ଈର୍ଷା ମୋର ମର୍ଯ୍ୟାଦା ହାନି ଘଟାଇଛି । ନାରୀମାନଙ୍କର ପ୍ରୟୋଜନ କେତେଟା ଛୋଟ ଛୋଟ ଜିନିଷ ଅବଶ୍ୟ ମୁଁ ରଖିଛି । ଲିଭିୟା ଆଉ ଅକ୍ଟାଭିୟାକୁ ଦେବାପାଇଁ ଆଉ କିଛି ଭଲ ଜିନିଷ ମଧ୍ୟ ଅଲଗା କରିରଖିଛି । ଏ ସବୁ ବି କ'ଣ ମୋତେ ଜଣାଇବାକୁ ପଡ଼ିବ ? ଏହାଛଡ଼ା ମୃତ୍ୟୁ ବରଂ ମୋ ପାଇଁ ଶ୍ରେୟସ୍କର । ସେଲ୍ୟୁକସ୍‌କୁ ଅନାଇ ରାଣୀ କହନ୍ତି – ଦୟା କରି ତୁ ଏଇ ମୁହୂର୍ତ୍ତରେ ମୋ ଆଗରୁ ଚାଲି ଯା – ଯଦି ମଣିଷ ହୋଇଥାଆନ୍ତୁ ତେବେ ମୋତେ ଅନୁଗ୍ରହ ଦେଖାଇ ଥାଆନ୍ତୁ ।

ସିଜର୍ ମଧ୍ୟ ସେଲ୍ୟୁକସ୍‌କୁ ଚାଲିଯିବା ପାଇଁ କହନ୍ତି । ରାଣୀ ଏଥର ନିଜକୁ ସମ୍ବରଣ କରି ସିଜର୍‌ଙ୍କୁ କହନ୍ତି, ଅନ୍ୟମାନଙ୍କ ପାଇଁ ହିଁ ଆମ ଭିତରେ ଭୁଲ୍ ବୁଝାମଣା ହୋଇଯାଏ ।

– କ୍ଲିଓପେଟ୍ରା, ଆପଣଙ୍କ ପାଖରେ କ'ଣ ଅଛି କିମ୍ବା ନାହିଁ, କ'ଣ କ'ଣ ଆପଣ ଦେଖାଇଛନ୍ତି, ସେ ସବୁକୁ ମୋର ଯୁଦ୍ଧର ଲାଭ ରୂପେ ବିଚାରୁ ନାହିଁ । ସେ ସବୁ ଆପଣଙ୍କର ରହିଲା । ନିଜ ଇଚ୍ଛାରେ ଆପଣ ତା'ର ବ୍ୟବସ୍ଥା କରିବେ । ସିଜର୍ ବେପାରୀ ନୁହେଁ ଯେ,

ଆପଣଙ୍କର ଏଇ କେତେଟା ଜିନିଷ ନେଇ ବ୍ୟବସାୟ କରିବ । ମନ ଖୁସି କରନ୍ତୁ, ଦୁଶ୍ଚିନ୍ତାରୁ ନିଜକୁ ଦୂରରେ ରଖି ଆମମାନଙ୍କୁ ପରାମର୍ଶ ଦିଅନ୍ତୁ । ଖାଆନ୍ତୁ, ପିଅନ୍ତୁ, ଶୁଅନ୍ତୁ । ଆପଣଙ୍କର ଯତ୍ନ ନେବା ଆମର ଦାୟିତ୍ୱ । ଆମେ ପରସ୍ପରର ବନ୍ଧୁ ହୋଇପାରୁ । ବର୍ତ୍ତମାନ ପାଇଁ ବିଦାୟ ।

ରାଣୀ ପୁନର୍ବାର ନତଜାନୁ ହେବାକୁ ଯିବାରୁ ସିଜର୍ ବାଧାଦିଅନ୍ତି । ସେ ଚାଲିଯିବା ପରେ ରାଣୀ କହନ୍ତି - ସିଜର୍ ମୋତେ କଥାରେ ଭୁଲାଇବାକୁ ଚାହେଁ । କିନ୍ତୁ ମୁଁ ଭୁଲୁ ନାହିଁ ।

ଏହାପରେ ଚାରମିୟାନ୍‌କୁ ଡାକି ଚାପା କଣ୍ଠରେ ତାଙ୍କୁ କ'ଣ ନିର୍ଦ୍ଦେଶ ଦିଅନ୍ତି ।

ସିଜର୍ ଯିବା ପରେ ଡୋଲାବେଲା ପୁଣି ଆସନ୍ତି । ସିଜରଙ୍କ ପରିକଳ୍ପନା ସମ୍ପର୍କରେ ଆଉ କିଛି ତଥ୍ୟ ତାଙ୍କଠାରୁ ମିଳେ । ସିଜର୍ ଠିକ୍ କରିଛନ୍ତି, ସିରିଆ ବାଟଦେଇ ସେ ରୋମ୍ ଫେରିବେ । ତା'ର ତିନିଦିନ ପୂର୍ବରୁ ସେ ରାଣୀ ଏବଂ ତାଙ୍କର ସନ୍ତାନମାନଙ୍କୁ ପଠାଇଦେବେ । ଏତିକି କହି ଡୋଲାବେଲା ଫେରିଯାଆନ୍ତି ।

କ୍ଲିଓପେଟ୍ରା ସହଚରୀ ଆଇରାସକୁ କୁହନ୍ତି, ଏଥର ତେବେ ମିଶରର କଣ୍ଢେଇ ଭଳି ଆମକୁ ରୋମାନ୍‌ମାନଙ୍କ ଆଗରେ ପ୍ରଦର୍ଶନ କରାଯିବ ! ଅପରିଷ୍କାର ହାତରେ ସେମାନେ ଆମକୁ ତାଙ୍କ ଦେଶର ଲୋକମାନଙ୍କ ଆଗରେ ଟେକି ଧରିବେ । ତାଙ୍କର ଦୁର୍ଗନ୍ଧ ନିଃଶ୍ୱାସରେ ଆମର ଦେହ ଉପରେ ଗୋଟାଏ ଆସ୍ତରଣ ତିଆରି ହୋଇଯିବ ।

ସହଚରୀ କହେ - ଈଶ୍ୱର ତା' ନ କରନ୍ତୁ !

-ନିଶ୍ଚିତ ଜାଣିଥାଅ, କ୍ଲିଓପେଟ୍ରା କହନ୍ତି, ଯେଉଁମାନେ ଗୁଜବ ଆଉ ପରନିନ୍ଦା ପସନ୍ଦ କରନ୍ତି, ସେମାନେ ଆମକୁ ଘେରିଯିବେ । ଆମକୁ ନେଇ କେତେ ଢଗଢମାଳି ରଚିତ ହେବ । ଭାଣ୍ଡମାନେ ଆମକୁ ମଞ୍ଚ ଉପରେ ବସାଇ କେତେ ମଜା କରିବେ !

ଚାରମିୟାନ୍ ଆସିବା ପରେ ରାଣୀ ତାକୁ କହନ୍ତି, ମୋର ସବୁଠାରୁ ଦାମୀ ପୋଷାକଟା ନେଇଆସ । ଆଜି ମୁଁ ଆଣ୍ଟୋନିଙ୍କ ସହିତ ଅଭିସାରରେ ବାହାରିବି । ସମସ୍ତେ ଚାଲିଯାଅ । କିଛି ସମୟ ପରେ ଚାରମିଆନ୍‌ର ବି ଛୁଟି କରିଦେବି । ମୋର ମୁକୁଟ ଦିଅ ।

ଜଣେ ଗ୍ରାମ୍ୟଲୋକ ରାଣୀଙ୍କ ସହିତ ଦେଖା କରିବାକୁ ଆସେ । ସାଙ୍ଗରେ ଫଳମୂଳର ଗୋଟାଏ ଝୁଡ଼ି । ତାକୁ ଦେଖି କ୍ଲିଓପେଟ୍ରା ଭାବନ୍ତି, ବେଳେବେଳେ ସାଧାରଣ ଲୋକ ମଧ ଅସାଧାରଣ କାର୍ଯ୍ୟ କରିପାରନ୍ତି । ଏଇ ଲୋକଟି ସେମିତି ମୋର ମୁକ୍ତିର ସନ୍ଦେଶ ନେଇ ଆସିଛି । ମୋ ପାଇଁ ସିଦ୍ଧାନ୍ତ ମୁଁ ନେଇସାରିଛି । ମୋ ଭିତରେ ବର୍ତ୍ତମାନ ନାରୀସୁଲଭ କୌଣସି କୋମଳତା ନାହିଁ । ନଖଠାରୁ ଶିଖ ପର୍ଯ୍ୟନ୍ତ ମୁଁ ପଥରରେ ଗଢ଼ା ।

ଲୋକଟିକୁ ରାଣୀ ପଚାରନ୍ତି, 'ନୀଳନଦୀର ସେଇ ସୁନ୍ଦର ପ୍ରାଣୀଟିକୁ ଆଣିଛ ତ ? ତା' ଛଡ଼ା ଏମିତି ଯନ୍ତ୍ରଣାହୀନ ମୁକ୍ତି ମୋତେ ଆଉ କିଏ ଦେଇପାରିବ ?'

ଲୋକଟି ଜଣାଇଦିଏ ଯେ କାମ୍ୟ ପ୍ରାଣୀଟି ଏଇ ଝୁଡ଼ିରେ ଅଛି । ତା'ର ଦଂଶନରେ ମୃତ୍ୟୁ ଅବଧାରିତ ।

-ତା'ର ଦଂଶନରେ ପୂର୍ବରୁ କେହି ମରିଛନ୍ତି କିମ୍ବା ନାହିଁ, ଠିକ୍ କରି ମୋତେ କହ- ରାଣୀ ନିଶ୍ଚିତ ହେବାକୁ ଚାହାନ୍ତି ।

-ଅନେକ, ନାରୀପୁରୁଷ ଉଭୟ । ଗତକାଲି ଜଣେ ମହିଳାଙ୍କର ମୃତ୍ୟୁ ହୋଇଛି ।

-ତା'ହେଲେ ସେଇଟିକୁ ମୋତେ ଦେଇ ତମେ ବିଦାୟ ନିଅ ।

-ପରିଣତି ବିଚାର କରନ୍ତୁ । ଲୋକଟା ନିଜର ଦାୟିତ୍ୱ ଏଡ଼ାଇବାକୁ ଚାହେଁ ।

-ତମକୁ ସେଥିପାଇଁ ଚିନ୍ତା କରିବାକୁ ପଡ଼ିବ ନାହିଁ । ରାଣୀ କହନ୍ତି । ଲୋକଟି ଚାଲିଯାଏ । ରାଣୀ ଦାସୀ ହାତରୁ ପୋଷାକ ଓ ମୁକୁଟ ଗ୍ରହଣ କରନ୍ତି । କହନ୍ତି - ଆଉ କୌଣସି ଦିନ ମୁଁ ମିଶରର ଅଙ୍ଗୁରରସ ପାନ କରିପାରିବି ନାହିଁ । ଆଣ୍ଟୋନି ମୋତେ ଡାକୁଛନ୍ତି । ମୁଁ ଦେଖିପାରୁଛି, ସେ ମୋର ଭଲ କାମକୁ ପ୍ରଶଂସା କରୁଛନ୍ତି । ସିଜାରଙ୍କ ଭାଗ୍ୟକୁ ଉପହାସ କରୁଛନ୍ତି । ଆଣ୍ଟୋନି, ମୁଁ ଆସୁଛି । ମୋ ଭିତରର ସାହସକୁ ଏବେ ଏକତ୍ରିତ କରିବାକୁ ପଡ଼ିବ । ମୁଁ ଅଗ୍ନି, ମୁଁ ବତାସ, ମୁଁ ପ୍ରଳୟର ଝଞ୍ଜା । ଚାରମିୟାନ୍, ଆଇରାସ୍,- ଆସ, ଶେଷ ଥର ପାଇଁ ମୁଁ ତମମାନଙ୍କୁ ଚୁମ୍ବନ କରେ । ଚୁମ୍ବନ ପରେ ପରେ ଆଇରାସ୍ ପଡ଼ିଯାଏ । ତା'ର ମୃତ୍ୟୁ ହୁଏ । ରାଣୀ ପ୍ରଶ୍ନ କରନ୍ତି, ମୋର ଏଇ ଓଷ୍ଠାଧର କ'ଣ ବିଷଧର ସର୍ପ ତୁଲ୍ୟ ବିଷାକ୍ତ ? ନ ହେଲେ ସେ ପଡ଼ିଗଲା କାହିଁକି ?

କାନ୍ଦୁ କାନ୍ଦୁ ଚାରମିୟାନ୍ କହେ.. ହେ ଦେବତାମାନେ, ତମେମାନେ ମଧ୍ୟ ଏଇ ଘଟଣା ପାଇଁ ଅଶ୍ରୁବର୍ଷଣ କର ।

ଆଚ୍ଛନ୍ନ ଅବସ୍ଥାରେ ଥାଇ ରାଣୀ କହନ୍ତି- ଆଇରାସ୍ ଯଦି ପ୍ରଥମେ ଆଣ୍ଟୋନିଙ୍କର ଦେଖାପାଏ ତା'ହେଲେ ସେ ତାକୁ ଚୁମ୍ବନ କରିବେ । ବିଷଧର ସାପଟିକୁ ବୁକୁ ଉପରେ ଥୋଇ ରାଣୀ କହନ୍ତି - ଆସ ମୃତ୍ୟୁର ଦୂତ, ତମର ତୀକ୍ଷ୍ଣ ଦାନ୍ତ ଦେଇ ତମେ ଜୀବନର ଜଟିଳ ବନ୍ଧନକୁ ଛିନ୍ନ କର । ରାଗିଉଠ, ଦଂଶନ କର । ତମେ ଯଦି କଥା କହିପାରୁଥାଆନ୍ତ, ତେବେ ସିଜର୍‌କୁ ନିର୍ବୋଧ ବୋଲି କହନ୍ତି ।

ଶୋକାକୁଳ ଚାରମିୟାନ୍ କହେ - ପ୍ରାଚ୍ୟର ଉଜ୍ଜ୍ୱଳ ନକ୍ଷତ୍ରଟି ଆଜି ଅସ୍ତ ଯାଉଛି ।

କ୍ଲିଓପେଟ୍ରା ସେତେବେଳେ ଅନନ୍ତପଥର ଯାତ୍ରୀ । ଆଚ୍ଛନ୍ନ ଅବସ୍ଥାରେ କହୁଥାଆନ୍ତି ଶାନ୍ତ ହୁଅ ! ତମେ କ'ଣ ମୋ ବୁକୁ ଉପରେ ମୋର ଏଇ ଶିଶୁସନ୍ତାନଟିକୁ ଦେଖିପାରୁ ନାହଁ ? ସେ ଯେ ମୋର ସ୍ତନ୍ୟପାନ କରି ମୋତେ ଗଭୀର ନିଦ୍ରାରେ ଶୁଆଇଦେଉଛି ! କି କୋମଳ, ମଧୁର ଆଉ ଶାନ୍ତ ତା'ର ସ୍ପର୍ଶ !

କ୍ଲିଓପେଟ୍ରା ବିଦାୟ ନିଅନ୍ତି । ଚାରମିୟାନ୍ ଶୋକରେ ଉଦ୍‌ବେଳ ହୋଇଉଠେ । ଜଣେ ପ୍ରହରୀ ଧାଇଁଆସି ପ୍ରଶ୍ନ କରେ - ରାଣୀ କାହାନ୍ତି ? ଚାରମିୟାନ୍ ନିଜ ପାଟି ଉପରେ ହାତ ରଖି କହେ - ଚୁପ୍, ଧୀରେ କଥା କହ । ତାଙ୍କୁ ନିଦରୁ ଉଠାଅ ନା...

-ମୋତେ ସିଜର୍ ପଠାଇଛନ୍ତି ।

-ବଡ଼ ବିଳମ୍ବ କରି ଦେଇଛ । ଚାରମିୟାନ୍ ଏଥର ନିଜେ ସର୍ପର ଦଂଶନ ବରିନିଏ । ପ୍ରହରୀ ଚିତ୍କାର କରିଉଠେ ।

ଚାରମିୟାନ୍‌ର ମୃତ୍ୟୁ ହୁଏ । ସିଜର୍ ଆସି ସବୁ ଦେଖନ୍ତି । ବିଷକ୍ରିୟାରେ ରାଣୀଙ୍କର ମୃତ୍ୟୁ ହୋଇଛି ବୋଲି ଜାଣନ୍ତି । କହନ୍ତି - ବିଷକ୍ରିୟାର ଲକ୍ଷଣ କାହିଁ ? ମନେହେଉଛି, ରାଣୀ ଯେପରି ଘୋର ନିଦ୍ରାରେ ଶୋଇପଡ଼ିଛନ୍ତି ! ନିଦ ଭାଙ୍ଗିଲେ ସେ ଆଉ ଆଣ୍ଟୋନି ଅଭିସାରରେ ବାହାରିବେ !

ଡୋଲାବେଲା ଦେଖନ୍ତି - ରାଣୀଙ୍କର ସ୍ତନ ଆଉ ହାତରେ ଦଂଶନର ଚିହ୍ନ । ସବୁକିଛି ସ୍ପଷ୍ଟ ହୋଇଯାଏ । ସିଜର୍ ଜଣାନ୍ତି, ରାଣୀଙ୍କର ଚିକିତ୍ସକଙ୍କଠାରୁ ସେ ଜାଣିପାରିଛନ୍ତି ଯେ, କିଛିଦିନ ପୂର୍ବେ ରାଣୀ ତାଙ୍କୁ ସହଜ ମୃତ୍ୟୁର ଉପାୟ ସମ୍ପର୍କରେ ପଚାରୁଥିଲେ ।

ଆଣ୍ଟୋନିଙ୍କ ପାଖରେ କ୍ଲିଓପେଟ୍ରାଙ୍କୁ ସମାଧିସ୍ଥ କରିବା ନିମନ୍ତେ ସିଜର୍ ଆଦେଶ ଦିଅନ୍ତି । ପୃଥିବୀର ଆଉ କୌଣସି ସମାଧି ଏଭଳି ବିଖ୍ୟାତ ପ୍ରେମୀ-ଯୁଗଳଙ୍କୁ ଧାରଣ କରିବ ନାହିଁ ।

ସେ ଆହୁରି ନିର୍ଦ୍ଦେଶ ଦିଅନ୍ତି, ରାଣୀଙ୍କର ଶେଷକୃତ୍ୟ ସମାପନ ହେଉଥିବା ସମୟରେ ତାଙ୍କର ସୈନ୍ୟବାହିନୀ ଉପସ୍ଥିତ ରହି ତାଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ କରିବେ ।

ତା'ପରେ ଆରମ୍ଭ ହେବ ତାଙ୍କର ରୋମ୍ ପ୍ରତ୍ୟାବର୍ତ୍ତନର ଅଧ୍ୟାୟ ।

# କିଙ୍ଗ୍ ଲିୟର

॥ ୧ ॥

ଇଂଲଣ୍ଡର ରାଜା ଲିୟର୍ ! ବୟସ ହୋଇଛି । ଶାସନ ଦାୟିତ୍ୱରୁ ନିଜକୁ ମୁକ୍ତ କରିବାକୁ ଚାହାନ୍ତି । ତାଙ୍କର ସନ୍ତାନ କହିଲେ ତିନୋଟି କନ୍ୟା । ଗନେରିଲ୍, ରିଗାନ୍ ଆଉ କର୍ଡ଼େଲିଆ । ପ୍ରଥମ ଦୁଇ କନ୍ୟା ବିବାହିତା । ଜାମାତା ଯଥାକ୍ରମେ ଆଲବେନି ଆଉ କର୍ଣ୍ଣୱାଲ୍‌ର ଡ୍ୟୁକ୍ । ରାଜା ଆଜି ସେମାନଙ୍କୁ ଡକାଇଛନ୍ତି ।

ସନ୍ତାନମାନଙ୍କ ଆଗରେ ଇଂଲଣ୍ଡର ମାନଚିତ୍ରଟି ଖୋଲିଦେଇ ସେ କହନ୍ତି - ନିଜର ଜୀବଦ୍ଦଶାରେ ମୁଁ ଏଇ ରାଜ୍ୟକୁ ତିନି ସନ୍ତାନଙ୍କ ଭିତରେ ସମାନ ଭାବରେ ବାଣ୍ଟିଦେଇ ଯିବାକୁ ଚାହେଁ । ଭବିଷ୍ୟତ୍‌ରେ ଏଥିପାଇଁ କୌଣସି ମନାନ୍ତର ଘଟିବାର ସମ୍ଭାବନା ରହିବ ନାହିଁ । ଏ ବୟସରେ ମୋର ଏକମାତ୍ର ଦରକାର ଶାନ୍ତି । କନିଷ୍ଠା କର୍ଡ଼େଲିଆ ଏ ପର୍ଯ୍ୟନ୍ତ ମଧ ବିବାହ କରି ନାହିଁ । ତେବେ ତା'ର ପାଣିପ୍ରାର୍ଥୀ ଦୁଇଜଣ ଅବଶ୍ୟ ଅଛନ୍ତି । ସେମାନେ ହେଉଛନ୍ତି ଫ୍ରାନ୍ସ ଓ ବର୍ଗଣ୍ଡିର ରାଜା ।

ତେବେ ଦାୟିତ୍ୱ ହସ୍ତାନ୍ତର କରିବା ପୂର୍ବରୁ ଲିୟର୍ ସନ୍ତାନମାନଙ୍କୁ ଗୋଟାଏ ପ୍ରଶ୍ନ କରନ୍ତି । ସନ୍ତାନମାନେ ତାଙ୍କୁ କିଏ କେତେ ଭଲପାଏ, ଏହାର ଉତ୍ତର ଜାଣିବାକୁ ଚାହାନ୍ତି । ପ୍ରଶ୍ନ ପ୍ରଥମେ ଜ୍ୟେଷ୍ଠା ଗନେରିଲ୍‌କୁ କରାଯାଏ ।

ବିଳମ୍ବ ନ କରି ଜ୍ୟେଷ୍ଠା ଉତ୍ତର ଦିଏ -ବାବା, ମୋର ଭଲପାଇବା ଭାଷାରେ ପ୍ରକାଶ କରିପାରିବି ନାହିଁ । ଜାଗତିକ କୌଣସି ବସ୍ତୁ ସହିତ ତା'ର ତୁଳନା ମଧ ଅସମ୍ଭବ । ଏକ ସୁଖୀ ସଂତୃପ୍ତ ଜୀବନ ଯେମିତି କାମ୍ୟ - ଆପଣ ମଧ ତା'ଠାରୁ କିଛି କମ୍ ନୁହନ୍ତି । ମୋର ଭଲପାଇବା ସମସ୍ତ ସୀମା-ପରିସୀମାର ଊର୍ଦ୍ଧ୍ୱରେ ।

ଲିୟର ଖୁସି ହୁଅନ୍ତି । ଗନେରିଲ୍ ତା'ର ପ୍ରାପ୍ୟ ଅଂଶ ପାଇଯାଏ । ଏହା ପରେ ମଧମାର ପାଳି ଆସେ । ତାକୁ ଲିୟର ସେଇ ପ୍ରଶ୍ନ ପଚାରନ୍ତି । ତତ୍‌କ୍ଷଣାତ୍ ଉତ୍ତର ମିଳେ । ଅପାର ମତଠାରୁ ମୋ ମତ ଭିନ୍ନ ନୁହେଁ । ସେ ତ ମୋ ମନର କଥା ହିଁ ପ୍ରକାଶ କରିଦେଇଛି । ମୁଁ କେବଳ ଏତିକି ଯୋଗ କରିପାରେ ଯେ, ଆପଣଙ୍କ ପ୍ରତି ମୋର ଯେଉଁ ଭଲପାଇବା ତାକୁ ଛାଡ଼ି ଅନ୍ୟ ସବୁକିଛି ସହିତ ଶତ୍ରୁତାର ସମ୍ପର୍କ । ଆପଣଙ୍କ ଭଲପାଇବା ହିଁ ହେଉଛି ମୋ ପାଖରେ ସବୁଠାରୁ ମୂଲ୍ୟବାନ୍ । କନ୍ୟାର ଉତ୍ତର ରାଜାଙ୍କୁ ସନ୍ତୁଷ୍ଟ କରେ । ସେ ଉଦାର ଭାବରେ କହନ୍ତି - ତମର ଓ ତମର ବଂଶଧରମାନଙ୍କ ପାଇଁ ତମ ଅପା ଭଳି ମୋ ରାଜ୍ୟର ଅନ୍ୟ ଏକ ସମୃଦ୍ଧ ଅଂଶ ଦାନ କଲି । ଏଥର କନିଷ୍ଠା କ'ଣ କହୁଛନ୍ତି, ଶୁଣାଯାଉ ।

ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ କର୍ଡ଼େଲିଆର ନିରୁତ୍ତାପ କଣ୍ଠରୁ ଜବାବ୍ ଆସେ ମୋର କିଛି କହିବାର ନାହିଁ । ଲିୟର ନିଜେ କମ୍ ବିସ୍ମିତ ହୁଅନ୍ତି ନାହିଁ । ପଚାରନ୍ତି କିଛି ବି କହିବାର ନାହିଁ ? କର୍ଡ଼େଲିଆ ଏକାକ୍ଷରୀ ଉତ୍ତର ଦିଏ.. ନା'...

ଲିୟର କହନ୍ତି -ଭାବି ଦେଖ । କହିବାର କିଛି ନ ଥିଲେ ତମ ଭାଗ୍ୟରେ ମଧ କିଛି ନ ଥାଇପାରେ ।

କର୍ଡ଼େଲିଆ ଉତ୍ତର ଦିଏ- ଜନ୍ମଦାତା ପିତାଙ୍କୁ ଭଲପାଏ ନାହିଁ, ଏଭଳି କନ୍ୟା କ'ଣ ଥାଇପାରେ ? ମୁଁ ବି ମୋର ପିତାଙ୍କୁ ଭଲପାଏ । ତେବେ ସୀମା ମଧରେ ଥାଇ । ଆପଣ ମୋତେ ପିଲାରୁ ବଡ଼ କରିଛନ୍ତି, ଭଲ ପାଇଛନ୍ତି, ମୁଁ ବି ମୋ କର୍ତ୍ତବ୍ୟ ଭୁଲି ନାହିଁ । ଆପଣଙ୍କୁ ସମ୍ମାନ ଦେଇଛି । ଅପାମାନଙ୍କର ଭଲପାଇବା ଯଦି ସମ୍ପୂର୍ଣ୍ଣ ରୂପେ ଆପଣଙ୍କର, ତେବେ ସେମାନଙ୍କର ବିଚରା ସ୍ୱାମୀମାନଙ୍କ ପାଇଁ କ'ଣ ରହିଲା ? ମୋର ବିବାହ ହେଲେ, ମୋ ଭଲପାଇବାର ଅର୍ଦ୍ଧେକ ଦାବି ତ ମୋ ସ୍ୱାମୀଙ୍କର । ସେତେବେଳେ ଆପଣଙ୍କୁ ପୂରାଟା ଦେବି କେମିତି ?

କ୍ରୁଦ୍ଧ ରାଜା ତୃତୀୟା କନ୍ୟାକୁ ତା'ର ପ୍ରାପ୍ୟରୁ ବଞ୍ଚିତ କଲେ ! କେଣ୍ଟର ଆର୍ଲ ବାଧା ଦେବାକୁ ଯାଇ ଅପମାନିତ ହେଲେ । ରାଜା କର୍ଣ୍ଣୱାଲ୍ ଓ ଆଲ୍‌ବେନିର ଡ୍ୟୁକ୍ ଦୁହିଁଙ୍କୁ କହିଲେ - କନିଷ୍ଠାର ଅଂଶକୁ ମୁଁ ତମଦୁହିଁଙ୍କ ମଧରେ ବାଣ୍ଟିଦେବି । ଏଣିକି ପାଳିକରି ଦୁଇ କନ୍ୟାଙ୍କ ପାଖରେ ଗୋଟିଏ ମାସ ଲେଖା ରହିବି । ମୋ ସାଙ୍ଗରେ ରହିବେ ଶହେ ନାଇଟ୍ । ସେମାନଙ୍କ ଖର୍ଚ୍ଚ ବହନ କରିବେ ସେଇମାନେ, ଯାହା ପାଖରେ ମୁଁ ଥିବି । ମୋର ରାଜା ଉପାଧି ମଧ ବଜାୟ ରହିବ । କେଣ୍ଟ ପୁଣି କିଛି କହିବାର ଉପକ୍ରମ କରିବାରୁ ରାଜା ତାଙ୍କୁ ଉପେକ୍ଷା କରନ୍ତି ।

କେଣ୍ଟ ଭାବନ୍ତି, ତୋଷାମୋଦ ପାଇଁ ଯେଉଁଠି କ୍ଷମତାର ଅପବ୍ୟବହାର କରାଯାଏ, ସେଠାରେ କାହାରି କିଛି କରିବାର ନାହିଁ । ତଥାପି ସେ ରାଜାଙ୍କୁ ଲକ୍ଷ୍ୟ କରି କହନ୍ତି - ମହାରାଜ, କନିଷ୍ଠା ଆପଣଙ୍କୁ କିଛି କମ୍ ଭଲପାଆନ୍ତି ନାହିଁ । ତାଙ୍କର ନମ୍ର ଓ ବିନୀତ ସ୍ୱରରୁ ତାଙ୍କ ବକ୍ତବ୍ୟର ଗଭୀରତା ହିଁ ପ୍ରକାଶ ପାଉଛି ।

ଫଳ ହୁଏ ବିପରୀତ । ଲିୟର ଚିତ୍କାର କରି କହନ୍ତି କେଣ୍ଟ, ବଞ୍ଚିବାକୁ ଚାହଁ ତ, ଚୁପ୍‌କର । କେଣ୍ଟ ରାଜ୍ୟରୁ ବିତାଡ଼ିତ ହୁଅନ୍ତି । ବିଦାୟ ନେବାପୂର୍ବରୁ ସେ କର୍ଡ଼େଲିଆକୁ କହନ୍ତି -ଯେ ଠିକ୍ କଥା ଠିକ୍ ଭାବରେ କହେ, ଈଶ୍ୱର ତା'ର ସହାୟ ହୁଅନ୍ତି । ତା'ପରେ ଗନେରିଲ୍ ଓ ରିଗାନ୍‌ଙ୍କୁ କହନ୍ତି, ତମେମାନେ ଯେମିତି ତମ କଥାର ମର୍ଯ୍ୟାଦା ରଖିପାର ।

ଗ୍ଲୋଷ୍ଟରର ଅଧିପତିଙ୍କ ସହିତ ଆସନ୍ତି ଫ୍ରାନ୍ସ ଓ ବର୍ଗଣ୍ଡିର ରାଜା । ଲିୟର ପ୍ରଥମେ - ବର୍ଗଣ୍ଡିଙ୍କୁ ପ୍ରଶ୍ନ କରନ୍ତି - ବର୍ତ୍ତମାନ କର୍ଡ଼େଲିଆ ମୋ ପାଖରୁ କିଛି ପାଇବ ନାହିଁ । ଯେ ତାକୁ ବିବାହ କରିବ, ସେ କେବଳ କନ୍ୟାଟିକୁ ହିଁ ପାଇବ । ପୁଣି ସେ ଆମର ଘୃଣାର ପାତ୍ରୀ ହୋଇପଡ଼ିଛି । ଏବେବି କ'ଣ ତମେ ତାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ?

ବର୍ଗଣ୍ଡି କହନ୍ତି ଯେ, ପରିବର୍ତ୍ତିତ ପରିସ୍ଥିତି ପାଇଁ ତାଙ୍କୁ ତାଙ୍କର ସିଦ୍ଧାନ୍ତ ବଦଳାଇବାକୁ ପଡୁଛି । ରାଜା ଏଥର ଫ୍ରାନ୍ସର ରାଜାଙ୍କୁ କହନ୍ତି ସବୁତ ଶୁଣିଲ । ମୁଁ ନିଜେ ଯାହାକୁ ଘୃଣା କରେ, ତାକୁ ପସନ୍ଦ କରିବାକୁ ତମକୁ କହିପାରିବି ନାହିଁ । ସେଭଳି କ୍ଷେତ୍ରରେ ତମେ ଅନ୍ୟ ଯୋଗ୍ୟପାତ୍ରୀର ସନ୍ଧାନ କରିପାର । ତେବେ ତାଙ୍କୁ ଚକିତ କରି ଫ୍ରାନ୍ସର ରାଜା ଅନ୍ୟ କଥା କହନ୍ତି । ସେ କହନ୍ତି - ସାମାନ୍ୟ କାରଣରୁ ଆପଣଙ୍କର ଏତେଦିନର ସ୍ନେହର ପାତ୍ରୀ, ବାର୍ଦ୍ଧକ୍ୟର ଭରସା - ଘୃଣାର ପାତ୍ରୀ ହୋଇଗଲା ଦେଖି ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ।

ଫ୍ରାନ୍ସଙ୍କ ସହାନୁଭୂତି କର୍ଡ଼େଲିଆର ମନକୁ ଚହଲାଇଦିଏ । ସେ କହେ ମୁଁ ବାକ୍‌ପଟୁ ନୁହେଁ । ମୁହଁରେ ଗୋଟାଏ, ପେଟରେ ଅନ୍ୟ - ଏ ମୋ ଦ୍ୱାରା ହୋଇପାରିବ ନାହିଁ, ତେବେ ମୁଁ ଅନ୍ୟାୟ କରି ନାହିଁ କିମ୍ବା କାହାକୁ ହତ୍ୟା ମଧ୍ୟ କରି ନାହିଁ । କାହାରିକୁ ଅସମ୍ମାନ କରି ନାହିଁ କିମ୍ବା କୌଣସି ଅପବିତ୍ର କାର୍ଯ୍ୟ ମଧ୍ୟ କରି ନାହିଁ - ତଥାପି ମୋର ଦୁର୍ଭାଗ୍ୟ ମୁଁ ଆପଣଙ୍କର ସ୍ନେହରୁ ବଞ୍ଚିତ ହୋଇଛି । ଭଲ ଲାଗୁଛି, ଜଣକର ସମବେଦନା ପାଇ । ବୋଧ ହେଉଛି ସବୁକିଛି ହରାଇ ନାହିଁ ।

ଫ୍ରାନ୍ସ ଏବେ ନିଜଆଡୁ ବର୍ଗଣ୍ଡିଙ୍କୁ ପ୍ରଶ୍ନ କରନ୍ତି - କର୍ଡ଼େଲିଆଙ୍କୁ ଏକ ସମ୍ପଦ ମନେ କରି ଆପଣ ତାଙ୍କୁ ଗ୍ରହଣ କରିବେ କି ? କିଛି ଅସ୍ୱସ୍ତିର ସହିତ ବର୍ଗଣ୍ଡି ଲିୟର୍‌ଙ୍କୁ କହନ୍ତି ଯଦି ଆପଣ କର୍ଡ଼େଲିଆଙ୍କର ପ୍ରାପ୍ୟ ଅଂଶ ତାକୁ ଦେବାକୁ ରାଜି ଥାଆନ୍ତି, ତେବେ ମୁଁ ତାଙ୍କୁ ଗ୍ରହଣ କରିବାକୁ ପ୍ରସ୍ତୁତ । ଲିୟର ସ୍ପଷ୍ଟ ଭାଷାରେ ଜଣାଇଦିଅନ୍ତି, ତାଙ୍କ ନିଷ୍ପତ୍ତିର କୌଣସି ପରିବର୍ତ୍ତନ ସମ୍ଭବ ନୁହେଁ । ବର୍ଗଣ୍ଡି କର୍ଡ଼େଲିଆ ନିକଟରେ ଦୁଃଖ ପ୍ରକାଶ କରି କହନ୍ତି, ତମେ ତମର ପିତାଙ୍କର ସ୍ନେହ ହରାଇଛ, ତେଣୁ ମୋତେ ମଧ୍ୟ ସ୍ୱାମୀରୂପରେ ପାଇଲ ନାହିଁ । କର୍ଡ଼େଲିଆ ଦୃଢ଼ ସ୍ୱରରେ ଜଣାଇଦିଏ, ଯାହାର ସ୍ନେହ ପ୍ରକୃତରେ ଅର୍ଥଭିତ୍ତିକ ସେଭଳି ଲୋକର ପତ୍ନୀ ହେବା ନିମନ୍ତେ ତା'ର ବିନ୍ଦୁମାତ୍ର ଆଗ୍ରହ ନାହିଁ ।

ଫ୍ରାନ୍ସର ରାଜା ଏଥର କର୍ଡ଼େଲିଆ ପାଖକୁ ଆଗେଇ ଆସନ୍ତି । 'କହନ୍ତି, ପାର୍ଥିବ ସମ୍ପଦରୁ ବଞ୍ଚିତା ହୋଇ ମଧ୍ୟ ତମେ ତମର ମନର ସମ୍ପଦରେ ଧନୀ । ଘୃଣିତା ହୋଇ ମଧ୍ୟ ତମେ ତେଣୁ ସ୍ନେହର ପାତ୍ରୀ । ମୁଁ ତମକୁ ଚାହେ - ତମର ଚାରିତ୍ରିକ ସୌନ୍ଦର୍ଯ୍ୟକୁ ଆପଣାର କରିବାକୁ ଚାହେ । ତମେ ମୋ ଦେଶର ରାଣୀ ହେବା ପାଇଁ ଉପଯୁକ୍ତ । ବର୍ଗଣ୍ଡିର ସମସ୍ତ ସମ୍ପଦର ବିନିମୟରେ ସୁଦ୍ଧା ମୁଁ ତମକୁ ହରାଇବାକୁ ପ୍ରସ୍ତୁତ ନୁହେଁ । କର୍ଡ଼େଲିଆ, ତମେ ତମର ଆତ୍ମୀୟମାନଙ୍କଠାରୁ ବିଦାୟ ନିଅ ।

କର୍ଡ଼େଲିଆ ଦୁଇ ଭଉଣୀଙ୍କୁ କହେ - ଯଦିଓ ତମମାନଙ୍କୁ ମୁଁ ଭଲ ଭାବରେ ଜାଣେ, ତଥାପି ଅନୁରୋଧ, ବାବାଙ୍କୁ ଦେଖ । ତାଙ୍କର ଯତ୍ନ ନିଅ । ଉତ୍ତରରେ ଉଭୟେ ତାକୁ ବିଦ୍ରୂପ କରି କହନ୍ତି - ସେ କଥା ତମଠାରୁ ଶିଖିବାକୁ ହେବ ନାହିଁ । ତମେ ବରଂ ତମର ସ୍ୱାମୀ

ଦେବତାଙ୍କର ଯତ୍ନ ନିଅ । କର୍ଡେଲିଆ ତା'ର ସ୍ୱଭାବସୁଲଭ ନମ୍ର କଣ୍ଠରେ କହେ - ସମୟ ହିଁ ଦିନେ ସବୁ କଥା ପ୍ରକାଶ କରିବ ।

କର୍ଡେଲିଆ ସ୍ୱାମୀ ସହିତ ବିଦାୟ ନେଇ ଚାଲିଯାଏ । ଗନେରିଲ ଓ ରିଗାନ ନିଜ ଭିତରେ ଆଲୋଚନା କରନ୍ତି - ସେମାନଙ୍କର ସମସ୍ୟା ପିତାଙ୍କୁ ନେଇ । ପାଖରେ ତ ରହିବେ । ବୁଢ଼ା ବୟସର ନାନା ଖିଆଲ - ନାନା ସମସ୍ୟା - ସେ ସବୁ କିଏ ସହିବ ? ବୟସ ବଢ଼ିବା ସଙ୍ଗେ ସଙ୍ଗେ ମିଜାଜଟି ମଧ୍ୟ ଦିନକୁ ଦିନ ବିଚିତ୍ର ହେବାରେ ଲାଗିଛି - କେଣ୍ଟଙ୍କ ଭଳି ଦରଦୀ ବନ୍ଧୁଙ୍କୁ ମଧ୍ୟ ବିତାଡ଼ିତ କଲେ । ଗନେରିଲର ପରାମର୍ଶ- ପିତାଙ୍କର ଏଇ ବଦମିଜାଜ ବିରୋଧରେ ସେମାନଙ୍କୁ ଏକାସଙ୍ଗରେ ସଂଗ୍ରାମ କରିବାକୁ ହେବ । ପ୍ରଶ୍ରୟ ଦେଲେ ଚଳିବ ନାହିଁ । ରିଗାନ ଏଥିରେ ଏକମତ ହୁଏ ।

ଗ୍ଲାଉସେଷ୍ଟରର ପ୍ରାସାଦରେ ସେତେବେଳେ ଅନ୍ୟ ଯୋଜନା ଚାଲିଛି । ଗ୍ଲାଉସେଷ୍ଟରର ସାମନ୍ତ ରାଜାଙ୍କର ଦୁଇପୁତ୍ର । ଏଡଗାର ଆଉ ଏଡ଼୍‌ମଣ୍ଡ । ଏଡ଼ମଣ୍ଡ ଏଡ଼ଗାର ପ୍ରତି ଈର୍ଷାନ୍ୱିତ । ସେ ରାଜାଙ୍କର ବିବାହିତା ସ୍ତ୍ରୀର ପୁତ୍ର ନୁହେଁ । ତା'ର ଧାରଣା ପରିବାରର ଯାହା କିଛି ସ୍ନେହଶ୍ରଦ୍ଧା ଆଉ ମର୍ଯ୍ୟାଦା ସେ ସବୁ ଏଡଗାର ହିଁ ପାଉଛି । ଗ୍ଲାଉସେଷ୍ଟରଙ୍କ ଆଖିରେ ସେ ଯେମିତି ଛୋଟ ହୋଇଯାଏ, ଏହାହିଁ ହେଉଛି ତା'ର ଏକମାତ୍ର ଚିନ୍ତା । ବୃଦ୍ଧ ଗ୍ଲାଉସେଷ୍ଟର ଏଡ଼ମଣ୍ଡ ଉପରେ ନାନା କାରଣରୁ ନିର୍ଭରଶୀଳ । ଅନ୍ତତଃ ଏଡମଣ୍ଡ ସେହିଭଳି ପରିସ୍ଥିତି ସୃଷ୍ଟି କରିଛି ।

ଲିୟରଙ୍କ ପାଖରୁ ଫେରି ଗ୍ଲାଉସେଷ୍ଟର ସେଠାରେ ଯାହାସବୁ ଘଟିଛି, ତାହା ଏଡମଣ୍ଡକୁ କହନ୍ତି । କେଣ୍ଟଙ୍କର ନିର୍ବାସନ କଥା ମଧ୍ୟ ଜଣାନ୍ତି । ଏଡମଣ୍ଡ ପାଖରେ କୌଣସି ଖବର ଅଛି କିମ୍ବା ନାହିଁ, ତାହା ଜାଣିବାକୁ ଚାହାନ୍ତି । ଅନେକ ଉପକ୍ରମ ପରେ ଏଡମଣ୍ଡ ତାଙ୍କୁ ଗୋଟିଏ ଚିଠି ଦେଖାଏ । ଚିଠିଟି ଏଡ଼ଗାର ତାକୁ ଲେଖିଛି । ବିଷୟବସ୍ତୁ ହେଲା, ପରମ୍ପରା ଅନୁସାରେ କ୍ଷମତା ହାତକୁ ଆସିଲା ବେଳକୁ ସେମାନେ ବୁଢ଼ା ହୋଇଯାଇଥିବେ । ଏଣେ କର୍ମହୀନତାର ଆଳସ୍ୟ ତାକୁ ଧୀରେ ଧୀରେ ଗ୍ରାସ କରୁଛି, ପିତାଙ୍କ ସମ୍ପର୍କରେ ଯଦି ଆମେ ଗୋଟାଏ ନିଷ୍ପତ୍ତି ନେଇପାରନ୍ତେ ତେବେ ତୁମକୁ ଅର୍ଦ୍ଧେକ ସମ୍ପଦ ମିଳନ୍ତା । ତମେ ମୋର ସ୍ନେହଭାଜନ ରୂପେ ଭଲ ଭାବରେ ଜୀବନ କଟାଇପାରନ୍ତ ।

ଚିଠିଟା ଏଡମଣ୍ଡର ରଚ଼ନା । ତେବେ ସରଳ ହୃଦୟ ଗ୍ଲାଉସେଷ୍ଟର ତାହା ବୁଝିପାରନ୍ତି ନାହିଁ । ସେ ଧରିନିଅନ୍ତି ଯେ ଏଡ଼ଗାର ତାଙ୍କୁ କ୍ଷମତାଚ୍ୟୁତ କରି ନିଜେ ରାଜଗାଦି ଅଧିକାର କରିବା ପାଇଁ ଏଇ ଷଡ଼ଯନ୍ତ୍ର କରିଛି ।

ଏଡମଣ୍ଡ ହଠାତ୍ କିଛି ଗୋଟାଏ କରି ପକାଇବାର ସପକ୍ଷରେ ନୁହେଁ, ଅତି ସତର୍କ ହୋଇ ସେ ଆଗେଇବାକୁ ଚାହେଁ । ଗ୍ଲାଉସେଷ୍ଟରଙ୍କୁ ଜଣାଏ - ଚିଠିରେ ଯାହା ଲେଖାଯାଇଛି, ତାହା ନିଶ୍ଚୟ ଏଡ଼ଗାରର ମନର କଥା ନୁହେଁ । ହୋଇପାରେ ଏହା ଏକ ସାମୟିକ ଖିଆଲ ।

ହୋଇପାରେ ମୋର ମନ ଜାଣିବା ପାଇଁ ତା'ର ଏଇ ପଦକ୍ଷେପ । ତେବେ ହଁ, ଗୋଟାଏ କଥା ସେ ତା'ଠାରୁ ପ୍ରାୟ ଶୁଣିବାକୁ ପାଏ । ସେ କହେ - ପିତାଙ୍କର ବୟସ ହୋଇଗଲେ ତଥା ସନ୍ତାନମାନେ ଉପଯୁକ୍ତ ହୋଇଥିଲେ, ତାଙ୍କର ଉଚିତ ନିଜକୁ ଟଙ୍କା ପଇସା - ହିସାବ କିତାବଠାରୁ ଯଥାସମ୍ଭବ ଦୂରେଇ ନେଇ ସେ ସବୁ-କୁ ସନ୍ତାନମାନଙ୍କୁ ହସ୍ତାନ୍ତର କରିଦେବା ।

ଏଥିରେ ଫଳ ଯାହା ହେବାର ହୁଏ । ରାଜା ଭୟଙ୍କର ରାଗି ଏଡ଼ଗାରକୁ ଭର୍ତ୍ସନା କରନ୍ତି । ଏଡ଼ମଣ୍ଡ ପରାମର୍ଶ ଦିଏ, ବଳିଷ୍ଠ ପ୍ରମାଣ ଛଡ଼ା ଏଡ଼ଗାର ଉପରେ ଉପରେ ବିରୂପ ହେବାର କୌଣସି କାରଣ ନାହିଁ । କିଛି ଟିକିଏ ଭୁଲ୍ ହୋଇଗଲେ, ଗ୍ଲାଉସେଷ୍ଟରଙ୍କର ସମ୍ମାନ ହାନି ଘଟିବ । ତା' ଅପେକ୍ଷା ସେ ଏଭଳି ବ୍ୟବସ୍ଥା କରିବ, ଯାହା ଦ୍ୱାରା ରାଜା ନିଜେ ଅନ୍ତରାଳରୁ ଏଡ଼୍ଗାରର କଥାବାର୍ତ୍ତା ଶୁଣିପାରିବେ । ହୃଦ୍‌ବୋଧ ହେବା ପରେ ଯଥୋଚିତ ବ୍ୟବସ୍ଥା ଗ୍ରହଣ କରାଯାଇପାରିବ । ଗ୍ଲାଉସେଷ୍ଟର ଏ ପ୍ରସ୍ତାବ ଗ୍ରହଣ କରିନିଅନ୍ତି ।

ଏହା ପରେ ଏଡ଼ମଣ୍ଡ ତା'ର ଦୁରଭିସନ୍ଧିକୁ ରୂପଦେବା ପାଇଁ ଚିନ୍ତା କରି ଏଡ୍‌ଗାର କୁ ଅପେକ୍ଷା କରେ । ଏଡ୍‌ଗାର ହସଖୁସିର ସହଜ ସ୍ୱଚ୍ଛନ୍ଦ ମଣିଷ । ଘରେ ପଶି ସେ ଦେଖେ ତା'ର ଭାଇଟି ବଡ଼ ଦୁଃଶ୍ଚିନ୍ତାଗ୍ରସ୍ତ ହୋଇ ବସିଛି । ସେ ଏହାର କାରଣ ଜାଣିବାକୁ ଚାହେଁ ।

ଏଡ଼ମଣ୍ଡ କହେ - ଏଥର ଯେଉଁ ଗ୍ରହଣ ହୋଇଗଲା ତା'ର ଫଳାଫଳ ଉପରେ ଲେଖାଟିଏ ପଢ଼ିଥିଲି । ସେଇ କଥା ଏଠି ବସି ବସି ଭାବୁଛି । ଅନ୍ୟ କିଛି କାରଣ ନାହିଁ । ଫଳାଫଳରେ ସୂଚିତ ହୋଇଛି, ପିତାପୁତ୍ରର ସମ୍ପର୍କ ତିକ୍ତ ହୋଇ ପଡ଼ିବାର ସମ୍ଭାବନା । ତା'ଛଡ଼ା ଅପମୃତ୍ୟୁ, ଦୁର୍ଭିକ୍ଷ, ମହାମାରି, ସମ୍ପର୍କଗତ ଜଟିଳତା, ବନ୍ଧୁବିଚ୍ଛେଦ, ବୈବାହିକ ସମ୍ପର୍କରେ ଅବନତି, ଏଭଳି ଅନେକ କଥା କୁହାଯାଇଛି ।

ଏଡ୍‌ଗାର ହସିପକାଏ । ପଚାରେ, ଏସବୁ ଜ୍ୟୋତିଷ ବିଦ୍ୟା ନେଇ କେବେଠାରୁ ଚର୍ଚ୍ଚା ଆରମ୍ଭ କରିଛ ?

ଏଡ୍‌ମଣ୍ଡ ଚିନ୍ତାନ୍ୱିତ ଭାବରେ ପଚାରେ, ଆଚ୍ଛା, ବାବାଙ୍କ ସାଙ୍ଗରେ ତମର ଶେଷଥର କେବେ ଦେଖା ହୋଇଛି ? ଏଡ୍‌ଗାର ଉତ୍ତର ଦିଏ - କାହିଁକି, କାଲି ରାତିରେ ?

-ତାଙ୍କ ସହିତ ତମର କଥାବାର୍ତ୍ତା ହୋଇଥିଲା ତ ?

-ପ୍ରାୟ ଦୁଇଘଣ୍ଟା ଧରି ।

-ଭଲମନରେ ବିଦାୟ ନେଇ ଆସିଥିଲ ତ ? କିମ୍ବା ତାଙ୍କ ଚେହେରା କି କଥାରେ କିଛି ବିରକ୍ତିର ଲକ୍ଷଣ ଦେଖିଥିଲ ?

-ନା' - ସେମିତି ତ କିଛି ଲକ୍ଷ୍ୟ କରି ନାହିଁ ।

ଏଡ଼ମଣ୍ଡ କହେ - ଭଲ କରି ମନେପକାଅ । ନିକଟରେ କ'ଣ କୌଣସି କାରଣରୁ ତମେ ତାଙ୍କୁ ଅସନ୍ତୁଷ୍ଟ କରିଥିଲ ? ମୋର ମନେହେଲା, ସେ ଯେମିତି ତମ ଉପରେ ଭୀଷଣ କ୍ଷୁବ୍ଧ ।

ଏଡ଼ଗାର କହେ - ତା'ହେଲେ କୌଣସି ବଦ୍‌ମାସ୍ ନିଶ୍ଚୟ ମୋ ବିରୋଧରେ ତାଙ୍କୁ କ'ଣ କହିଛି ।

ଏଡ଼ମଣ୍ଡ ସମର୍ଥନ କରି କହେ - ମୋର ମଧ୍ୟ ସେଇଆ ମନେହେଲା । ତେବେ ବର୍ତ୍ତମାନ ତାଙ୍କୁ ଏ ବିଷୟରେ କିଛି ପଚାରିବା ଦରକାର ନାହିଁ । ରାଗଟା ଟିକିଏ କମୁ । ଏବେ ତମେ ମୋ ଘରକୁ ଯାଅ । ବାବା କ'ଣ କହୁଛନ୍ତି, ଶୁଣିବା ପାଇଁ ତମକୁ ଡାକିଆଣିବି । ବାହାରକୁ ବାହାରିଲେ ସାଙ୍ଗରେ କିନ୍ତୁ ଅସ୍ତ୍ର ରଖିବ ।

ଅସ୍ତ୍ର କାହିଁକି ? ଏଡ଼ଗାରର ଚିନ୍ତା ବଢ଼ିଯାଏ ।

ଏଡ଼ମଣ୍ଡ କହେ - ଭାଇ, ମୁଁ ତମକୁ ଠିକ୍ ପରାମର୍ଶ ଦେଉଛି । ମୁଁ ଯାହା ଦେଖୁଛି ବା ଶୁଣୁଛି ସେଇକଥା ତମକୁ କହିଲି । ତେବେ ଏଥିପାଇଁ ବ୍ୟସ୍ତ ହେବାର କିଛି ନାହିଁ ।

ଏଡ଼ଗାର ଚାଲିଯାଏ । ଏଡ଼ମଣ୍ଡ ଚିନ୍ତା କରେ - ଏ ଯେମିତି ଲୋକ, କାହାର କ୍ଷତି କରିବା କି କାହାକୁ ସନ୍ଦେହ କରିବା ତା'ପକ୍ଷରେ ସମ୍ଭବ ନୁହେଁ । ତା'ର ଏଇ ସରଳତାର ସୁଯୋଗରେ ମୋର କାର୍ଯ୍ୟ ହାସଲ ହୋଇପାରିବ । ବୁଦ୍ଧି ପ୍ରୟୋଗ କରି ମୋର ପ୍ରାପ୍ୟ ଆଦାୟ କରିବାକୁ ହେବ ।

ଆଲବେନି ପ୍ରାସାଦରେ ଲିୟର ଏବଂ ତାଙ୍କର ଏକଶତ ନାଇଟ୍ ବସିଛନ୍ତି । ଗନେରିଲ୍ ଖବର ପାଇଛି, ତାଙ୍କର ବିଦୂଷକ ସହିତ ଖରାପ ବ୍ୟବହାର କରିଥିବାରୁ ଲିୟର ଗନେରିଲ୍ ର ଜଣେ କର୍ମଚାରୀକୁ ମାଡ଼ ଦେଇଛନ୍ତି । ଗନେରିଲ୍ ସ୍ଥିର କରିନିଏ, ଏ ସବୁକୁ ଆଦୌ ପ୍ରଶ୍ରୟ ଦିଆ ଯିବ ନାହିଁ । କର୍ମଚାରୀଙ୍କୁ ନିର୍ଦ୍ଦେଶ ଦିଏ ଲିୟରଙ୍କ କାମଦାମରେ ଅବହେଳା କରିବାକୁ । ନିଷ୍କର୍ମା ବୃଦ୍ଧ ଲୋକଟି ରାଜତ୍ୱ ତ୍ୟାଗ କରିସାରିଥିଲେ ମଧ୍ୟ ରାଜା ଭଳି ସମ୍ମାନ ପାଇବାକୁ ଚାହାନ୍ତି । ଏହାକୁ ବନ୍ଦ କରିବାକୁ ହେବ । ଆଉ ଏଇ ଯେ ନାଇଟ୍ ନାମଧାରୀ ଶତେକ ନିଷ୍କର୍ମା ତାଙ୍କୁ ଘେରି ରହିଛନ୍ତି ସେମାନଙ୍କୁ ମଧ୍ୟ ଏଠାରୁ ବିଦାୟ କରିବାକୁ ହେବ । ପ୍ରଥମ ପଦକ୍ଷେପ ତେଣୁ ଅସହଯୋଗ । କର୍ମଚାରୀମାନଙ୍କୁ ସେଇଭଳି ନିର୍ଦ୍ଦେଶ ଦିଆହୁଏ । ଗନେରିଲ୍ ଜାଣେ - ଏଇ ଉପେକ୍ଷା ହିଁ ହେବ ଲିୟରଙ୍କ ସହିତ ତା'ର ବିରୋଧର ପ୍ରଥମ ବିନ୍ଦୁ । ଏ ସବୁ କଥା ଜଣାଇ ସେ ରିଗାନ୍ କୁ ଖଣ୍ଡେ ଚିଠି ଲେଖିବ ।

ଏଇ ପ୍ରାସାଦକୁ ଛଦ୍ମବେଶରେ ଆସିଛନ୍ତି କେଣ୍ଟ । ରାଜାଙ୍କ ଦ୍ୱାରା ନିର୍ବାସିତ ହୋଇ ମଧ୍ୟ ସେ ତାଙ୍କ ପାଖରେ ରହି ତାଙ୍କର ସେବା କରିବାକୁ ଚାହାନ୍ତି । ଶିକାରରୁ ଫେରି ରାଜା ରାତିର ଖାଇବା ପାଇଁ ପ୍ରସ୍ତୁତ ହୁଅନ୍ତି । ଏତିକିବେଳେ କେଣ୍ଟଙ୍କ ସହିତ ତାଙ୍କର ସାକ୍ଷାତ୍ ହୁଏ ଏବଂ କେଣ୍ଟ କର୍ମପ୍ରାର୍ଥୀ ରୂପରେ ନିଜର ପରିଚୟ ଦିଅନ୍ତି । ଆଲୋଚନାରୁ ରାଜା ତାଙ୍କର ବୟସ, କର୍ମପଟୁତା, ରୁଚି ଏବଂ ବାକ୍‌ପଟୁତା ସମ୍ପର୍କରେ ଅନେକ କଥା ଜାଣିନିଅନ୍ତି । ରାଜାଙ୍କର ତାଙ୍କୁ ଭଲ ଲାଗିଯାଏ । ସେ ତାଙ୍କୁ ନିଜ ପାଖରେ ରଖିନିଅନ୍ତି ।

ଖାଦ୍ୟ ଆସିବାରେ ବିଳମ୍ବ ହେବାରୁ ରାଜା ବିରକ୍ତ ହୁଅନ୍ତି । ଏତିକିବେଳେ ଜଣେ କର୍ମଚାରୀ ଆସିବାରୁ ସେ ତାକୁ ଗନେରିଲ୍ କୁ ଡାକି ଆଣିବା ନିମନ୍ତେ ଆଦେଶ ଦିଅନ୍ତି । ତେବେ ସେ ପୂର୍ବ ଶିକ୍ଷାମତେ ତାଙ୍କୁ ଉପେକ୍ଷା କରି ଚାଲିଯାଏ । ଏହାର କାରଣ ଜାଣିବାକୁ ରାଜା ଜଣେ ନାଇଟ୍‌କୁ ପଠାନ୍ତି । ସେ ଫେରିଆସି ଜଣାନ୍ତି ଯେ, ତାଙ୍କ ଝିଅର ଦେହ ଖରାପ ବୋଲି ଶୁଣାଯାଉଛି । ଲିୟର କ୍ରୁଦ୍ଧ ହୋଇ କହନ୍ତି ସେଇ ଉଦ୍ଧତ ଲୋକଟା ? ତାକୁ ଡକାଯିବା ସତ୍ତ୍ୱେ ସେ ଆସିଲା ନାହିଁ କାହିଁକି ? ନାଇଟ୍ କହନ୍ତି ସେ ତ ମୁହେଁ ମୁହେଁ ଜଣାଇଦେଲା ଯେ, ସେ ଆସିପାରିବ ନାହିଁ ।

ରାଜାଙ୍କ ରାଗ ପଞ୍ଚମରେ ଉଠେ । ଆସିପାରିବ ନାହିଁ ନା ?

ନାଇଟ୍ ଜଣାନ୍ତି କାରଣ କ'ଣ ସେ ଅବଶ୍ୟ ଜାଣି ନାହାନ୍ତି । ତେବେ ତାଙ୍କର ବିଶ୍ୱାସ ରାଜା ଏଠାରେ ଯଥାଯଥ ସମ୍ମାନ ପାଉ ନାହାନ୍ତି । ତାଙ୍କର ହୁଏତ ଭୁଲ୍ ହୋଇପାରେ । ତେବେ ରାଜାଙ୍କ ପ୍ରତି ଏ ଇଚ୍ଛାକୃତ ଉପେକ୍ଷା ତାଙ୍କର ଅସହ୍ୟ ହେଲାରୁ ସେ ଏକଥା କହିଛନ୍ତି । ଲିୟର ତାଙ୍କର ମଧ୍ୟ ସେହିଭଳି ଅନୁଭବ ହୋଇଥିବା କଥା ସ୍ୱୀକାର କରନ୍ତି । ତେବେ ତାହା ତାଙ୍କ ମନର ଭୁଲ୍ ହୋଇପାରେ ଭାବି, ସେଥିପ୍ରତି ବିଶେଷ ଧ୍ୟାନ ଦେଇ ନାହାନ୍ତି । ତା'ପରେ ଜଣେ ଅନୁଚର ଦ୍ୱାରା ଗନେରିଲ୍ ପାଖକୁ ଖବର ଦିଆଯାଏ ଯେ, ରାଜା ତାକୁ ଦେଖା କରିବାକୁ ଚାହାନ୍ତି । ଇତିମଧ୍ୟରେ କର୍ମଚାରୀଟିର ଔଦ୍ଧତ୍ୟରେ ଅସନ୍ତୁଷ୍ଟ ହୋଇ ରାଜା ତାକୁ ପ୍ରହାର କରିବସନ୍ତି ଏବଂ କେଣ୍ଟ ଆସି କର୍ମଚାରୀକୁ ଉଦ୍ଧାର କରନ୍ତି ।

ଗନେରିଲ୍ ଆସେ । ତା'ର ବିରକ୍ତି ଦେଖି ରାଜା ଏହାର କାରଣ ଜାଣିବାକୁ ଚାହାନ୍ତି । ଗନେରିଲ୍ ଅଭିଯୋଗ କରେ - ବାବା, ଆପଣଙ୍କଠୁଁ ପ୍ରଶ୍ରୟ ପାଇ କେବଳ ବିଦୂଷକ ନୁହେଁ, ଅନ୍ୟମାନେ ମଧ୍ୟ ପ୍ରତି ମୁହୂର୍ତ୍ତରେ ଦଙ୍ଗାହେଙ୍ଗାମା ସୃଷ୍ଟି କରୁଛନ୍ତି । ଭାବିଥିଲି, ଆପଣଙ୍କୁ ଜଣାଇଲେ କିଛି ପ୍ରତିକାର ହେବ । ତେବେ ବର୍ତ୍ତମାନ ମୋର ମନେହେଉଛି, ଆପଣ ସ୍ୱୟଂ ସେମାନଙ୍କୁ ଉତ୍ସାହିତ କରୁଛନ୍ତି । ମୁଁ ଆପଣଙ୍କ ଶୁଭବୁଦ୍ଧି ଉପରେ ଭରସା ରଖିଥିଲି । ତେବେ ଆପଣଙ୍କର ସେଇ ବିଚାରବୁଦ୍ଧି ଆଉ ନାହିଁ ।

ଲିୟର ଭୟଙ୍କର ରାଗିଯାଆନ୍ତି ।

ଗନେରିଲ୍ କହିଚାଲିଥାଏ - ଆପଣ ମୋ ଉଦ୍ଦେଶ୍ୟଟା ବୁଝିବାକୁ ଚେଷ୍ଟା କରନ୍ତୁ । ବୟସ ହେଲେ ବୋଧଶକ୍ତି ବଢ଼େ ବୋଲି କହନ୍ତି । ଆପଣ ଏଠି ଅଛନ୍ତି, ଭଲ କଥା - ସାଙ୍ଗରେ ପାଳିଛନ୍ତି ଶହେଜଣ ନାଇଟ୍ । ସେମାନେ ଉଚ୍ଛୃଙ୍ଖଳ, ଦଙ୍ଗାବାଜ୍ । ସେମାନଙ୍କ ଆମୋଦପ୍ରମୋଦ, ଖିଆପିଆ - ମୋର ଏ ଘରକୁ ଗୋଟାଏ ସରାଇଖାନାର ରୂପ ଦେଲାଣି । ଆପଣଙ୍କର ଅନୁଚରମାନଙ୍କ ସଂଖ୍ୟା କିଛି କମାଇବା ଦରକାର । ଯେଉଁମାନେ ଆପଣଙ୍କ ସମ୍ମାନ ସମ୍ପର୍କରେ ସଚେତନ କେବଳ ସେଇମାନଙ୍କ ମଧ୍ୟରୁ ପଚାଶଜଣଙ୍କୁ ରଖି ଅନ୍ୟମାନଙ୍କୁ ବିଦାୟ ଦିଅନ୍ତୁ ।

ଗନେରିଲ୍ ର କଥାରେ ରାଜା ଏଭଳି ଉତ୍ତ୍ୟକ୍ତ ହୋଇପଡ଼ନ୍ତି ଯେ, ସେ ତତ୍କ୍ଷଣାତ୍ ନିଜର ଅଶ୍ୱ ପ୍ରସ୍ତୁତ କରିବା ନିମନ୍ତେ ଆଦେଶ ଦିଅନ୍ତି । ଅନୁଚରମାନଙ୍କୁ ମଧ୍ୟ ଏଠାରୁ ଯିବା ନିମନ୍ତେ ପ୍ରସ୍ତୁତ ହୋଇ ଯିବାକୁ କହନ୍ତି । ଗନେରିଲ୍‌କୁ କହନ୍ତି, ମୋର ଉପସ୍ଥିତି ଯେ ତମପାଇଁ ଏଭଳି ବିରକ୍ତିକର ହୋଇ ଉଠିଲାଣି, ତା' ମୋତେ ଜଣା ନ ଥିଲା । ତେବେ ମୋର ଆହୁରି ଜଣେ ଝିଅ ରହିଛି —

ଆଲ୍‌ବେନି ଆସି ରାଜାଙ୍କୁ ଶାନ୍ତ କରିବା ନିମନ୍ତେ ଚେଷ୍ଟା କରନ୍ତି । ଲିୟର ମାନନ୍ତି ନାହିଁ । ଆଗ୍ନେୟଗିରିର ଉଦ୍‌ଗିରଣ ଭଳି ତାଙ୍କର କ୍ରୋଧ ଉଦ୍‌ଗୀର୍ଣ୍ଣ ହୁଏ । ସେ ବାହାରି ପଡ଼ନ୍ତି । ନିରୁତ୍ତାପ କଣ୍ଠରେ ଗନେରିଲ୍ କହେ - ତାଙ୍କର ଉଚିତ ଶିକ୍ଷା ହୋଇଛି । ଶହେଜଣ ନାଇଟ୍ ପାଳୁଛନ୍ତି ! ତା'ର ଅର୍ଥ ଏମାନଙ୍କର ଅଭାବ, ଅଭିଯୋଗ, ଭଲମନ୍ଦ - ସବୁ ଆମର । ତାଙ୍କରି ଅନୁକମ୍ପା ଉପରେ ସତେଯେମିତି ଆମର ଅସ୍ତିତ୍ୱ ନିର୍ଭରଶୀଳ !

ଆଲ୍‌ବେନି କହନ୍ତି, ଏଭଳି ଭାବିବାଟା ହୁଏତ ଅତିରିକ୍ତ ହୋଇଯାଉଛି !

ଗନେରିଲ୍ ଉତ୍ତର ଦିଏ ଯେ, ସବୁବେଳେ ଅଶାନ୍ତି ଅପେକ୍ଷା, ଏ ଯାହା ହେଲା ବରଂ ଭଲ ହୋଇଛି । ରିଗାନ୍ କୁ ମଧ୍ୟ ସେ ଏସବୁ କଥା ଲେଖି ଜଣାଇଦେଇଛି । ଅସୱାଲ୍‌ଡ ନାମକ କର୍ମଚାରୀକୁ ପଠାଇଛି, ତାକୁ ସବୁ ବିଷୟ ବୁଝାଇଦେବାକୁ । ଆଲ୍‌ବେନି ମନ୍ତବ୍ୟ ଦିଅନ୍ତି - ଏସବୁତ ହେଲା ବା ହେଉଛି । ତେବେ ଭଲ କିମ୍ବା ମନ୍ଦ ତାହା କେବଳ ଭବିଷ୍ୟତ୍ କହିପାରିବ ।

ଲିୟର୍ କେଣ୍ଟଙ୍କୁ ଏଠାର ଘଟଣା ସମ୍ପର୍କରେ ଗ୍ଲୁଉସେଷ୍ଟର ଓ ରିଗାନ୍ ଙ୍କୁ ଜଣାଇବା ପାଇଁ ପଠାନ୍ତି । ବିଦୂଷକଙ୍କୁ କହନ୍ତି ଯେ, କନିଷ୍ଠା କନ୍ୟା ପ୍ରତି କରିଥିବା ଅନ୍ୟାୟ ସମ୍ପର୍କରେ ସେ ଆଜି ଉପଲବ୍ଧି କରିପାରୁଛନ୍ତି । ବିଦୂଷକ କହେ, ସବୁ କ୍ଷମତା ହସ୍ତାନ୍ତର କରିଦେବାଟା ରାଜାଙ୍କ ପକ୍ଷରେ ଆଦୌ ଉଚ୍ଚିତ ହୋଇ ନାହିଁ । ଘୋଡ଼ା ପ୍ରସ୍ତୁତ ହୋଇଯିବା ପରେ ରାଜା ବିଦୂଷକକୁ ନେଇ ଯାତ୍ରା ଆରମ୍ଭ କରନ୍ତି ।

॥ ୨ ॥

ଗ୍ଲୁଉସେଷ୍ଟର ଦୁର୍ଗରେ ଏଡ଼ମଣ୍ଡ ଜାଣିବାକୁ ପାଏ ଯେ, କର୍ଣ୍ଣୱାଲର ଡ୍ୟୁକ୍ ତଥା ରିଗାନ୍ ସେଠାକୁ ଆସୁଛନ୍ତି । ସେମାନଙ୍କର ଆସିବାର କାରଣ ସେ ଜାଣି ନ ଥିଲେ ମଧ୍ୟ ତା'ର କେମିତି ଧାରଣା ହୁଏ ଯେ, ଏଥିରେ ତା'ର ସୁବିଧା ହେବ । ଏହା ପରେ ସେ ଏଡ଼ଗାର୍‌କୁ ଡାକେ । ତାକୁ କହେ - ବାବା ତମ ଉପରେ ତୀକ୍ଷ୍ଣ ନଜର ରଖୁଛନ୍ତି, ଯେତେ ଶୀଘ୍ର ପାର ଏଠାରୁ ପଳାଅ । ଏଇ ଅନ୍ଧାରରେ ପଳାଇବାପାଇଁ ସୁବିଧା । ଆଚ୍ଛା ତମେ କ'ଣ କର୍ଣ୍ଣୱାଲର ଡ୍ୟୁକ୍‌ଙ୍କ ବିରୋଧରେ କିଛି କହିଛ ? ସେ ଆଉ ରିଗାନ୍ ଏଠାକୁ ଆସୁଛନ୍ତି । ଆଲ୍‌ବେନି ବିରୋଧରେ ସେମାନେ କୁଆଡ଼େ ଯୁଦ୍ଧ କରିବେ । ଏଡ଼ଗାର୍ ଏସବୁ ବିନ୍ଦୁ ବିସର୍ଗ ଜାଣି ନ ଥିବାର କହେ । ଏହାପରେ

ଏଡମଣ୍ଡ ଏଭଳି କାଳ୍ପନିକ ବିବରଣୀମାନ ଉପସ୍ଥାପିତ କରେ ଯେ, ଏଡ୍‌ଗାର୍ ର ପ୍ରକୃତରେ ଭୟ ହୁଏ । ସେ ତତ୍‌କ୍ଷଣାତ୍ ସେ ସ୍ଥାନ ଛାଡ଼ି ଅଦୃଶ୍ୟ ହୋଇଯାଏ । ନିଜ ତରବାରିରେ ନିଜକୁ ସାମାନ୍ୟ କେଞ୍ଚୁ ଦେଇ ଏଡମଣ୍ଡ, 'ବାବା' 'ବାବା' ବୋଲି ଉଚ୍ଚ ସ୍ୱରରେ ଚିତ୍କାର କରିବାକୁ ଆରମ୍ଭ କରେ ।

ଗ୍ଲାଉସେଷ୍ଟରଙ୍କ ସହିତ ପରିଚାରକମାନେ ଜମା ହୋଇପଡ଼ନ୍ତି । ଗ୍ଲାଉସେଷ୍ଟର ସବୁ ଶୁଣିବା ପରେ ପଚାରନ୍ତି, ସଇତାନ୍‌ଟା ଗଲା କାହିଁ ? 'ଏଡ୍‌ମଣ୍ଡ କହେ - ଏଇଠି ଖୋଲା ତରବାରି ହାତରେ ଠିଆ ହୋଇଥିଲା, ପଳାଇଛି । ଗ୍ଲାଉସେଷ୍ଟର ଭୃତ୍ୟମାନଙ୍କୁ ଆଦେଶ ଦିଅନ୍ତି - ଯେମିତି ହେଉ ତାକୁ ଶୀଘ୍ର ଧରି ଆଣ ।'

ଏଡମଣ୍ଡ କହେ - ସେ ମୋତେ ଆପଣଙ୍କୁ ହତ୍ୟା କରିବା ପାଇଁ କହୁଥିଲା । ମୁଁ ତାକୁ କହେ - ପିତୃହନ୍ତା ଉପରେ ଦେବତାମାନଙ୍କର କ୍ରୋଧ ବର୍ଷିତ ହୁଏ । ପିତା ପୁତ୍ରର ବନ୍ଧନ ଚିରନ୍ତନ - ଶକ୍ତିଶାଳୀ । ମୋର ନାସ୍ତି ବାଣୀ ଶୁଣି ସେ ମୋତେ ଆକ୍ରମଣ କରେ, ତେବେ ସମ୍ଭବତଃ ମୋର ପ୍ରତିବାଦ ଓ ଚିତ୍କାରରେ ଭୟ ପାଇ ପଳାଇଯାଇଛି । ବହିଆସୁଥିବା ରକ୍ତଧାରକୁ ଏଡମଣ୍ଡ ଦେଖାଏ ।

ଗ୍ଲାଉସେଷ୍ଟର କହନ୍ତି - ଯଦି ପଳାଇଥାଏ, ତେବେ ତ ଭଲ । ଯଦି ଏ ରାଜ୍ୟରେ ରହିବା ଭଳି ଦୁଃସାହସ କରେ, ତେବେ ଧରା ସେ ନିଶ୍ଚୟ ପଡ଼ିବ । ଆଜି ଡ୍ୟୁକ୍ ଆସୁଛନ୍ତି । ତାଙ୍କରି ଆଗରେ ମୁଁ ସେଇ ପଳାତକକୁ ଧରିଆଣିବା ପାଇଁ ପୁରସ୍କାର ଘୋଷଣା କରିବି । ଯେ ତାକୁ ଲୁଚିବାର ସୁଯୋଗ ଦେବ, ତା'ର ଶାସ୍ତି ହେବ ମୃତ୍ୟୁ ।

ଏଡମଣ୍ଡ ଏଡଗାର୍ ବିରୋଧରେ ଅନେକ କଥା କହେ । ଗ୍ଲାଉସେଷ୍ଟରଙ୍କ ରାଗ ବଢ଼ିବାରେ ଲାଗେ । କର୍ଣ୍ଣୱାଲ୍‌ର ଡ୍ୟୁକ୍ ଓ ରିଗାନ୍ ଆସିଯାଆନ୍ତି । କର୍ଣ୍ଣୱାଲ୍ ପଚାରନ୍ତି - ଆସିବା ସମୟରେ ଅଦ୍‌ଭୁତ ଏକ ସମ୍ବାଦ ପାଇଲି - ଏହା କ'ଣ ସତ ?

ରିଗାନ୍ କହେ - ସତ ହୋଇଥିଲେ କୌଣସି ଶାସ୍ତି ମଧ ତା'ପାଇଁ ଯଥେଷ୍ଟ ହେବ ନାହିଁ ।

ଗ୍ଲାଉସେଷ୍ଟର ହା ହୁତାଶ ପ୍ରକାଶ କରନ୍ତି । କହନ୍ତି - ମୋର ମନ ଭାଙ୍ଗିଯାଇଛି ମାଡାମ୍ ।

ରିଗାନ୍ ପଚାରନ୍ତି - ଆଚ୍ଛା, ଏଡଗାର କ'ଣ ବାବାଙ୍କର ସେଇ ମାରଣା ନାଇଟ୍ ଗୁଡ଼ାକଙ୍କ ସାଙ୍ଗରେ ମିଳାମିଶା କରୁଥିଲା ?

- ଜାଣେନା - ମୋର ଭାଗ୍ୟ ଖରାପ ।

ଏଡମଣ୍ଡ ଯୋଗ କରେ - ହଁ ମାଡାମ୍ - ସେ ତ ବରାବର ସେ ଦଳରେ ଯୋଗ ଦେଉଥିଲା ।

ରିଗାନ୍ କହେ - ସଂସର୍ଗ ଦୋଷରୁ ସ୍ୱଭାବ ନଷ୍ଟ । ଆଜି ମୁଁ ଅପାଙ୍କଠାରୁ ଖବର ପାଇଲି ଯେ, ବାବା ତାଙ୍କର ସେଇ ଏକଶହ ଅନୁଚର ନେଇ ମୋ ପାଖକୁ ଆସୁଛନ୍ତି । ସେଇ କଥା ଶୁଣି ଘରଦ୍ୱାର ବନ୍ଦ କରି ଆମେ ସବୁ ଏଠାକୁ ପଳାଇ ଆସିଛୁ ।

କର୍ଣ୍ଣୱାଲ୍ ଏଡମଣ୍ଡକୁ କହନ୍ତି - ଶୁଣିଲି, ତମେ ତମର ପିତାଙ୍କର ଡାହାଣହାତ ହୋଇଉଠିଛ । ଏଡମଣ୍ଡ ଉତ୍ତର ଦିଏ ଯେ, ସେ ତା'ର କର୍ତ୍ତବ୍ୟ ମାତ୍ର କରୁଛି । ତାଙ୍କୁ ରକ୍ଷା କରିବା ପାଇଁ ଏଡମଣ୍ଡ ନିଜେ କିପରି ଆହତ ହୋଇଛି, ଗ୍ଲୁଉସେଷ୍ଟର ଜଣାଇ ଦିଅନ୍ତି । ଏଡ଼ଗାରର ସନ୍ଧାନ କରାଯାଉଛି କି ନାହିଁ କର୍ଣ୍ଣୱାଲ୍ ଜାଣିବାକୁ ଚାହାନ୍ତି । ସେ ଧରାପଡ଼ିଲେ, ତାକୁ ବରଂ ତାଙ୍କ ପାଖକୁ ପଠାଇ ଦିଆଗଲେ ସେ ଏଭଳି ବ୍ୟବସ୍ଥା କରିବେ, ଯାହାଦ୍ୱାରା ସେ ଭବିଷ୍ୟତ୍‌ରେ କେବେବି କାହାରି କିଛି କ୍ଷତି କରିପାରିବ ନାହିଁ । ଏଡମଣ୍ଡ ତାଙ୍କର ବିଶ୍ୱସ୍ତ ହେଲା ବୋଲି ମଧ ଘୋଷଣା କରନ୍ତି ।

ଏଡମଣ୍ଡ ସବିନୟେ ଜଣାଏ - ମୁଁ ଆପଣମାନଙ୍କର ସେବକ ମାତ୍ର ।

କର୍ଣ୍ଣୱାଲ୍ ଏଥର ଗ୍ଲୁଉସେଷ୍ଟରଙ୍କୁ କହନ୍ତି - ଆପଣଙ୍କର ପରାମର୍ଶ ଓ ଉପଦେଶ ପାଇଁ ହିଁ ଆମେ ଏଠାକୁ ଧାଇଁଆସିଛୁଁ । ରିଗାନ୍‌ର ବାବା ଓ ଗନେରିଲ୍ - ଦୁଇଜଣ ଚିଠି ଲେଖିଛନ୍ତି, ତେବେ ବକ୍ତବ୍ୟ ଅଲଗା - ଦୂତ ମୁହଁରୁ ମଧ ଓଲଟା କଥା ଶୁଣିବାକୁ ମିଳୁଛି । ଆପଣ ବୟସ୍କ , ବିଜ୍ଞ । ବିବେକୀ - ପୁଣି ଶୁଭାକାଂକ୍ଷୀ— ତେଣୁ ଏ କ୍ଷେତ୍ରରେ ଆମର କରଣୀୟ ସମ୍ପର୍କରେ କିଛି ପରାମର୍ଶ ଦିଅନ୍ତୁ ।

କେଣ୍ଟ ଏବଂ ଅସୱାଲ୍‌ଡ ପ୍ରାୟ ଗୋଟିଏ ସମୟରେ ହିଁ ଗ୍ଲୁଉସେଷ୍ଟର ଦୁର୍ଗ ସମ୍ମୁଖରେ ଉପସ୍ଥିତ ହୁଅନ୍ତି । ଦୁଇ ବିରୋଧୀପକ୍ଷ ପରସ୍ପର ମଧରେ କଳହ ଆରମ୍ଭ କରିଦିଅନ୍ତି । କେଣ୍ଟ ଅସୱାଲ୍‌ଡକୁ ପ୍ରହାର କରିବା ମାତ୍ରେ ସେ 'ରକ୍ଷାକର' 'ରକ୍ଷାକର' ବୋଲି ଚିତ୍କାର କରିବାକୁ ଆରମ୍ଭ କରେ । ଲୋକେ ଛୁଟି ଆସନ୍ତି । ଗ୍ଲୁଉସେଷ୍ଟର ଓ କର୍ଣ୍ଣୱାଲ୍ ଉଭୟେ କାରଣ ଜାଣିବାକୁ ଚାହାନ୍ତି । ରିଗାନ୍ ଉତ୍ତର ଦିଏ - ଏମାନେ ଗନେରିଲ ଆଉ ରାଜାଙ୍କ ପାଖରୁ ଆସିଛନ୍ତି । ଅସୱାଲ୍‌ଡ ଆହତ ହୋଇଥିବାର ଛଳନା କରି ପ୍ରଶ୍ନର ଉତ୍ତର ଏଡ଼ାଇଯାଏ । କର୍ଣ୍ଣୱାଲ୍ କେଣ୍ଟଙ୍କୁ କହନ୍ତି - ଏଇଟା ପାଗଳ ନା କ'ଣ ? କେଣ୍ଟଙ୍କ କଥାରୁ କିଛି ଜଣାଯାଏ ନାହିଁ । କ୍ରୁଦ୍ଧ କର୍ଣ୍ଣୱାଲ୍ କହନ୍ତି - ନିଶ୍ଚୟ ଏଇଟା ରାଜାଙ୍କର ଅନୁଚର ଭିତରୁ ଗୋଟାଏ । ତାକୁ ଉଚିତ ଶିକ୍ଷା ଦେବାକୁ ହେବ । ତାକୁ ସେଇ ଖୁଣ୍ଟରେ ବାନ୍ଧିପକାଅ । ଗ୍ଲୁଉସେଷ୍ଟର ବିନା କାରଣରେ ଏଭଳି ଶାସ୍ତିର ପ୍ରତିବାଦ କରନ୍ତି । ରାଜା ଏଥିପାଇଁ ଖରାପ ଭାବିପାରନ୍ତି ବୋଲି କହନ୍ତି । କର୍ଣ୍ଣୱାଲ୍ କହନ୍ତି ଯେ, ରାଜାଙ୍କ କଥା ସେ ବୁଝିବେ । ରିଗାନ୍ କହେ, ତା'ଲୋକ ଉପରେ ଏଇ ଚଢ଼ାଉ ପାଇଁ ଗନେରିଲ୍ ଆହୁରି ଖରାପ ଭାବିପାରେ । କେଣ୍ଟ ସେମିତି ଦୁର୍ଗ ବାହାର ଖୁଣ୍ଟରେ ବନ୍ଧା ହୋଇ ରହନ୍ତି । ସମସ୍ତେ ଚାଲିଯିବା ପରେ ଗ୍ଲୁଉସେଷ୍ଟର କେଣ୍ଟ ପାଖକୁ ଯାଇ ଦୁଃଖ ପ୍ରକାଶ କରନ୍ତି ।

କହନ୍ତି , ଡ୍ୟୁକ୍ ଙ୍କ ପାଖରେ ସେ ତାଙ୍କର ଶାସ୍ତି ରଦ୍ଦ କରିବା ପାଇଁ ପ୍ରାର୍ଥନା କରିବେ । କେଣ୍ଟ କହନ୍ତି ଯେ, ସେଭଳି ଉଦ୍ୟମରୁ କୌଣସି ସୁଫଳ ମିଳିବାର ଆଶା ନାହିଁ । ସେ ବହୁ ଦୂରରୁ ଆସି କ୍ଳାନ୍ତ ହୋଇ ପଡ଼ିଛନ୍ତି । ବର୍ତ୍ତମାନ କିଛି ସମୟ ପାଇଁ ଶୋଇଯିବେ । ସକାଳୁ ବରଂ ସେ ତାଙ୍କୁ ସୁପ୍ରଭାତ ଜଣାଇବାକୁ ଭେଟିବେ । ଦୁଃଖରେ ଗ୍ଲଉସେଷ୍ଟର ଚାଲିଯାଆନ୍ତି । ଦିନର ଆଲୁଅରେ କେଣ୍ଟ କର୍ଡେଲିଆ ଠାରୁ ପାଇଥିବା ଖଣ୍ଡେ ଚିଠି ପଢୁପଢୁ ପୁଣି ଶୋଇ ପଡ଼ନ୍ତି ।

ଏଡଗାର ବିଚ଼ରା ଲୁଚି଼ ଲୁଚି଼ ବୁଲୁଥାଏ । କୌଣସି ସ୍ଥାନ ତା' ପାଇଁ ନିରାପଦ ନୁହଁ । ତା'ର ପରିଧାନରେ ଭିକ୍ଷୁକର ପୋଷାକ, ଚେହେରା ମଧ୍ୟ ସେହିଭଳି । ଟିକିଏ ନିରାପତ୍ତା ପାଇଁ ସେ କେତେବେଳେ ଭିକ୍ଷୁକମାନଙ୍କ ସାଙ୍ଗରେ, କେତେବେଳେ ଯାଯାବରମାନଙ୍କ ସାଙ୍ଗରେ ତ କେତେବେଳେ ସାଧୁସନ୍ଥମାନଙ୍କ ସାଙ୍ଗରେ ଘୂରି ବୁଲୁଥାଏ ।

ଲିୟର ସାଙ୍ଗରେ ବିଦୂଷକକୁ ନେଇ ଗ୍ଲଉସେଷ୍ଟରଙ୍କ ଦୁର୍ଗ ସମ୍ମୁଖରେ ଉପସ୍ଥିତ ହୁଅନ୍ତି । କେଣ୍ଟକୁ ଏହିଭଳି ବନ୍ଧା ହୋଇଥିବାର ଦେଖି ସେ ପ୍ରଥମେ ବିଶ୍ୱାସ କରିପାରନ୍ତି ନାହିଁ ଯେ, ତାଙ୍କରି ଜାମାତା ଆଉ କନ୍ୟା, ତାଙ୍କ ନିଜ ଲୋକର ଏଭଳି ଦୁରବସ୍ଥା କରିଛନ୍ତି । କେଣ୍ଟଙ୍କଠାରୁ ସବୁକଥା ଶୁଣିସାରିବା ପରେ ସେ ମୁକାବିଲା ପାଇଁ ଦୁର୍ଗ ମଧ୍ୟକୁ ପ୍ରବେଶ କରନ୍ତି । କେଣ୍ଟ ଆଉ ବିଦୂଷକ ବାହାରେ ଅପେକ୍ଷା କରନ୍ତି ।

ଲିୟର ଓ ଗ୍ଲଉସେଷ୍ଟର ପୁଣି ବାହାରକୁ ଆସନ୍ତି । ଲିୟର ଉତ୍ତେଜିତ, ଝିଅ ଜ୍ୱାଇଁ ତାଙ୍କ ସାଙ୍ଗରେ ଦେଖା କରନ୍ତି ନାହିଁ । ସେମାନେ କୁଆଡ଼େ ଅସୁସ୍ଥ ଆଉ କ୍ଳାନ୍ତ ? ଗ୍ଲଉସେଷ୍ଟର ବୁଝାଇବାକୁ ଚେଷ୍ଟା କରନ୍ତି ଯେ ଡ୍ୟୁକ୍ଙ୍କର ମିଜାଜଟା ସେମିତି ଭାରି ଜିଦ୍‌ଖୋର । ଲିୟର କ୍ରୁଦ୍ଧ ଗ୍ଲଉସେଷ୍ଟରଙ୍କୁ ଆଦେଶ ଦିଅନ୍ତି, ଡ୍ୟୁକ୍ ଆଉ ତାଙ୍କ ସ୍ତ୍ରୀଙ୍କ ସାଙ୍ଗରେ କଥାବାର୍ତ୍ତା କରିବାଟା ନିହାତି ଜରୁରୀ । ସେମାନଙ୍କୁ ଡକାଯାଉ । ଗ୍ଲଉସେଷ୍ଟର ସେମାନଙ୍କୁ ଖବର ପଠାଇଥିବା କଥା କହନ୍ତି ।

ଆହୁରି ରାଗିଯାଇ ଲିୟର କହନ୍ତି - ଖବର ଦେଇଛ ! କଥାଟାର ଅର୍ଥ ତମେ ବୁଝ ? ରାଜା କଥାବାର୍ତ୍ତା କରିବାକୁ ଚାହାନ୍ତି ଡ୍ୟୁକ୍ଙ୍କ ସାଙ୍ଗରେ, ସ୍ନେହଶୀଳ ପିତା ତା'ଝିଅ ସହିତ କଥା କହିବାକୁ ଚାହେଁ - ଏ କଥା ସେମାନେ ଜାଣନ୍ତି ? ତାଙ୍କୁ କହ- ଆଜ୍ଞା ଥାଉ - ଡ୍ୟୁକ୍ଙ୍କର ଦେହ ଭଲ ନାହିଁ । ଦେହ ଭଲ ନ ଥିଲେ ମନ ବି ଭଲ ନ ଥାଏ । କିଛି କ୍ଷଣ ପରେ ଅସ୍ଥିର ହୋଇ ପଡ଼ି ରାଜା ପୁଣି ସେମାନଙ୍କ ସହିତ ଦେଖାକରିବା କଥା କହନ୍ତି । ସେମାନେ ଯଦି ନ ଆସନ୍ତି, ତେବେ ସେ ନିଜେ ଯିବେ । ତାଙ୍କ ଶୟନାଗାର ସମ୍ମୁଖରେ ଡ୍ରମ ବଜାଇ ସେମାନଙ୍କର ନିଦ ଭଙ୍ଗାଇବେ ।

ଟିକିଏ ପରେ କର୍ଣ୍ଣୱାଲ୍, ଗ୍ଲାଉସେଷ୍ଟର, ରିଗାନ୍ ଓ ଅନ୍ୟମାନେ ଆସନ୍ତି । ରିଗାନ୍ ଜଣାଏ, ମହାମାନ୍ୟ ରାଜାଙ୍କୁ ଦେଖି ସେ ଆନନ୍ଦିତ । ଲିୟର ଏଥର ପ୍ରକୃତ ପ୍ରସଙ୍ଗକୁ ଆସନ୍ତି । ଗନେରିଲ୍ ର ଆଚରଣକୁ ଆକ୍ଷେପ କରନ୍ତି । ତାଙ୍କୁ ସମର୍ଥନ ନ କରି ରିଗାନ୍ ଓଲଟି ତାଙ୍କୁ ଧୈର୍ଯ୍ୟ ଧରିବାକୁ କହେ । କହେ- ବୋଧହୁଏ, ତାକୁ ବୁଝିବାରେ ସେ ଭୁଲ୍ କରିଛନ୍ତି । ଗନେରିଲ୍ ତା'ର କଥା ରଖି ନାହିଁ, ଏ କଥା ବିଶ୍ୱାସ କରିନେବା ତା' ପକ୍ଷରେ କଷ୍ଟ । ସେ ଯଦି ରାଜାଙ୍କର ଅନୁଚରମାନଙ୍କର ମରାମରି ବନ୍ଦ କରିବାକୁ ଚେଷ୍ଟା କରିଥାଏ, ତେବେ ତା'ର ଯୁକ୍ତିସଙ୍ଗତ କାରଣ ମଧ ଥିବ ।

ଲିୟର ଗର୍ଜନ କରି ଉଠନ୍ତି - ସେ ନରକକୁ ଯାଉ ।

ରିଗାନ୍ ବୁଝାଏ - ବାବା, ଆପଣଙ୍କର ବୟସ ହୋଇଛି । ବର୍ତ୍ତମାନ ଏମିତି କଥା କଥାରେ ରାଗିଯିବା ଆପଣଙ୍କୁ ଶୋଭା ପାଏ ନାହିଁ । ଆପଣ ବରଂ ତା' କଥା ମାନିନେବା ଉଚିତ । ସେଥିରେ ଆପଣଙ୍କ ରାଜ୍ୟର ମଙ୍ଗଳ ହେବ । ଆପଣ ବରଂ ଅପା ପାଖକୁ ଫେରିଯାଇ ନିଜର କାର୍ଯ୍ୟ ପାଇଁ ତା' ପାଖରେ ଦୁଃଖ ପ୍ରକାଶ କରନ୍ତୁ । ଲିୟର ଦୁଃଖରେ କହନ୍ତି - ମୁଁ ତାକୁ କ୍ଷମା ମାଗିବି ! ତା'ପରେ ନତଜାନୁ ହୋଇ ରିଗାନ୍ କୁ କହନ୍ତି - ମୁଁ ବରଂ ତୁମ ପାଖରେ ମୁଠାଏ ଖାଦ୍ୟ, ଖଣ୍ଡେ ପୋଷାକ ଆଉ ବିଛଣା ପାଇଁ ନିବେଦନ କରୁଛି । ରିଗାନ୍‌କହେ - ଢେର୍ ହୋଇଛି । ସେ ସବୁ ତାମସାର ଦରକାର ନାହିଁ । ଆପଣ ଅପା ପାଖକୁ ଫେରିଯାଆନ୍ତୁ ।

ଉଠିପଡ଼ି ଲିୟର ଉଚ୍ଚସ୍ୱରରେ କହନ୍ତି- କେବେ ନୁହେଁ, ସେ ମୋତେ—ମୋର ଲୋକମାନଙ୍କ ଭିତରୁ ଅଧା ଲୋକଙ୍କୁ ବିଦାୟ ଦେବା ନିମନ୍ତେ କହିଛି । ସାପ ଭଳି ମୋତେ ଆଘାତ କରିଛି । ତା' ଉପରେ ସ୍ୱର୍ଗର କ୍ରୋଧ ଓହ୍ଲାଇ ଆସୁ ।

କର୍ଣ୍ଣୱାଲ୍ ବାଧା ଦେଇ କହନ୍ତି, ବନ୍ଦ କରନ୍ତୁ । ଲିୟର କିନ୍ତୁ ଗାଳି ଦେବାରେ ଲାଗିଥା'ନ୍ତି ।

ରିଗାନ୍ କହେ - ରାଗିଯାଇ ଆପଣ ମୋତେ ମଧ ଏହିଭଳି ଅଭିଶାପ ଦେଇପାରନ୍ତି । ଲିୟର ହଠାତ୍ ନରମ ହୋଇଯାଆନ୍ତି । କହନ୍ତି, ନା' ମା, ମୁଁ ତୋତେ ଅଭିଶାପ ଦେବି ନାହିଁ । ତୋର ସ୍ୱଭାବ ମୁଁ ଜାଣେ । ତୁ କେବେବି କଠୋର ହୋଇପାରିବୁ ନାହିଁ । ତୋର ମମତାପୂର୍ଣ୍ଣ ଆଖି କେବେ ତା ଭଳି ନିର୍ମମ ହୋଇପାରିବ ନାହିଁ । ମୁଁ ଜାଣେ, ତୁ ମୋର ଲୋକମାନଙ୍କୁ ବିଦାୟ ଦେବାକୁ କହିବୁ ନାହିଁ । ତୋ' ପାଖରେ ଦୟାମାୟା ଅଛି । ରାଜ୍ୟର ଅଧା ଯେ ମୁଁ ତତେ ଦେଇଛି, ସେ କଥା ତୁ କେମିତି ଭୁଲିଯିବୁ ?

ରିଗାନ୍ କିଛି ମନ୍ତବ୍ୟ ଦିଏ ନାହିଁ । ତା'ର ଏଇ ନୀରବତା ରାଜାଙ୍କୁ ଆହତ କରେ ।

ଏହି ସମୟରେ ବାଦ୍ୟ ଶବ୍ଦ ଶୁଣାଯାଏ । ରିଗାନ୍ କହେ - ନିଶ୍ଚୟ ଅପା ଆସିଛି । ଅସୱାଲ୍‌ଡକୁ ଦେଖି ରାଜା ରାଗିଯାଆନ୍ତି । କହନ୍ତି - ଏଇ ଲୋକଟା ତା'ର ପ୍ରଶ୍ରୟ ପାଇ ମୁଣ୍ଡରେ ବସିଛି । ଯା ମୋ ଆଖି ଆଗରୁ ବାହାରି ଯା-

ଗନେରିଲ୍ ପ୍ରବେଶ କରେ । ସେଆଡ଼କୁ ନ ଅନାଇ ରାଜା ରିଗାନ୍‌କୁ ପ୍ରଶ୍ନ କରନ୍ତି - ତୁ ନିଶ୍ଚୟ ମୋ ଲୋକଙ୍କୁ ଖୁଣ୍ଟରେ ବାନ୍ଧି ନାହୁଁ । ଗନେରିଲ୍ ଆଡ଼କୁ ଅନାଇ କହନ୍ତି - ଯଦି ମଣିଷପଣିଆର ସାମାନ୍ୟ କିଛି ତୋ' ଭିତରେ ଥାଏ, ତେବେ ଆଜି ମୋ ଆଡ଼କୁ ଅନାଇବାକୁ ତୋର ସାହସ ହେବ ନାହିଁ । ରିଗାନ୍‌କୁ କହନ୍ତି- ତୁ ତାକୁ ଏଠୁ ନେଇଯା -

ଗନେରିଲ୍ ପ୍ରଶ୍ନ କରେ, ମୁଁ ଏମିତି କି ଅପରାଧ କରିଛି ? ଆପଣଙ୍କ ଆଖିରେ ମୋର ସବୁ କିଛି କାମ ଭୁଲ୍ ?

ଲିୟର୍ ଆହୁରି ରାଗିଯାଆନ୍ତି । କହନ୍ତି - ତୁ ଚୁପ୍ କର । ତା'ପରେ ପୁଣି ପଚାରନ୍ତି - ମୋ ଲୋକକୁ ବନ୍ଧାଗଲା କାହିଁକି ?

କର୍ଣ୍ଣଓ୍ୱାଲ୍ ଆଗେଇ ଆସି କହନ୍ତି - ମୁଁ ବାନ୍ଧିଛି । ସେଥିପାଇଁ ଦାୟୀ ତାର ଔଦ୍ଧତ୍ୟ ।

-ତମେ, ତମେ ଏ କାମ କରିଛ ? ଲିୟର ଚିତ୍କାର କରିଉଠନ୍ତି ।

ପ୍ରସଙ୍ଗ ବଦଳାଇ ରିଗାନ୍ କହେ - ବାବା, ଆପଣ ମାସ ଶେଷ ପର୍ଯ୍ୟନ୍ତ ଅପା ପାଖରେ ଥାଆନ୍ତୁ । ଅଧା ଲୋକ କମ୍ କରି ଦିଅନ୍ତୁ । ତା'ପରେ ମୋ ପାଖକୁ ଆସନ୍ତୁ । ଦେଖୁଛନ୍ତି ତ, ମୁଁ ବର୍ତ୍ତମାନ ଅନ୍ୟ ଲୋକ ପାଖରେ ରହିଛି । ଏଠି ଆପଣଙ୍କର ଦେଖାଶୁଣା କେମିତି ହୋଇପାରିବ ? ଘରକୁ ଫେରିଗଲେ ଆପଣ ଆସିବେ । ପଚାଶଜଣ ଲୋକଙ୍କୁ ବିଦାୟ କରିଦେବେ ।

ଲିୟର ହତାଶାରେ ଭାଙ୍ଗିପଡ଼ନ୍ତି । କହନ୍ତି - ତା' ଅପେକ୍ଷା ବରଂ ମୁଁ ଜଙ୍ଗଲକୁ ଚାଲିଯାଇ ସେଠାରେ ପଶୁମାନଙ୍କ ସହିତ ରହିବି ଫ୍ରାନ୍ସର ରାଜା, ଯେ ବିନା ଯୌତୁକରେ ମୋର କନିଷ୍ଠା କନ୍ୟାକୁ ଗ୍ରହଣ କରିଛନ୍ତି, ତାଙ୍କୁ ମଧ୍ୟ ମୁଁ ମୋ ସିଂହାସନ ଦେଇପାରିଥାଆନ୍ତି ।

ଅସ୍‌ଓ୍ୱାଲ୍‌ଡକୁ ଦେଖାଇ ରାଜା କହନ୍ତି - ତା' ଅପେକ୍ଷା ବରଂ ମୋତେ ଏଇ ଲୋକଟାର ଦାସ ହେବାକୁ ତମେମାନେ କହ ।

ଗନେରିଲ୍ ନିଷ୍ଠୁର ଭାବରେ କହେ - ସେ କଥା ଆପଣ ବୁଝିବେ ।

ଲିୟର କହନ୍ତି - ଅନୁଗ୍ରହ କରି ମୋତେ ଆଉ ପାଗଳ କରିଦିଅନା । ମୁଁ କାହାରିକୁ କଷ୍ଟ ଦେବାକୁ ଚାହେନା- ବିଦାୟ - ଯେଉଁଦିନ ତମର ଲଜ୍ଜିତ ହେବାର ସମୟ ଆସିବ, ସେଦିନ ତମେ ଆପେ ଲଜ୍ଜିତ ହେବ । ସେତେଦିନଯାଏ ମୁଁ ଅପେକ୍ଷା କରିପାରିବି । ମୁଁ ସ୍ଥିର କରିଛି, ମୁଁ ଏବେ ରିଗାନ୍ ପାଖରେ ମୋର କାହିଁକି ? ପୁଣି ସେମାନେ ଯଦି ବା ଖରାପ ବ୍ୟବହାର କରନ୍ତି, ତାକୁ ସମ୍ଭାଳିବା ପାଇଁ ଆମେ ସବୁ ନାହୁଁ ? ତେବେ ମୋ ପାଖକୁ ଆସିଲେ ଆପଣଙ୍କୁ କିନ୍ତୁ ପଚିଶ ଜଣ ଲୋକ ନେଇ ଆସିବାକୁ ହେବ । ଏହାଠାରୁ ବେଶି ଲୋକଙ୍କୁ ମୁଁ ଜାଗା ଦେଇପାରିବି ନାହିଁ ।

ଲିୟର୍ ହତାଶାର ଶୀର୍ଷରେ ପହଞ୍ଚି ଯାଆନ୍ତି । କହନ୍ତି - କିନ୍ତୁ ମୁଁ ତ ତମକୁ ସବୁ ଦେଇଛି । ରିଗାନ୍ କହେ - ସେତେବେଳେ ଆପଣ ଭଲ ଥିଲେ, ତେଣୁ ଆପଣ ଦେଇଥିଲେ । -ତତେ ମୁଁ ମୋର ଅଭିଭାବକ ରୂପେ ଗ୍ରହଣ କରିନେଉଛି । ମୋର ତ କେବଳ ଗୋଟାଏ ସର୍ତ୍ତ ଥିଲା - ଏଇ ଶହେଜଣ ଲୋକ ମୋ ସାଙ୍ଗରେ ରହିବେ - ବର୍ତ୍ତମାନ ତୁ କହୁଚୁ ପଚିଶ୍ ।

ପୁଣି କହୁଚି... ତା'ଠୁ ଜଣେ ବି ଅଧିକ ନୁହେଁ - ରିଗାନ୍ କହେ ।

- ହା ଭଗବାନ୍ - ଲିୟର ଆର୍ତ୍ତନାଦ କରନ୍ତି - ଏଇ ପାଜିମାନଙ୍କୁ ମୁଁ ମୋର ସର୍ବସ୍ୱ ଦେଇଛି । ଗନେରିଲ୍ ଆଡ଼କୁ ଅନାଇ କହନ୍ତି - ମୁଁ ତୋ' ସହିତ ଯିବି । ତଥାପି ତ ପଚାଶଜଣ ଲୋକ ରହିବେ ।

ଏଥର ଗନେରିଲ୍ କହେ - ପଚିଶି ହେଉ କି ପାଞ୍ଚ ହେଉ - ଆପଣଙ୍କର ଲୋକ ଦରକାର କ'ଣ ? ସେଠି ଦେଖାଶୁଣା କରିବାକୁ ଲୋକ ନାହାନ୍ତି ?

ରିଗାନ୍ ଯୋଗ କରେ- ଜଣେ ହେଉ ନା କାହିଁକି, ତା'ର ବା କ'ଣ ପ୍ରୟୋଜନ ?

ଲିୟର ଯେମିତି ପାଗଳ ହୋଇଯାଆନ୍ତି । ଏ ଅପମାନ ସହିବାର ଶକ୍ତି ଦେବାପାଇଁ ଭଗବାନ୍‌ଙ୍କୁ ଡାକନ୍ତି । କହନ୍ତି - ହେ ଈଶ୍ୱର, ଏଇ ଅସହାୟ ବୁଢ଼ାଟା ଆଡ଼େ ଥରେ ଅନାଅ । ଝିଅମାନଙ୍କୁ ଲକ୍ଷ୍ୟ କରି କହନ୍ତି ତମ ଦୁଇଜଣଙ୍କ ଉପରେ ମୁଁ ଏଭଳି ପ୍ରତିଶୋଧ ନେବି ଯେ, ସମଗ୍ର ପୃଥିବୀଟା ଥରିଯିବ । ତମେମାନେ ଭାବୁଛ, ମୁଁ କାନ୍ଦିବି, ନା ତା' କରିବି ନାହିଁ । ଯଦିଓ ସେଥିପାଇଁ ଯଥେଷ୍ଟ କାରଣ ଅଛି । ଲିୟର ଦୁର୍ଗଛାଡ଼ି ବାହାରି ଯାଆନ୍ତି, ପଛରେ ଯାଆନ୍ତି ଗ୍ଲାଉସେଷ୍ଟର, କେଣ୍ଟ ଓ ବିଦୂଷକ ।

ବାହାରେ ପ୍ରଚଣ୍ଡ ଝଡ଼ ଆରମ୍ଭ ହୋଇଯାଇଥାଏ । କର୍ଣ୍ଣୱାଲ୍ ସମସ୍ତଙ୍କୁ ଭିତରକୁ ଯିବାକୁ କହନ୍ତି । ରିଗାନ୍ ନିଜକୁ ଗ୍ଲାନିମୁକ୍ତ କରିବା ପାଇଁ ନିଜକୁ ଶୁଣାଏ—ଏତେ ଛୋଟ ଘରେ ସେ ଆଉ ତାଙ୍କ ଦଳବଳ ରହିଥାନ୍ତେ କେମିତି ?

ଗନେରିଲ୍ କହେ - ଏସବୁ ହେଉଛି ତାଙ୍କ ନିଜ ଦୋଷର ଫଳ । ମୂର୍ଖ ଭଳି ଆଚରଣ କଲେ ଫଳ ତ ଭୋଗିବାକୁ ହିଁ ପଡ଼ିବ । ରିଗାନ୍ କହେ - ମୁଁ ତାଙ୍କୁ ଖୁସିରେ ଗ୍ରହଣ କରିବି । କିନ୍ତୁ ତାଙ୍କ ଲୋକମାନଙ୍କୁ ପ୍ରଥମେ ବିଦାୟ ନେବାକୁ ପଡିବ ।

ଗନେରିଲ୍ କହେ - ମୁଁ ତ ମୂଳରୁ ସେଇ କଥା କହୁଛି ।

ଗ୍ଲାଉସେଷ୍ଟର ଫେରିଆସି କହନ୍ତି - ରାଜା ଭୀଷଣ ରାଗି ଯାଇଛନ୍ତି ।

କର୍ଣ୍ଣୱାଲ୍ ପଚାରନ୍ତି - ଏବେ ସେ ଯାଉଛନ୍ତି କେଉଁଠିକି ?

- ଘୋଡ଼ା ଆଣିବାକୁ ତ କହିଲେ । କିନ୍ତୁ କୁଆଡ଼େ ଯିବେ ଜାଣିପାରିଲି ନାହିଁ ।

କର୍ଣ୍ଣୱାଲ୍ କହନ୍ତି - ଯୁଆଡ଼େ ଯାଉଛନ୍ତି ତାଙ୍କୁ ଯିବାକୁ ଦେବାହିଁ ସବୁଠୁ ଭଲ । ଗନେରିଲ୍ ତାଙ୍କୁ ସମର୍ଥନ କରେ । ଗ୍ଲାଉସେଷ୍ଟରଙ୍କ ବିବେକ ବାଧା ଦିଏ । ସେ କହନ୍ତି, ରାତି ଆସୁଛି ଏଇ ଝଡ଼ ଭିତରେ ବୁଢ଼ା ଲୋକ ।...

ତାଙ୍କୁ ଶେଷ କରିବାକୁ ନ ଦେଇ ରିଗାନ୍ କହେ - ଦୁର୍ଗର ଦରଜା ବନ୍ଦ କରି ଦିଅନ୍ତୁ । ତାଙ୍କର ଅନେକ ଦୁର୍ଦ୍ଦାନ୍ତ ଲୋକ ଅଛନ୍ତି । କି ପରାମର୍ଶ ଦେବେ କିଏ ଜାଣେ !

॥ ୩ ॥

ଶେଷ ବୟସରେ ଲିୟରଙ୍କର ଦୁର୍ଭୋଗ ଆରମ୍ଭ ହୋଇଯାଏ । ଝଡ଼ ଭିତରେ ଶୁଖିଲା ପତ୍ରଟିଏ ଭଳି ସେ ଏଠୁ ସେଠିକି ଉଡ଼ି ବୁଲନ୍ତି । ରାତିରେ ହୁଏତ ଆଶ୍ରୟ ନିଅନ୍ତି କୌଣସି ପରିତ୍ୟକ୍ତ କୁଟୀରରେ କିମ୍ବା ଗୁମ୍ଫାରେ । ବନ୍ୟ ପଶୁମାନଙ୍କ ସାଙ୍ଗରେ । ସାଙ୍ଗରେ କେବଳ ବିଦୂଷକ । ଏଇ ଦୁର୍ଯୋଗ ଭିତରେ କେଣ୍ଟ ମଧ ତାଙ୍କଠାରୁ ବିଚ୍ଛିନ୍ନ ହୋଇ ପଡ଼ିଛନ୍ତି । ସେ ଅବଶ୍ୟ ଜଣକୁ କର୍ଡେଲିଆ ପାଖକୁ ଫ୍ରାନ୍ସ ପଠାଇଛନ୍ତି, କିଛି ଗୋଟାଏ ବ୍ୟବସ୍ଥା କରିବା ପାଇଁ । ଏତେ କଷ୍ଟ ମଧରେ କିଛି ମଜା କଥା କହି ବିଦୂଷକ ରାଜାଙ୍କର ମନକୁ ପ୍ରଫୁଲ୍ଲ ରଖିବା ପାଇଁ ଚେଷ୍ଟା କରେ । ଶେଷରେ ଗୋଟାଏ କୁଡ଼ିଆ ଘରେ କେଣ୍ଟ ଦୁଇଜଣଙ୍କୁ ଖୋଜି ବାହାର କରନ୍ତି । ରାଜା ତଥାପି ଦବି ଯାଇ ନାହାନ୍ତି । କେଣ୍ଟକୁ କହନ୍ତି, ଜୀବନର ଏହି ଅନୁଭୂତିରୁ ମୁଁ ଅନେକ କଥା ଶିଖିଲି । ତୂଳୀତଳ୍ପରୁ ଏଇ ନଡ଼ା ଗଦା ପର୍ଯ୍ୟନ୍ତ - ସବୁର ଅନୁଭବ ହୋଇଗଲା - ପ୍ରୟୋଜନରେ ଗୋଟେ ସାମାନ୍ୟ ବସ୍ତୁ ଆମ ପାଇଁ ମହା ମୂଲ୍ୟବାନ୍ ହୋଇଉଠେ, ନୁହେଁ ? ଗୋଟିଏ ସମୟରେ ନିଜ ବ୍ୟତୀତ ମୁଁ ଅନ୍ୟ କାହାରି କଥା ଭାବି ନାହିଁ । ଆଜି ମୋ ମନ ତମ ଦୁଃଖରେ ମଧ ଦୁଃଖୀ ହୋଇଉଠୁଛି ।

ଗ୍ଲାଉସେଷ୍ଟରଙ୍କ ପ୍ରାସାଦରେ ସେ ଏଡମଣ୍ଡକୁ କହନ୍ତି - ଏସବୁ ମତେ ଆଦୌ ଭଲ ଲାଗୁ ନାହିଁ । ମୁଁ ରାଜାଙ୍କର ଦାୟିତ୍ୱ ନେବାକୁ ଚାହିଁଥିଲି । କିନ୍ତୁ ମୋରି ଘରେ ବସି ସେମାନେ ମୋ ଉପରେ ହୁକୁମ୍ ଚଳାଇଲେ । କିଛି କରିବାକୁ ଦେଲେ ନାହିଁ କି କହିବାକୁ ଦେଲେ ନାହିଁ । ରାଜି ହୋଇ ଏଡମଣ୍ଡ କହେ - ହଁ ରାଜାଙ୍କ ପ୍ରତି ଖୁବ୍ ନିଷ୍ଠୁର ଆଉ ବର୍ବର ଆଚରଣ କରାଯାଇଛି । ଗ୍ଲାଉସେଷ୍ଟର କହନ୍ତି ମୋ ପାଖରେ ଖବର ଅଛି, ଡିଉକ୍‌ମାନଙ୍କ ମଧରେ ବିଭେଦ ସୃଷ୍ଟି ହୋଇଛି । ଗତ ରାତିରେ ଚିଠି ପାଇଛି । ସେ ସମ୍ପର୍କରେ ବର୍ତ୍ତମାନ କିଛି କହୁ ନାହିଁ । ତେବେ ରାଜାଙ୍କୁ ଯେଉଁ ଆଘାତ ଦିଆଗଲା, ତା'ର ମୂଲ୍ୟ ସମସ୍ତଙ୍କୁ ପରିଶୋଧ କରିବାକୁ ହେବ । ମୋତେ ମଧ ରାଜାଙ୍କ ପକ୍ଷରେ ରହି କାମ କରିବାକୁ ହେବ । ତମେ ବରଂ ଡିଉକ୍‌ଙ୍କ ସହିତ କଥାବାର୍ତ୍ତା ଚଳେଇ ଯାଅ, ଯାହା ଫଳରେ ମୁଁ ରାଜାଙ୍କୁ ଦେଖାଶୁଣା କରୁଥିବା ବ୍ୟାପାରଟା ତାଙ୍କ ଦୃଷ୍ଟିରେ ପଡ଼ିବ ନାହିଁ । ଯଦି ସେ ମୋତେ ଖୋଜନ୍ତି, କହିଦେବ ମୁଁ ଅସୁସ୍ଥ ହୋଇ ଶୋଇପଡ଼ିଛି ।

ରାଜା ମୋର ପୂର୍ବତନ ମୁନିବ, ଯାହା ହେଲେ ବି ତାଙ୍କର କଷ୍ଟ ଲାଘବ କରିବା ହେଉଛି ମୋର ନୈତିକ କର୍ତ୍ତବ୍ୟ । ଗ୍ଲାଉସେଷ୍ଟର ରାଜାଙ୍କ ଅନୁସନ୍ଧାନରେ ଚାଲିଯାଆନ୍ତି ।

ଖୋଲା ପ୍ରାନ୍ତରରେ ଥିବା ଗୋଟିଏ କୁଟୀର ସମ୍ମୁଖରେ ଲିୟର ଉପସ୍ଥିତ ହୁଅନ୍ତି । ବିଦୂଷକ ଓ କେଣ୍ଟ ମଧ୍ୟ ତାଙ୍କ ସାଥିରେ ଥାଆନ୍ତି । କେଣ୍ଟ କହନ୍ତି, ଏ ଦୁର୍ଯୋଗରୁ ବଞ୍ଚିବାକୁ ହେଲେ ରାତିଟା ଏଇଠି କଟାଇବାକୁ ହେବ । କେଣ୍ଟ ରାଜାଙ୍କୁ କୁଟୀର ଭିତରକୁ ଯିବାକୁ ଅନୁରୋଧ କରନ୍ତି । ରାଜା କହନ୍ତି, ତମେ ଭାବୁଛ ଏ ଝଡ଼ ମୋର କ୍ଷତି କରିବ, କିନ୍ତୁ ଯେଉଁଠି ବାହାରର ଆଘାତଟା ଗୁରୁତର, ସେଠି ଏମିତି ଛୋଟମୋଟ ଆଘାତରେ କିଛି ହୁଏ ନାହିଁ । ତେଣୁ ମୋର ନିଷ୍ପତ୍ତି, ରାତିଟା ମୁଁ ବାହାରେ କଟାଇବି । ନିଜ ସହ୍ୟ ଶକ୍ତିର ପରୀକ୍ଷା କରିବି । ଝିଅମାନଙ୍କର ନିଷ୍ଠୁରତା ରାଜାଙ୍କର ମନେପଡ଼େ । ସେମାନଙ୍କୁ ସରଳ ବିଶ୍ୱାସରେ ସବୁ ଦାନ କରି ଏଭଳି ନିଃସ୍ୱ ହୋଇଯିବା ଯେ ତାଙ୍କର ଏକ ଗୁରୁତର ତ୍ରୁଟି ତାହା ତାଙ୍କର ମନକୁ ଆସେ ।

କେଣ୍ଟ ରାଜାଙ୍କୁ ଭିତରକୁ ଯିବା ପାଇଁ ପୁଣି ଅନୁରୋଧ କରନ୍ତି । ରାଜା ବିଦୂଷକଙ୍କୁ କହନ୍ତି - ତମେ ଯାଇ ଭିତରେ ବିଶ୍ରାମ ନିଅ । ମୁଁ ପରେ ଶୋଇବି । ବିଦୂଷକ ଭିତରକୁ ଚାଲିଯାଆନ୍ତି । ରାଜା ଏଥର ନୂତନ ଏକ ଚିନ୍ତାରେ ଆଚ୍ଛନ୍ନ ହୋଇପଡ଼ନ୍ତି । ଯେଉଁମାନେ ଦରିଦ୍ର, ପ୍ରକୃତରେ ନିଃସ୍ୱ - ସେମାନେ ପ୍ରକୃତିର ଏଇ ତାଣ୍ଡବ ମଧ୍ୟରେ କିଭଳି ଅବସ୍ଥାରେ ଥିବେ ! ଯେଉଁମାନଙ୍କ ମୁଣ୍ଡ ଉପରେ ଛାତ ନାହିଁ, ଖାଇବାକୁ ଦାନାଟିଏ ନାହିଁ, ଏଭଳି ନିଦାରୁଣ ସମୟରେ ସେମାନେ କେମିତି ବଞ୍ଚିଥାନ୍ତି ? ଆଜିଯାଏ ମୁଁ ଏ ସବୁ ଭାବି ନ ଥିଲି । ଆଜି ନିଜେ ସେଇ ଅବସ୍ଥାରେ ପଡ଼ି ଉପଲବ୍ଧି କରୁଛି ।

କୁଟୀର ଭିତରେ ପାଗଳ ବେଶରେ ପୂର୍ବରୁ ଆଶ୍ରୟ ନେଇଥିଲା ଏଡ୍‌ଗାର୍ । ଏବେ ସେ ଟମ୍ ନାମରେ ପରିଚିତ । ତାକୁ ଦେଖି ଭୟ ପାଇଯାଇ ବିଦୂଷକ ପଳାଇ ଆସେ । କେଣ୍ଟ ଭିତରକୁ ଯାଇ ଏଡଗାରକୁ ବାହାରକୁ ଡାକି ଆଣନ୍ତି । ରାଜା ତାକୁ ପ୍ରଶ୍ନ କରନ୍ତି - ତମେ ବି କ'ଣ ମୋରି ଭଳି ଝିଅମାନଙ୍କୁ ସବୁ ଦାନ କରିଦେଇଛ ? ନ ହେଲେ ତମର ଏ ଦଶା କାହିଁକି ? ଏଡଗାର ପାଗଳ ଭଳି ଅଭିନୟ କରେ । ରାଜା ପୁଣି ନିଜ ପ୍ରଶ୍ନର ପୁନରାବୃତ୍ତି କରନ୍ତି । ବିଦୂଷକ ଉତ୍ତର ଦିଏ , ନା, ଝିଅମାନଙ୍କୁ ସବୁ ଦେଇ ନାହିଁ । କମ୍ବଳଟା ନିଜ ପାଇଁ ରଖିନେଇଛି ।

କେଣ୍ଟ କହନ୍ତି - ତା'ର କୌଣସି ଝିଅ ନାହାନ୍ତି ହଜୁର । ରାଜା ତଥାପି ଝିଅମାନଙ୍କୁ ଦୋଷ ଦେଇ ପାଗଳ ଭଳି ଏଣୁତେଣୁ ବକି ଚାଲନ୍ତି । ବୁଝାପଡ଼େ, ମାନସିକତା ଦୃଷ୍ଟିରୁ ରାଜା ସୁସ୍ଥ ନୁହନ୍ତି । ଏଡଗାରର ପାଗଳାମି ବଢ଼ିଚାଲେ । ବିଦୂଷକ କହେ - ଏଇ ଶୀତରାତି ଆମ ସମସ୍ତଙ୍କୁ ପାଗଳ କରି ଛାଡ଼ିବ । ମଶାଲଟିଏ ନେଇ ଗ୍ଲାଉସେଷ୍ଟର ପ୍ରବେଶ କରନ୍ତି ।

ଟମ ତାଙ୍କ ଆଗରେ ବି ପାଗଳ ଭଳି ଅଭିନୟ କରେ । ସେ ନିଜର ସନ୍ତାନଙ୍କୁ ଚିହ୍ନିପାରନ୍ତି ନାହିଁ । ରାଜାଙ୍କୁ କହନ୍ତି - ଆପଣ ମୋ ସହିତ ଚାଲନ୍ତୁ । ଆପଣଙ୍କ ଝିଅମାନେ କଠୋର ଆଦେଶ ଦେଇ ମୋତେ ମୋ କର୍ତ୍ତବ୍ୟ ପାଳନରୁ ବିରତ କରିପାରିବେ ନାହିଁ । ସେମାନଙ୍କ ଆଦେଶରେ ଦୁର୍ଗର ଦରଜା ବନ୍ଦ ହୋଇଛି । ଏଇ ଦୁର୍ଯୋଗ ଭିତରେ ତଥାପି ମୁଁ ଆପଣଙ୍କୁ ନେବାକୁ ଆସିଛି । ଖାଇବାକୁ ମିଳିବ, ଆଉ ଦେହକୁ ଗରମ ରଖିବାର ବ୍ୟବସ୍ଥା ଥିବ, ଏଭଳି ଏକ ଜାଗାରେ ମୁଁ ଆପଣଙ୍କୁ ରଖିବାକୁ ଚାହେଁ । ଲିୟର ତଥାପି ଅପ୍ରକୃତିସ୍ଥ - କହନ୍ତି - ଓ ଆଚ୍ଛା, ମୁଁ ତେବେ ଏଇ ଦାର୍ଶନିକଙ୍କ ସହିତ ପ୍ରଥମେ କଥା କହିନିଏଁ । କହିଲ ଦେଖି - ବଜ୍ରପାତର କାରଣ କ'ଣ ?

କେଣ୍ଟ କହନ୍ତି, ହଜୁର, ସେ ଯାହା କହୁଛନ୍ତି ଶୁଣନ୍ତୁ । ଆପଣ ତାଙ୍କ ସହିତ ଯାଆନ୍ତୁ । କିଏ କାହା କଥା ଶୁଣୁଛି ! ରାଜା ଆଉ ଏଡଗାର୍ - ଦୁହିଁଙ୍କର ପାଗଳାମି ବଢ଼ିଚାଲେ ।

ଗ୍ଲାଉସେଷ୍ଟର କହନ୍ତି - ରାଜାଙ୍କୁ କ'ଣ ଦୋଷ ଦିଆଯାଇପାରେ ? ଝିଅମାନେ ତାଙ୍କର ମୃତ୍ୟୁ କାମନା କରନ୍ତି । କେଣ୍ଟ ଜଣେ ଭଲ ଲୋକ । ସେ ନିର୍ବାସିତ । ଏତେ କଷ୍ଟ । ଏହା ଭିତରେ ମୁଁ ତ ପ୍ରାୟ ପାଗଳ ହୋଇଯିବା ଉପରେ । ମୋର ଗୋଟିଏ ପୁଅ - ସେ ବି ମୋର ଜୀବନ ନେବାକୁ ଚାହୁଁଛି । ମୁଁ ତାକୁ ଭଲ ପାଉଥିଲି । ଏ ସବୁ ପାଇଁ ମୁଁ ଏକପ୍ରକାର ଭାଙ୍ଗିପଡ଼ିଛି କହିଲେ ଚଳେ ।

ସେ ନିଜ ଚିନ୍ତାରୁ ଫେରିଆସି ନିଜ ସହିତ ଯିବା ପାଇଁ ପୁଣି ଥରେ ରାଜାଙ୍କୁ ଅନୁରୋଧ କରନ୍ତି ।

ତାଙ୍କ ପ୍ରାସାଦରେ କର୍ଣ୍ଣଓ୍ୱାଲ ଜାଣିପାରନ୍ତି ଯେ, ତାଙ୍କ ଆଦେଶ ଅବଜ୍ଞା କରି ସେ ରାଜାଙ୍କ ଅନୁସନ୍ଧାନରେ ବାହାରି ଯାଇଛନ୍ତି । କ୍ରୋଧରେ ଅଗ୍ନିଶର୍ମା ହୋଇ ସେ କହନ୍ତି - ମୁଁ ଏହାର ପ୍ରତିଶୋଧ ନିଶ୍ଚୟ ନେବି । ଗୁଣୁଗୁଣୁ ହୋଇ ଏଡ଼ମଣ୍ଡ କହେ - ପରିସ୍ଥିତି ଆଉ ପାଗକୁ ଦେଖି ହୁଏତ ସେ ଆପଣଙ୍କ କଥାକୁ—

କର୍ଣ୍ଣଓ୍ୱାଲ ଚାପା ଗଳାରେ କହନ୍ତି - ତମର ଭାଇ ଯେ ତା'ର ପିତାଙ୍କର ପ୍ରାଣ ନେବାକୁ ଚାହେଁ, ଏଇଟା ତା'ର ଦୋଷ ନୁହେଁ ବୋଲି ମୁଁ ଏବେ ବୁଝିପାରୁଛି । ଏଥିପାଇଁ ସେ ନିଜେ କିଛି କମ୍ ଦାୟୀ ନୁହନ୍ତି । କିଛି ନ ଜାଣିଥିଲା ଭଳି ଏଡ଼ମଣ୍ଡ କହେ, ନ୍ୟାୟପଥରେ ଚାଲିବାଟା ହେଉଛି ମୋର ଅପରାଧ । ଏହା ପରେ ସେ ଗୋଟାଏ ଚିଠି କର୍ଣ୍ଣଓ୍ୱାଲ୍‌ଙ୍କୁ ଦେଇ କହେ, ଏଇ ଚିଠି କଥା ସେ କହୁଥିଲେ । ଏଥିରୁ ମନେହୁଏ ସେ ଫ୍ରାନ୍ସକୁ ସାହାଯ୍ୟ କରିବାକୁ ଡାକିଛନ୍ତି । ଗଳାର ସ୍ୱର ବଦଳାଇ ସେ ପୁଣି କହେ - ମୁଁ ତ ଏସବୁର ଅର୍ଥ କିଛି ଜାଣେ ନାହିଁ । ଏ ଚିଠିର ବକ୍ତବ୍ୟ ଯଦି ଠିକ୍ ହୁଏ, ତେବେ ଆପଣଙ୍କ ପାଇଁ ଏଥର ବହୁତ ଅସୁବିଧା ହେବ । କର୍ଣ୍ଣଓ୍ୱାଲ୍ କହନ୍ତି: ସତ ମିଛ ଯାହା ହେଉନା କାହିଁକି, ଏଣିକି ତମେ ହିଁ ହେବ ଏଠାରେ ଆର୍ଲ । ତମର

ପିତାଙ୍କୁ ଖୋଜି ବାହାର କର । ତାଙ୍କର ଗୋଟାଏ ବ୍ୟବସ୍ଥା କରାଯିବ । ଏଡ଼ମଣ୍ଡ ଭାବେ, ବାବାଙ୍କୁ ଯଦି ରାଜାଙ୍କ ପାଖରେ ଦେଖିବାକୁ ମିଳେ, ତେବେ କର୍ଣ୍ଣୱାଲ୍‌ଙ୍କ ସନ୍ଦେହ ଆହୁରି ଦୃଢ଼ ହେବ । ପରିବାର ସହିତ ମୋର ସମ୍ପର୍କ ଯାହା ହେଉନା କାହିଁକି କର୍ଣ୍ଣୱାଲ୍‌ଙ୍କ ପ୍ରତି ମୋର ଆନୁଗତ୍ୟକୁ ବଜାୟ ରଖିବାକୁ ହେବ । କର୍ଣ୍ଣୱାଲ୍ ପୁଣି କହନ୍ତି - ଦେଖ ଏଡ଼ମଣ୍ଡ, ତମ ପ୍ରତି ମୋର ବିଶ୍ୱାସ ଅଛି । ତମେ ମୋ ଠାରୁ ପିତାର ସ୍ନେହ ପାଇବ ।

ଦୁର୍ଗ ବାହାରେ ଗୋଟାଏ ଛୋଟ ଘରେ ରାଜାଙ୍କର ରହିବା ବ୍ୟବସ୍ଥା କରି ସାମନ୍ତ କହନ୍ତି, ଅନ୍ତତଃ ଖୋଲା ଆକାଶ ତଳେ ରହିବାଠାରୁ ଏ ବ୍ୟବସ୍ଥା ଭଲ ହେଲା । ରାଜାଙ୍କର ଆରାମ ପାଇଁ ଯାହା କରାଯିବା କଥା ମୁଁ କରିବି । କେଣ୍ଟ କହନ୍ତି, ଈଶ୍ୱର ଆପଣଙ୍କର ଏଇ ଉଦାରତାର ପୁରସ୍କାର ଦେବେ । ସାମନ୍ତ ସେତେବେଳେ ଚାଲିଗଲେ ମଧ୍ୟ ଟିକିଏ ପରେ ପୁଣି ଫେରିଆସନ୍ତି । କେଣ୍ଟଙ୍କୁ କହନ୍ତି - ତମେ ତାଙ୍କୁ ନେଇଆସ । ମୁଁ ଶୁଣିଛି, ତାଙ୍କର ପ୍ରାଣନାଶର ଚେଷ୍ଟା ହେଉଛି । ମୁଁ ବ୍ୟବସ୍ଥା କରିଦେଉଛି । ତାଙ୍କୁ ନେଇ ଡୋଭାର ଚାଲିଯାଅ । ସେଠାରେ ଆଦର ଆଉ ନିରାପତ୍ତା ଉଭୟ ମିଳିବ । ଆଉ ଅଧଘଣ୍ଟା ବିଳମ୍ବ ହୋଇଗଲେ, ତାହା ଦ୍ୱାରା ରାଜାଙ୍କର ଆଉ ତା'ସହିତ ଯେଉଁମାନେ ତାଙ୍କୁ ସାହାଯ୍ୟ କରୁଛନ୍ତି, ସେମାନଙ୍କର ପ୍ରାଣ ବିପନ୍ନ ହେବ । କେଣ୍ଟ ଆଉ ବିଦୂଷକ ରାଜାଙ୍କୁ ଧରାଧରି କରି ନେଇଆସନ୍ତି । ଏଡ୍‌ଗାର ମନ୍ତବ୍ୟ କରେ, ଦୁଃଖ ବାଣ୍ଟିଦେଲେ ତାହା ହାଲ୍‌କା ହୋଇଯାଏ । ଯିଏ ଏକାକୀ ଦୁଃଖ ଭୋଗେ, ତା'ର ମନ ପ୍ରତି ମୁହୂର୍ତ୍ତରେ କ୍ଷତବିକ୍ଷତ ହେଉଥାଏ । ଆଜି ମୋ ଦୁଃଖର ଜଣେ ସମଦରଦୀ ପାଇ କଷ୍ଟ ଆଉ ଏତେ ଯନ୍ତ୍ରଣାଦାୟକ ମନେ ହେଉ ନାହିଁ ।

ଗ୍ଲାଉସେଷ୍ଟର ଦୁର୍ଗରେ ସେତେବେଳେ ସରଗରମ ଆଲୋଚ଼ନା ଚାଲିଛି । କର୍ଣ୍ଣୱାଲ ଗନେରିଲ୍‌କୁ ଦ୍ରୁତ ଏକ ଚିଠି ଲେଖିବାକୁ କହନ୍ତି । ଫ୍ରାନ୍ସର ସୈନ୍ୟବାହିନୀ ଇତିମଧ୍ୟରେ ଇଂଲଣ୍ଡ ମାଟିରେ ପାଦ ଦେଇସାରିଲେଣି । ବିଶ୍ୱାସଘାତକ ସାମନ୍ତକୁ ଖୋଜିବାହାର କରିବାକୁ ପଡ଼ିବ । ରିଗାନ୍ କହେ - ସେ ଲୋକଟାକୁ ଏଇ ମୁହୂର୍ତ୍ତରେ ଫାଶୀ ଦେଇଦେବା ଉଚ଼ିତ । ଗନେରିଲ୍ ଆଉ ପାଦେ ଯାଇ ତା'ର ଆଖିଦୁଇଟା ଉପାଡ଼ି ନେବାର ବ୍ୟବସ୍ଥା ଦେଇଦିଏ ।

କର୍ଣ୍ଣୱାଲ୍ କହନ୍ତି - ସେ ଦାୟିତ୍ୱ ତମେ ମୋ ଉପରେ ଛାଡ଼ିଦିଅ । ଏଡ଼ମଣ୍ଡ ବରଂ ଅପାଙ୍କ ପାଖରେ ରହୁ । ତା'ର ପିତାଙ୍କୁ ଆମେ ଯେଉଁ ଶାସ୍ତି ଦେବୁ, ସେଇଟା ତା'ର ଦେଖିବା ଉଚ଼ିତ ନୁହେଁ । ଅସୱାଲ୍ଡ ଆସି ଜଣାଏ ଯେ ସାମନ୍ତ ଧରାପଡ଼ିଛନ୍ତି । ତାଙ୍କଠୁଁ ଖବର ମିଳିଛି ରାଜା କିଛି ଲୋକଙ୍କୁ ନେଇ ଡୋଭାର ଯାତ୍ରା କରିଛନ୍ତି । ସେଠି ତାଙ୍କର ବନ୍ଧୁର ଅଭାବ ହେବେ ନାହିଁ ।

କର୍ଣ୍ଣୱାଲ୍‌ଙ୍କ ଆଦେଶରେ ସାମନ୍ତ ଅଣାଯା'ନ୍ତି । ରିଗାନ୍ ତାଙ୍କୁ ଇତର ଭାଷାରେ ଭର୍ତ୍ସନା କରେ । କର୍ଣ୍ଣୱାଲ୍ ତାଙ୍କୁ ବାନ୍ଧି ପକାଇବାକୁ ଆଦେଶ ଦିଅନ୍ତି । ସାମନ୍ତ କେବଳ କହନ୍ତି - ଆପଣମାନେ ସମସ୍ତେ ମୋର ଅତିଥି-ବନ୍ଧୁ । ମୋ ଉପରେ ନିଶ୍ଚୟ କୌଣସି ଅନ୍ୟାୟ କରିବାକୁ ଯାଉ ନାହାନ୍ତି ।

କର୍ଣ୍ଣୱାଲ୍ ତାଙ୍କୁ ଆହୁରି ଶକ୍ତଭାବେ ବାନ୍ଧିବାର ନିର୍ଦ୍ଦେଶ ଦିଅନ୍ତି । ରିଗାନ୍ ତାଙ୍କର ଦାଢ଼ି ଉପାଡ଼ିବାରେ ଲାଗିଯାଏ । ସାମନ୍ତ ଚିତ୍କାର କରିଉଠନ୍ତି । ଏଭଳି କାର୍ଯ୍ୟର ମୃଦୁ ପ୍ରତିବାଦ ମଧ୍ୟ କରନ୍ତି ।

ରିଗାନ୍ କହେ - ଦାଢ଼ି ତ ଶୁଭ୍ରବର୍ଣ୍ଣ, ପବିତ୍ରତାର ସୂଚକ; ମାତ୍ର ଲୋକଟା ବିଶ୍ୱାସଘାତକତାର ମୂର୍ତ୍ତିମାନ୍ ଅବତାର ।

ସାମନ୍ତଙ୍କ ରସବୋଧ ତଥାପି ଅତୁଟ । ସେ କହନ୍ତି - ଦୁଷ୍ଟ ଝିଅ, ତମେ ମୋର ଯେତେକ ଦାଢ଼ି ଉପାଡୁଛ, ସେ ସବୁତ ପୁଣି ଉଠିଯିବ । ତମଆଡ଼କୁ ଅନାଇ ମୁରୁକି ହସିବ । ପୁଣି ମୋତେ ଏମିତି ବାନ୍ଧି ରଖିଲେ, ତମମାନଙ୍କର ଯତ୍ନ କିଏ ନେବ ?

କର୍ଣ୍ଣୱାଲ୍ ଜେରା ଆରମ୍ଭ କରନ୍ତି । ପଚାରନ୍ତି - ଏଥର କହନ୍ତୁ, ଫ୍ରାନ୍ସରୁ ଆପଣ କି ଚିଠି ପାଇଛନ୍ତି ? ବାହାରୁ ଯେଉଁ ବିଶ୍ୱାସଘାତକଦଳ ଆସିଛନ୍ତି, ସେମାନଙ୍କ ସହିତ ଆପଣଙ୍କର ସମ୍ପର୍କ କ'ଣ ? ଆପଣ କାହା ପାଖକୁ ଏଇ ବଦ୍ଧ ଉନ୍ମାଦ ରାଜାକୁ ପଠାଇଛନ୍ତି ?

ରାଜାଙ୍କୁ ଡୋଭାର ପଠାଯାଇଛି ଶୁଣି କର୍ଣ୍ଣୱାଲ୍ ଓ ରିଗାନ୍ ଦୁହେଁ ଏହାର କାରଣ ଜାଣିବାକୁ ଚାହାନ୍ତି ।

ସାମନ୍ତ ନିର୍ଭୀକ ଭାବରେ ଉତ୍ତର ଦିଅନ୍ତି - ସେଠାରେ ତାଙ୍କର ବାର୍ଦ୍ଧକ୍ୟର ଶେଷ ସହାୟ, ଆଖି ଦୁଇଟା ଉପାଡ଼ିନେବା ପାଇଁ ତମମାନଙ୍କ ଭଳି ନିଷ୍ଠୁର ନଖ ନାହିଁ ବୋଲି ।

ରିଗାନ୍ କହେ - ବଦଳରେ ମୁଁ ତମର ଆଖିଦୁଇଟା ଏଇଠି ଉପାଡ଼ିନେବି । ସାମନ୍ତ ସାହାଯ୍ୟ ପାଇଁ ଚିତ୍କାର କରନ୍ତି । ତାଙ୍କର ଜଣେ ଭୃତ୍ୟ ଏଇ ଅମାନୁଷିକ କାର୍ଯ୍ୟରେ ବାଧାଦିଏ । ତା'ର ତରବାରିର ଆଘାତରେ କର୍ଣ୍ଣୱାଲ୍ ଗୁରୁତର ଭାବରେ ଆହତ ହୁଅନ୍ତି । ପରବର୍ତ୍ତୀ କାଳରେ ଏହାହିଁ ହୁଏ ତାଙ୍କର ମୃତ୍ୟୁର କାରଣ । କିନ୍ତୁ ଏ ଭିତରେ କର୍ଣ୍ଣୱାଲ୍‌ଙ୍କ ତରବାରି ଟାଣିଆଣି ରିଗାନ୍ ପଛଆଡୁ ଆଘାତ କରି ସେଇ ଭୃତ୍ୟକୁ ହତ୍ୟା କରେ । ତା'ପରେ ସାମନ୍ତଙ୍କର ଦୁଇଟିଯାକ ଆଖିକୁ ଉପାଡ଼ି ଦିଆଯାଏ । ତାଙ୍କ ଆଗରେ ନଇଁଆସେ ଅନ୍ଧାର । ସେ ଏଡ଼ମଣ୍ଡକୁ ଖୋଜନ୍ତି । ରିଗାନ୍ କହେ - ସେ ତମକୁ ଘୃଣା କରେ । ସେଇ ତ ତମର ବିଶ୍ୱାସଘାତକତାର ସମ୍ବାଦ ଆମକୁ ଦେଇଛି । ତମ ପ୍ରତି ତା'ର ଟିକିଏ ହେଲେ ବି କରୁଣା ନାହିଁ ।

ଏ ମର୍ମନ୍ତୁଦ ତଥ୍ୟ ପାଇ ସାମନ୍ତ ସ୍ତବ୍ଧ ହୋଇଯାଆନ୍ତି । ଚିନ୍ତା କରନ୍ତି, ଓଃ କି ମୂର୍ଖ ମୁଁ । ଭଲ ଭାବରେ ଅନୁସନ୍ଧାନ ନ କରି ମୁଁ ଏଡ୍‌ଗାର ପ୍ରତି ଅନ୍ୟାୟ କରିଛି । ଈଶ୍ୱର ମୋତେ କ୍ଷମା କରନ୍ତୁ ।

ରିଗାନ୍ ଭୃତ୍ୟମାନଙ୍କୁ ଆଦେଶ ଦିଏ, ଏଥର ଏଇ ବୁଢ଼ାଟାକୁ ଦୁର୍ଗରୁ ବାହାର କରିଦିଅ । ଗନ୍ଧ ବାରି ବାରି ସେ ଯଦି ଡୋଭାର ପର୍ଯ୍ୟନ୍ତ ଯାଇପାରେ ତ ଯାଉ ।

॥ ୪ ॥

ଜଣେ ବୃଦ୍ଧ ଗ୍ରାମବାସୀଙ୍କର ସାହାଯ୍ୟରେ ସାମନ୍ତ ବାଟ ଚାଲନ୍ତି । ବାରମ୍ବାର ତାଙ୍କ ମନକୁ ଏଡ଼ଗାରର ଚିନ୍ତା ଆସୁଥାଏ । ତାଙ୍କର ଅହେତୁକ କ୍ରୋଧର ଶରବ୍ୟ ହୋଇ ପିଲାଟା ଏବେ କେଉଁଠି କି ଅବସ୍ଥାରେ ଥିବ କିଏ ଜାଣେ ! ଆଉ କ'ଣ ଜୀବନରେ ସେ ତା'ର ମମତାମୟ ସ୍ପର୍ଶ ପାଇପାରିବେ ? ତାକୁ ପାଇ କ'ଣ କହିବାର ସୁଯୋଗ ପାଇବେ ଯେ, ସେ ତାଙ୍କର ଆଖି ଫେରିପାଇଛନ୍ତି ! ଆଗରେ କିଏ ଜଣେ ଠିଆ ହୋଇଥିବାର ଅନୁଭବ କରି ସାମନ୍ତ ପଚାରନ୍ତି, ସେ କ'ଣ ଭିକାରି ?

ଉତ୍ତର ମିଳେ - ଭିକାରି ବି ଆଉ ପାଗଳ ବି ।

ସାମନ୍ତ କହନ୍ତି - ଗତରାତିରେ ମୋର ଏହିଭଳି ଜଣକ ସାଙ୍ଗରେ ଦେଖାହୋଇଥିଲା । ତାକୁ ଦେଖି ମୋ ପୁଅକଥା ହଠାତ୍ ମନେ ପଡ଼ିଯାଇଥିଲା । ତାକୁ ଟିକିଏ ଏଠିକି ଡାକିଲ । ହୁଏତ ଡୋଭାର ଯିବାପାଇଁ ସେ ମୋତେ ସାହାଯ୍ୟ କରିପାରେ ।

ବୃଦ୍ଧ କହେ - ପାଗଳାଟାଠାରୁ କି ସାହାଯ୍ୟ ଆପଣ ପାଇବେ ?

ସାମନ୍ତ କହନ୍ତି - ସମୟ ଯେତେବେଳେ ଖରାପ ପଡ଼େ, ସେତେବେଳେ ପାଗଳ ଅନ୍ଧକୁ ବାଟ ଦେଖାଏ । ମୋ କଥା ମାନି ତାକୁ ଡାକ । ତା'ପରେ ଯାହା ହେବାର ହେବ ।

ଟମ୍‌ବେଶୀ ଏଡ଼୍‌ଗାର ଆସେ । ସାମନ୍ତ ତାକୁ ପ୍ରଶ୍ନ କରନ୍ତି - ତମେ କ'ଣ ଡୋଭାର୍‌କୁ ବାଟ ଦେଖିଛ ? ଟମ୍‌ଠାରୁ ଉତ୍ତର ଆସେ - ହଁ, ଦରଜା, ଘୋଡ଼ା, ଫୁଟପାଥ୍, ସବୁ ଚିହ୍ନେ ।

ଟଙ୍କା ଥଳିଟିଏ ତାକୁ ଦେଇ ସାମନ୍ତ କହନ୍ତି - ଏଇଟାକୁ ରଖ । ମୁଁ ନିଜେ ହତଭାଗ୍ୟ । ତଥାପି ତମକୁ ଖୁସି କରିବାକୁ ଚାହେଁ । ଆଚ୍ଛା, ଆମ ସମ୍ପଦର ସମବଣ୍ଟନର ବ୍ୟବସ୍ଥା କ'ଣ ସମ୍ଭବ ନୁହେଁ ? କାହାରି ପାଖରେ ଅତିରିକ୍ତ କିଛି ରହନ୍ତା ନାହିଁ । ପ୍ରତ୍ୟେକଙ୍କ ପାଖରେ ଯଥେଷ୍ଟ ଥାଆନ୍ତା ! ତମେ ଡୋଭାର୍ ଦେଖିଛ ତ, ମୋତେ ସେଇଠିକି ନେଇଚାଲ । ବାଟରେ ଗୋଟାଏ ତୀଖ ପାହାଡ଼ ପଡ଼ିବ । ମୋତେ ସେଇଯାଏ ନେଇ ଛାଡ଼ିଦିଅ । ତା'ପରେ ଆଉ ତମ ସାହାଯ୍ୟ ଆବଶ୍ୟକ ହେବ ନାହିଁ । ତମର ଯାହା କ୍ଷତି ହେବ, ମୁଁ ପୂରଣ କରିଦେବି ।

ଏଡ଼୍‌ଗାର କହେ - ଠିକ୍ ଅଛି । ମୋ ହାତ ଧରନ୍ତୁ, ଟମ୍ ଆପଣଙ୍କୁ ଯଥାସ୍ଥାନରେ ନେଇ ପହଞ୍ଚାଇ ଦେବ ।

ଦୁହେଁ ବାଟ ଚାଲିବାକୁ ଆରମ୍ଭ କରନ୍ତି ।

ଆଲ୍‌ବେନିଙ୍କ ପ୍ରାସାଦକୁ ଆସିଛନ୍ତି ଗନେରିଲ୍ ଏବଂ ଏଡ୍‌ମଣ୍ଡ । ଅସଓ୍ୱାଲ୍ଡ କୁ ଦେଖି ଗନେରିଲ୍ ଆଲ୍‌ବେନିର ଡ୍ୟୁକ୍‌ଙ୍କର ସନ୍ଧାନ କରନ୍ତି । ତା'ର ଉତ୍ତର ନ ଦେଇ ଅସଓ୍ୱାଲ୍ଡ ଆଲ୍‌ବେନିଙ୍କର ସ୍ୱଭାବ ପରିବର୍ତ୍ତନ ସମ୍ପର୍କରେ ବିବରଣୀ ଦେବାକୁ ଆରମ୍ଭ କରେ । କହେ - ମାଡାମ୍, ସେ ସମ୍ପୂର୍ଣ୍ଣ ବଦଳିଯାଇଛନ୍ତି । ଫ୍ରାନ୍ସର ସୈନ୍ୟ ଇଂଲଣ୍ଡରେ ପହଞ୍ଚିଯାଇଥିବା କଥା ମୁଁ ତାଙ୍କୁ କହେ । ସେ ଖାଲି ହସିଦିଅନ୍ତି । ଆପଣ ଆସୁଥିବା କଥା ବି ମୁଁ ତାଙ୍କୁ କହିଛି । କହିଲେ - ଖୁବ୍ ଖରାପ କଥା । ସାମନ୍ତଙ୍କ ବିଶ୍ୱାସଘାତକତା ଓ ତାଙ୍କ ପୁଅର ଆନୁଗତ୍ୟ କଥା ଶୁଣି ସେ ମୋତେ ମାତାଲ କହିଲେ । ଯାହା ତାଙ୍କୁ ଭଲ ଲାଗିବାର କଥା, ତା'ଶୁଣି ସେ ଦୁଃଖିତ ହେଉଛନ୍ତି, ପୁଣି ଯାହା ତାଙ୍କୁ ଖରାପ ଲାଗିବା କଥା, ତାହା ଶୁଣି ଆନନ୍ଦ ପ୍ରକାଶ କରୁଛନ୍ତି ।

ଗନେରିଲ୍ ଏ ସବୁ ଶୁଣି ଏଡ୍‌ମଣ୍ଡକୁ କହେ - ତମେ ତେବେ ଆଉ ଏଠି ନ ରହି କର୍ଣ୍ଣଓ୍ୱାଲ ପାଖକୁ ଫେରିଯାଅ । ଏଠାର କଥା ମୁଁ ସମ୍ଭାଳିନେବି ।

-ଆପଣ ଏକା ଏ ବିପଦ ଭିତରେ ରହିବେ ? ଏଡ୍‌ମଣ୍ଡ ପ୍ରତିବାଦ କରେ । ତେବେ ଗନେରିଲ୍ ତା'କଥା ମାନେ ନାହିଁ । ଅଗତ୍ୟା ତାକୁ ବିଦାୟ ନେବାକୁ ହୁଏ । ତା'ଯିବା ବାଟକୁ ଅନାଇ ଗନେରିଲ୍ ମନେ ମନେ କହେ - ଏଡ୍‌ମଣ୍ଡ, ବର୍ତ୍ତମାନ ତମର ଦରକାର ତମକୁ ଭଲପାଉଥିବା ଜଣେ ମଣିଷ ।

ଆସିବା ମାତ୍ରେ ଆଲ୍‌ବେନି ଗନେରିଲ୍‌କୁ ତୀବ୍ର ଆକ୍ରମଣ କରନ୍ତି । ଏଭଳି ନିଷ୍ଠୁରତା ଯେ ତା'ଠାରେ ଶୋଭାପାଉ ନାହିଁ, ଏ କଥା ଜଣାଇ ଦିଅନ୍ତି ।

ଗନେରିଲ୍ କହେ - ଏ ସବୁ କ'ଣ କହୁଛ !

ଆଲ୍‌ବେନି କହିଚାଲନ୍ତି - ମନ୍ଦ ଲୋକକୁ ଭଲଟା ବି ମନ୍ଦ ଲାଗେ । ତମେ ସବୁ ନାରୀ ନୁହଁ, ଗୋଟିଏ ଗୋଟିଏ ହିଂସ୍ର ବାଘ - ବୃଦ୍ଧ ପିତା - ଯାହାଙ୍କର ସ୍ନେହ ପାଇବାପାଇଁ ବୁଦ୍ଧିହୀନ ଭାଲୁଟା ବି ଲାଳାୟିତ - ତମର ବର୍ବର ବ୍ୟବହାର ଆଜି ତାଙ୍କୁ ପାଗଳ କରିଦେଇଛି । ଭାବିଛ, ଈଶ୍ୱର ତମମାନଙ୍କୁ କ୍ଷମା ଦେବେ ? ସେ ସବୁ ଦେଖୁଛନ୍ତି - ଠିକ୍ ସମୟରେ ତମମାନଙ୍କର ବ୍ୟବସ୍ଥା କରିବେ ।

ବ୍ୟଙ୍ଗପୂର୍ଣ୍ଣ କଣ୍ଠରେ ଗନେରିଲ୍ କହେ - ମନେ ହେଉଛି, ଗୋଟାଏ ଘୁଷି ଖାଇବାପାଇଁ ତମେ ପ୍ରସ୍ତୁତ ହୋଇଆସିଛ ! ଏକମାତ୍ର ନିର୍ବୋଧମାନେ ହିଁ ସଇତାନ୍‌ମାନଙ୍କୁ ଦୟା ଦେଖାନ୍ତି । ସେମାନଙ୍କୁ ଶାସ୍ତି ନ ଦେଲେ, ସେମାନେ ସଇତାନୀ କରିପାରନ୍ତେ । ଫ୍ରାନ୍ସର ସୈନ୍ୟ ଏଇ ଦେଶର ଶାନ୍ତିଭଙ୍ଗ କରିବାକୁ ଆକ୍ରମଣ କରିଛନ୍ତି, ଆଉ ତମେ ତମର ଆଦର୍ଶ ନେଇ ନୀରବ ରହିଛ...ବାଃ....

ଆଲବେନି ଆଜି ଯେମିତି ସବୁ ଦ୍ୱିଧା ତ୍ୟାଗ କରିଛନ୍ତି । କହନ୍ତି – ପ୍ରଥମେ ନିଜଆଡ଼କୁ ଅନାଅ, ଝିଅମାନେ ଯେତେବେଳେ ଖରାପ ହୋଇଯାଆନ୍ତି, ସଇତାନ୍ ମଧ ତାଙ୍କ ସହିତ ପାରିଉଠେ ନାହିଁ । ଗନେରିଲ୍ ଦୁଃଖ କରି କହେ... ଓଃ କି ମୂର୍ଖ !!

ଦୁହିଁଙ୍କ ମଧରେ ବାକ୍‌ବିତଣ୍ଡା ଚାଲିଥାଏ । ଏହି ସମୟରେ ଜଣେ ଦୂତ ଆସି ଖବର ଦିଏ, ପୂର୍ବରୁ ଆହତ କର୍ଣ୍ଣଓ୍ୱାଲଙ୍କର ମୃତ୍ୟୁ ହୋଇଯାଇଛି । ଆଲ୍‌ବେନି କହନ୍ତି – ଏଥିରୁ ପ୍ରମାଣିତ ହେଉଛି ଯେ, ଉପରେ ବସିଥିବା ଲୋକଟି ସବୁ ଦେଖୁଛି, ସବୁ ଜାଣୁଛି । ଅପରାଧର ବିଚାର ମଧ କରୁଛି । ଡ୍ୟୁକ୍‌ଙ୍କ ପ୍ରଶ୍ନର ଉତ୍ତରରେ ଦୂତ ଜଣାଏ – ଗ୍ଲାଉସେଷ୍ଟର ତାଙ୍କର ଆଖି ହରାଇଛନ୍ତି । ଗନେରିଲ୍‌କୁ ରିଗାନ୍ ଲେଖିଥିବା ଚିଠି ଦେଇ କହେ ଯେ, ଏହାର ଉତ୍ତର ଶୀଘ୍ର ଦେବାକୁ ହେବ । ଗନେରିଲ୍ ମନରେ ସନ୍ଦେହ – ରିଗାନ୍ ଏବେ ବିଧବା...ଆଉ ପୁଣି ଏଡ଼୍‌ମଣ୍ଡ ସେଇଠି ଅଛି...ସେ ଚିଠି ପଢ଼ିବାକୁ ଭିତରକୁ ଚାଲିଯାଏ ।

ଆଲବେନି ଦୂତକୁ ପଚାରନ୍ତି – ଯେତେବେଳେ ସାମନ୍ତଙ୍କ ଆଖି ଖୋଳା ଯାଉଥିଲା, ସେତେବେଳେ ଏଡ଼୍‌ମଣ୍ଡ କେଉଁଠି ଥିଲା ? ଦୂତ ଉତ୍ତର ଦିଏ ଯେ, ସେ ସେତେବେଳେ ଗନେରିଲ୍ ସହିତ ଏଇଠି ଥିଲା । ପୁଣି ଫେରିଯାଇଛି ।

ଆଲ୍‌ବେନି ପୁଣି ପ୍ରଶ୍ନ କରନ୍ତି – ସେ କ'ଣ ଏଇ ସବୁ ବଦ୍‌ମାସୀର ଖବର ଜାଣେ ? ଦୂତ କହେ – ସବୁ କଥା ତାକୁ ଭଲଭାବରେ ଜଣା । ସେ ହିଁ ତା'ର ପିତାଙ୍କ ବିରୋଧରେ ସବୁ ଖବର କର୍ଣ୍ଣଓ୍ୱାଲଙ୍କୁ ଦେଇଛି ଏବଂ ତାଙ୍କର ଉତ୍ତମ ଶାସ୍ତିର ବ୍ୟବସ୍ଥା କରିସାରିବା ପରେ ଘର ଛାଡ଼ିଛି ।

ଆଲ୍‌ବେନି ନିଜର କ୍ଷତି ସତ୍ତ୍ୱେ ଯାହା କରିଛନ୍ତି, ସେଥିପାଇଁ ମନେ ମନେ ଈଶ୍ୱରଙ୍କୁ ଧନ୍ୟବାଦ ଦିଅନ୍ତି ଏବଂ ଦୂତଠାରୁ ଅନ୍ୟ ଖବର ସବୁ ସଂଗ୍ରହ କରନ୍ତି ।

ଡୋଭାର୍‌ରେ ଫ୍ରାନ୍ସ ସେନାବାହିନୀର ଶିବିର ପଡ଼ିଛି, କିନ୍ତୁ ବିଶେଷ କାର୍ଯ୍ୟ ଉପଲକ୍ଷେ ଫ୍ରାନ୍ସର ରାଜାଙ୍କୁ ନିଜ ଦେଶକୁ ଫେରିଯିବାକୁ ହୋଇଛି । ବର୍ତ୍ତମାନ ସୈନ୍ୟ ପରିଚାଳନାର ଦାୟିତ୍ୱ ପଡ଼ିଛି ଜଣେ ମାର୍ଶାଲ୍‌ଙ୍କ ଉପରେ । କେଣ୍ଟଙ୍କ ପାଖରୁ ଚିଠି ନେଇ ଯିଏ କର୍ଡ଼େଲିଆ ପାଖକୁ ଯାଇଥିଲେ, ସେ ଫେରିଆସି କେଣ୍ଟଙ୍କ ନିକଟରେ କର୍ଡ଼େଲିଆର ପ୍ରତିକ୍ରିୟା ସମ୍ପର୍କରେ ବର୍ଣ୍ଣନା କରୁଥିଲେ । ଚିଠି ପଢ଼ି କର୍ଡ଼େଲିଆର ଆଖିରୁ କିଭଳି ଲୁହ ଝରିପଡୁଥାଏ ଏବଂ ତଥାପି ତା'ର ବ୍ୟକ୍ତିତ୍ୱରେ ଆବେଗ ଅପେକ୍ଷା ବିଦ୍ରୋହର ଲକ୍ଷଣ କିଭଳି ସ୍ପଷ୍ଟ ହେଉଥାଏ, ତାହା ସେ କହିଯାଆନ୍ତି । ଧୈର୍ଯ୍ୟ ଏବଂ ଦୁଃଖ ଯୁଗପତ୍ ତାଙ୍କଠାରେ ପ୍ରକାଶିତ ହେଉଥାଏ ।

କେଣ୍ଟ ଜାଣିବାକୁ ଚାହାନ୍ତି – ସେ କ'ଣ କୌଣସି ପ୍ରଶ୍ନ କରିଥିଲେ ?

–ଦୁଇ ତିନିଥର 'ବାବା' ବୋଲି ଉଚ୍ଚାରଣ କରି ଭଉଣୀମାନଙ୍କୁ 'ନାରୀ ଜାତିର ଲଜ୍ଜା' ବୋଲି ଆକ୍ଷେପ କରିଥିଲେ । ଖଣ୍ଡ ଖଣ୍ଡ କରି ଆଉ କିଛି କଥା ମଧ ସେ କହିଲେ । ଆଖିରୁ

ସେମିତି ଲୁହଧାର ଗଡ଼ିଚାଲିଥାଏ । ତା'ପରେ ସେ ନୀରବ ହୋଇଗଲେ । ମନକଥା ମନରେ ରହିଗଲା ।

ଲିୟର୍ ଡୋଭର୍‌ରେ ପହଞ୍ଚିବା ବିଷୟ କେଣ୍ଟ କହନ୍ତି । କେତେବେଳେ ଟିକିଏ ଭଲ ଥିଲେ ପୁରୁଣାଦିନର କଥା ସବୁ ମନେ ପକାଉଛନ୍ତି । ତେବେ ଝିଅ ସହିତ ଦେଖାକରିବା ପାଇଁ ଆଦୌ ରାଜି ନୁହନ୍ତି । ଏବେବି ଲଜ୍ଜା ତାଙ୍କ ମନରେ ସ୍ଥାୟୀ ଭାବରେ ଆସନ ମାଡ଼ି ବସିଛି । ତା'ସହିତ ପୁଣି ମିଶିଛି ଅପରାଧ ବୋଧର ଯନ୍ତ୍ରଣା । ସେ ତାଙ୍କୁ ରାଜାଙ୍କ ପାଖକୁ ନେଇଯିବେ । ବର୍ତ୍ତମାନ କେତେଦିନ ପାଇଁ ସେ ରାଜାଙ୍କର ଦେଖାଶୁଣା କରିପାରିଲେ ଭଲ ହେବ ।

ଫରାସୀ ଶିବିରରେ କର୍ଡ଼େଲିଆ ଶୁଣିଛି ଯେ, ବାବା ଏଇ ସହରରେ ଅଛନ୍ତି । ସେ ତାଙ୍କ ସହିତ ଦେଖାକରିବା ପାଇଁ ଆଗ୍ରହୀ । ଜଣେ ଅଫିସରଙ୍କୁ ସେ ଆଦେଶ ଦିଏ, ଚାରିଆଡ଼ ଖୋଜାଖୋଜି କରି ଯେମିତି ହେଲେ ରାଜାଙ୍କୁ ତା'ନିକଟରେ ଉପସ୍ଥିତ କରାଯାଉ । ସବୁକିଛିର ବିନିମୟରେ ସେ ଯେମିତି ହେଲେ ବାବାଙ୍କୁ ସୁସ୍ଥ କରିବ । ଚିକିତ୍ସକ ତା'ର ବାଟ ଅଛି ବୋଲି କହିଛନ୍ତି । ବର୍ତ୍ତମାନ ତାଙ୍କର ପ୍ରୟୋଜନ ସେବା ଆଉ ସ୍ନେହ । ସେଇଥିରେ ସେ ପୁରୁଣା ଦୁଃଖ ଭୁଲିବେ । କର୍ଡ଼େଲିଆ କହେ - ମୁଁ ମୋର ସର୍ବସ୍ୱ ବଦଳରେ ସେଇ ସତ୍ ମଣିଷଟାର ଯନ୍ତ୍ରଣା ଦୂର କରିବା ନିମନ୍ତେ ଚେଷ୍ଟା କରିବି ।

ଦୂତ ଆସି କହେ - ଇଂରେଜ ସୈନ୍ୟ ଡୋଭର୍ ଆଡ଼କୁ ଅଗ୍ରସର ହେଉଛନ୍ତି । କର୍ଡେଲିଆ କହେ - ଆମ ସୈନ୍ୟ ମଧ ପ୍ରସ୍ତୁତ । ତା' ପରେ ବଡ଼ ଦୁଃଖରେ କହେ - ବାବା, ଯାହା ଆପଣଙ୍କର କରିବା କଥା, ତା' ବର୍ତ୍ତମାନ ମୋତେ କରିବାକୁ ହେଉଛି । ମୋର କିନ୍ତୁ କୌଣସି ରାଜନୀତିକ ଉଦ୍ଦେଶ୍ୟ ନାହିଁ । ବୃଦ୍ଧ ପିତାଙ୍କର ସମ୍ମାନ ରକ୍ଷା ଆଉ ତାଙ୍କ ପ୍ରତି ସ୍ନେହ ହିଁ ମୋତେ ଏ ଯୁଦ୍ଧ ଭିତରକୁ ଟାଣି ଆଣିଛି । ନିଶ୍ଚୟ ଆପଣଙ୍କ ସହିତ ଶୀଘ୍ର ମୋର ଦେଖା ହେବ ।

ଅସୱାଲ୍‌ଡ୍ ହାତରେ ଏଡ୍‌ମଣ୍ଡ ପାଖକୁ ଚିଠି ପଠାଇଛି ଗନେରିଲ୍ । ସେ ତାକୁ ଗ୍ଲାଉସେଷ୍ଟର ଦୁର୍ଗରେ ଖୋଜେ, କିନ୍ତୁ ସେ ଅନୁପସ୍ଥିତ ଥାଏ । ରିଗାନ୍ ମନରେ ଈର୍ଷା- ଏଡ଼ମଣ୍ଡକୁ ଲେଖିବାର ଅଧିକାର ଗନେରିଲ୍‌ର ଆସିଲା କୁଆଡୁ ? ପାଟିରେ ବି ତ ଖବର ଆସିପାରି ଥାଆନ୍ତା । ଅସୱାଲ୍‌ଡ୍‌କୁ ଖୁବ୍ ପ୍ରଶଂସା କରି ରିଗାନ୍ ତା' ପାଖରୁ ଗନେରିଲ୍‌ର ଚିଠିଟି ଦେଖିବାକୁ ଚାହେଁ ।

ଅସୱାଲ୍‌ଡ୍ ଆପତ୍ତି କରିବାରୁ ରିଗାନ୍ ତାକୁ କହେ, ତମର ମୁନିବାଣୀ ଯେ ତାଙ୍କର ସ୍ୱାମୀଙ୍କୁ ଭଲ ପାଆନ୍ତି ନାହିଁ, ଏହା ମୁଁ ଜାଣେ । ତାଙ୍କର ଚାହାଣିରୁ ମୁଁ ବୁଝିପାରିଛି, ସେ ଏଡ଼ମଣ୍ଡ ପ୍ରତି ଆକୃଷ୍ଟ । ମୁଁ ଜାଣେ, ତମେ ତା'ର ଅତି ଘନିଷ୍ଠ । ମୋ ପାଇଁ ତମେ ଗୋଟଏକାମ କର । ମୁଁ ଆଉ ଏଡମଣ୍ଡ ପରସ୍ପର ଭିତରେ ଆଲୋଚ଼ନା କରିସାରିଛୁ । ସେ ମୋର ସ୍ୱାମୀ ହେବା ପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ । ଆମର ଏଇ ପ୍ରେମର ପ୍ରସଙ୍ଗଟା ତମେ ଗନେରିଲ୍‌ର କାନରେ ପକାଇ ଦିଅ,

ଆଉ ଚିନ୍ତା କରି କାମ କରିବାକୁ କହ । - ରାଜାଙ୍କୁ ବଞ୍ଚାଇ ରଖିବା-ଟା ଠିକ୍ ହୋଇ ନାହିଁ । ଯେ କୌଣସି ସମୟରେ ସେ ସାଧାରଣ ଜନତାଙ୍କୁ ସେମାନଙ୍କ ବିରୋଧରେ ପ୍ରେରିତ କରିପାରନ୍ତି । ତେଣୁ ଦେଖିବା ମାତ୍ରେ ତମେ ଯେମିତି ହେଲେ ତାଙ୍କୁ ହତ୍ୟା କର । ଅସଓ୍ୱାଲ୍ଡ ତା' କଥାରେ ରାଜି ହୋଇ ବିଦାୟ ନିଏ ।

ଡୋଭାର ନିକଟସ୍ଥ ଗୋଟିଏ ଗ୍ରାମ । ସେଠି ପହଞ୍ଚନ୍ତି ସାମନ୍ତ ଓ କୃଷକବେଶୀ ଏଡ୍‌ଗାର୍ । ସାମନ୍ତ ଜାଣିବାକୁ ଚାହାନ୍ତି, ଯେଉଁ ପାହାଡ଼ କଥା ସେ କହିଥିଲେ, ସେଇଟା ଆଉ କେତେ ବାଟ ? ଏଡ଼ଗାର କହେ - ଆମେତ ଏବେ ତା' ଉପରକୁ ଉଠୁଛେ ! କଷ୍ଟ ହେଉଛି ନା ? ସାମନ୍ତ ଅସ୍ୱୀକାର କରି କହନ୍ତି ଯେ, ତାଙ୍କର ମନେ ହେଉଛି, ସେ ସମତଳ ଭୂମିରେ ଚାଲୁଛନ୍ତି । ଏଡ଼ଗାର କହେ - ନା ନା ଆମେ ଏବେ ପାହାଡ଼ ଚଢୁଛୁଁ । ଆପଣ ସମୁଦ୍ରର ଗର୍ଜନ ଶୁଣିପାରୁ ନାହାନ୍ତି ? ସାମନ୍ତ ସତକଥା ପ୍ରକାଶ କରି କହନ୍ତି ଯେ, ସେ ସେଭଳି କୌଣସି ଶବ୍ଦ ଶୁଣିବାକୁ ପାଉ ନାହାନ୍ତି । ଏଡ଼ଗାର୍ ତାଙ୍କୁ ବୁଝାଏ, ଆଖିର କଷ୍ଟ, ହୁଏତ ଆପଣଙ୍କର ଅନ୍ୟ ଇନ୍ଦ୍ରିୟଗୁଡ଼ିକର କ୍ଷତି କରିଛି । ସାମନ୍ତ କହନ୍ତି, ତା' ହୋଇପାରେ । ତେବେ ମୋର ମନେ ହେଉଛି ତମର ସ୍ୱର ଯେମିତି ବଦଳି ଯାଇଛି । ତମେ ସାଧାରଣତଃ ଯେଉଁ ଭାଷାରେ କଥା କହୁଥିଲ ଏବେ ତା' ଅପେକ୍ଷା ଉନ୍ନତ ଭାଷା ବ୍ୟବହାର କରୁଛ । ପ୍ରତିବାଦ କରି ଏଡ଼ଗାର କହେ - ମୋର ଯାହା ପରିବର୍ତ୍ତନ, ତାହା କେବଳ ପୋଷାକରେ ହିଁ ହୋଇଛି । ସାମନ୍ତ ମାନିବାକୁ ରାଜି ହୁଅନ୍ତି ନାହିଁ । ତାଙ୍କୁ ଗୋଟିଏ ସ୍ଥାନରେ ଠିଆ କରାଇ ଏଡ୍‌ଗାର୍ କହେ - ଏ ସେଇ ଜାଗା, ଚୁପ୍ କରି ଠିଆ ହୁଅନ୍ତୁ । ତଳ ଆଡକୁ ଅନାଇଲେ ମୁଣ୍ଡ ବୁଲାଇ ଦେଉଛି । ପକ୍ଷୀମାନେ ପବନରେ ଭାସି ବୁଲୁଥିବାର ମୁଁ ଦେଖିବାକୁ ପାଉଛି । ତଳେ ସମୁଦ୍ରଧାରରେ କିଛି ମତ୍ସ୍ୟଜୀବୀଙ୍କୁ ଦେଖୁଛି, ସେମାନେ ମୂଷାଟିଏ ଭଳି ଦେଖାଯାଉଛନ୍ତି । ସମୁଦ୍ରର ଲହରୀ ମୃଦୁ ଶବ୍ଦ ସୃଷ୍ଟିକରି ପଥର ଉପରେ କଚାଡ଼ି ହୋଇ ଭାଙ୍ଗି ଯାଉଛି । ଏତେ ଉଚ୍ଚରୁ ତା'ଶୁଣାଯାଉନାହିଁ । ମୁଁ ଆଉ ଅନାଇପାରୁ ନାହିଁ । ମୋ ମୁଣ୍ଡ ବୁଲାଇ ଦେଉଛି ।

ସାମନ୍ତ ଏଥର ହୁଏତ ବିଶ୍ୱାସ କରିଯାଆନ୍ତି । କହନ୍ତି- ତମେ ଯେଉଁଠି ଠିଆହୋଇଛ, ମୋତେ ସେଇଠି ଠିଆ କରାଇଦିଅ । ତାଙ୍କ ହାତଧରି ଟିକିଏ ଆଗକୁ ଆଣିକରି କହନ୍ତି, ଏଇଟିକୁ ନେଇ ମୋତେ ଛାଡ଼ି, ତମେ ଏବେ ନିଜ ବାଟରେ ଯାଅ । ତମ ପାଦ ଶବ୍ଦରୁ ତମର ଯିବା କଥା ମୁଁ ବୁଝିପାରିବି ।

ବିଦାୟ ପର୍ବ ସମାପ୍ତ ହେବା ପରେ ସୁଦ୍ଧା ଏଡ୍‌ଗାର ଯାଏ ନାହିଁ । ଗ୍ଲଷ୍ଟର ଆଗକୁ ନଇଁ ପଡ଼ନ୍ତି । ପାହାଡ଼ ଧାରରୁ ଡେଇଁ ପଡ଼ି ଆତ୍ମହତ୍ୟା କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ତେବେ ଏଡ଼ଗାର ଏ କଥା ପୂର୍ବରୁ ଅନୁମାନ କରି ତାଙ୍କୁ ସମତଳ ଭୂମିରେ ଠିଆ କରାଇ ରଖିଥିବାରୁ ତାଙ୍କର ଉଦ୍ୟମ ସଫଳ ହୁଏ ନାହିଁ । ଏଡ଼ଗାରର ହାତଧରି ସେ ଉଠି ଠିଆ ହୁଅନ୍ତି । ଏତିକିବେଳେ ବହୁ ଆବର୍ଜନାରେ ନିଜକୁ ଢାଙ୍କି, ସେଠାରେ ଲିୟର ଆସି ଉପସ୍ଥିତ ହୁଅନ୍ତି । ଏଡ଼ଗାରର

ପ୍ରଶ୍ନରେ ନିଜକୁ 'ରାଜା' ବୋଲି ଘୋଷଣା କରନ୍ତି । ତାଙ୍କର ପୋଷାକର ଦୈନ୍ୟ ସମ୍ପର୍କରେ ପ୍ରଶ୍ନ କଲାରୁ ଦାର୍ଶନିକ ଉତ୍ତର ଦେଇ କହନ୍ତି - ସବୁ ଶିଳ୍ପର ଉପରେ ଥାଏ ପ୍ରକୃତି । ସେଇଆକୁ ସେ ନିଜର ପରିଧାନ ରୂପେ ଗ୍ରହଣ କରିଛନ୍ତି । ତା'ପରେ ଉନ୍ମାଦ ଭଳି ଏଣୁତେଣୁ ଗପିଯାଆନ୍ତି । ଗଳାର ସ୍ୱରରୁ ସାମନ୍ତ ତାଙ୍କୁ ଚିହ୍ନିପାରି ପଚାରନ୍ତି - ଆପଣ ରାଜା, ନୁହେଁ ?

-ସମ୍ପୂର୍ଣ୍ଣରୂପେ - ରାଜାଙ୍କର ଉତ୍ତର । ହଠାତ୍ ଯେମିତି ତାଙ୍କର ଦିବ୍ୟଚକ୍ଷୁ ଖୋଲିଯାଏ ଏବଂ ସେ ସାମନ୍ତଙ୍କୁ ଚିହ୍ନିପାରନ୍ତି ।

କେଣ୍ଟଙ୍କ ପରିଚିତ କିଛି ଭଦ୍ରଲୋକ ରାଜାଙ୍କୁ କର୍ଡ଼େଲିଆ ପାଖକୁ ନେଇଯିବାକୁ ଆସନ୍ତି । ରାଜା ଦ୍ରୁତଗତିରେ ପଳାୟନ କରନ୍ତି ଏବଂ ଆଗନ୍ତୁକମାନେ ତାଙ୍କୁ ଅନୁସରଣ କରନ୍ତି ।

ଏଡ଼ଗାର ସେମାନଙ୍କୁ କହେ- ଯୁଦ୍ଧ ଆସନ୍ନ ବୋଲି ଆପଣମାନେ ଜାଣନ୍ତି କି ?

-ସମସ୍ତେ ଜାଣନ୍ତି ।

-ଶତ୍ରୁମାନେ କେତେ ଦୂରରେ ?

-ଅତି ନିକଟରେ । ରାଣୀଙ୍କ ସୈନ୍ୟମାନେ ମଧ ଅଗ୍ରସର ହେଉଛନ୍ତି - ଭଦ୍ରଲୋକମାନେ ଉତ୍ତର ଦିଅନ୍ତି । ସେମାନେ ଚାଲିଯିବା ପରେ ଏଡଗାର ସାମନ୍ତଙ୍କୁ ଅନ୍ୟ ସ୍ଥାନକୁ ନେଇଯିବା ପାଇଁ ଚେଷ୍ଟା କରେ । ଏତିକିବେଳେ ଅସୱାଲ୍ଡ ଆସେ । ଶିକାରୀକୁ ହାତ ପାଖରେ ପାଇ ସେ ଖୁସି ହୋଇଯାଏ । ତାଙ୍କ ଉପରକୁ ଡେଇଁ ପଡ଼ିବାକୁ ପ୍ରସ୍ତୁତ ହେବା ମାତ୍ରେ ଏଡ଼ଗାର ବାଧା ଦିଏ । ତାକୁ ଜଣେ ସାଧାରଣ ଚାଷୀ ଭାବି ଅସୱାଲ୍ଡ ତୁରନ୍ତ ସେଠାରୁ ଚାଲିଯିବାକୁ ଆଦେଶ ଦିଏ । ଦୁଇଜଣଙ୍କ ମଧରେ ଯୁଦ୍ଧ ହୁଏ ଏବଂ ଅସୱାଲ୍ଡ ନିହତ ହୁଏ । ମୃତ୍ୟୁ ପୂର୍ବରୁ ସେ ତାକୁ କବର ଦେବା ନିମନ୍ତେ ତଥା ତା'ପାଖରେ ଯେଉଁ ଚିଠି ଅଛି, ସେ ସବୁ ଆର୍ଲ ଏଡ଼ମଣ୍ଡଙ୍କୁ ଦେବା ପାଇଁ ଅନୁରୋଧ କରେ ।

ଏଡ଼ଗାର ଚିଠି ଖୋଲି ପଢ଼େ । ଗନେରିଲ୍ ଏଡ଼ମଣ୍ଡକୁ ଲେଖିଛି, ସେ ଯେମିତି ଆଲବେନିଙ୍କୁ ହତ୍ୟା କରେ । ନଚେତ୍ ଆଲବେନି ଫେରିଲେ ତାକୁ ବନ୍ଦୀ ଦଶା ଭୋଗିବାକୁ ପଡ଼ିବ ।

ଫରାସୀ ଶିବିର । କର୍ଡ଼େଲିଆ କେଣ୍ଟଙ୍କୁ କହେ - ଆପଣଙ୍କ ମହତ୍ତ୍ୱର ତୁଳନା ନାହିଁ । ଚିକିତ୍ସକମାନଙ୍କ ସମ୍ମତିରେ ଘୁମନ୍ତ ଲିୟରଙ୍କୁ ନିଦରୁ ଉଠାଯାଏ ।

କର୍ଡ଼େଲିଆ ପଚାରେ- କେମିତି ଅଛନ୍ତି ବାବା..

ଲିୟର କହନ୍ତି -ମୋତେ କବର ଭିତରୁ ଉଦ୍ଧାର କରି ତମେ ଭୁଲ କରିଛ ।

-ଆପଣ ମୋତେ ଚିହ୍ନୁଛନ୍ତି ?

-ତମେ ସ୍ୱର୍ଗର ଦେବୀ, କିନ୍ତୁ ତମର ମୃତ୍ୟୁ ହୋଇଛି କେଉଁଠି ? ରାଜା କହନ୍ତି ।

ରାଜା ଅନେକଟା ପ୍ରକୃତିସ୍ଥ ହୋଇ ସାରିଥାନ୍ତି ।

କର୍ଡ଼େଲିଆ କହେ- ମୋ ଆଡ଼କୁ ଅନାଇ ମୋତେ ଆଶୀର୍ବାଦ କରନ୍ତୁ ବାବା ।

ଲିୟର ଉତ୍ତର ଦିଅନ୍ତି-ମୋତେ ଥଟ୍ଟା କର ନାହିଁ । ମୁଁ ଜଣେ ନିର୍ବୋଧ ,ବୃଦ୍ଧ ଆଉ ସ୍ନେହପାଗଳ ମଣିଷ -ବୟସ ଅଶୀବର୍ଷ । ବ୍ୟବହାର ସରଳ । ତେବେ ମାନସିକତା ଦୃଷ୍ଟିରୁ ଅସୁସ୍ଥ । ମନେ ହେଉଛି ମୁଁ ତମକୁ ଚିହ୍ନେ । କେଣ୍ଟଙ୍କ ଆଡ଼କୁ  ଅନାଇ କହନ୍ତି, ତେବେ ଏ ଲୋକକୁ ମୋର ସନ୍ଦେହ ହେଉଛି । ମୁଁ କେଉଁଠି ଅଛି ତାହା ଅବଶ୍ୟ ଜାଣି ନାହିଁ । କାଲି ରାତିରେ ଏଠି ନ ଥିଲି କିମ୍ବା ଏଭଳି ପୋଷାକ ମଧ ପିନ୍ଧି  ନ ଥିଲି । ମୋର ମନେ ହେଉଛି , ଏ ଝିଅଟି ମୋର କର୍ଡେଲିଆ - ଗୁଢ ଆବେଗରେ ଭାଙ୍ଗିପଡ଼ି କର୍ଡ଼େଲିଆ କହେ.. ହଁ ବାବା.. ମୁଁ ସେଇ କର୍ଡ଼େଲିଆ..

-ତମେ କାନ୍ଦ ନାହିଁ । ବରଂ ମୋତେ କଣିକାଏ ବିଷ ଆଣିଦିଅ । ମୁଁ ଜାଣେ ତମେ ମୋତେ ଭଲ ପାଅ ନାହଁ  । ତମର ଭଉଣୀମାନେ ମୋ ପ୍ରତି ଅନ୍ୟାୟ କରିଛନ୍ତି । ମୋତେ ଭଲ ନ ପାଇବା ପଛରେ ତମ ପାଇଁ ବରଂ କିଛି କାରଣ ଅଛି । ସେମାନଙ୍କର ତା ନାହିଁ- ଲିୟର କହନ୍ତି ।

କାନ୍ଦି କାନ୍ଦି କର୍ଡ଼େଲିଆ କହେ - କିଛି କାରଣ ନାହିଁ ବାବା, କିଛି ବି ନାହିଁ ।

ଲିୟର ଜାଣିବାକୁ ଚାହାନ୍ତି-  ମୁଁ କ'ଣ ଏବେ ଫ୍ରାନ୍ସରେ  ?

କେଣ୍ଟ ଜଣାନ୍ତି- ଆପଣ ନିଜ ରାଜତ୍ୱରେ ହିଁ ଅଛନ୍ତି ।

ଲିୟର ପୁଣି କହନ୍ତି -ମୋତେ ଥଟ୍ଟା କର ନାହିଁ ।

ଚିକିତ୍ସକ ଜାଣନ୍ତି- ରାଜାଙ୍କ ମନରେ ଆଉ ପୂର୍ବର ରାଗ ନାହିଁ । ତେବେ ତାଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ ପୂର୍ବଭଳି ରହିଛି । ଆଉ ଟିକିଏ ସମୟ ଲାଗିବ । କର୍ଡେଲିଆ ତାଙ୍କୁ ଭିତରକୁ ନେଇଯାଏ । ଲିୟର କହନ୍ତି-ମୋତେ ତୁମକୁ  ସହ୍ୟ କରିବାକୁ  ହେବ । କାରଣ ମୁଁ ବୃଦ୍ଧ ଆଉ ନିର୍ବୋଧ ।

ସମସ୍ତେ ଭିତରକୁ ଚାଲିଯିବା ପରେ କେଣ୍ଟ ଭାବନ୍ତି- ଯୁଦ୍ଧ ଆସନ୍ନ । ଶତ୍ରୁମାନେ ଦ୍ରୁତ ଆଗେଇ ଆସୁଛନ୍ତି । ଏକ ରକ୍ତକ୍ଷୟୀ ସଂଗ୍ରାମ ନିମନ୍ତେ ପ୍ରସ୍ତୁତ ରହିବାକୁ ପଡ଼ିବ ।

॥ ୫ ॥

ଡୋଭର ନିକଟରେ ଇଂରେଜ ଶିବିର । ଗନେରିଲ୍‌ର ସ୍ୱାମୀଙ୍କର ମତିଗତି ଯେ ସମ୍ପୂର୍ଣ୍ଣ ବଦଳି ଯାଇଛି; ଏହା ରିଗାନ୍ ଏଡ଼ମଣ୍ଡକୁ ଜଣାଇଦିଏ । ରିଗାନ୍ ଜାଣିବାକୁ ଚାହେଁ ସେ ପ୍ରକୃତରେ ଗନେରିଲ୍‌କୁ ଭଲପାଏ କି ନାହିଁ  ? ପ୍ରଶ୍ନଟାକୁ  ଏଡ଼ାଇଯାଇ ଧୂର୍ତ୍ତ ଏଡ୍‌ମଣ୍ଡ କହେ ଯେ, ସେ ତାଙ୍କୁ  ସମ୍ମାନ କରେ । ରିଗାନ୍ ଜଣାଇଦିଏ ସେ କଦାପି ଗନେରିଲ୍‌କୁ ସହ୍ୟ କରିପାରିବ ନାହିଁ । ଏଡ୍‌ମଣ୍ଡ ଯେମିତି ତା'ସହିତ ମିଳାମିଶା ନ କରେ । ସେ - ଗନେରିଲ୍ ଏବଂ ତାର

ସ୍ୱାମୀଙ୍କଠାରୁ ନିରାପଦ ବ୍ୟବଧାନରେ ରହିବ ବୋଲି କହି ଏଡ଼ମଣ୍ଡ ତାକୁ ଆଶ୍ୱସ୍ତ କରେ । ଆଲବେନି ଓ ଗନେରିଲ୍ ଶିବିରରେ ପ୍ରବେଶ କରନ୍ତି । ଆଲବେନି ଜଣାଇ ଦିଅନ୍ତି - ଲିୟର ଓ କର୍ଡ଼େଲିଆଙ୍କ ମିଳନରେ ବାଧା ସୃଷ୍ଟି କରିବା ସେମାନଙ୍କର ଉଦ୍ଦେଶ୍ୟ ନୁହେଁ । ଫ୍ରାନ୍ସକୁ ଇଂଲଣ୍ଡ ଆକ୍ରମଣରୁ ବିରତ କରିବା ହିଁ ତାଙ୍କର ପ୍ରଧାନ ଲକ୍ଷ୍ୟ । ଯୁଦ୍ଧ ସମ୍ପର୍କରେ ଆଲୋଚନା କରିବା ନିମନ୍ତେ ଆଲବେନିଙ୍କୁ ଛାଡ଼ି ସମସ୍ତେ ତାଙ୍କ ତମ୍ବୁକୁ ଯାଆନ୍ତି । ଆଲବେନି ଯିବା ପୂର୍ବରୁ ଏଡ଼ଗାର ସେଠାକୁ ଆସି ଚିଠିଟିଏ ଧରାଇ ଯୁଦ୍ଧ ପୂର୍ବରୁ ତାକୁ ଖୋଲିବାକୁ ଅନୁରୋଧ କରେ । ଯୁଦ୍ଧରେ ଜୟଲାଭ କଲେ, ମୋତେ ଡାକିଲେ ମୁଁ ଚାଲି ଆସିବି । ଭାଗ୍ୟ ଆପଣଙ୍କ ପ୍ରତି ସୁପ୍ରସନ୍ନ ହେଉ । ଏଡ଼ଗାର ଚାଲି ଯିବା ପରେ ଏଡ଼ମଣ୍ଡ ଆସି ଜଣାଏ - ଶତ୍ରୁ ସୈନ୍ୟମାନେ ନିକଟକୁ ଆସିଗଲେଣି । ଶୀଘ୍ର ସୈନ୍ୟ ସଜା ଶେଷ କରିବା ଆବଶ୍ୟକ । ଆଲବେନି ଚାଲିଯିବା ପରେ ଏଡ଼ମଣ୍ଡ ନିଜର ସାମ୍ଭାବ୍ୟ ବିପଦ ବିଷୟରେ ଚିନ୍ତାକରେ । ଦୁଇ ଭଉଣୀଙ୍କୁ ସେ ଭଲ ପାଏ ବୋଲି କହିଛି । ଦୁଇଜଣ ପରସ୍ପରକୁ ଈର୍ଷା କରନ୍ତି । ଏବେ ତା'ର କର୍ତ୍ତବ୍ୟ କ'ଣ ? କାହାକୁ ଗ୍ରହଣ କରିବ ? ଉଭୟେ କେହି ଭଲ ନୁହନ୍ତି । ବିଧବାଟିକୁ ବିବାହ କଲେ ଅନ୍ୟଟି ପାଗଳ ହୋଇଯିବ । ତା' ସ୍ୱାମୀଟି ପୁଣି ବଞ୍ଚିଛି । ସେ ଏ ଯୁଦ୍ଧର ପରିଚାଳକ । ଆହୁରି ସମସ୍ୟା ତା' ଆଗରେ - ଆଲବେନି ଲିୟର ଓ କର୍ଡ଼େଲିଆ ପ୍ରତି ସଦୟ - ଯୁଦ୍ଧ ଶେଷ ହେଲେ ଲିୟର ତାଙ୍କୁ କ୍ଷମା କରିବେ ନାହିଁ । ସେତେବେଳେ ତା'ର ଅବସ୍ଥା କ'ଣ ହେବ ? କେଉଁ ଉପାୟରେ ସେ ନିଜକୁ ରକ୍ଷା କରିବ ? ଏ ସବୁ ପ୍ରଶ୍ନ ତା'ର ମନକୁ ଓଲଟପାଲଟ କରିଦିଏ ।

ଦୁଇ ଶିବିରର ଅନ୍ତର୍ବର୍ତ୍ତୀ ପ୍ରାନ୍ତରରେ ଗୋଟିଏ ଗଛ ତଳେ ଏଡ଼ଗାର ସାମନ୍ତଙ୍କୁ ବସାଏ । କହେ - ଯଦି ସବୁ ଠିକ୍‌ଠାକ୍ ଥାଏ, ମୁଁ ଆପଣଙ୍କ ପାଖକୁ ଫେରିଆସେ, ତେବେ ମୁଁ ନିଶ୍ଚୟ ଆପଣଙ୍କୁ ଖୁସି କରି ଦେଇପାରିବି । ଏଡ୍‌ଗାର ଚାଲିଯାଏ କିନ୍ତୁ ଟିକିଏ ପରେ ଫେରିଆସି ଜଣାଏ ଯେ ରାଜା ଯୁଦ୍ଧରେ ହାରି ଯାଇଛନ୍ତି । ତାଙ୍କୁ ଏବଂ ତାଙ୍କ ଝିଅଙ୍କୁ ବନ୍ଦୀ କରାଯାଇଛି । ଏ ଖବର ପାଇ ସାମନ୍ତ ଆଉ କୁଆଡ଼େ ଯିବାକୁ ରାଜି ହୁଅନ୍ତି ନାହିଁ । ସେଇଠି ମରିବାକୁ ଚାହାନ୍ତି । ଏଡ଼ଗାର ଧମକ ଦେଇ କହେ ଯାହା ହେଲେ ବି ମଣିଷକୁ ସହ୍ୟ କରିବାକୁ ହେବ ।

ଏଡ୍‌ଗାର ତାଙ୍କ ହାତ ଧରି ଆଗେଇ ଯାଏ ।

ଯୁଦ୍ଧରେ ବିଜୟୀ ହୋଇ ଏଡ଼ମଣ୍ଡ ତମ୍ବୁକୁ ଫେରିଆସେ । ବନ୍ଦୀ ଅବସ୍ଥାରେ ଲିୟର ଓ କର୍ଡ଼େଲିଆଙ୍କୁ ଅଣାଯାଏ । କର୍ଡ଼େଲିଆ ଭଉଣୀମାନଙ୍କୁ ଦେଖିବା ନିମନ୍ତେ ଇଚ୍ଛା ପ୍ରକାଶ କରନ୍ତେ ଲିୟର ପ୍ରତିବାଦ କରି ତା' ଅପେକ୍ଷା ସେମାନେ ବରଂ କାରାଗାରରେ ରହିବାକୁ ପସନ୍ଦ କରିବେ ବୋଲି କହନ୍ତି । ସେଠାରେ ସେମାନେ ପିଞ୍ଜରାବଦ୍ଧ ପକ୍ଷୀ ଭଳି ଗୀତ ଗାଇପାରନ୍ତି, କର୍ଡ଼େଲିଆ ଆଶୀର୍ବାଦ ଚାହିଁଲେ ସେ ତା'ଠୁ କ୍ଷମା ପ୍ରାର୍ଥନା କରିପାରନ୍ତି । ପୁରୁଣାଦିନର ଗଳ୍ପ କରି ସମୟ କଟାଇପାରନ୍ତି ।

ଏଡ୍‌ମଣ୍ଡ ପ୍ରହରୀମାନଙ୍କୁ ସେମାନଙ୍କୁ ନେଇଯିବା ପାଇଁ ଆଦେଶ ଦିଏ । ଜଣେ କ୍ୟାପ୍‌ଟେନ୍‌ଙ୍କ ହାତରେ ଖଣ୍ଡେ କାଗଜ ଧରାଇ ଦେଇ, କଏଦୀମାନଙ୍କୁ ଅନୁସରଣ କରିବା ପାଇଁ କହେ । କାଗଜର ଲିଖିତ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କଲେ ତାଙ୍କର ଭାଗ୍ୟ ବଦଳି ଯିବ ବୋଲି ଜଣାଇ ଦିଏ । କ୍ୟାପ୍‌ଟେନ୍ ରାଜି ହୋଇ ଚାଲିଯାଆନ୍ତି ।

ଆଲବେନି, ଗନେରିଲ୍ ଓ ରିଗାନ୍ ଆସନ୍ତି । ଆଲ୍‌ବେନି ଏଡ଼୍‌ମଣ୍ଡର ବୀରତ୍ୱର ପ୍ରଶଂସା କରନ୍ତି । ତା'ପରେ ବନ୍ଦୀମାନଙ୍କ କଥା ପଚାରନ୍ତି । ଏଡ଼୍‌ମଣ୍ଡ ରାଜାଙ୍କୁ କାରାଗାରରେ ନିକ୍ଷେପ କରାଯାଇଥିବାର ଜଣାଇ କହେ ରାଜା ତାଙ୍କର ବୟସ ଓ ପଦ ନିମନ୍ତେ ଏବେ ମଧ ଜନତାର ସହାନୁଭୂତି ଲାଭ କରିବାର ସମ୍ଭାବନା ରହିଛି । ଏଥିରେ ଯୁଦ୍ଧର ଗତି ବଦଳି ଯାଇପାରେ । ସେଇ କାରଣରୁ ଫ୍ରାନ୍ସର ରାଣୀଙ୍କୁ ମଧ କାରାଗାରକୁ ପଠାଇ ଦିଆଯାଇଛି । ଆପଣ ଯେଉଁଠି ଚାହିଁବେ କାଲି ସେମାନଙ୍କୁ ସେଠାରେ ଉପସ୍ଥିତ କରାଯିବ । ବର୍ତ୍ତମାନ ଆମେ ସବୁ କ୍ଳାନ୍ତ, ରକ୍ତାକ୍ତ ଏବଂ ଆମର ଉପଚାରର ପ୍ରୟୋଜନ । ରାଜା ଓ ତାଙ୍କ କନ୍ୟାଙ୍କ ପ୍ରସଙ୍ଗ ପରେ ଚର୍ଚ୍ଚା କଲେ ମଧ ଚଳିବ ।

ଏଡ଼୍‌ମଣ୍ଡର ଏଇ ଦୀର୍ଘ ବକ୍ତୃତାରେ ରାଗିଯାଇ ଆଲବେନି କହନ୍ତି, ଏଠାରେ ତମେ ଜଣେ ସାଧାରଣ ସୈନିକ ମାତ୍ର । ମୋର ଭାଇ ନୁହଁ । ଗନେରିଲ ଓ ରିଗାନ୍ ଦୁହେଁ ଏଡ଼୍‌ମଣ୍ଡ ସହିତ ଆଳାପ କରନ୍ତି । ତାକୁ ନେଇ ପ୍ରକାଶ୍ୟରେ ଦୁହିଁଙ୍କ ମଧରେ ଦ୍ୱନ୍ଦ୍ୱ ଆରମ୍ଭ ହୋଇଯାଏ । ଆଲବେନି ଏଡ଼୍‌ମଣ୍ଡ ଏବଂ ଗନେରିଲଙ୍କୁ ବିଶ୍ୱାସଘାତକତାର ଅପରାଧରେ ବନ୍ଦୀ କରନ୍ତି । ସେ କହନ୍ତି - ଗନେରିଲଙ୍କ ପାଇଁ ଏଡ୍‌ମଣ୍ଡର ଦାବିକୁ ସେ ପ୍ରତ୍ୟାଖ୍ୟାନ କରି ଦେଇପାରନ୍ତି । କାରଣ ସେ ତା'ର ସ୍ୱାମୀ । ସେମାନଙ୍କ ଉପରେ ଆହୁରି ଘୃଣ୍ୟ ଓ ବିଶ୍ୱାସଘାତକତାପୂର୍ଣ୍ଣ କାର୍ଯ୍ୟର ଅଭିଯୋଗ ଅଣାଯାଏ । ରିଗାନ୍ ହଠାତ୍ ଅସୁସ୍ଥତା ଅନୁଭବ କରିବାରୁ ଆଲବେନି ତାକୁ ତମ୍ବୁକୁ ପଠାଇ ଦିଅନ୍ତି ।

ଆଲବେନିଙ୍କ ନିର୍ଦ୍ଦେଶରେ ଏଥର ଏଡ଼୍‌ଗାର ଆସି ଏଡ଼୍‌ମଣ୍ଡ ବିରୋଧରେ ବିଶ୍ୱାସଘାତକତାର ଅଭିଯୋଗ ଆଣେ । ଉଭୟଙ୍କ ମଧରେ ଯୁଦ୍ଧ ଆରମ୍ଭ ହୁଏ । ଏଡ଼୍‌ମଣ୍ଡ ପଡ଼ିଯାଏ । ଗନେରିଲ କହେ ଯୁଦ୍ଧ ନିୟମ ଅନୁସାରେ ଅଚିହ୍ନା ଲୋକର ଅଭିଯୋଗର ଉତ୍ତର ଦେବାକୁ ଆମେ ବାଧ ନୋହୁଁ ।

ଆଲବେନି କ୍ରୋଧରେ ଗର୍ଜନ କରି କହନ୍ତି - ରାକ୍ଷସୀ, ତୁ ଚୁପ୍ କରି ରହ , ନ ହେଲେ ଏହି କାଗଜକୁ ବଡ଼ ପାଟିରେ ପଢି ନିଜର କୁତ୍ସିତ ମନଟାକୁ ସମସ୍ତଙ୍କୁ ଦେଖାଇ ଦିଅ । ତମେ ବୁଝିପାରୁଥିବ ମୁଁ କଣ କହିବାକୁ ଚାହୁଁଛି ।

- ମୁଁ କଣ ଜାଣେ, ତା ପଚାର ନାହିଁ , ସେଇଟା ମୋର ବ୍ୟକ୍ତିଗତ ବ୍ୟାପାର । ଗନେରିଲ ଚାଲିଯାଏ । ଆଲବେନିଙ୍କ ନିର୍ଦ୍ଦେଶରେ ଜଣେ କର୍ମଚାରୀ ତାକୁ ଅନୁସରଣ କରନ୍ତି ।

ଏଡ଼ମଣ୍ଡ ଏଥର ଏଡ଼ଗାରକୁ ପଚାରେ -ମୋର ଅପରାଧ କଣ ? ଅବଶ୍ୟ ମୁଁ ଆହତ, ପରେ ଏ ବିଷୟରେ ତମ ସହିତ କଥାବାର୍ତ୍ତା କରିବାକୁ ଚାହେଁ ।

ଏଡ଼ଗାର କହେ - ତମଠୁ ମୁଁ କିଛି କମ୍ ରକ୍ତାକ୍ତ ହୋଇ ନାହିଁ । ବରଂ ଅଧିକ ଆହତ । ତମେ ମୋ ସହିତ ବିଶ୍ୱାସଘାତକତା କରିଛ । ଚିହ୍ନିପାରୁଛ ? ମୁଁ ତମର ଭାଇ ଏଡ଼୍ଗାର । ତମରି ପାଇଁ ବାବା ତାଙ୍କର ଚକ୍ଷୁ ହରାଇଛନ୍ତି ।

ଏଡ଼ମଣ୍ଡ ଅପରାଧ ସ୍ୱୀକାର କରେ ।

ଆଲବେନି ଏଡ଼ଗାରକୁ ଆଲିଙ୍ଗନ କରି ତା'ର ପିତାଙ୍କ ପାଇଁ ଦୁଃଖ ପ୍ରକାଶ କରନ୍ତି । ତାପରେ ତା'ଠୁ ସବୁ କଥା ଶୁଣି ଅଭିଭୂତ ହୋଇ ପଡ଼ନ୍ତି । ଏଡ଼୍ଗାର କେଣ୍ଟଙ୍କ କଥା ମଧ କହେ । ରାଜା ତାଙ୍କୁ ନିର୍ବାସନ ଦଣ୍ଡ ଦେଇଥିଲେ ମଧ ସେ ଛଦ୍ମବେଶରେ ଛାଇ ଭଳି ତାଙ୍କୁ ଅନୁସରଣ କରିଆସିଛନ୍ତି, ତାଙ୍କର ସେବା କରିଛନ୍ତି ।

ଏହି ସମୟରେ ଗନେରିଲ୍ ଓ ରିଗାନ୍ ଦୁହେଁ ନିହତ ହୋଇଥିବାର ଖବର ଆସେ । ଗନେରିଲ୍ ମରିଛି ରିଗାନ୍‌ର ଛୁରିକାଘାତରେ, ଆଉ ରିଗାନ୍ ମରିଛି ଗନେରିଲ୍ ପ୍ରଦତ୍ତ ବିଷରେ ।

କେଣ୍ଟ ଆସି ରାଜାଙ୍କୁ ଖୋଜନ୍ତି । ଆଲ୍‌ବେନି ମଧ ଆଉଥରେ ଏଡମଣ୍ଡକୁ ସେମାନଙ୍କ ବିଷୟରେ ପଚ଼ାରନ୍ତି । ରିଗାନ୍ ଓ ଗନେରିଲ୍‌ର ମୃତଦେହ ଆସି ପହଞ୍ଚେ । କେଣ୍ଟ ଚମକିପଡ଼ି କହନ୍ତି - ଅବସ୍ଥା ଶେଷରେ ଏଠି ଆସି ପହଞ୍ଚିଗଲା । ଏଡ଼ମଣ୍ଡ କହେ - ମୋ ପ୍ରେମରେ ଅନ୍ଧ ହୋଇ ହିଁ ଦୁହିଁଙ୍କର ଆଜି ଏଇ ଦଶା ।

ଏଡ଼ମଣ୍ଡର ମନ ଇତି ମଧରେ ପରିବର୍ତ୍ତିତ ହୋଇଛି । ସେ କହେ -ବର୍ତ୍ତମାନ କାହାକୁ ଦୁର୍ଗ ଭିତରକୁ ପଠାନ୍ତୁ, ମୁଁ ରାଜା ଆଉ କର୍ଡେଲିଆଙ୍କୁ ହତ୍ୟା କରିବାର ଆଦେଶ ଦେଇଛି । ସେମାନଙ୍କୁ କୌଣସିମତେ ବଞ୍ଚାନ୍ତୁ । ଏଡ଼ଗାର ପଚାରେ -କାହା ପାଖକୁ କି ପରିଚୟରେ ଯିବି ? ଏଡ଼ମଣ୍ଡ ତା ନିଜ ତରବାରି ଏଡ଼ଗାରକୁ ଦେଇ ତାହାକୁ କ୍ୟାପ୍‌ଟେନ୍‌କୁ ଦେବାକୁ କହେ । ତା ହେଲେ ସେ ସବୁ ବୁଝିପାରିବେ । ଆଲ୍‌ବେନି ଏଡ଼୍ଗାରକୁ କହନ୍ତି - ସର୍ବନାଶକୁ ରୋକିବାକୁ ହେଲେ ବର୍ତ୍ତମାନ ଧାଇଁଯାଅ । ଏଡ୍‌ଗାର ଦୌଡ଼ି ଚାଲିଯାଏ । ଏଡ୍‌ମଣ୍ଡ ଜଣାଏ, ସେ ଓ ଗନେରିଲ୍ କହିଥିଲେ, ବନ୍ଦୀଶାଳାରେ କର୍ଡେଲିଆର ଗଳାରେ ଫାଶ ପକାଇ ତାକୁ ହତ୍ୟା କରିବାକୁ ଓ ତା'ପରେ ଝୁଲାଇ ରଖିବାକୁ । ସେ ସ୍ୱେଚ୍ଛାରେ ଆତ୍ମହତ୍ୟା କରିଛି ବୋଲି ପ୍ରମାଣ କରାଯାଇପାରିବ । ଆଲ୍‌ବେନି ଚିତ୍‌କାର କରି କହନ୍ତି - ଈଶ୍ୱର ତାକୁ ରକ୍ଷା କରନ୍ତୁ ।

କିନ୍ତୁ ଇତି ମଧରେ ଚରମ ସର୍ବନାଶ ଘଟିଯାଇ ସାରିଛି । ଲିୟର୍ ଚିତ୍କାର କରୁ କରୁ ଆସି କହନ୍ତି - କର୍ଡ଼େଲିଆ ମୃତ । ସେ ସବୁଦିନ ପାଇଁ ବିଦାୟ ନେଇଛି, ଜଣେ କେମିତି ବଞ୍ଚେ

କି ମରେ, ତାହା ମୁଁ ଜାଣେ । ସେ ମାଟି ଭଳି ନିଥର ହୋଇଯାଇଛି । ଶୋକରେ ସମସ୍ତେ ପଥର ହୋଇଯାଆନ୍ତି ।

ଲିୟର କହନ୍ତି- ଖୁନୀ, ବିଶ୍ୱାସଘାତକତାର ଦଳ, ତୁମ୍ଭମାନଙ୍କର ସର୍ବନାଶ ହେଉ । ହାୟ କର୍ଡେ଼ଲିଆ- ତୋ ଭଳି ନାରୀ ଜାତିର ଆଦର୍ଶ, ନମ୍ର, ଆଜ୍ଞାବହ ଝିଅ ଆଉ କାହୁଁ ପାଇବି ? ଯେଉଁ ଭୃତ୍ୟ ତୋତେ ଝୁଲାଇଦେଇଛି, ମୁଁ ତାକୁ ହତ୍ୟା କରିବି ।

ଇତି ମଧ୍ୟରେ କେଣ୍ଟ ଆସିଲାରୁ ରାଜା ତାଙ୍କୁ ଚିହ୍ନିପାରନ୍ତି । କେଣ୍ଟ ଜଣାଇଦିଅନ୍ତି ଯେ ସେ ଭୃତ୍ୟବେଶରେ ଦୀର୍ଘକାଳ ତାଙ୍କର ପାଖେ ପାଖେ ରହିଛନ୍ତି । ରାଜାଙ୍କର ଜ୍ୟେଷ୍ଠା ଦୁଇ କନ୍ୟା ନିଜ ନିଜର ଧ୍ୱଂସ ନିଜେ ଡାକି ଆଣିଛନ୍ତି । ସେମାନେ ମୃତ ।

ଲିୟର କହନ୍ତି- ମୁଁ ଏସବୁ ଜାଣେ ।

ଦୂତ ଆସି ଖବରଦିଏ, ଏଡ଼ମଣ୍ଡ ମରିଯାଇଛି । ଆଲବେନି କହନ୍ତି- ଯାହା ହେବାର ହୋଇଛି । ଏଇ ମହାପ୍ରଳୟ ମଧ୍ୟରୁ ଆମେ କ'ଣ ପାଇବା- ସେଇ କଥା ଏବେ ଦେଖାଯାଉ । ଆମେ ଏବେ କ୍ଷମତାଠାରୁ ଦୂରେଇ ଯାଇ ସବୁ କ୍ଷମତା ରାଜାଙ୍କ ହାତରେ ଅର୍ପଣ କରିବୁ ।

କର୍ଡେ଼ଲିଆର ମୃତ ଦେହ ଦେଖି ରାଜା ପୁଣି ବିଳାପ କରିଉଠନ୍ତି । ଦୁନିଆରେ ସାମାନ୍ୟତମ ପ୍ରାଣୀଠାରେ ବି ଜୀବନ ରହିଛି । ତମର ନିଃଶ୍ୱାସ ଚାଲୁ ନାହିଁ କାହିଁକି ? ତମେ କ'ଣ ସତରେ ଆଉ ଫେରିବ ନାହିଁ ?

ଶୋକରେ ଆଉ ଦୁଃଖରେ ଲିୟରଙ୍କର ମୃତ୍ୟୁ ହୋଇଯାଏ । ତାଙ୍କର ସକଳ ଯନ୍ତ୍ରଣାର ଅନ୍ତ ଘଟେ । ଏଡ଼ଗାରର୍ କରୁଣ କଣ୍ଠରେ ତାଙ୍କୁ ଆଖି ଖୋଲିବାକୁ ଅନୁରୋଧ ଜଣାଏ । କେଣ୍ଟ କହନ୍ତି- ତାଙ୍କର ଆତ୍ମାକୁ ଆଉ କଷ୍ଟ ଦିଅ ନାହିଁ । ତାଙ୍କୁ ଯିବାକୁ ଦିଅ । ଏତେ ଦୁଃଖ ଯେ ସେ କେମିତି ସହ୍ୟ କରିଗଲେ, ତାହାହିଁ ମୋ ପାଇଁ ଆଶ୍ଚର୍ଯ୍ୟ ହୋଇ ରହିଛି । ସହନଶୀଳତାର ଯେଉଁ ଅପୂର୍ବ ପରିଚୟ ସେ ଦେଇଛନ୍ତି, ତାହା ପ୍ରକୃତରେ ଅତୁଳନୀୟ । ଆଲବେନି କେଣ୍ଟ ଓ ଏଡ଼ଗାରଙ୍କୁ ଲିୟରଙ୍କ ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ କରନ୍ତି । କେଣ୍ଟ ଜଣାଇଦିଅନ୍ତି ଯେ, ତାଙ୍କ ପକ୍ଷରେ ସେଭଳି କରିବା ଆଦୌ ସମ୍ଭବ ନୁହେଁ । କାରଣ ତାଙ୍କୁ ଜରୁରୀ କାମରେ ବାହାରକୁ ଯିବାକୁ ହେବ ।

ଏଡ଼ଗାର କହେ- ଯିଏ ଥିଲେ ସବୁଠାରୁ ବୟସ୍କ, ଆଜିପର୍ଯ୍ୟନ୍ତ ସେହିଁ ସବୁ ଦାୟିତ୍ୱ ବହନ କରି ଆସିଛନ୍ତି, ବର୍ତ୍ତମାନ ଏ ଦାୟିତ୍ୱ ଆମକୁ ବହନ କରିବାକୁ ହିଁ ପଡ଼ିବ ।

# ରୋମିଓ ଏଣ୍ଡ ଜୁଲିଏଟ୍

॥ ୧ ॥

କଳହ ଆରମ୍ଭ ହୁଏ ଭେରୋନା ସହରର ଦୁଇ ସମ୍ଭ୍ରାନ୍ତ ପରିବାରର ଭୃତ୍ୟଗୋଷ୍ଠୀ ମଧ୍ୟରେ । ପରିବାର ଦୁଇଟି ହେଲେ କାପୁଲେଟ୍ ଏବଂ ମଣ୍ଟେଗ୍ୟୁ । କାପୁଲେଟ୍ ପରିବାରର ଭୃତ୍ୟ ସାମ୍ପସନ୍ ବାହାଦୁରି ଦେଖାଇ ନିଜର ବନ୍ଧୁ ଗ୍ରେଗରୀକୁ କହେ, ଦେଖିବୁ, କି ମାଡ଼ ମୁଁ ସେମାନଙ୍କ ଉପରେ ଚଢ଼ାଇବି ?

- ତୁ ପୁଣି ମାରିବୁ ! ତାଚ୍ଛଲ୍ୟ କରି ଗ୍ରେଗରୀ କହେ- ତୋର ତ ଉଠି ବସୁ ବସୁ ଛ'ମାସ ।

- ହୋଇପାରେ, କିନ୍ତୁ ମଣ୍ଟେଗ୍ୟୁ ପରିବାରର କୁକୁରଟା ହିଁ ମୋର ଉତ୍ସାହ ବଢ଼ାଇ ଦେଉଛି ।

- ତା'ମାନେ ତୁ ସେଇ କୁକୁର ଭୟରେ ପଳାଇ ଆସିଛୁ !

- ସେମାନଙ୍କର ଗୋଟାଏ କୁକୁର ମୋତେ ସେମାନଙ୍କ ବିରୋଧରେ ଲଢ଼େଇ କରିବାକୁ ଯଥେଷ୍ଟ ଉତ୍ସାହ ଯୋଗାଇ ଦେଇଛି ।

ଗ୍ରେଗରୀ କହେ- କଳହଟା ପ୍ରକୃତରେ ଦୁଇ ପରିବାର ଭିତରେ । ଆମେ ଯେତେହେଲେ ଚାକର ସିନା !

ମଣ୍ଟେଗ୍ୟୁ ପରିବାରର ଦୁଇ ଭୃତ୍ୟ ଆବ୍ରାହମ୍ ଆଉ ବାଲ୍‌ଥାଜାର ଦେଖାପଡ଼ନ୍ତି । ସାମ୍ପସନ୍ କହେ- ତୁ ଆରମ୍ଭ କର । ମୁଁ ତୋ' ପଛରେ ଅଛି ।

- ତା'ମାନେ ତୁ ତ ପଛକୁ ବୁଲିପଡ଼ି ପଳାଇବୁ । ସାମ୍ପସନ୍ କହେ- ନା,ନା, ମୋତେ ଏତେ ଭୀରୁ ବୋଲି ଭାବିବୁ ନାହିଁ । ଆଚ୍ଛା, ଆଇନଟାକୁ ନିଜ ଆଡ଼କୁ ଅଣାଯାଉ । କଳହ ସେମାନେ ପ୍ରଥମେ ଆରମ୍ଭ କରନ୍ତୁ ।

- ତା'ହେଲେ ମୁଁ ସେମାନଙ୍କ ପାଖ ଦେଇ ଚାଲିଗଲାବେଳେ ସେମାନଙ୍କୁ କଟମଟ କରି ଅନାଇ ଦେଇଯାଏ । ମନେ ହେଉଛି ସେଇଥିରେ କାମ ହୋଇଯିବ । ଗ୍ରେଗରୀ କହେ ।

- ନା' ସେତିକିରେ କିଛି ହେବ ନାହିଁ । ମୁଁ ବରଂ ସେମାନଙ୍କ ଆଗରେ ମୋର ବୁଢ଼ା ଆଙ୍ଗୁଠିଟାକୁ ହଲାଉଛି । ସେ କଥାକୁ ସେମାନେ ସହ୍ୟ କରିନେଲେ ତାଙ୍କର ଅପମାନ ହିଁ ହେବ, ସାମ୍ପସନ କହେ ।

ସାମ୍ପସନକୁ ବୁଢ଼ା ଆଙ୍ଗୁଠି ଦେଖାଇବାର ଦେଖି ସେପଟର ଆବ୍ରାହମ୍ ଆଗେଇ ଆସି କହେ- ତମେ କ'ଣ ଆମକୁ ଆଙ୍ଗୁଠି ଦେଖାଉଛ ?

- ଆଙ୍ଗୁଠି ତ ଦେଖାଉଛି, ସାମ୍ପସନ ଉତ୍ତର ଦିଏ ।

- ଏବଂ ତାହା ଆମକୁ ଲକ୍ଷ୍ୟ କରି ।

ସାମ୍ପସନ୍ ଓ ଗ୍ରେଗରୀ ପରାମର୍ଶ କରନ୍ତି- ଆଇନ୍‌ଟା ନିଜ ଆଡ଼େ ଅଣାଯାଇପାରିଛି କିମ୍ବା ନାହିଁ, ସେ ବିଷୟରେ । ତା'ପରେ ସାମ୍ପସନ୍ କହେ- ନା, ତମକୁ ଲକ୍ଷ୍ୟ କରି ନୁହେଁ...ମୋର ଖୁସି ହେଲା, ଆଙ୍ଗୁଠି ଦେଖାଉଛି...ବାସ୍ ।

-ତମେମାନେ କ'ଣ ଆମ ସହିତ ଝଗଡ଼ା କରିବ ? ଗ୍ରେଗରୀ ପଚାରେ ।

- ନା'- ସେଭଳି ଇଚ୍ଛା ନାହିଁ ।

- କିନ୍ତୁ ଯଦି କର -ସାମ୍ପସନ୍ କହେ- ତେବେ ଆମେ ବି ଛାଡ଼ିବୁ ନାହିଁ । ଆମର ମୁନିବ ତମ ମୁନିବ ଭଳି ଭଲଲୋକ ।

- ଆଉ କିଛି ନୁହେଁ ? ଆବ୍ରାହମ୍ ତାଚ୍ଛଲ୍ୟ କରି କହେ ।

ବାସ୍, ଆରମ୍ଭ ହୋଇଯାଏ ଦୁଇପକ୍ଷର ମରାମରି । ଏତିକିବେଳେ ସେଠି ପହଞ୍ଚେ ମଣ୍ଟେଗ୍ୟୁଙ୍କ ପୁତୁରା ରୋମିଓର ବନ୍ଧୁ ବେନ୍‌ଭୋଲିଓ । ଭୃତ୍ୟମାନଙ୍କର ମରାମରି ବନ୍ଦ କରିବାକୁ ସେ ଚେଷ୍ଟା କରେ । କିନ୍ତୁ ସେଠି ପହଞ୍ଚେ ଲେଡି କାପୁଲେଟଙ୍କ ପୁତୁରା, ଟାଇବଲ୍ଟ । ସେ ଆସିବାମାତ୍ରେ ଖୋଲା ତରବାରି ନେଇ ବେନ୍‌ଭୋଲିଓ ଉପରକୁ ଡେଇଁପଡ଼େ । ବେନ୍‌ଭୋଲିଓ କହେ- ଦେଖ ବାବୁ, ମୁଁ ଶାନ୍ତି ବଜାୟ ରଖିବାକୁ ଚାହେଁ- ହୁଏତ ତରବାରିଟା ଖାପରେ ବନ୍ଦ କର- ନ ହେଲେ ଏମାନଙ୍କ ମରାମରି ବନ୍ଦ କରିବାରେ ମୋତେ ସାହାଯ୍ୟ କର ।

- ଶାନ୍ତିର କଥା କହିଲ ନା ! ସେ ଶବ୍ଦଟାକୁ ମୁଁ ଘୃଣା କରେ । ମଣ୍ଟେଗ୍ୟୁ ପରିବାରର ସମସ୍ତେ ସେଇଆ କରନ୍ତି । ତା'ଅପେକ୍ଷା ବରଂ ମଜାଟା ଦେଖ । ଟାଇବଲ୍ଟ ଯୁଦ୍ଧ ଆରମ୍ଭ କରିଦିଏ । ଚାରିଆଡ଼େ ଭିଡ଼ ଜମିଯାଏ । ହଟ୍ଟଗୋଳ, ପାଟିତୁଣ୍ଡ ଆରମ୍ଭ ହୋଇଯାଏ ।

କାପୁଲେଟ ପରିବାରର ବୟସ୍କ ମୁରବି ଓ ଲେଡି କାପୁଲେଟ ଆସି ପହଞ୍ଚିଯା'ନ୍ତି । ଗୋଳମାଳର କାରଣ ଜାଣିବାକୁ ଚାହାନ୍ତି । ତା'ପରେ ସ୍ତ୍ରୀକୁ କହନ୍ତି- ମୋର ତରବାରିଟା ବଢ଼ାଇଦିଅ ତ !

ତରବାରି ! ତରବାରି କ'ଣ ହେବ ? ଲେଡି କାପୁଲେଟ୍ ଆଶ୍ଚର୍ଯ୍ୟ ହୁଅନ୍ତି । ତମେ ହାତବାଡ଼ିଟା ମାଗୁଛ ବୋଧହୁଏ ।

- ବାଡ଼ି ନୁହଁ, ତରବାରି । ଦେଖିପାରୁ ନାହଁ, ବୁଢ଼ା ମଣ୍ଟେଗ୍ୟୁ ତା'ର ତରବାରିଟା ହଲାଇ ହଲାଇ ଏଇଆଡ଼େ ମାଡ଼ିଆସୁଛି ! କହୁ କହୁ ମଣ୍ଟେଗ୍ୟୁ ଆଉ ତାଙ୍କ ସ୍ତ୍ରୀ ବି ପହଞ୍ଚିଯାଆନ୍ତି ।

ମଣ୍ଟେଗ୍ୟୁ ଡାକି ଡାକି ଆସୁଥା'ନ୍ତି- ସଇତାନ୍ କାପୁଲେଟ୍ । ମୋ ରାସ୍ତାରୁ ହଟିଯାଆ କହୁଛି, ବାଟ ଛାଡ଼ିଦେ, ନ ହେଲେ.. ଲେଡି ମଣ୍ଟେଗ୍ୟୁ ସ୍ୱାମୀଙ୍କ କଥାରେ ତାଳ ଦିଅନ୍ତି । ପୁଣି ଝଗଡ଼ା ଆରମ୍ଭ ହୋଇଯାଏ । ଏତିକିବେଳେ ସେଠାରେ ସଦଳବଳେ ଉପସ୍ଥିତ ହୁଅନ୍ତି ଭେରୋନାର ରାଜା ଏସ୍‌କାଲସ୍ । ପହଞ୍ଚିବାମାତ୍ରେ ଗୋଟାଏ ଗର୍ଜନ ଛାଡ଼ି ସେ କହନ୍ତି- ଏଇ ଯେ ମସ୍ତାନଦଳ । ସାଙ୍ଗେ ସାଙ୍ଗେ ତମର ଅସ୍ତ୍ରସବୁ ଫିଙ୍ଗିଦିଅ କହୁଛି । ଏହା ପୂର୍ବରୁ କେତେଥର ନିଜ ଭିତରେ ଝମେଲା ସୃଷ୍ଟି କରି ତମେ ସହରର ଶାନ୍ତି ଭଙ୍ଗ କରିଛ । କାପୁଲେଟ୍ ଆଉ ମଣ୍ଟେଗ୍ୟୁ- ଆପଣମାନେ ସମ୍ଭ୍ରାନ୍ତ ପୁଣି ବୟସ୍କ । ଆପଣମାନେ ବି ଏଥିରେ ନେତୃତ୍ୱ ନେଉଛନ୍ତି ! ଏହା ପରେ ଯଦି ଏମିତି କିଛି ଘଟେ, ତେବେ ମୃତ୍ୟୁଦଣ୍ଡ ହେବ ଏଥିପାଇଁ ଶାସ୍ତି । ଯାଅ- ଯେ ଯାହାର କାମରେ ଚାଲିଯାଅ । କାପୁଲେଟ୍, ଆପଣ ମୋ ସହିତ ଆସନ୍ତୁ, ଆଉ ମଣ୍ଟେଗ୍ୟୁ, ଆପଣ ଦି'ପହରରେ ବିଚାରାଳୟରେ ଉପସ୍ଥିତ ରହିବେ । ଆଦେଶ ଦେଇ ରାଜା ଚାଲିଯାଆନ୍ତି । ତାଙ୍କ ପଛେ ପଛେ ଅନ୍ୟମାନେ ମଧ । ରହିଯାଆନ୍ତି ମଣ୍ଟେଗ୍ୟୁ ପରିବାର । ମଣ୍ଟେଗ୍ୟୁ ବେନ୍‌ଭୋଲିଓକୁ ପଚାରନ୍ତି- ଝମେଲା ପ୍ରଥମେ ଆରମ୍ଭ କଲା କିଏ ? ତମେ କ'ଣ ସେତେବେଳେ ଏଠି ଉପସ୍ଥିତ ଥିଲ ?

ମୁଁ ଆସି ଦେଖିଲାବେଳକୁ ଦୁଇପକ୍ଷର ଚାକରମାନେ ମରାମରିରେ ଲାଗିଛନ୍ତି । ମୁଁ ସେମାନଙ୍କୁ ଛଡ଼ାଛଡ଼ି କରିବାକୁ ଯାଉଛି, ଏତିକିବେଳେ ଖୋଲା ତରବାରି ହାତରେ ଟାଇବଲ୍ଟ ଆସି ପହଞ୍ଚିଯାଏ । ମୋ କଥା ନ ଶୁଣି ସେ ତରବାରି ଘୂରାଇବାରେ ଲାଗେ, ତେଣୁ ମୋତେ ବାଧ୍ୟ ହୋଇ ଯୁଦ୍ଧ କରିବାକୁ ହୁଏ । ବେନଭୋଲିଓ ସବୁ ଘଟଣା କହିଯାଏ ।

- ରୋମିଓ କାହିଁ ? ତାକୁ ଆଜି ଦେଖିଚ ? ଲେଡି ପଚାରନ୍ତି ।

- ମନ ଅସ୍ଥିର ଥିବାରୁ ଆଜି ଖୁବ୍ ଭୋର୍‌ରୁ ବୁଲିବାକୁ ବାହାରିଥିଲି । ପଶ୍ଚିମ ଦିଗର ଜଙ୍ଗଲରେ ଗୋଟାଏ ବୁଦାତଳେ ତାକୁ ବସିଥିବାର ଦେଖିଥିଲି । ପାଖକୁ ଯିବା ପୂର୍ବରୁ ଜାଣିପାରି ସେ ଗଭୀର ଜଙ୍ଗଲ ମଧକୁ ପ୍ରବେଶ କରେ । ସେତେବେଳେ ମୁଁ ଆଉ ତା'କଥା ନେଇ ଭାବି ନାହିଁ । ବେନଭୋଲିଓ କହେ ।

ମଣ୍ଟେଗ୍ୟୁ କହନ୍ତି- ଆଜିକାଲି ଅଧିକାଂଶ ଦିନ ତାକୁ ସେଠି ଦେଖାଯାଉଥିବାର ଶୁଣୁଛି । ତା'ଆଖିରୁ କୁଆଡ଼େ ଅବିରାମ ଗତିରେ ଲୁହ ବୋହୁଛି ଆଉ ଦୀର୍ଘଶ୍ୱାସରେ ବାୟୁମଣ୍ଡଳ ଭାରାକ୍ରାନ୍ତ ହୋଇଉଠୁଛି ! ପ୍ରତ୍ୟେକ ଦିନ ଭୋର୍‌ରୁ ସେ ଘରଛାଡ଼ି ବାହାରିଯାଇଛି । ଘରେ ଥିବାବେଳେ ବି କବାଟ ଝରକା ସବୁ ବନ୍ଦ କରି ବସୁଛି । ତା'ଦୁଃଖଟା ତ ଦୂର କରିବା ଦରକାର ।

- ତା'ଦୁଃଖର କାରଣ ଆପଣ ଜାଣନ୍ତି ? ବେନ୍‌ଭୋଲିଓ ପଚାରେ ।

- ନା ତ ।

- ଏ ବିଷୟରେ ତାକୁ କିଛି ପଚାରିଛନ୍ତି ?

-ହଁ ପଚାରିଛି । ତା'ବନ୍ଧୁମାନେ ମଧ୍ୟ ପଚାରିଛନ୍ତି । ତେବେ ସେ କିଛି କହି ନାହିଁ । କାରଣଟା ଜାଣିଲେ ହୁଏତ କିଛି ପ୍ରତିକାର କରାଯାଇପାରନ୍ତା ।

ରୋମିଓକୁ ଆସୁଥିବାର ଦେଖି ବେନ୍‌ଭୋଲିଓ କହେ- କାକା, ଆପଣମାନେ ବରଂ ଚାଲିଯାଆନ୍ତୁ । ମୁଁ ତାକୁ ପଚାରି ଦେଖେ ।

ମଣ୍ଟେଗ୍ୟୁ ସ୍ତ୍ରୀଙ୍କୁ ନେଇ ଚାଲିଯାଆନ୍ତି । ବେନ୍‌ଭୋଲିଓ ରୋମିଓକୁ ସୁପ୍ରଭାତ ଜଣାଏ । ଆଶ୍ଚର୍ଯ୍ୟ ହୋଇ ରୋମିଓ ପଚାରେ- ଏବେବି କ'ଣ ପ୍ରଭାତ ରହିଛି ?

- ଅଛି । କାରଣ ଏବେ ମୋଟେ ସକାଳ ନ'ଟା ।

- ଆଛା, ଦୁଃଖର ସମୟ ବଡ଼ ଦୀର୍ଘ ମନେହୁଏ । ରୋମିଓ ବନ୍ଧୁକୁ ପଚାରେ, ବାବା ଏମିତି ତରତର ହୋଇ ଚାଲିଗଲେ କାହିଁକି ?

ପ୍ରଶ୍ନଟା ଏଡ଼ାଇଯାଇ ବେନ୍‌ଭୋଲିଓ ଓଲଟା ପଚାରେ, କିନ୍ତୁ ତମର ଦୁଃଖଟା ଏମିତି କ'ଣ ଯେ, ଯାହା ପାଇଁ ତମକୁ ସମୟ ଏତେ ଦୀର୍ଘ ମନେ ହେଉଛି ?

- ଯାହା ପାଇଥିଲେ ସମୟଟା ପାଣିଭଳି ବହିଯାଆନ୍ତା, ତା'ପାଇ ନାହିଁ.. ରୋମିଓ କହେ ।

- ସେଇଟା କୌଣସି ପ୍ରେମଘଟିତ ବ୍ୟାପାର ?

- ନା, ବରଂ ପ୍ରେମରୁ ବାହାରକୁ ବାହାରି ଆସିଥିବାର ବ୍ୟାପାର ।

- ବେନ୍‌ଭୋଲିଓ କହେ, ହାୟ ଏଇ ପ୍ରେମକୁ ନେଇ ତମକୁ ଭାବିବାକୁ ଭଲ ଲାଗୁଛି । କିନ୍ତୁ ପ୍ରକୃତରେ ପ୍ରେମ କି କଠୋର !

- ଖାଲି ଯନ୍ତ୍ରଣା, ଆଉ ତୀବ୍ର ଦହନ- ରୋମିଓ ରାଜିହୁଏ ।

ରାସ୍ତାରେ ସେତେବେଳଯାଏ ବି ମରାମରିର ଚିହ୍ନ ଏଠି ସେଠି ଦେଖାଯାଉଥାଏ । ସେଆଡ଼କୁ ଲକ୍ଷ୍ୟ କରି ରୋମିଓ କହେ- ଏ ସବୁ କ'ଣ ? ଓ, ବୁଝିପାରୁଛି, ସେଇ ପାରିବାରିକ କଳହ- ଯାହାର ମୋଟ ଫଳ ଶୂନ୍ୟ- କେତେଗୁଡ଼ାଏ ଅର୍ଥହୀନ ବ୍ୟାପାରର ପୁନରାବୃତ୍ତି । ମୋର ପ୍ରେମ ଏସବୁର ଊର୍ଦ୍ଧ୍ୱରେ । ମୋ କଥାରେ ବୋଧହୁଏ ତମକୁ ହସ ମାଡୁଛି, ନୁହେଁ ?

- ନା ତ- ବରଂ କାନ୍ଦ ଲାଗୁଛି ।

- କାନ୍ଦ ? କିନ୍ତୁ କାହିଁକି ?

- ତମର ଯନ୍ତ୍ରଣାକୁ ଉପଲବ୍ଧି କରି ।

- ମୋ ନିଜ ଦୁଃଖର ଶେଷ ନାହିଁ । ତା'ଉପରେ ତମର ଦୁଃଖ ମିଶିଲେ ଆଉ ସହି ହେବ ନାହିଁ । ଦେଖ, ପ୍ରେମ ହେଉଛି ଦୀର୍ଘଶ୍ୱାସର ବାଷ୍ପରେ ପ୍ରସ୍ତୁତ ଏକ ଧୂଆଁ, ପରିଶୋଧିତ ହୋଇ ତାହା ପରିଣତ ହୁଏ ପ୍ରେମିକର ଅଶ୍ରୁ ଜଳର ସାଗରରେ ।

ରୋମିଓ ଚାଲିଯିବାକୁ ଚାହିଁଲେ ବି ବେନ୍‌ଭୋଲିଓ ତାକୁ ଛାଡ଼େ ନାହିଁ । କହେ- ଚାଲ, ମୁଁ ବି ତମ ସହିତ ଯିବି । ମୋତେ ଏମିତି ଛାଡ଼ି ଚାଲିଯିବା ତମ ପକ୍ଷରେ ଉଚିତ ନୁହେଁ ।

- କିନ୍ତୁ ମୁଁ ତ ଆଉ ମୋର ହୋଇ ନାହିଁ, ସବୁ କିଛି ହରାଇ ନିର୍ବେଦ ହୋଇବସିଛି । ରୋମିଓ ମୋ ଭିତରେ ନାହିଁ - ସେ ହୁଏତ ଅଛି ଅନ୍ୟ କେଉଁଠି...ରୋମିଓ କହେ ।

- କାହାର ପ୍ରେମରେ ତମର ଏତେ ଦୁଃଖ, ସେଇ କଥାଟା ତ ତମେ ଏପର୍ଯ୍ୟନ୍ତ କହି ନାହଁ ।

- ସେ କଥା କ'ଣ ଚିତ୍କାର କରି କହିବି ?

- ଯେମିତି ତମକୁ ଭଲ ଲାଗୁଛି, ସେମିତି କହ... ସେ କିଏ ?

- ନିଶ୍ଚୟ ସେ ଗୋଟିଏ ଝିଅ....

- ତା'ତ ହେବ....

- ଆଉ ସୁନ୍ଦରୀ ବି ।

- ତେବେ ଲକ୍ଷ୍ୟ ହାସଲରେ ଅସୁବିଧା କ'ଣ ?

- ସେଇଟା ତ ମୁସ୍କିଲ୍ । ପ୍ରେମ ତା'ପାଇଁ ଏକ ଫାନ୍ଦ- । ତହିଁରେ ପାଦ ରଖିବାକୁ ସେ ରାଜି ନୁହେଁ । ତା'ର ସେଇ ସୌନ୍ଦର୍ଯ୍ୟ ଚିରକାଳ ପାଇଁ ଅଘ୍ରାଣ ରହିଯିବ ।

- ସେ କ'ଣ ଆଜୀବନ ଅବିବାହିତ ରହିବ ?

- ହୁଏତ, ସେ ଅତ୍ୟନ୍ତ ଗମ୍ଭୀର ପ୍ରକୃତିର, ମୋ ଭଲପାଇବାର କୌଣସି ପ୍ରତିଦାନ ଦେବାକୁ ପ୍ରସ୍ତୁତ ନୁହେଁ । ସେଇଥିପାଇଁ ମୋର ଏ ହତାଶା....

ବେନ୍‌ଭୋଲିଓ ପରାମର୍ଶ ଦିଏ- ମୋ କଥା ମାନି ତାକୁ ଭୁଲିଯାଅ ।

- କେମିତି ଭୁଲିବି- ସେଇଟା ଶିଖାଇଦିଅ ।

- ତମର ଆଖିଦୁଇଟାକୁ ସ୍ୱାଧୀନତା ଦିଅ- ସେମାନେ ଅନ୍ୟ ସୌନ୍ଦର୍ଯ୍ୟର ସନ୍ଧାନ କରନ୍ତୁ । ବନ୍ଧୁ, ପୃଥିବୀ ସୌନ୍ଦର୍ଯ୍ୟର ଖଣି ।

- ତମେ କ'ଣ ମୋତେ ଏଭଳି ଜଣକୁ ଦେଖାଇ ଦେଇପାରିବ, ଯିଏ ତା'ପାଖରେ ଠିଆ ହୋଇପାରିବ ? ନା ବନ୍ଧୁ, ତାକୁ ଭୁଲିବା ଏତେ ସହଜ ନୁହେଁ ।

- ନ ପାରିଲେ ମରିବ- ବେନ୍‌ଭୋଲିଓ କହେ ।

ଭେରୋନାର ରାଜା ମଣ୍ଟେଗ୍ୟୁ ଆଉ କାପୁଲେଟ୍‌କୁ ସତର୍କ କରି ଛାଡ଼ିଦିଅନ୍ତି । ରାଜାଙ୍କର ଆତ୍ମୀୟ ପାରିସ୍ କାପୁଲେଟ୍‌ଙ୍କ ଝିଅ ଜୁଲିଏଟ୍‌ର ପାଣିପ୍ରାର୍ଥୀ ହୋଇ ତାଙ୍କ ପାଖକୁ ଆସନ୍ତି । କାପୁଲେଟ୍ କହନ୍ତି- ମୋ ଝିଅ ଏବେବି ବାଳିକା- ବୟସ ଚୌଦ ପୂରି ନାହିଁ- ଅନ୍ତତଃ ଆଉ ଦୁଇବର୍ଷ ପରେ...

- ତା'ଠାରୁ ଅଳ୍ପବୟସ୍କା କିନ୍ତୁ ମା ହୋଇଛନ୍ତି ଏବଂ ସୁଖୀ ମଧ୍ୟ ହୋଇଛନ୍ତି- ପାରିସ୍ ଜଣାଇଦିଏ ।

ଅକାଳରେ ଝରି ବି ଯାଇଛନ୍ତି । ଜୁଲିଏଟ୍ ମୋର ଏକମାତ୍ର କନ୍ୟା- ଆଶା ଆଉ ଭରସାର ପାତ୍ରୀ । ତା'ପାଇଁ ଏମିତି ଜୀବନ ମୋର କଷ୍ଟନାରେ ନାହିଁ । ତା'ଅପେକ୍ଷା ତମେ ବରଂ ଗୋଟିଏ କାମ କର- ତା'ସହିତ ମିଳାମିଶା ବଢ଼ାଅ... ତା'ର ମନ ପାଇବାକୁ ଚେଷ୍ଟା କର- ତା'ର ଇଚ୍ଛା ହିଁ ମୋର ଇଚ୍ଛା... ଆଜି ମୋ ଘରେ ଏକ ଭୋଜିସଭାର ଆୟୋଜନ କରିଛି । ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ପାଦଧୂଳି ଦେବେ । ଶ୍ରେଷ୍ଠ ସୁନ୍ଦରୀମାନେ ବି ଆସିବେ... ତମେ ମଧ୍ୟ ଆସ- ଦେଖ, ଶୁଣ, ତା'ପରେ ଶ୍ରେଷ୍ଠଟିକୁ ପସନ୍ଦ କର ।

ଜଣେ ଭୃତ୍ୟକୁ କାଗଜଖଣ୍ଡେ ଦେଇ କାପୁଲେଟ୍ କହନ୍ତି- ଏଥିରେ ଅନେକଙ୍କର ନାମ ଆଉ ଠିକଣା ଲେଖା ଅଛି । ତୁ ଯାଇ ସେମାନଙ୍କୁ ଆଜିର ଭୋଜିସଭା ପାଇଁ ନିମନ୍ତ୍ରଣ କରି ଆସିବୁ ।

କାପୁଲେଟ୍ ଓ ପାରିସ୍ ଚାଲିଯିବା ପରେ ଭୃତ୍ୟ ନିଜର ଅସନ୍ତୋଷ ପ୍ରକାଶ କରେ । ତାକୁ କାଗଜ ଧରାଇ ଦିଆଗଲା.. ସେ କୋଉ ଲେଖାପଢ଼ା ଜାଣେ ଯେ, ଏଥିରେ ଲେଖା ହୋଇଥିବା ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ ଜଣାଇବ । ଏତିକିବେଳେ ଆଳାପ କରୁ କରୁ ସେଠି ଆସି ପହଞ୍ଚିଯାଆନ୍ତି ରୋମିଓ ଆଉ ବେନଭୋଲିଓ । ବେନଭୋଲିଓ ସେତେବେଳଯାଏ ରୋମିଓକୁ ତା'ର ପୂର୍ବ ଉପଦେଶ ଦେଇ ଚାଲିଥାଏ । ବନ୍ଧୁ, ନୂଆ ରୂପର ସନ୍ଧାନ କର... ପୁରୁଣା ଯନ୍ତ୍ରଣା ଆପେ ଆପେ ଦୂର ହେବ ।

- ତମର ଏଇ ପ୍ରସ୍ତାବଟା ଯେ କିଭଳି ଅସମ୍ଭବ, ତା'ତମେ ଭାବି ଦେଖିଛ ? ରୋମିଓର ସ୍ୱରରେ କ୍ଷୋଭ ପ୍ରକାଶ ପାଏ ।

- ତମେ କ'ଣ ପାଗଳ ହୋଇଯାଇଛ ? ବେନ୍‌ଭୋଲିଓ ପଚାରେ ।

- ନା, ତା' ଅବଶ୍ୟ ହୋଇ ନାହିଁ । ତେବେ ବର୍ତ୍ତମାନ ମୋ ଅବସ୍ଥା ପାଗଳଠୁଁ ବି ଖରାପ । ମୋର ମନେହେଉଛି ମୋତେ ଯେମିତି କିଏ ବନ୍ଦୀ କରି ଚାବୁକ୍ ମାରୁଛି !

ସେମାନଙ୍କ କଥାବାର୍ତ୍ତା ଭିତରେ କାପୁଲେଟ୍‌ଙ୍କ ଭୃତ୍ୟ ଆସି ପଚାରେ, ସାର୍, ଆପଣମାନେ ପଢ଼ିପାରନ୍ତି ?

ମ୍ଳାନ ହସି ହସି ରୋମିଓ କହେ.. ନିଜର ଦୁର୍ଭାଗ୍ୟକୁ ଅନ୍ତତଃ ପଢ଼ିପାରେ ।

ଭୃତ୍ୟ କହେ- ସେ କଥା ଜାଣିବାକୁ ବହି ପଢ଼ିବା ଦରକାର ହୁଏ ନାହିଁ । କିନ୍ତୁ ଏ କାଗଜରେ କ'ଣ ଲେଖାଯାଇଛି ପଢ଼ିପାରିବେ ?

--ହଁ, ଯଦି ଅକ୍ଷର ଆଉ ଭାଷା ଜଣା ଥାଏ ।

ଚାକର ବୁଝେ, ଏମାନେ ପଢ଼ିଜାଣନ୍ତି ନାହିଁ । ତେଣୁ ସେ ସେମାନଙ୍କ ପାଖରୁ ଚାଲିଯିବାକୁ ଚାହେଁ । କିନ୍ତୁ ତାକୁ ବାଧା ଦେଇ ରୋମିଓ କହେ, 'ରହ, ଆମେ ପଢ଼ି ଜାଣୁ' । ତା'ପରେ ସେ କାଗଜଖଣ୍ଡକ ନେଇ ନାମ ତାଲିକାଟା ପଢ଼ିଦିଏ । ପଚାରେ- ଏମାନେ ସବୁ ଆସୁଛନ୍ତି କେଉଁଠିକୁ ?

- ଭୋଜି ଅଛି ନା... ରାତିରେ ଆମ ଘରେ...

- କା' ଘର ?

- ମୋ ମୁନିବଙ୍କର । ସେ ହେଉଛନ୍ତି କାପୁଲେଟ୍ । ମଣ୍ଟେଗ୍ୟୁ ପରିବାରର ନ ହୋଇଥିଲେ ଆପଣମାନେ ମଧ ଚାଲିଆସନ୍ତୁ । ଅନ୍ତତଃ ଗ୍ଲାସେ ଲେଖା ମଦ ପିଆଇ ପାରିବି ।

ଭୃତ୍ୟ ଚାଲିଯାଏ । ବେନ୍‌ଭୋଲିଓ କହେ- ଏଇ ଭୋଜିରେ ଥିବେ ତମର ସ୍ୱପ୍ନସୁନ୍ଦରୀ ରୋଜାଲିନ୍- ଆହୁରି ଥିବେ ଭେରୋନା-ଉଦ୍ୟାନର ସୁରଭିତ- ବର୍ଣ୍ଣିଳ ପୁଷ୍ପମାନେ । ସେଠିକି ଚାଲ, ମୁଁ ଯେଉଁମାନଙ୍କୁ ଦେଖାଇବି, ସେମାନଙ୍କ ସହିତ ତମର ସେଇ ସୁନ୍ଦରୀଙ୍କୁ ତୁଳନା କରି ଦେଖ- ସେମାନଙ୍କ ଆଗରେ ତମର ଏଇ ରାଜହଂସୀ ବୋଧ ହେବେ ଗୋଟିଏ କାକତୁଲ୍ୟ...

ମୋର ପ୍ରେମିକାଠାରୁ ସୁନ୍ଦରୀ ! ଯେଉଁ ସୂର୍ଯ୍ୟ ଆବହମାନକାଳରୁ ସବୁ କିଛି ଦେଖି ଆସୁଛି, ସେ ମଧ ପୃଥିବୀର ଜନ୍ମ ଲଗ୍ନଠାରୁ ତା'ଭଳି ଦ୍ୱିତୀୟ କାହାକୁ ଦେଖି ନ ଥିବ ।

ବେନ୍‌ଭୋଲିଓ କହେ- ତମେ କେବଳ ତାକୁ ହିଁ ଦେଖିଛ । ଅନ୍ୟ କୌଣସି ସୁନ୍ଦରୀ ପାଖରେ ଥୋଇ ତା'ର ବିଚାର କରି ନାହଁ । ଆଜି ମୁଁ ତମକୁ ସେଇ ଭାବରେ ଦେଖାଇବି । କେମିତି ଲାଗୁଛି ଦେଖ । ରୋମିଓ କହେ- ଯିବା ଯଦି ଯିବା । ତେବେ ତମର ସୁନ୍ଦରୀମାନଙ୍କୁ ଦେଖିବା ପାଇଁ ନୁହଁ, କେବଳ ଆମର ଆନନ୍ଦ ପାଇଁ ।

ଲେଡି କାପୁଲେଟ୍ ନର୍ସଠାରୁ ଜୁଲିଏଟ୍‌ର ବୟସ ସମ୍ପର୍କରେ ଜାଣିବାକୁ ଚାହାନ୍ତି । ନର୍ସ ବିଭିନ୍ନ ଦୃଷ୍ଟାନ୍ତ ସାହାଯ୍ୟରେ ପ୍ରମାଣ କରିଦିଏ ଯେ, ଆଗାମୀ ଅଗଷ୍ଟମାସରେ ତାକୁ ଚୌଦ ପୂରିଯିବ । ଜୁଲିଏଟ୍‌ର ପିଲାଦିନର ନାନା କୌତୁକପୂର୍ଣ୍ଣ ଘଟଣା ସମ୍ପର୍କରେ ନର୍ସ ଆଉ ଲେଡିଙ୍କ ମଧରେ ଆଳାପ ଚାଲେ । ନର୍ସ ଜଣାଇଦିଏ ଯେ ତା ଜୀବନକାଳ ଭିତରେ ସେ ଯେତେ ପିଲାଙ୍କର ଦେଖାଶୁଣା କରିଛି ତା'ଭିତରେ ଜୁଲିଏଟ୍ ହିଁ ହେଉଛି ସବୁଠାରୁ ସୁନ୍ଦରୀ । ତା'ର ବିବାହଟା ଦେଖି ଯାଇପାରିଲେ ତା ଜୀବନର ସବୁଠୁ ବଡ଼ କାମନା ପୂର୍ଣ୍ଣ ହେବ ।

ଲେଡିଙ୍କର ମନେ ପଡ଼ିଯାଏ ଯେ, ଏଇ ବିବାହ ବିଷୟରେ କଥାବାର୍ତ୍ତା କରିବାକୁ ସେ ଏଠାକୁ ଆସିଥିଲେ । ନର୍ସ ମାଧମରେ ଝିଅର ମତଟା ଜାଣିବା ତାଙ୍କର ନିହାତି ଆବଶ୍ୟକ । ନର୍ସ କିଛି ଉତ୍ତର ଦେବା ଆଗରୁ ଝିଅ ନିଜେ କହେ- ଏ ସମ୍ପର୍କରେ ମୁଁ ଏପର୍ଯ୍ୟନ୍ତ କିଛି ଭାବି ନାହିଁ ।

- ତା'ହେଲେ ଏବେ ଭାବ, ଲେଡି କହନ୍ତି- ଭେରୋନାରେ ତୋ'ଠୁଁ ଛୋଟ ଅନେକ ସମ୍ଭ୍ରାନ୍ତ ପରିବାରର ଝିଅମାନେ ମାଆ ହୋଇ ସାରିଲେଣି । ତୋ' ବୟସରେ ମୁଁ ବି ତୋର ମା ହୋଇସାରିଥିଲି । ଶୁଣ୍, ପାରିସ୍ ତୋତେ ପସନ୍ଦ କରିଛି ।

ନର୍ସ କହେ- ମାଡାମ୍, ପ୍ରକୃତରେ ସେ ଭଲ ପିଲାଟିଏ- ତା'ର ସ୍ୱଭାବଚରିତ୍ରରେ କିଛି ଦୋଷ ନାହିଁ-

ଲେଡି କହନ୍ତି- ଭେରୋନାରେ ତା'ଭଳି ଆଉ ଦ୍ୱିତୀୟଟି ନାହିଁ ।

- ଖୁବ୍ ସତ କଥା- ନର୍ସ କହେ ।

ଲେଡି ପୁଣି କହନ୍ତି- ଏଇ ପିଲାଟିକୁ ତୋର ପସନ୍ଦ କି ନାହିଁ କହ । ଆଜି ରାତିରେ ଭୋଜିସଭାରେ ତୁ ତାକୁ ଦେଖିପାରିବୁ । ତା'ର ଚେହେରାଟା ଭଲ- ଆଖି ଦୁଇଟି ସୁନ୍ଦର । ଭଲ ପାଇବାକୁ ମନ ହୁଏ । ତା'ସହିତ ସମ୍ପର୍କ ହୋଇପାରିଲେ ଏ ପରିବାରର ମର୍ଯ୍ୟାଦା ମଧ କ୍ଷୁଣ୍ଣ ହେବ ନାହିଁ । ପାରିସ୍ ସମ୍ପର୍କରେ ତୋ'ର ସ୍ପଷ୍ଟ ମତ ମୁଁ ଜାଣିବାକୁ ଚାହେଁ ।

ଜୁଲିୟେଟ୍ କହେ- ମୁଁ ପ୍ରଥମେ ତାକୁ ଦେଖେ- ତା'ପରେ ଅନ୍ୟ କଥା....

ଲେଡିଙ୍କୁ ଖୋଜି ଖୋଜି ଜଣେ ପରିଚାରକ ପହଞ୍ଚିଯାଏ । କହେ- ମାଡାମ୍, ଅତିଥିମାନେ ପ୍ରାୟ ଆସିଗଲେଣି । ସେମାନଙ୍କୁ ଖାଦ୍ୟ ବି ପରଷି ଦିଆଗଲାଣି । ଆପଣଙ୍କୁ ଆଉ ଅପାଙ୍କୁ ଡାକୁଛନ୍ତି ।

ଲେଡି କହନ୍ତି- ତମେ ଚାଲ । ଆମେ ଆସୁଛୁ ।

ରୋମିଓ, ମାରକୁଶିଓ, ବେନଭୋଲିଓ ଏବଂ ଆଉ କେତେକ ବନ୍ଧୁ ମୁଖୋଶ ପିନ୍ଧି ବାହାରିଛନ୍ତି । ସେମାନଙ୍କର ଲକ୍ଷ୍ୟ କାପୁଲେଟ୍‌ଙ୍କ ପ୍ରାସାଦ । ସାଙ୍ଗରେ କେତେଜଣ ମଶାଲଧାରୀ ମଧ ଅଛନ୍ତି । ସେ ସମୟର ଇଟାଲୀରେ ମୁଖୋଶ୍ ପିନ୍ଧି ଘର ଘର ବୁଲି ନାଚ୍‌ଗୀତ କରିବା ଥିଲା ଉତ୍ସବର ଏକ ଅଙ୍ଗ । ଅଯାଚିତ ଭାବେ ଉପସ୍ଥିତ ହୋଇଥିବାରୁ ସେମାନେ ଗୃହସ୍ୱାମୀଙ୍କୁ କ୍ଷମା ମାଗି ନେଉଥିଲେ । ତେବେ ଏଭଳି ଶିଳ୍ପୀମାନଙ୍କୁ ସାଧାରଣତଃ ସ୍ୱାଗତ ହିଁ କରାଯାଉଥିଲା । ତାହାର ସୁଯୋଗ ନେଇ ରୋମିଓ ଦଳବଳ ସହିତ ଛଦ୍ମବେଶରେ ବାହାରିପଡ଼ିଛି । ରୋମିଓ ବନ୍ଧୁମାନଙ୍କୁ ପଚାରେ, ଆମେ ଅନିମନ୍ତ୍ରିତ ଭାବରେ କାପୁଲେଟ୍‌ଙ୍କ ଘରକୁ ଯିବାର କାରଣ କ'ଣ ଦେଖାଇବା କିମ୍ବା କ୍ଷମା ବି ମାଗିବା ନାହିଁ ?

- ଆଜିକାଲି କ୍ଷମା ମାଗିବାର ରୀତି ଉଠିଗଲାଣି- ବେନ୍‌ଭୋଲିଓ କହେ ।

- ମୁଁ କିନ୍ତୁ ନାଚ୍‌ଗୀତରେ ଯୋଗ ଦେବି ନାହିଁ । ବରଂ ମଶାଲ ଧରି ଠିଆ ହେବି- ରୋମିଓ ଜଣାଏ ।

- ନା, ତା' ହେବ ନାହିଁ । ମାରକୁଶିଓ କହେ- ତମେ ହେଲ ପ୍ରେମିକ ପୁରୁଷ- ପ୍ରେମର ଡେଣାରେ ଉଡ଼ି ଉଡ଼ି ତମେ ତ ଅନେକଙ୍କର ଊର୍ଦ୍ଧ୍ୱରେ ବିଚରଣ କରିବ ।

- ପ୍ରେମ କଥା ମୋତେ କହ ନାହିଁ । କଣ୍ଟା ଭଳି ମୋ ହୃଦୟରେ ବିନ୍ଧି, ତାହା ମୋତେ କ୍ଷତାକ୍ତ କରି ରଖିଛି । ରୋମିଓ କହେ ।

- ପ୍ରେମ ଯଦି ତମ ହୃଦୟରୁ ରକ୍ତ ଝରାଉଛି, ତେବେ ତମେ ତା'ର ଊର୍ଦ୍ଧ୍ୱକୁ ଉଠି ତାକୁ ପରାଜିତ କର । ମାରକୁଶିଓ ପ୍ରସ୍ତାବ ଦିଏ ।

- ଘର ଭିତରକୁ ଯିବାମାତ୍ରେ ସମସ୍ତେ ତମକୁ ନାଚିବାକୁ ବାଧ କରିବେ । ବେନଭୋଲିଓ ଜଣାଇଦିଏ । ରୋମିଓ କିନ୍ତୁ ନିଜ ନିଷ୍ପତ୍ତିରେ ଅଟଳ ରହେ ।

- ନାଚଗୀତ ଭିତରେ ବୁଡ଼ିଗଲେ ତମର ମନ ତାଜା ହୋଇଯିବ । ମାରକୁଶିଓ କହେ ।

ରୋମିଓ ଉଦାସ କଣ୍ଠରେ କହେ- ଆମୋଦ ପ୍ରମୋଦ ପାଇଁ ମୋର କୌଣସି ଆଗ୍ରହ ନାହିଁ ।

- ଏଠି କଥାବାର୍ତ୍ତାରେ ସମୟ ନଷ୍ଟ କଲେ, ତେଣେ ଭୋଜି ଶେଷ ହୋଇଯିବ । ଆମ ପାଇଁ ଦାନାଟିଏ ବି ରହିବ ନାହିଁ । ବେନଭୋଲିଓ ବ୍ୟସ୍ତ ହୋଇପଡ଼େ ।

- ମୋର କିନ୍ତୁ ମନେ ହେଉଛି ଆମେ ଏକ ଅନିଶ୍ଚିତତା ଭିତରକୁ ପାଦ ବଢ଼ାଉଛେ । ଆମର ଏଇ ଅଭିଯାନରେ ଗୋଟାଏ ଅଶୁଭ ଯାତ୍ରାର ଆରମ୍ଭ ହେଉଛି । ରୋମିଓ ଚିନ୍ତାନ୍ୱିତ ହୋଇ କହେ ।

କାପୁଲେଟ୍‌ଙ୍କର ପ୍ରାସାଦରେ ଖାଇବା ପିଇବାର ପର୍ବ ଶେଷ ହୋଇଥାଏ । କାପୁଲେଟ୍ ଖୁସି ମନରେ ନାରୀବାହିନୀ ଆଡ଼କୁ ଅନାଇ କହନ୍ତି- ତମମାନଙ୍କ ଭିତରୁ ଯେଉଁମାନଙ୍କର ଖାଇବାଟା ବେଶି ହୋଇଯାଇ ନାହିଁ, ସେମାନେ ଏଇ ମୁଖାଧାରୀମାନଙ୍କ ସହିତ ନାଚରେ ଯୋଗ ଦିଅନ୍ତୁ । ମୁଁ ବି ଦିନେ ମୁଖାପିନ୍ଧି ନାଚିବାକୁ ବାହାରୁଥିଲି । ସୁନ୍ଦରୀମାନଙ୍କ କାନରେ ମିଠା ମିଠା କଥା କହିବାର ସୁଯୋଗ ନେଉଥିଲି । ସେ ସବୁ ଦିନ ଆଉ ନାହିଁ । ବାଜଣାଦାରମାନେ, ତମେ ବଜାଇବାକୁ ଆରମ୍ଭ କର । ଆରେ, ତମେମାନେ ଆହୁରି ଭଲକରି ଆଲୁଅ ଜଳାଇ ଦିଅ । ଆସର ଜମିଯାଉ ।

ଆଗନ୍ତୁକମାନଙ୍କର ନାଚ ଦେଖି ସେ ମନ୍ତବ୍ୟ ଦିଅନ୍ତି- ଏମାନେ ବେଶ୍ ଭଲ ନାଚୁଛନ୍ତି । କାପୁଲେଟ୍ ସ୍ତ୍ରୀଙ୍କ ସହିତ ଅତୀତରେ ଶେଷଥର ପାଇଁ ସେମାନେ କେବେ ନାଚିଥିଲେ, ସେ ବିଷୟରେ ବାଦାନୁବାଦରେ ଲାଗି ରହନ୍ତି । ରୋମିଓ ନାଚ ଦେଖୁ ଦେଖୁ ତା'ର ଆଖି ଟାଣିହୋଇଯାଏ ନୃତ୍ୟରତା ଏକ ସୁନ୍ଦରୀ ଆଡ଼େ । ଜଣେ ପରିଚାରକକୁ ପଚାରେ- ଏଇ ଯେ ଝିଅଟି, ଜଣେ ସୈନିକଙ୍କର ହାତ ଧରି ନାଚୁଛି, ସେ କିଏ ?

- ମୁଁ ଜାଣେ ନାହିଁ ସାର୍, ପରିଚାରକ ଉତ୍ତର ଦିଏ । ଝିଅଟି ଆଡ଼େ ଚାହିଁ ତା'ର ଆଖି ବିସ୍ଫାରିତ ହୋଇଯାଏ । ଏତେ ରୂପ, ପୁଣି ଗୋଟିଏ ଅଙ୍ଗରେ ? ସେ ଭାବେ- ଏ ତ ଅଗ୍ନିଶିଖାଠାରୁ ବି ଉଜ୍ଜ୍ୱଳ । ରାତ୍ରିର ଅନ୍ଧକାର ଭିତରେ ସେ ଏକ ଦୀପ୍ତିମାନ୍ ହୀରକଖଣ୍ଡ । ଇଚ୍ଛା ହେଉଛି, ଏଇ ରୂପକୁ ଚିରକାଳ ହୃଦୟରେ ବନ୍ଦୀ କରି ରଖିବାକୁ । ଏ ରୂପ ତ ଧୂଳିର, ଧରାର ନୁହେଁ । ସେ ଯେମିତି କାକଗୋଷ୍ଠୀ ମଧ୍ୟରେ ଏକ ଶୁଭ୍ର କପୋତ ! ତା'ର ଟିକିଏ ସ୍ପର୍ଶରେ ମୋ ଜୀବନ ଧନ୍ୟ ହୋଇଯିବ ।

ରୋମିଓର ଗଳା ଶୁଣିପାରେ ଟାଇବଲ୍ଟ । କହେ- ମଣ୍ଟେଗ୍ୟୁ ପରିବାରର ଗଳାର ଶବ୍ଦ ଭଳି ମନେ ହେଉଛି । ତା'ପରେ ସେ ନିଜ ଅନୁଚରକୁ ତରବାରି ଆଣିବାପାଇଁ ଆଦେଶ ଦିଏ । କହେ- ଛଦ୍ମବେଶରେ ଆମ ଉତ୍ସବରେ ମଜା ଲୁଟିବାକୁ ଆସିଛି । ପରିବାରର ସମ୍ମାନ ରକ୍ଷା ପାଇଁ ତାକୁ ହତ୍ୟା କଲେ ମୋର ଅପରାଧ ହେବ ନାହିଁ । ତା'ର ମୁହଁର ବିରୂପତା କାପୁଲେଟ୍‌ଙ୍କର ଦୃଷ୍ଟି ଆକର୍ଷଣ କରେ । ସେ ଏହାର କାରଣ ପଚାରନ୍ତି ।

- କାକା, ଏଇ ଲୋକଟା ଆମର ଚିରଶତ୍ରୁ ମଣ୍ଟେଗ୍ୟୁ ପରିବାରର । ନିଶ୍ଚୟ କୌଣସି ମନ୍ଦ ଉଦ୍ଦେଶ୍ୟରେ ଆମର ଭୋଜି ସଭାକୁ ଆସିଛି- ଟାଇବଲ୍ଟ କହେ ।

କାପୁଲେଟ୍ ଭଲ କରି ଲୋକଟିକୁ ଦେଖି କହନ୍ତି- ରୋମିଓ ନା ? ହଁ, ସେଇ ସଇତାନ୍‌ଟା । ତେବେ ତମେ ଉତ୍ତେଜିତ ହୁଅ ନାହିଁ । ତାକୁ ଛାଡ଼ିଦିଅ । ତା'ଚେହେରାରେ ଭଦ୍ରଲୋକର ଛାପ ରହିଛି । ଭେରୋନାବାସୀ ତାକୁ ନେଇ ଗର୍ବ କରନ୍ତି । ଖୁବ୍ ଭଲ ଆଉ ଗୁଣୀ ପିଲା । ତା' ପ୍ରତି ଅଭଦ୍ର ବ୍ୟବହାର ଶୋଭନୀୟ ହେବ ନାହିଁ । ତମେ ବରଂ ପ୍ରସନ୍ନ ରହିବାକୁ ଚେଷ୍ଟା କର । ଖୁସିର ମେଜାଜ୍‌ଟାକୁ ନଷ୍ଟ କରି ଦିଅ ନାହିଁ ।

- ମୁଁ ତାକୁ କୌଣସିମତେ ସହ୍ୟ କରିବି ନାହିଁ । ରାଗରେ ଗରଗର ହୋଇ ଟାଇବଲ୍ଟ କହେ । କାପୁଲେଟ୍ ବୁଝାନ୍ତି- ଅନ୍ତତଃ ଆଜିପାଇଁ ସହ୍ୟ କରିବାକୁ ହେବ । ସେ ଏଠି ଥାଉ । ତମେ ଆଉ ଅତିଥିମାନଙ୍କ ସହିତ ଝଗଡ଼ା କର ନାହିଁ ।

- କାକା, ଆପଣ ବୁଝୁ ନାହାନ୍ତି । ଏଇ ଲୋକଟାର ଉପସ୍ଥିତି ଆମ ପରିବାର ପାଇଁ ନିତାନ୍ତ ଲଜ୍ଜାଜନକ ବ୍ୟାପାର । ଟାଇବଲ୍ଟ ତଥାପି ଅଶାନ୍ତ ।

- ଛାଡ଼, ସତରେ କ'ଣ ସେଇଆ ? କାପୁଲେଟ୍ ଏଥର ରାଗିଯାଆନ୍ତି । 'ମୁଁ ଜାଣେ କେଉଁଟା କଣ । ଏଥର ତମେ ଚୁପ୍ କର, ନ ହେଲେ ଚୁପ୍ କରାଇଦେବାକୁ ମୁଁ ବାଧ ହେବି ।'

- ଠିକ୍ ଅଛି, ମୁଁ ଏବେ କିଛି କହୁ ନାହିଁ । ବର୍ତ୍ତମାନ ତା'ର ଆସିବାଟା ମିଠା ଲାଗିଲେ ବି ଭବିଷ୍ୟତ୍‌ରେ ଏହା ନିଶ୍ଚୟ ପିତାରେ ପରିଣତ ହେବ । ରାଗରେ ଟାଇବଲ୍ଟ ସ୍ଥାନ ତ୍ୟାଗ କରେ ।

ନିର୍ଜନରେ ପାଇ ରୋମିଓ ଜୁଲିୟେଟ୍‌କୁ କହେ- ମୋର ଏଇ ନଗଣ୍ୟ ହାତରେ ମୁଁ କ'ଣ ତମକୁ ସ୍ପର୍ଶ କରି ନିଜକୁ ଧନ୍ୟ ମନେକରିବାର ସୁଯୋଗ ପାଇବି ? ମୋର ଏଇ ଓଠ ଲାଜୁଆ ଜଣେ ତୀର୍ଥଯାତ୍ରୀ ଭଳି ତମକୁ ଥରେ ଚୁମ୍ବନ କରିବାକୁ ଚାହେଁ ।

- ଭଦ୍ର ତୀର୍ଥଯାତ୍ରୀ, ଜୁଲିଏଟ୍ କହେ- ଆପଣ ବୋଧହୁଏ ଆପଣଙ୍କ ହାତ ଉପରେ ସୁବିଚାର କରୁ ନାହାନ୍ତି । ସାଧୁମାନଙ୍କର ହାତରେ ହାତ ଛୁଆଇଁ ମଧ ତୀର୍ଥଯାତ୍ରୀମାନେ ଚୁମ୍ବନର ରୋମାଞ୍ଚ ଅନୁଭବ କରନ୍ତି ।

- ସାଧୁମାନଙ୍କର କ'ଣ ଓଠ ନାହିଁ ? ରୋମିଓ ପ୍ରଶ୍ନ କରେ ।

- ସେ ଓଠ କେବଳ ପ୍ରାର୍ଥନା ପାଇଁ । ଜୁଲିଏଟ୍ ଉତ୍ତର ଦିଏ ।

- ତା'ହେଲେ ହାତ ଯାହା କରେ, ମୋର ଓଠକୁ ସେଇଆ କରିବାକୁ ଅନୁମତି ମିଳୁ । ରୋମିଓ କଥାରେ ଜୁଲିଏଟ୍‌ର ସମ୍ମତି ରହିଛି ବୁଝି, ସେ ତାକୁ ଚୁମ୍ବନ କରେ । କହେ- ତମ ଓଠର ସ୍ପର୍ଶରେ ମୁଁ ଆଜି ପାପମୁକ୍ତ ହେଲି ।

- ଏଥର ତେବେ ମୋ ଓଠରୁ ସେଇ ପାପ ଫେରାଇନିଅ ! ଜୁଲିଏଟ୍ କହେ । ରୋମିଓ ପୁଣି ଥରେ ତାକୁ ଚୁମ୍ବନ କରେ । ନର୍ସ ଆସି ଜୁଲିଏଟ୍‌କୁ ମା ଡାକୁଛନ୍ତି ବୋଲି ଜଣାଏ । ରୋମିଓ ଜୁଲିଏଟ୍‌ର ମାତୃ ପରିଚୟ ଜାଣିବାକୁ ଚାହେଁ । ନର୍ସ ଜଣାଏ, ସେ ହେଉଛନ୍ତି ଏ ପରିବାରର କର୍ତ୍ତ୍ରୀ ଲେଡି କାପୁଲେଟ୍ ।

ରୋମିଓ ମୁହଁର ସମସ୍ତ ଦୀପ୍ତି ଲିଭିଯାଏ । ଲେଡି କାପୁଲେଟ୍ ଜୁଲିଏଟ୍‌ର ମାଆ ! ସର୍ବନାଶ । ଏବେତ ଶତ୍ରୁ ହାତରେ ମୋର ଜୀବନ । ବେନଭୋଲିଓ ଯିବା ପାଇଁ ଡାକେ ।

ଜୁଲିୟେଟ୍ ନର୍ସକୁ ପଚାରେ- ସେ କିଏ ? ସେଇ ଭଦ୍ରଲୋକ ? ଦୁଇତିନିଜଣଙ୍କୁ ଚିହ୍ନାଇଦେବା ପରେ ଜୁଲିୟେଟ୍ ରୋମିଓ ଆଡ଼କୁ ନିର୍ଦ୍ଦେଶ କରି ତା'ର ପରିଚୟ ପଚାରେ । ନର୍ସ ଜାଣି ନ ଥାଏ । ତେବେ ଜାଣିଆସି କହେ- ତା'ର ନାମ ରୋମିଓ- ଆମର ଚିରଶତ୍ରୁ ମଣ୍ଟେଗ୍ୟୁର ପୁଅ-

ଏଇ ଘୃଣାରୁ ତେବେ ମୋର ପ୍ରେମର ସୃଷ୍ଟି ! ଏଇ ଶତ୍ରୁକୁ ମୋତେ ଭଲପାଇବାକୁ ହେବ !

ଜୁଲିୟେଟ୍ ଆଡ଼କୁ ଅନାଇ ହାହାକାର କରିଉଠେ ନର୍ସ । ହାୟ ଈଶ୍ୱର, ଏ କ'ଣ ହେଲା ?

॥ ୨ ॥

ରାତିରେ ଖିଆପିଆ ସାରି ବୁଲି ବାହାରିଥିଲେ ତିନିବନ୍ଧୁ । ରୋମିଓ, ବେନ୍‌ଭୋଲିଓ ଆଉ ମାରକୁଶିଓ । କିଛି ବାଟ ଯିବା ପରେ ରୋମିଓ ଅଦୃଶ୍ୟ ହୋଇଯାଏ । ସେ ଗୋଟାଏ ପାଚେ଼ରି ଡେଉଁଥିବାର ବନ୍ଧୁମାନେ ଦେଖିଛନ୍ତି । ତା' ପରେ ତା'ର ପତା ନାହିଁ । ସେମାନେ ତା'ର ନାମ ଧରି ଡାକନ୍ତି । ମାତ୍ର ଉତ୍ତର ମିଳେ ନାହିଁ । ବେନଭୋଲିଓ କହେ- ସେ ନିଶ୍ଚୟ କୌଣସି ଗଛମୂଳେ ବସି ପ୍ରେମିକାର ଧ୍ୟାନ କରୁଛି । ବନ୍ଧୁମାନେ ଶେଷରେ ତାକୁ ନ ପାଇ ଫେରିଯାଆନ୍ତି ।

ରୋମିଓ ପାଚେ଼ରି ଡେଇଁ ଜୁଲିୟେଟ୍ ଯେଉଁ ଘରେ ଶୁଏ, ତା'ତଳେ ଯାଇ ଠିଆ ହୁଏ । ଜୁଲିୟେଟ୍ ଘରେ ଆଲୁଅ ଜଳୁଥାଏ । ରୋମିଓର ମନେହୁଏ, ଜୁଲିୟେଟ୍ ଘରଟା ପୂର୍ବଦିଗରେ ଏବଂ ଜୁଲିୟେଟ୍ ହେଉଛି ସୂର୍ଯ୍ୟ । ସେ ମନେ ମନେ କହେ- ହେ ସୂର୍ଯ୍ୟ, ତମେ ଉଦୟ ହୁଅ । ତମର ପ୍ରକାଶରେ ଆକାଶର ଏଇ ଚାନ୍ଦ ମ୍ଳାନ ହୋଇଯାଉ ।

ରୋମିଓ ଦେଖେ, ଜୁଲିୟେଟ୍ କାହାକୁ କଣ କହୁଛି । ତାକୁ ଅବଶ୍ୟ କହୁ ନାହିଁ । ହୁଏତ ଆକାଶର ତାରାମାନଙ୍କୁ କହୁଛି । ସେଇ ତାରାସବୁ ତା'ର ମୁଖମଣ୍ଡଳର ସୌନ୍ଦର୍ଯ୍ୟ ନିକଟରେ କେଡ଼େ ମ୍ଳାନ ! ତା'ର ଆଖିର ଆଭାରେ ପ୍ରତ୍ୟୁଷର ସୂଚନା ଦେଖି ପକ୍ଷିକୁଳ ଗାଇ ଉଠିବେ । ଝରକା ଦେଇ ଜୁଲିୟେଟ୍‌କୁ ଦେଖି ରୋମିଓ ଭାବେ- ହାତରେ ଚିବୁକ ନ୍ୟସ୍ତ କରି ତା'ର ଠିଆ ହେବାର ଭଙ୍ଗୀଟି କେଡ଼େ ମନୋରମ ! ମୁଁ ଯଦି ତା'ର ଦୁଇହାତର ଦସ୍ତାନା ହୋଇଥାଆନ୍ତି ତେବେ ପ୍ରତି ମୁହୂର୍ତ୍ତରେ ସେଇ ସୁନ୍ଦର ଚିବୁକର ସ୍ପର୍ଶ ପାଉଥାଆନ୍ତି । ଉପର ଝରକାରେ ମଥା ରଖି ଜୁଲିୟେଟ୍ ଯେମିତି କ'ଣ କହେ । ରୋମିଓ ଭାବେ- ଆହା, ମୁଁ ଯଦି ତା'ର ନିକଟରେ ଥା'ନ୍ତି, ତେବେ ପ୍ରତି ମୁହୂର୍ତ୍ତରେ ମୋତେ ଅମୃତପାନର ଆନନ୍ଦ ମିଳୁଥାଆନ୍ତା !

ରୋମିଓର ଅସ୍ତିତ୍ୱ ସେତେବେଳଯାଏ ବି ଜୁଲିୟେଟ୍‌ର ଅଜ୍ଞାତ । ସେ ନିଜ ସହିତ ଆଳାପ କରିଯାଏ ରୋମିଓ, ତମେ ଯଦି ମଣ୍ଟେଗ୍ୟୁ ହୋଇ ନ ଥାନ୍ତ, ତେବେ ତମପାଇଁ ମୋର ଏଇ ପଦବୀଟା ତ୍ୟାଗ କରିବାକୁ ମୁଁ ଆଦୌ ଦ୍ୱିଧା କରି ନ ଥାନ୍ତି । ତଳେ ଠିଆ ହୋଇ ରୋମିଓ ତା' କଥା ଶୁଣେ । ଚିନ୍ତା କରେ- ତା' କଥା ଆହୁରି ଶୁଣିବି କିମ୍ବା ତା' ସହିତ କଥାବାର୍ତ୍ତା ହେବି ? ଜୁଲିୟେଟ୍ କହିଚାଲିଥାଏ ତମର ନାମଟା ହିଁ ମୋର ଶତ୍ରୁ । ତେବେ ସେ ଯାହା ସେଇଆ ତ । ମଣ୍ଟେଗ୍ୟୁ ନାମରେ କ'ଣ ଯାଏଆସେ ? ଗୋଲାପକୁ ଯେଉଁ ନାମରେ ସମ୍ବୋଧନ କଲେ ବି ସେ ବାସ ବିତରଣ କରିବ ନିଶ୍ଚୟ । ରୋମିଓକୁ ରୋମିଓ ବୋଲି ନ ଡାକିଲେ ସେ ବି ସେମିତି ସୁନ୍ଦର ରହିବ ନା- ରୋମିଓ, ତମେ ତମର ନାମଟାକୁ ପରିତ୍ୟାଗ କର ।

ତଳୁ ପାଟିକରି ରୋମିଓ କହେ- ମୁଁ ତମର କଥା ମାନିନେଲି । ତମେ ବରଂ ମୋତେ 'ପ୍ରେମ' ବୋଲି ଡାକ, ସେଇଥିରେ ମୋର ନବଜନ୍ମ ହେବ ।

ଜୁଲିୟେଟ୍ ସେତେବେଳଯାଏ ବି ରୋମିଓକୁ ଦେଖି ନ ଥାଏ । ଗଳା ଶୁଣି କହିଉଠେ ତମେ କିଏ ? କିଏ ରାତିର ଅନ୍ଧାରରେ ଏମିତି ଠିଆ ହୋଇ ମୋ କଥା ଶୁଣୁଛ ?

- ପରିଚୟ କେମିତି ଦେବି ଜାଣେନା....ରୋମିଓ କହେ- ମୋର ନାମଟା ଯେ ତମର ଶତ୍ରୁ !

- ଯଦିଓ ତମ ମୁହଁର ଶହେଟା ଶବ୍ଦ ବି ମୁଁ ଏପର୍ଯ୍ୟନ୍ତ ଶୁଣି ନାହିଁ, ତଥାପି ଏଇ କଣ୍ଠସ୍ୱର ମୁଁ ଚିହ୍ନେ- ତମେ ରୋମିଓ ଆଉ ମଣ୍ଟେଗ୍ୟୁ । ଠିକ୍ ତ ? ରୋମିଓ କହେ- ଯଦି ତମର ପସନ୍ଦ ନୁହେଁ, ତେବେ ମୁଁ ଏ ଦୁଇଟାରୁ କିଛି ବି ନୁହେଁ ।

- ତମେ- ତମେ ଏଠିକୁ କେମିତି ଆସିଲ ? ବଗିଚାର ଏଇ ଉଚ୍ଚପାଚେରି । ତା'ଉପରେ ଚଢ଼ିବା ବି କଷ୍ଟ । ଯଦି ଆମ ଲୋକଙ୍କ ଆଖିରେ ପଡ଼ିଯାଅ, ତେବେ ଜୀବନ ପାଇବା କଷ୍ଟକର ହୋଇପଡ଼ିବ । ରୋମିଓ କହେ, ପ୍ରେମର ଦୁଇଟି ଡେଣାରେ ମୁଁ ପାଚେରି ଉପରେ ଉଡ଼ିଆସିଛି ।

କଳାପଥରର ଏଇ କଠିନ କାନ୍ଥ, ପ୍ରେମର ଗତିରୋଧ କରିବାର ଶକ୍ତି ତା'ର ନାହିଁ । ତମର ଆତ୍ମୀୟମାନେ ମଧ୍ୟ ତାହା କରିପାରିବେ ନାହିଁ ।

- ତମକୁ ଦେଖିବା ମାତ୍ରେ ସେମାନେ ହତ୍ୟା କରିବେ ।

- ସେମାନଙ୍କ ତରବାରିରେ ନୁହେଁ- ମୋର ମୃତ୍ୟୁ ତମର ଦୁଇଚକ୍ଷୁରେ । କେବଳ ତମେ ମୋ ପ୍ରତି ପ୍ରସନ୍ନ ହୁଅ । ମୁଁ ଖୁସିରେ ସେମାନଙ୍କ ମୁହାଁମୁହିଁ ହେବି ।

-କୌଣସିମତେ ମୁଁ ତମକୁ ତା' କରିବାକୁ ଦେବି ନାହିଁ ।

ରୋମିଓ କହେ- ସେମାନଙ୍କଠାରୁ ରକ୍ଷା ପାଇବାପାଇଁ ଅଛି ମୋର ଏଇ ରାତିର କଳାପୋଷାକ । ତମେ ଯଦି ମୋତେ ଭଲପାଅ, ତେବେ ସେମାନେ ମୋତେ ଦେଖନ୍ତୁ, ସେମାନଙ୍କ କ୍ରୋଧର ନିଆଁରେ ମୋ ଜୀବନ ଜଳିଯାଉ, କିନ୍ତୁ ତମର ଭଲପାଇବାର ଅଭାବ ହିଁ ହେବ ମୋର ପ୍ରକୃତ ମୃତ୍ୟୁ ।

- ଏ ସ୍ଥାନର କଥା ତମକୁ କିଏ କହିଲା ?

- ମୋର ପ୍ରେମ, ଆଖି ଦୁଇଟା ଖୋଲା ରଖିଥିଲି । ଆଉ ଜାଣିଥିଲି, ତମେ ଯେଉଁ ଦୁର୍ଗମ ଦ୍ୱୀପରେ ଥିଲେ ବି ମୋତେ ସେଠାରେ ପହଞ୍ଚିବାକୁ ହିଁ ହେବ ।

ରାତିର ଅନ୍ଧାର ହୋଇ ନ ଥିଲେ ତମେ ଦେଖିପାରିଥାନ୍ତ, ତମ କଥାରେ ମୋ ମୁହଁର ରଙ୍ଗ କେମିତି ବଦଳିଯାଇଛି ! ମୁଁ ଯାହା କହିଲି, ଭୁଲିଯାଅ । ବିଦାୟ- ତେବେ ଜୁଲିୟେଟ୍ ଚାଲିଯାଇପାରେ ନାହିଁ । ପୁଣି ପ୍ରଶ୍ନ କରେ- ତମେ କ'ଣ ପ୍ରକୃତରେ ମୋତେ ଭଲପାଅ ? ଉତ୍ତର ନିଜେ ଦେଇ କହେ- ଜାଣେ, ତମେ କହିବ—ହଁ, ଆଉ ମୁଁ ତାହା ବିଶ୍ୱାସ କରେ । କିନ୍ତୁ ତମେ ତ ମିଛ ବି କହିପାର । ସତ କହ ତ ତମେ ମୋତେ ଭଲପାଅ କି ନାହିଁ ? ଯଦି ତମେ ମନେ କରିଥାଅ ଯେ ମୁଁ ସହଜଲଭ୍ୟ- ତେବେ ମୁଁ କହିବି- ଆଦୌ ନୁହେଁ ।

- ତମେ କ'ଣ ବିଶ୍ୱାସ କରିବ ଯେ, ତମକୁ ଭଲପାଇବା ପାଇଁ ମୁଁ ମୋର ଏଇ ହୃଦ୍‌ଯନ୍ତ୍ରଟାକୁ ବାହାର କରି ଆଣି ତମକୁ ଉପହାର ଦେଇପାରେ ବୋଲି ? ଅନୁରୋଧ- ଏହାକୁ ତମେ ଗୋଟାଏ ଖେଳ ବୋଲି ଭାବିବ ନାହିଁ । ଜୁଲିୟେଟ୍, ମୁଁ ଏଇ ଆକାଶର ଚାନ୍ଦ ନାମରେ ଶପଥ କରି କହୁଛି... ବାଧା ଦେଇ ଜୁଲିୟେଟ୍ କହେ- ଚାନ୍ଦ ତ ପ୍ରତି ମୁହୂର୍ତ୍ତରେ ରୂପ ବଦଳାଏ । ତମର ଭଲପାଇବାଟା ତେବେ କ'ଣ ଏତେ ଅନିଶ୍ଚିତ ?

- ତେବେ କାହା ନାମରେ ଶପଥ କରିବି, କହ- ରୋମିଓ ଜାଣିବାକୁ ଚାହେଁ ।

- ଶପଥ ଲୋଡ଼ା ନାହିଁ । ଯଦି ନିହାତି କରିବାକୁ ଚାହଁ, ତେବେ ଶପଥ କର ନିଜର ମନୋରମ ସତ୍ତା ନାମରେ । କାରଣ ସେଇ ହେଲା ମୋର ଆରାଧ୍ୟ ଦେବତା । ମୁଁ ତାକୁ ହିଁ ବିଶ୍ୱାସ କରିବି ।

ସେଇ ଭାବରେ ଶପଥ ନେବାକୁ ଯିବାବେଳେ ରୋମିଓକୁ ପୁଣି ବାଧା ଦିଏ ଜୁଲିୟେଟ୍ । ନା- କୌଣସି ଶପଥ ଲୋଡ଼ା ନାହିଁ । ମୋତେ ତମେ ଭଲ ଲାଗ- ଆଜି ରାତିରେ କୌଣସି ଚୁକ୍ତି ଭିତରକୁ ଯିବା ପାଇଁ ମନ ଚାହୁଁ ନାହିଁ । ଏଇ ମାତ୍ର କଳିକାଟିଏ ଦେଖାଦେଇଛି । ଆଲୋକ ଆଉ ଉତାପରେ ସେ ଯେତେବେଳେ ପାଖୁଡ଼ା ମେଲିବ, ସେତେବେଳେ ଆମର ପୁଣି ଦେଖାହେବ । ରୋମିଓକୁ ବିଦାୟ ଜଣାଏ ଜୁଲିୟେଟ୍ । ରୋମିଓ ପଚାରେ- ତମେ ମୋତେ ଏମିତି ଅତୃପ୍ତ ରଖି ବିଦାୟ ଦେବ ?

- କି ଧରଣର ତୃପ୍ତି ତମେ ଚାହଁ ?

ସେ କଥା ତମେ କହିବା ଆଗରୁ ମୁଁ କହିଛି । ବେଶ୍, ପୁଣିଥରେ ସେଇ କଥା କହୁଛି । ମୁଁ ତମକୁ ଭଲ ପାଏ । ମୋର ଭଲପାଇବା ସମୁଦ୍ର ଭଳି ଅନନ୍ତ ଓ ଗଭୀର । ଯେତେ ଦେବି, ସେତେ ପାଇବାର ଆଶା ରଖିବି ।

ଭିତରୁ ନର୍ସ ଜୁଲିୟେଟ୍ କୁ ଡାକେ । ରୋମିଓକୁ ବିଦାୟ ଦେବାକୁ ଯାଇ ଜୁଲିୟେଟ୍ କହେ- ଆଉ ଟିକିଏ ରହ, ମୁଁ ସାଙ୍ଗେ ସାଙ୍ଗେ ଫେରିଆସୁଛି । ଜୁଲିୟେଟ୍ ଚାଲିଯାଏ । ରୋମିଓ ଭାବେ କେଡ଼େ ମନୋରମ ଏଇ ମାୟାବୀ ସ୍ୱପ୍ନାତୁର ରାତି ! ଜୁଲିୟେଟ୍ ଫେରିଆସେ । କହେ ଯଦି ଆମର ଏଇ ସମ୍ପର୍କକୁ ସ୍ଥାୟୀ କରିବାପାଇଁ ଭାବିଥାଅ, ତା'ହେଲେ କାଲି ମୁଁ କାହାକୁ ହେଲେ ତମ ପାଖକୁ ପଠାଇବି । ତମେ ତା'ହାତରେ ଲେଖି ଜଣାଇବ, କେବେ ଆଉ କେଉଁଠି ଆମର ବିବାହ ହେବ । ତା'ହେଲେ ମୁଁ ମୋର ସର୍ବସ୍ୱ ତମକୁ ସମର୍ପଣ କରିବି । ଯଦି ସେଭଳି କୌଣସି ଉଦ୍ଦେଶ୍ୟ ନ ଥାଏ, ତେବେ ମୋର ଦୁଃଖ, ମୋତେ ସହିବାକୁ ଛାଡ଼ିଦେଇ, ତମେ ବରଂ ବିଦାୟ ନିଅ... ହଜାରବାର ଶୁଭରାତ୍ରି ।

ରୋମିଓ କହେ... ତା'ର ଅର୍ଥ ମୁଁ ହଜାରେଥର ଏଇ ଆଲୋକ ଦର୍ଶନରୁ ବଞ୍ଚିତ ହେବି ? ସ୍କୁଲ ଛାତ୍ରଟିର ବହି ପ୍ରତି ଯେମିତି ମାୟା, ଭଲପାଇବାର ଆକର୍ଷଣ ଯେ ଠିକ୍ ସେମିତି !

ଜୁଲିୟେଟ୍‌କୁ ପୁଣି ଝରକାରେ ଦେଖାଯାଏ । କହେ- ତମ ସ୍ୱରର ମାୟାରେ ମୁଁ ପୁଣି ଟାଣି ହୋଇଆସିଛି । ଶିକାରୀର ଡାକରେ ଯେମିତି ବାଜପକ୍ଷୀ ଆସି ଧରାଦିଏ- ମୁଁ ବି ସେମିତି ଧାଇଁଆସିଛି । ଜାଣ, ମୁଁ ମୋର ଜନ୍ମଦାତାଙ୍କର ଅଧୀନରେ- ନ ହେଲେ ଏଇ ମୁହୂର୍ତ୍ତରେ ସବୁ ବନ୍ଧନ ଛିଣ୍ଡାଇ ମୁଁ ତମ ପାଖରେ ପହଞ୍ଚିଯାଆନ୍ତି ।

ରୋମିଓ କହେ...ତମର କଣ୍ଠସ୍ୱରରେ ମୁଁ ମୋର ଆତ୍ମାର ଆହ୍ୱାନ ଶୁଣୁଛି । ତମର ସ୍ୱର ମୋତେ ଶୁଣାଯାଉଛି ସୁମଧୁର ସଂଗୀତର ଏକ କଳି ପରି ।

ରୋମିଓ ପୁଣି ଡାକେ- ଜୁଲିୟେଟ୍ !

- କହ । କାଲି କେତେବେଳେ ଲୋକ ପଠାଇବି ?

- ନ'ଟା..

- ଏଇ ସମୟ ମୋ ପାଇଁ ଦୀର୍ଘ ଯୁଗଭଳି । ତମକୁ କାହିଁକି ଯେ ଡାକିଲି ଭୁଲିଯାଉଛି ।

- ତେବେ ମନେ ପଡ଼ିବାଯାଏ ମୁଁ ଏଇଠି ଠିଆ ହେଉଛି ।

- ତମେ ଠିଆ ହୋଇ ରହିଲେ ମୋର ମନେ ପଡ଼ିବ ନାହିଁ । ଭୋର ହୋଇଆସୁଛି । ମୁଁ ତମକୁ ଯିବାକୁ କହୁଛି.. ତେବେ ଖୁବ୍ ଦୂରକୁ ନୁହେଁ...ମୋର ଅତି ନିକଟରେ ତମେ ରହିବ ।

- ମୁଁ ବି ତ ସେଇଆ ଚାହେଁ- ରୋମିଓ କହେ ।

ଭୋର ହେବା ପୂର୍ବରୁ ଫାଦର ଲରେନ୍ସ ତାଙ୍କର ଛୋଟ ମୁଣିଟି ନେଇ କିଛି ଜଡ଼ିବୁଟିର ଅନ୍ୱେଷଣରେ ବାହାରିଥିଲେ । ସୂର୍ଯ୍ୟୋଦୟ ପୂର୍ବରୁ ସେ ସବୁକୁ ତାଙ୍କୁ ସଂଗ୍ରହ କରିନେବାକୁ ହେବ । ସେ ଭାବୁଥିଲେ, ପ୍ରକୃତି ଆମକୁ କେତେ କ'ଣ ନ ଦେଉଛି ! ସେ ସବୁର ଗୁଣ ବା କେତେ ! ତେବେ ଭୁଲ୍ ପ୍ରୟୋଗରେ ଗୁଣ ବି ହୋଇଯାଏ ଦୋଷ । ଏଇ ବଣୁଆ ଗଛଲତା ଭିତରେ ରହିଛି ବିଷ, ପୁଣି ଜୀବନ ପାଇଁ ସଞ୍ଜୀବନୀ । ମଣିଷ ଭିତରେ ବି ଏଇ ଦୁଇଟା ଅଛି... ସୌନ୍ଦର୍ଯ୍ୟ ପୁଣି ନିଷ୍ଠୁରତା । ତେବେ କୌଣସି ଗଛରେ ବିଷର ଆଧିକ୍ୟ ଥିଲେ ସେଇଟି ନିଜେ ନଷ୍ଟ ହୋଇଯାଏ ।

ରୋମିଓ ଫେରୁଥାଏ ନିର୍ଜନ ବନପଥ ଦେଇ । ଫାଦରଙ୍କୁ ଦେଖି ତାଙ୍କୁ ସୁପ୍ରଭାତ ଜଣାଏ । ତା'ଆଡ଼କୁ ଅନାଇ ଆଶ୍ଚର୍ଯ୍ୟରେ ଫାଦର ପଚାରନ୍ତି- ଘଟଣା କ'ଣ ? ଏତେ ସକାଳୁ ? ହୁଏତ କୌଣସି କାରଣରୁ ମନ ଅସ୍ଥିର ରହିଛି, ଆଉ ସେଇଥିପାଇଁ ଏ ସମୟରେ ବିଛଣା ଛାଡ଼ିଛ, ନୁହେଁ ? ବୁଢ଼ା ଆଖିରେ ନିଦ କମ୍, ତେଣୁ ସେମାନେ ଖୁବ୍ ଭୋରରୁ ଉଠିପଡ଼ନ୍ତି । କିନ୍ତୁ ତମ ବୟସରେ ତ ଏମିତି ହେବା କଥା ନୁହେଁ । ତା' ଯଦି ନ ହୁଏ, ତେବେ ମୋର ଅନୁମାନ, କାଲି ରାତିରେ ତମେ ଘରେ ନ ଥିଲ ।

- ଆପଣଙ୍କ ଶେଷ ଅନୁମାନଟି ସତ୍ୟ, - ରୋମିଓ ସ୍ୱୀକାର କରି ଲଘୁ ସ୍ୱରରେ କହେ- କାଲି କିନ୍ତୁ ମୋର ବିଶ୍ରାମ ଅତ୍ୟନ୍ତ ସ୍ମରଣୀୟ ହୋଇଛି ।

- ଈଶ୍ୱର ତମକୁ କ୍ଷମା କରନ୍ତୁ । ତମେ କ'ଣ କାଲି ରୋଜାଲିନ୍ ସହିତ ଥିଲ ନା କ'ଣ ? ଫାଦର ପ୍ରଶ୍ନ କରନ୍ତି ।

- ରୋଜାଲିନ୍ ! କିନ୍ତୁ ସେ ନାମଟା ତ ମୁଁ ଭୁଲିଯାଇଛି- ରୋମିଓ ଉତ୍ତର ଦିଏ ।

- ତେବେ ତମେ ଥିଲ କେଉଁଠି ? ଫାଦର ଜାଣିବାକୁ ଚାହାନ୍ତି । ରୋମିଓ ପରେ ତାଙ୍କୁ ସବୁ କଥା ଜଣାଇବ ବୋଲି କହେ । ବର୍ତ୍ତମାନ କେବଳ ଏତିକି କହିବାକୁ ଚାହେଁ ଯେ, ଗତରାତି ସେ ଶତ୍ରୁପକ୍ଷର ଗୁହାରେ କଟାଇଛି । ସେଠାରେ ଜଣେ ହଠାତ୍ ତା'ର ହୃଦୟକୁ ତୀରବିଦ୍ଧ

କରିଦେଇଛି । ତୀର ତା' ହୃଦୟରେ ମଧ ଲାଗିଛି । ଏବେ ଫାଦର ଚାହିଁଲେ ଉଭୟଙ୍କୁ ସୁସ୍ଥ କରିପାରିବେ । କଥାଟାକୁ ଅଧିକ ସ୍ପଷ୍ଟ କରିବା ନିମନ୍ତେ ଫାଦର ଅନୁରୋଧ କରନ୍ତି । ବଙ୍କା କଥା ଭିତରକୁ ସେ ପଶିପାରିବେ ନାହିଁ କିମ୍ବା କୌଣସି ସାହାଯ୍ୟ ମଧ କରିପାରିବେ ନାହିଁ ବୋଲି ସ୍ପଷ୍ଟ ଜଣାଇଦିଅନ୍ତି ।

ରୋମିଓ ସ୍ପଷ୍ଟ ହେବାକୁ ଚେଷ୍ଟା କରି ଜଣାଏ ଯେ, ସେ ତା'ର ହୃଦୟଟିକୁ କାପୁଲେଟ୍‌ଙ୍କ କନ୍ୟାକୁ ଦେଇଆସିଛି । ସେମାନେ ପରସ୍ପରକୁ ଭଲ ପାଆନ୍ତି । ବିବାହ ଦେଇ ଦୁଇ ହୃଦୟର ସ୍ଥାୟୀ ସଂଯୋଗ ଘଟାଇବାର ଦାୟିତ୍ୱ ଏବେ ଫାଦର୍‌ଙ୍କ ଉପରେ । କେତେବେଳେ, କେଉଁଠି ଏବଂ କିପରି ସେମାନଙ୍କର ପରିଚୟ ହେଲା, ସେ ସବୁ କହିବ । ତେବେ ସେମାନଙ୍କର ବିବାହ ଦେବାପାଇଁ ଫାଦରଙ୍କୁ ରାଜି ହେବାକୁ ପଡ଼ିବ ।

ବିସ୍ମିତ ଫାଦର କହନ୍ତି- ହା ଈଶ୍ୱର, କି ପରିବର୍ତ୍ତନ ! କାଲି ପର୍ଯ୍ୟନ୍ତ ରୋଜାଲିନ୍ ଥିଲା ତମ ଆଖିର ତାରା । ଆଜି ସେ ବାତିଲ୍ ହୋଇଗଲା ! ଏ ପିଢ଼ିର ଯୁବକମାନଙ୍କର ଭଲପାଇବା ତେବେ ହୃଦୟରେ ନୁହଁ, ଆଖିରେ ! ରୋଜାଲିନ୍ ପାଇଁ ଏତେ ଅଶ୍ରୁ, ଏତେ ହା- ହୁତାଶ, ଦୀର୍ଘଶ୍ୱାସ ସେସବୁର ତେବେ କିଛି ମୂଲ୍ୟ ନାହିଁ ? କାଲିର ସେଇ ଅଶ୍ରୁଲେଖା ଆଜିବି ତମ ଗାଲରେ ରହିଛି ଅଥଚ୍ ତମେ ରାତାରାତି ବଦଳିଗଲ !

- ରୋଜାଲିନ୍‌କୁ ଭଲପାଇବା ନେଇ ଆପଣ ତ ନିଜେ ବିଦ୍ରୂପ କରୁଥିଲେ । ରୋମିଓ ଅଭିଯୋଗ କରେ ।

- ଭଲ ପାଇବାକୁ ନୁହେଁ, ପ୍ରେମର ଯେଉଁ ଛଳନା ତମେ କରୁଥିଲ, ତାକୁ ଫାଦର କହନ୍ତି । ରୋମିଓ କହେ- ଏବେ ମୁଁ ଯାହାକୁ ଭଲପାଏ, ସେ ବି ମୋତେ ଭଲପାଏ । ରୋଜାଲିନ୍ କିନ୍ତୁ ଥିଲା ପଥର ଭଳି ନିର୍ବାକ୍ ଆଉ ନିଷ୍ପନ୍ଦ ।

- ସେ ନିଶ୍ଚୟ ତମର ଭଲପାଇବାକୁ ଉପଲବ୍ଧି କରୁଥିଲା- କିନ୍ତୁ ନିଜ ମନର ଭାବ ପ୍ରକାଶ କରିପାରୁ ନ ଥିଲା । ଫାଦର କହନ୍ତି- ଯାହାହେଉ, ବର୍ତ୍ତମାନ ତମେ ମୋ ସହିତ ଚାଲ । ଏ ବ୍ୟାପାରରେ ତମେ ମୋର ସାହାଯ୍ୟ ପାଇବ । କାରଣ ଏ ମିଳନ ସମ୍ଭବ ହେଲେ ଦୁଇ ପରିବାରର ମଙ୍ଗଳ ହେବ ।

ରୋମିଓ କହେ- ଏବେ ମୋତେ ବିଦାୟ ଦିଅନ୍ତୁ । ଟିକିଏ ତରତରରେ ଅଛି । ଫାଦର କହନ୍ତି- ଧୀରେ ଚାଲ, ଦେଖି ଶୁଣି ପାଦ ପକାଅ । ଯିଏ ଦୌଡ଼େ, ସେହିଁ ପଡ଼େ ।

ରାତିରେ ରୋମିଓର ସେଇ ଆକସ୍ମିକ ଅନ୍ତର୍ଦ୍ଧାନ ହେବାକୁ ନେଇ ବେନ୍‌ଭୋଲିଓ ଆଉ ମାରକୁଶିଓଙ୍କ ଭିତରେ କଥା ଚାଲିଥିଲା । ବଦ୍‌ମାସ୍‌ଟା ଗଲା କୁଆଡ଼େ ? ରାତିରେ କ'ଣ ଆଦୌ ଘରକୁ ଫେରି ନାହିଁ ?

- ନା ଆସି ନାହିଁ, ଘରଲୋକଙ୍କ ସହିତ ମୋର କଥାବାର୍ତ୍ତା ହୋଇଛି- ବେନ୍‌ଭୋଲିଓ କହେ । ସେଇ କଠିନ ହୃଦୟ ରୋଜାଲିନ୍‌ଟା ଦେଖୁଛି ତାକୁ ପାଗଳ କରିଦେବ- ମାକନ୍‌କୁଶିଓ ଜଣାଏ । ବେନ୍‌ଭୋଲିଓ ଆହୁରି ଜଣାଏ ଯେ, କାପୁଲେଟ୍‌ଙ୍କ ପୁତୁରା ଟାଇବଲ୍ଟ ଚିଠି ଲେଖି ରୋମିଓକୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କରିଛି ।

- ବିଚରା ରୋମିଓ, ଏକେ ତ ଦୁଇଟି କଳାଆଖିର ଛୁରୀରେ ସେ ପୂର୍ବରୁ ଦରମରା ଏବେ ପୁଣି ତାକୁ ଟାଇବଲ୍ଟର ମୁହାଁମୁହିଁ ହେବାକୁ ପଡ଼ିବ । ମାରକୁଶିଓ କହେ ।

- ଟାଇବଲ୍ଟକୁ ଏମିତି ଭୟ ପାଇବାର କ'ଣ ଅଛି ?

- ଅଛି । ସେ ନିପୁଣ ତରବାରି ଚାଳକ । ତାଳ-ଛନ୍ଦ-ଲୟ ଜଗି ସେ ଯୁଦ୍ଧ କରେ । ମାତ୍ର ଅଳ୍ପ ସମୟ ପାଇଁ ବିଶ୍ରାମ ନିଏ ଆଉ ଆଖି ପିଛୁଳାକେ ତରବାରି ଛାତିରେ ବସାଇ ଦିଏ ।

ଦୁହିଁଙ୍କର କଥାବାର୍ତ୍ତା ଚାଲିଥିବାବେଳେ ରୋମିଓ ଆସେ । ତା'ର ସେଇ ବିଧ୍ୱସ୍ତ ଚେହେରା ଆଡ଼କୁ ଅନାଇ ମାରକୁଶିଓ ଥଟ୍ଟା କରି କହେ- ବାଃ, ଚେହେରାଟା ଯାହା କରିଛ ନା, ପୂରା ଶୁଖିଲା ହେରିଂ ମାଛ ଭଳି । ଗତରାତିର ଆଚରଣ ପାଇଁ ରୋମିଓ ସେମାନଙ୍କଠାରୁ  କ୍ଷମା ଚାହେଁ । କହେ- ଗୋଟାଏ ଗୁରୁତର ବ୍ୟାପାରରେ ଜଡ଼ିତ ହୋଇପଡ଼ିଛି । ସେଥିପାଇଁ...

ଏତିକିବେଳେ ସେଠାରେ ଆସି ପହଞ୍ଚନ୍ତି ଜୁଲିଏଟ୍‌ର ଜଣେ ପରିଚାରିକା ଆଉ ତା'ର ସ୍ୱାମୀ ପିଟର । ସେମାନଙ୍କୁ ଦେଖି ତିନିବନ୍ଧୁ ଥଟ୍ଟା କରିବାକୁ ଆରମ୍ଭ କରନ୍ତି । ରୋମିଓକୁ କେଉଁଠି ଭେଟି ହେବ ବୋଲି ପରିଚାରିକା ଜାଣିବାକୁ ଚାହେଁ । ରହସ୍ୟ କରି ରୋମିଓ ଉତ୍ତର ଦିଏ, ସେମାନେ ତ ତା'ର ସନ୍ଧାନ ଦେଇପାରିବେ, ତେବେ ତାକୁ ଦେଖା କଲାବେଳକୁ ପରିଚାରିକାର ବୟସ ତା'ର ବର୍ତ୍ତମାନର ବୟସଠାରୁ ଯଥେଷ୍ଟ ଅଧିକ ହୋଇସାରିଥିବ । ତମେ ଯାହାକୁ ଖୋଜୁଛ ମୋର ବି ସେଇ ନାମ ଯେ ମୁଁ କିନ୍ତୁ ସେମାନଙ୍କ ମଧ୍ୟରେ ସବୁଠାରୁ ଛୋଟ । ପରିଚାରିକା ଅଳ୍ପ ହସି କହେ- ଆପଣ ଯଦି ସେଇ, ତେବେ ମୁଁ ଗୋପନରେ ଆପଣଙ୍କୁ କିଛି କଥା କହିବାକୁ ଚାହେଁ । ବେନ୍‌ଭୋଲିଓ ଥଟ୍ଟା କରି କହେ- ସେ ବୋଧହୁଏ ରାତିର ଭୋଜିପାଇଁ ତାକୁ ନିମନ୍ତ୍ରଣ କରିବାକୁ ଆସିଛି । ରୋମିଓ ପରିଚାରିକା ସହିତ ଚାଲିଯାଏ ।

ପରିଚାରିକା ବିରକ୍ତ ହୋଇ ତାକୁ କହେ- ଏସବୁ ଆପଣଙ୍କର କି ଧରଣର ବନ୍ଧୁ! ଖାଲି ଥଟ୍ଟା ଜାଣନ୍ତି ! ମୋତେ ରଗାଇ ଦେଲେ, ମୁଁ ବି କାହାକୁ ଛାଡ଼ିବି ନାହିଁ ।

- ଆହା, ରାଗୁଛ କାହିଁକି ? ଏଥର ତା'ର ନିରୀହ ସ୍ୱାମୀଟି କହେ- ସେମାନେ ତମକୁ ଥଟ୍ଟା କରୁ ନ ଥିଲେ । ସେମିତି ହୋଇଥିଲେ, ମୁଁ କ'ଣ ନୀରବରେ ଠିଆ ହୋଇଥାଆନ୍ତି ? ସାଙ୍ଗେ ସାଙ୍ଗେ ତରବାରି ବାହାର କରିଥାଆନ୍ତି-

ପରିଚାରିକା କହେ- କେହି ତରୁଣୀ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି । କହିଛନ୍ତି, ଆପଣ ତାଙ୍କୁ ମିଥ୍ୟା ଆଶା ଦେବେ ନାହିଁ । ଆପଣଙ୍କର ଆଚରଣ ଏବଂ ବକ୍ତବ୍ୟ ଏକ ହେବ ବୋଲି ସେ ଆଶା କରନ୍ତି । ରୋମିଓ କହେ- ତମେ ବରଂ ତାକୁ ଯାଇ ଫାଦର ଲରେନ୍ସଙ୍କ ପାଖକୁ ଚାଲିଆସିବା ପାଇଁ କହ । ସେଇଠି ଆଜି ଆମର ବିବାହ ।

- ବେଶ୍, ସେ ଆଜି ଦ୍ୱିପହରେ ସେଠି ପହଞ୍ଚିଯିବ, ପରିଚାରିକା ଖୁସି ହୋଇଯାଏ ।

- ତାକୁ ଆହୁରି କହିବ- ମୋର ଜଣେ ପରିଚାରକ ଗିର୍ଜା ପଛରେ ଦଉଡ଼ି ଓ ସିଢ଼ି ନେଇ ଅପେକ୍ଷା କରିବ । ଜୁଲିୟେଟ୍ ଯେମିତି ହେଲେ ସେଇ ସିଢ଼ି ଚଢ଼ି ଭିତରକୁ ଚାଲିଆସିବ ।

ସନ୍ତୁଷ୍ଟ ହୋଇ ପରିଚାରିକା ଫେରିଯାଏ ।

ଅସ୍ଥିର ହୋଇ ଜୁଲିୟେଟ୍ ପରିଚାରିକାର ଫେରିବା ବାଟକୁ ଚାହିଁରହେ । ଅଧଘଣ୍ଟା ଭିତରେ ଫେରିଆସିବାକୁ ସେ କହିଯାଇଥାଏ । ନ'ଟା ବେଳେ ଯାଇଥିଲା..ଆଉ ଏବେ ତ... । ତେବେ ସେ କ'ଣ ରୋମିଓର ଦେଖା ପାଇ ନାହିଁ ? ନା ନା... ବିଚାରୀ ଟିକିଏ ଛୋଟ୍ଟୀ... ଯିବାଆସିବାକୁ ସମୟ ତ ନିଶ୍ଚୟ ଲାଗିବ । ଏଣେ ବାରଟା ବାଜିଲାଣି.. ଅର୍ଥ ତିନିଘଣ୍ଟା ବିତିଗଲାଣି, ଏ ପର୍ଯ୍ୟନ୍ତ ତା'ର ପତ୍ତା ନାହିଁ କାହିଁକି ? ତା'ର ମନଟା ଯଦି ମୋ ମନଭଳି ହୋଇଥା'ନ୍ତା ତେବେ ସେ ନିଶ୍ଚୟ ଶୀଘ୍ର ଖବର ନେଇ ଫେରିଆସନ୍ତା । ବୁଢ଼ାମାନଙ୍କୁ ନେଇ ଏଇ ମୁସ୍କିଲ୍ । ଭାରି ଦେହ, ପାହୁଣ୍ଡ ଗଣି ଧପ୍ ଧପ୍ କରି ଚାଲିବେ । ମୁଣ୍ଡାଏ ସୀସା ଭଳି ନିଷ୍ପ୍ରାଣ ।

ପିଟର୍‌କୁ ନେଇ ପରିଚାରିକା ଫେରିଆସେ । ଅଧୈର୍ଯ୍ୟ ହୋଇ ଜୁଲିୟେଟ୍ ତାକୁ ଆଣିଥିବା ଖବର ଶୀଘ୍ର ଦେବାକୁ କହେ । କେହି ଯେମିତି ହଠାତ୍ ଭିତରକୁ ଆସି ନ ଯା'ନ୍ତି ସେଥିପାଇଁ ପିଟର୍‌କୁ ଦରଜା ଜଗିବାକୁ ପଠାଇ ପରିଚାରିକା ସଜାଡ଼ି ହୋଇବସେ । ଜୁଲିୟେଟ୍ ଆଉ ଅପେକ୍ଷା କରି ନ ପାରି କହେ- ତମ ମୁହଁ ଏମିତି ଶୁଖିଯାଇଛି କାହିଁକି ? ଖରାପ ଖବର ହେଲେ ଶୀଘ୍ର କହିଯାଅ... ଭଲ ହୋଇଥିଲେ ଏମିତି ମୁହଁ ଲଦି ତମେ ତା'ର ମାଧୁର୍ଯ୍ୟକୁ ନଷ୍ଟ କରିଦେଉଛ । ପରିଚାରିକା କହେ- ରଇଥା, ଟିକିଏ ନିଃଶ୍ୱାସ ମାରିବାକୁ ଦିଅ.. ଦେଖୁନ, ମୁଁ କେମିତି ଅଣନିଃଶ୍ୱାସୀ ହୋଇପଡ଼ିଲିଣି ! ହାଡ଼ଗୋଡ଼- ଅଷ୍ଟାଙ୍ଗ ଶରୀର ଦରଜ ।

- ସମ୍ଭବ ହେଲେ ମୁଁ ମୋ ହାଡ଼ଗୁଡ଼ାକ ତମକୁ ଦେଇଦିଅନ୍ତି । ହେଲା, ଆଉ ଚୁପ୍‌ହୋଇ ରହ ନାହିଁ.. ଖବର କ'ଣ କହ.. ?

- ଏତେ ତରବର ହେବାର କ'ଣ ଅଛି । ଟିକିଏ ଥୟ ଧର । ଦେଖୁନା, ମୋର ଦମ ବନ୍ଦହୋଇ ଆସୁଛି ! ଜୁଲିୟେଟ୍ ଏଥର ବିରକ୍ତ ହୋଇ କହେ- ତମର ନିଃଶ୍ୱାସ ପ୍ରଶ୍ୱାସ ଠିକ୍ ଯାଉଛି ଆସୁଛି । ଏମିତି ବାହାନା ନ କରି, ତମେ ପ୍ରକୃତ କଥାଟା କହିଦିଅ । ଖବର ଭଲ ନା ଖରାପ ? ଖାଲି ଏତିକି କହ...

- ଭଲରେ ବାବୁ ! ତମେ ତ କହିଦେଇ ଖଲାସ । ତମେ କିନ୍ତୁ ଲୋକ ବାଛି ଜାଣନା- ରୋମିଓ ଯେ ଖୁବ୍ ଭଦ୍ରଲୋକଟିଏ, ତା' ଅବଶ୍ୟ ନୁହେଁ... ତେବେ ମେଣ୍ଢା ଭଳି ଶାନ୍ତ ଅବଶ୍ୟ । ହଉ, ତମକୁ ଯାହା ଭଲ ଲାଗିବ, କରିବ- ମୋର କ'ଣ ଅଛି ? ଆଚ୍ଛା, ତମେ ଖାଇସାରିଲଣି ?

- ନା । ଜୁଲିୟେଟ୍ କହେ- ବାହାଘର ବିଷୟରେ କ'ଣ କହିଲେ ?

- ଓଃ, ମୁଣ୍ଡଟା କେମିତି ଧକ୍‌ଧକ୍ ହେଉଛି । ଫାଟିଯିବ ଯେମିତି- ପରିଚାରିକା ତା' ନିଜର ଦୁଃଖ ବର୍ଣ୍ଣନା କରିବାକୁ ଆରମ୍ଭ କରେ । ଜୁଲିୟେଟ୍‌ର ଧୈର୍ଯ୍ୟ ଶେଷସୀମା ଛୁଇଁ ସାରିଥାଏ । ତଥାପି ସେ ଧୈର୍ଯ୍ୟ ଧରି କହେ- ତମକୁ ପଠାଇଥିବାରୁ ମୁଁ ଦୁଃଖିତ । ଆଚ୍ଛା, ଆମର ଭଲପାଇବା ସମ୍ପର୍କରେ ସେ କ'ଣ କହିଲେ ? ପରିଚାରିକା ପୁଣି ଏଣୁତେଣୁ କହିବାକୁ ଆରମ୍ଭ କରେ । ବହୁ କଷ୍ଟରେ ତା'ଠୁ ଯେତିକି କଥା ଆଦାୟ କରାଯାଇପାରେ, ତା'ହେଉଛି ଏଇ । ପରିଚାରିକା କହେ- ତମେ ଆଜି ଗିର୍ଜାକୁ ଯାଇପାରିବ ? ଜୁଲିୟେଟ୍ କହେ- ହଁ । ତା'ହେଲେ ଫାଦରଙ୍କ ପାଖକୁ ଯିବ । ସେଠି ତମର ସ୍ୱାମୀ ତମକୁ ସ୍ୱୀକୃପେ ଗ୍ରହଣ କରିବାପାଇଁ ଅପେକ୍ଷା କରିବେ । ମୁଁ ବର୍ତ୍ତମାନ ଗୋଟାଏ ସିଡ଼ି ଖୋଜିବି । ତମେ ସିଧା ଗିର୍ଜାକୁ ଯାଇ ଫାଦର୍‌କୁ ଦେଖା କର ।

ରୋମିଓ ନିର୍ଦ୍ଦିଷ୍ଟ ସ୍ଥାନରେ ଅପେକ୍ଷା କରିଥିଲା । ଫାଦର ତାକୁ ଆଶୀର୍ବାଦ କଲେ । ରୋମିଓ କହେ- ଯେତେ ଦୁଃଖ ପାଏନା କାହିଁକି ତାକୁ ମାତ୍ର ମୁହୂର୍ତ୍ତକ ପାଇଁ ଦେଖିବାକୁ ପାଇଲେ ମୁଁ ସବୁ ଭୁଲିଯିବି । ଆଜି ଆପଣ ଆମକୁ ପବିତ୍ର ବନ୍ଧନରେ ବାନ୍ଧି ଦିଅନ୍ତୁ । ତା'ପରେ ମୃତ୍ୟୁ ପାଇଁ ବି ମୋର ଭୟ ନାହିଁ ।

ଫାଦର କହନ୍ତି- ଅତି ଆନନ୍ଦ ବେଳେବେଳେ ଅତି ଦୁଃଖର କାରଣ ହୁଏ । ଯେଉଁ ମଧୁ ଖୁବ୍ ମିଠା, ତାହା କିନ୍ତୁ ଭଲ ନୁହେଁ । ଭୋକ ମରିଯାଏ । ଭଲ ପାଇବାକୁ ତେଣୁ ତୀବ୍ର କରିବା ଦରକାର ନାହିଁ । ସେଥିରେ ତା'ର ମାଧୁର୍ଯ୍ୟ ନଷ୍ଟ ହେବ । ଯେ ଖୁବ୍ ଜୋର୍‌ରେ ଧାଏଁ, ଅନେକ ସମୟରେ ସେ ବିଳମ୍ବରେ ହିଁ ପହଞ୍ଚେ ।

ଜୁଲିୟେଟ୍ ତରବର ହୋଇ ଆସେ । ଫାଦର କହନ୍ତି- ଏଇତ ସେ ଆସିଲାଣି । ଭଲପାଇବାର ଏକ ହାଲୁକା ଛନ୍ଦ ଅଛି, ଠିକ୍ ତା'ର ମଧୁର ପଦପାତର ଛନ୍ଦଭଳି । ଜୁଲିୟେଟ୍ ତାଙ୍କୁ ଅଭିବାଦନ କରେ । ରୋମିଓ ତାକୁ ଦେଖି ଉଚ୍ଛ୍ୱସିତ ହୋଇଉଠେ । ମୃଦୁଧମକ ଦେଇ ଜୁଲିୟେଟ୍ କହେ- ଏତେ ଉଚ୍ଛ୍ୱାସ ଭଲ ନୁହେଁ । ତମ ପ୍ରେମରେ କିଛି ସାରବସ୍ତୁ ପାଇଲେ ମୁଁ ବରଂ ଖୁସି ହେବି । ମୋ ଭଲପାଇବାକୁ କିନ୍ତୁ କୌଣସିମତେ ମପା ଯାଇପାରିବ ନାହିଁ ।

ଫାଦର ସେମାନଙ୍କୁ ଅନୁସରଣ କରିବାକୁ କହନ୍ତି । ସ୍ମିତ ହସି କହନ୍ତି, ପବିତ୍ର ଶାସ୍ତ୍ର ମତେ ଏକାତ୍ମ କରି ନ ଦେବା ପର୍ଯ୍ୟନ୍ତ ତମମାନଙ୍କୁ ତ ଏକା ଛାଡ଼ିଦେଇ ହେବ ନାହିଁ ।

॥ ୩ ॥

ଭରା ଦୁଇପହର ସମୟରେ ରାଜପଥରେ ଠିଆହୋଇ ମାରକୁଶିଓ ଓ ବେନ୍‌ଭୋଲିଓ ଆଳାପ ଚଳାଇଥିଲେ । ବେନ୍‌ଭୋଲିଓ କହେ—ଚାଲ ଘରକୁ ଯିବା । ଏଭଳି ଗରମ ସମୟରେ ଦୁର୍ଭାଗ୍ୟକୁ ଯଦି କାପୁଲେଟ୍ କେହି ଆଖିରେ ପଡ଼ିଯାଆନ୍ତି, ତେବେ ମୁଣ୍ଡ ଆହୁରି ଗରମ ହୋଇଯିବ । ମାରକୁଶିଓ ତା'କଥାରେ ରାଜି ହୋଇ କହେ- ଯାହା କହିଲ । ତମେ ବି ତ ଏଭଳି ଲୋକ ଯେ, ଶାନ୍ତଶିଷ୍ଟ ହୋଇ ବସିଥିବ, ପେଟରେ ପିଆଲାଏ ମଦ ପଡ଼ିଗଲେ ତରବାରି କାଢ଼ି ମାରିବାକୁ ଧାଇଁବ ।

- ମୁଁ କଣ ଏଇଭଳି ଲୋକ ?

- ହଁ, ଖାଲି ତମେ କାହିଁକି, ଇଟାଲୀର ଯେ କୌଣସି ଲୋକ ଏମିତି ବଦ୍‌ମିଜାଜୀ । ସାମାନ୍ୟ କାରଣରୁ ଝଗଡ଼ା ଆରମ୍ଭ କରିଦେବେ । ମନେ ନାହିଁ, ଥରେ ଜଣେ ଲୋକର କାଶରେ ତମ କୁକୁରର ନିଦ ଭାଙ୍ଗିଗଲା ବୋଲି ତମେ ତାକୁ ମାରିବାକୁ ଦୌଡ଼ିଥିଲ । ପୋଷାକ ପାଇଁ ଦର୍ଜି ସଙ୍ଗେ ଝଗଡ଼ା, ପୁରୁଣା ଫିତାରେ ନୂଆ ଜୋତା ପିନ୍ଧିଥିବାରୁ ଝଗଡ଼ା.. ତାଲିକା ଏମିତି ଲମ୍ବି ଲମ୍ବି ଯିବ । ମାରକୁଶିଓ କହେ ।

ଟାଇବଲ୍ଟ ତା'ର ଦଳବଳ ନେଇ ଆସୁଥିବାର ଦେଖାଯାଏ । ବେନ୍‌ଭୋଲିଓ ବନ୍ଧୁକୁ ସତର୍କ କରିଦିଏ । ମାରକୁଶିଓ ସେମାନଙ୍କୁ ଖାତିର୍ କରେନା ବୋଲି ଜଣାଇଦିଏ । ଟାଇବଲ୍ଟ ଆସିବାମାତ୍ରେ କହେ- ତମ ଦୁହିଁଙ୍କ ଭିତରୁ ଜଣକ ସାଙ୍ଗରେ କିଛି କଥା ଅଛି ।

- ଜଣକ ସାଙ୍ଗରେ ? କି କଥା ? ଘୁଷି କି ମୁଥ ମାରିବା କଥା ତ ? ମାରକୁଶିଓ କହେ ।

- ସେଥିପାଇଁ ମୁଁ ପ୍ରସ୍ତୁତ । ଟାଇବଲ୍ଟ ଜବାବ ଦିଏ । ତା'ପରେ ପଚାରେ- ତମେ ରୋମିଓର ଚେଲା ମାରକୁଶିଓ ନା ?

ବେନ୍‌ଭୋଲିଓ ବନ୍ଧୁକୁ ସତର୍କ କରିଦେଇ କହେ- ଥଣ୍ଡା ମିଜାଜ୍‌ରେ କଥାବାର୍ତ୍ତା କର । ନ ହେଲେ କୌଣସି ଖୋଲା ଜାଗାକୁ ଚାଲ । ଏ ଭିଡ଼ ଭିତରେ ବୃଥା ଝମେଲା ସୃଷ୍ଟି କରନା ।

ମାରକୁଶିଓ ସେଥିରେ ଗୁରୁତ୍ୱ ନ ଦେଇ କହେ- ଲୋକଙ୍କୁ ଖୁସି କରିବାପାଇଁ କୁଆଡ଼େ ଯିବାକୁ ମୁଁ ରାଜି ନୁହେଁ ।

ରୋମିଓ ଆସି ପହଞ୍ଚିଯାଏ । ଟାଇବଲ୍ଟ କହେ- ସମସ୍ତେ ଚୁପ୍ କର । ମୋ ଲୋକଟା ଆସିଯାଇଛି ।

ମାରକୁଶିଓ କହେ- ଠିକ୍ ତମରି ଲୋକ । କାରଣ ତା'ରି ହାତରେ ତମର ମୃତ୍ୟୁ ଯୋଗ ।

ତରବାରି ହଲାଇ ଟାଇବଲ୍ଟ ରୋମିଓକୁ କହେ- ତମଭଳି ସଇତାନ୍‌ର ଏହାହିଁ ହେଉଛି ଉଚିତ ପ୍ରାପ୍ୟ ।

ରୋମିଓ ଶାନ୍ତ ଭାବରେ କହେ-ଦେଖ, ତମ ସାଙ୍ଗରେ ମୋର ଭଲପାଇବାର ସମ୍ପର୍କ । ତେଣୁ ତମକୁ କ୍ଷମା କରୁଛି । ଆଉ ମୁଁ ସଇତାନ୍ ନୁହେଁ । ତମେ ମୋତେ ଜାଣନା- ରୋମିଓ କଥାରେ ଟାଇବଲ୍ଟର କ୍ରୋଧ ଦୂର ହୁଏ ନାହିଁ । କହେ- ସେ ସବୁ କଥାରେ ତୁ ମୋତେ ଭୁଲାଇପାରିବୁ ନାହିଁ । ମୋର ଅନେକ କ୍ଷତି ତୁ କରିଛୁ ।

ମୁଁ ତମର କିଛି କ୍ଷତି କରି ନାହିଁ, ବରଂ ତମକୁ ଭଲପାଏ । କାରଣ ତମକୁ ଜଣା ନାହିଁ । କେବଳ ସେଇଥିପାଇଁ କାପୁଲେଟ୍ ମାତ୍ରକେ ବର୍ତ୍ତମାନ ମୋର ପ୍ରିୟ । ଶାନ୍ତ ହୁଅ ।

ରୋମିଓ ଅବସ୍ଥାକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କଲେ ମଧ ମାରକୁଶିଓ ତରବାରି ବାହାରକରି ଆଗେଇଯାଏ । ଯୁଦ୍ଧ ଆରମ୍ଭ ହୋଇଯାଏ । ରୋମିଓ ବନ୍ଦ କରିବାକୁ ଚେଷ୍ଟାକରି ସଫଳ ହୁଏ ନାହିଁ । ଶେଷ ପର୍ଯ୍ୟନ୍ତ ଦୁଇ ତରବାରି ଭିତରେ ଯାଇ ଠିଆ ହୋଇଯାଏ । କିନ୍ତୁ ଟାଇବଲ୍ଟ ରୋମିଓର ହାତଫାଙ୍କରେ ମାରକୁଶିଓକୁ ତରବାରିରେ ଆଘାତ କରେ । ତା'ପରେ ପଳାଇଯାଏ । ଆହତ ମାରକୁଶିଓ ଯନ୍ତ୍ରଣାରେ ଛଟପଟ ହେଉ ହେଉ ଦୁଇ ପରିବାରକୁ ଅଭିସମ୍ପାତ ଦିଏ । ରୋମିଓ ବନ୍ଧୁକୁ ସାହସ ଦେଇ କହେ- ମନେ ହେଉଛି, ତମର ଆଘାତଟା ସେଭଳି ଗୁରୁତର ନୁହେଁ ।

ଯନ୍ତ୍ରଣା ଭିତରେ ରସିକତା ଫୁଟାଇ ମାରକୁଶିଓ କହେ- ନା, କୂଅଭଳି ଗଭୀର ନୁହେଁ କିମ୍ବା ଗିର୍ଜାର ଦରଜା ଭଳି ଚଉଡ଼ା ନୁହଁ । ତେବେ ସେଇଥିରେ କାମ ହୋଇଯିବ । କାଲି ହୁଏତ ଏ ପୃଥିବୀରେ ମୋତେ ଦେଖିବାକୁ ପାଇବ ନାହିଁ । ତମେ ମଝିରେ ଆସି ଠିଆ ହୋଇପଡ଼ି ନ ଥିଲେ, ମୋର ଏଇ ଦୁର୍ଦ୍ଦଶା ହୋଇ ନ ଥାନ୍ତା । ବେନ୍‌ଭୋଲିଓ ତାକୁ ଧରି ନିଜ ଘରକୁ ନେଇଯାଏ । ରୋମିଓ ଆକ୍ଷେପ କରେ- ମୋରି ପାଇଁ ମୋର ପ୍ରିୟବନ୍ଧୁ ଆଜି ଟାଇବଲ୍ଟ ହାତରେ ମରିବାକୁ ବସିଛି । ଅଥଚ ମାତ୍ର ଘଣ୍ଟାଏ ଖଣ୍ଡେ ଆଗରୁ ଟାଇବଲ୍ଟ ମୋର ଆତ୍ମୀୟ ହୋଇଛି । ପ୍ରିୟ ଜୁଲିୟେଟ୍, ତମର ସୌନ୍ଦର୍ଯ୍ୟ ଆଜି ମୋତେ ଭୀରୁ କରି ଦେଇଛି ।

ବେନ୍‌ଭୋଲିଓ ଆସି କହେ- ମାରକୁଶିଓର ମୃତ୍ୟୁ ହୋଇଛି ।

ରୁଦ୍ର ମୂର୍ତ୍ତିରେ ଛୁଟିଆସେ ଟାଇବଲ୍ଟ । ଏଥର ରୋମିଓ ପ୍ରତିଶୋଧର ନିଶାରେ ପାଗଳ ହୋଇଯାଏ । କହେ- ତୁ ମାରକୁଶିଓକୁ ହତ୍ୟା କରିଛୁ । ଏଇ ଦେଖ, ମୁଁ କ'ଣ କରୁଛି । ମାରକୁଶିଓ ତତେ ଅପେକ୍ଷା କରିଛି । ହୁଏତ ତୁ କିମ୍ବା ମୁଁ ତାର ସାଥୀ ହେବା...

ଟାଇବଲ୍ଟ କହେ- ମୁଁ ନୁହଁ, ତୁ...ତୁ ତାର ବନ୍ଧୁ ।

ଯୁଦ୍ଧ ଆରମ୍ଭ ହୁଏ । ଅଳ୍ପ ସମୟ ମଧ୍ୟରେ ଟାଇବଲ୍ଟ ପଡ଼ିଯାଏ ଓ ତା'ର ମୃତ୍ୟୁ ହୁଏ । ବେନ୍‌ଭୋଲିଓ ଚିତ୍କାର କରିଉଠେ- ରୋମିଓ, ପଳାଇ ଯା' ! ଲୋକମାନେ ଛୁଟି ଆସୁଛନ୍ତି । ଠିଆ ହୋଇ ରହ ନାହିଁ । ଧରାପଡ଼ିଲେ ତମର ମୃତ୍ୟୁ ଦଣ୍ଡ.. ପଳାଅ...

ରୋମିଓ ସେଠାରୁ ଚାଲିଯାଏ । ସାଙ୍ଗେ ସାଙ୍ଗେ ଲୋକ ଗୁଣ୍ଡ ହୋଇଯାଆନ୍ତି । ବେନ୍‌ଭୋଲିଓକୁ ଦେଖି ସେମାନେ ମାରକୁଶିଓର ହତ୍ୟାକାରୀ ବିଷୟରେ ତାକୁ ପଚାରନ୍ତି । ତା'ପରେ ଟାଇବଲ୍ଟ ଉପରେ ସେମାନଙ୍କର ଦୃଷ୍ଟି ପଡ଼େ । ସେମାନେ ସେତେବେଳେ ବେନ୍‌ଭୋଲିଓକୁ ତା'ର ହତ୍ୟାକାରୀ ବୋଲି ଧରିନିଅନ୍ତି । ସେତିକିବେଳେ ସେଠାକୁ ଆସନ୍ତି ରାଜା, ମଣ୍ଟେଗ୍ୟୁ, କାପୁଲେଟ୍ ଏବଂ ଅନ୍ୟମାନେ । ରାଜା ଅଶାନ୍ତିର କାରଣ ଜାଣିବାକୁ ଚାହାନ୍ତି । ବେନ୍‌ଭୋଲିଓ ସଂକ୍ଷେପରେ ହତ୍ୟାକାଣ୍ଡର ବିବରଣୀ ଦିଏ । ଲେଡି କାପୁଲେଟ୍ ତାଙ୍କର ପୁତୁରାର ମୃତ୍ୟୁରେ ବିଳାପ କରୁ କରୁ ରାଜାଙ୍କ ନିକଟରେ ଆବେଦନ କରନ୍ତି- ମୋ ଆତ୍ମୀୟର ରକ୍ତପାତ ଘଟିଛି, ଆପଣଙ୍କ ପାଖରେ ମୁଁ ଏହାର ପ୍ରତିକାର ଦାବି କରୁଛି ।

ଗଣ୍ଡଗୋଳର ଆରମ୍ଭ ପ୍ରଥମେ କିଭଳି ହେଲା- ରାଜା ବେନ୍‌ଭୋଲିଓକୁ ପୁଣିଥରେ ପଚାରନ୍ତି । ବେନ୍‌ଭୋଲିଓ ସତକଥା କହିଯାଏ । ଟାଇବଲ୍ଟ ହିଁ ପ୍ରଥମେ ଝଗଡ଼ା ଆରମ୍ଭ କରିଥିଲା । ରୋମିଓ ତାକୁ ଶାନ୍ତ ଭାବରେ ବୁଝାଇବାକୁ ବହୁତ ଚେଷ୍ଟା କରିଛି । କିନ୍ତୁ ସେ ସେଥିରେ କାନ ନ ଦେଇ ତରବାରି କାଢ଼େ । ରାଗିଯାଇ ମାରକୁଶିଓ ମଧ୍ୟ ତରବାରି ବାହାର କରେ । ଯୁଦ୍ଧ ଆରମ୍ଭ ହୁଏ । ରୋମିଓ ମଝିରେ ଠିଆ ହୋଇ ଦୁଇଜଣଙ୍କୁ ଅଲଗା କରିବାକୁ ଚେଷ୍ଟା କରେ । କିନ୍ତୁ ତା'ହାତ ତଳ ଦେଇ ଟାଇବଲ୍ଟ ମାରକୁଶିଓ ଛାତିରେ ଆଘାତ କରି ପଳାଇଯାଏ । ତେବେ ଅଳ୍ପ ସମୟ ପରେ ପୁଣି ଫେରିଆସେ । ରୋମିଓ ପ୍ରତିଶୋଧ ନେବା ପାଇଁ ସଂକଳ୍ପବଦ୍ଧ ହୋଇସାରିଥାଏ । ଯୁଦ୍ଧ ଆରମ୍ଭ ହୁଏ । ମୁଁ ବାଧାଦେବା ପୂର୍ବରୁ ଟାଇବଲ୍ଟ ପଡ଼ିଯାଏ ଓ ରୋମିଓ ପଳାଏ । ଏହାହିଁ ହେଉଛି ସତ୍ୟ ଘଟଣା ।

ଲେଡି କାପୁଲେଟ୍ ଅଭିଯୋଗ କରନ୍ତି, ବେନ୍‌ଭୋଲିଓ ମଣ୍ଟେଗ୍ୟୁର ଆତ୍ମୀୟ । ତେଣୁ ସେ ସେମାନଙ୍କ ପକ୍ଷ ନେଇ କଥା କହୁଛି । ଅନ୍ତତଃ କୋଡ଼ିଏ ଜଣ ଏଇ ଯୁଦ୍ଧରେ ସାମିଲ୍ ଥିଲେ । ସମସ୍ତେ ମିଶି ଏହାକୁ ମାରିଛନ୍ତି । ରାଜା, ମୁଁ ବିଚାର ଚାହେଁ.. ରୋମିଓକୁ କଠିନ ଦଣ୍ଡ ଦିଆଯାଉ ।

ରାଜା କହନ୍ତି- ରୋମିଓ ଟାଇବଲ୍ଟକୁ ମାରିଛି । ଟାଇବଲ୍ଟ ମାରିଛି ମାରକୁଶିଓକୁ । ତା' ରକ୍ତର ମୂଲ୍ୟ କିଏ ଦେବ ? ମଣ୍ଟେଗ୍ୟୁ ଏତେବେଳଯାଏ ଚୁପ୍‌ଚାପ୍ ଠିଆ ହୋଇଥିଲେ । ସୁଯୋଗ ପାଇ କହନ୍ତି- ରୋମିଓ ତ ମାରକୁଶିଓର ବନ୍ଧୁ । ତା'ର ଦୋଷ, ସେ ଆଇନ୍‌କୁ ନିଜ ହାତକୁ ନେଇଛି । ମାରକୁଶିଓ ହତ୍ୟାର ଅପରାଧରେ ଟାଇବଲ୍ଟ ମୃତ୍ୟୁଦଣ୍ଡ ପାଇଥାଆନ୍ତା...

ରାଜା ରୋମିଓକୁ ନିର୍ବାସନ ଦଣ୍ଡ ଦିଅନ୍ତି ଏବଂ ପରେ ଏଇ ଧରଣର ଘଟଣା ଘଟିଲେ ଉଭୟ ପରିବାର ବିପୁଳ ଅର୍ଥ ଦଣ୍ଡରେ ଦଣ୍ଡିତ ହେବେ ବୋଲି ସତର୍କ କରି ଦିଅନ୍ତି ।

ରୋମିଓ ଚିନ୍ତାରେ ବ୍ୟାକୁଳ ଜୁଲିୟେଟ୍ ନିଜ ସହିତ ଆଳାପ ଚଳାଇଥାଏ । ଦିନର ଆଲୁଅ ଲିଭିଗଲେ, ରାତ୍ରିର ଯବନିକା ନଇଁଆସିଲେ ରୋମିଓ ଆସି ତା'ର ବଳିଷ୍ଠ ବାହୁରେ ମୋତେ ବାନ୍ଧିନେବ । ପ୍ରେମିକ ତା' ନିଜ ସୌନ୍ଦର୍ଯ୍ୟରେ ବାଟ ଖୋଜିନିଏ । ପ୍ରେମ ଯଦି ହୁଏ ଅନ୍ଧ, ତଥାପି ସେ ସେଇ ଅନ୍ଧାର ସହିତ ବୁଝାମଣା କରିନିଏ । ରୋମିଓ, ମୋର ପ୍ରିୟ,ତମେ ଅନ୍ଧାର ଭିତରେ ଆସ - ତମର ଉପସ୍ଥିତିରେ ରାତିର ଅନ୍ଧାର ଆଲୁଅରେ ଭରିଯାଉ । ହେ ମୋର ଅନ୍ଧାରର ସୂର୍ଯ୍ୟ, ତମେ ଫେରିଆସ । ଏ ଦିନ କେତେ ଦୀର୍ଘ ମନେ ହେଉଛି, ଠିକ୍ ଯେମିତି ଶିଶୁଟିଏ ପର୍ବଦିନରେ ନୂଆ ପୋଷାକ ପିନ୍ଧିବ ବୋଲି ଅପେକ୍ଷାରେ ଥାଏ ମୁଁ ବି ସେମିତି ମୋର ରୋମିଓର ପ୍ରତୀକ୍ଷାରେ ରହିଛି । ଏତିକିବେଳେ ନର୍ସ ଆସିବାରୁ ସେ ତାକୁ ରୋମିଓର ଖବର ପଚାରେ ।

ନର୍ସ ଜଣାଏ ତା'ର ମୃତ୍ୟୁ ହୋଇଯାଇଛି । ଆମର ସର୍ବନାଶ ହୋଇଯାଇଛି । ତାକୁ ହତ୍ୟା କରାଯାଇଛି । ସେ ଆଉ ନାହିଁ । ନର୍ସର ବିଳାପ ଚାଲିଥାଏ ।

ଈଶ୍ୱର କେବେ ଏତେ ନିର୍ଦ୍ଦୟ ହେବେ ନାହିଁ - ଜୁଲିୟେଟ୍ କେବଳ ଏତିକି କହେ । ତା'ପରେ ତା'ର ଅଶ୍ରୁ ଆଉ ବାଧା ମାନେ ନାହିଁ, କାନ୍ଦୁ କାନ୍ଦୁ ସେ ଜାଣିବାକୁ ଚାହେଁ - ରୋମିଓ କ'ଣ ଆତ୍ମହତ୍ୟା କରିଛି ? ଥରେ ହଁ କହ, ତେବେ ମୁଁ ବି ତାକୁ ଅନୁସରଣ କରିବି ।

ନର୍ସ କହେ... ରକ୍ତାକ୍ତ ଶରୀରରେ ସେ ପଡ଼ିରହିଛି । ତା' ପରେ ଟାଇବଲ୍ଟ ପାଇଁ ତା'ର ଶୋକ ଉଛୁଳି ଉଠେ । ବିଳାପ କରି କହେ - ହାୟ ଟାଇବଲ୍ଟ ତମ ଭଳି ଭଦ୍ର, ଆଉ ସତ୍ ମଣିଷ କ'ଣ ଆଉ ଏ ଜୀବନରେ ଦେଖିବାକୁ ମିଳିବ । ତମରି ମୃତ୍ୟୁ ଦେଖିବାକୁ ମୁଁ ବଞ୍ଚିଥିଲି ।

ଜୁଲିୟେଟ୍ ଚକିତ ହୁଏ । ହଠାତ୍ ଟାଇବଲ୍ଟ, ପୁଣି କୁଆଡୁ ଆସିଲେ ? ସେ ପଚାରେ, ତେବେ କ'ଣ ଟାଇବଲ୍ଟ ଆଉ ରୋମିଓ - ଦୁହେଁ ମରିଛନ୍ତି ?

ନର୍ସ ଏଥର ପ୍ରକୃତିସ୍ଥ ହୋଇ କହେ ଯେ, ପ୍ରକୃତରେ ଟାଇବଲ୍ଟ ମୃତ ଆଉ ରୋମିଓକୁ ନିର୍ବାସନ ଦଣ୍ଡ ଦିଆଯାଇଛି । ରୋମିଓ ଟାଇବଲ୍ଟ କୁ ହତ୍ୟା କରିଥିବାରୁ ଏଇ ଦଣ୍ଡ ପାଇଛି । ଜୁଲିୟେଟ୍‌ର ଏ କଥା ବିଶ୍ୱାସ କରିବାକୁ ମନହୁଏ ନାହିଁ । ସେ ପୁଣି ପଚାରେ - ପ୍ରକୃତରେ ରୋମିଓ ଟାଇବଲ୍ଟର ହତ୍ୟାକାରୀ ? ନର୍ସ ସ୍ୱୀକାର କରେ ।

ଜୁଲିଏଟ୍ ପ୍ରଥମେ ରୋମିଓକୁ କଟୁ ଭାଷାରେ ଭର୍ତ୍ସନା କରିବାକୁ ଆରମ୍ଭ କରେ । ତା' ପରେ ସଚେତନ ହୋଇ ଚିନ୍ତା କରେ - ରୋମିଓ ମୋର ସ୍ୱାମୀ । ମୁଁ ତାଙ୍କର ସଦ୍ୟ ବିବାହିତା ସ୍ତ୍ରୀ । ମୁଁ ଯଦି ତାଙ୍କୁ ନିନ୍ଦା କରେ, ତେବେ କିଏ ଅବା ତାଙ୍କୁ ପ୍ରଶଂସା କରିବ ? କିନ୍ତୁ ରୋମିଓ,

ତମେ କାହିଁକି ମୋ ଭାଇଙ୍କୁ ମାରିଲ ? ଅବଶ୍ୟ ସେଇ ସଇତାନ୍ ମଧ୍ଯ ତମକୁ ହତ୍ୟା କରିପାରିଥାଆନ୍ତା । ମୋର ସ୍ଵାମୀ ଯେ ବଞ୍ଚିଛନ୍ତି, ତାହାହିଁ ମୋ ପାଇଁ ଯଥେଷ୍ଟ । ତେବେ ସେ ନିର୍ବାସିତ - ନିର୍ବାସନ ଏଇ ଗୋଟିଏ ଶବ୍ଦତ ଦଶହଜାର ମୃତ୍ୟୁ ଠାରୁ ଯନ୍ତ୍ରଣାଦାୟକ । ମୁଁ ଏବେ କ'ଣ କରିବି ? ତା' ପରେ ସେ ନର୍ସକୁ ପଚାରେ - ବାବା ଆଉ ମାଆ କେଉଁଠି ?

ଟାଇବଲ୍ଟର ମୃତ ଦେହ ପାଖରେ ବସି କାନ୍ଦୁଛନ୍ତି । ତମେ କ'ଣ ଯିବ ?

ଜୁଲିୟେଟ୍ ଭାବେ ଯିବ, ଯାଇ ଥରେ ଦେଖିଆସିବ । ତା'ପରେ ଭାବେ-ମୋର ଦୁଃଖ ରୋମିଓର ନିର୍ବାସନ ପାଇଁ, ମନେ ହେଉଛି, ମୁଁ ବିଧବା ହୋଇଗଲି ।

ନର୍ସ କହେ ତମେ ଘରେ ଥାଅ । ମୁଁ ଯେମିତି ହେଲେ ରୋମିଓକୁ ଖୋଜିଆଣିବି । ମୁଁ ଜାଣେ ସେ କେଉଁଠି ଅଛି । ଆଜି ରାତିରେ ସେ ଏଠାକୁ ଆସିବ । ମୁଁ ନେଇଆସିବି । ଏବେ ସେ ଫାଦରଙ୍କ ପାଖରେ ଅଛି । ଜୁଲିଏଟ୍ କହେ- ତମେ ତା'ପାଖକୁ ଯାଅ । ଏଇ ମୁଦିଟା ତାକୁ ଦେବ କହିବ- ଯିବା ପୂର୍ବରୁ ସେ ଯେମିତି ମୋତେ ଦେଖା କରେ ।

ନିଜ ଘରେ ବସି ଫାଦର ଚିନ୍ତା କରୁଥାଆନ୍ତି । ଦୁର୍ଭାଗ୍ୟ ଯେମିତି ରୋମିଓର ପଛ ଛାଡୁ ନାହିଁ । ଏଇ ବୟସରୁ ପିଲାଟା କେତେ ଦୁଃଖ ପାଇଲା ! ତା'ପରେ ସେ ରୋମିଓକୁ ଡାକନ୍ତି । ରୋମିଓ ଆସି ରାଜାଙ୍କର ନିଷ୍ପତ୍ତି ଜାଣିବାକୁ ଚାହେଁ । ନିଜ ଭାଗ୍ୟରେ ଆହୁରି କି କି ଦୁଃଖ ଲେଖାଅଛି ତାହା ଚିନ୍ତା କରେ । ଫାଦର କହନ୍ତି- ମୃତ୍ୟୁଦଣ୍ଡ ନୁହେଁ, ରାଜା ତାକୁ ନିର୍ବାସନ ଦଣ୍ଡ ଦେଇଛନ୍ତି । ରୋମିଓ ବ୍ୟାକୁଳ ହୋଇଉଠେ । ନିର୍ବାସନ ! ଏହା ଅପେକ୍ଷା ମୃତ୍ୟୁଦଣ୍ଡ ଭଲ ।

ଫାଦର ସାନ୍ତ୍ଵନା ଦେଇ କହନ୍ତି- ଧୈର୍ଯ୍ୟ ଧର । ଭେରୋନାରୁ ତମେ ନିର୍ବାସିତ ହୋଇଛ । ପୃଥିବୀରୁ ନୁହେଁ... କିଏ ଜାଣେ କାଲି କ'ଣ ହେବ ?

- ମୋ ପାଖରେ ଭେରୋନାକୁ ବାଦ୍ ଦେଇ ଆଉ କୌଣସି ଜଗତ୍ ନାହିଁ । ଥିଲେ ବି ସେ ମୋ ପାଇଁ ନରକ । ଏଠାରୁ ନିର୍ବାସିତ ହେବା ମାନେ ମୋ ପାଇଁ ପୃଥିବୀରୁ ମଧ୍ଯ ନିର୍ବାସନ । ନିର୍ବାସନ ଅର୍ଥ ତେଣୁ ମୃତ୍ୟୁ । ମୃତ୍ୟୁକୁ ନିର୍ବାସନ କହିବାର ଅର୍ଥ ହେଉଛି ସୁନାର କୁଠାର ନେଇ ଗଳା କାଟିବା ଆଉ ସେଇ ଘଟଣାକୁ କୌତୁକ ଦୃଷ୍ଟିରେ ଦେଖିବା ।

ଫାଦର କହନ୍ତି- ଅକୃତଜ୍ଞ ହୁଅନା- ଯେଉଁ ଅପରାଧ ତୁମେ କରିଛ, ତା'ର ଶାସ୍ତି ହେବା କଥା ମୃତ୍ୟୁ, କିନ୍ତୁ ରାଜା ତମକୁ ନିର୍ବାସିତ କରି ଛାଡ଼ିଦେଇଛନ୍ତି । ଏହା ପ୍ରାୟ ତମକୁ କ୍ଷମା କରିବା ସହିତ ସମାନ... ଅଥଚ ତମେ ଏଇ କଥାଟା ବୁଝିବାକୁ ଚାହୁଁ ନାହଁ ।

- ନା- ଏହା କ୍ଷମା ନୁହେଁ, ବରଂ ସ୍ଥାୟୀ ଯନ୍ତ୍ରଣା... ରୋମିଓ ଫାଦରଙ୍କ କଥା ମାନିବାକୁ ପ୍ରସ୍ତୁତ ନୁହେଁ... ଜୁଲିୟେଟ୍ ଏଠି ରହିବ... ଏଠାର କୁକୁର ବିଲେଇ ବି ତାକୁ ଦେଖିବାକୁ ପାଇବେ... ଖାଲି ମୁଁ ତା'ର ସାନ୍ନିଧ୍ୟରୁ ବଞ୍ଚିତ ହେବି । ସାମାନ୍ୟ କୀଟଟିଏ ଯାହା ପାରେ, ରୋମିଓ

ତା'ପାରେ ନାହିଁ । ଆପଣ କହୁଛନ୍ତି, ନିର୍ବାସନ ମୃତ୍ୟୁ ନୁହେଁ ! ମୋତେ ମାରିବା ପାଇଁ କ'ଣ ଅନ୍ୟ କୌଣସି ଅସ୍ତ୍ର ନ ଥିଲା ଯେ ନିର୍ବାସନ ଦିଆଗଲା !

ଫାଦର କହନ୍ତି- ପାଗଳଙ୍କ ଭଳି ହୁଅନା... ମୋ କଥା ଶୁଣ । ଦାର୍ଶନିକ ଦୃଷ୍ଟିରେ କଥାଟାକୁ ବିଚାର କର ।

- ଚୁଲିକି ଯାଉ ଆପଣଙ୍କର ଦର୍ଶନ । ଦର୍ଶନ କଣ ଗୋଟାଏ ଜୁଲିୟେଟ୍ ତିଆରି କରି ଦେଇପାରିବ ? ପାରିବ କି ଏଇ ସହରକୁ ନେଇ ଅନ୍ୟ ସହରରେ ଥୋଇ ? ରାଜାଙ୍କ ଆଦେଶ ବଦଳାଇପାରିବ ? କିଛି ପାରିବ ନାହିଁ, ମୁଁ ଜାଣେ । ତେଣୁ ସେଇ ଦର୍ଶନ କଥା ମୋତେ ଆଉ କହନ୍ତୁ ନାହିଁ ।

ଏଥର ବିରକ୍ତ ହୋଇ ଫାଦର କହନ୍ତି, ତେବେ ତ ବୁଝିବାକୁ ହେବ, ମୁଁ ଗୋଟାଏ ପାଗଳ ସାଙ୍ଗରେ କଥା କହୁଛି, କାରଣ ପାଗଳମାନେ କିଛି ଶୁଣିପାରନ୍ତି ନାହିଁ ।

- ଆଉ ଜ୍ଞାନୀମାନେ ଯେତେବେଳେ ଦେଖିବାକୁ ଅକ୍ଷମ ହୁଅନ୍ତି ? ରୋମିଓ ପ୍ରଶ୍ନ କରେ । ଫାଦର କହନ୍ତି- ତମର ଅବସ୍ଥା ବିଷୟରେ ତମ ସହିତ ମୁଁ ଏକମତ ନୁହେଁ ।

ଉଦ୍ଧତ ଭଙ୍ଗୀରେ ରୋମିଓ କହେ- ଯାହା ଆପଣ କେବେବି ଉପଲବ୍ଧି କରିପାରିବେ ନାହିଁ, ସେ ବିଷୟରେ କିଛି କହିବେ ନାହିଁ । ଆପଣ ଯଦି ମୋ ବୟସର ହୋଇଥାଆନ୍ତେ, ଭଲପାଇ ଜୁଲିୟେଟ୍ ଭଳି ସ୍ୱର୍ଗସୁନ୍ଦରୀକୁ ମାତ୍ର ଘଣ୍ଟାକ ଆଗରୁ ବିବାହ କରିଥାଆନ୍ତେ, ତା'ପରେ ହତ୍ୟା ଅପରାଧରେ ମୋ ଭଳି ନିର୍ବାସନ ଦଣ୍ଡ ପାଇଥାଆନ୍ତେ, ତେବେ ଅବା କହିପାରନ୍ତେ । ତା'ହେଲେ ଆପଣ ମଧ୍ୟ ମୋ ଭଳି ବାଳ ଛିଣ୍ଡାନ୍ତେ କି ମାଟିରେ ଗଡୁଥାଆନ୍ତେ....

କିଏ ଯେମିତି ବାହାରେ ଡାକେ । ଫାଦର ରୋମିଓକୁ ଲୁଚିଯିବାକୁ କହନ୍ତି । ରୋମିଓ ରାଜି ହୁଏ ନାହିଁ । ପୁଣି ଶବ୍ଦ ହୁଏ । ଫାଦରଙ୍କର ଅନେକ ଅନୁରୋଧ ସତ୍ତ୍ୱେ ରୋମିଓ ଭିତରକୁ ଯାଏ ନାହିଁ । ତେବେ ଜୁଲିୟେଟ୍‌ର ନର୍ସ ଡାକୁଛି ଜାଣି ଫାଦର ଦରଜା ଖୋଲନ୍ତି ।

ଆସିବା ମାତ୍ରେ ସେ ରୋମିଓକୁ ଖୋଜେ । ରୋମିଓକୁ ଦେଖାଇ ଫାଦର କହନ୍ତି, ହେଇ, ଭୂଇଁରେ ବସି କାନ୍ଦୁଛି । ନର୍ସ କହେ- ଜୁଲିୟେଟ୍‌ର ମଧ୍ୟ ସେଇ ଅବସ୍ଥା । ରୋମିଓକୁ କହେ.. ତମେ ବାବୁ ଅନ୍ତତଃ ଜୁଲିୟେଟ୍ ପାଇଁ ଧୈର୍ଯ୍ୟ ଧରି ଠିଆହୁଅ । ଏତେ ଭାଙ୍ଗିପଡ଼ିଲେ ଚଳିବ କେମିତି ?

ରୋମିଓ ଉଠିବସେ । ନର୍ସକୁ କହେ- ମୋତେ ତା'କଥା କହ । ଏ ଘଟଣା ସମ୍ପର୍କରେ ସେ କ'ଣ ଭାବୁଛି ? ମୁଁ କ'ଣ ତା'ଆଖିରେ ଗୋଟାଏ ହତ୍ୟାକାରୀ ? ସେ କେଉଁଠି, କେମିତି ଅଛି ? ମୋ ବିଷୟରେ କ'ଣ କହୁଛି ?

ପ୍ରଶ୍ନବାଣରେ ଅସ୍ଥିର ହୋଇପଡ଼ି ନର୍ସ କହେ- ସେ କିଛି କହୁ ନାହିଁ। ବସି ବସି କାନ୍ଦୁଛି। ବେଳେ ବେଳେ ରୋମିଓ କି ଟାଇବଲ୍ଟ ବୋଲି ତ ଚିତ୍କାର କରି ଉଠୁଛି।
ରୋମିଓ ଆବେଗପୂର୍ଣ୍ଣ କଣ୍ଠରେ କହେ- ମୋର ହାତ ତା'ର ଭାଇକୁ ହତ୍ୟା କରିଛି। ସେଥିପାଇଁ ମୋ ନାମଟା ବନ୍ଧୁକ ଗୁଳିଭଳି ତା'ଛାତିରେ ବାଜୁଛି। ଫାଦର, ଆପଣ ମୋତେ କହନ୍ତୁ, ଦେହର କେଉଁ ଅଂଶରେ ମୋର ନାମଟା ରହିଛି, ମୁଁ ଛୁରୀରେ ସେଇ ଅଂଶଟା କାଟି ଫୋପାଡ଼ି ଦେବି। ରୋମିଓ ଛୁରୀ ଉଠାଏ।

ବାଧା ଦେଇ ଫାଦର କହନ୍ତି- ରୋମିଓ, ତମେ ପୁରୁଷ ହୋଇ ନାରୀଟିଏ ଭଳି କାନ୍ଦିଚାଲିଛ। ତମର ଏଇ ପୁରୁଷ ଦେହ ଭିତରେ ଗୋଟିଏ ନାରୀ ରହିଛି। ତମେ ମୋତେ ଅବାକ୍ କରିଛ। ମୁଁ ତମକୁ ସ୍ୱାଭାବିକ ବୋଲି ଭାବିଥିଲି। ତମେ କ'ଣ ପ୍ରକୃତରେ ଟାଇବଲ୍ଟକୁ ହତ୍ୟା କରିଛ ? ଏବେ ପୁଣି ତମେ ନିଜକୁ ହତ୍ୟା କରିବାକୁ ବାହାରିଲଣି ! ସେଇ ସଙ୍ଗେ, ସେ ନିରୀହା ଝିଅଟିକୁ ବି, ଯେ ତମ ମୁହଁକୁ ଅନାଇ ବଞ୍ଚିରହିଛି। ଛିଃ ଛିଃ ତମେ ପୁରୁଷ ଜାତିର ଲଜ୍ଜା- ତମର ଏଇ ମହମଭଳି କୋମଳ ଚେହେରାରେ ପୁରୁଷର ସାହସ, ବୀର୍ଯ୍ୟ କିଛି ନାହିଁ। ତମ ଭଲ ପାଇବାରେ ଗଭୀରତା ନାହିଁ। ଯେମିତି ଅପଟୁ ଗୋଲନ୍ଦାଜ ନିଜ ପକ୍ଷକୁ ଲକ୍ଷ୍ୟ କରି କମାଣ ଦାଗେ, ତମେ ସେମିତି ନିଜ ହାତରେ ନିଜର ଭଲ ପାଇବାକୁ ହତ୍ୟା କରିବାକୁ ଯାଉଛ। ତମର ଜୁଲିୟେଟ୍ ବଞ୍ଚି ରହିଛି, ଆଉ ତାରି ପାଇଁ ତମେ ତା'ର ଭାଇକୁ ମାରିବାକୁ ବାଧ ହୋଇଛ। ତମେ ମାରି ନ ଥିଲେ, ସେଇ ତମକୁ ମାରିଥାଆନ୍ତା। ସେ ଦିଗରୁ ତମେ ଠିକ୍ କରିଛ। ବିଚାରରେ ମଧ ପ୍ରାଣଦଣ୍ଡ ବଦଳରେ ତମକୁ ନିର୍ବାସନ ଦିଆଯାଇଛି, ସେଥିରେ ତମର ଖୁସି ହେବା ଉଚିତ। ଈଶ୍ୱରଙ୍କର ଏଇ ଅଯାଚିତ କରୁଣାକୁ ତମେ ଅବହେଳାରେ ଉପେକ୍ଷା କରୁଛ। ମନେରଖ, ଏଭଳି ମଣିଷର ଭାଗ୍ୟରେ କେବେ ମୃତ୍ୟୁ ଛଡ଼ା ଆଉ କିଛି ଜୁଟେ ନାହିଁ। ମୋ କଥା ଶୁଣ, ଏବେ ତୁମେ ତୁମର ଭଲ ପାଇବାର ପାତ୍ରୀଟିର ପାଖକୁ ଯାଅ। କିନ୍ତୁ ପ୍ରହରୀମାନେ ଆସିବା ପର୍ଯ୍ୟନ୍ତ ସେଠାରେ ଅପେକ୍ଷା କର ନାହିଁ। ମନେରଖ, ତମର ଏବେ ମାନ୍ତୁଆ ସହରରେ ଥିବା କଥା। ମୁଁ ତମ ବନ୍ଧୁମାନଙ୍କ ଦ୍ୱାରା ରାଜାଙ୍କର କ୍ଷମା ପାଇବାପାଇଁ ଚେଷ୍ଟା କରିବି। ତମ ପକ୍ଷରୁ ମୁଁ ମଧ ରାଜାଙ୍କୁ ନିବେଦନ କରିବି। ଯଦି ତମର ଦଣ୍ଡ ମକୁବ୍ କରାଯାଇ ତମେ ଫେରିଆସ, ତେବେ ସମସ୍ତେ କେତେ ଖୁସି ହେବେ ଜାଣିଛ ? ନର୍ସ, ତମେ ଆଗ ଘରକୁ ଯାଇ ଜୁଲିୟେଟ୍‌କୁ କହ। ସେ ଯେମିତି ମୁଁ କହିଛି ବୋଲି କହି ଘରର ସମସ୍ତଙ୍କୁ ଶୀଘ୍ର ଶୋଇପଡ଼ିବାକୁ କହେ। ରୋମିଓ ଯାଉଛି।

ନର୍ସ ରୋମିଓ ହାତରେ ଜୁଲିୟେଟ୍‌ର ମୁଦିଟି ଦିଏ। ଫାଦର ରୋମିଓକୁ ସ୍ମରଣ କରାଇ ଦିଅନ୍ତି, ସେ ଯେମିତି ସକାଳ ହେବା ପୂର୍ବରୁ ମାନ୍ତୁଆ ଯାତ୍ରା କରେ। ସକାଳ ହୋଇଗଲେ

ତାକୁ ପୁଣି ଛଦ୍ମବେଶ ଧରିବାକୁ ପଡ଼ିବ । ରୋମିଓକୁ ଫାଦର ଆହୁରି ଜଣାଇ ଦିଅନ୍ତି,ଜଣେ ଲୋକଦ୍ୱାରା ସେ ଏଠାର ସବୁ ଖବର ତାକୁ ଦେଉଥିବେ । ରୋମିଓର ହାତରେ ନିଜ ହାତ ଦେଇ ସେ ତାକୁ ବିଦାୟ ଦିଅନ୍ତି ।

- ସମସ୍ତ ଘଟଣା ଏତେ ଶୀଘ୍ର ଘଟିଗଲା ଯେ, ଆମେ ଆମର ଝିଅକୁ ବୁଝାଇବାର ସମୟ ପାଇ ନାହୁଁ । କାପୁଲେଟ୍ ପାରିସ୍‌କୁ ବୁଝାଇବାରେ ଚେଷ୍ଟା କରୁଥିଲେ । ତା'ଭାଇ ଟାଇବଲ୍ଟକୁ ସେ ଖୁବ୍ ଭଲ ପାଉଥିଲା, ମୁଁ ବି କିଛି କମ୍ ସ୍ନେହ କରୁ ନ ଥିଲି ତାକୁ । ଛାଡ଼ ସେ କଥା, ଆଜି ରାତିରେ ଜୁଲିୟେଟ୍ ଆଉ ତଳକୁ ଓହ୍ଲାଇବ ନାହିଁ । ମୁଁ ବି ଶୋଇପଡ଼ନ୍ତିଣି । କେବଳ ତମରି ପାଇଁ ଅପେକ୍ଷା କରିଛି ।

କାପୁଲେଟ୍‌ଙ୍କ କଥାରେ ରାଜି ହୋଇ ପାରିସ୍ କହେ-ହଁ, ଏହି ସମୟରେ ତ ଆଉ ପ୍ରେମର କଥା କୁହାଯାଏ ନାହିଁ। ଠିକ୍ ଅଛି, ଆପଣଙ୍କ ଝିଅଙ୍କୁ ମୋର ଶୁଭେଚ୍ଛା ଜଣାଇ ଦେବେ ।

ଲେଡି କାପୁଲେଟ୍ କହନ୍ତି - ତମେ ଚିନ୍ତା କର ନାହିଁ । କାଲି ସକାଳେ ମୁଁ ଜୁଲିୟେଟ୍‌ର ମନ ଜାଣିନେବି । ଆଜି ସେ ବଡ଼ ମନମରା ହୋଇଅଛି ।

ଶୁଭେଚ୍ଛା ଜଣାଇ ପାରିସ୍ ଚାଲିଯାଉଥିଲାବେଳେ କାପୁଲେଟ୍ ତାକୁ ଡାକନ୍ତି । କହନ୍ତି- ମୁଁ ବି ତାକୁ ବୁଝାଇବି । ମୋର ମନେହୁଏ ସେ ମୋ କଥା ଶୁଣିବ । ସ୍ତ୍ରୀଙ୍କ ଆଡ଼େ ଅନାଇ କହନ୍ତି ତମେ ବି ତାକୁ ବୁଝାଇବ, କହିବ-ଆଗାମୀ ବୁଧବାର-ନା ଟିକିଏ ଶୀଘ୍ର ହୋଇଯାଉଛି-ଆଗାମୀ ଗୁରୁବାର ପାରିସ୍ ସହିତ ତା'ର ବିବାହ- ତମେ ପ୍ରସ୍ତୁତ ହୋଇପାରିବ ତ ବାବୁ ? ବେଶି ସମାରୋହର ପ୍ରୟୋଜନ ନାହିଁ । ଅଳ୍ପ କିଛି ବନ୍ଧୁବାନ୍ଧବ- ସେଇ ଗୁରୁବାର କଥା ତେବେ ସ୍ଥିର ରହିଲା ! ପାରିସ୍ ସମ୍ମତ ହୁଏ । ସେ ଚାଲିଗଲା ପରେ କାପୁଲେଟ୍ ସ୍ତ୍ରୀଙ୍କୁ କହନ୍ତି -ଶୋଇବା ପୂର୍ବରୁ ତମେ ଜୁଲିୟେଟ୍ ପାଖକୁ ଯାଇ ତାକୁ ସବୁକଥା ବୁଝାଇ ଦିଅ । ମୁଁ ଯାଏ... ଶୋଇପଡିବି ।

ସେଇ ରାତିରେ ରୋମିଓ ଦଉଡ଼ିର ସିଢ଼ିରେ ଚଢ଼ି ଜୁଲିଏଟ୍ ପାଖକୁ ଆସେ । ଜୁଲିଏଟ୍ ତାକୁ ପଚାରେ-ତମେ କ'ଣ ଏବେ ଚାଲିଯିବ ? ସକାଳ ତ ହୋଇ ନାହିଁ ।

- ହଁ ସକାଳ ହୋଇ ଆସୁଛି । ପକ୍ଷୀର ଗାନ ଭାସି ଆସିଲାଣି । ଦୂରରେ ଦେଖ, କୁହୁଡ଼ିଢଙ୍କା ପାହାଡ଼ରେ ଆଲୋକର ଇଙ୍ଗିତ । ହୁଏତ ବର୍ତ୍ତମାନ ଚାଲିଯାଇ ମୋତେ ବଞ୍ଚିବାକୁ ହେବ କିମ୍ବା ତମ ପାଖରେ ରହି ମରିବା ପାଇଁ ପ୍ରସ୍ତୁତ ରହିବାକୁ ପଡ଼ିବ ।

ଜୁଲିୟେଟ୍ ତଥାପି ଅନୁନୟ କରେ - ଶୁଣ, ଏଇ ଆଲୁଅ ସକାଳର ଆଲୁଅ ନୁହେଁ । ହୁଏତ ସୂର୍ଯ୍ୟଠାରୁ ବିଚ୍ଛିନ୍ନ କୌଣସି ଉଲ୍‌କାର ଜ୍ୟୋତି । ଆଉ ଟିକିଏ ରହିଯାଅ ... ବର୍ତ୍ତମାନ ଯାଅ ନାହିଁ । -

ବେଶ୍ ତେବେ ରହିବି । ମୋତେ ସେମାନେ ଧରିନେଇ ମୃତ୍ୟୁଦଣ୍ଡ ଦିଅନ୍ତୁ । ମୁଁ ପ୍ରସ୍ତୁତ- ତମେ ମଧ ତମକୁ ଛାଡ଼ି ମୁଁ କୁଆଡ଼େ ଯିବି ନାହିଁ । ମୃତ୍ୟୁ ଆସୁ, ତାକୁ ମୁଁ ସ୍ୱାଗତ ଜଣାଇବି ।

ତମେ ମୋତେ ଛାଡ଼ିବାକୁ ଚାହୁଁ ନାହଁ, ମୁଁ ଯିବି ନାହିଁ । ଆସ ତେବେ, ଆମେ କଥା କହିବା । ଭୋର ହୋଇ ନାହିଁ -ରୋମିଓ କହେ ।

ଜୁଲିୟେଟ୍ ସଚେତ ହୁଏ । କହେ - ନା ରୋମିଓ, ଭୋର ହେଲାଣି ତମେ ପଳାଅ, ତମେ ଚାଲିଯାଅ ରୋମିଓ ... ଏଇ ପକ୍ଷୀର ଡାକ ... ଉଦିତ ସୂର୍ଯ୍ୟର ସୂଚନା ଭିତରେ ମୁଁ ତମକୁ ବିଦାୟ ଦେଉଛି ।

ରୋମିଓ କହେ ... ଚାରିଆଡ଼େ ଆଲୋକର ସୂଚନା ... ଆମର ମନ ଭିତରେ ଅନ୍ଧାର... କେବଳ ଘନ ଅନ୍ଧାର ...

ନର୍ସ ଦ୍ରୁତ ଆସି ଜଣାଏ ଯେ ତା'ର ମାଆ ତା' ପାଖକୁ ଆସୁଛନ୍ତି । ରୋମିଓ, ତମେ ଝରକା ବାଟେ ପଳାଅ । ରୋମିଓ ଦଉଡ଼ିର ସିଢ଼ିରେ ତଳକୁ ଓହ୍ଲାଇବାରେ ଲାଗେ । ଜୁଲିୟେଟ୍ କହେ - ରୋମିଓ ପ୍ରତିଦିନ ତମର ଖବର ମୋତେ ଜଣାଇବ । କେବେ ଆଉ ତମକୁ ଦେଖିବି, କେମିତି ଅବସ୍ଥାରେ ଭେଟିବି-ତା' ଜାଣେ ନାହିଁ ।

ରୋମିଓ କହେ-ବ୍ୟସ୍ତ ହେବ ନାହିଁ । ସୁଯୋଗ ପାଇଲେ ମୁଁ ତମକୁ ମୋର ଖବର ଦେବି ।

- ଆଉ କ'ଣ ସତେ ଆମର ଦେଖାହେବ ?

- ଏଥିରେ ସନ୍ଦେହ ନାହିଁ । ଦୁଃଖ ପରେ ମିଳନର ମାଧୁର୍ଯ୍ୟ ଚାଖିବା ପାଇଁ ଆମେ ଅପେକ୍ଷା କରିଥିବା ... ସିଢ଼ିରେ ରୋମିଓ ସେତେବେଳେ ଅନେକ ତଳକୁ ଚାଲିଯାଇଥାଏ ...

- ମୁଁ ତମକୁ ଦେଖିପାରୁ ନାହିଁ କାହିଁକି ? ଜୁଲିୟେଟ୍‌ର କଣ୍ଠସ୍ୱରରେ କାନ୍ଦିବାର ସୂଚନା ।

- ମୁଁ ବି ତମକୁ ଦେଖିପାରୁ ନାହିଁ... ତଳୁ ରୋମିଓ ଚିତ୍କାର କରି କହେ ... ବିଦାୟ !

ଜୁଲିୟେଟ୍ କହେ- ଭାଗ୍ୟଦେବୀ, ଲୋକେ ତମକୁ କହନ୍ତି ଚଞ୍ଚଳା । ତୁମେ ଯଦି ପ୍ରକୃତରେ ସେଇଆ, ତେବେ ତାକୁ ଶୀଘ୍ର ଫେରାଇଆଣ ।

ଲେଡି ଘରେ ପ୍ରବେଶ କରି ଜୁଲିୟେଟ୍‌କୁ ଦେଖି କହନ୍ତି- ଓ ତମେ ତେବେ ଉଠିପଡ଼ିଛ !

ମା'ଙ୍କୁ ଦେଖି ଜୁଲିୟେଟ୍ ଚମକିପଡ଼େ । ଭାବେ ମା ଏତେ ଶୀଘ୍ର ଉଠିଛନ୍ତି କିମ୍ବା ଆଦୌ ଶୋଇ ନାହାନ୍ତି ? ଏ ସମୟରେ ମୋ ପାଖକୁ ଆସିଛନ୍ତି ବା କାହିଁକି ? ଜୁଲିୟେଟ୍ ଝରକା ପାଖରୁ ଘୁଞ୍ଚିଆସେ । ଲେଡି ପଚାରନ୍ତି-କେମିତି ଅଛ ମା'...

- ଭଲ ନାହିଁ, ଜୁଲିୟେଟ୍ ଉତ୍ତର ଦିଏ ।

- ଭାଇପାଇଁ ଏବେବି ଶୋକ କରୁଛ ? କାନ୍ଦିଲେ ସେ କ'ଣ ଫେରିଆସିବ ? ଧୈର୍ଯ୍ୟଧରି ନିଜକୁ ସମ୍ଭାଳି ନିଅ । ଶୋକ ପ୍ରକାଶରୁ ଅବଶ୍ୟ ସ୍ନେହର ଆଧିକ୍ୟ ଜଣାଯାଏ । ତେବେ ଅତ୍ୟନ୍ତ ଶୋକ ନିର୍ବୋଧତାର ପରିଚାୟକ ।

- ତଥାପି ମୋତେ କାନ୍ଦିବାକୁ ଦିଅ । ଜୁଲିୟେଟ୍ ଅନୁନୟ କରେ । ଲେଡି କହନ୍ତି ସେଥିରେ ତ ମଣିଷ ଆଉ ଫେରିଆସିବ ନାହିଁ ।

- ନ ଫେରନ୍ତୁ, ମୁଁ ତ ଅନ୍ତତଃ ତାଙ୍କୁ ହରାଇଥିବାର କ୍ଷତିଟା ଅନୁଭବ କରିପାରିବି ।

- ଶୁଣ ମାଆ, କନ୍ଦାକଟା କରିବ ନାହିଁ । ଯେଉଁ ସଇତାନ ତାକୁ ହତ୍ୟା କରିଛି ସେ ଏବେବି ବଞ୍ଚିରହିଛି ... ଲେଡି କହନ୍ତି ।

- କିଏ ମାଆ ...

- କାହିଁକି, ସେଇ ରୋମିଓ ।

- ମାଆ, ଟାଇବଲ୍ଟ ଆଉ ତାଙ୍କର ହତ୍ୟାକାରୀ - ଉଭୟେ ଆଜି ବହୁ ଦୂରରେ । ତଥାପି ଶୋକ ବାଧା ମାନୁ ନାହିଁ ।

ଲେଡି କହନ୍ତି- ତା'ର କାରଣ, ହତ୍ୟାକାରୀଟା ଏବେ ମଧ୍ୟ ବଞ୍ଚିଛି ।

- ସେ ବିତ ଆମ ହାତପାହାନ୍ତାରେ ନାହିଁ । ଭାଇଙ୍କର ହତ୍ୟାର ପ୍ରତିଶୋଧ ନେବାର କୌଣସି ଉପାୟ ନାହିଁ ... ଦୁଃଖରେ ଜୁଲିଏଟ୍‌ର ଗଳା ବୁଜି ହୋଇଆସେ ।

ସାନ୍ତ୍ୱନା ଦେଇ ଲେଡି କହନ୍ତି - ତମେ ଆଉ କାନ୍ଦ ନାହିଁ । ଆମେ ତ ଅଛୁ । ମୁଁ ଜଣକୁ ମାନ୍ତୁଆ ପଠାଇବି । ସେ ତାକୁ ସେଇଠି ଟାଇବଲ୍ଟ ପାଖକୁ ପଠାଇବାର ବ୍ୟବସ୍ଥା କରିଦେବ । ତା'ହେଲେ ତମେ ଶାନ୍ତି ପାଇବ ।

ଜୁଲିୟେଟ୍ ସେମିତି କହେ—ରୋମିଓର ମୃତ୍ୟୁ ସମ୍ବାଦ ନ ପାଇବା ଯାଏ ମୋର ଶାନ୍ତି ନାହିଁ । ତମେ ଲୋକ ଠିକ୍ କର । ମୁଁ ଏଭଳି ବିଷ ପ୍ରସ୍ତୁତ କରି ତା' ହାତରେ ଦେବି ଯାହାକୁ ଛୁଇଁବା ମାତ୍ରେ ରୋମିଓ ଘୁମାଇ ପଡ଼ିବ । ତା'ର ନାମ ଶୁଣିଲେ ମୋ ମନରେ ନିଆଁ ଲାଗିଯାଉଛି ।

- ହଁ ଲୋକ ଖୋଜୁଛି । ପାଇଲେ ତମକୁ କହିବି । ସକାଳୁ ତମକୁ ଗୋଟିଏ ସୁଖବର ଦେବାକୁ ଚାଲିଆସିଛି ।

- ଏ ଦୁଃଖ ଭିତରେ ସୁଖବରର ପ୍ରୟୋଜନ ଅଛି ମାଆ । ଶୀଘ୍ର ଖବରଟା କହ ।

-ତମେ ତ ଜାଣ, ବାବାଙ୍କର ତମ ପାଇଁ କେତେ ଚିନ୍ତା ... ସେ ତମର ବିବାହ ସ୍ଥିର କରି ଦେଇଛନ୍ତି । ଲେଡି ଜଣାଇ ଦିଅନ୍ତି ।

- କେବେ ମାଆ ?

- ଆଗାମୀ ଗୁରୁବାର ପାତ୍ର । ପାରିସ୍ - ତାକୁ ତ ତମେ ଜାଣ - ସମ୍ଭ୍ରାନ୍ତ ପରିବାରର ସନ୍ତାନ-ଦେଖିବାକୁ ଭଲ... ଆଉ କ'ଣ ଦରକାର ... ଦୁହିଁଙ୍କର ମିଳନ ସୁଖର ହେବ । ସେଣ୍ଟ ପିଟର୍ସ ଗିର୍ଜାରେ ବିବାହଟା ହେବ ।

ସେଇ ଗିର୍ଜାଟା ମୋର ପସନ୍ଦ ନୁହେଁ । ତା'ଛଡ଼ା ଏତେ ତରତର ହେବା କ'ଣ ଦରକାର ? ମୁଁ ଯାହାକୁ ବିବାହ କରିବି ସେ କଦାପି ସୁଖୀ ହେବ ନାହିଁ ... ବରଂ ଦୁଃଖ ପାଇବ । ତମେ ବାବାଙ୍କୁ କହ । ମୁଁ ବର୍ତ୍ତମାନ ବିବାହ କରିବି ନାହିଁ । ବିବାହ କଲେ ବି ପାରିସ୍‌କୁ କଦାପି ନୁହେଁ । ମୁଁ ଯାହାକୁ ଘୃଣା କରେ ବୋଲି ତମେମାନେ ଭାବ ସେଇ ରୋମିଓକୁ ବିବାହ କରିବି ।

ଲେଡି ଏକଥା ଶୁଣି ଚମକି ଉଠନ୍ତି । ସ୍ୱାମୀଙ୍କୁ ଆସିବାର ଦେଖି କହନ୍ତି -ଏଇତ ସେ ଆସୁଛନ୍ତି । ଯାହା କହିବାର କଥା ନିଜେ ତାଙ୍କୁ କହ ।

ନର୍ସକୁ ନେଇ କାପୁଲେଟ୍ ପ୍ରବେଶ କରନ୍ତି । ଜୁଲିୟେଟ୍‌କୁ ପ୍ରଶ୍ନ କରନ୍ତି-କେମିତି ଅଛ ଜୁଲିୟେଟ୍ ? ଏଯାଏଁ ବି କାନ୍ଦୁଛ ! ତମର ଆଖିତ ଦେଖୁଛି ସମୁଦ୍ର । ସେଠି ଲୁହର ଜୁଆର ଆଉ ଭଟ୍ଟା... ତମେ ଯେମିତି ଗୋଟାଏ ଭାସମାନ ତରୀ-ସେଇ ସମୁଦ୍ରରେ ଭାସୁଛ... ଆଉ ତମର ଦୀର୍ଘଶ୍ୱାସ ହେଲା ଝଡ଼... ତା'ପରେ ସ୍ତ୍ରୀଙ୍କୁ ପଚାରନ୍ତି... ତମେ ତାକୁ ଖବରଟା ଦେଇଛତ ?

- ମୁଁ ତ ଦେଇଛି, କିନ୍ତୁ ସେ ପ୍ରସ୍ତୁତ ନୁହେଁ ।

- ପ୍ରସ୍ତୁତ ନୁହେଁ ? କାପୁଲେଟ୍ ରାଗିଯାଆନ୍ତି । ସେତ ଆମକୁ ଧନ୍ୟବାଦ ଦେବା ଉଚିତ । ନିଜର ଭୁଲ ବୁଝିବାର ଶକ୍ତି କ'ଣ ତା'ର ହୋଇ ନାହିଁ ? ତା' ଅପେକ୍ଷା ଯଥେଷ୍ଟ ଯୋଗ୍ୟ ପାତ୍ର ସହିତ ଆମେ ତାର ବିବାହ ଦେଉଛେ ।

ଜୁଲିୟେଟ୍ ଶାନ୍ତ ଭାବରେ କହେ - ଏଥିରେ ଖୁସିହେବା ଭଳି କିଛି ନାହିଁ । ତେବେ ସେ ଅବଶ୍ୟ ମୋଠୁଁ ଅଧିକ ଯୋଗ୍ୟ ।

ପ୍ରବଳ ଭାବରେ ରାଗିଯାଇ କାପୁଲେଟ୍ କହନ୍ତି - ଖୁସି ହେବୁ ନାହିଁ କାହିଁକି ? ଏ କି ଧରଣର କଥା ? ତୁ ଯାହା କହ ... ଗୁରୁବାର ଦିନ ସେଣ୍ଟପିଟର୍ସ ଗିର୍ଜାରେ ପାରିସ୍ ସହିତ ତୋର ବିବାହ ନିଶ୍ଚୟ ହେବ । ସେଥିପାଇଁ ପ୍ରସ୍ତୁତ ଥାଆ । ନଚେତ ମୁଁ ଟାଣି ଟାଣି ସେଠାକୁ ନେଇଯାଇପାରେ, ବୋକା ଝିଅ ...

ସ୍ୱାମୀଙ୍କୁ ଶାନ୍ତ କରିବାର ଚେଷ୍ଟା କରନ୍ତି ଲେଡି । କହନ୍ତି ଚୁପ୍ କର । ତମେ କ'ଣ ପାଗଳ ହୋଇଗଲ ? ଜୁଲିୟେଟ୍ ଆଣ୍ଠୁମାଡ଼ି ବସେ - କହେ -ବାବା, ଧୈର୍ଯ୍ୟ ଧରି ମୋର କଥା ଶୁଣ ।

କାପୁଲେଟ୍ କିଛି ଶୁଣିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । କହନ୍ତି -ତୁ ଚୁପ୍ କର । କ'ଣ କରିବାକୁ ହେବ, ମୁଁ ତୋତେ କହିଦେଉଛି । ନିର୍ଦ୍ଦିଷ୍ଟ ଦିନରେ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇ ମୋ କଥା ଅନୁସାରେ କାମ କରିବାକୁ ହେବ । ନଚେତ୍ ତୋ ମୁହଁ ଚାହିଁବି ନାହିଁ, କିଛି କଥା ଶୁଣିବି ନାହିଁ । ତା'ପରେ ସ୍ତ୍ରୀଙ୍କୁ ଲକ୍ଷ୍ୟ କରି କହନ୍ତି ... ଭଗବାନ୍ ଆମକୁ ଗୋଟାଏ ସନ୍ତାନ ଦେଇଥିଲେ । ଆମେ ଭାବିଥିଲୁ ଭଲ ହୋଇଛି ବୋଲି । ଏବେ ଦେଖୁଛି, ସେଇ ଆମପାଇଁ ଗୋଟିଏ ସମସ୍ୟା ହୋଇ ଠିଆ ହୋଇଛି । ଏ ସନ୍ତାନ ଯେମିତି ଆମ ପାଇଁ ଅଭିଶାପ ହୋଇଛି । ତାକୁ ମୋ ଆଗରୁ ନେଇଯାଅ ।

ନର୍ସ ଆଉ ନୀରବ ରହିପାରେ ନାହିଁ । କହେ-ଲର୍ଡ୍, ଜୁଲିୟେଟ୍ ଆପଣଙ୍କ ପାଇଁ ଆଶୀର୍ବାଦ । କିନ୍ତୁ ତା' ସ୍ୱଭାବ ପାଇଁ ଆପଣ ହିଁ ଦାୟୀ । କିନ୍ତୁ କାପୁଲେଟ୍ ତାକୁ ଭର୍ତ୍ସନା କରି ଚୁପ୍ କରାଇଦିଅନ୍ତି । ତଥାପି ବୃଦ୍ଧା ନର୍ସ ନୀରବ ରହିପାରେ ନାହିଁ । କହେ -ମୁଁ ତ ଖରାପ କଥା କିଛି କହି ନାହିଁ । କେହି କ'ଣ କିଛି କହିବେ ନାହିଁ ? ଆପଣ... କାପୁଲେଟ୍ ଏଥର ଗର୍ଜି ଉଠନ୍ତି । କହନ୍ତି- ଚୁପ୍ କର ମୂର୍ଖ ବୁଢ଼ୀ । ମୋ ମୁହଁ ଉପରେ ବକ୍‌ବକ୍ କରୁଛୁ, ତୋ'ର ଏତେ ସାହସ !

- ଶୁଣ, ତମେ ବଡ଼ ବେଶୀ ରାଗି ଯାଉଛ । ଲେଡି ତଥାପି ସ୍ୱାମୀଙ୍କୁ ଶାନ୍ତ କରାଇବାକୁ ଚେଷ୍ଟା କରନ୍ତି । କିନ୍ତୁ କାପୁଲେଟ୍‌ଙ୍କ କ୍ରୋଧ ଶାନ୍ତ ହୁଏ ନାହିଁ । ସେ କହିଚାଲନ୍ତି - ଏ ଘରେ ମୁଁ ପାଗଳ ହୋଇଯିବି । ଦିନରାତି - ଚବିଶ ଘଣ୍ଟା ମୁଁ ଏହାରି କଥା ଭାବିଛି । କେମିତି ଭଲପାତ୍ରଟିଏ ହାତରେ ଦେଇ ଦାୟିତ୍ୱ ମୁକ୍ତ ହେବି ସେଇ ଚିନ୍ତାରେ ରାତିରେ ଶୋଇ ନାହିଁ । ଏବେ ଏତେ ଭଲ ପାତ୍ରଟିଏ ଯେତେବେଳେ ଆପେ ଆପେ ଜୁଟିଛି, କହୁଛି କ'ଣ ନା ବାହାହେବ ନାହିଁ !

- ମୋତେ ତମେମାନେ କ୍ଷମା କର । ମୋର ବୟସ ଖୁବ୍ କମ୍ ।

- ତୋତେ ବାହା ହେବାକୁ ପଡ଼ିବ ନାହିଁ । କ୍ଷମା ବି ମୁଁ କରିଦେବି । କିନ୍ତୁ ମୋ ଘରେ ଆଉ ତୋର ସ୍ଥାନ ନାହିଁ । ଭଲ କରି ଭାବିଦେଖ । ନିଜକୁ ନିଜେ ବୁଝ । ମୋ କଥା ମାନିଲେ, ମୁଁ ଭଲପାତ୍ର ହାତରେ ତୋତେ ଟେକିଦେବି । କଥା ନ ଶୁଣିଲେ ଭିକ ମାଗ୍ , ରାସ୍ତାରେ ପଡ଼ି ମର, ମୋର ଯାଏଆସେ ନାହିଁ । ନିଷ୍ପତ୍ତି ଶୁଣାଇ ଦେଇ କାପୁଲେଟ୍ ଦୁମ୍‌ଦୁମ୍ ପାଦ ପକାଇ ଚାଲିଯାଆନ୍ତି ।

ଜୁଲିୟେଟ୍ କାନ୍ଦୁ କାନ୍ଦୁ ମା'ଙ୍କୁ କହେ-ହାତ ଯୋଡୁଛି ତମେମାନେ ମୋତେ ତ୍ୟାଗ କର ନାହିଁ । ମାସେ କି ଅନ୍ତତଃ ସପ୍ତାହକ ପାଇଁ ଏ ବିବାହ ପଛେଇ ଦିଅ । ନ ହେଲେ ଟାଇବଲ୍ଟ ଯୁଆଡ଼େ ଯାଇଛନ୍ତି , ମୋତେ ମଧ ସେଇଆଡ଼େ ଯିବାକୁ ହେବ ।

-ମୋତେ କିଛି କହନା -ତମର ଯାହା ଇଚ୍ଛା ହେଉଛି କର । ଲେଡି ଚାଲିଯାଆନ୍ତି । ଜୁଲିୟେଟ୍ ନର୍ସ ପାଖରେ କାନ୍ଦିବାରେ ଲାଗେ । ନର୍ସ କହେ-ଯାହା କହୁଛି ସେଇଆ କର । ରୋମିଓ ନିର୍ବାସିତ -ସେତ ତମକୁ ଦେଖିବାକୁ ଆସିପାରିବ ନାହିଁ । ଯଦି ବା ଆସିବ, ଲୁଚି ଛପି ଆସିବ । ଏଠି ଯାହା ଅବସ୍ଥା - ତମେ ପାରିସ୍ କୁ ବିବାହ କରିଯାଅ । ଲୋକ ଭଲ- ରୋମିଓ ତା'ର ପାଦନଖର ବି ଯୋଗ୍ୟ ନୁହେଁ । ମୁଁ କହୁଛି ,ଏ ବିବାହରେ ତମେ ସୁଖୀ ହେବ । ଧରିନିଅ ରୋମିଓ ନାହିଁ -

- ତମେ ତମ ହୃଦୟ ଭିତରୁ ଏକଥା କହୁଛ ? ଜୁଲିୟେଟ୍ ପ୍ରଶ୍ନ କରେ ।

- କହୁଛି ମାଆ- ଉପାୟ ଯେତେବେଳେ ନାହିଁ ...

- ବେଶ୍ ତମେ ଭିତରକୁ ଯାଅ, ମା'ଙ୍କୁ କହିଦିଅ , ମୁଁ ଫାଦରଙ୍କ ପାଖକୁ ଯିବାକୁ ଚାହେଁ । ବାବାଙ୍କୁ ଦୁଃଖ ଦେଇ ମୁଁ ଯେଉଁ ପାପ କରିଛି , ତାହା ତାଙ୍କ ନିକଟରେ ସ୍ୱୀକାର କରି ଦାୟମୁକ୍ତ ହେବି ।

- ଏଇଟା ଠିକ୍ କଥା । ଏତିକି କହି ନର୍ସ ଲେଡିଙ୍କୁ କହିବାକୁ ଚାଲିଯାଏ ।

ଜୁଲିୟେଟ୍ ସ୍ୱାମୀ-ନିନ୍ଦା କରିଥିବାରୁ ଅନୁତାପ କରେ । ମନେ ମନେ ଠିକ୍ କରେ, ଏ ଅବସ୍ଥାରେ ଫାଦର ହୁଏତ କୌଣସି ଉପାୟ ବାହାର କରିପାରିବେ । ତାଙ୍କୁ ତ ସବୁକଥା ଜଣାଅଛି । ଯଦି ତଥାପି କିଛି ନ ହୁଏ , ତେବେ ମୃତ୍ୟୁର ବାଟ ତ ଖୋଲା ରହିଛି ।

॥ ୪ ॥

ଫାଦରଙ୍କ ସହିତ ବିବାହ ବ୍ୟାପାରରେ କଥାବାର୍ତ୍ତା କରିବାକୁ ପାରିସ୍ ତାଙ୍କ ପାଖକୁ ଆସିଛି । ଗୁରୁବାର ଦିନ ବିବାହ ଶୁଣି ସେ କହନ୍ତି -ଟିକିଏ ଶୀଘ୍ର ହୋଇ ଯାଉ ନାହିଁ ?

-କ'ଣ କରିବି ? ମୋର ଶ୍ୱଶୁର ଯେତେ ଶୀଘ୍ର ପାରନ୍ତି ବିବାହ କାର୍ଯ୍ୟଟା ସାରି ଦେବାକୁ ଚାହାନ୍ତି । ମୁଁ ଆଉ ବିଳମ୍ବ କରିବି କେମିତି ? ପାରିସ୍ କହେ—

- କିନ୍ତୁ ତମେ କହୁଥିଲ , ତମେ ଏପର୍ଯ୍ୟନ୍ତ କନ୍ୟାର ମନ ଜାଣିପାରି ନାହଁ ବୋଲି । ମୋତେ କଥାଟା କିଛି ଭଲ ଲାଗୁ ନାହିଁ । ଫାଦର କହନ୍ତି ।

- ଟାଇବଲ୍ଟର ମୃତ୍ୟୁରେ ସେ ଭାଙ୍ଗିପଡ଼ିଛି । କନ୍ଦାକଟା କରୁଛି । ଏ ଅବସ୍ଥାରେ ମୁଁ ବା ମୋ ଭଲପାଇବା କଥା କେମିତି କହନ୍ତି ? ଘରେ ଗୋଟାଏ ଏତେ ବଡ଼ ଶୋକର ବ୍ୟାପାର ଘଟିଯାଇଛି । ତେବେ ଏଇ ଅତିରିକ୍ତ କନ୍ଦାକଟା ତା'ର ବାବା ପସନ୍ଦ କରୁ ନାହାନ୍ତି । ସେଥିପାଇଁ ସେ ବିବାହଟା ଶୀଘ୍ର ସାରିଦେବାକୁ ଚାହାନ୍ତି । ହୁଏତ ସାଂସାରିକ କାର୍ଯ୍ୟର ଚାପରେ ସେ ବ୍ୟକ୍ତିଗତ ଦୁଃଖ ଭୁଲିଯାଇପାରେ । ପାରିସ୍ କହିଯାଏ ।

ଜୁଲିୟେଟ୍‌କୁ ଆସୁଥିବାର ଫାଦର ଦେଖନ୍ତି । ପାରିସ୍ ମଧ୍ୟ ତାକୁ ଦେଖି ଖୁସି ହୁଏ । ତାକୁ ସେ ନିଜର ସ୍ତ୍ରୀ ବୋଲି ସମ୍ବୋଧନ କରିପକାଏ । ଜୁଲିୟେଟ୍‌ର ଆପତ୍ତିକୁ ଗ୍ରାହ୍ୟ ନ କରି କହେ - ତମେ କ'ଣ ଫାଦରଙ୍କର ପାଖରେ କୌଣସି ସ୍ୱୀକାରୋକ୍ତି ପାଇଁ ଆସିଛ ?

- ଧରିନିଅନ୍ତୁ ସେଇଆ । ଜୁଲିୟେଟ୍ ଫାଦରଙ୍କ ଉଦ୍ଦେଶ୍ୟରେ କହେ- ଫାଦର ଆପଣ ବୋଧହୁଏ ବିଶ୍ରାମ କରୁଛନ୍ତି । ମୁଁ କ'ଣ ତେବେ ସନ୍ଧ୍ୟାରେ ଆସିବି ?

ବାହାରିଆସି ଫାଦର କହନ୍ତି - ନା, ଯାହା କହିବାର ବର୍ତ୍ତମାନ କହିପାର । ତା'ପରେ ପାରିସ୍‌କୁ କହନ୍ତି - ଆମେ ପରସ୍ପର ସହିତ କିଛି କଥାବାର୍ତ୍ତା କରିବୁ ।

ପାରିସ୍ ହସିପକାଇ କହେ - ନିଶ୍ଚୟ । ଏ ସମୟରେ ରହିଲେ ଈଶ୍ୱର ମୋତେ ଶାସ୍ତି ଦେବେ । ତା'ପରେ ସେ ଜୁଲିୟେଟ୍‌କୁ କହେ- ଗୁରୁବାର ଦିନ ସକାଳୁ ମୁଁ ତମକୁ ନିଦରୁ ଉଠାଇବି । ଆପାତତଃ ବିଦାୟ ...

ପାରିସ୍ ବିଦାୟ ନେବା ପରେ ଜୁଲିୟେଟ୍ କହେ - ଏବେ କହନ୍ତୁ ଫାଦର, ମୋର କର୍ତ୍ତବ୍ୟ କ'ଣ ?

ଫାଦର କହନ୍ତି , ସବୁତ ଜାଣିଛି ମାଆ । ଆଉ ଏଥିପାଇଁ କମ୍ କଷ୍ଟ ମଧ୍ୟ ପାଉ ନାହିଁ । ବିବାହର ଦିନଟା ଅନ୍ତତଃ କିଛି ଦିନ ଘୁଞ୍ଚି ଯାଇଥିଲେ ଯାହା କିଛି ଉପାୟ କରାଯାଇପାରନ୍ତା, ତା' ମଧ୍ୟ ସମ୍ଭବ ହେଉ ନାହିଁ ।

ଜୁଲିୟେଟ୍ କହେ - ଏ ବିବାହ ବନ୍ଦ ନ ହେଲେ, ଆତ୍ମହତ୍ୟା କରିବା ବ୍ୟତୀତ ମୋ ପାଖରେ ଆଉ ଅନ୍ୟ ବାଟ ନାହିଁ । ଈଶ୍ୱର ଆପଣଙ୍କ ହାତରେ ମୋର ଓ ରୋମିଓର ମିଳନ ଘଟାଇଛନ୍ତି । ବର୍ତ୍ତମାନ ମୁଁ ଯଦି ଅନ୍ୟ କାହାର ହାତ ଧରୁଛି, ତେବେ ଧର୍ମଦ୍ୱାରରେ ଦୋଷୀ ହେବି । ଆପଣଙ୍କର ଦୀର୍ଘ ଅଭିଜ୍ଞତା ଅଛି । ସତ୍ ପରାମର୍ଶ ଦେଇ ହୁଏତ ଆପଣ ମୋର ସମ୍ମାନ ରକ୍ଷା କରନ୍ତୁ, ନଚେତ୍ ମୋ ବାଟରେ ଯିବାକୁ ମୋତେ ଛାଡ଼ି ଦିଅନ୍ତୁ ।

ଫାଦର୍ କହନ୍ତି, ଧୈର୍ଯ୍ୟ ଧର ମାଆ, ଉପାୟ ମୁଁ ଚିନ୍ତା କରିସାରିଛି । କିନ୍ତୁ ଗୋଟାଏ ଚରମ ପଦକ୍ଷେପ ନେବାକୁ ପଡ଼ିବ । ପାରିସ୍‌କୁ ବିବାହ କରି ତମେ ଯଦି ମରିବାକୁ ପ୍ରସ୍ତୁତ, ତେବେ ମୋର ଏଇ ପ୍ରସ୍ତାବଟା ତମେ ଭାବି ଦେଖିପାର । ଯଦି ତମର ସାହସ ଥାଏ, ତେବେ ଉପାୟଟା ମୁଁ କହିପାରେ ।

ଜୁଲିୟେଟ୍ କହେ - ପାରିସ୍‌କୁ ବିବାହ କରିବା ଅପେକ୍ଷା ମୁଁ ବରଂ ଦୁର୍ଗ ପାଚେରି ଉପରୁ ଡେଇଁପଡ଼ି ଜୀବନ ହାରିଦେବାକୁ ଅଧିକ ପସନ୍ଦ କରିବି । ଆହୁରି ଅନେକ କଥା କରିବା ପାଇଁ ମୋର ଲେଶମାତ୍ର ଭୟ ନାହିଁ । ପ୍ରେମ ମୋତେ ନିର୍ଭୀକ ଆଉ ଦୁଃସାହସୀ କରିଛି ।

ଫାଦର୍ କହନ୍ତି, ତେବେ ଶୁଣ, ବର୍ତ୍ତମାନ ଘରକୁ ଫେରିଯାଅ । ପ୍ରଫୁଲ୍ଲ ରହିବାକୁ ଚେଷ୍ଟା କର ଆଉ ବିବାହ ପାଇଁ ସମ୍ମତି ଜଣାଇଦିଅ । ଆଗାମୀ କାଲି ବୁଧବାର, ଘରେ ଏକା ଶୋଇବ । ନର୍ସକୁ ମଧ ଘରେ ରଖିବ ନାହିଁ । ଆଉ ଏଇ ନିଅ ଏ ଶିଶିଟି । ବିଛଣାରେ ଶୋଇ ଏଇ ପାନୀୟତକ ପିଇଦେବ । ଶୀଘ୍ର ତମର ଚେତା ବୁଡ଼ିଯିବ । ନାଡ଼ିର ସଞ୍ଚାଳନ ମଧ ବନ୍ଦ ହୋଇଯିବ । ଶରୀର ଥଣ୍ଡା ହୋଇଆସିବ, ନିଃଶ୍ୱାସ ପଡ଼ିବ ନାହିଁ । ଗାଲ ଓ ଓଠର ରଙ୍ଗ ଫିକା ହୋଇଯିବ । ମନେହେବ ତମେ ମୃତ, ଆଉ ଏ ଅବସ୍ଥାରେ ତମେ ରହିବ ବୟାଳିଶ ଘଣ୍ଟା, ତା'ପରେ ଯେତେବେଳେ ତମର ଚେ୍ତା ଫେରିବ, ମନେ ହେବ, ଚମତ୍କାର ଏକ ନିଦ ପରେ ତମେ ଜାଗି ଉଠିଚ ! ଗୁରୁବାର ସକାଳେ ତମକୁ ଦେଖି ସମସ୍ତେ ମୃତ ବୋଲି ଧରିନେବେ ଆଉ ପାରମ୍ପରିକ ପ୍ରଥାନୁସାରେ ତମକୁ ନୂତନ ସାଜରେ ସଜାଇ ତମର ପିତୃପୁରୁଷଙ୍କର ସମାଧିସ୍ଥଳକୁ ନେଇଯିବେ । ଏ ଭିତରେ ମୁଁ ରୋମିଓ ପାଖକୁ ଚିଠି ଲେଖୁଛି । ଚିଠି ପାଇ ରୋମିଓ ଆସିଲେ ତମର ନିଦ ଭାଙ୍ଗିବ । ସେଇ ରାତିରେ ରୋମିଓ ତମକୁ ନେଇ ମାନ୍ତୁଆ ଚାଲିଯିବ । ଏଇ ବ୍ୟବସ୍ଥା ତମକୁ ବର୍ତ୍ତମାନ ଲଜ୍ଜାର ହାତରୁ ବଞ୍ଚାଇ ପାରିବ । ଏଥିପାଇଁ କିନ୍ତୁ ତମ ମନର ଦୃଢ଼ତା ଆବଶ୍ୟକ ।

- ଏସବୁ କହି ଆପଣ ମୋତେ ଭୟ ଦେଖାଇପାରିବେ ନାହିଁ ଫାଦର । ଜୁଲିୟେଟ୍ କହେ । ଫାଦର କହନ୍ତି, ଭଲ କଥା , ଏଥର ଘରକୁ ଯାଇ ମୋ କଥା ଅନୁସାରେ କାମ କର । ଏ ଭିତରେ ମୁଁ ଜଣେ ଦ୍ରୁତଗାମୀ ଅନୁଚରକୁ ରୋମିଓ ପାଖକୁ ପଠାଉଛି ।

ଜୁଲିୟେଟ୍ ବିଦାୟ ନେଇ ଚାଲିଯାଏ ।

ଘରେ ପିତାଙ୍କ ପାଖରେ ନତଜାନୁ ହୋଇ ସେ କ୍ଷମା ଭିକ୍ଷା କରେ । ଖୁସିରେ କାପୁଲେଟ୍ ବିବାହ ପାଇଁ ପ୍ରସ୍ତୁତି ଆରମ୍ଭ କରି ଦିଅନ୍ତି ।

ନର୍ସ ସାହାଯ୍ୟରେ ବୁଧବାର ରାତିରେ ଜୁଲିଏଟ୍ ତା'ର ଶ୍ରେଷ୍ଠ ପୋଷାକ ସଂଗ୍ରହ କରିନିଏ । ନର୍ସକୁ କହେ - ଘରେ ଆଜି ମୁଁ ଏକା ରହିବାକୁ ଚାହେଁ । ପାପ ମୁକ୍ତି ପାଇଁ ପ୍ରାର୍ଥନା ନିମନ୍ତେ ନିର୍ଜନତା ଦରକାର । ମାଆଙ୍କୁ ମଧ ସେଇ କଥା କହି ସେ ଫେରାଇଦିଏ । ମାନସିକ ପ୍ରସ୍ତୁତି ପାଇଁ ତା'ର ନିର୍ଜନତା ଲୋଡ଼ା ।

ସେମାନେ ଚାଲିଗଲା ପରେ ଏକା ଏକା ବସି ଜୁଲିୟେଟ୍ ଭାବିବାକୁ ଆରମ୍ଭ କରେ । ଆଉ କେବେ ବାବା ମାଆଙ୍କ ସହିତ ଦେଖା ହେବ କିଏ ଜାଣେ ! ଥଣ୍ଡା ସ୍ରୋତଟିଏ ଯେମିତି ତା'ର ଶିରା ପ୍ରଶିରା ଦେଇ ବହିଯାଏ । ଭୟରେ ସେ ନର୍ସକୁ ଡାକିବାକୁ ଯାଇ ନିଜକୁ ରୋକି ନିଏ । ନାଃ-ଏକାକୀ ତାକୁ ତା'ର କାମ କରିବାକୁ ହେବ । ଯଦି ଔଷଧ କାମ ନ କରେ ? ତେବେତ କାଲି ସକାଳେ ବିବାହ କରିବାକୁ ହିଁ ପଡ଼ିବ । ନା, ତା'ସମ୍ଭବ ନୁହେଁ । ଛୁରିଟା

ପାଖରେ ରଖେ । ଏମିତି ବି ହୋଇପାରେ ଯେ ଫାଦର ତାଙ୍କ ନିଜର ସମ୍ମାନ ରକ୍ଷା କରିବାକୁ ତାକୁ ପ୍ରକୃତରେ ବିଷ ହିଁ ଦେଇଛନ୍ତି । କାରଣ ରୋମିଓ ସହିତ ତା'ର ବିବାହ ସେ ନିଜେ ଦେଇଥିଲେ । ସେ ଆଶଙ୍କା ତ ରହୁଛି । ତେବେ ଫାଦର ଜଣେ ଧର୍ମଭୀରୁ,ନୀତିନିଷ୍ଠ ବ୍ୟକ୍ତି । ତାଙ୍କ ଉପରେ ଆସ୍ଥା ରଖିବାକୁ ହିଁ ହେବ । ଆଉ ପୁଣି ଏକ ସମ୍ଭାବନା -ରୋମିଓ ଆସିବା ପୂର୍ବରୁ କବର ଭିତରେ ଯଦି ତା'ର  ନିଦ ଅଚାନକ ଭାଙ୍ଗିଯାଏ ? ତେବେ କ'ଣ ହେବ ତା'ର ଅବସ୍ଥା ? ମୃତ୍ୟୁ ହିଁ ହେବ ସିନା ! ବନ୍ଦୀ ରହି ପୂର୍ବପୁରୁଷମାନଙ୍କ କଙ୍କାଳ ସହିତ ସମୟ କଟାଇବା ତ ଆହୁରି ଭୀତିପ୍ରଦ । ସେଠି ଅଛି ଟାଇବଲ୍ଟର ତାଜା ଦେହ-ତା'ର ଆତ୍ମା ହୁଏତ ରୋମିଓକୁ ଖୋଜିବୁଲୁଛି ! ଏଇ ସବୁ ବିକ୍ଷିପ୍ତ ଚିନ୍ତା ମଧ୍ୟରେ ଜୁଲିୟେଟ୍ ଉଦ୍ଦିଷ୍ଟ ମଦ୍ୟତକ ପାନ କରି ଅନନ୍ତ ନିଦ୍ରା କୋଳରେ ଢଳିପଡ଼େ ।

ଗୁରୁବାର-ସକାଳ ତଥାପି ହୋଇ ନାହିଁ । ଲେଡି ନର୍ସକୁ ନେଇ ରନ୍ଧାରନ୍ଧିର ତତ୍ତ୍ୱାବଧାନରେ ବ୍ୟସ୍ତ । କାପୁଲେଟ୍ ଆସି ସେମାନଙ୍କୁ ତରବର କରନ୍ତି । କୁକୁଡ଼ା ଡାକିଲେଣି । ତିନିଟା ବାଜୁଛି । ଆଉ ବିଳମ୍ବ କଲେ ଚଳିବ ନାହିଁ । ନର୍ସ ତାଙ୍କୁ ଆଉ ଟିକିଏ ବିଶ୍ରାମ ନେବାକୁ କହେ । ନ ହେଲେ ସେ ଅସୁସ୍ଥ ହୋଇପାରନ୍ତି । କାପୁଲେଟ୍ କଥାଟାକୁ ହସରେ ଉଡ଼ାଇ ଦିଅନ୍ତି । ଲେଡିଙ୍କ ସହିତ ତାଙ୍କର କିଛି ରସିକତା ବିନିମୟ ହୁଏ । ବୟସ ଥିବା ସମୟରେ ନାରୀ-ଶିକାରୀ ରୂପେ କାପୁଲେଟ୍‌ଙ୍କର ଯେଉଁ ସୁନାମ ଥିଲା ତାହା ତାଙ୍କୁ କହି ଲେଡି ପରିବେଶକୁ ମୁଲାୟମ୍ କରିଦିଅନ୍ତି । ଭୃତ୍ୟମାନେ ଆସିଯାଆନ୍ତି । ଡକାହକା, ପାଚିତୁଣ୍ଡରେ ଭରିଯାଏ କାପୁଲେଟ୍‌ଙ୍କ ପ୍ରାସାଦ । ଦୂରରୁ ଶୁଣାଯାଏ ବାଦ୍ୟରୋଳ । ବର ବାହାରି ପଡ଼ିଛି । କାପୁଲେଟ୍ ବ୍ୟସ୍ତ ହୋଇପଡ଼ି ଜୁଲିୟେଟ୍‌କୁ ଉଠାଇ ଦେବାପାଇଁ କହନ୍ତି ।

ନର୍ସ ଜୁଲିୟେଟ୍‌ର ନିଦ ଭଙ୍ଗାଇବାକୁ ଚେଷ୍ଟା କରେ । ତା'ର ମୃଦୁ ମଧୁର ଡାକ ଶେଷରେ ଚିତ୍କାରରେ ପରିଣତ ହୁଏ । ତଥାପି ଜୁଲିୟେଟ୍  ଶୋଇଥାଏ । ତା'ର ନିଦ ଭାଙ୍ଗେ ନାହିଁ । ନର୍ସ ଆର୍ତ୍ତନାଦ କରିଉଠେ । ଜୁଲିୟେଟ୍ ଯେ ମୃତ ! ଲେଡି ଛୁଟି ଆସନ୍ତି । ଚିତ୍କାର କରି କାନ୍ଦିବାକୁ ଆରମ୍ଭ କରନ୍ତି । କାପୁଲେଟ୍ ଆସନ୍ତି । ଭଲଭାବରେ ପରୀକ୍ଷାକରି ଜୁଲିୟେଟ୍‌ର ମୃତ୍ୟୁ ସମ୍ପର୍କରେ ନିଃସନ୍ଦେହ ହୁଅନ୍ତି । ଅସମୟର କୁହୁଡ଼ି ଫୁଲର ପାଖୁଡ଼ାଗୁଡ଼ିକୁ ମ୍ଳାନ କରିଦେବା ଭଳି ମୃତ୍ୟୁ ଆସି ଜୁଲିୟେଟ୍‌ର ଏଇ ସୁନ୍ଦର ଦେହକୁ ଝାଉଁଳେଇ ଦେଇଛି ।

ସବୁ ସ୍ତବ୍ଧ ହୋଇଯାଏ । ଉତ୍ସବରେ ମୁଖରିତ ପ୍ରାସାଦ ଉପରେ ନଇଁଆସେ ଶୋକର କଳାଛାଇ । ଫାଦର, ପାରିସ୍ ଓ ଅନ୍ୟମାନେ ଆସନ୍ତି । ସମ୍ବାଦ ଶୁଣି ସେମାନେ ମଧ୍ୟ ସ୍ତବ୍ଧ ହୋଇଯାଆନ୍ତି । ଶୋକାହତ କାପୁଲେଟ୍ ପାରିସ୍‌କୁ ସମ୍ବୋଧନ କରି କହନ୍ତି-  ପୁତ୍ର, ବିବାହ ପୂର୍ବରୁ ହିଁ ତମର ଭାବୀ ସ୍ତ୍ରୀ ପୃଥିବୀରୁ ବିଦାୟ ନେଇ ଯାଇଛି । ବିବାହଟା ଏହା ପୂର୍ବରୁ

ହୋଇଯାଇଥିଲେ ହୁଏତ ଏଇ ଦୁର୍ଘଟଣାକୁ ଏଡ଼ାଇ ଦିଆଯାଇପାରିଥାଆନ୍ତା ବୋଲି ପାରିସ୍ ମନ୍ତବ୍ୟ ଦିଏ । ସମସ୍ତେ ଶୋକରେ ବୁଡ଼ିଯାଆନ୍ତି ।

ଫାଦର ସେମାନଙ୍କୁ ଶାନ୍ତ କରାଇବାକୁ ଯାଇ କହନ୍ତି - କାନ୍ଦି କାନ୍ଦି ମୁଣ୍ଡ ପିଟି ଦେଲେ ମଧ ଯେ ଯାଇଛି, ଆଉ ଫେରିଆସିବ ନାହିଁ । ସେ ଆଜି ସ୍ୱର୍ଗପଥର ଯାତ୍ରୀ । ଦିନେ ସମସ୍ତଙ୍କୁ ସେଠାକୁ ଯିବାକୁ ପଡ଼ିବ । ଶୋକ କରିବାକୁ ଜୀବନ ପଡ଼ିରହିଛି । ବର୍ତ୍ତମାନ ଧୈର୍ଯ୍ୟଧରି ପ୍ରଥାସିଦ୍ଧ ଅନ୍ତ୍ୟେଷ୍ଟିର ବ୍ୟବସ୍ଥା ଦେଖିବାକୁ ହେବ ।'

କାପୁଲେଟ୍ ତଥାପି ବିଳାପ କରୁଥାଆନ୍ତି । ଉତ୍ସବ ଆଜି ଶୋକରେ ପରିଣତ । ବାଦ୍ୟନାଦ ଶୋକ-ଗୀତିରେ ଅନୁରଣିତ । ବିବାହର ଆନନ୍ଦ ଦୁଃଖର ଅନୁଷ୍ଠାନରେ ରୂପାନ୍ତରିତ । ଯେଉଁ ଫୁଲରେ କନ୍ୟାକୁ ମଣ୍ଡିତ କରାଯାଇଥାଆନ୍ତି ସେଇ ଫୁଲ ଦିଆଯିବ ତା'ର ସମାଧିରେ । ହାୟ...

ଫାଦର କହନ୍ତି- ଆପଣମାନେ ଭିତରକୁ ଯାଇ ଜୁଲିୟେଟ୍‌ର ଅନ୍ତିମଯାତ୍ରାର ଆୟୋଜନ କରନ୍ତୁ । ବିଳମ୍ବ କରି ଆଉ ଲାଭ କ'ଣ ?

॥ ୫ ॥

ମାନ୍ତୁଆରେ ରୋମିଓର ସମୟ ଯେମିତି କଟେ ନାହିଁ । ଅଧୀର ଆଗ୍ରହରେ ସେ ଜୁଲିୟେଟ୍‌ର ଖବରକୁ ଅପେକ୍ଷା କରେ । ସ୍ୱପ୍ନ ଦେଖେ - ଜୁଲିୟେଟ୍ ତା' ପାଖକୁ ଆସିଛି । ତାକୁ ସମ୍ଭାଷଣ କରୁଛି । ସେ ଖୁସି ହୋଇଯାଏ । ଜୁଲିୟେଟ୍‌ର ଗୋଟିଏ ଚୁମ୍ବନ ତାକୁ ସମ୍ରାଟ୍ କରି ଦେଇପାରେ । ରୋମିଓ ଭାବେ - ପ୍ରେମର ସ୍ୱପ୍ନ ଯେତେବେଳେ ଏତେ ରୋମାଞ୍ଚକର, ସେତେବେଳେ ପ୍ରକୃତ ପ୍ରେମ କି ଆନନ୍ଦ ନ ଦେବ !

ଭୃତ୍ୟ ବାଲଥାଜାର ଆସିବାରୁ ସେ ତା'ଠୁ ଭେରୋନାର ଖବର ଜାଣିବାକୁ ଚାହେଁ । ଫାଦରଙ୍କ ପାଖରୁ କୌଣସି ଚିଠି ଆଣିଛି କି ନାହିଁ ପଚାରେ । ବାବା, କେମିତି ଅଛନ୍ତି ? କେମିତି ଅଛନ୍ତି ପରିବାରର ଅନ୍ୟମାନେ ? ଆଉ ଜୁଲିଏଟ୍ ? ସେ ବା କେମିତି ଅଛି ? ସେ ଯଦି ଭଲ ଥାଏ, ତେବେ ତା' ପାଇଁ ସବୁ ଭଲ -

ବାଲଥାଜାର କହେ... ହଁ, ସେ ଭଲ ଅଛନ୍ତି - ଖୁବ୍ ଭଲ ଅଛନ୍ତି, ମୁଁ ତାଙ୍କୁ ଗିର୍ଜା ଘରେ ଶୋଇଥିବାର ଦେଖିଆସିଛି । ତାଙ୍କର ଅମର ଆତ୍ମା କିନ୍ତୁ ଚାଲିଯାଇଛି ସ୍ୱର୍ଗକୁ । ଦେଖିବାମାତ୍ରେ ମୁଁ ଆପଣଙ୍କୁ ଖବର ଦେବା ପାଇଁ ଛୁଟିଆସିଛି ।

ରୋମିଓ ଉପରେ ଆକାଶ ଛିଡ଼ିପଡ଼େ । ସେ ବିଶ୍ୱାସ କରିବାକୁ ଚାହେଁ ନାହିଁ । ତଥାପି ତତ୍‌କ୍ଷଣାତ୍ ଭେରୋନା ଯିବାକୁ ପ୍ରସ୍ତୁତ ହୁଏ । ମନେ ମନେ କହେ- ଜୁଲିୟେଟ୍, ଆଜି ରାତିରେ ମୋର ବିଶ୍ରାମ ତମ ଶଯ୍ୟାରେ -ତମର ଅତି ନିକଟରେ ...

ରୋମିଓ ପରିଚିତ ଏକ ଗୁଣିଆ ସହିତ ଦେଖାକରି ତା'ଠାରୁ ତୀବ୍ର ବିଷ ଚାହେଁ । ଗୁଣିଆ ମାନ୍ତୁଆର ଆଇନ୍ ଓ ଆଇନ୍ ଭଙ୍ଗର ଶାସ୍ତି ପ୍ରସଙ୍ଗ ଉଠାଇ ପ୍ରଥମେ ବିଷ ଦେବାକୁ ଚାହେଁ ନାହିଁ । ପ୍ରଚୁର ଅର୍ଥର ଲୋଭ ଦେଖାଇ ରୋମିଓ ତାକୁ ପ୍ରଲୋଭିତ କରେ । କହେ - ଚେହେରାରୁ ଜଣାଯାଉଛି, ତମେ ଜଣେ ଦରିଦ୍ର ଲୋକ । ଦୁଇଓଳି ଆହାରର ବ୍ୟବସ୍ଥା ନାହିଁ । ତଥାପି ତମର ମରଣକୁ ଭୟ ! କେଉଁ ଆଇନ୍ ତମକୁ ହଠାତ୍ ଧନୀ କରିଦେବ ? ତା' ଅପେକ୍ଷା ତମେ ବରଂ ଆଇନ୍ ଭାଙ୍ଗ, ଟଙ୍କାଟା ନିଅ ।

ବହୁ ପ୍ରରୋଚନା ପରେ ଶେଷରେ ପ୍ରତ୍ୟାଶିତ ବସ୍ତୁଟି ଗୁଣିଆଠାରୁ ମିଳିଯାଏ । ସେବନ ବିଧି, ତା'ର ପ୍ରତିକ୍ରିୟା - ଏ ସବୁ ବୁଝିବା ପରେ ଗୁଣିଆ ହାତକୁ ଟଙ୍କା ବଢ଼ାଇ ଦେଉ ଦେଉ ରୋମିଓ କହେ - ମୁଁ ବି ତମକୁ ବିଷ ଦେଉଛି, ଯାହା ମଣିଷର ଆତ୍ମାକୁ ହତ୍ୟା କରେ । ତମ ବିଷଠାରୁ ଏ ବିଷ ଆହୁରି ମାରାତ୍ମକ । ମୁଁ ବରଂ ତମକୁ ବିଷ ବିକ୍ରି କରିଛି, ତମେ ନୁହେଁ । ତମେ ମୋତେ ଅମୃତ ଦେଇଛ ।' ମନେ ମନେ ସ୍ଥିର କରେ, ଏଇ ଅମୃତ ସେ ଜୁଲିୟେଟ୍‌ର ସମାଧି ନିକଟରେ ପାନ କରିବ ।

ଫାଦର ଗିର୍ଜାର ଜଣେ ସାଧୁଙ୍କ ହାତରେ ରୋମିଓକୁ ଚିଠି ଲେଖିଥିଲେ । ସେଇ ସାଧୁ ପଥର ସଙ୍ଗୀ ଖୋଜିବାକୁ ଅନ୍ୟ ଜଣେ ସାଧୁଙ୍କ ପାଖକୁ ଯାଆନ୍ତି । ସାଧୁ ସେତେବେଳେ ରୋଗୀ ସେବାରେ ବ୍ୟସ୍ତ ଥାଆନ୍ତି । କଟୁଆଳମାନେ ଭାବନ୍ତି ଯେ, ରୋଗୀ କୌଣସି ସଂକ୍ରାମକ ବ୍ୟାଧିଗ୍ରସ୍ତ । ସହରରେ ଏ ରୋଗ ଆଉ ଯେମିତି ନ ବ୍ୟାପେ, ସେଥିପାଇଁ ସତର୍କ ବ୍ୟବସ୍ଥା ସ୍ୱରୂପ ସେମାନେ ଦୁଇ ସାଧୁଙ୍କୁ ଗୋଟିଏ ଘରେ ବନ୍ଦ କରି ଚାଲିଯାଆନ୍ତି । ଫଳ ହୁଏ, ରୋମିଓ ଫାଦରଙ୍କ ଚିଠିଟି ପାଇପାରେ ନାହିଁ ।

ଯଥାସମୟରେ ଫାଦର ଏଇ ଖବର ପାଆନ୍ତି । ରୋମିଓ ଏଇ ଚିଠି ନ ପାଇଲେ ଯେ କେତେ ବଡ଼ ବିପଦ ଘଟିଯିବ, ତାହା ସାଧୁଙ୍କ ଆଗରେ କହନ୍ତି । ତେବେ ଯାହା ହେବାର ହେବ । ସେ ତ ଚେଷ୍ଟା କରିଛନ୍ତି, ଶେଷ ପର୍ଯ୍ୟନ୍ତ କରିଯିବେ । ଗୋଟିଏ ବଟାଳି ନେଇ ସେ ଜୁଲିୟେଟ୍‌ର ସମାଧିସ୍ଥଳକୁ ଯିବା ପାଇଁ ସ୍ଥିର କରନ୍ତି । ଆଉ ମାତ୍ର ହାତରେ ତିନିଘଣ୍ଟା ସମୟ । ନିଦରୁ ଉଠିବା ପରେ ରୋମିଓକୁ ନ ଦେଖିଲେ ଜୁଲିୟେଟ୍ ବ୍ୟସ୍ତ ହୋଇପଡ଼ିବ । ମାନ୍ତୁଆକୁ ପୁଣିଥରେ ଚିଠି ଲେଖିବାକୁ ହେବ । ରୋମିଓ ନ ଆସିବା ପର୍ଯ୍ୟନ୍ତ ଜୁଲିୟେଟ୍‌କୁ ମୋ ଘରେ ରଖିବାକୁ ପଡ଼ିବ । ବିଚାରୀ - ବଞ୍ଚିଥାଇ ମଧ ତାକୁ କବରରେ ସମାଧି ନେବାକୁ ହୋଇଛି ।

ଜୁଲିୟେଟ୍‌ର କବରରେ ଫୁଲ ଚଢ଼ାଇବାକୁ ପାରିସ୍ ଆସେ । ଭୃତ୍ୟକୁ ଗିର୍ଜା ପାଖରେ ଅପେକ୍ଷା କରିବାକୁ କହେ । କାହାକୁ ଆସିବାର ଦେଖିଲେ ସେ ଯେମିତି ସିଟି ମାରି ତାକୁ ସୂଚନା ଦେଇଦିଏ । ଫୁଲରେ ଫୁଲରେ ପାରିସ୍ ଜୁଲିୟେଟ୍‌ର ସମାଧିକୁ ଭରିଦିଏ । ଏତିକିବେଳେ

ଭୃତ୍ୟର ସିଟି ଶୁଣି ସେ ଅନ୍ତରାଳକୁ ଚାଲିଯାଏ । ରୋମିଓ ଆଉ ବାଲ୍‌ଥାଜାର୍ ସେଠାକୁ ଆସନ୍ତି । ବାଲ୍‌ଥାଜାର ହାତରେ ମଶାଲ ଆଉ ଶାବଳ । ତା'ହାତରୁ ସେତକ ନେଇ ରୋମିଓ ତାକୁ ଗୋଟାଏ ଚିଠି ଦିଏ - କହେ - ସକାଳେ ସେ ଯେମିତି ଚିଠିଟା ତା'ର ବାବାଙ୍କୁ ଦିଏ । ବର୍ତ୍ତମାନ ସେ ଯେଉଁ କାମ କରିବ, ସେ ଯେମିତି ତହିଁରେ ବାଧା ସୃଷ୍ଟି ନ କରେ । ସେ ଏଇ କବର ଭିତରକୁ ଯାଇ ତା'ର ପ୍ରିୟତମାର ମୁହଁଟା ଥରେ ଦେଖିବ । ଆଉ ତା' ହାତରୁ ମୁଦିଟା ଖୋଲି ନେବ ନିଜ ପାଖରେ ରଖିବା ପାଇଁ । ଭୃତ୍ୟ ବର୍ତ୍ତମାନ ବିଦାୟ ନେଇ ଚାଲିଯାଇପାରେ ଏବଂ ଏଠାକୁ ଫେରିଆସିଲେ ଚରମ ଦଣ୍ଡ ଭୋଗିବାକୁ ଯେମିତି ପ୍ରସ୍ତୁତ ହୋଇଆସେ ।

ବାଲ୍‌ଥାଜାର ଚାଲିଯାଏ । ରୋମିଓ ସମାଧି ନିକଟକୁ ଆସେ । କହେ - ମୃତ୍ୟୁ, ତମେ ପୃଥିବୀର ଶ୍ରେଷ୍ଠ ସମ୍ପଦକୁ ଗ୍ରାସ କରିଛ । ସେ ସମାଧି ମନ୍ଦିରର ଦରଜା ଖୋଲିବାକୁ ଚେଷ୍ଟା କରେ । ଅନ୍ତରାଳରୁ ପାରିସ୍ ଏସବୁ ଲକ୍ଷ୍ୟ କରେ । ଭାବେ, ଏତ ସେଇ ନିର୍ବାସିତ ପାଜି ମଣ୍ଟେଗ୍ୟୁ - ସେ ମୋ ପତ୍ନୀର ଭାଇକୁ ହତ୍ୟା କରିଛି । ଏବେ ଆସିଛି ଜୁଲିଏଟ୍‌ର ମୃତ ଦେହର କ୍ଷତି କରିବାକୁ । ସେ ଚିତ୍କାର କରି କହେ - ତୁ ଧରା ପଡ଼ିଯାଉଛୁ । ଆରେ ମୂଢ଼, ମୃତ୍ୟୁ ପରେ କ'ଣ ବିଦ୍ୱେଷର ଶେଷ ନାହିଁ ? ମୋ ସାଙ୍ଗରେ ଚାଲ - ତୋତେ ମରିବାକୁ ହେବ ।

- ମରିବାକୁ ତ ମୁଁ ଆସିଛି । ମରିବି, ତେବେ ତମେ ଏଠୁ ଚାଲିଯାଅ । ତମକୁ ହତ୍ୟା କରିବାକୁ ବାଧ କରି ମୋ ପାପର ବୋଝ ଆଉ ବଢ଼ାଅନା ... ମୁଁ ଆଜି ନିଜଠାରୁ ବି ତମକୁ ଅଧିକ ଭଲପାଏ ... ଆତ୍ମଘାତୀ ହେବାକୁ ହିଁ ମୁଁ ଏଠାକୁ ଆସିଛି ... ତମେ ଏଠି ରହନା ଚାଲିଯାଅ ... ବଞ୍ଚିଥାଅ... ଆଉ ପରେ କହ ଯେ, କେହି ଜଣେ ପାଗଳ ଦୟାକରି ତମକୁ ପଳାଇବାକୁ କହିଥିଲା ... ରୋମିଓ କହିଯାଏ ।

ପାରିସ୍ ତଥାପି ରୋମିଓକୁ ବାଧା ଦେବାକୁ ବଦ୍ଧପରିକର । ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇଯାଏ । ପାରିସ୍‌ର ଭୃତ୍ୟ ଧାଇଁଯାଏ କଟୁଆଳଙ୍କୁ ଡାକିବାକୁ । ରୋମିଓର ତରବାରିର ଆଘାତରେ ପାରିସ୍‌ର ପତନ ହୁଏ । ମୃତ୍ୟୁ ପୂର୍ବରୁ ସେ ରୋମିଓକୁ ଅନୁରୋଧ କରେ, ଯଦି ପ୍ରକୃତରେ ତମ ମନରେ ଦୟା ଥାଏ, ତେବେ ଏଇ ସମାଧିରେ ଜୁଲିୟେଟ୍ ପାଖରେ ମୋତେ ଶୁଆଇ ଦେବ । ରୋମିଓ କହେ-ସେଇଆ ହେବ । ଶୁଣିଛି ତମ ସହିତ ତା'ର ବିବାହର କଥା ଥିଲା । ତମ ଇଚ୍ଛାନୁସାରେ ମୁଁ ତମକୁ ଏଇଠି ସମାଧିସ୍ଥ କରିବି । ଏ ତ ସମାଧି ନୁହେଁ ବରଂ ଏକ ବତାଘର । ଜୁଲିୟେଟ୍ ଏଠି ଶୋଇରହିଛି । ତା'ର ସୌନ୍ଦର୍ଯ୍ୟର ଆଲୋକରେ ଚତୁର୍ଦ୍ଦିଗ ଆଲୋକିତ । ପ୍ରିୟତମା, ମୃତ୍ୟୁ ତମ ଜୀବନର ସମସ୍ତ ମାଧୁର୍ଯ୍ୟ ପାନ କରିନେଇଥିଲେ ମଧ ତମ ସୌନ୍ଦର୍ଯ୍ୟକୁ ମ୍ଳାନ କରିପାରି ନାହିଁ । ମୃତ୍ୟୁ ତମକୁ ପରାଜିତ କରିପାରି ନାହିଁ । ଟାଇବଲ୍ଟର କବର ଆଡ଼କୁ ଅନାଇ ସେ କହେ -ତମେ ମୋତେ କ୍ଷମାକର । ଜୁଲିୟେଟ୍, ମୋର ପ୍ରିୟତମା,

ମୃତ୍ୟୁ କ'ଣ ତମକୁ ନିଜର ପ୍ରେମିକା ରୂପରେ ଗ୍ରହଣ କରିଛି ! ସେଥିପାଇଁ ମୁଁ ତମ ସାଙ୍ଗରେ ରହିବି । ଏଇ ସ୍ଥାନ ହିଁ ହେବ ମୋର ଚିର ବିଶ୍ରାମର ସ୍ଥାନ । ଏଇଠି ଥାଇ ମୁଁ ମୋର ସମସ୍ତ ଯନ୍ତ୍ରଣା ଆଉ ଅବସାଦ ଭୁଲିଯିବି । ଶେଷଥର ପାଇଁ ମୋର ଆଲିଙ୍ଗନ ଗ୍ରହଣ କର, ଆଉ ତମର ଏଇ ଓଠ, ମୋର ଶେଷ ଚୁମ୍ବନ ଗ୍ରହଣ କରୁ ।

ରୋମିଓ ଗୁଣିଆଠାରୁ ସଂଗ୍ରହ କରିଥିବା ବିଷ ପିଇଦିଏ ଓ ତା'ର ମୃତ୍ୟୁ ହୁଏ ।

ଫାଦରଙ୍କୁ ସାଙ୍ଗରେ ନେଇ ବାଲ୍‌ଥାଜାର ପ୍ରବେଶ କରେ । ସମାଧି ଭିତରୁ ମିଳେ ରୋମିଓ ଆଉ ପାରିସ୍‌ର ମୃତ ଦେହ । ଏତିକିବେଳେ ନିଦ ଭାଙ୍ଗିଯାଏ ଜୁଲିୟେଟ୍‌ର । ତା'ର ଆଖି ପ୍ରଥମେ ପଡ଼େ ଫାଦରଙ୍କ ଉପରେ । ସେ ପଚାରେ-ଫାଦର, ମୋ ସ୍ୱାମୀ କାହାନ୍ତି ? ଅଶ୍ରୁରୁଦ୍ଧ କଣ୍ଠରେ ଫାଦର କହନ୍ତି-ମୃତ୍ୟୁର ହିମଶୀତଳ କୋଳରୁ ତମେ ସିନା ଫେରିଆସିଲ, କିନ୍ତୁ ଆମେ ଯାହା ଭାବିଥିଲୁ , ତାହା ହେଲା ନାହିଁ । ତମର ସ୍ୱାମୀ ତମରି ବୁକୁରେ ମଥାରଖି ମୃତ୍ୟୁ ବରଣ କରିଛନ୍ତି, ପାରିସ୍‌ଙ୍କର ଅବସ୍ଥା ମଧ୍ୟ ସେଇଆ । ତମେ ମୋ ସହିତ ଆସ, ମୁଁ ତମକୁ ସନ୍ନ୍ୟାସିନୀମାନଙ୍କ ହାତରେ ଦେଇଦେବି । ପ୍ରଶ୍ନ କର ନାହିଁ, କାରଣ କଟୁଆଳ ଆସୁଛନ୍ତି । ଶୀଘ୍ର ଚାଲ, ଏ ସ୍ଥାନ ଆମପାଇଁ ନିରାପଦ ନୁହେଁ । ଜୁଲିୟେଟ୍ ଦୃଢ଼ ସ୍ୱରରେ କହେ- ଆପଣ ଯାଆନ୍ତୁ । ମୁଁ ଯିବି ନାହିଁ ।

ଫାଦର ଅଗତ୍ୟା ଚାଲିଯାଆନ୍ତି ।

ଜୁଲିୟେଟ୍ ଦେଖେ, ତା'ର ସ୍ୱାମୀଙ୍କ ହାତରେ ଗୋଟିଏ ପିଆଲା ।

ସେ କହେ-ବିଷ ! ସବୁତକ ତମେ ପିଇଦେଇଛ ? ମୋପାଇଁ ଟିକିଏ ବି ରଖି ନାହଁ ? ମୁଁ ତମ ଓଠରେ ଚୁମ୍ବନ ଦେବି-ହୁଏତ ସେଠାରେ ଲାଗିଥିବା କିଛି ବିଷରେ ମୋର ମୃତ୍ୟୁ ହୋଇପାରେ । ଜୁଲିୟେଟ୍ ସେଇଆ କରେ । କହେ -ରୋମିଓ, ତମର ଓଠ ଏବେବି କି ଉଷ୍ମ!

ଦୂରରୁ ଲୋକମାନଙ୍କର କଥାବାର୍ତ୍ତା ଶୁଣାଯାଏ । ଜୁଲିୟେଟ୍ କହେ, ମୋର ଆଉ ବେଶି ସମୟ ବଞ୍ଚିରହିବା ଚଳିବ ନାହିଁ । ରୋମିଓ କଟିରୁ ଛୁରୀଟା ଟାଣିଆଣି ସେ ନିଜ ଛାତିରେ ଭୁସିଦିଏ; ଆଉ ମୃତ୍ୟୁ କୋଳରେ ଢଳିପଡ଼େ ।

କଟୁଆଳ ଆସନ୍ତି । ଆଉ ତାଙ୍କର ଆହ୍ୱାନରେ ଆସନ୍ତି ଫାଦର, ବାଲ୍‌ଥାଜାର, ମଣ୍ଟେଗ୍ୟୁ, କାପୁଲେଟ୍ ଏବଂ ଭେରୋନାର ରାଜା ସ୍ୱୟଂ । ଭେରୋନାର ଜନତା ମଧ୍ୟ ସେଠାକୁ ଛୁଟିଆସନ୍ତି । ରାଜାଙ୍କ ପ୍ରଶ୍ନର ଉତ୍ତରରେ ଜୁଲିୟେଟ୍‌ର ସମାଧିସ୍ଥଳରୁ ରୋମିଓ ଓ ପାରିସ୍‌ର ମୃତ ଦେହ ମିଳିଥିବାର ସମ୍ବାଦ ମିଳେ । ରାଜା ଏହି ହତ୍ୟାକାଣ୍ଡର କାରଣ ଅନୁସନ୍ଧାନରେ ପ୍ରବୃତ୍ତ ହୁଅନ୍ତି ।

ଫାଦର ଏବଂ ରୋମିଓର ଭୃତ୍ୟ ବାଲ୍‌ଥାଜାର ଧୃତ ହୋଇ ରାଜାଙ୍କ ପାଖକୁ ଅଣାଯାଆନ୍ତି । ତାଙ୍କଠାରୁ ବଟାଳି, ଶାବଳ, ଗଇଁତି ଇତ୍ୟାଦି କବରଖୋଳାର ହତିଆର ବାହାରେ ।

କାପୁଲେଟ୍ ହଠାତ୍ ଜୁଲିୟେଟ୍ ଦେହରୁ ବାହାରୁଥିବା ରକ୍ତ ଦେଖି ଚିତ୍କାର କରି ଉଠନ୍ତି । ତା' ଦେହରେ ବିଦ୍ଧ ହୋଇଥାଏ ଗୋଟାଏ ଛୁରୀ ଏବଂ ରୋମିଓର କଟିରେ ଥିବା ଛୁରୀର ଖୋଳଟି ଥାଏ ଶୂନ୍ୟ ।

ମଣ୍ଟେଗ୍ୟୁ ରୋମିଓର ମୃତ ଦେହ ଦେଖି ବିଳାପ କରିବାକୁ ଆରମ୍ଭ କରନ୍ତି । ପୁତ୍ରର ନିର୍ବାସନ ଦଣ୍ଡକୁ ସହ୍ୟ କରି ନ ପାରି ରୋମିଓର ଜନନୀ ଯେ ସେଇଦିନ ମୃତ୍ୟୁ ବରଣ କରିଛନ୍ତି, ତାହା ତାଙ୍କଠାରୁ ଜଣାଯାଏ । ଭାଗ୍ୟ ହାତର ମାଡ଼ ଖାଇ ସେ ଯେମିତି ପାଗଳ ହୋଇଯାଇଥାଆନ୍ତି ।

ସନ୍ଦେହର ଘେରରେ ଥିବା ବ୍ୟକ୍ତିମାନଙ୍କୁ ତାଙ୍କ ଆଗରେ ଉପସ୍ଥିତ କରିବା ନିମନ୍ତେ ରାଜା ଆଦେଶ ଦିଅନ୍ତି ।

ଫାଦର ଆଗେଇଆସି କହନ୍ତି-ଏ ସୂଚୀରେ ମୋର ନାମ ପ୍ରଥମେ ଆସିବ । ଆଜି ମୁଁ ଆପଣମାନଙ୍କ ଆଗରେ ମୋର ଦୋଷ ସ୍ୱୀକାର କରି ସେଥିପାଇଁ କ୍ଷମା ପ୍ରାର୍ଥନା କରୁଛି ।

ରାଜା ଫାଦରଙ୍କୁ ଘଟଣାର ବିବରଣୀ ଦେବାକୁ ଆଦେଶ କରନ୍ତି ।

ଫାଦର କହନ୍ତି -ରୋମିଓ ହିଁ ହେଉଛି ଜୁଲିୟେଟ୍‌ର ସ୍ୱାମୀ । ମୁଁ ନିଜେ ସେମାନଙ୍କର ବିବାହ ଦେଇଛି । ଏଇ ବିବାହ ଦିନ ଟାଇବଲ୍ଟର ହତ୍ୟା ଘଟଣା ଘଟେ । ରୋମିଓକୁ ନିର୍ବାସିତ ହେବାକୁ ପଡ଼େ । ଜୁଲିୟେଟ୍ ତା' ପାଇଁ ଦୁଃଖରେ କାତର ହୋଇ ପଡ଼ିଥିବା ସମୟରେ କାପୁଲେଟ୍ ପାରିସ୍ ସହିତ ତା'ର ବିବାହର ବ୍ୟବସ୍ଥା କରନ୍ତି । ଏ ବିବାହ କୌଣସିମତେ ବନ୍ଦ ନ କଲେ ସେ ଆତ୍ମହତ୍ୟା କରିବ ବୋଲି ଜୁଲିୟେଟ୍ ଆସି ମୋତେ କହେ । ମୁଁ ତାକୁ ଗୋଟାଏ ନିଦ ଔଷଧ ଦିଏ, ଯାହାର ପ୍ରତିକ୍ରିୟାରେ ତାକୁ ମୃତ ବୋଲି ମନେହୁଏ । ରୋମିଓକୁ ସବୁ କଥା ଜଣାଇ, ସମାଧି ମଧ୍ୟରୁ ଜୁଲିୟେଟ୍‌କୁ ଉଦ୍ଧାର କରି ସାଙ୍ଗରେ ନେଇଯିବା ପାଇଁ ମୁଁ ରୋମିଓକୁ ଚିଠିରେ ଜଣାଏ । ଦୁର୍ଭାଗ୍ୟକୁ ସେ ଚିଠି ରୋମିଓ ପାଖରେ ନ ପହଞ୍ଚି ମୋ ପାଖକୁ ଫେରିଆସେ । ଜୁଲିୟେଟ୍‌ର ନିଦ ଭାଙ୍ଗିବାର ମୁହୂର୍ତ୍ତ ପାଖେଇ ଆସିବାରୁ ଆପାତତଃ, ତାକୁ ସମାଧିରୁ ଉଦ୍ଧାର କରି ରୋମିଓ ପାଖକୁ ନ ପଠାଇବା ପର୍ଯ୍ୟନ୍ତ ମୋ ପାଖରେ ରଖିବାକୁ ବିଚାର କରି ମୁଁ ଏଠାକୁ ଆସେ । ଏଠାରେ ଆସି ଏ ଦୁହିଁଙ୍କର ମୃତ ଦେହ ଦେଖିବାକୁ ପାଏ । ଜୁଲିୟେଟ୍‌ର ନିଦ ଭାଙ୍ଗେ । ମୁଁ ତାକୁ ସମାଧିରୁ ବାହାରି ଆସିବାକୁ ଅନୁରୋଧ କରେ । ଏତିକିବେଳେ ଲୋକମାନଙ୍କର ଆସିବାର ସୂଚନା ମିଳେ । ଜୁଲିୟେଟ୍ ମଧ୍ୟ ମୋ ସହିତ ଯିବାକୁ ରାଜି ନ ହେବାରୁ ମୁଁ ଚାଲିଯାଏ । ମନେହେଉଛି ସେ ଆତ୍ମଘାତୀ ହୋଇଛି । ଏଇ ହେଉଛି ମୋ କଥା । ବିବାହର ସାକ୍ଷୀ ହେଉଛି ନର୍ସ । ଆଇନ୍ ଆଖିରେ ଯଦି ମୁଁ ଦୋଷୀ, ତେବେ ପ୍ରଥମେ ମୋତେ ଦଣ୍ଡ ଦିଆଯାଉ । ଫାଦର ନୀରବ ହୋଇଯାଆନ୍ତି ।

ଏହା ପରେ ରାଜା ରୋମିଓର ଅନୁଚରଟିକୁ ଏ ସମ୍ପର୍କରେ ଯାହା ଜାଣେ କହିବାକୁ ସେ ଆଦେଶ ଦିଅନ୍ତି ।

ବାଲ୍ଥାଜାର କହିଯାଏ , ଜୁଲିୟେଟ୍ଙ୍କର ମୃତ୍ୟୁ ସମ୍ବାଦ ମୁଁ ହିଁ ମୁନିବଙ୍କୁ ଦେଇଥିଲି । ତା'ପରେ ସେ ମାନ୍ଟୁଆରୁ ସିଧା ଏଠାକୁ ଆସନ୍ତି । ତାଙ୍କର ପିତାଙ୍କୁ ଦେବାପାଇଁ ଖଣ୍ଡେ ଚିଠି ମୋ ହାତରେ ଦେଇ ମୋତେ ସେଠାରୁ ଚାଲିଯିବା ପାଇଁ ଆଦେଶ ଦିଅନ୍ତି । (ରାଜା ରୋମିଓର ଚିଠିଟି ଗ୍ରହଣ କରନ୍ତି)

ପାରିସ୍‌ର ଅନୁଚର ଆରମ୍ଭ କରେ - ମୋର ମୁନିବ ଏଇ ସମାଧିରେ ଫୁଲ ଦେବାକୁ ଆସନ୍ତି । ମୋତେ ଟିକିଏ ଦୂରରେ ଅପେକ୍ଷା କରିବାକୁ କହନ୍ତି । ମୁଁ ତାହାହିଁ କରେ । ହଠାତ୍ ମଶାଲ ନେଇ ଏଇ ଭଦ୍ରଲୋକ (ରୋମିଓଙ୍କୁ ନିର୍ଦ୍ଦେଶ କରି ) ଆସୁଥିବାର ମୁଁ ଲକ୍ଷ୍ୟ କରି ମୋର ମୁନିବଙ୍କୁ ସୂଚନା ଦିଏ । କିଛି କ୍ଷଣ ପରେ ଆସି ଦେଖେ ଦୁହେଁ ଲଢ଼ାଇରେ ମାତିଛନ୍ତି । ମୁଁ କଟୁଆଳଙ୍କୁ ସମ୍ବାଦ ଦେବାକୁ ଚାଲିଯାଏ ।

ରୋମିଓର ଚିଠି ପଢ଼ି ରାଜା କହନ୍ତି, ଚିଠିରୁ ସବୁ ବୁଝାପଡୁଛି । ରୋମିଓ ବିଷ ସଂଗ୍ରହ କରିବାର ସୂଚନା ଏଥିରେ ଦେଇଛି । ଜୁଲିୟେଟ୍ କବରରେ ସେ ମୃତ୍ୟୁ ବରଣ କରିବାର ସିଦ୍ଧାନ୍ତ ନେଇ ଏଠାକୁ ଆସିଥିବା କଥା ମଧ୍ୟ ଲେଖିଛି ।

ମଣ୍ଟେଗ୍ୟୁ ଓ କାପୁଲେଟ୍ଙ୍କର ପାରିବାରିକ ଶତ୍ରୁତାର ପରିଣାମ କେତେ ଭୟାବହ ହୋଇପାରେ, ତାହା ବିଚାର କରିବା ନିମନ୍ତେ ରାଜା ଦୁଇ ପରିବାରମୁଖ୍ୟଙ୍କୁ ଅନୁରୋଧ କରନ୍ତି । ଏଥି ନିମନ୍ତେ ସେ ମଧ୍ୟ ନିଜର ଜଣେ ଆତ୍ମୀୟଙ୍କୁ ହରାଇଲେ ବୋଲି ଦୁଃଖ ପ୍ରକାଶ କରନ୍ତି ।

ମଣ୍ଟେଗ୍ୟୁ ଓ କାପୁଲେଟ୍ ପରସ୍ପରର ହାତ ଧରି ଏଇ ଦୁର୍ବହ ଦୁଃଖରୁ ଉଦ୍ଧାର ପାଇବା ନିମନ୍ତେ ଯେମିତି ପରସ୍ପର ମଧ୍ୟରେ ସାନ୍ତ୍ୱନା ଖୋଜନ୍ତି । ମଣ୍ଟେଗ୍ୟୁ କହନ୍ତି, ମୁଁ ମୋ ପୁତ୍ରବଧୂର ମୂର୍ତ୍ତି ସୁନାରେ ନିର୍ମାଣ କରାଇବି । ଏଇ ମୂର୍ତ୍ତିପାଇଁ ଭେରୋନା ହେବ ବିଶ୍ୱରେ ପରିଚିତ । କାପୁଲେଟ୍ ଜଣାନ୍ତି-ଜୁଲିୟେଟ୍ ପାଖରେ ସେ ମଧ୍ୟ ନିର୍ମାଣ କରାଇବେ ରୋମିଓର ସୁନାର ମୂର୍ତ୍ତି ।

ସକାଳ ହୋଇ ଆସେ । ରାଜା କହନ୍ତି-ଦୁଃଖ ଭିତରୁ ଧୀରେ ଧୀରେ ଶାନ୍ତିର ପ୍ରକାଶ ଘଟୁଛି । ଆଜି ଆକାଶରେ ମେଘ ଜମିଛି । ହୁଏତ ମଣିଷ ଦୁଃଖରେ ସମବେଦନା ଜଣାଇ ସୂର୍ଯ୍ୟ ଆଜି ମୁହଁ ଦେଖାଇବେ ନାହିଁ । ଧୀରେ ଧୀରେ ଆମେ ଏ ଘଟଣା ସବୁ ଭୁଲିଯିବା । ପୁଣି ହସିବା, କାନ୍ଦିବା... ମାତ୍ର ଚିରଦିନ ପାଇଁ ଅଭୁଲା ହୋଇ ରହିବେ ଏଇ ଦୁଇ ପ୍ରଣୟୀ- ରୋମିଓ -ଜୁଲିୟେଟ୍-ଆଉ ସେମାନଙ୍କର ଅବିସ୍ମରଣୀୟ ପ୍ରେମ କାହାଣୀ ।

# ଅଥେଲୋ

॥ ୧ ॥

ଭେନିସ୍‌ର ରାଜପଥରେ ଠିଆହୋଇ ଆଳାପ କରୁଥିଲେ ରଡ଼ରିଗୋ ଆଉ ଇୟାଗୋ । ରଡ଼ରିଗୋ ନଗରର ଜଣେ ଧନୀ ସମ୍ଭ୍ରାନ୍ତ ବ୍ୟକ୍ତି ଆଉ ଇୟାଗୋ ହେଲେ ରାଜ୍ୟର ନୌବାହିନୀର କର୍ମଚାରୀ । ନିଜର ପ୍ରଣୟିନୀ ଡେସ୍‌ଡିମୋନାକୁ ଅପହରଣ କରି ନେଇଛନ୍ତି ଅଥେଲୋ । ରଡ଼ରିଗୋ ଡେସ୍‌ଡିମୋନାର ପାଣିପ୍ରାର୍ଥୀ ଥିଲେ । ଏଥିରେ ତାଙ୍କୁ ଇୟାଗୋ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ବର୍ତ୍ତମାନ ତାଙ୍କୁ ବିବାହ କରୁଛନ୍ତି ଅଥେଲୋ !

ମଧ୍ୟରାତ୍ରିର ଏଇ ଆଲୋଚନା ବେଶ୍ ଉତପ୍ତ ମନେ ହେଉଛି ।

କ୍ଷୋଭର ସହିତ ରଡ଼ରିଗୋ କହନ୍ତି 'ଆପଣ ମୋଠୁ ଟଙ୍କା ନେଇଛନ୍ତି ଅଥଚ୍ ଏ ବିବାହ ବ୍ୟାପାର ମୋତେ ଜଣାଇ ନାହାନ୍ତି !'

- ଜଣାଇବି କିପରି ? ଇୟାଗୋ କହନ୍ତି - ଘଟଣା ଯେ ଏମିତି ଘଟିବ ତା' ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।

- ଆପଣତ କହିଥିଲେ, ଆପଣ ଅଥେଲୋକୁ ପସନ୍ଦ କରନ୍ତି ନାହିଁ ।

- ଏବେ ମଧ କରୁ ନାହିଁ । ମୋର ଯୋଗ୍ୟତା କିଛି କମ୍ ନୁହେଁ । ଅଥଚ ଅଥେଲୋ କାହାକୁ ନିଜର ଲେଫ୍‌ଟନାଣ୍ଟ ବାଛିଲେ ? ମାଇକେଲ୍ କାସିଓକୁ । ଯୁଦ୍ଧ ସମ୍ପର୍କରେ ଏଇ ଭଦ୍ରଲୋକଙ୍କର ଅଭିଜ୍ଞତା ପ୍ରାୟ ଶୂନ୍ୟ । ବହି ପଢ଼ି ଯାହା କିଛି ଜ୍ଞାନ ଆହରଣ କରିଛନ୍ତି । ରୋଡ଼ସ୍ ସାଇପ୍ରସ୍ ପ୍ରଭୃତି ଯୁଦ୍ଧକ୍ଷେତ୍ରର ପ୍ରତ୍ୟକ୍ଷ ଅଭିଜ୍ଞତା ଥାଇ ମଧ ମୁଁ ବାଦ୍ ପଡ଼ିଗଲି ।

ଇୟାଗୋ ରାଗରେ ଗର ଗର ହୁଅନ୍ତି-କିଛି କରିବାର ନାହିଁ, ଆମ ଚାକିରିର ରୀତି ହେଉଛି ଏଇଆ । କିଏ କେଉଁ ପଦ ପାଇବ, ତା' ନିର୍ଭର କରେ ବ୍ୟକ୍ତିଗତ ପସନ୍ଦ ଅପସନ୍ଦ ଉପରେ । ଆପଣ ଭାବି ଦେଖନ୍ତୁ, ସେଇ ମୁର୍ ଅଥେଲୋକୁ ପସନ୍ଦ କରିବାର କୌଣସି କାରଣ ଅଛି ? ତେବେ ଆପଣ ଚିନ୍ତା କରନ୍ତୁ ନାହିଁ । ବାହାରୁ ଅଥେଲୋକୁ 'ଜୀ ହଜୁର' କରୁଥିଲେ ହେଁ, ତା'ପାଇଁ ମୋର ଅନ୍ୟ ଯୋଜନା ଅଛି । କେବଳ କର୍ତ୍ତବ୍ୟ ପାଇଁ ନୁହେଁ । ଅନ୍ୟ ଏକ ଉଦ୍ଦେଶ୍ୟ ନେଇ ମୁଁ ତା'ପଛେ ପଛେ ଘୁରୁଛି । ମୋ ବିଷୟରେ ଆପଣ ନିଶ୍ଚିନ୍ତ ରହନ୍ତୁ । ଏବେ ମୋ ସହିତ ଚାଲନ୍ତୁ । ଡେସ୍‌ଡିମୋନାର ପିତାଙ୍କୁ ଏ ଖବରଟି ଦେଇ ତାଙ୍କର ପ୍ରତିକ୍ରିୟା ଲକ୍ଷ୍ୟ କରିବା । ତା'ସହିତ ଡେସ୍‌ଡିମୋନାର ବନ୍ଧୁବାନ୍ଧବମାନଙ୍କୁ ମଧ ରଗେଇ ଦିଆଯାଉ । ଅଥେଲୋର ଚାରିପଟେ ଏମିତି ମାଛିପଲ ଛାଡ଼ିଦେଲେ ସେ ନିଶ୍ଚୟ ଅସ୍ଥିର ହୋଇଉଠିବ । ଆନନ୍ଦ ସହିତ ବେଦନା ନ ମିଶିଲେ ସେ ଆଉ ଜୀବନ କ'ଣ ?

ଡେସ୍‌ଡିମୋନାର ଘର ଆଗରେ ରଡ଼ରିଗୋ ତାଙ୍କ ପିତାଙ୍କ ନାମ ଧରି ଡାକିବାରେ ଲାଗନ୍ତି । ଉପର ଝରକାରେ ତା'ର ପିତା ବ୍ରାବାନ୍‌ଶିଓ ମୁହଁ ଦେଖାଇବା ମାତ୍ରେ ଇୟାଗୋ କହେ, ତଳକୁ ଓହ୍ଲାଇ ଆସନ୍ତୁ ଆଜ୍ଞା । ଗୋଟାଏ ଦୁଃସମ୍ବାଦ ଅଛି । ଆପଣ ଆପଣଙ୍କର ଆଖିର ମଣିଟିକୁ ହରାଇଛନ୍ତି । ଏ ଭିତରେ ଗୋଟାଏ କଳାମେଣ୍ଢା ଆପଣଙ୍କ ଝିଅକୁ ବଶ କରିନେଇଛି । ଶୋଇ ନ ରହି ସାହି ଲୋକଙ୍କୁ ଡାକନ୍ତୁ ।

- ଆପଣମାନଙ୍କର ମୁଣ୍ଡ ଖରାପ ନା କ'ଣ ? ବ୍ରାବାନ୍‌ଶିଓ କହନ୍ତି ।

- ଆପଣ ବୋଧହୁଏ ମୋତେ ଚିହ୍ନିପାରୁ ନାହାନ୍ତି, ମୁଁ ରଡ଼ରିଗୋ ।

- ସେ ତ ଠିକ୍ ଅଛି । ଏଠି ରାତି ଅଧରେ ଏ କି ଉତ୍ପାତ ? ବ୍ରାବାନ୍‌ଶିଓ ନିଜର ଅସନ୍ତୋଷ ପ୍ରକାଶ କରନ୍ତି । ଆପଣଙ୍କୁ ପ୍ରଥମରୁ କହି ଦେଉଛି, ଆପଣଙ୍କ ସହିତ କେବେ ବି ମୁଁ ମୋ ଝିଅର ବିବାହ ଦେବି ନାହିଁ । ତଥାପି ଖାଇପିଇ ଆପଣମାନଙ୍କର କାମ ନାହିଁ ଯେ, ରାତି ଅଧରେ ଜଣେ ନାଗରିକର ଶାନ୍ତିଭଙ୍ଗ କରିବାକୁ ଧାଇଁ ଆସିଛନ୍ତି !

ବାଧା ଦେଇ ରଡ଼ରିଗୋ କହନ୍ତି- ଧୈର୍ଯ୍ୟ ଧରନ୍ତୁ ଆଜ୍ଞା !

ଆପଣ କ'ଣ ମୋ ଘରେ ଡକାୟତି କରିବାକୁ ଚାହାନ୍ତି ? ମନେରଖିବେ, ଏଇଟା ଭେନିସ୍ ସହର-କୌଣସି ଗାଁ ନୁହେଁ-ବ୍ରାବାନ୍‌ଶିଓ କ୍ଷୋଭର ସହିତ କହନ୍ତି ।

ଅନେକ କଥା କଟାକଟି ପରେ ଶେଷରେ ଏମାନେ ଜଣାଇ ଦିଅନ୍ତି ଯେ, ତାଙ୍କ ଝିଅ ଅଥେଲୋ ନାମକ ମୁର୍ ସେନାପତି ସହିତ ଘରଛାଡ଼ି ପଳାଇଛି ।

ଏଥର ବ୍ରାବାନ୍‌ଶିଓଙ୍କର ଚେତା ପଶେ । ସେ ପାଟିତୁଣ୍ଡ କରି ଲୋକମାନଙ୍କୁ ଡାକନ୍ତି । ଆଲୁଅ ଜଳାନ୍ତି । ଇୟାଗୋ ସୁଯୋଗ ଦେଖି ଖସିଯାଆନ୍ତି । ସେ ଯେ ଅଥେଲୋଙ୍କ ବିପକ୍ଷରେ, ଏହା ସେ କାହାକୁ ଜଣାଇ ଦେବାକୁ ଚାହାନ୍ତି ନାହିଁ । ଭିତରେ ଯେତେ ଘୃଣା ଥାଉ, ବାହାରେ ଭକ୍ତି ଶ୍ରଦ୍ଧା ତ ଦେଖାଇବାକୁ ହେବ । ଚାକିରି କରିଛନ୍ତି ଯେ...

ବ୍ରାବାନ୍‌ଶିଓ କ୍ରୋଧରେ ଗର୍ଜିବାକୁ ଲାଗନ୍ତି, ରଡ଼ରିଗୋଙ୍କୁ ପ୍ରଶ୍ନ ବାଣରେ ଜର୍ଜରିତ କରନ୍ତି, ତା'ପରେ ଆତ୍ମୀୟସ୍ୱଜନ, ଲୋକବାକ ନେଇ ଅଥେଲୋ ଆଉ ତାଙ୍କ ଝିଅକୁ ଖୋଜିବାକୁ ବାହାରନ୍ତି ।

ଭେନିସ୍‌ର ଅନ୍ୟ ଏକ ରାସ୍ତାରେ ଅଥେଲୋଙ୍କ ସହିତ ଇୟାଗୋଙ୍କର ଦେଖାହୁଏ । ଇୟାଗୋ ତାଙ୍କୁ ରଡ଼ରିଗୋ ପ୍ରସଙ୍ଗରେ ସୂଚନା ଦିଅନ୍ତି । ତା' ଉପରେ ଇୟାଗୋର ଏତେ ରାଗ ହୋଇଥିଲା ଯେ, ସେ ତାକୁ ସେଇଠି ହତ୍ୟା କରିଥାଆନ୍ତେ । ସେ ବ୍ରାବାନ୍‌ଶିଓଙ୍କୁ ସମସ୍ତ

ବିବରଣୀ ତ ଦେଉଥିଲେ । ତା' ସହିତ ଅଥେଲୋଙ୍କ ନାମରେ ଏତେ ଖରାପ କଥାସବୁ କହୁଥିଲେ ଯେ, ୟାଙ୍କର ରକ୍ତ ଖାଲି ତାତି ଉଠୁଥିଲା । ଏହା ପରେ ବ୍ରାବାନ୍‌ଶିଓ ସମ୍ଭବତଃ ଡ୍ୟୁକ୍‌ଙ୍କ ପାଖରେ ତାଙ୍କ ନାମରେ ଅଭିଯୋଗ କରିବେ । ଇୟାଗୋ ନିଜର ବକ୍ତବ୍ୟ ଶେଷ କରନ୍ତି ।

ତାଚ୍ଛଲ୍ୟର ସହିତ ଅଥେଲୋ କହନ୍ତି-ସେମାନେ ଯାହା କରନ୍ତୁ ତହିଁରେ ମୋର ମର୍ଯ୍ୟାଦା କ୍ଷୁଣ୍ଣ ହେବ ନାହିଁ । ମୁଁ ରାଜବଂଶୀୟ-ପୁଣି ଡେସ୍‌ଡିମୋନାକୁ ଭଲପାଏ । ତା' ହୋଇ ନ ଥିଲେ ବିବାହ କରି ସାଂସାରିକ ଜଞ୍ଜାଳରେ କେବେ ପଶି ନ ଥାନ୍ତି ।

ଦୂରରେ ମଶାଲର ଆଲୁଅ ଦେଖାଯାଏ । ଇୟାଗୋ ସତର୍କ କରିଦେଇ କହନ୍ତି- ଏଇ ବୋଧହୁଏ, ଲୋକବାକ ନେଇ ବ୍ରାବାନ୍‌ଶିଓ ଗୋଟାଏ ଗଣ୍ଡଗୋଳ କରିବାକୁ ଆସୁଛନ୍ତି । ଆପଣ ବରଂ ଘରକୁ ଚାଲିଯାଆନ୍ତୁ ।

ଅସ୍ୱୀକାର କରି ଅଥେଲୋ କହନ୍ତି - ଚୋର ପରି ପଳାଇବି କାହିଁକି ? ମୁଁ ତ କୌଣସି ଅନ୍ୟାୟ କରି ନାହିଁ ।

ବ୍ରାବାନ୍‌ଶିଓ ନୁହେଁ । କାସିଓ ଆସନ୍ତି । ସେ ଅଥେଲୋଙ୍କୁ ଜଣାନ୍ତି ଯେ, ଡ୍ୟୁକ୍ ତାଙ୍କୁ ଖୋଜୁଛନ୍ତି । ସମ୍ଭବତଃ ସାଇପ୍ରସ୍ ଉପରେ ଆକ୍ରମଣ କରାଯାଇଛି ।

କାସିଓଙ୍କୁ ଅପେକ୍ଷା କରିବାକୁ କହି ପ୍ରସ୍ତୁତ ହେବାକୁ ଅଥେଲୋ ଘର ଭିତରକୁ ଯାଆନ୍ତି । ଇୟାଗୋ କାସିଓଙ୍କୁ ଅଥେଲୋଙ୍କ ବିବାହ ଖବରଟି ଦିଅନ୍ତି । ପାତ୍ରୀ ପ୍ରସଙ୍ଗ ଆଲୋଚିତ ହେବା ପୂର୍ବରୁ ଅଥେଲୋ ଆସିଯାଆନ୍ତି । ଯିବା ପୂର୍ବରୁ କିନ୍ତୁ ଦଳବଳ ନେଇ ସେଠାରେ ପ୍ରବେଶ କରନ୍ତି ବ୍ରାବାନ୍‌ଶିଓ ।

ବ୍ୟଙ୍ଗ କରି ଅଥେଲୋ କହନ୍ତି - ପ୍ରଥମେ ଆପଣମାନଙ୍କର ଖୋଲା ତରବାରି ଗୁଡ଼ିକୁ କୋଷଗତ କରନ୍ତୁ, ନ ହେଲେ କାକର ଲାଗି ସେଥିରେ କଳଙ୍କି ଧରି ଯାଇପାରେ । ବ୍ରାବାନ୍‌ଶିଓଙ୍କୁ କହନ୍ତି - ଶାସନ କରିବା ପାଇଁ ଏଇ ଅସ୍ତ୍ର ଅପେକ୍ଷା ଆପଣଙ୍କ ବୟସ ହିଁ ଯଥେଷ୍ଟ ।

ଉତ୍ତେଜିତ ବ୍ରାବାନ୍‌ଶିଓ ଆକ୍ଷେପ କରି କହନ୍ତି, ପାଜି ଚୋର ! ତୁ ମୋ ଝିଅକୁ ଯାଦୁ କରିଛୁ । ଜଡ଼ିବୁଟି ଖୁଆଇ ବଶ କରି ତାକୁ ନେଇ ଆସିଛୁ । ତୋର ଜେଲ୍ ହେବା ଉଚିତ । ମରାମରିର ଉପକ୍ରମ ହୁଏ ।

ଶାନ୍ତ ଭାବରେ ଅଥେଲୋ କହନ୍ତି, ଜେଲ୍ ଗଲେ ଆପଣଙ୍କର କି ଲାଭ ? ମଝିରେ ଡ୍ୟୁକ୍ ଆପଣଙ୍କ ଉପରେ ରାଗିବେ - କାରଣ ସେ ମୋତେ ଜରୁରୀ କାମରେ ଡାକି ପଠାଇଛନ୍ତି । କାସିଓ ତାଙ୍କ କଥାକୁ ସମର୍ଥନ କରନ୍ତି ।

ଏତେ ରାତିରେ ଡାକିଛନ୍ତି । ତେବେ ମୋ କଥା ବି ସାମାନ୍ୟ ନୁହେଁ । ଯାହାର ନିଜର ଦୁଃଖ ହୁଏ, ସେ ଜାଣେ । ଏ ସବୁ ବ୍ୟାପାରର ବିହିତ ନ କଲେ, ଛୋଟଲୋକମାନେ ଦିନେ ମୁଣ୍ଡରେ ଚଢ଼ି ବସିବେ-

ସେଇ ରାତିରେ ଡ୍ୟୁକ୍‌ଙ୍କର ଆଲୋଚନା ସଭା ବସିଛି । ତୁର୍କୀ ନୌବାହିନୀ ସାଇପ୍ରସ୍ ଆକ୍ରମଣ ପାଇଁ ଆଗେଇ ଆସୁଛନ୍ତି । ନୌବାହିନୀର ଜାହାଜ ସଂଖ୍ୟା ନେଇ ଭିନ୍ନ ଭିନ୍ନ ଖବର ଆସୁଛି । ଡ୍ୟୁକ୍ କହନ୍ତି - ଖବର ଯାହା ଆସୁନା କାହିଁକି ଘଟଣାଟା ଆତଙ୍କଜନକ । ଆଲୋଚନା ଭିତରେ ଖବର ମିଳେ, ତୁର୍କୀବାହିନୀ ରୋଡସ୍ ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଛନ୍ତି । ସମ୍ଭବତଃ ଭେନିସ୍‌ର ଦୃଷ୍ଟି ଅନ୍ୟ ଆଡ଼କୁ ନେଇଯିବା ପାଇଁ ଏହା ଏକ କୌଶଳ । ପୁଣି ଖବର ମିଳେ ତୁର୍କୀର ନୌବାହିନୀ ସହିତ ଦ୍ୱିତୀୟ ଏକ ନୌବାହିନୀ ଯୋଗ ଦେଇ ସମ୍ମିଳିତ ଭାବେ ସାଇପ୍ରସ୍ ଆଡ଼େ ଆଗେଇ ଚାଲିଛନ୍ତି । ଜାହାଜର ମୋଟ ସଂଖ୍ୟା ହେବ ତିରିଶ ।

ଆଲୋଚନାର ଏଇ ଗୁରୁତ୍ୱପୂର୍ଣ୍ଣ ମୋଡ଼ରେ ଆସି ପହଞ୍ଚନ୍ତି ବ୍ରାବାନ୍‌ଶିଓ, ଅଥେଲୋଙ୍କ ବିରୋଧରେ ଅଭିଯୋଗ ଜଣାଇବାକୁ । ସାଙ୍ଗରେ ଅଛନ୍ତି ଅଥେଲୋ, ଇୟାଗୋ, ରଡ଼ରିଗୋ ଓ ଅନ୍ୟମାନେ । ଅଥେଲୋଙ୍କୁ ଦେଖିବା ମାତ୍ରେ ଡ୍ୟୁକ୍ କହନ୍ତି, ଅଥେଲୋ, ତୁମକୁ ଅଟୋମାନ୍-ସୈନ୍ୟମାନଙ୍କ ବିରୋଧରେ ନେତୃତ୍ୱ ଗ୍ରହଣ କରିବାକୁ ହେବ । ତା'ପରେ ତାଙ୍କର ଦୃଷ୍ଟି ବ୍ରାବାନ୍‌ଶିଓଙ୍କ ଉପରେ ପଡ଼େ । କହନ୍ତି - ତମେ ତ ଏଠି ନ ଥିଲ । ତମର ପରାମର୍ଶରୁ ଆମେ ବଞ୍ଚିତ ହେଲୁ ।

ବ୍ରାବାନ୍‌ଶିଓ କହନ୍ତି - ଆଲୋଚନାର ଖବର ମୁଁ ପାଇ ନାହିଁ । ଦେଶର ଏସବୁ ଘଟଣା ପାଇଁ ମଧ ମୁଁ ନିଦରୁ ଉଠି ଧାଇଁ ଆସି ନାହିଁ । ବ୍ୟକ୍ତିଗତ ଦୁଃଖର ଜ୍ୱାଳାରେ ଅସ୍ଥିର ହୋଇ ମୋତେ ଏଠାକୁ ଆସିବାକୁ ହୋଇଛି ।

ସମସ୍ତେ ଘଟଣାଟା ଜାଣିବାକୁ ଚାହାନ୍ତି ।

- ମୋ ଝିଅ... କଥା ଶେଷ କରିପାରନ୍ତି ନାହିଁ ବ୍ରାବାନ୍‌ଶିଓ । କ୍ଷୋଭ ଆଉ ଦୁଃଖରେ ତାଙ୍କର ଗଳା ବନ୍ଦ ହୋଇଯାଏ । ଅନ୍ୟମାନେ କହନ୍ତି- କ'ଣ ତା'ର ମୃତ୍ୟୁ ହୋଇଯାଇଛି ? - ହଁ, ମୋ ପାଇଁ ପ୍ରାୟ ସେଇଆ - ବ୍ରାବାନ୍‌ଶିଓ କହନ୍ତି - ତାକୁ ମୋ ପାଖରୁ ଚୋରି କରାଯାଇଛି । ଗୁଣିଗାରେଡ଼ି କରି ଭୁଲାଇ ନିଆଯାଇଛି ।

- କିଏ ସେଇ ବଦ୍‌ମାସ୍ , ଯେ କି ଏଭଳି ଦୁଃସାହସ କରିଛି - ଡ୍ୟୁକ୍ ହୁଙ୍କାର ଛାଡ଼ନ୍ତି । ସେ ଯିଏ ହେଉନା କାହିଁକି ତା'ର ଶାସ୍ତି ନିଶ୍ଚିତ ।

ବ୍ରାବାନ୍‌ଶିଓ ଅଥେଲୋଙ୍କୁ ଦେଖାଇ କହନ୍ତି - ଏ ହେଉଛି ସେଇ ।

ଅଥେଲୋଙ୍କ ଆଡ଼କୁ ଅନାଇ ଡ୍ୟୁକ୍ ପଚାରନ୍ତି - ତମର କ'ଣ କହିବାର ଅଛି ?

- ତା'ର ପୁଣି ଗୋଟାଏ କ'ଣ କହିବାର ଥାଇପାରେ ? ବ୍ରାବାନ୍‌ଶିଓ ମନ୍ତବ୍ୟ ଦିଅନ୍ତି ।

ଅଥେଲୋ ଶାନ୍ତ ଭାବରେ କହନ୍ତି, ଏଇଟା ଅବଶ୍ୟ ଠିକ୍ ଯେ, ମୁଁ ଏଇ ଭଦ୍ରଲୋକଙ୍କର ଝିଅକୁ ନେଇ ଆସିଛି ଏବଂ ବିବାହ ମଧ କରିଛି । ମୋର ଅପରାଧ ଏତିକି । ତେବେ ମୁଁ ଯାହା କରିଛି, ପ୍ରେମ ପାଇଁ କରିଛି । ଗୁଣି ଗାରେଡ଼ିର କଥା ମୋତେ କିଛି ଜଣା ନାହିଁ । ଏଥିପାଇଁ କୌଣସି ଯାଦୁବିଦ୍ୟାର ପ୍ରୟୋଗ ମଧ କରି ନାହିଁ ।

- ଜଣେ ଧୀରସ୍ଥିର, ନମ୍ର ଆଉ ଲାଜୁକ ସ୍ୱଭାବର ଝିଅ, ସେ ପୁଣି ପ୍ରେମରେ ପଡ଼ିବ ଏଭଳି ଲୋକ ସହିତ, ଯାହାକୁ ଦେଖିଲେ ଭୟ ହୁଏ - ଏକଥା ବିଶ୍ୱାସଯୋଗ୍ୟ ନୁହେଁ । ବ୍ରାବାନ୍‌ଶିଓ ମନ୍ତବ୍ୟ ଦିଅନ୍ତି, ଏ କ୍ଷେତ୍ରରେ ଗୁଣି ଗାରେଡ଼ିର ପ୍ରୟୋଗ ବିଷୟରେ ମୁଁ ନିଶ୍ଚିତ ।

ସନ୍ଦେହାତୀତ ଭାବରେ କିଛି କୁହାଯାଇପାରିବ ନାହିଁ- ଡ୍ୟୁକ୍ କହନ୍ତି । ଏଥିପାଇଁ ଆହୁରି ଅନୁସନ୍ଧାନ ଦରକାର ।

ସିନେଟ୍‌ର ଜଣେ ସଭ୍ୟ ଅଥେଲୋଙ୍କୁ ପଚାରନ୍ତି- ଆପଣ କ'ଣ କୌଣସି ଚାପ ପ୍ରୟୋଗ କରି ଡେସ୍‌ଡିମୋନାର ପ୍ରେମ ଆଦାୟ କରିଛନ୍ତି କିମ୍ବା ଅନୁରୋଧରେ କି ସାଧାରଣ ଭାବରେ ହୃଦୟ ସହିତ ହୃଦୟର ମିଳନରୁ ଏଇ ପ୍ରେମ ?

ଅଥେଲୋ ଉତ୍ତର ଦିଅନ୍ତି - ମୋର ଅନୁରୋଧ, ଆପଣମାନେ ଡେସ୍‌ଡିମୋନାକୁ ଏଠାକୁ ଡକାଇ ଆଣନ୍ତୁ । ସେ ତା'ର ବାବାଙ୍କ ଆଗରେ ଯାହା କହିବାର କହୁ । ସେଥିରୁ ଯଦି ମୁଁ ଦୋଷୀ ବୋଲି ଆପଣମାନଙ୍କର ହୃଦ୍‌ବୋଧ ହୁଏ, ତେବେ ଶାସ୍ତି ଦେବେ ।

ଡ୍ୟୁକ୍‌ଙ୍କ ନିର୍ଦ୍ଦେଶରେ ଡେସ୍‌ଡିମୋନାକୁ ଆଣିବାକୁ ଇୟାଗୋ ଯାଆନ୍ତି, ଅଥେଲୋ କହନ୍ତି, ଡେସ୍‌ଡିମୋନା ଆସିବା ପୂର୍ବରୁ ମୁଁ ବରଂ ସବୁ କଥା ଖୋଲି କହୁଛି । ସେଥିରୁ ଆପଣମାନେ ଆମ ଭଲ ପାଇବାର ଗୋଟାଏ ସ୍ପଷ୍ଟ ଚିତ୍ର ପାଇବେ । ଡେସ୍‌ଡିମୋନାର ପିତା ମୋତେ ସ୍ନେହ କରୁଥିଲେ । ପ୍ରାୟ ମୋତେ ଡାକି ମୋ ଜୀବନର ନାନା କଥା ଶୁଣୁଥିଲେ । ମୁଁ ତାକୁ ଯୁଦ୍ଧର କଥା, ଯେଉଁ ସବୁ ରୋମାଞ୍ଚକର ବିପଦର ସମ୍ମୁଖୀନ ହୋଇଛି ସେସବୁ କଥା କହୁଥିଲି । ଟିକିଏ ପାଇଁ କିଭଳି ମୋର ପ୍ରାଣ ରକ୍ଷା ହୋଇଥିଲା, ମୋତେ କିଭଳି କ୍ରୀତଦାସ ରୂପେ ବିକ୍ରି କରାଯାଇଥିଲା ଏସବୁ କଥା ମୁଁ ତାକୁ କହିଛି । ନରଖାଦକମାନଙ୍କର ବୃତ୍ତାନ୍ତ ମଧ ବର୍ଣ୍ଣନା କରିଛି । ଡେସ୍‌ଡିମୋନା ଏସବୁ ବର୍ଣ୍ଣନା ତନ୍ମୟ ହୋଇ ଶୁଣୁଥାଏ । ଯେତେ କାମ ଥିଲେ ବି ଆସି ଗଳ୍ପ ଶୁଣିବାକୁ ବସିଯାଏ । ମୋର ଦୁଃଖର କଥା ଶୁଣି ସେ ଦୀର୍ଘ ନିଃଶ୍ୱାସ

ପକାଏ । ମଝିରେ ମଝିରେ କହି ଉଠେ- 'ଥାଉ, ଥାଉ କହନ୍ତୁ ନାହିଁ । ଗଳ୍ପ ପାଇଁ ମୋତେ ଧନ୍ୟବାଦ ବି ଦେଇଛି । ଗୋଟିଏ ସମୟରେ ମୁଁ ଅନୁଭବ କଲି ଯେ, ସେ ମୋତେ ଭଲ ପାଇବାକୁ ଆରମ୍ଭ କରିଛି । ସେ ଭଲ ପାଇଲା, ହୁଏତ ନାନା ବିପଦର ଝୁଙ୍କିନେଇ ପାରିବାର ସାହସ ମୋଠାରେ ଅଛି ବୋଲି । ମୁଁ ତାକୁ ଭଲ ପାଇଲି, ମୋ ଦୁଃଖରେ ସେ ଦୁଃଖ ପାଏ ବୋଲି । ସେ ମୋତେ ଭଲ ପାଏ । ତେଣୁତ ମୁଁ ତାକୁ ଭଲ ପାଇଲି । '

ଅଥେଲୋଙ୍କ କାହାଣୀ ଶୁଣି ଡ୍ୟୁକ୍ ହସି ହସି କହନ୍ତି-ଏସବୁ ଗଳ୍ପ ଶୁଣିଲେ ମୋ ଝିଅ ମଧ ତମ ଆଡ଼କୁ ଢଳିପଡ଼ନ୍ତା !

ଡେସ୍‌ଡିମୋନାକୁ ନେଇ ଇୟାଗୋ ଫେରିଆସନ୍ତି । ତାକୁ ଦେଖିବା ମାତ୍ରେ ବ୍ରାବାନ୍‌ଶିଓ ଉତ୍ସାହିତ ହୋଇ କହନ୍ତି - ଏଇତ ମୋର ଝିଅ, ଆପଣମାନେ ତା' କଥା ଶୁଣନ୍ତୁ । ତା'ପରେ ଆପଣମାନେ ପ୍ରକୃତ ସତ୍ୟ ଜାଣିପାରିବେ । ଝିଅ ତୁ କହ, ପ୍ରକୃତରେ ତୁ କାହାକୁ ଭଲପାଉ ।

ଡେସ୍‌ଡିମୋନା ମୃଦୁ ସ୍ୱରରେ କହେ-ବାବା, ମୋର ମନ ଏବେ ଦ୍ୱିଧା ବିଭକ୍ତ । ଗୋଟିଏ ପଟରେ ମୋର ଜୀବନ ଆପଣଙ୍କ ସହିତ ନିବିଡ଼ ଭାବରେ ଯୁକ୍ତ । ଏ ଜୀବନ ମତେ ଆପଣ ଦେଇଛନ୍ତି । ଛୋଟରୁ ବଡ଼ କରିଛନ୍ତି, ଲେଖାପଢ଼ା ଶିଖାଇଛନ୍ତି । ମୁଁ ଆପଣଙ୍କୁ ସମ୍ମାନ କରେ । ମୋର ସ୍ୱାମୀ ଏଠାରେ ଅଛନ୍ତି । ମୋର ମାଆ ଆପଣଙ୍କର ଅନୁଗତ ଥିଲେ ଏବଂ ସେ ଅଜାଙ୍କଠାରୁ ଆପଣଙ୍କ ପ୍ରତି ଅଧିକ ଅନୁରକ୍ତ ଥିଲେ । ମୁଁ ମଧ ଏଇ ଲୋକଟି ପ୍ରତି ସେତିକି ଅନୁରକ୍ତ ।

ଡେସ୍‌ଡିମୋନାର କଥା ଶୁଣି ବ୍ରାବାନ୍‌ଶିଓ ହତାଶାରେ କହିଉଠନ୍ତି, ମୁଁ ହାରିଯାଇଛି । ଆପଣମାନେ ବରଂ ଦେଶ ବ୍ୟାପାରରେ ଅସମାପ୍ତ ଆଲୋଚନା ପୁଣି ଆରମ୍ଭ କରନ୍ତୁ । ଏଭଳି ଝିଅ ଥିବା ନ ଥିବା ମୋ ପକ୍ଷରେ ସମାନ । ଆସ ମୁର୍, ଦିନେ ମୁଁ ମୋ ଝିଅକୁ ତମଠାରୁ ଦୂରରେ ରଖିବାକୁ ଚାହିଁଥିଲି, ଆଜି ମୁଁ ତାକୁ ତମରି ହାତରେ ଟେକି ଦେଉଛି । ତମ ପାଖରେ ଡେସ୍‌ଡିମୋନା-ବାନର ଗଳାରେ ମୁକ୍ତାମାଳ । ମୁଁ ଖୁସି ଯେ, ମୋର କୌଣସି ଝିଅ ନାହିଁ ।

ଡ୍ୟୁକ୍ ତାକୁ ସାନ୍ତ୍ୱନା ଦେଇ କହନ୍ତି-ଯାହା ହେବାର ହୋଇଯାଇଛି । ତାକୁ ନେଇ ଦୁଃଖ କର ନାହିଁ । ମନ୍ଦର ବି ତ ଗୋଟିଏ ଭଲ ଦିଗ ଥାଏ ।

ବ୍ରାବାନ୍‌ଶିଓ କିଛି ହତାଶା ସହିତ କିଛି ଶ୍ଳେଷ ମିଶାଇ କହନ୍ତି, ତେବେ ତୁର୍କୀମାନଙ୍କ ଆକ୍ରମଣ ପ୍ରସଙ୍ଗ ଆଉ ଥରେ ଆରମ୍ଭ ହେଉ । ମନ ଖୋଲି ହସିପାରିଲେ ହରାଇବା ପାଇଁ ଆଉ ଦୁଃଖ କ'ଣ ?

ଅସମାପ୍ତ ଆଲୋଚନା ଆରମ୍ଭ ହୁଏ । ଡ୍ୟୁକ୍ କହନ୍ତି-ତୁର୍କୀମାନଙ୍କର ପ୍ରସ୍ତୁତି ଏଥର ଖୁବ୍ ବ୍ୟାପକ । ସେଇ ଅଞ୍ଚଳ ସମ୍ପର୍କରେ ଅଥେଲୋଙ୍କର ଜ୍ଞାନ ପର୍ଯ୍ୟାପ୍ତ । ଆମେ ସାଇପ୍ରସ୍

ଉଦ୍ଧାର ପାଇଁ ଅଭିଯାନ ଆରମ୍ଭ କରିବୁ, ଆଉ ସେଇ ଅଭିଯାନର ନେତୃତ୍ୱ ଗ୍ରହଣ କରିବ ତମେ-ଅବଶ୍ୟ ଏଥିପାଇଁ ତମର ମଧୁଚନ୍ଦ୍ରିକା ବ୍ୟାହତ ହେବ ... ଏଥିପାଇଁ ମୁଁ ଦୁଃଖିତ ।

ଅଥେଲୋ କହନ୍ତି, ଅଟୋମାନ୍‌ମାନଙ୍କ ବିରୋଧରେ ମୁଁ ଦ୍ରୁତ ବ୍ୟବସ୍ଥା ଗ୍ରହଣ କରୁଛି । କିନ୍ତୁ ମୋ ସ୍ତ୍ରୀଙ୍କର ଦାୟିତ୍ୱ ରହିବ ଆପଣମାନଙ୍କ ଉପରେ ।

- ତମେ ତାଙ୍କୁ ତା'ର ପିତାଙ୍କ ପାଖରେ ଛାଡ଼ି ଦେଇପାର -ଡ୍ୟୁକ୍ ପରାମର୍ଶ ଦିଅନ୍ତି, ମାତ୍ର ବ୍ରାବାନ୍‌ଶିଓ ଏଥିରେ ରାଜି ହୁଅନ୍ତି ନାହିଁ । ଅଥେଲୋ କିମ୍ବା ଡେସ୍‌ଡିମୋନା ମଧ କେହି ଏ ବ୍ୟବସ୍ଥାକୁ ସମର୍ଥନ କରନ୍ତି ନାହିଁ । ଡେସ୍‌ଡିମୋନା କହନ୍ତି -ମୁଁ ଅଥେଲୋଙ୍କୁ ବିବାହ କରିଛି । ତାଙ୍କରି ପାଖରେ ହିଁ ରହିବି । ଏତେଦିନ ଯାଏ ତାଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟକଳାପର କେବଳ ବର୍ଣ୍ଣନା ଶୁଣୁଥିଲି । ବର୍ତ୍ତମାନ ତାକୁ ଆଖିରେ ଦେଖିବାର ସୁଯୋଗ ଆସିଛି । ସେ ଯୁଦ୍ଧକୁ ଯିବେ, ଆଉ ମୁଁ ଯଦି ଏଠି ପଡ଼ିରହେ ତେବେ ଆମର ଭଲ ପାଇବା ଅର୍ଥହୀନ ହୋଇଯିବ । ମହାମାନ୍ୟ ଡ୍ୟୁକ୍, ଆପଣ ମୋତେ ତାଙ୍କ ସାଙ୍ଗରେ ଯିବାକୁ ଅନୁମତି ଦିଅନ୍ତୁ । ଅଥେଲୋ ମଧ ସେଇଭଳି ପ୍ରାର୍ଥନା କରନ୍ତି । କହନ୍ତି-ଆପଣମାନେ ବିଶ୍ୱାସ କରନ୍ତୁ, ଏଥିପାଇଁ କିନ୍ତୁ ଦେଶପାଇଁ ମୋର କର୍ତ୍ତବ୍ୟର ଲେଶ ମାତ୍ର ତ୍ରୁଟି ହେବ ନାହିଁ ।

ଡ୍ୟୁକ୍ କହନ୍ତି - ତମେ ଯେମିତି ଚାହିଁବ, ସେମିତି କରିବା । ଆପାତତଃ, ଆଜି ରାତିରେ ହିଁ ତମେ ଯାତ୍ରା କର । ବିଳମ୍ବ କଲେ କ୍ଷତି ହେବାର ଆଶଙ୍କା । କୌଣସି ଅଫିସର୍‌ଙ୍କୁ ଦାୟିତ୍ୱ ଦେଇଯାଅ, ସେ ତମର ମାଲପତ୍ର ଓ ତମର ସ୍ତ୍ରୀଙ୍କୁ ସାଇପ୍ରସ୍‌ରେ ପହଞ୍ଚାଇ ଦେବେ । ଅଥେଲୋ କହନ୍ତି- ସେଇଆ କରିବି ।

ବିଦାୟ ଦେବା ପୂର୍ବରୁ ଡ୍ୟୁକ୍ ବ୍ରାବାନ୍‌ଶିଓଙ୍କୁ କହନ୍ତି - ପୁରୁଷର ଗୁଣ ହିଁ ହେଉଛି ତା'ର ରୂପ । ସେ ଦିଗରୁ କଳା ହେଲେ ମଧ ଆପଣଙ୍କ ଜାମାତା ରୂପବାନ୍ । ବ୍ରାବାନ୍‌ଶିଓ ଖୁସି ନୁହନ୍ତି । ଅଥେଲୋଙ୍କୁ ସତର୍କ କରି କହନ୍ତି- ମୁର୍ ଯଦି ଆଖି ଥାଏ ତେବେ ଡେସ୍‌ଡିମୋନା ପ୍ରତି ଦୃଷ୍ଟି ଦେଉଥିବ । ସେ ତା'ର ବାବାଙ୍କୁ ଠକାଇଛି । ତମକୁ ମଧ ଠକାଇପାରେ ।

ଅଥେଲୋ କହନ୍ତି-ତା'ର ବିଶ୍ୱାସର ପ୍ରଶ୍ନ ଉପରେ ମୁଁ ମୋର ଜୀବନକୁ ମଧ ବାଜି ଲଗାଇ ଦେଇପାରେ । ତା'ପରେ ଇଆଗୋକୁ କହନ୍ତି -ଇଆଗୋ, ତମେ ଡେସ୍‌ଡିମୋନାକୁ ସାଇପ୍ରସ୍‌ରେ ମୋ ପାଖରେ ପହଞ୍ଚାଇଦେବ ।

ସମସ୍ତେ ବିଦାୟ ନେବା ପରେ ରଡ଼ରିଗୋ ଇଆଗୋଙ୍କୁ ପଚାରନ୍ତି -ବର୍ତ୍ତମାନ ମୋର କର୍ତ୍ତବ୍ୟ କ'ଣ ? ରଡ଼ରିଗୋଙ୍କର ହାହୁତାଶ ଚାଲିଥାଏ । ସେ ନିଜର ମୃତ୍ୟୁ କାମନା ମଧ

କରିବସନ୍ତି । ଇୟାଗୋ ତାଙ୍କୁ ବୁଝାଇ କହନ୍ତି-ଆମ ଦେହଟା ହେଉଛି ବଗିଚା ଭଳି ଆଉ ଇଚ୍ଛା ଶକ୍ତିଟା ହେଲା ତହିଁର ମାଳୀ । ଆବେଗକୁ ସଂଯତ କରନ୍ତୁ । ଇଚ୍ଛାଶକ୍ତି ଆଉ ଯୁକ୍ତି-ଏ ଦୁଇଟି ହେଉଛି ଆମର ସକଳ କାର୍ଯ୍ୟର ନିୟାମକ । ମନେରଖନ୍ତୁ, ମୁର୍‌ପ୍ରତି ଡେସ୍‌ଡିମୋନାର ଏଇ ପ୍ରେମ କଦାପି ବେଶି ଦିନ ରହିବ ନାହିଁ । ମୁର୍‌ମାନେ ମଧ ଅସ୍ଥିର ଚିତ୍ତ । ସୁତରାଂ ଧୈର୍ଯ୍ୟ ଧରନ୍ତୁ । ତେବେ ପ୍ରୟୋଜନ ହେଲେ କିଛି ଅର୍ଥ ଖର୍ଚ୍ଚ କରିବାକୁ ପଡ଼ିବ ।

ଠିକ୍ ହୁଏ, ସକାଳେ ସେମାନେ ପୁଣି ପରସ୍ପର ଦେଖାକରିବେ । ରଡ଼ରିଗୋକୁ ବିଦାୟ ଦେଇ ଇୟାଗୋ ନିଜ ଚିନ୍ତାରେ ବୁଡ଼ିଯାଆନ୍ତି । ଅଥେଲୋ ତାଙ୍କୁ ବିଶ୍ୱାସ କରନ୍ତି । ଯଦି କୌଣସିମତେ କାସିଓ ସହିତ ଡେସ୍‌ଡିମୋନାର ଘନିଷ୍ଠତା ଥିବା କଥାଟା ମୁର୍‌ମୁଣ୍ଡରେ ଢୁକାଇ ଦିଆଯାଏ, ତେବେ ତ କାମ ଫତେ ହୋଇଯିବ ।

ଅଥେଲୋ ଖୋଲାମେଲା ସ୍ୱଭାବର ଲୋକ । ଇୟାଗୋର ଭାଷାରେ 'ଗୋଟାଏ ଗଧ' ।

॥ ୨ ॥

ସାଇପ୍ରସ୍ ବନ୍ଦରରେ ଗଭର୍ଣ୍ଣର ମନ୍‌ଟାନୋ ସହ ଅନେକେ ଅପେକ୍ଷା କରିଛନ୍ତି ଭେନିସ୍‌ର ରଣତରୀକୁ, ବିଶେଷକରି ଅଥେଲୋଙ୍କୁ । ଏକ ପ୍ରଚଣ୍ଡ ଝଡ଼ ତୁର୍କୀର ଜାହାଜ ସବୁକୁ ଧ୍ୱଂସ କରିଛି । ତେବେ ତା' ସହିତ ଭେନିସ୍‌ର ରଣତରୀଗୁଡ଼ିକ ମଧ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିଛନ୍ତି । କାସିଓଙ୍କର ନିରାପଦରେ ପହଞ୍ଚିଥିବାର ସମ୍ବାଦ ମିଳିଛି । ଅଥେଲୋଙ୍କ ପାଇଁ ସମସ୍ତଙ୍କ ମନରେ ଉଦ୍‌ବେଗ ରହିଛି । କାସିଓଙ୍କଠାରୁ ଖବର ମିଳେ ଅଥେଲୋଙ୍କ ଜାହାଜଟି ଦୃଢ଼, ନାବିକମାନେ ମଧ ସୁଦକ୍ଷ, ସୁତରାଂ ଚିନ୍ତା କରିବାର କିଛି କାରଣ ନାହିଁ । ଇୟାଗୋଙ୍କର ଜାହାଜ ମଧ ନିରାପଦରେ ପହଞ୍ଚିଯାଏ । ତାଙ୍କ ସାଙ୍ଗରେ ଅଛନ୍ତି ଡେସ୍‌ଡିମୋନା, ଇୟାଗୋଙ୍କ ସ୍ତ୍ରୀ ଏମିଲିୟା,ରଡ଼ରିଗୋ ଇତ୍ୟାଦି । ଡେସ୍‌ଡିମୋନା ପହଞ୍ଚିବାମାତ୍ରେ ସ୍ୱାମୀଙ୍କ କଥା ପଚାରନ୍ତି । କାସିଓ ଜଣାନ୍ତି ଯେ ସେ ଅଳ୍ପ ସମୟ ମଧରେ ପହଞ୍ଚିବାର ସମ୍ଭାବନା । ଡେସ୍‌ଡିମୋନା ଚିନ୍ତିତ ହୁଅନ୍ତି । ଦୂରରୁ ଗୋଟାଏ ଜାହାଜର ପାଲ ଦେଖାଯାଏ । ସମସ୍ତେ ଆଶା କରନ୍ତି, ସେଇଟି ନିଶ୍ଚୟ ଅଥେଲୋଙ୍କ ଜାହାଜ ହୋଇଥିବ । ଡେସ୍‌ଡିମୋନାଙ୍କୁ ପ୍ରଫୁଲ୍ଲ ରଖିବା ପାଇଁ ଇୟାଗୋ ରସିକତା କରନ୍ତି, ତାଙ୍କ ନାମରେ କବିତା ରଚନା କରି ଶୁଣାନ୍ତି । ଡେସ୍‌ଡିମୋନା ଏସବୁ ଉପଭୋଗ କରୁଥାଆନ୍ତି । କାସିଓ ମଧ ଏଇ କୌତୁକରେ ଯୋଗ ଦିଅନ୍ତି । ଏସବୁ ଭିତରେ ଇୟାଗୋ ଡେସ୍‌ଡିମୋନାଙ୍କ ପ୍ରତି କାସିଓଙ୍କର ଆଚରଣ ଆଡ଼େ ତୀକ୍ଷ୍ଣ ଦୃଷ୍ଟି ରଖିଥାଆନ୍ତି । ତାଙ୍କ ମନରେ କୌଣସି ଚିନ୍ତା ଖେଳୁଥାଏ ।

ଶେଷରେ ଅଥେଲୋ ଆସି ପହଞ୍ଚନ୍ତି । ଡେସ୍‌ଡିମୋନାଙ୍କୁ ଦେଖି କହନ୍ତି, ତମକୁ ଦେଖି ଖୁବ୍ ଭଲ ଲାଗୁଛି । ପ୍ରତ୍ୟେକ ଝଡ଼ ପରେ ଯଦି ଏମିତି ଆନନ୍ଦ ମିଳେ, ତେବେ ଅନନ୍ତ କାଳପର୍ଯ୍ୟନ୍ତ ଝଡ଼ ଚାଲିଲେ ବି ଚିନ୍ତା ନାହିଁ । ଏବେ ଯଦି ମୋର ମୃତ୍ୟୁ ହୋଇଯାଏ, ତେବେବି ମୋର କୌଣସି ଦୁଃଖ ନାହିଁ, ସେ ମୃତ୍ୟୁ ହେବ ସୁଖର ମୃତ୍ୟୁ । ମୋର ଆଶଙ୍କା, ଏଭଳି ସୁଖ ବୋଧହୁଏ ମୋ ଜୀବନରେ ଆଉ କେବେବି ଆସିବ ନାହିଁ ।

ଡେସ୍‌ଡିମୋନା କହନ୍ତି - ଈଶ୍ୱର ତା' ନ କରନ୍ତୁ । ସୁଖରେ ଆମର ଜୀବନ ଭରିଯାଉ ।

ଇୟାଗୋ ଚିନ୍ତା କରୁଥାଆନ୍ତି - ଆଜି ତମର ଜୀବନ ଗୋଟିଏ ଛନ୍ଦରେ ବାଜୁଛି । ତେବେ ଏଇ ସୁରକୁ ମୁଁ ବେସୁରା କରି ଛାଡ଼ିବି । ଦୁର୍ଗରେ ପ୍ରବେଶ କରିବା ପୂର୍ବରୁ ଉପସ୍ଥିତ ଜନତାଙ୍କୁ ସମ୍ବୋଧନ କରି ଅଥେଲୋ ଜଣାଇ ଦିଅନ୍ତି, ଯୁଦ୍ଧରେ ସେମାନଙ୍କର ଜୟ ହୋଇଛି । ତୁର୍କୀ ଜାହାଜ ସବୁ ବିନଷ୍ଟ । ଉଦ୍‌ବେଗର କୌଣସି କାରଣ ନାହିଁ ।

ଇୟାଗୋ ରଡ଼ରିଗୋକୁ କହନ୍ତି, ଆପଣଙ୍କୁ ଗୋଟାଏ ଖବର ଦେଉଛି । ଡେସ୍‌ଡିମୋନା ଏହା ଭିତରେ କାସିଓ ଆଡ଼କୁ ଢଳିଛି । ତାଙ୍କ କଥାରେ ରଡ଼ରିଗୋ ସନ୍ଦେହ ପ୍ରକାଶ କରିବାରୁ ଇୟାଗୋ ବୁଝାଇ ଦିଅନ୍ତି ଯେ, ଗୋଟିଏ ସମୟରେ ଡେସ୍‌ଡିମୋନା ଯେଉଁ ଆବେଗ ନେଇ ଅଥେଲୋ ଆଡ଼କୁ ଢଳିଥିଲା, ଏବେ ସେଇ ଆବେଗ ତା'ର କାସିଓ ପାଇଁ ପ୍ରକାଶ ପାଉଥିବାର ସେ ଲକ୍ଷ୍ୟ କରିଛନ୍ତି । ସେଇ ମୁର୍ ଦିନେ ଲମ୍ବା ଲମ୍ବା କଥା ଆଉ ଅଦ୍ଭୁତ ସବୁ ପରୀକାହାଣୀ ଶୁଣାଇ ଡେସ୍‌ଡିମୋନା ମନକୁ ବହଲାଇ ଦେଇଥିଲା । ତେବେ ବର୍ତ୍ତମାନ ଆଉ ସେଇ ବୁଢ଼ାଟିକୁ ଡେସ୍‌ଡିମୋନାର ଭଲ ଲାଗୁ ନାହିଁ । ଏବେ ସେ ତାକୁ ଘୃଣା କରୁଛି । ଏଇଭଳି ରଡ଼ରିଗୋର ମନକୁ ବିଷାକ୍ତ କରିଦେବା ପରେ ଇୟାଗୋ ତାଙ୍କୁ ନିଜର ଷଡ଼୍‌ଯନ୍ତ୍ରର କଥା କହନ୍ତି । ରଡ଼ରିଗୋ ଯେକୌଣସିମତେ କାସିଓକୁ ରଗାଇ ତାକୁ ବେକାବୁ କରିଦିଅନ୍ତୁ । ଯଦି ସେ ତାକୁ ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ କରିପାରନ୍ତି ତେବେ ସାଇପ୍ରସ୍‌ର ଲୋକଙ୍କୁ ବୁଝାଇ ଦେଇହେବ ଯେ, ସେମାନଙ୍କର ନେତା ଉଚ୍ଛୃଙ୍ଖଳ । କାସିଓ ପ୍ରତି ଡେସ୍‌ଡିମୋନା ଆକର୍ଷଣ ହରାଇବ ଆଉ ସେଇ ସୁଯୋଗରେ ରଡ଼ରିଗୋ ତା'ର ନିକଟବର୍ତ୍ତୀ ହୋଇପାରିବେ ।

ନିର୍ଜନରେ ଇୟାଗୋ ନିଜକୁ ବୁଝାନ୍ତି -କାସିଓ ପ୍ରତି ଡେସ୍‌ଡିମୋନାର ନିଶ୍ଚୟ ଦୁର୍ବଳତା ଅଛି । ସ୍ୱାମୀ ହିସାବରେ ଅଥେଲୋ ଅବଶ୍ୟ ଆଦର୍ଶ ସ୍ଥାନୀୟ । ତେବେ ଗୋଟାଏ ସମୟରେ ତାଙ୍କ ସ୍ତ୍ରୀ ଏମିଲିଆ ସହିତ ମଧ ଅଥେଲୋର ସମ୍ପର୍କ ଥିଲା । ସେଇଥିପାଇଁ ସେ ଅଥେଲୋକୁ ନିଶ୍ଚୟ ହତ୍ୟା କରିବେ । ରଡ଼ରିଗୋ ପାଇଁ ତାଙ୍କର କୌଣସି ଚିନ୍ତା ନାହିଁ । ତେବେ ସେ ତାକୁ ନିଜ ଚକ୍ରାନ୍ତର ସଫଳତା ପାଇଁ ଜଣେ କର୍ମୀ ଭାବରେ ବ୍ୟବହାର କରିବେ । ବର୍ତ୍ତମାନ ତାଙ୍କର

ଯୋଜନା ପ୍ରାୟ ପୂର୍ଣ୍ଣ ରୂପ ପାଇସାରିଛି । ଏହାର ପ୍ରଥମ କାର୍ଯ୍ୟ ହେଉଛି, ମାନସିକତା ଦୃଷ୍ଟିରୁ ଅଥେଲୋକୁ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ କରି ତା'ର ପାଗଳ ହେବା ନିମନ୍ତେ ପଥ ପ୍ରସ୍ତୁତ କରିରଖିବା ।

ଦୁର୍ଗରେ ବିଜୟ-ଉତ୍ସବ ପାଳିତ ହୁଏ । ଅଥେଲୋଙ୍କ ବିବାହ ମଧ୍ୟ ଏହାର ଅନ୍ୟତମ କାରଣ । ସନ୍ଧ୍ୟା ପାଞ୍ଚଟାଠାରୁ ରାତି ଏଗାରଟା ଭିତରେ, ଯିଏ ଯାହାର ରୁଚି ମୁତାବକ ନାଚଗୀତ କରିପାରନ୍ତି । ତା'ପରେ ହେବ ଭୋଜି । ଆନନ୍ଦ ଉତ୍ସବ ଶେଷ ହୋଇଯିବା ପରେ ଅଥେଲୋ ଏବଂ ଡେସ୍‌ଡିମୋନା ବିଶ୍ରାମ ନେବାକୁ ଯାଆନ୍ତି । ଦୁର୍ଗ-ପହରା ଦେବାର ଦାୟିତ୍ୱ ଦିଆଯାଏ କାସିଓଙ୍କୁ । କାସିଓ ଏଥିପାଇଁ ଇୟାଗୋଙ୍କୁ ମଧ୍ୟ ଆହ୍ୱାନ କରନ୍ତି । ଇୟାଗୋ ଆପତ୍ତି ଜଣାଇ କହନ୍ତି, ଏବେ ମୋଟେ ଦଶଟା ବାଜିଛି, ଆଉ ଅଥେଲୋ ନିଜର ନିରାପତ୍ତା ପାଇଁ ଆମକୁ ଦୁର୍ଗ ରକ୍ଷାର ଭାର ଦେଇଛନ୍ତି । ଡେସ୍‌ଡିମୋନାଙ୍କ ପ୍ରସଙ୍ଗ ବି ଉଠେ । ଦୁହେଁ ତାଙ୍କର ରୂପଗୁଣକୁ ନେଇ କିଛି ସମୟ ଆଲୋଚନା କରନ୍ତି । ତାଙ୍କର ମଙ୍ଗଳ କାମନା କରି ପିଆଲାଏ ମଦ ପିଇବା ପାଇଁ ଇୟାଗୋ ପ୍ରସ୍ତାବ ଦିଅନ୍ତି । କାସିଓ ରାଜି ନ ହୋଇ ଜଣାନ୍ତି ଯେ ମଦ ତାଙ୍କର ଆଦୌ ସହ୍ୟ ହୁଏ ନାହିଁ । ଆନନ୍ଦ ପାଇଁ ଅନ୍ୟ କୌଣସି ପଦକ୍ଷେପ ନିଆଯାଇପାରେ । ତେବେ ଇୟାଗୋଙ୍କର ବାଧ୍ୟବାଧକତାରେ ଶେଷରେ ଅଳ୍ପଟିକିଏ ପିଇବା ପାଇଁ କାସିଓ ରାଜି ହୋଇଯାଆନ୍ତି । ଇୟାଗୋ ଜାଣନ୍ତି, ଭୋଜିରେ କାସିଓ ପିଆଲାଏ ମଦ ପିଇଛନ୍ତି । ଆଉ ପିଆଲାଏ ପେଟକୁ ଗଲେ ସେ କଳହ ପାଇଁ ବାହାରି ଆସିବେ । ତା'ପରେ ରଡ଼ରିଗୋ ସହିତ ତାଙ୍କର ଦ୍ୱନ୍ଦ୍ୱ ସୃଷ୍ଟି କରିବାକୁ ମୁହୂର୍ତ୍ତେ ବିଳମ୍ବ ହେବ ନାହିଁ ।

ଗଭର୍ଣ୍ଣର ମଣ୍ଟାନୋ ସାଙ୍ଗରେ ଆଉ କିଛି ଲୋକ ନେଇ ସେଠାକୁ ଆସନ୍ତି । ମଦର ବନ୍ୟା ବହିଯାଏ । ନିଶା ଯେତେବେଳେ ଚରମରେ ସେତେବେଳେ ସେଠାକୁ ଆସନ୍ତି ରଡ଼ରିଗୋ, ଆଉ ଇୟାଗୋଙ୍କର ଇଙ୍ଗିତରେ ସାମାନ୍ୟ କାରଣ ନେଇ କାସିଓଙ୍କୁ ରଗାଇ ଦିଅନ୍ତି । କାସିଓ ରଡ଼ରିଗୋଙ୍କୁ ଆକ୍ରମଣ କରିବାକୁ ଧାଉଁଥିଲା ବେଳେ ମଣ୍ଟାନୋ ସେଥିରେ ବାଧା ଦେବାରୁ ଦୁହିଁଙ୍କ ମଧ୍ୟରେ ମାଡ଼ ପିଟାପିଟି ଆରମ୍ଭ ହୋଇଯାଏ । ମାଡ଼ପିଟ୍ ଅପେକ୍ଷା ଇୟାଗୋଙ୍କ ଇଙ୍ଗିତରେ ରଡ଼ରିଗୋଙ୍କ ପାଟିତୁଣ୍ଡଟା ଅଧିକ ଶୁଣାଯାଏ । ବିପଦସୂଚକ ଘଣ୍ଟି ବଜାଇ ଦିଆଯାଏ ।

ଘଣ୍ଟା ଧ୍ୱନି ଶୁଣି ଅଥେଲୋ ଏବଂ ଅନ୍ୟମାନେ ଦୌଡ଼ିଆସନ୍ତି । ନିରୀହତାର ଛଳନା କରି ଇୟାଗୋ କହନ୍ତି, ସେ ଏସବୁର କିଛି ଧାର୍ ଧାରନ୍ତି ନାହିଁ । ଏଠିତ ସମସ୍ତେ ବନ୍ଧୁ । ଅବଶ୍ୟ ସ୍ୱାମୀ ସ୍ତ୍ରୀଙ୍କ କଳହ ଭଳି ଏସବୁ ଜାଗାରେ କମ୍‌ବେଶୀ କଳହ ହୋଇଥାଏ । କିନ୍ତୁ ଏଠି ଏମିତି କ'ଣ ହୋଇଛି ଯେ, ସମସ୍ତେ ଏକାବେଳେ ତରବାରି ଖୋଲି ଡେଇଁ ପଡୁଛନ୍ତି ! ଏହାର କାରଣ ସେ ଜାଣନ୍ତି ନାହିଁ । ମଣ୍ଟାନୋ କହନ୍ତି - ଅଥେଲୋ, ମୁଁ ଆହତ । ମୋର ଏକମାତ୍ର ଦୋଷ ଯେ, ମୁଁ ନିଜକୁ ରକ୍ଷା କରିବା ପାଇଁ ଚେଷ୍ଟା କରିଥିଲି !

ଅଥେଲୋ ପ୍ରଥମେ ଏଇ ଦୁର୍ଘଟଣାର କାରଣ ଜାଣିବାକୁ ଚାହାନ୍ତି । ଅପରାଧୀ ଯେ କେହି ହେଉନା କାହିଁକି, ସେ ଯେ ତାଙ୍କର ଅନୁଗ୍ରହରୁ ବଞ୍ଚିତ ହେବ, ଏକଥା ଜଣାଇଦିଅନ୍ତି । ସହରରେ ଯେତେବେଳେ ଯୁଦ୍ଧକାଳୀନ ପରିବେଶ, ଜନତା ଯେତେବେଳେ ଭୟତ୍ରସ୍ତ, ସେତେବେଳେ ବ୍ୟକ୍ତିଗତ କାରଣକୁ ନେଇ ଏଇ ଅଶାନ୍ତି ! ଇୟାଗୋକୁ ଲକ୍ଷ୍ୟ କରି ସେ ପ୍ରଶ୍ନ କରନ୍ତି - ତମେ କହ, ଏ ଝଗଡ଼ା କିଏ ଆରମ୍ଭ କଲା ?

ଇୟାଗୋ କହନ୍ତି, କାସିଓଙ୍କର କୌଣସି କ୍ଷତି ହେଉ, ଏହା ମୁଁ ଚାହେଁନା, ତଥାପି କେବଳ ସତ୍ୟର ପ୍ରତିଷ୍ଠା ପାଇଁ ଯାହା ଦେଖିଛି କହିବି । ମଣ୍ଟାନୋ, ମୁଁ ଆଉ ସେନାଧକ୍ଷ ପରସ୍ପର ମଧ୍ୟରେ ଆଳାପ କରୁଥିବା ସମୟରେ ହଠାତ୍ 'ରକ୍ଷାକର, ରକ୍ଷାକର' ଚିତ୍କାର କରି ଜଣେ ଧାଇଁଆସେ । କାସିଓ ମଧ୍ୟ ତରବାରି ହାତରେ ତା'ଆଡ଼କୁ ଛୁଟିଯାଆନ୍ତି । ସେଇ ଲୋକ ତାଙ୍କୁ ରୋକିବାକୁ ଚେଷ୍ଟା କରେ । ମୁଁ ବି ବାଧା ଦିଏ । କିନ୍ତୁ ଫଳ କିଛି ହୁଏ ନାହିଁ । ତା'ପରେ ଦେଖେ, କାସିଓଙ୍କ ସହିତ ମଣ୍ଟାନୋଙ୍କର ଯୁଦ୍ଧ ଚାଲିଛି । ଏତିକିବେଳେ ଆପଣ ଆସନ୍ତି । ଆଉ ଅଧିକ କିଛି ମୁଁ ଜାଣି ନାହିଁ । ସେଇ ଲୋକ ନିଶ୍ଚୟ ଏମିତି କିଛି କରିଥିବ, ଯାହାଫଳରେ କାସିଓ ନିଜକୁ ରୋକିପାରି ନାହାନ୍ତି...

ଅଥେଲୋ ଗମ୍ଭୀର ହୋଇ କହନ୍ତି - ମୁଁ ଜାଣେ ତମେ କାସିଓକୁ ଭଲପାଅ । ସେଥିପାଇଁ ଘଟଣାଟାକୁ ଲଘୁରୂପ ଦେବା ପାଇଁ ଚେଷ୍ଟା କରୁଛ । କାସିଓ, ତମକୁ ମୁଁ ମଧ୍ୟ ଭଲପାଏ । ତେବେ ତମେ ଆଉ ମୋର କର୍ମଚାରୀ ହୋଇ ରହିପାରିବ ନାହିଁ । ଭଲ ବ୍ୟବହାର ଦ୍ୱାରା କାମ ନ ହେଲେ ଅନ୍ୟ ଅସ୍ତ୍ର ପ୍ରୟୋଗ କରିବାକୁ ହୁଏ ।

ଡେସ୍‌ଡିମୋନା ଆସି ଘଟଣା ସମ୍ପର୍କରେ ଜାଣିବାକୁ ଚାହାନ୍ତି । ସବୁ ଠିକ୍ ଥିବାର କହି ଅଥେଲୋ ତାଙ୍କୁ ଶୋଇବା ପାଇଁ ପଠାଇ ଦିଅନ୍ତି । ଇୟାଗୋକୁ ସହର ପ୍ରତି ଦୃଷ୍ଟି ରଖିବା ନିମନ୍ତେ ନିର୍ଦ୍ଦେଶ ଦିଅନ୍ତି । ସୈନିକର ଜୀବନ ଯେ ଏଇଭଳି; ସେଠାରେ ଆହାର ନିଦ୍ରା ଯେ ଅନିୟମିତ- ଡେସ୍‌ଡିମୋନାକୁ ଏହା ବୁଝାଉ ବୁଝାଉ ଅଥେଲୋ ଚାଲିଯାଆନ୍ତି ।

ଷଡ଼ଯନ୍ତ୍ରର ପ୍ରଥମ ବଳି ଆଡ଼କୁ ଅନାଇ ଇୟାଗୋଙ୍କର ମନ ପ୍ରଫୁଲ୍ଲ ହୋଇଯାଏ । କୃତ୍ରିମ ସମବେଦନା ଜଣାଇ ସେ କହନ୍ତି- ଖୁବ୍ ଆଘାତ ପାଇଛ, ନା ? କାସିଓ କହନ୍ତି- ଏ ଆଘାତ ଆରୋଗ୍ୟ ହେବାର ନୁହେଁ । ମୋର ଏତେ ବର୍ଷର ସୁନାମ ଆଜି ନଷ୍ଟ ହୋଇଛି । ଇୟାଗୋ ବୁଝାନ୍ତି- ସୁନାମ ହେଉଛି ଭାଷାର ଆଡ଼ମ୍ବର ମଧ୍ୟରେ ପ୍ରକାଶିତ ନିରୋଳା ମିଥ୍ୟା । ଗୁଣ ନ ଥାଇ ମଧ୍ୟ ଅନେକେ ସୁନାମ ପାଆନ୍ତି । ବିନା କାରଣରେ ତାକୁ ହରାଇ ବସନ୍ତି ମଧ୍ୟ । ନିଜେ ଚିନ୍ତା ନ କରିବା ପର୍ଯ୍ୟନ୍ତ କିଛି ହଜେ ନାହିଁ । କାସିଓଙ୍କର ଦୁଃଖ ବଢ଼ିଯାଏ । ଇୟାଗୋ ପୁଣି କହନ୍ତି- ସେନାପତିଙ୍କ ପାଖରୁ ସମ୍ମାନ ଫେରିପାଇବାର ଅନେକ ଉପାୟ ଅଛି । ସେ ତ

ତୁମକୁ ରାଗିଯାଇ ଶାସ୍ତି ଦେଇ ନାହାନ୍ତି । ଏ ଶାସ୍ତି ହେଉଛି ସମ୍ପୂର୍ଣ୍ଣ ନୀତିଗତ । ତାଙ୍କୁ ସନ୍ତୁଷ୍ଟ କରିପାରିଲେ ସବୁ ଠିକ୍ ହୋଇଯିବ ।

ଏଥିପାଇଁ କାସିଓ ନିଜକୁ ଦୋଷ ଦିଅନ୍ତି । ସେନାପତି ଜଣେ ଏତେ ଭଲ ମଣିଷ ହୋଇଥିଲେ ମଧ ସେ ତାଙ୍କରି ପାଖରେ ଛୋଟ ହୋଇଗଲେ, ପୁଣି ମାତଲାମି କରି ! ନିଶାରେ ଭୋଳ ହୋଇ ସେ କାହାର ଜୀବନ ନେବାକୁ ବାହାରିଥିଲେ, ତାହା ସୁଦ୍ଧା ତାଙ୍କର ମନେ ନାହିଁ ।

ଇୟାଗୋ କହନ୍ତି- ଯାହା ହେବାର ହୋଇସାରିଛି । ଏବେ ତ ତମେ ସମ୍ପୂର୍ଣ୍ଣ ସୁସ୍ଥ, ଭାବିଦେଖ, ନଷ୍ଟ ସୁନାମକୁ କିଭଳି ଉଦ୍ଧାର କରିବ । ମୋର ପରାମର୍ଶ ଶୁଣ, ଆମ ସେନାପତି ତାଙ୍କର ସ୍ତ୍ରୀଙ୍କ ଅଧୀନ । ତମେ ତାଙ୍କୁ ଯାଇ ଧର । ଡେସ୍‌ଡିମୋନା ଯଦି ତମ ପାଇଁ ପଦେ କଥା କହିଦିଅନ୍ତି ତେବେ ନିଶ୍ଚୟ ତମେ ତମର ପୂର୍ବ ପଦ ଫେରିପାଇବ । କାସିଓ ତାଙ୍କ କଥାରେ ସମ୍ମତ ହୋଇ କାଲି ସକାଳେ ତାଙ୍କୁ ଦେଖାକରି ସବୁ କଥା ଜଣାଇବେ ବୋଲି କହନ୍ତି । ଯେ କୌଣସି ଉପାୟରେ ତାଙ୍କୁ ତାଙ୍କର ପଦ ଫେରିପାଇବାକୁ ହେବ ।

କାସିଓ ଚାଲିଯିବା ପରେ ଇୟାଗୋ ନିଜକୁ କହନ୍ତି -ଏଇଥର ମୋର ପ୍ରକୃତ ଖେଳ ଆରମ୍ଭ ହେବ । ରଡ଼ରିଗୋ ପ୍ରାୟ କାନ୍ଦ କାନ୍ଦ ଅବସ୍ଥାରେ ଫେରିଆସି କହନ୍ତି ଯେ, ତାଙ୍କପାଇଁ ଆଉ କିଛି ଆଶା ଦେଖାଯାଉ ନାହିଁ । ବୋଧହୁଏ ସବୁ କିଛି ହରାଇ ତାଙ୍କୁ ଭେନିସ୍ ଫେରିଯିବାକୁ ପଡ଼ିବ ।

ଇୟାଗୋ ତାଙ୍କୁ ସାନ୍ତ୍ୱନା ଦେଇ କହନ୍ତି, ସଫଳତାର ପ୍ରଥମ ପାହାଚ ହେଲା ଧୈର୍ଯ୍ୟ । ଥରକରେ କୌଣସି କାର୍ଯ୍ୟ ହୋଇଯାଏ ନାହିଁ । କାସିଓ ହାତରେ କେତେଟା ମାଡ଼ ଆପଣଙ୍କର ସାମାନ୍ୟ ଶାରୀରିକ କ୍ଷତି କରିଛି ସିନା, ତା'ର ଜାହାଜ ଯେ ମଝି ସମୁଦ୍ରରେ ବୁଡ଼ିବାକୁ ବସିଛି ! ଶୀଘ୍ର ଏହାର ଫଳ ମିଳିବ । ଅପେକ୍ଷା କରନ୍ତୁ । ରଡ଼ରିଗୋ ଚାଲିଯାଆନ୍ତି । ଇୟାଗୋ ନିଜକୁ କହନ୍ତି ଦୁଇଟା କାମ କରିବାକୁ ହେବ । ଏମିଲିୟା ଦ୍ୱାରା କାସିଓ ପାଇଁ ଡେସ୍‌ଡିମୋନା ପାଖରେ ଓକିଲାତି କରି ସେନାପତିଙ୍କୁ ତାଙ୍କୁ କ୍ଷମା ଦେବାପାଇଁ କହିବାକୁ ପଡ଼ିବ । ପୁଣି କାସିଓ ଡେସ୍‌ଡିମୋନାକୁ ନିଜପାଇଁ ଅନୁରୋଧ କରୁଥିବା ବେଳେ ସେନାପତିଙ୍କର ସେଠାରେ ଉପସ୍ଥିତିର ବ୍ୟବସ୍ଥା କରିବାକୁ ପଡ଼ିବ । ଲୁହା ଗରମ ଥାଉଁ ଥାଉଁ ତା' ଉପରେ ପାହାର ବସାଇବାକୁ ହେବ ।

॥ ୩ ॥

କାସିଓ ବିନିଦ୍ର ରଜନୀ କଟାଇଦିଅନ୍ତି । ଇୟାଗୋଙ୍କ ସହିତ ଦେଖାହେବା ମାତ୍ରେ ତାଙ୍କୁ କହନ୍ତି, ଭାଇ ! ପ୍ରଥମେ ମୋତେ ତୁମ ସ୍ତ୍ରୀଙ୍କ ସହିତ ଦେଖା କରିବାକୁ ପଡ଼ିବ । ତାଙ୍କ

ସାହାଯ୍ୟରେ ମୁଁ ଡେସ୍‌ଡିମୋନାଙ୍କ ସହିତ ଦେଖା କରିବି । ଇୟାଗୋ ଜଣାନ୍ତି ସେଥିରେ କିଛି ଅସୁବିଧା ନାହିଁ । ଡେସ୍‌ଡିମୋନା ସହିତ ତମେ କଥାବାର୍ତ୍ତା ହେଉଥିବା ବେଳେ ମୁଁ କୌଶଳ କରି ଅଥେଲୋଙ୍କୁ ସେଠୁ ଦୂରେଇ ନେଇଯିବି । ମନଖୋଲି କଥା କହିବାର ସୁଯୋଗ ତମକୁ ମିଳିବ । କାସିଓ ଏଥିପାଇଁ ତାଙ୍କୁ ପ୍ରଶଂସା କରନ୍ତି ।

ଏମିଲିଆ ଆସି କାସିଓଙ୍କୁ ସାନ୍ତ୍ୱନା ଦେଇ କହନ୍ତି ଯେ, ଅଥେଲୋ ଆଉ ଡେସ୍‌ଡିମୋନା ତାଙ୍କ ସମ୍ପର୍କରେ କଥା ହେଉଥିବାର ଶୁଣିଛନ୍ତି । ଡେସ୍‌ଡିମୋନା ତ ଆପଣଙ୍କର ହୋଇ ବେଶ୍ ଲଢୁଥିଲେ । ତେବେ ଅଥେଲୋ କହିଲେ ଯେ, ଆପଣ ସାଇପ୍ରସ୍‌ର ସ୍ୱନାମଧନ୍ୟ ଗଭର୍ଣ୍ଣରଙ୍କୁ ଆଘାତ କରି ମହା ଅପରାଧ କରିଛନ୍ତି । କିନ୍ତୁ ସେ ଆପଣଙ୍କୁ ଶ୍ରଦ୍ଧା କରନ୍ତି । ସୁବିଧା ସୁଯୋଗ ଦେଖି ଆପଣଙ୍କୁ ଆପଣଙ୍କର ପୂର୍ବ ପଦ ଫେରାଇଦେବେ ।

ଡେସ୍‌ଡିମୋନା ସହିତ ତାଙ୍କର ଦେଖା କରାଇଦେବା ନିମନ୍ତେ କାସିଓ ତାଙ୍କୁ ଅନୁରୋଧ କରନ୍ତି । ଏମିଲିଆ ତାଙ୍କୁ ଭରସା ଦେଇ ତାଙ୍କ ସାଙ୍ଗରେ ନେଇଯାଆନ୍ତି । ଦୁର୍ଗର ଉଦ୍ୟାନରେ କାସିଓଙ୍କ ସହିତ ଡେସ୍‌ଡିମୋନାଙ୍କର ସାକ୍ଷାତ୍ ହୁଏ । ଡେସ୍‌ଡିମୋନା ତାଙ୍କୁ ଆଶ୍ୱସ୍ତ କରି କହନ୍ତି- ଚିନ୍ତା କରନ୍ତୁ ନାହିଁ । ମୋର ସ୍ୱାମୀ ଏବଂ ଆପଣଙ୍କ ମଧ୍ୟରେ ବନ୍ଧୁତ୍ୱ ଯେମିତି ପୁନଃ ପ୍ରତିଷ୍ଠିତ ହୁଏ, ସେଥିପାଇଁ ମୋ ଦ୍ୱାରା ଯାହା ହେବ, ମୁଁ ତାହା ନିଶ୍ଚୟ କରିବି ।

କୃତଜ୍ଞ କାସିଓ କହନ୍ତି- ଆପଣ ମହାନ୍ । କାସିଓ ଚିରକାଳ ଆପଣଙ୍କର ଆଜ୍ଞାବହ ହୋଇରହିବ ।

ଡେସ୍‌ଡିମୋନା ତାଙ୍କୁ ଧନ୍ୟବାଦ ଜଣାଇ କହନ୍ତି- ମୁଁ ଜାଣେ, ଆପଣ ମୋର ସ୍ୱାମୀଙ୍କୁ ଶ୍ରଦ୍ଧା କରନ୍ତି । ଆପଣ ଯେମିତି ତାଙ୍କୁ ଭଲ ଭାବରେ ଜାଣନ୍ତି, ସେ ମଧ୍ୟ ସେମିତି ଆପଣଙ୍କୁ ଚିହ୍ନନ୍ତି । ଏ ଦୂରତ୍ୱ ସାମୟିକ ଏବଂ କେବଳ ରାଜନୀତିକ କାରଣରୁ ।

ଅଥେଲୋ ଏବଂ ଇୟାଗୋଙ୍କୁ ସେଇଆଡ଼େ ଆସୁଥିବାର ଦେଖି କାସିଓ ଚାଲିଯିବାକୁ ଚାହାନ୍ତି । ମାତ୍ର ତାଙ୍କୁ ସେଥିରୁ ନିବୃତ୍ତ କରି ଡେସ୍‌ଡିମୋନା କହନ୍ତି- ନା, ଆପଣ ବରଂ ନିଜ କାନରେ ଶୁଣିଯା'ନ୍ତୁ, ମୁଁ ତାଙ୍କୁ ଆପଣଙ୍କ ପାଇଁ କ'ଣ କହୁଛି !

ନିଜ ମନର ଅସ୍ୱସ୍ତିକୁ ଲୁଚାଇବା ପାଇଁ  କାସିଓ ସେଠାରୁ ଦ୍ରୁତ ପ୍ରସ୍ଥାନ କରନ୍ତି । ଡେସ୍‌ଡିମୋନା ତାଙ୍କୁ  ଆଉ ବାଧ କରନ୍ତି ନାହିଁ ।

କାସିଓଙ୍କୁ ଏଭଳି ଚାଲିଯିବାର ଦେଖି ଇୟାଗୋ ଅଥେଲୋଙ୍କୁ କହନ୍ତି- କଥାଟା ତ କିଛି ଭଲ ଜଣାପଡୁ ନାହିଁ । ଇଏ ଏମିତି ଚୋରଙ୍କ ଭଳି ପଳାଇଲେ କାହିଁକି ?

ଅଥେଲୋ ମଧ୍ୟ କାସିଓଙ୍କୁ ଚାଲିଯିବାର ଦେଖିଛନ୍ତି । ସନ୍ଦେହର ପ୍ରଥମ କୀଟ ତାଙ୍କ ମନରେ ପ୍ରବେଶ କରେ । ଡେସ୍‌ଡିମୋନା ଅଥେଲୋଙ୍କ ପାଖରେ ପହଞ୍ଚି ପ୍ରଥମେ ହିଁ କାସିଓଙ୍କ କଥା କହନ୍ତି । ଅନୁରୋଧ କରନ୍ତି - ତମେ ତାଙ୍କୁ ତାଙ୍କର ପୂର୍ବପଦ ଫେରାଇ ଦିଅ । ଯାହା ସେ କରିଛନ୍ତି, ନ ଜାଣି କରିଛନ୍ତି । ସେ ତମକୁ ଶ୍ରଦ୍ଧା ଆଉ ସମ୍ମାନ କରନ୍ତି- ଏବେ ଅନୁତାପ ମଧ୍ୟ କରୁଛନ୍ତି ।

- ଏବେ ସେ ଏଠୁ ଚାଲିଗଲେ ?

- ହଁ, ବିଚରା ଏତେ ଭାଙ୍ଗିପଡ଼ିଛନ୍ତି ଯେ, ତମର ମୁହାଁମୁହିଁ ହେବା ପାଇଁ ତାଙ୍କର ସାହସ ନାହିଁ । ସୁନାଟା ପରା, ତାଙ୍କୁ ତମେ ଫେରାଇନିଅ...

- ଏବେତ କଦାପି ନୁହେଁ, ହୁଏତ ପରେ କୌଣସି ସମୟରେ ।

- କିନ୍ତୁ ଶୀଘ୍ର ...

- ଠିକ୍ ଅଛି ବାବା ... ତମରି ପାଇଁ ଖୁବ୍ ଶୀଘ୍ର ...

ଡେସ୍‌ଡିମୋନା ତଥାପି ଛାଡ଼ନ୍ତି ନାହିଁ । କହନ୍ତି - ଆଜି ରାତିରେ ଖାଇବା ସମୟରେ ହେବ ନାହିଁ ?

- ନା' ସମ୍ଭବ ନୁହେଁ ।

- କାଲି ଦି'ପହରେ ।

- କାଲି ମୁଁ ଘରେ ରହୁ ନାହିଁ । କ୍ୟାପ୍‌ଟେନ୍‌ମାନଙ୍କ ସହିତ ଦେଖା କରିବା କଥା ରହିଛି ।

-ତା' ହେଲେ କାଲି ରାତିରେ, ମଙ୍ଗଳବାର ସକାଳେ ବି ବୁଧବାର- ଡେସ୍‌ଡିମୋନା ଅନୁରୋଧ କରିଚାଲନ୍ତି । ଠିକ୍ ସମୟଟା କହ - ତେବେ ତିନିଦିନରୁ ବେଶି ଡେରି କରିବ ନାହିଁ । ଅନୁତାପ ତ କରୁଛନ୍ତି, ଆଉ କ'ଣ କରିବେ ? କେତେବେଳେ ସେ ତମ ସହିତ ଦେଖାକରିବେ କହ ।

- ଯେତେବେଳେ ତାଙ୍କ ଇଚ୍ଛା ଆସନ୍ତୁ । ତମକୁ ତ ମୋର 'ନା' କରିବାର କିଛି ନାହିଁ । ତେବେ ମୋତେ ବର୍ତ୍ତମାନ ଟିକିଏ ଏକା ରହିବାକୁ ଦିଅ । ଏଠୁ ମୁଁ ସିଧା ତମ ପାଖକୁ ଯିବି । ଅଥେଲୋ କହନ୍ତି । ଡେସ୍‌ଡିମୋନା ଚାଲିଯିବା ପରେ ଅଥେଲୋ ଖୁବ୍ ଅସନ୍ତୁଷ୍ଟ ହୋଇଥିବାର ଜଣାପଡ଼େ । ଡେସ୍‌ଡିମୋନାଙ୍କର ଅହେତୁକ ଜିଦ୍ ତାଙ୍କୁ ଭଲ ଲାଗି ନାହିଁ ।

ସୁଯୋଗ ବୁଝି ଇୟାଗୋ କହନ୍ତି, ଲର୍ଡ଼, ଆପଣ ଓ ଡେସ୍‌ଡିମୋନାଙ୍କର ପ୍ରେମ ପ୍ରସଙ୍ଗ ଯେତେବେଳେ ଚାଲିଥିଲା, ସେତେବେଳେ କ'ଣ କାସିଓ ଜାଣିଥିଲେ ।

- ହଁ ଜାଣିଥିଲେ ତ, ମୂଳରୁ ଚୂଳ ପର୍ଯ୍ୟନ୍ତ । କାହିଁକି କହିଲ ?

- ଏମିତି, ମନ ହେଲା ପଚାରି ଦେଲି ।

- ମନ ହେଲା କାହିଁକି ?

- ମୋର ମନେହୁଏ, ସେ ସମୟରେ ସେ ଡେସ୍‌ଡିମୋନାଙ୍କୁ ଭଲଭାବରେ ଜାଣି ନ ଥିବେ ।

- ନିଶ୍ଚୟ ଜାଣିଥିଲେ । ସେ ତ ଥିଲେ ଆମର ପ୍ରଧାନ ଯୋଗସୂତ୍ର ।

- ସତରେ ?

- ହଁ, ତମେ ପୁଣି ଏଥିରୁ କ'ଣ ସନ୍ଦେହ କରୁଛ ? ସେ କ'ଣ ଭଲ ନୁହେଁ ? ଅଥେଲୋ ଜାଣିବାକୁ ଚାହାନ୍ତି । ଇୟାଗୋ ଗଭୀର ଚିନ୍ତାରେ ବୁଡ଼ିଯିବାର ଛଳନା କରନ୍ତି । ଅଥେଲୋ ବିରକ୍ତ ହୋଇ କହନ୍ତି- ମନେ ହେଉଛି, ତମେ ଯେମିତି କ'ଣ ଗୋଟାଏ ଭାବୁଛ । କାସିଓ ମୋ ସ୍ତ୍ରୀ ପାଖରୁ ଚାଲିଗଲା ବେଳେ ବି ତମେ ମନ୍ତବ୍ୟ ଦେଲ... ବ୍ୟାପାରଟା ତମକୁ ଭଲ ଲାଗି ନାହିଁ ବୋଲି । ପ୍ରକୃତରେ ତମେ ଯଦି ମୋତେ ଶ୍ରଦ୍ଧା କର ତେବେ ତମେ କ'ଣ ଭାବୁଛ ସ୍ପଷ୍ଟ କହ ।

- ଆପଣ ଜାଣନ୍ତି ମୁଁ ଆପଣଙ୍କୁ ସମ୍ମାନ କରେ - ଇୟାଗୋ ଭଣିତା ଆରମ୍ଭ କରନ୍ତି ।

- ଜାଣେ, ଆଉରି ବି ଜାଣେ ତମେ ଜଣେ ସତ୍ ମଣିଷ । ପ୍ରତ୍ୟେକଟି କଥା ବିଚାର କରି କହ । ସେଥିପାଇଁ ତମର ଏମିତି କଥାରୁ ମୋର ଆଶଙ୍କା ବଢ଼ିଯାଉଛି ।

ଇୟାଗୋ କହନ୍ତି - କାସିଓ ଜଣେ ଭଲ ମଣିଷ ବୋଲି ଆମେ ଧରିନେବା ।

- 'ମୁଁ ତ ସେଇଆ ଭାବେ । ' ଅଥେଲୋ କହନ୍ତି ।

ଇୟାଗୋ ଏଥର କହନ୍ତି - ମଣିଷର ପ୍ରକୃତ ଚେହେରାଟା ଯଦି ତା'ର ବାହାର ଚେହେରା ଭଳି ହୋଇଥାଆନ୍ତା !

- ହେବା ତ ଉଚିତ - ଅଥେଲୋ କହନ୍ତି ।

- ତା ହେଲେ କାସିଓ ଜଣେ ଭଲ ଲୋକ ।

ଅଥେଲୋ ବୁଝିପାରନ୍ତି, ସେ କାସିଓ ସମ୍ପର୍କରେ କିଛି ବିରୂପ ମନ୍ତବ୍ୟ ଦେବାକୁ ଚାହାନ୍ତି । କହନ୍ତି - ତମେ କାସିଓ ପ୍ରତି କୌଣସି ଅନ୍ୟାୟ କରୁ ନାହଁତ ?

ଇୟାଗୋ କହନ୍ତି - ଯାହା ମୁଁ କହିବାକୁ ଯାଉଛି, ତାହା ମୋର ଅନୁମାନ ମାତ୍ର । ସେଥିପାଇଁ ଅଧିକ କହିବାକୁ ଚାହୁଁ ନାହିଁ । ମୋ ମନ ଭିତରେ କ'ଣ ଅଛି ତାକୁ ନେଇ ଆପଣ ଚିନ୍ତା କରନ୍ତୁ ନାହିଁ । ଜାଣିବା ପାଇଁ ମୋତେ ବାଧ କରନ୍ତୁ ନାହିଁ ।

ଅଥେଲୋଙ୍କର କୌତୂହଳ ବଢ଼ିଯାଏ । ସେ ଏଥର ପ୍ରକୃତରେ ଇୟାଗୋର ଧାରଣା ବିଷୟରେ ଜାଣିବାକୁ ଆଗ୍ରହୀ ହୋଇ ଉଠନ୍ତି ।

- ସବୁ କଥା ଜାଣିବା ପରେ ଆପଣଙ୍କର ଯଦି କାହା ପ୍ରତି ଈର୍ଷା ହୁଏ, ସେଥିପାଇଁ ମୋତେ ଦୋଷ ଦେବେ ନାହିଁ ।

- ନା ସନ୍ଦେହର ଶେଷ ରଖିବା ଉଚିତ ନୁହେଁ । କିଏ ଯଦି କହେ ମୋ ସ୍ତ୍ରୀ ସୁନ୍ଦରୀ, ଲୋକମାନଙ୍କର ସାହଚର୍ଯ୍ୟ ପସନ୍ଦ କରନ୍ତି, ତେବେ ମୁଁ ଈର୍ଷା କରିବି ନାହିଁ । ସେ ଭଲ କଥା କହେ, ଗୀତ ବୋଲେ, ଅଭିନୟ କରେ ଆଉ ନାଚେ ... ଏ ବିଷୟରେ ବି ସେ ସ୍ୱାଧୀନ । ଏ ସବୁ ମଣିଷର ଗୁଣ । ମୁଁ ଏଥିପାଇଁ ତାକୁ ସନ୍ଦେହ କରି ନ ପାରେ । ପୁଣି ସେ ନିଜେ ମୋତେ ପସନ୍ଦ କରିଛି । ସନ୍ଦେହ କରିବା ପୂର୍ବରୁ ମୁଁ ତେଣୁ ନିଜ ଆଖିରେ ଦେଖିବାକୁ ଚାହେଁ - ତା' ପରେ ପ୍ରମାଣ ଚାହିଁବି ।

ଇୟାଗୋ ଅଥେଲୋଙ୍କର ଏଇ ମନୋଭାବର ପ୍ରଶଂସା କରନ୍ତି । କହନ୍ତି ସେ ବର୍ତ୍ତମାନ କିଛି ପ୍ରମାଣ ଦେଉ ନାହାନ୍ତି । ସେନାପତି ବରଂ ନିଜର ସ୍ତ୍ରୀ ପ୍ରତି ଲକ୍ଷ୍ୟ ରଖନ୍ତୁ, ବିଶେଷକରି ସେ ଯେତେବେଳେ କାସିଓଙ୍କ ସହିତ ଆଳାପ କରୁଛନ୍ତି । ତେବେ ଖୁବ୍ ନିସ୍ପୃହ ଭାବରେ ଏଇ କାମଟି ହେବା ଉଚିତ । ଆପଣ ବୋଧହୁଏ ଜାଣନ୍ତି ନାହିଁ - ଭେନିସ୍‌ର ଝିଅମାନେ ଛଳନାରେ ବଡ଼ ନିପୁଣ । ଦେଖନ୍ତୁ, ଡେସ୍‌ଡିମୋନା ଆପଣଙ୍କୁ ବିବାହ କରି ତାଙ୍କର ପିତାଙ୍କୁ ଠକାଇଛନ୍ତି । ଯେତେବେଳେ ସେ ଆପଣଙ୍କ ଚାହାଣିକୁ ଭୟ କରୁଛନ୍ତି ବୋଲି ଆପଣଙ୍କର ଧାରଣା ହେଉଥିଲା, ସେତେବେଳେ ସେ ଆପଣଙ୍କୁ ସବୁଠାରୁ ଅଧିକ ଭଲ ପାଉଥିଲେ । ଠିକ୍ କି ନା ? ଆପଣଙ୍କୁ ଶ୍ରଦ୍ଧା କରେ ବୋଲି ଏସବୁ କହୁଛି ... ଅପରାଧ ନେବେ ନାହିଁ ।

- ଅପରାଧ କ'ଣ ? ମୁଁ ତ ବରଂ କୃତଜ୍ଞ ।

- ମନେହେଉଛି ଆପଣ ଆଘାତ ପାଇଛନ୍ତି । ପାଇବା ସ୍ୱାଭାବିକ । ତେବେ ଅନୁରୋଧ, ମୋ କଥାରେ ଏତେ ଗୁରୁତ୍ୱ ଦେବେ ନାହିଁ ।

- ମୁଁ କିନ୍ତୁ ଏବେବି ଭାବୁଛି, ଡେସ୍‌ଡିମୋନା ଅତୁଳନୀୟା । -ଅଥେଲୋ କହନ୍ତି ।

- ମୁଁ ତ ସେଇଆ କାମନା କରୁଛି । ତାଙ୍କ ପ୍ରତି ଆପଣଙ୍କର ବିଶ୍ୱାସ ଅତୁଟ ଥାଉ । କିନ୍ତୁ ଗୋଟାଏ କଥା ଲକ୍ଷ୍ୟ କରିଛନ୍ତି କି ? ତାଙ୍କ ସହିତ ଆପଣଙ୍କର ମେଳ ଅପେକ୍ଷା ଅମେଳ ଅଧିକ । ଆପଣଙ୍କର ପରିବେଶ, ଦେହର ରଙ୍ଗ - ଏ ସବୁରେ ପାର୍ଥକ୍ୟଟା ଏତେ ବେଶୀ ଯେ, ହୁଏତ ବିବାହ ପରେ ତାଙ୍କ ମନରେ ଏଥିପାଇଁ ଅନୁତାପ ଆସିଛି । ଇୟାଗୋ ରହି ରହି କହନ୍ତି ।

କଥା ଆଉ ନ ବଢ଼ାଇ ଅଥେଲୋ ଇୟାଗୋଙ୍କୁ ବିଦାୟ ଦିଅନ୍ତି । ତେବେ କହନ୍ତି - ତମର ଯଦି ଆଉ କିଛି ଆଖିରେ ପଡ଼େ ମୋତେ ଜଣାଇବ । ତମର ସ୍ତ୍ରୀଙ୍କୁ ମଧ ଏଥି ପ୍ରତି ନଜର ରଖିବାକୁ କହିବ ।

ଘର ଛାଡ଼ି ଯିବା ଆଗରୁ ଇୟାଗୋ ଶୁଣନ୍ତି, ଅଥେଲୋ କହୁଛନ୍ତି, ଓଃ - କାହିଁକି ଏ ବିବାହ କଲି ! ଇୟାଗୋ ଯେତିକି କହିଛି ତା' ଅପେକ୍ଷା ସେ ନିଶ୍ଚୟ ଅନେକ କିଛି ଜାଣେ ।

ଇୟାଗୋ ଫେରିଆସି ଏସବୁକୁ ନେଇ ବେଶି ନ ଭାବିବାକୁ ତାଙ୍କୁ ଅନୁରୋଧ କରନ୍ତି ଏବଂ ବ୍ୟାପାରଟାକୁ ତାଙ୍କ ଉପରେ ଛାଡ଼ିଦେବାକୁ କହନ୍ତି । କାସିଓ ଦକ୍ଷ କର୍ମଚାରୀ, ତାଙ୍କୁ ବର୍ତ୍ତମାନ ଫେରାଇ ଦେବା ଉଚିତ ହେବ ନାହିଁ । ଏହା ଦ୍ୱାରା ତାଙ୍କ ଉପରେ ନଜର ରଖିବା କାମ ବି ହୋଇପାରିବ । ଏ ଭିତରେ ସେ ଦେଖିବେ ସେ ପ୍ରକୃତରେ ଅପରାଧୀ କିମ୍ବା ନୁହେଁ ।

ଇୟାଗୋ ଚାଲିଯିବା ପରେ ଅଥେଲୋ ଭାବନ୍ତି, ଏଇ ଲୋକଟା ମଣିଷ ଚରିତ୍ର ସମ୍ପର୍କରେ ଗଭୀର ଜ୍ଞାନ ରଖେ । ଡେସ୍‌ଡିମୋନା ସମ୍ପର୍କରେ ସେ ଯାହା କରୁଛି ତାହା ଯଦି ପ୍ରମାଣିତ ହୁଏ, ତେବେ ମୋର ସମସ୍ତ ଅନୁରାଗ ସତ୍ତ୍ୱେ ତାକୁ ପରିତ୍ୟାଗ କରିବି । ତାକୁ ଘୃଣା କରିପାରିଲେ ହିଁ ମୋ ମନରେ ଶାନ୍ତି । ଏମିଲିଆ ସହିତ ଡେସ୍‌ଡିମୋନାକୁ ଆସିବାର ଦେଖି ଅଥେଲୋ ଚିନ୍ତା କରନ୍ତି, ଏଇ ସୁନ୍ଦର ମୁହଁରେ କ'ଣ କୌଣସି ପାପ ଥାଇପାରେ ?

ଡେସ୍‌ଡିମୋନା ଆସି କହନ୍ତି - ଖାଇବା ପାଇଁ ଯେଉଁମାନଙ୍କୁ ନିମନ୍ତ୍ରଣ କରା ଯାଇଥିଲା, ସେମାନେ ସମସ୍ତେ ଆସିଗଲେଣି । ତମେ ସେମାନଙ୍କ ପାଖକୁ ଯାଅ । ଅଥେଲୋ ମୃଦୁ ସ୍ୱରରେ କିଛି କହିଲାରୁ, ଡେସ୍‌ଡିମୋନା ପଚାରନ୍ତି - ତମର ଦେହ କ'ଣ ଭଲ ନାହିଁ ?

- ମୁଣ୍ଡ ଧରିଛି ।

- ଆସ, ମୋ ରୁମାଲ୍‌ରେ ତମର ମଥା ବାନ୍ଧିଦିଏଁ । ଅଳ୍ପ ସମୟ ଭିତରେ ଠିକ୍ ହୋଇଯିବ । ରୁମାଲ୍‌ଟା ବାନ୍ଧିବାକୁ ଗଲାବେଳେ ତା' ତଳେ ପଡ଼ିଯାଏ । ଅଥେଲୋ କହନ୍ତି, ଏଇଟା ଖୁବ୍ ଛୋଟ । ପଡ଼ିଥାଉ ସେଠି । ଚାଲ, ମୁଁ ତମ ସାଙ୍ଗେ ଯାଉଛି ।

ତମ ଦେହ ଭଲ ନାହିଁ । ମୋତେ ଭଲ ଲାଗୁ ନାହିଁ - ଡେସ୍‌ଡିମୋନା କହନ୍ତି । ତା'ପରେ ଦୁହେଁ ଚାଲିଯାଆନ୍ତି । ପଡ଼ିଥିବା ରୁମାଲ ଆଡ଼େ ଅନାଇ ଏମିଲିଆ ଭାବନ୍ତି - ଏଇଟା ହେଉଛି ଅଥେଲୋଙ୍କର ଡେସ୍‌ଡିମୋନାକୁ ପ୍ରଥମ ଉପହାର । ଇୟାଗୋ ଏହାକୁ ଚୋରି କରି ଆଣିବାକୁ ମତେ ଅନେକଥର କହିଛନ୍ତି । ଡେସ୍‌ଡିମୋନା ଏଇ ଛୋଟ ଜିନିଷଟିକୁ ଖୁବ୍ ଭଲ ପାଏ । ଅଥେଲୋ ଏଇଟିକୁ କେବେବି ପାଖଛଡ଼ା ନ କରିବାକୁ ତାକୁ ଶପଥ କରାଇଥିଲେ ।

ସେଇ ଦିନଠୁ ଡେସ୍‌ଡିମୋନା ଏହାକୁ ବଡ଼ ଯତ୍ନରେ ରଖିଛି । ଏ ରୁମାଲରୁ ଫୁଲଟା ଅନ୍ୟ ରୁମାଲରେ ଉଠାଇ ମୁଁ ଇୟାଗୋଙ୍କୁ ଦେବି । କ'ଣ କରିବେ, ସେଇ ଜାଣନ୍ତି ।

ହଠାତ୍ ଇୟାଗୋ ସେଠାକୁ ଆସନ୍ତି । ଏମିଲିଆ ତାଙ୍କୁ କହନ୍ତି ତମ ପାଇଁ ଗୋଟିଏ ଜିନିଷ ରଖିଛି । ତୁମକୁ ଯଦି ସେଇ ରୁମାଲ୍‌ଟା ଦିଏ , ତେବେ ବଦଳରେ ତମେ ମୋତେ କ'ଣ ଦେବ ?

- କି ରୁମାଲ୍ ?

- ସେଇ, ଯେଉଁଟା ଅଥେଲୋ ଡେସ୍‌ଡିମୋନାଙ୍କୁ ଦେଇଥିଲେ, ଆଉ ଯେଉଁଟା ଚୋରି କରି ଆଣିବାକୁ ତମେ ମୋତେ କହିଥିଲ ।

- କରିଛ ଚୋରି ?

- ନା, ରୁମାଲ୍‌ଟା ତା' ହାତରୁ ପଡ଼ିଯାଇଥିଲା । ମୁଁ ସେଇଟା ଗୋଟାଇ ରଖିଛି । ଇୟାଗୋ ମାଗିବାରୁ ଏମିଲିଆ କହନ୍ତି - ଆଗେ କହ, ଏଇଟାକୁ ନେଇ ତମେ କ'ଣ କରିବ ?

- ସେଥିପାଇଁ ତମ ମୁଣ୍ଡ କାହିଁକି ବଥାଉଛି ? ଏମିଲିଆ ହାତରୁ ଇୟାଗୋ ରୁମାଲଟା ପ୍ରାୟ ଛଡ଼ାଇ ନିଅନ୍ତି । ଏମିଲିଆ କହନ୍ତି ତମର କାମ ହୋଇଗଲେ ଜିନିଷଟା ଫେରାଇଦେବ । ନ ପାଇଲେ ବିଚାରୀ ଡେସ୍‌ଡିମୋନା କାନ୍ଦିକାଟି ଅସ୍ଥିର ହୋଇପଡ଼ିବ ।

- ରୁମାଲ୍ ଯେ ତମେ ପାଇଛ, ସେ କଥା ତାକୁ କହିବା ଦରକାର ନାହିଁ । ରୂଢ଼ ଭାବରେ ଇୟାଗୋ କହନ୍ତି । ଏମିଲିଆ ଚାଲିଯିବା ପରେ ସେ ଚିନ୍ତା କରନ୍ତି । ଏଇ ଜିନିଷ କେତେ ଛୋଟ । ଭଲ ପାଇବାର ସନ୍ତକ । ଏଇ ମୋର କାମରେ ଲାଗିବ । ମୁର୍‌ଟାକୁ ଯେତିକି ପାଠ ପଢ଼ାଯାଇଛି, ଏହା ଦ୍ୱାରା ତା'ର ଆହୁରି ଉନ୍ନତି ହେବ ।

ଅଥେଲୋ ଫେରିଆସନ୍ତି । ତୀବ୍ର ମାନସିକ ଯନ୍ତ୍ରଣାର ଚିହ୍ନ ତାଙ୍କ ମୁହଁରେ । ଚିତ୍କାର କରି କହନ୍ତି - ମୋ ସାଙ୍ଗରେ ମିଥ୍ୟାଚାର !

ଇୟାଗୋ ସାନ୍ତ୍ୱନା ଦେବାକୁ ଆଗେଇ ଆସନ୍ତି । କିନ୍ତୁ ଅଥେଲୋଙ୍କ କଥାରୁ ବୁଝାଯାଏ, ମନର ଶାନ୍ତି ତାଙ୍କର ଚିରତରେ ନଷ୍ଟ ହୋଇଛି । ଈର୍ଷାର ଜ୍ୱାଳାରେ ତାଙ୍କର ହୃଦୟ ବିଦୀର୍ଣ୍ଣ, ମାନସିକ ଭାରସାମ୍ୟ ନଷ୍ଟ । ଗର୍ଜନ କରି ଇୟାଗୋଙ୍କୁ କହନ୍ତି - ସଇତାନ୍, ଡେସ୍‌ଡିମୋନାର ବ୍ୟଭିଚାର ତମକୁ ପ୍ରମାଣିତ କରିବାକୁ ପଡ଼ିବ । ତା'ଉପରେ ମିଥ୍ୟା କଳଙ୍କ ଲଦିଦେଲେ, ମୁଁ କ୍ଷମା କରିବି ନାହିଁ ।

ନିରୀହତାର ଅଭିନୟ କରି ଇୟାଗୋ କହନ୍ତି, ଆଜି ଆପଣଙ୍କଠୁ ଶିଖିଲି ଯେ, ସରଳ ଭାବରେ କୌଣସି କଥା କହିବା ସମୀଚୀନ ନୁହେଁ । ଭଲପାଇବାରୁ ହିଁ ବିରୋଧର ସୃଷ୍ଟି ହୁଏ ।

ଅଥେଲୋ କହିପକାନ୍ତି- ନା, ନା ତମେ ଭଲରେ ଥାଅ ।

- ନା - ଅଭିମାନ କରି ଇୟାଗୋ କହନ୍ତି- ମୁଁ ବରଂ ଚତୁର ହେବାକୁ ଶିଖିବି । ସତ୍ୟନିଷ୍ଠା ହେଉଛି ବୋକାମିର ନାମାନ୍ତର ।

ଅଥେଲୋ କହନ୍ତି - ଥରେ ମନେ ହେଉଛି ମୋ ସ୍ତ୍ରୀ ଭଲ । ପୁଣି ମନେ ହେଉଛି ନା ସେ ତାହା ନୁହେଁ । କେବେ ମନେହେଉଛି, ତମେ ଠିକ୍ କହୁଛ । ପୁଣି ମନେ ହେଉଛି ତମର ଭୁଲ୍ ହେଉଛି । ମୋତେ ପ୍ରମାଣ ପାଇବାକୁ ହେବ । ଦିନେ ଡେସ୍‌ଡିମୋନା ମୋ ପାଖରେ ଥିଲା, ଶୁଭ୍ର ସ୍ୱଚ୍ଛ ଏକ ଦେବୀ ବିଶେଷ । ଏବେ ମନେହେଉଛି, ସେ କଳଙ୍କିନୀ, ଠିକ୍ ମୋର ମୁହଁ ଭଳି । ମନେହେଉଛି, ଏ ଯନ୍ତ୍ରଣା ପାଇବା ଅପେକ୍ଷା ଆତ୍ମହତ୍ୟା କରିଦେବା ବରଂ ଭଲ ।

ଇୟାଗୋ କହନ୍ତି - ଆପଣଙ୍କର ଏ ଯନ୍ତ୍ରଣା ପାଇଁ ମୁଁ ଦାୟୀ ବୋଲି ଭାବି ନିଜକୁ ଅପରାଧୀ ମନେ ହେଉଛି ।

ଅଥେଲୋ କାସିଓ ଡେସ୍‌ଡିମୋନାଙ୍କ ମଧ୍ୟରେ ଥିବା ଅବୈଧ ସମ୍ପର୍କ ବିଷୟରେ ସ୍ପଷ୍ଟ ପ୍ରମାଣ ଚାହାନ୍ତି । ଇୟାଗୋ କହନ୍ତି ଯେ, ସମ୍ପ୍ରତି ସେ ଆଉ କାସିଓ ଏକା ସାଙ୍ଗରେ ରାତିଟିଏ କଟାଇଥିଲେ । ନିଦରେ କାସିଓ ବାରମ୍ବାର ଡେସ୍‌ଡିମୋନାଙ୍କର ନାମ ଉଚ୍ଚାରଣ କରୁଥିବାର ଏବଂ ଆଜି ସେ ଅଥେଲୋର ସ୍ତ୍ରୀ ବୋଲି ନିଜ ଭାଗ୍ୟକୁ ଅଭିସମ୍ପାତ ଦେଉଥିବାର ଶୁଣିଛନ୍ତି ।

ରାଗରେ ଅଥେଲୋ ଚିତ୍କାର କରିଉଠନ୍ତି । ଇୟାଗୋ କହନ୍ତି - ତାହା କାସିଓଙ୍କର ସ୍ୱପ୍ନ ମାତ୍ର । ସ୍ୱପ୍ନ ସନ୍ଦେହ ସୃଷ୍ଟି କରିପାରେ, ମାତ୍ର ତାକୁ କୌଣସି ପ୍ରମାଣ ରୂପେ ଗ୍ରହଣ କରାଯାଇ ନ ପାରେ ।

ଅଥେଲୋ କିଛି ଶୁଣିବାକୁ ଚାହାନ୍ତି ନାହିଁ । ଚିତ୍କାର କରି କହନ୍ତି, ମୁଁ ତାକୁ ଖଣ୍ଡ ଖଣ୍ଡ କରିଦେବି । ଇୟାଗୋ ତାଙ୍କୁ ଶାନ୍ତ କରିବାକୁ ଯାଇ ଅନ୍ୟ ଏକ ଚାଲ୍ ଚଳାନ୍ତି । କହନ୍ତି - ଆଚ୍ଛା କହିଲେ, ଆପଣଙ୍କ ସ୍ତ୍ରୀଙ୍କ ହାତରେ ଏକ ରୁମାଲ୍ ଦେଖୁ ନ ଥିଲେ ? ଷ୍ଟ୍ରବେରୀର ଛାପ ସେଥିରେ ଥିଲା ...

- ହଁ - ମୁଁ ତାକୁ ଦେଇଥିଲି ... ମୋର ପ୍ରଥମ ଉପହାର ...

-ହୋଇପାରେ ସେମିତି ଗୋଟାଏ ରୁମାଲରେ କାସିଓ ତାଙ୍କ ଦାଢ଼ି ପୋଛୁଥିଲେ । ମୁଁ ନିଜେ ଦେଖିଛି - ଏଇଟା ଯଦି ସେଇ ରୁମାଲ୍ ହୁଏ ... ଇୟାଗୋ କହନ୍ତି ।

ଅଥେଲୋଙ୍କ କ୍ରୋଧ ବାଧା ମାନେ ନାହିଁ । ଚିତ୍କାର କରି କହନ୍ତି - ଶୁଣ ଇୟାଗୋ, ଆଜିଠୁ ମୁଁ ମୋର ଭଲ ପାଇବାକୁ ସମୁଦ୍ରରେ ଭସାଇ ଦେଲି... ମୁଁ ଚାହେଁ ପ୍ରତିଶୋଧ ... ଚାହେଁ ରକ୍ତ ...

- ଧୈର୍ଯ୍ୟ ଧରନ୍ତୁ । ମନ ବଦଳି ଯାଇପାରେ ।

- ନା ମୋର ସିଦ୍ଧାନ୍ତ ଅପରିବର୍ତ୍ତନୀୟ । ମୁଁ ଶପଥ କରୁଛି ।

ଅଥେଲୋ ଇୟାଗୋଙ୍କୁ ଦାୟିତ୍ୱ ଦିଅନ୍ତି, ତିନିଦିନ ମଧ୍ୟରେ କାସିଓକୁ ହତ୍ୟା କରିବାକୁ । ଇୟାଗୋ ତାଙ୍କ ମନର ଉଲ୍ଲାସ ଗୋପନ କରି କହନ୍ତି - ଆପଣଙ୍କ ଆଦେଶରେ ମୁଁ ବନ୍ଧୁ ହତ୍ୟା କରିବି, କିନ୍ତୁ ଡେସ୍‌ଡିମୋନାଙ୍କୁ ବଞ୍ଚିବାକୁ ଦିଅନ୍ତୁ ।

- ମୁଁ ତା'ର ବ୍ୟବସ୍ଥା ନିଜେ କରିବି । ତମକୁ ଆଜିଠାରୁ ମୋର ଲେଫ୍ଟନାଣ୍ଟ ନିଯୁକ୍ତ କରୁଛି ।

- ମୁଁ କୃତଜ୍ଞ ଆପଣଙ୍କ ନିକଟରେ । ଇୟାଗୋଙ୍କ ଗଳାରୁ ବିନମ୍ରତା ଝରିପଡେ । ଦୁର୍ଗ ସମ୍ମୁଖରେ ଡେସ୍‌ଡିମୋନା ଅଥେଲୋଙ୍କ ଅପେକ୍ଷାରେ ଥାଆନ୍ତି । ଅଥେଲୋ ଆସିବା ମାତ୍ରେ ଝାଳ ବହୁଥିବା କହି ରୁମାଲ୍ ମାଗନ୍ତି । କହନ୍ତି, ଯେଉଁ ରୁମାଲଟା ମୁଁ ତମକୁ ଦେଇଥିଲି, ସେଇଟା ଦିଅ । ଡେସଡିମୋନା କହନ୍ତି ଯେ ରୁମାଲଟା ସେ ଖୋଜି ପାଉ ନାହାନ୍ତି ।

ଅଥେଲୋ କହନ୍ତି - ସେଇଟା ହଜାଇବା ଅନ୍ୟାୟ । ରୁମାଲଟା ମୋର ମାଆ ଜଣେ ମିଶରୀୟଙ୍କଠାରୁ ପାଇଥିଲେ । ମିଶରୀୟ ତାଙ୍କୁ କହିଥିଲେ - ଯେତେଦିନ ଯାଏ ତାହା ପାଖରେ ଥିବ, ତାଙ୍କପ୍ରତି ସ୍ୱାମୀଙ୍କର ପ୍ରେମ ଅତୁଟ ରହିଥିବ । ସେଇଟି ଯଦି ହଜିଯାଏ ବା କାହାକୁ ଦେଇ ଦିଆଯାଏ , ତେବେ ସ୍ୱାମୀଙ୍କ ପ୍ରେମ ପରିଣତ ହେବ ଘୃଣାରେ । ମୃତ୍ୟୁ ପୂର୍ବରୁ ମାଆ ରୁମାଲଟା ମୋତେ ଦେଇ ମୋର ସ୍ତ୍ରୀଙ୍କୁ ଦେବାପାଇଁ କହିଥିଲେ । ମୁଁ ସେଇଆ କରିଛି । ଏବେ ରୁମାଲଟା ଯଦି ହଜିଯାଏ ବା କାହାକୁ ଦିଆଯାଏ , ତେବେ ପ୍ରଚଣ୍ଡ କ୍ଷତି ହୋଇଯିବାର ସମ୍ଭାବନା ।

- ଏ କ'ଣ ସମ୍ଭବ ? ଡେସ୍‌ଡିମୋନା ସନ୍ଦେହ ପ୍ରକାଶ କରନ୍ତି ।

- ହଁ, ରୁମାଲର ନକ୍‌ସାରେ ଯାଦୁ କରାଯାଇଛି, ଭଲକରି ଖୋଜି ଦେଖ । ଅଥେଲୋଙ୍କ କଣ୍ଠସ୍ୱର ଡେସ୍‌ଡିମୋନାଙ୍କୁ ଆତଙ୍କିତ କରେ । ଅଥେଲୋ ପୁଣି ପ୍ରଶ୍ନ କରନ୍ତି -ରୁମାଲ କ'ଣ ପ୍ରକୃତରେ ହଜିଯାଇଛି ?

- ନା ହଜି ନାହିଁ ।

- ତେବେ ଖୋଜ-ଖୋଜି ଆଣି ଦେଖାଅ ।

ଡେସ୍‌ଡିମୋନା ଅଭିମାନୀ କଣ୍ଠରେ କହନ୍ତି - ଠିକ୍ ଅଛି, ମୁଁ ଖୋଜିବି । ତେବେ ବର୍ତ୍ତମାନ ନୁହେଁ । ତମେ ନିଶ୍ଚୟ ଚାଲାଖି କରି ମୁଁ ତମକୁ ଯାହା ମାଗିଥିଲି ସେ ବିଷୟରେ ମୋତେ ଭୁଲାଇ ଦେବାକୁ ଚାହୁଁଛ । ତମେ କାସିଓଙ୍କୁ ଗ୍ରହଣ କର ।

- ରୁମାଲ୍‌ଟା ମୋର ଦରକାର । ଅଥେଲୋଙ୍କର କଣ୍ଠସ୍ୱର କର୍କଶ ଶୁଣାଯାଏ ।

ଡେସ୍‌ଡିମୋନା କିନ୍ତୁ କାସିଓଙ୍କ କଥା କହିଚାଲନ୍ତି - ଯେଉଁ ଲୋକ ଏତେଦିନ ତମର ପାଖେ ପାଖେ ରହି ତମର ସେବା କରି ଆସିଲା, ତମର ସ୍ନେହ ପାଇ ଆସିଲା ...

- ରୁମାଲ କ'ଣ କରିଛ ? ଅଥେଲୋ ଯେମିତି ଉନ୍ମାଦ ହୋଇଯାଇଛନ୍ତି !

- ସେଥିପାଇଁ କିନ୍ତୁ ତମେ ଦାୟୀ ...

ଡେସ୍‌ଡିମୋନାଙ୍କ କଥାରେ ପ୍ରଚଣ୍ଡ ବିରକ୍ତି ପ୍ରକାଶ କରି ଅଥେଲୋ ସ୍ଥାନ ତ୍ୟାଗ କରନ୍ତି ।

ଏମିଲିଆ ପ୍ରଶ୍ନ କରନ୍ତି, ସେ କ'ଣ କୌଣସି କାରଣରୁ ଈର୍ଷାନ୍ୱିତ ହୋଇପଡ଼ିଛନ୍ତି ?

- କେଜାଣି, କେବେ ତ ତାଙ୍କୁ ଏମିତି ହେବାର ଦେଖି ନାହିଁ ; ଡେସ୍‌ଡିମୋନା କହନ୍ତି- ନିଶ୍ଚୟ ସେଇ ରୁମାଲଟାରେ କୌଣସି ଯାଦୁ ଶକ୍ତି ଅଛି । କୋଉଠି ଯେ ସେଇଟା ରହିଲା ...

ଏମିଲିଆ କହନ୍ତି - ଅଳ୍ପଦିନ ଭିତରେ ପୁରୁଷଙ୍କୁ ଚିହ୍ନା ଯାଏ ନାହିଁ । ସେମାନେ ହେଉଛନ୍ତି ଗୋଟିଏ ଗୋଟିଏ ଉଦର, ଆଉ ଆମେ ହେଲୁ ସେମାନଙ୍କର ଖାଦ୍ୟ । ଭୋକ ହେଲେ ଆମ ପାଖକୁ ଆସନ୍ତି - ଗପ୍‌ଗପ୍ କରି ଗିଳି ପକାନ୍ତି, ପେଟ ପୂରିଗଲେ ଦୂରକୁ ଠେଲି ଦିଅନ୍ତି ।

କାସିଓ ଆଉ ଇୟାଗୋ ଆସନ୍ତି । କାସିଓ ଡେସ୍‌ଡିମୋନାଙ୍କୁ ସେଇ ପୁରୁଣା ଅନୁରୋଧ କରନ୍ତି । କେତେଦିନ ଆଉ ସେ ଏମିତି ମାନସିକ ଯନ୍ତ୍ରଣା ଭିତରେ କଟାଇବେ ? ଡେସ୍‌ଡିମୋନା କହନ୍ତି, ଏବେ ଆଉ ଅଥେଲୋଙ୍କର ସେଇ ଆଗର ମିଜାଜ୍ ନାହିଁ । କାସିଓ ବରଂ ଟିକିଏ ଅପେକ୍ଷା କରନ୍ତୁ । ତାଙ୍କ ଦ୍ୱାରା ଯାହା ହେବ ତା' ସେ ନିଶ୍ଚୟ କରିବେ ।

ସେ କ'ଣ ରାଗିଯାଇଛନ୍ତି ? ଇୟାଗୋ ପ୍ରଶ୍ନ କରନ୍ତି ।

ଏମିଲିଆ ଜାଣନ୍ତି ଯେ ଅଥେଲୋଙ୍କ ଭିତରେ ଯେମିତି ଏକ ଅଦ୍‌ଭୁତ ଅସ୍ଥିରତା ଦେଖାଯାଉଛି ।

- ଯୁଦ୍ଧଭୂଇଁରେ ଗୁଳିଗୋଳାର ଭୟଙ୍କର ଶବ୍ଦ ଭିତରେ ମୁଁ ତାଙ୍କୁ ସ୍ଥିର ହୋଇ ଠିଆ ହୋଇଥିବାର ଦେଖିଛି । ସେ ଯେ ରାଗିଯାଇଛନ୍ତି, ଏକଥା ମୁଁ ଭାବିପାରୁ ନାହିଁ । ହୁଏତ ଏ ଗୋଟାଏ ସାମୟିକ ଘଟଣା । ମୁଁ ଯାଇ ଦେଖୁଛି, କ'ଣ ହୋଇଛି । ଇୟାଗୋ ଚାଲିଯାଆନ୍ତି ।

ଡେସ୍‌ଡିମୋନା କହନ୍ତି- ହୁଏତ ରାଜ୍ୟର କୌଣସି ବ୍ୟାପାର ହୋଇପାରେ । ଏଭଳି କ୍ଷେତ୍ରରେ ପୁରୁଷମାନେ ଅନେକ ସମୟରେ ଛୋଟ ଛୋଟ ସାଂସାରିକ ଘଟଣାରେ ବିରକ୍ତ ହୋଇପଡ଼ନ୍ତି । ମୂଳ କାରଣ କିନ୍ତୁ ଥାଏ ଅନ୍ୟଠି । ଆଙ୍ଗୁଳି ଦରଜ ହେଲେ ସାରା ଦେହ ଅସୁସ୍ଥ ହୋଇପଡ଼େ । ପୁରୁଷଟି ତ ଆଉ ଭଗବାନ୍ ନୁହେଁ ।

ଏମିଲିଆ କହନ୍ତି - ସେଇଆ ହୋଇଥାଉ । ଆପଣଙ୍କୁ ନେଇ ତାଙ୍କ ମନରେ ଯେମିତି କୌଣସି ଈର୍ଷା ଭାବ ସୃଷ୍ଟି ନ ହେଉ ।

- ସେମିତି ହେବ କାହିଁକି ? ମୁଁ ତ ସେମିତି କିଛି କରି ନାହିଁ ।

ଏମିଲିଆ ମନ୍ତବ୍ୟ ଦିଅନ୍ତି - ସବୁ ସମୟରେ ଈର୍ଷାର କ'ଣ କୌଣସି କାରଣ ଥାଏ ? ଭୟଙ୍କର ଏକ ଦାନବ ଭଳି ସେ ସ୍ୱୟମ୍ଭୂ ।

- ଈଶ୍ୱର ତାକୁ ଅଥେଲୋଙ୍କ ମନରେ ସୃଷ୍ଟି ନ କରନ୍ତୁ । କାସିଓ ଆଡ଼କୁ ଅନାଇ ଡେସ୍‌ଡିମୋନା କହନ୍ତି - ଆପଣ ବରଂ ଟିକିଏ ପରେ ଆସନ୍ତୁ । ମୁଁ ଯଦି ତାଙ୍କୁ ଭଲ ଅବସ୍ଥାରେ ପାଏ, ତେବେ ଆପଣଙ୍କ କଥା ଉଠାଇବି ।

ଡେସ୍‌ଡିମୋନା ଆଉ ଏମିଲିଆ ଚାଲିଯିବା ପରେ ସେଠାରେ ଉପସ୍ଥିତ ହୁଅନ୍ତି କାସିଓର ପ୍ରେମିକା ବିଏଙ୍କା । ସେ କହନ୍ତି - ମୁଁ ତମରି ପାଖକୁ ଯାଉଥିଲି । ସପ୍ତାହେ ହେବ ମୁଁ ତମକୁ ଦେଖି ନାହିଁ କାସିଓ ... ମନେରଖ - ସାତଟା ଦିନ ଆଉ ସାତଟା ରାତି ... ମନର ମଣିଷ ପାଖରେ ନ ଥିଲେ ସମୟ କେମିତି କଟେ, ତମେ ଜାଣ ?

କାସିଓ କ୍ଷମା ମାଗନ୍ତି । କହନ୍ତି - ଗୋଟାଏ ଦୁଶ୍ଚିନ୍ତା ଭିତରେ ଅଛି । ସେଇଟା ଦୂର ହେଲେ ମୁଁ ପୁଣି ତମକୁ ସାହଚର୍ଯ୍ୟ ଦେବି । କାସିଓ ଡେସ୍‌ଡିମୋନାଙ୍କ ରୁମାଲ୍‌ଟା ବିଏଙ୍କାଙ୍କୁ ଦେଇ କହନ୍ତି - ଆପାତତଃ ତମେ ଏଇ ସୁନ୍ଦର ରୁମାଲ୍‌ଟା ରଖ ।

ଅଭିମାନରେ ବିଏଙ୍କା କହନ୍ତି - ଏଇଟା ତମେ କୋଉଠୁ ପାଇଲ ? ମନେ ହେଉଛି ନୂଆ କେହି ବାନ୍ଧବୀ ଜୁଟିଲେଣି । ଏବେ ମୁଁ ତମର ଅନୁପସ୍ଥିତିର କାରଣ ବୁଝିପାରୁଛି ।

- ତମେ କ'ଣ ପାଗଳ ହେଲ ? ତମର ଈର୍ଷାର କୌଣସି କାରଣ ନାହିଁ ।

- ତା'ହେଲେ ଏଇଟା କାହାର ?

- ଜାଣେ ନାହିଁ । ମୋ ଘରୁ ପାଇଲି । ରୁମାଲ୍‌ଟି ଭଲ ଲାଗିଲା । ଭାବିଲି ତମକୁ ଦେବି । ତମେ ନେଇଯାଅ ... ନକ୍‌ସାଟା ଉଠାଇଦେବ । ବର୍ତ୍ତମାନ ମୋତେ ବିଦାୟ ଦିଅ ।

- ବିଦାୟ ଦେବି କାହିଁକି ?

- ମୋତେ ଥରେ ସେନାପତିଙ୍କ ସହିତ ଦେଖା କରିବାକୁ ହେବ ।

- କାହିଁକି ?

- ଅନ୍ତତଃ ତମକୁ ଭଲପାଏ ନାହିଁ ବୋଲି- କାସିଓ ଥଟ୍ଟାରେ କହନ୍ତି ।

- ପ୍ରକୃତରେ ତମେ ମୋତେ ଭଲପାଅନା - ବିଏଙ୍କା କହନ୍ତି । ଫେରିବା ବାଟରେ ତମେ ମୋ ଘର ଦେଇ ଯିବ । କହିଯିବ, ପୁଣି କେବେ ତମ ସହିତ ଦେଖାହେବ ।

- ନା, ଆଜି ହୁଏତ ଦେଖା କରିପାରିବି ନାହିଁ । ତେବେ ଶୀଘ୍ର ଦେଖାହେବ ।

- ଭଲ କଥା, ମୁଁ ତେବେ ଅପେକ୍ଷାରେ ରହିଥିବି । ବିଏଙ୍କା କହନ୍ତି ।

॥ ୪ ॥

ଇୟାଗୋ ଆସନ୍ତି ଅଥେଲୋଙ୍କୁ ସାନ୍ତ୍ୱନା ଦେବାପାଇଁ । ତେବେ କୌଣସିମତେ ତାଙ୍କୁ ଅଧିକରୁ ଅଧିକତର ଉତ୍ତେଜିତ କରିବା ଇୟାଗୋଙ୍କର ଲକ୍ଷ୍ୟ ହୋଇଥିବାରୁ ସେ ବାରମ୍ବାର ଡେସ୍‌ଡିମୋନାଙ୍କର ବିଶ୍ୱାସଘାତକତା ସମ୍ପର୍କରେ ଇଙ୍ଗିତ ଦେଇ ଅଥେଲୋଙ୍କ ଯନ୍ତ୍ରଣାକୁ ଆହୁରି ବଢ଼ାଇ ଦିଅନ୍ତି । ରୁମାଲ୍ ପ୍ରସଙ୍ଗ ପୁଣି ଚର୍ଚ୍ଚାର ପରିସରକୁ ଆସେ । ଶିକାର ଏବେ ପୂର୍ଣ୍ଣ କରାୟତ୍ତ । ନିଜ ଇଚ୍ଛାନୁସାରେ ସେ ତାକୁ ବ୍ୟବହାର କରିପାରିବେ । ମୁହୂର୍ତ୍ତକ ପାଇଁ ଅଥେଲୋ ଚେତା ହରାନ୍ତି । ତାଙ୍କର ସେଇ ଦୟନୀୟ ଅବସ୍ଥା ଇୟାଗୋଙ୍କର ହୃଦୟକୁ ଭୟଙ୍କର ଉଲ୍ଲାସରେ ଭରିଦିଏ । ଏତିକିବେଳେ କାସିଓ ସେଠାକୁ ଆସିବାରୁ ସେ ତାଙ୍କୁ ପରେ ଆସିବାକୁ କହନ୍ତି ।

ଅଥେଲୋଙ୍କର ଚେତା ଫେରିଆସେ । ଇୟାଗୋ କହନ୍ତି ସଂସାରରେ ଏଭଳି ଅନେକ ଦୁର୍ଭାଗା ଅଛନ୍ତି ଯେଉଁମାନେ ବିଶ୍ୱାସଘାତିନୀ ପତ୍ନୀର ପ୍ରକୃତ ରୂପ ଦେଖିପାରନ୍ତି ନାହିଁ । ଏ ଦୃଷ୍ଟିରୁ ଅଥେଲୋଙ୍କୁ ଅନ୍ତତଃ ଭାଗ୍ୟବାନ୍ କୁହାଯିବ । ସ୍ତ୍ରୀକୁ ସେ ଭଲଭାବେ ବୁଝିପାରିଛନ୍ତି ।

କାସିଓ ଆସିବାର ଜାଣି ସେ ଅଥେଲୋଙ୍କୁ ଅନ୍ତରାଳରେ ରହି ସେମାନଙ୍କ କଥା ଶୁଣିବା ନିମନ୍ତେ ଅନୁରୋଧ କରନ୍ତି । ବିଏଙ୍କାଙ୍କୁ ନେଇ କାସିଓଙ୍କ ସହିତ ତାଙ୍କର ଥଟ୍ଟାତାମସା ଚାଲେ । ତେବେ 'ବିଏଙ୍କା' ନାମଟି ଏତେ ମୃଦୁ ସ୍ୱରରେ ଉଚ୍ଚାରିତ ହୁଏ ଯେ, ତାହା ଅଥେଲୋଙ୍କ କାନରେ ପଡ଼େ ନାହିଁ । କାସିଓଙ୍କର ଉଲ୍ଲାସ ଓ ହାସ୍ୟ - ଅଥେଲୋଙ୍କର ଯନ୍ତ୍ରଣାକୁ ଆହୁରି ବଢ଼ାଇଦିଏ । ସେ ଭାବନ୍ତି, ଏ ଲଘୁ ଆଳାପର କେନ୍ଦ୍ରବିନ୍ଦୁ ହେଉଛନ୍ତି ଡେସ୍‌ଡିମୋନା । ଠିକ୍ ସେହି ସମୟରେ ବିଏଙ୍କା ଆସି ପୂର୍ବର ରୁମାଲ୍‌ଟିକୁ କାସିଓଙ୍କୁ ଫେରାଇ ଦିଅନ୍ତି । ନିଜର ରୁମାଲ ଅଥେଲୋ ଠିକ୍ ଚିହ୍ନନ୍ତି । ସେଥିରେ ଯେ କାସିଓ ନିଜର ଦାଢ଼ି ପୋଛିଥିଲା, ଏଇ କଥା ମନେ ପଡ଼ିବାରୁ ସେ ବିଷଣ୍ଣ ହୋଇଯାଆନ୍ତି ।

ସେମାନେ ଚାଲିଯିବା ପରେ ଅଥେଲୋ ବାହାରକୁ ଆସନ୍ତି । ସେ ଓ ଇୟାଗୋ ମିଶି ଡେସ୍‌ଡିମୋନାକୁ ହତ୍ୟା କରିବାର ସିଦ୍ଧାନ୍ତ ନେଇଯାଆନ୍ତି । ପ୍ରେମର ଅପମାନ ଓ ସମ୍ମାନ-ହାନିର ଏକମାତ୍ର ଶାସ୍ତି ହେଉଛି ମୃତ୍ୟୁ । ହତ୍ୟା କିଭଳି କରାଯିବ, ସେ ବିଷୟରେ ଅଥେଲୋ ଇୟାଗୋଙ୍କର ପରାମର୍ଶ ଚାହାନ୍ତି । ଇୟାଗୋ ଜାଣନ୍ତି ତାଙ୍କର ପରିକଳ୍ପନା ସଫଳ ହୋଇଛି । ତେବେ ଅଥେଲୋ ଏବେ ଉତ୍ତେଜନାର ଶୀର୍ଷରେ ଥିବା ବେଳେ ହିଁ ଏହି ହତ୍ୟାକାଣ୍ଡଟି ହୋଇଯିବା ଆବଶ୍ୟକ । ତାଙ୍କର ପରାମର୍ଶ ହେଉଛି ଶାୟିତ ଅବସ୍ଥାରେ ଡେସ୍‌ଡିମୋନାଙ୍କୁ ଗଳାଚିପି ହତ୍ୟା କରାଯାଉ । ସେ ନିଜେ କାସିଓ କଥା ବୁଝିବେ ।

ଭେନିସ୍‌ର କେତେ ଜଣ ସିନେଟ୍ ପ୍ରତିନିଧି ଆସିଛନ୍ତି ଅଥେଲୋଙ୍କୁ ସାକ୍ଷାତ୍ କରିବାକୁ । ସେମାନଙ୍କ ନେତା ଲୋଡ଼ୋଭିକୋ ବ୍ରାବାନ୍‌ଶିଓଙ୍କର ଆତ୍ମୀୟ । ଡେସ୍‌ଡିମୋନାକୁ ସାଙ୍ଗରେ ନେଇ ସେ ଅଥେଲୋଙ୍କୁ ଭେଟିବାକୁ ଆସନ୍ତି । ତାଙ୍କ ମୁହଁରୁ କାସିଓର କୁଶଳ ପ୍ରଶ୍ନ ବାହାରିଆସେ । ଇୟାଗୋ ଉତ୍ତର ଦିଅନ୍ତି - ଅଛନ୍ତି ଗୋଟାଏ ପ୍ରକାର । ଡେସ୍‌ଡିମୋନା ଆପେ କହନ୍ତି - ଅତି ସମ୍ପ୍ରତି ଅଥେଲୋ ଏବଂ କାସିଓଙ୍କ ମଧ୍ୟରେ ତୀବ୍ର ମନୋମାଳିନ୍ୟ ଚାଲିଛି । ତେବେ ସେ ବିଶ୍ୱାସ କରନ୍ତି, ଶୀଘ୍ର ଏହାର ଅବସାନ ହେବ । କାରଣ ଅଥେଲୋ କାସିଓଙ୍କୁ ପସନ୍ଦ କରନ୍ତି ।

ହଠାତ୍ ଅଘଟଣ ଘଟିଯାଏ । ଈର୍ଷାରେ ଅନ୍ଧ ଅଥେଲୋ ସର୍ବ ସମକ୍ଷରେ ଡେସ୍‌ଡିମୋନାଙ୍କୁ ଆଘାତ କରନ୍ତି । ତାଙ୍କୁ ଆଗରୁ ଚାଲିଯିବାକୁ ଆଦେଶ ଦିଅନ୍ତି । ଅପମାନସୂଚକ ଅନେକ କଥା ମଧ୍ୟ କହନ୍ତି । ତା'ପରେ ଲୋଡ଼ୋଭିକୋ କହନ୍ତି ଯେ, ତାଙ୍କୁ ଭେନିସ୍ ଫେରିଯିବା ପାଇଁ କୁହାଯାଇଛି । ସେ ଶୀଘ୍ର ଫେରିବେ ଏବଂ ସାଇପ୍ରସ୍‌ରେ ତାଙ୍କ ସ୍ଥାନରେ ଅଧିଷ୍ଠିତ ହେବେ କାସିଓ ।

ଅଥେଲୋଙ୍କ ରୁକ୍ଷ ବ୍ୟବହାର ଲୋଡ଼ୋଭିକୋଙ୍କୁ ଚକିତ କରେ । ସେ ଇୟାଗୋଙ୍କୁ ଏହାର କାରଣ ପଚାରନ୍ତି । ଇୟାଗୋ ସଂକ୍ଷେପରେ କହନ୍ତି - ସେ ଅନେକ ବଦଳି ଯାଇଛନ୍ତି ।

ଏମିଲିଆଙ୍କୁ ନିର୍ଜନରେ ଭେଟି ଅଥେଲୋ ତାଙ୍କଠାରୁ ଡେସ୍‌ଡିମୋନାଙ୍କର ଚରିତ୍ର ସମ୍ପର୍କରେ ଜାଣିବାକୁ ଚାହାନ୍ତି । କହନ୍ତି - ତମେ ମୋ ପତ୍ନୀଙ୍କର ବାନ୍ଧବୀ । ତାଙ୍କୁ ଖୁବ୍ ପାଖରୁ ଦେଖିଛ । ବିଶ୍ୱାସ, ତମେ ସତ୍ୟର ଅପଳାପ କରିବ ନାହିଁ ।

ଏମିଲିଆ ଦୃଢ଼ତାର ସହିତ କହନ୍ତି - ସେ କଦାପି ଅସଚ୍ଚରିତ୍ରା ହୋଇ ନ ପାରନ୍ତି । ଥରେ ସେ ଡେସ୍‌ଡିମୋନା ଓ କାସିଓଙ୍କ କଥାବାର୍ତ୍ତା ଶୁଣିଛନ୍ତି । ସେମାନେ କିଛି ଅନୁଚ୍ଚ ସ୍ୱରରେ ଆଳାପ କରୁ ନ ଥିଲେ । ସେ ନିଜେ ମୂଳରୁ ସେଠାରେ ଉପସ୍ଥିତ ଥିଲେ । ନିଜର ଆତ୍ମା ନାମରେ ଶପଥ କରି ସେ ଡେସ୍‌ଡିମୋନାଙ୍କୁ ପବିତ୍ର ବୋଲି ଘୋଷଣା କରନ୍ତି । ଯେଉଁ

ହତଭାଗା ଅଥେଲୋଙ୍କ ମୁଣ୍ଡରେ ଏ ସବୁ କଦର୍ଯ୍ୟ ଚିନ୍ତା ଢୁକାଇଛି, ତା'ର ସେ ସର୍ବନାଶ କାମନା କରନ୍ତି । ଅଥେଲୋଙ୍କର ଏଥିରେ ବିଶ୍ୱାସ ହୁଏ ନାହିଁ ।

ଡେସ୍‌ଡିମୋନା ଏଥର ପ୍ରକାଶ୍ୟ ଭାବରେ ଅଥେଲୋଙ୍କ ଭର୍ତ୍ସନାର ଶରବ୍ୟ ହୁଅନ୍ତି । କୌଣସି କଥା ଶୁଣିବାକୁ ସେ ରାଜି ହୁଅନ୍ତି ନାହିଁ । ଏମିଲିଆଙ୍କୁ ସେଠାରୁ ଚାଲିଯିବାକୁ କହନ୍ତି । ଶପଥ କରି ନିଜର ନିଷ୍ଠାର ପ୍ରମାଣ ଦେବା ପାଇଁ ପତ୍ନୀଙ୍କୁ ଆଦେଶ ଦିଅନ୍ତି । ଡେସ୍‌ଡିମୋନା ତତ୍‌କ୍ଷଣାତ୍ ତାହା କରନ୍ତି । ଅଥେଲୋଙ୍କର କ୍ରୋଧ କିଛି ଶାନ୍ତ ହୁଏ । ତାଙ୍କ ପ୍ରତି ସନ୍ଦେହର ବିଷ ଅଥେଲୋଙ୍କ ମନରେ ପ୍ରବେଶ କରିଥିବାରୁ ଯେ ତାଙ୍କର ଏହି ଅଦ୍‌ଭୁତ ପରିବର୍ତ୍ତନ ହୋଇଛି ଡେସ୍‌ଡିମୋନା ତଥାପି ଏହା ଭାବୁ ନ ଥାନ୍ତି । ସେ କାରଣ ଖୋଜୁ ଖୋଜୁ ଅନୁମାନ କରନ୍ତି - ତାଙ୍କର ପିତା ଅଥେଲୋଙ୍କୁ ଭେନିସ୍ ଡାକିଥିବାରୁ, ଏଭଳି ସ୍ଥିତି ସୃଷ୍ଟି ହୋଇଛି । କ୍ରୋଧ ଆଉ ହତାଶାରେ ତାଙ୍କର ମନ ଗ୍ରସ୍ତ । ହଠାତ୍ ଅଥେଲୋଙ୍କ ଆଖିରେ ଲୁହ ଦେଖି ଡେସ୍‌ଡିମୋନା ଅବାକ୍ ହୋଇଯାଆନ୍ତି । ପଚାରନ୍ତି - ଏ କ'ଣ ? ମୁଁ କ'ଣ ଏହାର କାରଣ ? ମୋର ପିତା ଯଦି କୌଣସି ଦୋଷ କରିଥାଆନ୍ତି, ତେବେ ସେଥିପାଇଁ ମୁଁ ଦାୟୀ ନୁହେଁ । ତମପାଇଁ ମୁଁ ତାଙ୍କୁ ଛାଡ଼ିଛି ।' ଉତ୍ତରରେ ସେ ଅଥେଲୋଙ୍କ ଠାରୁ ଯାହା ଶୁଣନ୍ତି, ତହିଁରେ ତାଙ୍କ ପାଦତଳର ମାଟି ଯେମିତି ଘୁଞ୍ଚିଯାଏ !

ଅଥେଲୋ ଚାଲିଯିବା ପରେ ଡେସ୍‌ଡିମୋନା ନିଜକୁ ଅପମାନିତ ମନେକରନ୍ତି । ଏମିଲିଆ ତାଙ୍କୁ ସାନ୍ତ୍ୱନା ଦେବାରୁ ସେ କହନ୍ତି - ମୁଁ ଜାଣେ, ଅଥେଲୋ ମୋ ପାଇଁ ଆଜି ଚିରକାଳ ଲାଗି ହଜିଯାଇଛନ୍ତି । କାରଣ ମୁଁ ଜାଣେ ନାହିଁ । ମୋ ଆଖିକୁ ଲୁହ ବି ତ ଆସୁ ନାହିଁ । ସେ ଆଚ୍ଛନ୍ନ ଅବସ୍ଥାରେ ଥାଇ କହନ୍ତି - ତମେ ମୋର ବିବାହର ଚଦରଟା ବିଛଣାରେ ବିଛାଇ ଦିଅ - ଆଉ ଇୟାଗୋଙ୍କୁ ଡାକ । ସେ ଆସିବା ପରେ କିନ୍ତୁ ତାଙ୍କୁ କିଛି କହିପାରନ୍ତି ନାହିଁ । ଇୟାଗୋ ଯାହା ଘଟିଛି, ସେଥିପାଇଁ ନିରୀହ ଭାବେ ଦୁଃଖ ପ୍ରକାଶ କରିଚାଲନ୍ତି । ଏମିଲିଆଙ୍କର ମନେହୁଏ, ଏ ସବୁ ଘଟଣା ପଛରେ ନିଶ୍ଚୟ କୌଣସି ସଇତାନର ହାତ ରହିଛି । ଯେଉଁମାନେ ଡେସ୍‌ଡିମୋନାଙ୍କୁ ଆଜି ବ୍ୟଭିଚାରିଣୀର କାଠଗଡ଼ାରେ ଠିଆ କରାଇଛନ୍ତି ସେମାନଙ୍କୁ ସେ ଅଭିସମ୍ପାତ ଦିଅନ୍ତି । ଆହୁରି କହନ୍ତି - ଡେସ୍‌ଡିମୋନାଙ୍କର ଚାରିତ୍ରିକ ଦୃଢ଼ତା ଯୋଗୁଁ ହିଁ ସେ ନିଜର ମନର ମଣିଷଟି ପାଇଁ ନିଜ ପିତା, ଜନ୍ମଭୂମି ଓ ଆତ୍ମୀୟସ୍ୱଜନ ଛାଡ଼ି ଏଇ ବିଦେଶକୁ ଚାଲିଆସିପାରିଛନ୍ତି । ସେ ଥିଲେ ଭେନିସ୍‌ର ଅନେକ ପୁରୁଷଙ୍କର ଆକାଙ୍କ୍ଷିତା, ତଥାପି ସେ ଅନ୍ୟ ଜାତିର ପୁରୁଷକୁ ବରଣ କରି ସବୁ ଛାଡ଼ିଛନ୍ତି । ଡେସ୍‌ଡିମୋନା କ'ଣ କଲେ ପୁଣି ସ୍ୱାମୀଙ୍କର ପ୍ରେମ ଆଉ ବିଶ୍ୱାସ ଫେରିପାଇବେ, ଏହା ଇୟାଗୋଙ୍କ ଠାରୁ ଜାଣିବାକୁ ଚାହାନ୍ତି ।

ଇୟାଗୋ ନୀରବ ରହନ୍ତି ।

ରଡ଼ରିଗୋଙ୍କୁ ଡାକି ସେ ପରାମର୍ଶ ଦିଅନ୍ତି ଯଥାଶୀଘ୍ର କାସିଓଙ୍କୁ ହତ୍ୟା କରିବାପାଇଁ । ଡେସ୍‌ଡିମୋନାଙ୍କୁ ଉପହାର ଦେବା ନାମରେ ସେ ତାଙ୍କଠାରୁ ଅନେକ ମୂଲ୍ୟବାନ୍ ଅଳଙ୍କାର ମଧ ହସ୍ତଗତ କରନ୍ତି । ଏ ଭିତରେ ରଡ଼ରିଗୋଙ୍କର ଜ୍ଞାନଚକ୍ଷୁ ଉନ୍ମୀଳିତ ହୋଇଛି । ତାଙ୍କୁ ଯେ ପ୍ରତାରିତ କରାଯାଉଛି, ଏହା ସେ ବୁଝିପାରିଛନ୍ତି । ଡେସ୍‌ଡିମୋନାଙ୍କ ପ୍ରତି ହାତ ବଢ଼ାଇବା ତାଙ୍କର ଘୋର ଅନ୍ୟାୟ - ଏହା ମଧ ସେ ଜାଣିଯାଇଛନ୍ତି । ଇୟାଗୋଙ୍କ ପାଖରୁ ସେ ତାଙ୍କର ଅଳଙ୍କାର ଫେରସ୍ତ ଚାହାନ୍ତି । ଧୂର୍ତ୍ତ ଇୟାଗୋ ତାଙ୍କ ମନକୁ ଅନ୍ୟ ଆଡ଼କୁ ନେଇଯାଆନ୍ତି । ସେ ରଡ଼ରିଗୋଙ୍କୁ ବୁଝାଇ ଦିଅନ୍ତି, ଏବେ ମଧ ବିଳମ୍ବ ହୋଇ ନାହିଁ । ଏବେବି ସେ ଡେସ୍‌ଡିମୋନାଙ୍କର ଅନୁଗ୍ରହ ପାଇପାରନ୍ତି । ଭେନିସ୍‌ରୁ ଆଗତ ସଭାସଦ୍‌ମାନେ ସାଇପ୍ରସ୍‌ରେ ଅଥେଲୋଙ୍କ ପରିବର୍ତ୍ତେ କାସିଓଙ୍କୁ ବସାଇବାକୁ ଚାହାନ୍ତି । ତାହା ଯଦି ହୁଏ, ତେବେ ଡେସ୍‌ଡିମୋନା ଅଥେଲୋଙ୍କୁ ତ୍ୟାଗ କରି କାସିଓ ଆଡ଼କୁ ଢଳିବେ । ରଡ଼ରିଗୋଙ୍କ ଭଳି ଯୋଗ୍ୟଲୋକ ଯଦି ଏଇ ସୁଯୋଗରେ କାସିଓଙ୍କୁ ହତ୍ୟା କରନ୍ତି ତେବେ ତାଙ୍କର ଭାଗ୍ୟ ବଦଳିଯାଇପାରେ । ସେଦିନ ରାତି ବାରଟାରୁ ଗୋଟାଏ ଭିତରେ ସହରର ଏକ ରେସ୍ତୁରାଁରୁ ଭୋଜନ ସାରି କାସିଓ ବାହାରିବେ । ରଡ଼ରିଗୋ ସେତିକିବେଳେ ତାଙ୍କୁ ହତ୍ୟା କରିପାରିବେ । ସାହାଯ୍ୟ ପାଇଁ ସେ ନିଜେ ପାଖାପାଖି ରହିଥିବେ ।

ରାତ୍ରି ଭୋଜନ ପରେ ଲୋଡ଼ୋଭିକୋ ଟିକିଏ ପାଦ ଖେଳାଇବାକୁ ଚାହିଁବାରୁ ଅଥେଲୋ ତାଙ୍କ ସାଙ୍ଗରେ ଯାଆନ୍ତି । ତେବେ ଯିବା ପୂର୍ବରୁ ଶୋଇବା ପାଇଁ ପତ୍ନୀଙ୍କୁ ଆଦେଶ ଦେଇଯାଆନ୍ତି ଏବଂ ପରିଚାରକମାନଙ୍କୁ ଛୁଟି ଦେଇ ଯାଆନ୍ତି । ବିନା ପ୍ରଶ୍ନରେ ଡେସ୍‌ଡିମୋନା ତାଙ୍କର ଆଦେଶ ପାଳନ କରନ୍ତି । ଏମିଲିଆଙ୍କୁ ସମ୍ବାଦଟି ଦେଇ କହନ୍ତି, ମୋର ରାତି ପୋଷାକଟା ଦିଅ । ବର୍ତ୍ତମାନ ତାଙ୍କୁ ଅସନ୍ତୁଷ୍ଟ କରି କୌଣସି ଲାଭ ନାହିଁ ।

- ମୁଁ ହୋଇଥିଲେ ଏଭଳି ସ୍ୱାମୀର ମୁହଁ ଚାହାନ୍ତି ନାହିଁ - ଏମିଲିଆ ଜଣାଇଦିଅନ୍ତି ।

- ମୁଁ ମଧ ନୁହେଁ - ଡେସ୍‌ଡିମୋନା କହନ୍ତି - କିନ୍ତୁ ମୁଁ ଯେ ତାଙ୍କୁ ଭଲପାଏ ,ତାଙ୍କର ସବୁ କିଛି ମାନିନେବାକୁ ମୁଁ ପ୍ରସ୍ତୁତ ।

ବିବାହର ଚାଦର ବିଛଣାରେ ପକାଯାଏ । ଡେସ୍‌ଡିମୋନା ଏମିଲିଆଙ୍କୁ କହନ୍ତି -ମୁଁ ଯଦି ତମ ପୂର୍ବରୁ ମରିଯାଏ , ତେବେ ଏଇ ଚାଦରରେ ମୋତେ ଘୋଡ଼ାଇ ଦେବ ସେ ଯେମିତି ମୃତ୍ୟୁର ପାଦଶବ୍ଦ ଶୁଣିବାକୁ ପାଆନ୍ତି । ତା'ପରେ ସେ ଏମିଲିଆଙ୍କୁ ତାଙ୍କର ଅତୀତ ଜୀବନର ଗଳ୍ପ କହନ୍ତି । କେବେ ମା'ଙ୍କର ଜଣେ ପରିଚାରିକା କରୁଣ ସଙ୍ଗୀତଟିଏ ଗାଇଥିଲା, ସେ କଥା ବର୍ଣ୍ଣନା କରନ୍ତି । ଗୁଣୁଗୁଣୁ ହୋଇ ସେଇ ଗୀତଟିକୁ ଗାଆନ୍ତି । ହଠାତ୍ ଏମିଲିଆଙ୍କୁ ପ୍ରଶ୍ନ କରନ୍ତି -ନାରୀ କ'ଣ କେବେ ତା'ର ସ୍ୱାମୀଙ୍କୁ ପ୍ରତାରଣା କରିପାରେ ? ତମେ କ'ଣ

ଏମିତି କାମ କରିପାରିବ ? ପରିବେଶକୁ ଲଘୁ କରିଦେବା ପାଇଁ ଏମିଲିଆ କହନ୍ତି - ଅନ୍ତତଃ ଦିନର ଆଲୁଅରେ ତ ନୁହେଁ । ତେବେ ରାତିର ଅନ୍ଧାରରେ ହୁଏତ ପାରିବି ।

- ସମଗ୍ର ପୃଥିବୀର ବଦଳରେ ତମେ ତା'ପାରିବ ?

ଏମିଲିଆ ଥଟ୍ଟାରେ କହନ୍ତି- ଏଭଳି ଛୋଟ ଅପରାଧ ପାଇଁ ପୃଥିବୀଟା ଅନେକ ବଡ଼ ।

ଡେସ୍‌ଡିମୋନା ଥଟ୍ଟା ବୁଝିପାରି କହନ୍ତି - ସତ କରି କହ । ମୋର ମନେହୁଏ ତମେ କଦାପି ତାହା କରିପାରିବ ନାହିଁ ।

ଏମିଲିଆ କହନ୍ତି - ସତରେ କହିବାକୁ ଗଲେ ମୋର ମନେହୁଏ ମୁଁ ପାରିଥାଆନ୍ତି । ମୁଦିଟାଏ କିମ୍ବା ଜମିଖଣ୍ଡେ ପାଇଁ ହୁଏତ ନୁହେଁ । ତେବେ ସମ୍ପୂର୍ଣ୍ଣ ପୃଥିବୀ ପାଇଁ ପାରନ୍ତି । ସ୍ୱାମୀକୁ ରାଜା ବାଦ୍‌ଶାହ କରି ଯେଉଁ ନାରୀ ତାହା କରିବ ନାହିଁ , ମୁଁ ତାକୁ ଦୟା କରେ । ପୃଥିବୀରେ ବହୁ ଅବିଶ୍ୱାସିନୀ ନାରୀ ଅଛନ୍ତି, କିନ୍ତୁ ସେଥିପାଇଁ ଦାୟୀ ସେମାନଙ୍କର ସ୍ୱାମୀମାନେ । ସ୍ୱାମୀ ଦୁର୍ବଳ ଚରିତ୍ରର ହେଲେ, ସ୍ତ୍ରୀ ଅବିଶ୍ୱାସିନୀ ହେବ ହିଁ । ସ୍ୱାମୀର ବୁଝିବା ଉଚିତ ସ୍ତ୍ରୀର ମଧ ଅନୁଭୂତି ଅଛି । ସେମାନେ ମଧ ଭଲମନ୍ଦ ବୁଝନ୍ତି । ସ୍ୱାମୀ ଯଦି ସ୍ତ୍ରୀକୁ ଛାଡ଼ି ଅନ୍ୟ ନାରୀ ପ୍ରତି ଆସକ୍ତ ହୁଏ, ତେବେ ସ୍ତ୍ରୀ କ'ଣ କରିବ ? ଜୀବନ କ'ଣ ଗୋଟାଏ ଖେଳ ? ଆମର ପ୍ରେମ ନାହିଁ ? ସେଇ ଖେଳରେ ଆମେ କ'ଣ ଅଂଶୀଦାର ହୋଇପାରିବୁ ନାହିଁ ? ସେମାନେ ଜାଣିବା ଉଚିତ ଯେ, ଆମେ ଯଦି ଖରାପ ହେଉ, ତେବେ ସେଥିପାଇଁ ଦାୟୀ ସେଇମାନେ ।

ଡେସ୍‌ଡିମୋନା ଏମିଲିଆଙ୍କୁ ବିଦାୟ ଦିଅନ୍ତି । ଖରାପକୁ ଗ୍ରହଣ କରିନେବା ବଦଳରେ ସେ ତାକୁ ବଦଳାଇବାକୁ ବରଂ ଚେଷ୍ଟା କରିବେ ବୋଲି କହନ୍ତି ।

॥ ୫ ॥

ରାତିର ଅନ୍ଧାର ଭିତରେ ଇୟାଗୋ ଆଉ ରଡ଼ରିଗୋ ହାତରେ ଅସ୍ତ୍ରଧରି ଅପେକ୍ଷା କରିଛନ୍ତି କାସିଓଙ୍କର ଆଗମନକୁ । ଇୟାଗୋ ଚିନ୍ତା କରନ୍ତି-ଏମାନଙ୍କ ମଧ୍ୟରୁ ଜଣେ କି ଦୁଇଜଣଯାକ ଯଦି ମୃତ୍ୟୁ ବରଣ କରନ୍ତି, ତେବେ ମୋର ଲାଭ ଛଡ଼ା କ୍ଷତି ନାହିଁ । ରଡ଼ରିଗୋ ବଞ୍ଚି ରହିଲେ , ଡେସ୍‌ଡିମୋନା ନାମରେ ଯେଉଁସବୁ ଅଳଙ୍କାର ସେ ଆଣିଛନ୍ତି, ତାକୁ ଫେରାଇବାକୁ ପଡ଼ିବ । କାସିଓ ତ ତାଙ୍କର ଦୁଇ ଆଖିର ବିଷ । ସେ ଗଲେ ଭଲ । ତା'ଛଡ଼ା ସେ ବଞ୍ଚିଥିଲେ ଦିନେନା ଦିନେ ଅଥେଲୋ ସବୁ ଜାଣିବେ ।

କାସିଓଙ୍କୁ ପ୍ରଥମ ଆଘାତ ଦିଅନ୍ତି ରଡ଼ରିଗୋ । ସେ ଆଘାତ କିନ୍ତୁ ବ୍ୟର୍ଥ ହୁଏ । କାସିଓଙ୍କର ଆଘାତରେ ରଡ଼ରିଗୋ ଆହତ ହୁଅନ୍ତି । ଅନ୍ତରାଳରୁ ବାହାରି ଆସି ଇୟାଗୋ ଏଥର କାସିଓଙ୍କୁ ଆଘାତ କରନ୍ତି, 'ଖୁନ୍ ଖୁନ୍, ରକ୍ଷାକର ରକ୍ଷାକର' ବୋଲି କାସିଓ ପାଟି କରି ଉଠନ୍ତି । ତା'ପରେ

ସେ ପଡ଼ିଯାଆନ୍ତି । ଅଥେଲୋ ନିକଟରେ ଥାଆନ୍ତି । କାସିଓଙ୍କର ଚିତ୍କାର ତାଙ୍କ କାନରେ ପଡ଼େ । ସେ ଅନୁମାନ କରନ୍ତି- ଇୟାଗୋ ତା'ର କଥା ରଖିଛି । ଅନ୍ଧାରରେ ସେ ରଡ଼ରିଗୋଙ୍କୁ ଇୟାଗୋ ବୋଲି ଭାବି ପ୍ରଶଂସା କରନ୍ତି ।

ସେ ଚାଲିଯିବା ପରେ ସେଠାକୁ ଆସନ୍ତି ଲୋଡ଼ୋଭିକୋ ଏବଂ ଗ୍ରାସିୟାନୋ । ଆଲୁଅ ନେଇ ଇୟାଗୋ ମଧ ଆସିଯାଆନ୍ତି । କାସିଓ ଏବଂ ରଡ଼ରିଗୋ ଯନ୍ତ୍ରଣାରେ ଛଟପଟ ହେଉ ଥାଆନ୍ତି । ଇୟାଗୋଙ୍କୁ ଦେଖି କାସିଓ କହନ୍ତି - ଯେଉଁ ସଇତାନ୍ ମୋର ଏ ଦଶା କରିଛି, ସେ ନିଶ୍ଚୟ ଏଇ ଆଖପାଖରେ ଅଛି । ସମସ୍ତଙ୍କ ଅଲକ୍ଷ୍ୟରେ ଇୟାଗୋ ସେଇଠି ରଡ଼ରିଗୋକୁ ହତ୍ୟା କରନ୍ତି । ଲୋଡ଼ୋଭିକୋ ପ୍ରଭୃତି କାସିଓଙ୍କ ପାଖକୁ ଆସନ୍ତି ।

ବିଏଙ୍କା ଆସି କାସିଓଙ୍କର ଅବସ୍ଥା ଦେଖି କାନ୍ଦିବାରେ ଲାଗେ । ଇୟାଗୋ ତାକୁ ନାନା କଟୁ କଥା କହି, ଏ ଜଘନ୍ୟ ଘଟଣା ପଛରେ ତା'ର ହାତ ରହିଛି ବୋଲି ଅଭିଯୋଗ କରନ୍ତି । ରଡ଼ରିଗୋର ମୃତଦେହ ଦେଖି ଅବାକ୍ ହେବାର ଛଳନା କରି କିଭଳି ଏ କାଣ୍ଡ ହେଲା ବୋଲି କାସିଓଠାରୁ ଜାଣିବାକୁ ଚାହାନ୍ତି । କାସିଓ କିଛି କହିପାରନ୍ତି ନାହିଁ । ସେ ରଡ଼ରିଗୋଙ୍କୁ ଚିହ୍ନନ୍ତି ନାହିଁ କିମ୍ବା କାହିଁକି ସେ ତାକୁ ମାରିବାକୁ ଆସିଥିଲା, ତାହା ମଧ ଜାଣନ୍ତି ନାହିଁ । ଖବର ଶୁଣି ଏମିଲିଆ ସେଠାରେ ଆସି ପହଞ୍ଚନ୍ତି । ଇୟାଗୋ ପୁନର୍ବାର ବିଏଙ୍କା ପ୍ରତି ନିଜର ସନ୍ଦେହ ପ୍ରକଟ କରନ୍ତି । ଏଠାରେ ଯାହା ଘଟିଯାଇଛି ସେ ସବୁ ଅଥେଲୋ ଆଉ ତାଙ୍କୁ ପତ୍ନୀଙ୍କୁ ଜଣାଇଦେବା ନିମନ୍ତେ ସେ ଏମିଲିଆଙ୍କୁ ପଠାଇ ଦିଅନ୍ତି । ଯୋଜନା ପୂର୍ଣ୍ଣ ହୋଇଛି । ସଫଳତା କିମ୍ବା ବିଫଳତା - ସେଇ ରାତିରେ ହିଁ ଜଣା ପଡ଼ିଯିବ । ମନେ ମନେ ଇୟାଗୋ ଭାବିନିଅନ୍ତି ।

ଡେସ୍‌ଡିମୋନା ନିଜ ଶଯ୍ୟାରେ ସୁପ୍ତ । ହାତରେ ଏକ ଜଳନ୍ତା ମହମବତି ଧରି ଅଥେଲୋ ଆସନ୍ତି । ଏବେ ସେ କ୍ରୁଦ୍ଧ ନୁହନ୍ତି, ପ୍ରତିଶୋଧ ଭାବନାରେ ଉନ୍ମତ୍ତ ନୁହନ୍ତି, କେବଳ ତାଙ୍କ ପ୍ରତି ହୋଇଥିବା ଅନ୍ୟାୟର ପ୍ରତିକାର ଚାହାନ୍ତି । ଭାବନ୍ତି, ଡେସ୍‌ଡିମୋନାକୁ ହତ୍ୟା କରିବାର କାରଣ ଅଛି । ମୁଁ ତା ଦେହରୁ ବିନ୍ଦୁଏ ବି ରକ୍ତ ଝରାଇବି ନାହିଁ । ତା'ର ଏଇ ଶୁଭ୍ର ଆଉ ମସୃଣ ଚର୍ମ ଉପରେ ଟିକିଏ ବି ଦାଗ ପଡ଼ିବ ନାହିଁ । ତଥାପି ତାକୁ ମରିବାକୁ ହେବ । ନ ହେଲେ ବହୁ ପୁରୁଷ ପ୍ରତାରିତ ହେବେ । ଆଲୁଅ ଲିଭିଯାଉ । ଯେଉଁ ଗୋଲାପକୁ ମୁଁ ଛିଣ୍ଡେଇ ଦେବି, ସେ ଆଉ କେବେବି ଫୁଟିବ ନାହିଁ । ତା'ପରେ ମୁଁ ସଦ୍ୟ ପ୍ରସ୍ଫୁଟିତ ଗୋଲାପ ଆଘ୍ରାଣ କରିବି । ଅଥେଲୋ ପତ୍ନୀଙ୍କୁ ଚୁମ୍ବନ କରି କହନ୍ତି- ମୁଁ ତମକୁ ହତ୍ୟା କରିବି । ତା'ପରେ ଭଲ ପାଇବି । ଆଉଥରେ ଶେଷ ଚୁମ୍ବନ କରିବାକୁ ଦିଅ । ତା'ପରେ ମୁଁ କାନ୍ଦିବି । ମୋର ଏଇ ଦୁଃଖ ସହିତ ମିଶିଛି ମଙ୍ଗଳ କାମନା । ତେଣୁ ଯାହାକୁ ଭଲପାଏ, ତାକୁ ହିଁ ଆଘାତ କରୁଛି ।

ଡେସ୍‌ଡିମୋନାଙ୍କର ନିଦ୍ରା ଭଙ୍ଗ ହୁଏ । ସେ ପଚାରନ୍ତି-କିଏ, ଅଥେଲୋ ?

- ହଁ ଡେସ୍‌ଡିମୋନା - ଅଥେଲୋ କହନ୍ତି । ତୁମେ ଆଜି ରାତିରେ ପ୍ରାର୍ଥନା କରିଛ ତ ? ଯଦି କୌଣସି ଅପରାଧ ପାଇଁ ଈଶ୍ୱରଙ୍କୁ କ୍ଷମା ମାଗିବା ବାକି ରହିଯାଇଥାଏ ତେବେ ବର୍ତ୍ତମାନ ସେ କାମଟି ଶେଷ କର ।

- ତମେ କ'ଣ କହୁଛ ?

- ଶୀଘ୍ର ଶେଷ କର । ମୁଁ ଅପେକ୍ଷା କରୁଛି । ତମର ଅପ୍ରସ୍ତୁତ ଆତ୍ମାକୁ ମୁଁ ହତ୍ୟା କରିବି ନାହିଁ ।

- ହତ୍ୟା କଥା କାହିଁକି ଉଠିଲା ?

- କହୁଛି ।

- ତା'ହେଲେ ଈଶ୍ୱର ମୋତେ ଦୟା କରନ୍ତୁ - ଡେସ୍‌ଡିମୋନା କହନ୍ତି । ମୋତେ ବଡ଼ ଡର ଲାଗୁଛି । ତମର ଆଖି ଯେତେବେଳେ ଘୂରେ ତମେ ବଡ଼ ଭୟଙ୍କର ଦେଖାଯାଅ । ଆଉ ଭୟ ବା କରିବି କାହିଁକି ? ମୁଁ ତ କୌଣସି ଅପରାଧ କରି ନାହିଁ । ତଥାପି ମୋର ଭୟ ହେଉଛି ।

- ତମର ପାପ କଥା ଚିନ୍ତା କର । ଅଥେଲୋ କହନ୍ତି ।

- ପାପ ! ତମକୁ ଭଲ ପାଇବା ହିଁ ମୋର ପାପ ।

- ହଁ, ଆଉ ସେଇଥିପାଇଁ ତମକୁ ମରିବାକୁ ହେବ ।

- ଭଲ ପାଇବା ପାଇଁ ହତ୍ୟା ! ଏମିତି କ'ଣ ହୁଏ ?

- ତମେ ଏତେ ଥରୁଛ କାହିଁକି ? ଅଥେଲୋ କହନ୍ତି - ଶାନ୍ତ ହୁଅ ।

- ନିଶ୍ଚୟ । କିନ୍ତୁ କ'ଣ ହୋଇଛି ? ଅଥେଲୋ ପଚାରନ୍ତି - ମୋର ସେଇ ରୁମାଲ୍‌ଟା ତମେ କାସିଓକୁ ଦେଇଛ ?

- ନା'ତ, ଶପଥ କରି କହୁଛି । ତମେ ବରଂ କାସିଓକୁ ଡାକି ପଚାରିପାର ।

- ତମର ମିଥ୍ୟାଚାର ପାଇଁ ହିଁ ତମେ ଆଜି ମୃତ୍ୟୁ ଶଯ୍ୟାରେ ।

- ମୁଁ ତ ବର୍ତ୍ତମାନ ମରିବାକୁ ଚାହେଁନା ।

- ମରିବା ପୂର୍ବରୁ ପାପ ସ୍ୱୀକାର କର । ମରିବାକୁ ତମକୁ ହେବ ହିଁ ।

ଡେସ୍‌ଡିମୋନା କହନ୍ତି- ମୁଁ ତମ ପାଖରେ କୌଣସି ଅପରାଧ କରି ନାହିଁ । କେବେ କାସିଓକୁ ଭଲ ପାଇ ନାହିଁ କିମ୍ବା କୌଣସି ଉପହାର ଦେଇ ନାହିଁ ।

- ମୁଁ କାସିଓ ହାତରେ ମୋର ରୁମାଲ ଦେଖିଛି । ତମେ ମିଥ୍ୟାବାଦୀ । ତମରି ପାଇଁ ମୁଁ ଆଜି ପଥର ହୋଇଯାଇଛି । ହତ୍ୟା ପାଇଁ ତମେ ମୋତେ ବାଧ କରିଛ । ସେ ରୁମାଲ୍ ...

- ରୁମାଲ୍ ସେ ହୁଏତ ପାଇଥିବ - ମୁଁ ତାକୁ କେବେ ଦେଇ ନାହିଁ । ତାକୁ ଡକାଅ - ସେ ସତ କହିବ ।

- ସେ କହିଛି ।

- କ'ଣ କହିଛି ?

- ସେ ରୁମାଲ୍‌ଟା ପାଇଛି ।

- କେମିତି ? କୌଣସି କୁପଥରେ ?

- ହଁ -

- ସେ ଏକଥା କେବେବି କହି ନ ଥିବ ।

- ନା - ସେ ଆଉ କହିବ ନାହିଁ । ତା'ର ମୁହଁ ବନ୍ଦ କରିଦିଆଯାଇଛି ସବୁଦିନ ପାଇଁ । ମୋ ଆଦେଶରେ ଇୟାଗୋ କାମଟା କରିଛି ।

- ତା' ହେଲେ ସେ ମୃତ ? ଡେସ୍‌ଡିମୋନା ଆର୍ତ୍ତନାଦ କରିଉଠନ୍ତି ।

- ବଞ୍ଚିଥିଲେ ପ୍ରତିଶୋଧ ପାଇଁ, ତା'ଦେହର ପ୍ରତିଟି ଲୋମ ମୁଁ ଉପାଡ଼ି ନେଇ ଥାଆନ୍ତି । ଡେସ୍‌ଡିମୋନା କାନ୍ଦୁ କାନ୍ଦୁ କହନ୍ତି - ସେ ପ୍ରତାରିତ ହୋଇଛି । ତା'ସହିତ ମୁଁ ମଧ୍ୟ ।

- ମୋ ଆଗରେ ତମେ ତା' ପାଇଁ କାନ୍ଦୁଛ, ଲଜ୍ଜା ଲାଗୁ ନାହିଁ ? ଅଥେଲୋ ଧମକ୍ ଦିଅନ୍ତି ।

- ମୋତେ ତମେ ନିର୍ବାସନ ଦଣ୍ଡ ଦିଅ - ଜୀବନରୁ ମାର ନାହିଁ । ଡେସ୍‌ଡିମୋନା ଅନୁନୟ କରନ୍ତି ।

- ତମକୁ ମରିବାକୁ ହେବ ।

- ଅନ୍ତତଃ ଆଜି ରାତିଟା ବଞ୍ଚିବାକୁ ଦିଅ

- ନା ...

- ଅଧଘଣ୍ଟା ପାଇଁ...

- ଗୋଟାଏ ମୁହୂର୍ତ୍ତ ପାଇଁ ବି ନୁହେଁ ।

- ତା'ହେଲେ ମୋତେ ପ୍ରାର୍ଥନା କରିବାକୁ କିଛି ସମୟ ଦିଅ ।

ଅଥେଲୋ ସେଥିପାଇଁ ବି ରାଜି ନୁହନ୍ତି । ବିଳମ୍ବ ହୋଇଯାଉଛି । ଅଥେଲୋ ପତ୍ନୀଙ୍କର ଗଳା ଚିପି ଧରନ୍ତି । ଡେସ୍‌ଡିମୋନା କାକୁତି ମିନତି କରୁଥାଆନ୍ତି । ଅଥେଲୋଙ୍କର ହାତ ଆହୁରି ଦୃଢ଼ ହୋଇ ଆସେ ।

ଏମିଲିଆ ବାହାରୁ କବାଟ ବାଡ଼େଇ ଡାକନ୍ତି । ଚିତ୍କାର କରି କହନ୍ତି, ଲର୍ଡ଼,ଜରୁରୀ କଥା ଅଛି । ଶୁଣନ୍ତୁ, ଦରଜା ଖୋଲନ୍ତୁ ।

ଅଥେଲୋ ତାଙ୍କୁ ଅପେକ୍ଷା କରିବାକୁ କହନ୍ତି । ଧରିନିଅନ୍ତି, ସେ ତାଙ୍କୁ କାସିଓର ମୃତ୍ୟୁର ସମ୍ବାଦ ଦେବାକୁ ଆସିଛନ୍ତି । ଡେସ୍‌ଡିମୋନାଙ୍କର ଦେହରେ ତଥାପି ପ୍ରାଣ ରହିଛି ବୋଲି ତାଙ୍କର ମନେହୁଏ । ଏମିଲିଆ ଭିତରକୁ ଆସିଲେ, ନିଶ୍ଚୟ ଏହାଙ୍କ ସହିତ କଥା ହେବାକୁ ଚାହିଁବ । ମୋର ସ୍ତ୍ରୀ! କେଉଁ ସ୍ତ୍ରୀ ? ମୋର ତ ସ୍ତ୍ରୀ ନାହିଁ ।

ଏମିଲିଆ ଦରଜା ଖୋଲିବାକୁ ପୁଣି ଅନୁରୋଧ କରନ୍ତି । ଏଥର ଅଥେଲୋ ଖୋଲିଦିଅନ୍ତି । ଘରେ ପ୍ରବେଶ କରି ଏମିଲିଆ ସହରରେ ହୋଇଥିବା ହତ୍ୟାକାଣ୍ଡର ଖବର ଦିଅନ୍ତି । ରଡ଼ରିଗୋଙ୍କୁ ହତ୍ୟା କରାଯାଇଛି ।

- ରଡ଼ରିଗୋ ମୃତ ? କାସିଓ ବି କ'ଣ ମୃତ ? ଅଥେଲୋ ପ୍ରଶ୍ନ କରନ୍ତି ।

- ନା' ସେ ମରି ନାହିଁ ।

- ଏତିକିବେଳେ ମୃତପ୍ରାୟ ଡେସ୍‌ଡିମୋନା ଆର୍ତ୍ତନାଦ କରି ଉଠନ୍ତି । ତାଙ୍କର ଏଇ ଅବସ୍ଥା ଦେଖି ଏମିଲିଆ ଚିତ୍କାର କରି ଉଠନ୍ତି - ପଚାରନ୍ତି - କିଏ ଏମିତି ଅବସ୍ଥା କରିଛି ?

- କେହିଁ ନୁହେଁ ... ମୁଁ ନିଜେ ହିଁ ନିଜକୁ ହତ୍ୟା କରିଛି - କହୁ କହୁ ଡେସ୍‌ଡିମୋନା ମୃତ୍ୟୁ କୋଳରେ ଢଳି ପଡ଼ନ୍ତି ।

- ତମେ ତ ଶୁଣିଲ ଯେ, ମୁଁ ତାଙ୍କୁ ମାରି ନାହିଁ ... ଅଥେଲୋ କହି ଉଠନ୍ତି ।

ଏମିଲିଆ ଶାନ୍ତ ଭାବରେ କହନ୍ତି - ଶୁଣିଲି - ତେବେ ପ୍ରକୃତ ସତ୍ୟ ମୋର ଜାଣିବା ଦରକାର ।

ବିବେକର ଯନ୍ତ୍ରଣାରେ ଅଥେଲୋ କହିଦିଅନ୍ତି - ଏଥର ବି ସେ ମିଥ୍ୟା କହିଛି । ମୁଁ ତାଙ୍କୁ ହତ୍ୟା କରିଛି ।

ଏମିଲିଆ ଆଖିରେ ଅଥେଲୋଙ୍କ ପ୍ରତି ଘୃଣା ଫୁଟିଉଠେ ।

- ମିଥ୍ୟାବାଦିନୀ ଆଉ ଭ୍ରଷ୍ଟାମାନଙ୍କର ପରିଣତି ଏହାହିଁ - ଅଥେଲୋ ଜଣାଇ ଦିଅନ୍ତି ।

ଏମିଲିଆ ଏ ଅଭିଯୋଗକୁ ଅସ୍ୱୀକାର କରନ୍ତି ।

- କାସିଓ ସହିତ ତା'ର ଅବୈଧ ସମ୍ପର୍କ ଥିଲା - ତମେ ତମର ସ୍ୱାମୀକୁ ପଚାରିପାର ସେ ସବୁ ଜାଣନ୍ତି - ଅଥେଲୋ କହିଯାଆନ୍ତି ।

- ଡେସ୍‌ଡିମୋନା ଆପଣଙ୍କୁ ଠକାଇଛନ୍ତି ବୋଲି ମୋ ସ୍ୱାମୀ କହିଛନ୍ତି ?

- ହଁ କାସିଓ ସହିତ ସମ୍ପର୍କ କାରଣରୁ । ତା' ନ ହୋଇଥିଲେ ପୃଥିବୀର ସମସ୍ତ ସମ୍ପଦ ବିନିମୟରେ ମଧ୍ୟ ମୁଁ ତାକୁ ପରିତ୍ୟାଗ କରି ନ ଥାନ୍ତି ।

- ମୋର ସ୍ୱାମୀ ଏଇ କଥା କହିଲେ - ଏମିଲିଆ ବିମୂଢ଼ ।

- ହଁ - ପ୍ରଥମେ ସେଇତ ଏ ସବୁ ଜାଣି ମୋତେ କହେ- ସେ ଭଲ ଲୋକ - ଏସବୁ ଅନୀତି ସହ୍ୟ କରନ୍ତା କାହିଁକି ?

- ମୋ ସ୍ୱାମୀ ଜଣେ ଭଲ ଲୋକ ! ସେ କହିଛନ୍ତି !

- ବାରମ୍ବାର ଗୋଟାଏ କଥା କହୁଛ କାହିଁକି ? ଅଥେଲୋ ବିରକ୍ତ ହୁଅନ୍ତି ।

- କାରଣ ସେ ମିଛ କହିଛନ୍ତି । ମୁଁ ଆପଣଙ୍କୁ ଭୟ କରେ ନାହିଁ । ଆପଣଙ୍କ ତରବାରିର ମୋର ସାମାନ୍ୟତମ କ୍ଷତି କରିବାର ଶକ୍ତି ନାହିଁ । ଆପଣଙ୍କର ଏଇ କୁକୀର୍ତ୍ତିର କଥା ମୁଁ ଏଇ ମୁହୂର୍ତ୍ତରେ ସମସ୍ତଙ୍କୁ ଜଣାଇବି । ଚିତ୍କାର କରି ଉଠନ୍ତି ଏମିଲିଆ - କିଏ କୋଉଠି ଅଛ ଧାଇଁ ଆସ, ମୁର୍ ଡେସ୍‌ଡିମୋନାକୁ ହତ୍ୟା କରିଛି ।

ଏମିଲିଆଙ୍କର ପାଟିରେ ମନ୍‌ଟାନୋ, ଗ୍ରାସିୟାନୋ, ଇୟାଗୋ ଏବଂ ଅନ୍ୟମାନେ ଛୁଟିଆସନ୍ତି । ସ୍ୱାମୀକୁ ଅନାଇ ଏମିଲିଆ କହନ୍ତି ... ଏଇ ହତ୍ୟାର ଦାୟିତ୍ୱ ତମ ମୁଣ୍ଡ ଉପରେ ଲଦି ଦିଆଯାଇଛି । ପ୍ରମାଣ କର, ତମେ ନିର୍ଦ୍ଦୋଷ ।

ଟିକିଏ ହଡ଼ବଡ଼େଇ ଯାଇ ଇୟାଗୋ କହନ୍ତି - ମୁଁ ଯାହା ଭାବିଛି, କେବଳ ସେତିକି ଅଥେଲୋଙ୍କୁ କହିଛି । ସେ ଯାହା ଭଲ ଭାବିଛନ୍ତି କରିଛନ୍ତି ।

ତମେ କହିଛ, ଡେସ୍‌ଡିମୋନା ବିଶ୍ୱାସଘାତିନୀ !

- କହିଛି ।

- ତମେ ମିଛ କହିଛ । ତମେ କହିଛ କାସିଓ ସହିତ ତାଙ୍କର କୁସମ୍ପର୍କ ଥିଲା ?

- ହଁ ଥିଲା - ଇୟାଗୋ ଧମକ୍ ଦେଇ କହନ୍ତି - ତମେ ଚୁପ୍‌କର ।

- ନା' ଚୁପ୍ ରହିବି ନାହିଁ । ଏଇ ଦେଖନ୍ତୁ ଆପଣମାନେ ... ଡେସ୍‌ଡିମୋନା ତାଙ୍କ ଶଯ୍ୟାରେ ମୃତ ଅବସ୍ଥାରେ ପଡ଼ିଛନ୍ତି । ସମସ୍ତେ ଶିହରି ଉଠନ୍ତି । ଏମିଲିଆ ସ୍ୱାମୀଙ୍କ ଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି କହନ୍ତି । ଏଥିପାଇଁ ଦାୟୀ ତମେ ...

ଅଥେଲୋ ଏମିଲିଆଙ୍କୁ ସମର୍ଥନ କରନ୍ତି ।

ଏମିଲିଆ ଗର୍ଜିଉଠନ୍ତି - ସଇତାନି ... ସବୁ ତମର ସଇତାନି - ମୁଁ ପ୍ରଥମରୁ ସନ୍ଦେହ କରିଥିଲି । ମୁଁ ... ମୁଁ ଆତ୍ମହତ୍ୟା କରିବି ।

- ତମେ କ'ଣ ପାଗଳ ହେଲ ? ମୁଁ ତୁମକୁ ଘରକୁ ଯିବାକୁ କହିଛି - ଇୟାଗୋ କଠିନ ସ୍ୱରରେ କହନ୍ତି ।

- ମୁଁ ଯିବି ... ତେବେ ତମ କଥାରେ ନୁହେଁ । ତମ ଘରକୁ ଫେରିବା ଆଉ ହୁଏତ ସମ୍ଭବ ହେବ ନାହିଁ ।

ଅଥେଲୋ ନିଜର ଭାରସାମ୍ୟ ହରାଇ ବିଛଣାରେ ପଡ଼ିଯାଆନ୍ତି । ତାଙ୍କୁ ଲକ୍ଷ୍ୟ କରି ଏମିଲିଆ କହନ୍ତି - ସେଇଠି ଶୋଇ ଶୋଇ ତମେ କାନ୍ଦ । ତମେ ଏଭଳି ଜଣେ ନିରପରାଧିନୀକୁ ହତ୍ୟା କରିଛ, ଯେ କେବେ ଆଖି ଟେକି କଥା କହୁ ନ ଥିଲେ ।

ଗ୍ରାସିୟାନୋ କହନ୍ତି- ବିଚାରୀ ଡେସ୍‌ଡିମୋନା ! ଭଲ ହୋଇଛି ଯେ, ତାଙ୍କର ବାବାଙ୍କର ମୃତ୍ୟୁ ହୋଇଯାଇଛି । ଏ ବିବାହର ଦୁଃଖ ସେ ସହିପାରିଲେ ନାହିଁ । ବଞ୍ଚିଥିଲେ, ଏଇ ଦୁଃଖ ସେ ସହ୍ୟ କରିପାରି ନ ଥାନ୍ତେ । ପାଗଳ ହୋଇଯାଇଥାଆନ୍ତେ ।

ଅଥେଲୋ ତଥାପି ବିଶ୍ୱାସ କରନ୍ତି ଯେ, ସେ କିଛି ଭୁଲ୍ କରି ନାହାନ୍ତି । ସେ କହନ୍ତି ଘଟଣାଟା ଦୁଃଖର, ଏଥିରେ ସନ୍ଦେହ ନାହିଁ । ତେବେ ଇୟାଗୋ ଜାଣେ, କାସିଓ ସହିତ ତା'ର ଖରାପ ସମ୍ପର୍କ ଥିଲା । କାସିଓ ସେ କଥା ସ୍ୱୀକାର କରିଛି । ମୁଁ ଯେଉଁ ପ୍ରଥମ ଉପହାର ଦେଇଥିଲି, ଡେସ୍‌ଡିମୋନା ତାକୁ କାସିଓକୁ ଦେଇଛି । ସେଇଟା ହେଉଛି ଗୋଟାଏ ରୁମାଲ୍, ଯାହା ମୋର ପିତା ମୋର ମା'ଙ୍କୁ ଦେଇଥିଲେ ।

ଏକଥା ଶୁଣି ଏମିଲିଆ ଚିତ୍କାର କରି ଉଠିବାରୁ ଇୟାଗୋ ତାଙ୍କୁ ଚୁପ୍ କରି ରହିବାକୁ କହନ୍ତି । ଏମିଲିଆ ସେ କଥା ନ ଶୁଣିବାରୁ ସେ ତାଙ୍କ ଆଡ଼କୁ ତରବାରି ନେଇ ଆଗେଇ ଯାଆନ୍ତି । ତେବେ ତାଙ୍କୁ ବାଧା ଦିଅନ୍ତି ଗ୍ରାସିୟାନୋ ।

ଏମିଲିଆ ଟିକିଏ ମାତ୍ର ବିଚଳିତ ନ ହୋଇ କହନ୍ତି - ମୂର୍ଖ ମୁର୍, ସେ ରୁମାଲ୍‌ଟା ପାଇ ମୁଁ ମୋର ସ୍ୱାମୀଙ୍କୁ ଦେଇଥିଲି । କାରଣ ସେ ସେଇଟା ବାରମ୍ବାର ନେଇ ଆସିବାକୁ ମୋତେ କହୁଥିଲେ । ଡେସ୍‌ଡିମୋନା ତାକୁ କାସିଓଙ୍କୁ ଦେଇ ନାହାନ୍ତି ।

ଇୟାଗୋ ଚିତ୍କାର କରି କହନ୍ତି- ତୁ ମିଛ କହୁଛୁ ।

- ଈଶ୍ୱରଙ୍କ ନାମରେ ଶପଥ କରି କହୁଛି, ମୋର କଥା ସତ । ତା'ପରେ ଅଥେଲୋଙ୍କ ଆଡ଼କୁ ଅନାଇ ସେ କହନ୍ତି - ହାୟ ଏଇଭଳି ଅସାମାନ୍ୟା ସ୍ତ୍ରୀକୁ ନେଇ ତମେ ବା ଆଉ କ'ଣ କରିଥାଆନ୍ତ ?

ଅଥେଲୋ ଇୟାଗୋଙ୍କ ଆଡ଼କୁ ଧାଇଁଯାଆନ୍ତି । ମନ୍‌ଟାନୋ ଏବଂ ଅନ୍ୟମାନେ ତାଙ୍କ ହାତରୁ ତରବାରି କାଢ଼ି ନିଅନ୍ତି । ଏ ସବୁ ଭିତରେ ଇୟାଗୋ ନିଜର ତରବାରିକୁ ଏମିଲିଆ ଛାତିରେ ଭୁସିଦେଇ ସେଠାରୁ ପଳାନ୍ତି । ଆହତ ଏମିଲିଆ କହନ୍ତି, ତାକୁ ଯେମିତି ଡେସ୍‌ଡିମୋନାଙ୍କ ପାଖରେ ସମାଧିସ୍ଥ କରାଯାଏ ।

ମନ୍‌ଟାନୋ ଏବଂ ଅନ୍ୟମାନେ ଇୟାଗୋ ପଛରେ ଛୁଟିଯାଆନ୍ତି । ଅଥେଲୋ ନିଜର କୃତକର୍ମ ପାଇଁ ଅନୁତାପ କରନ୍ତି । ଏମିଲିଆ ଡେସ୍‌ଡିମୋନାଙ୍କ ପାଖରୁ ଶୁଣିଥିବା ସେଇ ଶୋକ ସଙ୍ଗୀତଟି ଗାଇଚାଲନ୍ତି । ମୃତ୍ୟୁ ପୂର୍ବରୁ ସେ କହୁଥାଆନ୍ତି - ମୂର୍ଖ ମୁର୍, ସେ ପବିତ୍ର ଥିଲେ, ତମକୁ ଜୀବନ ଦେଇ ଭଲପାଇଥିଲେ ।

ଅଥେଲୋ ଅନୁତାପରେ ଦଗ୍ଧ ହୁଅନ୍ତି । ସେଇ ଘରୁ ସେ ଆଉ ଗୋଟିଏ ତରବାରି ଆଣନ୍ତି । ସେଇଟା ତାଙ୍କର ବହୁ କୀର୍ତ୍ତିକଳାପର ସାକ୍ଷୀ । ତାଙ୍କର ମନେହୁଏ, ସେ ତାଙ୍କ ଯାତ୍ରାପଥର ଶେଷ ବିନ୍ଦୁରେ ପହଞ୍ଚିଯାଇଛନ୍ତି । ଆଜି ଆଉ ତାଙ୍କର କୁଆଡ଼େ ଯିବାର ନାହିଁ । କଠୋର ଶାସ୍ତି ହିଁ ହେଉଛି ତାଙ୍କର ପ୍ରାପ୍ୟ । ଡେସ୍‌ଡିମୋନା - ତମେ ଆଜି କେଉଁଠି ? ଶୋକରେ ସେ ବ୍ୟାକୁଳ ହୋଇ ଉଠନ୍ତି ।

ଲୋଡ଼ୋଭିକୋ, ମନ୍‌ଟାନୋ ଏବଂ ତାଙ୍କର ଅନୁଚରମାନେ ଇୟାଗୋକୁ ବନ୍ଦୀ କରି ନେଇଆସନ୍ତି । ଆହତ କାସିଓଙ୍କୁ ଗୋଟିଏ ଚେୟାରରେ ବସାଇ ସେଠାକୁ ଅଣାଯାଏ । ଅଥେଲୋ ଇୟାଗୋଙ୍କ ଉପରକୁ ଡେଇଁ ପଡ଼ି ତାଙ୍କୁ ଆହତ କରନ୍ତି । ତାଙ୍କ ହାତର ଅସ୍ତ୍ର କାଢ଼ି ନିଆଯାଏ । ଇୟାଗୋ ତଥାପି କହନ୍ତି - ଦେହରୁ ମୋର ରକ୍ତ ଝରୁଛି । ତଥାପି ମୁଁ ମରି ନାହିଁ ।

ଅଥେଲୋ କହନ୍ତି - ସେଥିରେ ମୁଁ ଦୁଃଖିତ ନୁହେଁ । ମୁଁ ତୋତେ ବଞ୍ଚି ରହିବାକୁ ଦେବି । ତେବେ ତା'ଠାରୁ ମୃତ୍ୟୁ ବରଂ ଶ୍ରେୟସ୍କର ।

ଲୋଡ଼ୋଭିକୋ ଅଥେଲୋଙ୍କୁ କହନ୍ତି - ଦିନେ ଆପଣ ଥିଲେ ଜଣେ ମହାନ୍ ବ୍ୟକ୍ତି- ଆଜି ଆପଣଙ୍କୁ କ'ଣ କହିବି ?

- ଯା' ଇଚ୍ଛା କହନ୍ତୁ । ଆପଣ ମୋତେ ସମ୍ମାନନୀୟ ହତ୍ୟାକାରୀ ବୋଲି କହିପାରନ୍ତି । କାରଣ ଏ ଯେଉଁ ହତ୍ୟା, ତାହା ମୁଁ କରିଛି କେବଳ ସମ୍ମାନ ପାଇଁ , କୌଣସି ଘୃଣା କିମ୍ବା ବିଦ୍ୱେଷରୁ ନୁହେଁ । କାସିଓ କହନ୍ତି ଯେ ସେ ଅଥେଲୋଙ୍କ ନିକଟରେ କୌଣସି ଅପରାଧ କରି

ନାହାନ୍ତି । ଅଥେଲୋ ତାହା ସ୍ୱୀକାର କରନ୍ତି ଓ କାସିଓଙ୍କୁ କ୍ଷମା ମାଗନ୍ତି । ଇୟାଗୋଙ୍କୁ ପଚାରନ୍ତି, କାହିଁକି ସେ ତାଙ୍କର ଏଭଳି ସର୍ବନାଶ କଲେ ?

ଇୟାଗୋ କହନ୍ତି - ମୋଠୁ କିଛି ଜାଣିବାକୁ ଚାହିଁବେ ନାହିଁ । ମୁଁ ପଦଟିଏ କହିବି ନାହିଁ । ଆପଣ ଯାହା ଜାଣନ୍ତି, ଜାଣିଥାଆନ୍ତୁ ।

- ତମେ କ'ଣ ପ୍ରାର୍ଥନା ବି କରିବ ନାହିଁ ? ଲୋଡ଼ୋଭିକୋ ତାଙ୍କୁ ପଚାରନ୍ତି । ଗ୍ରାସିୟାନୋ କହନ୍ତି ତମର ମାନସିକ ଯନ୍ତ୍ରଣା ହିଁ ତମକୁ ପ୍ରକଟ କରାଇବ । ମୃତ ରଡ଼ରିଗୋ ପାଖରୁ ମିଳିଥିବା ଚିଠିରୁ କାସିଓଙ୍କର ହତ୍ୟା ଯୋଜନା ସମ୍ପର୍କରେ ଜଣାଯାଏ । ଅଥେଲୋଙ୍କ ପ୍ରଶ୍ନର ଉତ୍ତରରେ କାସିଓ ତାଙ୍କର ରୁମାଲ୍ ପାଇଥିବା ଘଟଣା କହିଯାଆନ୍ତି । ଅଥେଲୋ ନିଜକୁ କହନ୍ତି - ମୂର୍ଖ, ମୂର୍ଖ !

ଲୋଡ଼ୋଭିକୋ ଘୋଷଣା କରନ୍ତି, ଇୟାଗୋକୁ କଠିନ ଶାସ୍ତି ଦିଆଯିବ । ଅଥେଲୋଙ୍କୁ ତାଙ୍କ ସହିତ ଭେନିସ୍ ଫେରିବାକୁ ହେବ । ତାଙ୍କର ସମସ୍ତ କ୍ଷମତା କାଢ଼ି ନିଆଯିବ । କାସିଓ ହେବେ ସାଇପ୍ରସ୍‌ର ଶାସନକର୍ତ୍ତା । ଅଥେଲୋ ତାଙ୍କର ଶାସ୍ତି ସ୍ୱୀକାର କରି ଭେନିସ୍ ପାଇଁ ତାଙ୍କର ସ୍ମରଣୀୟ ଅବଦାନ ବିଷୟ ମନେପକାଇଦେଇ କହନ୍ତି ମୋ ବିଷୟରେ ଯେତେବେଳେ ଦେଶବାସୀଙ୍କୁ ଜଣାଇବେ, ସେତେବେଳେ କିଛି ବାଦ୍ ଦେବେ ନାହିଁ , ବିଦ୍ୱେଷ ରଖି କିଛି କହିବେ ନାହିଁ । ମୁଁ ଡେସ୍‌ଡିମୋନାକୁ ଭଲପାଇଥିଲି, ଏଇ ଦୁଷ୍ଟ ଲୋକର ଚକ୍ରାନ୍ତରେ ସବୁ ହରାଇଛି । ହସ୍ତଗତ ମୂଲ୍ୟବାନ୍ ରତ୍ନକୁ ଅବହେଳାରେ ଫିଙ୍ଗି ଦେଇଛି ।

କହୁ କହୁ ନିଜ ଛାତିରେ ଛୁରୀ ଭୁସି ଦିଅନ୍ତି ଅଥେଲୋ । ମୃତ୍ୟୁ ପୂର୍ବରୁ କହନ୍ତି - ହତ୍ୟାକରିବା ପୂର୍ବରୁ ମୁଁ ଡେସ୍‌ଡିମୋନାକୁ ଚୁମ୍ବନ କରିଥିଲି । ଏବେ ତା'ରି ପାଖରେ ନିଜକୁ ଶେଷ କରୁଛି । ସେ ଡେସ୍‌ଡିମୋନାଙ୍କ ପାଖରେ ଲୋଟି ପଡ଼ନ୍ତି । କାସିଓ କହନ୍ତି - ଏ ଭୟ ମୋର ଥିଲା । ତେବେ ତାଙ୍କ ପାଖରେ କୌଣସି ଅସ୍ତ୍ର ନାହିଁ ବୋଲି ମୋର ଧାରଣା ଥିଲା ।

ଲୋଡ଼ୋଭିକୋ ଇୟାଗୋକୁ କହନ୍ତି - ସ୍ୱାର୍ଥପର କୁକୁର - ଏ ଦୁଇ ମହତ୍ ପ୍ରାଣର ଅକାଳ ମୃତ୍ୟୁ ପାଇଁ ତୁ ହିଁ ଦାୟୀ । ଅଥେଲୋଙ୍କ ସମ୍ପତ୍ତିବାଡ଼ିର ତତ୍ତ୍ୱାବଧାନ କରିବା ନିମନ୍ତେ ସେ ଗ୍ରାସିୟାନୋଙ୍କୁ ନିର୍ଦ୍ଦେଶ ଦିଅନ୍ତି । କାସିଓଙ୍କୁ ଦିଆଯାଏ, ଇୟାଗୋର ଶାସ୍ତିର ଦାୟିତ୍ୱ ।

ଲୋଡ଼ୋଭିକୋ ଭେନିସ୍ ଫେରିଚାଲନ୍ତି ।

# ଐତିହାସିକ



କିଙ୍ଗ ଜନ୍



ରିଚାର୍ଡ୍ ଦି ସେକେଣ୍ଡ



କିଂ ରିଚାର୍ଡ୍ ଦି ଥାର୍ଡ୍

# କିଙ୍ଗ ଜନ୍

ଦ୍ୱିତୀୟ ହେନେରି କେବଳ ଇଂଲଣ୍ଡର ସମ୍ରାଟ୍ ନ ଥିଲେ, ଫ୍ରାନ୍ସର ଗୋଟାଏ ବଡ଼ ଅଂଶ ମଧ୍ୟ ତାଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ପିତାମାତାଙ୍କ ସୂତ୍ରରୁ ସେ ଏଇ ରାଜ୍ୟର ଅଧିକାରୀ ହୋଇଥିଲେ । ବାହାରୁ ଦେଖିବାକୁ ଗଲେ ହେନେରିଙ୍କ ବ୍ୟବହାର ଥିଲା ମାର୍ଜିତ ଏବଂ ଆଚରଣ ଭଦ୍ର-ତେବେ ଭିତରେ ଭିତରେ ସେ ଥିଲେ ଲୋଭୀ,ସ୍ୱାର୍ଥପର, ସ୍ନେହ ମମତାହୀନ ଜଣେ ନିଷ୍ଠୁର ବ୍ୟକ୍ତି । ସେ ଧାର୍ମିକ ନ ଥିଲେ । ତେବେ ନାନା କୁସଂସ୍କାର ଉପରେ ତାଙ୍କର ଗଭୀର ବିଶ୍ୱାସ ଥିଲା । ପିତାଙ୍କର ସ୍ୱଭାବ ତାଙ୍କର ପୁତ୍ରମାନଙ୍କଠାରେ ପ୍ରବର୍ତ୍ତିଥିଲା । ସେମାନେ ପିତାଙ୍କୁ ଘୃଣା କରୁଥିଲେ ଏବଂ ସୁଯୋଗ ପାଇବା ମାତ୍ରେ ତାଙ୍କ ବିରୋଧରେ ଷଡ଼ଯନ୍ତ୍ର କରୁଥିଲେ । ଏମାନଙ୍କ ମଧ୍ୟରେ ଥିଲେ ତାଙ୍କର ପ୍ରିୟ ପୁତ୍ର ଜନ୍ ଏବଂ ଏହାଙ୍କ ଯୋଗୁଁ ତାଙ୍କର ଶେଷ ଜୀବନ ଅତ୍ୟନ୍ତ ଯନ୍ତ୍ରଣାପୂର୍ଣ୍ଣ ହୋଇ ଉଠିଥିଲା । ତାଙ୍କର ଅନ୍ୟ ଏକ ପୁତ୍ର ରିଚାର୍ଡ ମଧ୍ୟ ଫ୍ରାନ୍ସର ରାଜାଙ୍କ ସହିତ ଷଡ଼ଯନ୍ତ୍ର ରଚି ପିତାଙ୍କର ମୃତ୍ୟୁକୁ ତ୍ୱରାନ୍ୱିତ କରିଦେଇଥିଲା । ତା'ପରେ ସେ ହିଁ ସିଂହାସନ ଅଧିକାର କରେ । ପ୍ରଥମ ପୁତ୍ର ବ୍ରିଟାନିର ଡିଉକ୍ ଜିଓଫ୍ରେର ମୃତ୍ୟୁ ହୋଇଯାଇଥିଲା । ଆର୍ଥର ଥିଲା ତା'ର ସନ୍ତାନ ।

ରିଚାର୍ଡ ରାଜତ୍ୱ କରନ୍ତି ଦଶ ବର୍ଷ । ତା' ଭିତରୁ ଇଂଲଣ୍ଡରେ ଥିଲେ ମାତ୍ର ଛ'ମାସ । ସୈନିକ ରୂପେ ସେ ଅତ୍ୟନ୍ତ ସାହସୀ ଥିଲେ ମଧ୍ୟ ରାଜା ହିସାବରେ ସେ ଥିଲେ ଅଧମ । ଯୁଦ୍ଧ ତାଙ୍କ ପାଇଁ ଥିଲା କ୍ରୀଡ଼ାବିଶେଷ । ଏଇ ଖେଳର ବ୍ୟୟଭାର ସମ୍ଭାଳିବାକୁ କର ବୋଝରେ ଇଂଲଣ୍ଡର ପ୍ରଜାମାନେ ତ୍ରାହି ତ୍ରାହି ଡାକୁଥିଲେ । ତାଙ୍କ ସମୟରେ ସେଠାରେ ଶାସନ ବୋଲି କିଛି ନ ଥିଲା । ଇଂଲଣ୍ଡ ତାଙ୍କ ପାଇଁ ଏକପ୍ରକାର ବିଦେଶ ହିଁ ଥିଲା ।

ରିଚାର୍ଡ ଯେତେବେଳେ ବାହାରେ ଯୁଦ୍ଧରତ ଥାଆନ୍ତି, ଜନ୍ ସେତେବେଳେ ଇଂଲଣ୍ଡରେ ରହୁଥାଆନ୍ତି । ସେ ଅତ୍ୟନ୍ତ ଧୂର୍ତ୍ତ ଏବଂ ଜଟିଳ ଚରିତ୍ରର ବ୍ୟକ୍ତି ହୋଇଥିଲେ ମଧ୍ୟ ଇଂଲଣ୍ଡର ଗୁରୁତ୍ୱ ଯଥାର୍ଥ ଭାବରେ ଉପଲବ୍ଧି କରିପାରନ୍ତି । ଦୋଷ ତାଙ୍କର ଅନେକ ଥିଲେ ମଧ୍ୟ ଏ ବ୍ୟାପାରରେ ତାଙ୍କର କୌଣସି ଭୁଲ୍ ହୁଏ ନାହିଁ । ସେହିଁ ଇଂଲଣ୍ଡର ରାଜାମାନଙ୍କୁ ଶିଖାଇଥିଲେ ଆତ୍ମନିର୍ଭରଶୀଳତାର ପ୍ରଥମ ପାଠ । ଅନ୍ୟ ଦେଶ ଆଡ଼େ ନ ଚାହିଁ ନିଜ ଗୋଡ଼ରେ ନିଜେ ଠିଆ ହେବା ଉପରେ ହିଁ ନିର୍ଭର କରେ ଦେଶର ପ୍ରଗତି-ଏ କଥା ସେ ସେମାନଙ୍କୁ ବୁଝାଇଥିଲେ ।

ରିଚାର୍ଡଙ୍କର ମୃତ୍ୟୁ ହୁଏ ଯୁଦ୍ଧକ୍ଷେତ୍ରରେ । ଦେଶରେ ଥାଇ ଜନ୍ ଅନେକ ଦିନରୁ ତାଙ୍କ ବିରୋଧରେ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ । ଏ ସୁଯୋଗ ହାତଛଡ଼ା ନ କରି ସେ ତୁରନ୍ତ ସିଂହାସନ

ଅଧିକାର କରିନେଲେ । ନ୍ୟାୟତଃ, କିନ୍ତୁ ସିଂହାସନ ଉପରେ ତାଙ୍କର କୌଣସି ଅଧିକାର ନ ଥାଏ । ସିଂହାସନର ନ୍ୟାଯ୍ୟ ଉତ୍ତରାଧିକାରୀ ଥିଲେ ତାଙ୍କର ବଡ଼ଭାଇ ଜିଓଫ୍ରେଙ୍କର ପୁତ୍ର ଆର୍ଥର ।

ତେବେ ଜନ୍ ଦେଶରେ ଥାଇ ମାଆଙ୍କର ସମର୍ଥନ ହାସଲ କରିଥିଲେ । ପିତାଙ୍କ ସହିତ ତାଙ୍କର ବିରୋଧ ଥିଲେ ମଧ ସେ ଥିଲେ ମାଆଙ୍କର ଅତ୍ୟନ୍ତ ପ୍ରିୟ । ଇଂଲଣ୍ଡ ଓ ନରମାଣ୍ଡି ତାଙ୍କୁ ସ୍ୱୀକୃତି ଦିଏ । ଦକ୍ଷିଣ ଫ୍ରାନ୍ସର ଗୋଟିଏ ଅଞ୍ଚଳ ତାଙ୍କର ମାଆ ଏଲିନୋର ତାଙ୍କ ପାଇଁ ରଖିଥାଆନ୍ତି ।

ତେବେ ଫ୍ରାନ୍ସର ରାଜା ଆର୍ଥରଙ୍କ ପକ୍ଷ ନିଅନ୍ତି । କେବଳ ଯେ ଧର୍ମ ଆଉ ନ୍ୟାୟ ପାଇଁ ସେ ଆର୍ଥରଙ୍କୁ ସମର୍ଥନ କରନ୍ତି ତାହା ନୁହେଁ । ହୁଏତ ତାଙ୍କର ଧାରଣା ହୋଇଥିଲା, ତାଙ୍କ ରାଜ୍ୟ ସୀମାରେ ଜନ୍‌ଙ୍କ ଭଳି ଜଣେ ନିଷ୍ଠୁର ଲୋକ ଥିବା ଅପେକ୍ଷା ଆର୍ଥରଙ୍କ ଭଳି ଜଣେ ଶାନ୍ତ ଶିଷ୍ଟ ତରୁଣ ରହିଲେ ଭଲ ହେବ । ଯାହାହେଉ, ଆର୍ଥରଙ୍କ ମାଆ ଜନ୍‌ଙ୍କ ଦରବାରକୁ ଦୂତ ପଠାନ୍ତି ।

-ତମର ଦାବି ଯଦି ମୁଁ ଗ୍ରହଣ ନ କରେ, ତେବେ କ'ଣ ହେବ ? ଜନ୍ ଜାଣିବାକୁ ଚାହାନ୍ତି ।

-ଯେଉଁ ଅଧିକାର ଆପଣ ବଳ ପ୍ରୟୋଗ କରି ପାଇଛନ୍ତି ସେଥିରୁ ଆପଣଙ୍କୁ ବଞ୍ଚିତ କରିବା ପାଇଁ ଭୟଙ୍କର ଯୁଦ୍ଧ ହୋଇପାରେ-ଦୂତ ଜଣାଇଦିଅନ୍ତି ।

- ଠିକ୍ ଅଛି । ଆମେ ତେବେ ଯୁଦ୍ଧ ପାଇଁ ପ୍ରସ୍ତୁତ, ଏ ସମ୍ବାଦ ତମେ ଫ୍ରାନ୍ସକୁ ନେଇଯାଅ । ଜନ୍ ଯୁଦ୍ଧ ପାଇଁ ଦ୍ରୁତ ପ୍ରସ୍ତୁତି ଆରମ୍ଭ କରି ଦିଅନ୍ତି । ଏଣେ ପବନ-ପ୍ରତିକୂଳ ହେବାରୁ ଦୂତର ଫ୍ରାନ୍ସ ଫେରିବାରେ ବିଳମ୍ବ ହୁଏ । ଜନ୍ ତା' ପୂର୍ବରୁ ସୈନ୍ୟସଂଗ୍ରହ କରିନେଇ ତାକୁ ଅନୁସରଣ କରନ୍ତି ।

ଫ୍ରାନ୍ସର ସମ୍ରାଟ୍ ଫିଲିପ୍ ତଥା ଆର୍ଥର ଆନ୍‌ଜିୟର୍ସ ସହରର ଦୁର୍ଗ ସାମ୍ନାରେ ସୈନ୍ୟ ସମାବେଶ କରନ୍ତି । ନାଗରିକମାନେ ନିସ୍ପୃହ ରହନ୍ତି । ଏସବୁ ଯୁଦ୍ଧ ବିଗ୍ରହରୁ ସେମାନଙ୍କୁ ବା କ'ଣ ମିଳିବ ? ସେମାନଙ୍କ ପାଇଁ ଏ ଯେମିତି, ଯିଏ ଆସିବେ ସିଏ ବି ସେମିତି । ତେଣୁ ସେମାନେ ନିଜର ନିରାପତ୍ତା ପାଇଁ ନଗରର ପ୍ରବେଶ ପଥ ବନ୍ଦ କରି ରଖିଥିଲେ । ନାଗରିକ ମାନଙ୍କର ଏଇ ଉଦାସୀନତା ଫିଲିପ୍‌ଙ୍କ ପାଇଁ ଅସ୍ୱସ୍ତିକର ହୁଏ । ଆର୍ଥରଙ୍କୁ ସମର୍ଥନ କରିବାକୁ ଫିଲିପ୍‌ଙ୍କ ପାଖରେ ଆସି ଠିଆ ହୁଅନ୍ତି ଲିମୋଗେର ଭିସ୍‌କାଉଣ୍ଟ । ଆର୍ଥର ପରିବାରର ବନ୍ଧୁରୂପେ

ସେ ତାଙ୍କର କର୍ତ୍ତବ୍ୟ ପାଳନ କରୁଥିଲେ । କାରଣ ଏହାଙ୍କ ଦୁର୍ଗରୁ ନିକ୍ଷିପ୍ତ ଏକ ତୀର ହିଁ ରିଚାର୍ଡ଼ଙ୍କ ପ୍ରାଣନାଶର କାରଣ ହୋଇଥିଲା । ଏଥିପାଇଁ ଅବଶ୍ୟ ଅହଙ୍କାର କରିବାର କୌଣସି କାରଣ ନ ଥିଲା । ତଥାପି ଲିମୋଗେ କାନ୍ଧ ଉପରେ ଖଣ୍ଡେ ସିଂହ ଚମଡ଼ା ପକାଇ ଘୂରି ବୁଲୁଥିଲେ ଏବଂ ରିଚାର୍ଡ଼ଙ୍କ ପୁତୁରା ପ୍ରତି ନିଜର ସ୍ନେହର କଥା କହିଯାଉଥିଲେ । ସେ ଏହାକୁ ଖୁବ୍ ଏକ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ବୋଲି ମନେ କରୁଥିଲେ ଏବଂ ଆର୍ଥରଙ୍କୁ ତାଙ୍କର ସାହାଯ୍ୟ ସମ୍ପର୍କରେ ନିଶ୍ଚିତ ରହିବାକୁ ଜଣାଇ ଦେଇଥିଲେ ।

ଫିଲିପ୍ ପ୍ରଥମେ ଆନଜିୟର୍ସ୍ ନଗରର ଏଇ ବିସଦୃଶ ଅବସ୍ଥାକୁ ବାଟକୁ ଆଣିବାକୁ ମନସ୍ଥ କରୁଥିଲେ । ତେବେ ଦୂତଠାରୁ ଖବର ମିଳିଲା ଯେ, ଜନ୍ ଇତିମଧ୍ୟରେ ଇଂଲିଶ୍ ପ୍ରଣାଳୀ ଅତିକ୍ରମ କରିସାରିଲେଣି ଏବଂ ଦ୍ରୁତ ଗତିରେ ତାଙ୍କ ବାହିନୀ ସହିତ ଆନଜିୟର୍ସ୍ ଆଡ଼କୁ ଅଗ୍ରସର ହେଉଛନ୍ତି । ତାଙ୍କ ସାଙ୍ଗରେ ଆସୁଛନ୍ତି-ତାଙ୍କ ମାଆ ଏଲିନୋର, ଭାଣିଜୀ ବ୍ଲାଁଶ ଏବଂ ବିଶାଳ ଏକ ଜନତା ।

ଦୂତ ସତ କଥା କହିଥିଲେ । ଫିଲିପ୍ ସହରର ପାଚେରି ଭାଙ୍ଗିବା ପାଇଁ କମାଣର ମୁହଁ ଘୂରାଇବା ପୂର୍ବରୁ ହିଁ ଜନ୍ ଦଳବଳ ସହିତ ଆସିଯାଆନ୍ତି । କଥାବାର୍ତ୍ତାର ବିଶେଷ କିଛି ନ ଥାଏ-ଫିଲିପ୍ ପ୍ରତ୍ୟକ୍ଷ ରୂପରେ ଇଂଲଣ୍ଡର ସିଂହାସନ ଉପରେ ଆର୍ଥରଙ୍କ ଅଧିକାରକୁ ସମର୍ଥନ କରୁଥାଆନ୍ତି । ସେ ସ୍ପଷ୍ଟ ଭାବେ କହନ୍ତି-ଜିଓଫ୍ରେ ଆପଣଙ୍କର ବଡ଼ଭାଇ ଆଉ ଆର୍ଥର ହେଉଛନ୍ତି ତାଙ୍କର ପୁଅ-ଇଂଲଣ୍ଡ ଉପରେ ଜିଓଫ୍ରେଙ୍କ ପ୍ରଥମ ଅଧିକାର ।

- ଆପଣଙ୍କୁ ଆଇନ୍ ତିଆରି କରିବାର ଅଧିକାର କିଏ ଦେଇଛି ? ଜନ୍ ପ୍ରଶ୍ନ କରନ୍ତି ।

- ସର୍ବଶକ୍ତିମାନ୍ ବିଚାରକ-ଫିଲିପ୍ ଉତ୍ତର ଦିଅନ୍ତି । ଯେ ଆମ ହୃଦୟରେ ଶୁଭ-ଚିନ୍ତାର ସୃଷ୍ଟି କରନ୍ତି, ସେଇ ନ୍ୟାୟ ଓ ବିଚାର ଉପେକ୍ଷିତ ହେଉଥିବାର ଦେଖାଇ ଦିଅନ୍ତି । ସେଇ ବିଚାରକ ମୋତେ ଏଇ ତରୁଣର ଅଭିଭାବକ ନିଯୁକ୍ତ କରିଛନ୍ତି । ତାଙ୍କରି ନିର୍ଦ୍ଦେଶରେ ହିଁ ଆପଣଙ୍କର ଅନ୍ୟାୟ ବିରୋଧରେ ମୋର ଏଇ ଅଭିଯାନ ଏବଂ ତାଙ୍କରି ସାହାଯ୍ୟରେ ହିଁ ମୁଁ ଏହାର ପ୍ରତିକାର ମଧ୍ୟ କରିବି ।

ଆଲୋଚନା ଏଇଠି ଶେଷ ହୋଇପାରିଥାଆନ୍ତା । କିନ୍ତୁ ଏଥର ତର୍କରେ ଅଂଶ ଗ୍ରହଣ କରିବାକୁ ଆଗେଇ ଆସନ୍ତି ଆର୍ଥରଙ୍କର ମାଆ । କଳହରୁ ନିବୃତ୍ତ ରହିବାକୁ ଚେଷ୍ଟା କରନ୍ତି ପାରିବାରିକ ବନ୍ଧୁ ଲିମୋଗେ । ତାଙ୍କୁ ବାଧା ଦିଅନ୍ତି ଜନ୍‌ଙ୍କର ଜଣେ ପୃଥୁଳକାୟ ସେନାନାୟକ ଫାଲକନ୍ ବ୍ରିଜ୍ । ସେ ପୁଣି ହେଉଛନ୍ତି ରବର୍ଟଙ୍କର ପୁତ୍ର ଏବଂ ପିତାଙ୍କ ପରି ସେ ମଧ୍ୟ ଯୁଦ୍ଧଖୋର । ଜଣେ ଖାଣ୍ଟି ଇଂରେଜ ଭଳି ଦେଶକୁ ଭଲ ମଧ୍ୟ ପାଆନ୍ତି । ସୁତରାଂ ଜନ୍ କହିବାମାତ୍ରେ ସେ

ନିଜ ରାଜ୍ୟର ସମ୍ପତ୍ତିବାଡ଼ିର ଦାବି ଛାଡ଼ି ଦେଇ ତାଙ୍କ ସେନାବାହିନୀରେ ଜଣେ ନାଇଟ୍ ଭାବରେ ଯୋଗ ଦିଅନ୍ତି । ଏକ ସମ୍ମାନଜନକ ଆସନ ଲାଭ ହିଁ ହୁଏ ତାଙ୍କର ଆକାଂକ୍ଷା । ତେବେ ତାଙ୍କର ରସବୋଧ ଥିବାରୁ ସେ ଅନ୍ୟ ପାଞ୍ଚଜଣଙ୍କ ଭଳି ଅମାର୍ଜିତ ସୈନିକଟିଏ ହୋଇଯାଆନ୍ତି ନାହିଁ । ଲିମୋଗେ ସିଂହଚର୍ମାବୃତ ହୋଇ ସଦର୍ପ ଘୁରିବୁଲିବା ଦ୍ୱାରା ତାଙ୍କର ସ୍ୱର୍ଗୀୟ ପିତାଙ୍କ ପ୍ରତି ଯେଉଁ ଅସମ୍ମାନ ପ୍ରଦର୍ଶନ କରାଯାଉଛି, ସେ ତା'ର ପ୍ରତିକାର କରିବାର ଚିନ୍ତାରେ ମଧ ଥାଆନ୍ତି ।

ବାଧା ପାଇ ଲିମୋଗେ ଟାଞ୍ଚଲ୍ୟ ପ୍ରକାଶ କରି କହନ୍ତି-ଏ ଲୋକଟା ପୁଣି କିଏ ?

- ମୁଁ କିଏ ତାହା ତୁରନ୍ତ ଜାଣିବେ । ମୁଁ ଆପଣଙ୍କର ଚମଡ଼ାଟାକୁ ଠିକ୍ କରିଦେବି । ଲିମୋଗେ ତାଙ୍କର ବ୍ୟଙ୍ଗବିଦ୍ରୂପର ଶରବ୍ୟ ହୋଇ ଅସ୍ଥିର ହୋଇପଡ଼ନ୍ତି । ଜନ୍‌ଙ୍କ ସହିତ ଥିବା ନାରୀବାହିନୀ ମଧ ଏଇ ମଜାର ଖେଳରେ ମାତିଯାଆନ୍ତି । ଲିମୋଗେଙ୍କୁ ସିଂହ ଚର୍ମାବୃତ-ଗର୍ଦ୍ଦଭର ଆଖ୍ୟା ଦେଇ ଫଲକନ୍ ବ୍ରିଜ୍ କହନ୍ତି-'ଗର୍ଦ୍ଦଭ, ଏଥର ତମର ଭାର କମାଇ ଦେଉଛି । ତା' ବଦଳରେ ବୋହିପାରିବା ଭଳି କିଛି ବାଛି ନିଅ ।' ଲିମୋଗେଙ୍କ ବିରକ୍ତି ବଢ଼ିଯାଏ ।

ଫିଲିପ୍ ଏଇ ଅଯଥା ବାକ୍‌ବିତଣ୍ଡା ବନ୍ଦ କରିବାକୁ ଆଦେଶ ଦେଇ ଜନ୍‌ଙ୍କୁ କହନ୍ତି-ଆପଣ ଅସ୍ତ୍ର ଶସ୍ତ୍ର ଛାଡ଼ି ସିଂହାସନର ଦାବି ପ୍ରତ୍ୟାହାର କରିନେବାକୁ ପ୍ରସ୍ତୁତ କିମ୍ବା ନାହିଁ ସ୍ପଷ୍ଟ କହନ୍ତୁ । 'ଜୀବନରେ ଥିବା ପର୍ଯ୍ୟନ୍ତ ନୁହେଁ ।' ଜନ୍ ଉତ୍ତର ଦିଅନ୍ତି । ତା' ପରେ ଆର୍ଥରଙ୍କୁ ଆତ୍ମସମର୍ପଣ କରିବା ନିମନ୍ତେ ନିର୍ଦ୍ଦେଶ ଦିଅନ୍ତି । ତାଙ୍କୁ କହନ୍ତି, କ୍ଷତି ପୂରଣ ହିସାବରେ ସେ ତାଙ୍କୁ ଯାହା ଦେବେ, ଫ୍ରାନ୍ସ ତାହା କଦାପି ଦେଇପାରିବେ ନାହିଁ । ଏଲିନୋର ମଧ ପୁତ୍ରକୁ ସମର୍ଥନ କରନ୍ତି । ଉତ୍ତରରେ ଆର୍ଥର-ଜନନୀ ବ୍ୟଙ୍ଗ କରି ସମଗ୍ର ରାଜ୍ୟକୁ ପିତାମହୀଙ୍କ ଚରଣରେ ନିବେଦନ କରି ପ୍ରତିବଦଳରେ ତାଙ୍କଠାରୁ ମିଷ୍ଟାନ୍ନ ଗ୍ରହଣ କରିନେବାକୁ ପୁତ୍ରକୁ ପରାମର୍ଶ ଦିଅନ୍ତି ।

ଦୁଇ ମହିଳା ପ୍ରଚଣ୍ଡ କଳହରେ ଲାଗିଯାଆନ୍ତି । ଫିଲିପ୍ ଅତି କଷ୍ଟରେ ସେମାନଙ୍କୁ ତହିଁରୁ ବିରତ କରାଇ ଶିଙ୍ଗାବାଦନ ଦ୍ୱାରା ଆନଜିୟର୍ସର ନାଗରିକମାନଙ୍କୁ ଆହ୍ୱାନ କରିବାର ନିର୍ଦ୍ଦେଶ ଦିଅନ୍ତି । ନଗର-ପ୍ରାଚୀର ଉପରେ ଦଣ୍ଡାୟମାନ ନାଗରିକମାନଙ୍କୁ ଜନ୍ ଓ ଫିଲିପ୍ ପାଳି କରି ପକ୍ଷ-ସମର୍ଥନ ସମ୍ପର୍କରେ ଶୀଘ୍ର କୌଣସି ସିଦ୍ଧାନ୍ତ ଗ୍ରହଣ କରିନେବାକୁ ପରାମର୍ଶ ଦେବା ସହିତ ଭୟ ପ୍ରଦର୍ଶନ ମଧ କରନ୍ତି । ନାଗରିକମାନେ ସ୍ପଷ୍ଟ କହିଦିଅନ୍ତି ପ୍ରଥମେ ଦୁଇ ପକ୍ଷ ମଧ୍ୟରେ ଶକ୍ତିଶାଳୀ ପକ୍ଷଟିକୁ ସେମାନେ ଜାଣିବା ଦରକାର । ତା'ପରେ ସେଇ ଅନୁସାରେ ସେମାନେ କେଉଁ ପକ୍ଷରେ ଯୋଗ ଦେବେ ତା'ର ସିଦ୍ଧାନ୍ତ ନେବେ । ଦୁଇ ପକ୍ଷ ଅଗତ୍ୟା ଯୁଦ୍ଧପାଇଁ ପ୍ରସ୍ତୁତି ଆରମ୍ଭ କରିଦିଅନ୍ତି ।

ଯୁଦ୍ଧ କିନ୍ତୁ ଶେଷ ହୁଏ ଅମୀମାଂସିତ ଭାବେ । ଦୁଇପକ୍ଷ କୌଣସି ନା କୌଣସି ଯୁଦ୍ଧରେ ସାଫଲ୍ୟ ଦାବି କରୁଥିଲେ ମଧ୍ୟ ନାଗରିକମାନେ କୌଣସି ପକ୍ଷ ଅପରପକ୍ଷଠାରୁ ସୁବିଧାଜନକ ସ୍ଥିତିରେ ଥିବାର ସ୍ୱୀକାର କରନ୍ତି ନାହିଁ । ସହରର ଦରଜା ପୂର୍ବପରି ବନ୍ଦ ରହେ ।

ଏଥର ଫଲକନ୍ ବ୍ରିଜ୍ ଅନ୍ୟ ଏକ କୌଶଳ ସ୍ଥିର କରନ୍ତି । ସେ ପ୍ରଥମେ ଦୁଇ ପକ୍ଷ ମିଳିତ ଭାବେ ସହରର ସମସ୍ତ ପ୍ରତିରୋଧ ଭାଙ୍ଗି ଭିତରକୁ ପ୍ରବେଶ କରିବାର ପ୍ରସ୍ତାବ ଦିଅନ୍ତି । ପାରସ୍ପରିକ ଯୁଦ୍ଧ ତା'ପରେ କରାଯାଇପାରେ । ଏକପ୍ରକାର ବାଧ୍ୟ ହୋଇ ଦୁଇ ପକ୍ଷ ତାଙ୍କର ପରାମର୍ଶ ଗ୍ରହଣ କରିନିଅନ୍ତି । ଏତେବେଳଯାଏ ଆନଜିୟର୍ସର ନାଗରିକମାନେ ସବୁଠାରୁ ସହଜ ପଥଟିକୁ ଗ୍ରହଣ କରିନେଇ ନୀରବରେ କେବଳ ଅପେକ୍ଷା କରୁଥିଲେ । ଏଥର ସେମାନେ ବୁଝିପାରନ୍ତି ଯେ, ସେମାନଙ୍କୁ ମଧ୍ୟ କୌଣସି ଉପାୟ ଚିନ୍ତା କରିବାକୁ ହେବ । ନଚେତ୍ ଦୁଇ ମିଳିତ ବାହିନୀର ଆକ୍ରମଣରେ ଆନଜିୟର୍ସର ଭବିଷ୍ୟତ୍ ଅନ୍ଧକାର ହୋଇଯିବ । ସହରର ବୁଦ୍ଧିମାନ ମୁଖପାତ୍ରଜଣକ ବୁଝାଇ ଦିଅନ୍ତି - ଆମର ପ୍ରକୃତ ସମସ୍ୟା ଜନ୍ କିମ୍ବା ଆର୍ଥରଙ୍କ ଭିତରୁ ଜଣକୁ ବାଛି ନେବା ନୁହେଁ । ବରଂ ଫିଲିପ ଆଉ ଜନ୍‌ଙ୍କ ସୈନ୍ୟ ଦଳ ମଧ୍ୟରୁ ଗୋଟିକୁ ବାଛିବା । ଅନ୍ତିମ ଲକ୍ଷ୍ୟ କିନ୍ତୁ ରହିବ ଉଭୟ ପକ୍ଷର ସୈନ୍ୟମାନଙ୍କୁ ଗୋଟିଏ ଦଳକୁ ନେଇ ଆସିବା ।

ମୁଖପାତ୍ରଜଣକ ବିସ୍ତାରିତ କରି କହନ୍ତି-ଦେଖନ୍ତୁ ଗୋଟିଏ ପକ୍ଷରେ ଅଛନ୍ତି ଲେଡ଼ି ବ୍ଲାଁଶ-ଇଂଲଣ୍ଡ ସମ୍ରାଟ୍‌ଙ୍କର ଖୋଦ୍ ଭାଗିନେୟୀ । ଅନ୍ୟ ପକ୍ଷରେ ଅଛନ୍ତି ଫ୍ରାନ୍ସର ଯୁବରାଜ ଲୁଇ । ଏଭଳି ଭଲ ଯୋଡ଼ି ଆଉ କୋଉଠି ମିଳିବ ? ସେମାନଙ୍କ ମଧ୍ୟରେ ମିଳନ କରି ଦିଆଯାଉ । ପରିଣାମରେ ଆପଣମାନେ ମଧ୍ୟ ଆପେ ଆପେ ପରସ୍ପର ସହିତ ମିଳିତ ହେବେ । ଏ ଉଭୟ ସ୍ରୋତର ମିଳନ ଦୁଇ ଦେଶକୁ ଗୌରବ ଦୀପ୍ତ କରିବ ।

ଏ ପ୍ରସ୍ତାବଟି ଥିଲା ଏକ ନିର୍ଲଜ୍ଜ ପ୍ରସ୍ତାବ । ତେବେ ଯେଉଁମାନେ ଏହାକୁ ଶୁଣୁଥିଲେ, ସେମାନେ ମଧ୍ୟ ଥିଲେ ସେହି ଶ୍ରେଣୀର । ବକ୍ତାଙ୍କର ବାଚନଭଙ୍ଗୀ ସେମାନଙ୍କୁ ନିଜ ସହିତ ଭସାଇ ନିଏ ।

ସେ କହିଯାଆନ୍ତି-ଦୁଇ ପାତ୍ରପାତ୍ରୀ ମଧ୍ୟରେ ବିବାହ ବ୍ୟବସ୍ଥା କରନ୍ତୁ । ସେଇଟା ହେବ ପ୍ରକୃତରେ ଆମ ଉପରେ ଆକ୍ରମଣ କରିବା ଅପେକ୍ଷା ବଡ଼ କାମ । ଏହା ନ ହେବା ପର୍ଯ୍ୟନ୍ତ କୌଣସି ପକ୍ଷର କିଛି ଲାଭ ହେବ ନାହିଁ ।

ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ବ୍ୟବସ୍ଥା ପ୍ରତି ଫଲକନ୍ ବ୍ରିଜ୍‌ଙ୍କର ଅନିଚ୍ଛା ଥାଏ । ସବୁଠାରୁ ବଡ଼ କଥା-ଏଇ ଲେଡ଼ି ବ୍ଲାଁଶଙ୍କୁ ଦେଖିବା ମାତ୍ରେ ତାଙ୍କର ଛାତି ଭିତରଟା

ଟିକିଏ କେମିତି କେମିତି ହୋଇଯାଉଥାଏ । ତେଣୁ ସେ ଏଇ ବୈବାହିକ ପରିକଳ୍ପନାର ତୀବ୍ର ବିରୋଧ କରନ୍ତି । ତେବେ ଶ୍ରୋତାଙ୍କର ମନୋଯୋଗ ଦେଖି ବକ୍ତା ଉତ୍ସାହିତ ହୋଇ ଉଠନ୍ତି । ପ୍ରଥମେ ଏଲିନୋର୍ ତାଙ୍କ ପୁତ୍ରକୁ ପ୍ରସ୍ତାବଟିକୁ ଗ୍ରହଣ କରିନେବା ନିମନ୍ତେ ପରାମର୍ଶ ଦିଅନ୍ତି । ଫିଲିପ୍ ଟିକିଏ ଦ୍ୱିଧାରେ ପଡ଼ିଯାଆନ୍ତି । ସେ ତାଙ୍କର ଉପଦେଷ୍ଟାମାନଙ୍କ ସହିତ ଗୋପନରେ ପରାମର୍ଶ କରନ୍ତି ।

- ଆମେ ମହାନ୍ ସମ୍ରାଟ୍‌ଙ୍କର ଉତ୍ତର ଜାଣିବାକୁ ଚାହୁଁ । ପ୍ରାଚୀର ଉପରୁ ସମ୍ମିଳିତ କଣ୍ଠସ୍ୱର ଭାସି ଆସେ ।

- 'ପ୍ରଥମେ ଇଂଲଣ୍ଡ ତା'ର ମତାମତ ଜଣାଉ ।' ଫିଲିପ୍ କହନ୍ତି । ଜନ୍‌ଙ୍କର ଉତ୍ତର କିନ୍ତୁ ତତ୍‌କ୍ଷଣାତ୍ ଆସେ । ସେ ପ୍ରସ୍ତାବଟିକୁ ଗ୍ରହଣ କରିନେଇ ଫ୍ରାନ୍ସର କେତୋଟି ସହରକୁ ଯୌତୁକ ହିସାବରେ ନିର୍ଦ୍ଦିଷ୍ଟ କରି ଦିଅନ୍ତି । ତରୁଣ-ଯୁଗଳ ମଧ୍ୟ ଏଇ ପ୍ରସ୍ତାବରେ ସେମାନଙ୍କର ସମ୍ମତି ଜଣାଇ ଦିଅନ୍ତି । ଆନଜିୟର୍ସ ସହରର ଦରଜା ଖୋଲି ଦିଆଯାଏ । ଜିଓଫ୍ରେଙ୍କର ବିଧବା ଏବଂ ତାଙ୍କ ପୁତ୍ରଙ୍କ ପ୍ରତି ଅନ୍ୟାୟ କରାଯାଉଛି ବୋଲି ଫିଲିପ୍ ଅନୁଶୋଚନା କରିବାକୁ ଆରମ୍ଭ କରନ୍ତି । ଜନ୍ କିନ୍ତୁ ତାଙ୍କୁ ତହିଁରୁ ନିବୃତ୍ତ କରାଇ ଦିଅନ୍ତି । କହନ୍ତି -ଆର୍ଥର ପାଇଁ ଚିନ୍ତା କରନ୍ତୁ ନାହିଁ । ତାକୁ ମୁଁ ବ୍ରିଟାନୀର ଡ୍ୟୁକ୍ ଆଉ ରିଚମଣ୍ଡର ଆର୍ଲ କରି ଦେଉଛି । ତା' ଛଡ଼ା ସେ ହେବ ଏଇ ରମଣୀୟ ନଗରୀର ଅଧିପତି । ଆମେ ଯଦିଓ ଲେଡ଼ି କନ୍‌ଷ୍ଟାନ୍ସଙ୍କ ସବୁ ଦାବି ପୂରଣ କରିପାରୁ ନାହୁଁ ତଥାପି ସେ ଯେମିତି ହତାଶ ହୋଇ ନ ପଡ଼ନ୍ତି, ତା' ଆମେ ଦେଖିବୁ । ସମସ୍ତେ ଚୁକ୍ତି ସମ୍ପାଦନ ନିମନ୍ତେ ନଗର ମଧ୍ୟକୁ ପ୍ରବେଶ କରନ୍ତି । କେବଳ ଯୁଦ୍ଧଖୋର ସୈନିକ ଫଲକନ୍ ବ୍ରିଜ୍ ଏକା ଏକା ଠିଆହୋଇ ଭାବିବାକୁ ଲାଗନ୍ତି ସ୍ୱାର୍ଥପରତାର ଶକ୍ତି ଏତେ ଅଧିକ ଯେ, ତା' ନିକଟରେ ଯୁକ୍ତି, ଶପଥ, ବିବେକ ଇତ୍ୟାଦି ସବୁ ତୁଚ୍ଛ ହୋଇଯାଏ । ଅବଶ୍ୟ ତାଙ୍କର ମନ ଖରାପ ହେବାର ଅନ୍ୟ କାରଣ ମଧ୍ୟ ଥାଏ ।

ଫରାସୀ ରାଜାଙ୍କର ଶିବିରରେ ଲେଡି କନ୍‌ଷ୍ଟାନ୍ସ ତାଙ୍କର ପୁତ୍ରକୁ ନେଇ ଉପସ୍ଥିତ ଥାଆନ୍ତି । ତାଙ୍କ ପାଖକୁ ଏଇ ଖରାପ ଖବରଟିକୁ ନେଇଆସିବାର ଦାୟିତ୍ୱ ଦିଆଯାଇଥାଏ ସାଲିସ୍‌ବରିର ଆର୍ଲଙ୍କୁ । ସମ୍ବାଦ ଶୁଣି ଲେଡି ଚିତ୍କାର କରି ଉଠନ୍ତି । ତହିଁରେ ମିଶିଥାଏ ଅନେକ କ୍ରୋଧ ଆଉ ଦୁଃଖ । ବିବାହ ପୁଣି ସନ୍ଧି ! ଲେଡି ନିଜର କାନକୁ ଯେମିତି ବିଶ୍ୱାସ କରିପାରୁ ନ ଥାନ୍ତି । ପ୍ରଥମେ କ୍ରୁଦ୍ଧ ଭାବରେ ଆର୍ଲଙ୍କ ଆଡ଼କୁ ଅନାନ୍ତି, ତା'ପରେ ପୁତ୍ରକୁ ଆଉଁଶି ପକାଇ ଦୁଃଖରେ ଭାଙ୍ଗି ପଡ଼ନ୍ତି । ସାଲିସ୍‌ବରିର ଆର୍ଲଙ୍କ ଆଡ଼କୁ ଅନାଇ କହନ୍ତି ଆପଣ ଯାଆନ୍ତୁ, ମୁଁ ଟିକିଏ ନିର୍ଜନରେ ରହିବାକୁ ଚାହେଁ । ମୋତେ କ୍ଷମା କରିବେ । ବିନୀତ ଭାବରେ ଜଣାନ୍ତି ଆର୍ଲ -ଆପଣଙ୍କୁ ସାଙ୍ଗରେ ନେଇଯିବାକୁ ମୋତେ ଆଦେଶ ହୋଇଛି ।

- ଆପଣ ଏକା ଫେରିବେ, ମୁଁ ଆସୁ ନାହିଁ । ଲେଡ଼ି ଜଣାଇ ଦିଅନ୍ତି । ଶୋକ ସହିତ ମୋ ଭିତରେ ବି ଅହଙ୍କାର ରହିଛି । ମୁଁ ଏଇଠି ରହିଲି... ଏଇ ମୋର ସିଂହାସନ, ଦୁଇ ରାଜା ଆସନ୍ତୁ ଏବଂ ମୋ ପାଖରେ ମଥା ନୁଆଁନ୍ତୁ ।

ଦୁଇ ରାଜା ବରକନ୍ୟା ଓ ଅନ୍ୟାନ୍ୟ ଅଭ୍ୟାଗତଙ୍କୁ ନେଇ ଶିବିରକୁ ଫେରିଆସନ୍ତି । ଦେଖନ୍ତି ଲେଡି ସେମିତି ଗୋଟିଏ ଜାଗାରେ ପୂର୍ବଭଳି ବସିରହିଛନ୍ତି । ସେମାନଙ୍କୁ ଦେଖି ସେ ଅଭିଶାପ ବର୍ଷଣ କରିବାକୁ ଆରମ୍ଭ କରିଦିଅନ୍ତି । ଲିମୋଗେ ତାଙ୍କୁ ବୁଝାଇବାକୁ ଚେଷ୍ଟା କରି ଗାଳିମନ୍ଦର ପ୍ରଚଣ୍ଡ ତୋଡ଼ରେ କାହିଁକୁଆଡ଼େ ଭାସିଯାଆନ୍ତି । ଲେଡି ତଥାପି ଛାଡ଼ନ୍ତି ନାହିଁ । ବିଦ୍ରୂପ କରି କହନ୍ତି-ତମେ ପୁଣି ସିଂହ ଚର୍ମ ପରିଧାନ କରିଛ ! ତା' ଅପେକ୍ଷା ଖଣ୍ଡେ ବାଛୁରୀର ଚମଡ଼ା ଯୋଗାଡ଼ କରି ଦେହରେ ଝୁଲାଅ -

ଆପଣ-ଆପଣ ଯଦି ପୁରୁଷ ହୋଇଥାଆନ୍ତେ ତେବେ ଦେଖିନେଇଥାଆନ୍ତି-ଲିମୋଗେ ରାଗରେ ଗରଗର ହେବାରେ ଲାଗନ୍ତି । ତେବେ ତାଙ୍କ ପାଖରେ ଠିଆହୋଇ ଫଲକନ୍ ବ୍ରିଜ୍ ମଧ ଲେଡିଙ୍କ କଥାର ପୁନରାବୃତ୍ତି କରନ୍ତି ।

-ସଇତାନ ! ଲିମୋଗେ ଗର୍ଜନ କରି ଉଠନ୍ତି-ଯଦି ପ୍ରାଣର ମାୟା ଥାଏ, ତେବେ ଏସବୁ କଥା କହିବା ବନ୍ଦ କର । ଫଲକନ୍ ବ୍ରିଜ୍ କିନ୍ତୁ ଧୀରେ ସୁସ୍ଥେ ସେଇ କଥା କହିଚାଲନ୍ତି । ଜନ୍ ଉଭୟଙ୍କୁ ବୁଝାଇବାରେ ଲାଗି ପଡ଼ନ୍ତି । ଏତିକିବେଳେ ସେଠାରେ ଉପସ୍ଥିତ ହୁଏ, ପୋପ୍ ତୃତୀୟ ଇନୋସେଣ୍ଟଙ୍କର ଦୂତ । ପୋପ୍ ଜନ୍‌ଙ୍କ ଉପରେ ଅତ୍ୟନ୍ତ କ୍ରୁଦ୍ଧ ହୋଇଛନ୍ତି, ଦୂତ ଜଣାଏ । କାଣ୍ଟରବରିର ପ୍ରାକ୍ତନ ଆର୍ଚବିଶପ୍ ହ୍ୟୁବର୍ଟ ୱାଲଟରଙ୍କ ମୃତ୍ୟୁ ପରେ ଜନ୍ କ୍ରାଇଷ୍ଟଚର୍ଚ୍ଚର ସନ୍ନ୍ୟାସୀମାନଙ୍କ ମଧ୍ୟରୁ ନିଜ ପସନ୍ଦର ଲୋକ ନର ଉଇଚ୍‌ର ବିଶପ୍ ଡିଗ୍ରେଙ୍କୁ ପ୍ରଧାନ ରୂପରେ ଗ୍ରହଣ କରି ନେଇଥିଲେ, ପୋପ ଇନୋସେଣ୍ଟ କିନ୍ତୁ ନିର୍ବାଚନକୁ ଏଡ଼ାଇ ଷ୍ଟିଫେନ୍ ଲ୍ୟାଙ୍ଗ୍‌ଟନ୍ ନାମକ ଯାଜକଙ୍କୁ ଆର୍ଚ୍ଚବିଶପ ପଦରେ ଅଭିଷିକ୍ତ କରନ୍ତି । ଜନ୍ ଷ୍ଟିଫେନ୍‌ଙ୍କୁ ଇଂଲଣ୍ଡରେ ପାଦରଖିବାକୁ ଦିଅନ୍ତି ନାହିଁ । କ୍ରାଇଷ୍ଟଚର୍ଚ୍ଚର ସମସ୍ତ ଯାଜକଙ୍କୁ ବିତାଡ଼ିତ କରିନ୍ତି । ସେମାନଙ୍କ ବାସସ୍ଥାନରେ ଦଳେ ସୈନ୍ୟଙ୍କୁ ରଖାଇ ଦିଅନ୍ତି । ସେମାନଙ୍କର ସମସ୍ତ ଜମିବାଡ଼ିକୁ ମଧ ବାଜ୍ୟାପ୍ତ କରି ଦିଅନ୍ତି । ନିଜ ବହିଷ୍କାରର ଆଶଙ୍କା କରି ଇନୋସେଣ୍ଟ ଦୂତ ପଠାଇ ଜନ୍‌ଙ୍କର ଆତ୍ମସମର୍ପଣର ଦାବି ଜଣାନ୍ତି । ଜନ୍ ପ୍ରଚଣ୍ଡ ରାଗି ଯାଆନ୍ତି । ସମ୍ରାଟ୍‌ଙ୍କୁ ପ୍ରଶ୍ନ କରିବାର ଅଧିକାର ତାଙ୍କୁ କିଏ ଦେଲା-ଏହା ପଚାରି ଦୂତଙ୍କୁ କହନ୍ତି ତମେ ତାଙ୍କୁ କହିଦେବ, ଏହାପରେ ଇଟାଲୀର କୌଣସି ଯାଜକ ଇଂଲଣ୍ଡ ସୀମା ଭିତରୁ କର ବା ଟୋଲ ଆଦାୟ କରିପାରିବେ ନାହିଁ । ଈଶ୍ୱରଙ୍କ ଅଧୀନରେ ଆମେ ସର୍ବୋଚ୍ଚ ସ୍ଥାନର ଅଧିକାରୀ । ତାଙ୍କ ଅଧୀନରେ ଥାଇ ଆଉ କୌଣସି ପୋପ୍‌ଙ୍କର ସହାୟତା ଆମର ଦରକାର ନାହିଁ ।

ପୋପ୍‌ଙ୍କୁ ଅସ୍ୱୀକାର କରିବାର ଦେଖି ବିସ୍ମିତ ଓ ଆହତ ଫିଲିପ୍ ଜନ୍‌ଙ୍କୁ କହନ୍ତି- ଭାଇ,ଏହା ଯେ ଈଶ୍ୱରଙ୍କର ଅବମାନନା !

- ମୁଁ ଈଶ୍ୱରଙ୍କୁ ଅପମାନ ଦେଉଛି ? ଜନ୍ ପ୍ରତିବାଦ କରନ୍ତି । ଏ ପୁରୋହିତ ଆପଣଙ୍କୁ ଓ ଆପଣଙ୍କ ଭଳି ଅନ୍ୟମାନଙ୍କୁ ଭୁଲ୍ ବୁଝାଉଛନ୍ତି । ପ୍ରକୃତରେ ଏମାନେ ଲୋକଙ୍କ ଭିତରେ ଦୈବ ଅନୁଗ୍ରହ ବିକ୍ରି କରି ଅର୍ଥ ଉପାର୍ଜନ କରୁଛନ୍ତି । ଆପଣ ଏବଂ ଅନ୍ୟମାନେ ଏଇ ଝାଡ଼ଫୁଙ୍କ ଜାଣିଥିବା ମଣିଷଟିକୁ ବସେଇ ବସେଇ ଖୁଆଉଛନ୍ତି । କେବଳ ଏକା ମୁଁ-ତାଙ୍କ ବିରୋଧରେ ଠିଆ ହୋଇଛି । ପୋପ୍‌ଙ୍କ ବନ୍ଧୁଙ୍କୁ ମୁଁ ମୋର ଶତ୍ରୁ ବୋଲି ମନେ କରେ ।

ଏତିକି ଯଥେଷ୍ଟ ! ପୋପ୍‌ଙ୍କ ତରଫରୁ ଦୂତ ଜନ୍‌ଙ୍କୁ ଭୟଙ୍କର ଶାସ୍ତିର ଭୟ ଦେଖାନ୍ତି । ପୋପ୍ ଜନ୍‌ଙ୍କୁ ଖ୍ରୀଷ୍ଟଧର୍ମରୁ ବହିଷ୍କାର କରି ତାଙ୍କର ପ୍ରାଣଦଣ୍ଡ ଘୋଷଣା କରିଛନ୍ତି ବୋଲି ଜଣାଇଦିଅନ୍ତି । ଯେଉଁମାନେ ପୋପ୍‌ଙ୍କର ଅନୁଗତ ସେମାନଙ୍କ ପାଇଁ ପୋପ୍‌ଙ୍କର ଆଶୀର୍ବାଦ ରହିଛି ବୋଲି କହନ୍ତି । ଲେଡ଼ି କନ୍‌ଷ୍ଟାନ୍ସଙ୍କର ଅଭିଶାପ ସଦ୍ୟ ଫଳ ଦେଇଛି ବୋଲି ଆଲୋଚ଼ନା ଆରମ୍ଭ ହୋଇଯାଏ ।

ତା' ପରେ ଦୂତ ଫିଲିପ୍‌ଙ୍କୁ ସମ୍ବୋଧନ କରି କହନ୍ତି-ଆପଣ ଯଦି ମହାନ୍ ପୋପ୍‌ଙ୍କର ଅଭିଶାପ-ଭାଜନ ହେବାକୁ ଚାହାନ୍ତି ନାହିଁ, ତେବେ ଏଇ ଅଧାର୍ମିକ ଲୋକଟାକୁ ତ୍ୟାଗ କରି ବାକି ଖ୍ରୀଷ୍ଟ ଧର୍ମାନୁଗତ ଗୋଷ୍ଠୀ ସହ ଯୋଗ ଦିଅନ୍ତୁ ଏବଂ ଏହାଙ୍କ ବିରୋଧରେ ଠିଆ ହୋଇଯାଆନ୍ତୁ ।

ଫିଲିପ୍‌ଙ୍କ ଅବସ୍ଥା ଶୋଚ଼ନୀୟ ହୋଇଉଠେ । ଗୋଟିଏ ଦିଗରେ ଜନ୍‌ଙ୍କ ସହିତ ତାଙ୍କର ସଦ୍ୟ ବନ୍ଧୁତ୍ୱ ଓ ଆତ୍ମୀୟତା ତଥା ଅନ୍ୟ ଦିଗରେ ଉତ୍ତର ଅପେକ୍ଷାରେ ପୋପ୍‌ଙ୍କର ଦୂତ । ଈଶ୍ୱର ତାଙ୍କ ମୁଣ୍ଡ ଉପରେ ଇଏ କି ଖଣ୍ଡା ଝୁଲାଇ ଦେଲେ ! ସେ ଦୂତଙ୍କୁ ନିଜର ସମସ୍ୟାଟା ବୁଝାଇବାକୁ ଚେଷ୍ଟା କରନ୍ତି, ମାତ୍ର କିଛି ଫଳ ହୁଏ ନାହିଁ । ପୋପ୍‌ଙ୍କ ପ୍ରତିନିଧି ସ୍ପଷ୍ଟ ଭାଷାରେ ଜଣାଇ ଦିଅନ୍ତି-ଜନ୍‌ଙ୍କ ସହିତ ସମ୍ପର୍କ ରଖିବାର ଅର୍ଥ ହେଉଛି ଧର୍ମକୁ ତ୍ୟାଗ କରିବା । ଦୁଇ ଡଙ୍ଗାରେ ପାଦ ରଖି ଚାଲିବା ସମ୍ଭବ ନୁହେଁ । ନିରୁପାୟ ଫିଲିପ୍ ଶେଷକୁ ହାଲ୍ ଛାଡ଼ିଦେଇ ଧର୍ମର ପକ୍ଷ ନିଅନ୍ତି । ମିଳନ ପୂର୍ବରୁ ହିଁ ନବ ବିବାହିତ ଦମ୍ପତିଙ୍କର ବିବାହ ଭାଙ୍ଗିଯାଏ ।

ଜନ୍ କହନ୍ତି-ଅନେକ ସମୟ ନଷ୍ଟ ହୋଇଛି । ଆଉ କୌଣସି କଥା ନାହିଁ । ମୋର ଫ୍ରାନ୍ସ ଦରକାର । ଫଲକନ୍ ବ୍ରିଜ୍, ତମେ ଆମ ସୈନ୍ୟଙ୍କୁ ଏକାଠି କର । ଫଲକନ୍ ବ୍ରିଜ୍‌ଙ୍କୁ ଦ୍ୱିତୀୟଥର କହିବାକୁ ପଡ଼େ ନାହିଁ । ସେ ନିଜର କାର୍ଯ୍ୟ ଆରମ୍ଭ କରି ନିଅନ୍ତି । ଯେଉଁ ଯୁଦ୍ଧ ହୁଏ ସେଥିରେ ଅନ୍ତତଃ ଫଲକନ୍ ବ୍ରିଜ୍‌ଙ୍କର ପ୍ରତିଶୋଧ ନେବାର କାମନା ପୂରଣ ହୁଏ । ଲିମୋଗେ

ତାଙ୍କ ହାତରେ ନିହତ ହୁଅନ୍ତି । ଜନ୍ ମଧ୍ୟ ତରୁଣ ଆର୍ଥରଙ୍କୁ ବନ୍ଦୀ କରନ୍ତି । ଅତ୍ୟନ୍ତ ନିଷ୍ଠୁର ହ୍ୟୁବର୍ଟ ଡି-ବାର୍ଘେଙ୍କ ହାତରେ ତାଙ୍କୁ ଟେକି ଦିଅନ୍ତି । ଆର୍ଥରଙ୍କ ଭାଗ୍ୟରେ ଯେ କ'ଣ ଅଛି, ତାହା ଅନୁମାନ କରିନେବା କଷ୍ଟସାଧ୍ୟ ହୁଏ ନାହିଁ । ତାଙ୍କର ମାଆ କାନ୍ଦି କାନ୍ଦି ମୃତ୍ୟୁକୁ ଡାକିବାରେ ଲାଗନ୍ତି । ଦୁଃଖ ସମସ୍ତଙ୍କର ହେଉଥିଲେ ମଧ୍ୟ ତାଙ୍କ ପାଇଁ କାହାର କିଛି କରିବାର ନ ଥାଏ । ଲୋକେ ତାଙ୍କୁ ପାଗଳ ଭାବନ୍ତି । ସେ କିନ୍ତୁ ମୁଣ୍ଡ ହଲାଇ କହନ୍ତି-ନା' ମୁଁ ପାଗଳ ନୁହେଁ, ଯଦି ପାଗଳ ହୋଇଥାଆନ୍ତି ତେବେ ନିଜର ସନ୍ତାନକୁ ଭୁଲି ଯାଆନ୍ତି । ପାଗଳର କ'ଣ ସ୍ମୃତି ଥାଏ ?

ପୋପ୍‌ଙ୍କ ଦୂତକୁ ସେ ପଚାରନ୍ତି-ଆଜ୍ଞା ପ୍ରକୃତରେ କ'ଣ ସ୍ୱର୍ଗରେ ମୋ ସହିତ ମୋ ପୁଅର ଦେଖା ହେବ ? କିନ୍ତୁ ଏବେ ତାକୁ ଯେଉଁ ଦୁଃଖ ଆଉ ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିବ, ସେଥିରେ ତା'ର ଚେହେରା ଖରାପ ହୋଇଯିବ । ସେ ହେବ ଗୋଟାଏ ପ୍ରେତ ଭଳି । ତା'ପରେ ତା'ର ମୃତ୍ୟୁ ହେବ । ସେ ସ୍ୱର୍ଗକୁ ଗଲେ ସ୍ୱର୍ଗର ପାହାଚ୍‌ରେ ତା'ସହିତ ମୋର ଦେଖା ହେବ । ମୁଁ ତାକୁ ଆଉ ଚିହ୍ନିପାରିବି ନାହିଁ । ମୋର ସେଇ ସୁନ୍ଦର ପୁଅକୁ ମୁଁ ଆଉ କେବେବି ଦେଖିପାରିବି ନାହିଁ ।

ଆର୍ଥର ବଞ୍ଚିଥିଲେ ଜନ୍‌ଙ୍କ ପକ୍ଷରେ ନିଶ୍ଚିନ୍ତ ହେବା ସମ୍ଭବ ନ ଥିଲା । ତେଣୁ ଫଲକନ୍ ବ୍ରିଜ୍‌କୁ ଇଂଲଣ୍ଡ ପଠାଇ ସେ ହ୍ୟୁବର୍ଟକୁ ଡକାଇ ପଠାନ୍ତି । ସିଧା ସିଧା ସେ ତାକୁ ହତ୍ୟାର କଥା ଅବଶ୍ୟ କହନ୍ତି ନାହିଁ । ପ୍ରଥମେ ପ୍ରଥମେ ସେ ତାଙ୍କ ପ୍ରତି ହ୍ୟୁବର୍ଟର ଆନୁଗତ୍ୟ ତଥା ସମ୍ମାନର କଥା କହନ୍ତି । ତା'ପରେ ସେ ତାଙ୍କୁ ଜଣାଇଦିଅନ୍ତି, କିଛି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟର ଦାୟିତ୍ୱ ଦେବା ପାଇଁ ସେ ତାଙ୍କୁ ଏଠାକୁ ଡକାଇ ଆଣିଛନ୍ତି । ଠିକ୍ ସମୟରେ ଜଣାଇବେ । ଇଙ୍ଗିତଟା ବୁଝିନେଇ ହ୍ୟୁବର୍ଟ କହେ - ଆପଣଙ୍କ ପାଇଁ ଯଦି କାହାକୁ ହତ୍ୟା କରିବାକୁ ପଡ଼େ, ତେବେ ମୁଁ ତାହା ଖୁସିରେ କରିବି । ଚିନ୍ତା କରିବେ ନାହିଁ ।

— ମୁଁ କ'ଣ ଆଉ ତା' ଜାଣି ନାହିଁ ? ତା'ପରେ ଅନୁଚ୍ଚ କଣ୍ଠରେ କହନ୍ତି-ଟୋକାଟା ଉପରେ ନଜର ରଖ । ମୋ ପାଖରେ ସେ ହେଉଛି ବିଷଧର ସର୍ପତୁଲ୍ୟ । ମୁଁ ଯୁଆଡ଼େ ଯାଉଛି... ମୋ ଆଗରେ ତାକୁ ଦେଖୁଛି, କଥାଟା ବୁଝୁଛ ତ ?

— ବୁଝିଛି ସାର୍, ଏମିତି ଭାବରେ ତାକୁ ରଖିବାର ବ୍ୟବସ୍ଥା କରିବି, ଯେଉଁଠୁ ଆପଣଙ୍କୁ ସେ ଆଦୌ ବିରକ୍ତ କରିପାରିବ ନାହିଁ ।

— ମୃତ୍ୟୁ !! ଜନ୍ ଗୁଣୁ ଗୁଣୁ ହୋଇ କହନ୍ତି ।

— କ'ଣ କହିଲେ ସାର୍ ?

— ସମାଧି । ବଞ୍ଚିରହିବାର ସମସ୍ତ ଅଧିକାର ସେ ହରାଇ ସାରିଛି ।

ଜନ୍ ତାଙ୍କର ବକ୍ତବ୍ୟ ରଖିସାରିବା ପରେ ଅନ୍ୟ ପ୍ରସଙ୍ଗକୁ ଚାଲିଯାଆନ୍ତି, ଯେମିତି ଏତେବେଳଯାଏ, ସେ ସେଇ ପ୍ରସଙ୍ଗ ହିଁ ଆଲୋଚ଼ନା କରୁଥିଲେ । ଜନ୍ କହନ୍ତି ହ୍ୟୁବର୍ଟ, ମୁଁ

ତମକୁ ସ୍ନେହ କରେ । ଠିକ୍ ଅଛି, ମୁଁ କ'ଣ ଚାହେଁ, ପରେ କେତେବେଳେ ତମକୁ ଜଣାଇବି । ତମେ ଖୁସିରେ ଇଂଲଣ୍ଡ ଫେରିଯାଅ ।

ଇଂଲଣ୍ଡ ଫେରିଯିବା ପରେ ହ୍ୟୁବର୍ଟ ଅବଶ୍ୟ ଆହୁରି ସ୍ପଷ୍ଟ ନିର୍ଦ୍ଦେଶ ପାଆନ୍ତି । କୁହାଯାଏ, ଉତପ୍ତ ଲୌହଶଳାକା ଦ୍ୱାରା ଆର୍ଥରର ଚକ୍ଷୁ ଦୁଇଟିକୁ ନଷ୍ଟ କରିଦିଆଯିବ । ଭଡ଼ାଟିଆ ଜହ୍ଲାଦ ପର୍ଯ୍ୟନ୍ତ ଏଇ ନିର୍ଦ୍ଦେଶର ବିରୋଧ କରେ । ଲୌହ ଶଳାକା ଗରମ କରିବାକୁ ଦେଇ ଏବଂ ଆର୍ଥରକୁ ଡାକି ପଠାଇ ହ୍ୟୁବର୍ଟର ମନଟା ଖରାପ ହୋଇଯାଏ । ଇତିମଧ୍ୟରେ ନିରପରାଧ, ନିର୍ମଳ ହୃଦୟର ତରୁଣ ଆର୍ଥର ପ୍ରତି ସେ ଅନୁରକ୍ତ ହୋଇ ପଡ଼ିଥାଏ । ସେ ଭାବିଚାଲେ, ଯିଏ ଘୁଣାକ୍ଷରରେ ବି ଅନ୍ୟର କ୍ଷତି କଥା ଚିନ୍ତା କରି ନାହିଁ, ସେ ନିଜେ ତା'ର କ୍ଷତି କିଭଳି କରିବ ?

ଆର୍ଥର ଆସେ । ନିଜର ଭବିଷ୍ୟତ୍ ସମ୍ପର୍କରେ ତା'ର କୌଣସି ଧାରଣା ନ ଥାଏ । କପାଳରେ ଯାହା ଥିବ । ହ୍ୟୁବର୍ଟକୁ ବିଷଣ୍ଣ ଦେଖି ସେ ପ୍ରଶ୍ନ କରେ-ତମେ ଏତେ ଶୁଖିଲା ଦେଖାଯାଉଛ କାହିଁକି ? ଦୁଃଖ ତ ମୋର ପାଇବା କଥା । ବନ୍ଦୀଶାଳା ବାହାରେ ମୁଁ ଯଦି ଗାଈ ଜଗାଳି ପିଲାଟିଏ ଭଳି ସ୍ୱଚ୍ଛନ୍ଦରେ ବୁଲିପାରୁଥାଆନ୍ତି, ତେବେ ମୋର କିଛି ଦୁଃଖ ନ ଥାନ୍ତା । କାକାଙ୍କୁ ଭୟ କରୁ ନ ଥିଲେ, ମୁଁ ଏଠି ବି ଖୁସିରେ ରହି ପାରିଥାଆନ୍ତି । ମୁଁ ଜିଓଫ୍ରେଙ୍କ ସନ୍ତାନ, ସେ କ'ଣ ମୋର ଦୋଷ ? ତା' ଅପେକ୍ଷା ମୁଁ ଯଦି ତମର ସନ୍ତାନ ହୋଇଥାଆନ୍ତି ତେବେ ବୋଧହୁଏ ଭଲ ହୋଇଥାଆନ୍ତା !

ଆର୍ଥରର ଏଇ ସରଳ କଥା ହ୍ୟୁବର୍ଟକୁ ବ୍ୟଥାତୁର କରିପକାଏ । ସମୟ ସହିତ ମନର ଦୃଢ଼ତା ମଧ ନଷ୍ଟ ହୋଇଯାଇପାରେ, ଏଇ ଆଶଙ୍କାରେ ସେ ଆଉ ବିଳମ୍ବ କରିବାକୁ ଚାହେଁ ନାହିଁ । ଆର୍ଥରେ ହାତକୁ ରାଜାଙ୍କ ନିର୍ଦ୍ଦେଶନାମାଟି ବଢ଼ାଇ ଦେଇ, ନିଜ ଆଖିର ଲୁହକୁ ଲୁଚାଇବାକୁ ସେ ମୁହଁ ବୁଲାଇ ଠିଆ ହୁଏ । ନିର୍ଦ୍ଦେଶ ପତ୍ରଟିକୁ ପଢ଼ି ଦେଇ ଆର୍ଥର କାନ୍ଦି ପକାଏ-ମୋ ଆଖି ଫୁଟାଇ ଦେବ ! ତମେ ପାରିବ ହ୍ୟୁବର୍ଟ ! ତମର କ'ଣ ହୃଦୟ ବୋଲି କିଛି ନାହିଁ ? ତମର ମୁଣ୍ଡ ବିନ୍ଧିଲେ ମୁଁ କ'ଣ ମୋ ରୁମାଲ୍ ଦେଇ ତମ ମୁଣ୍ଡ ବାନ୍ଧିଦେଇ ନାହିଁ ? ତମର ମୁଣ୍ଡ ବିନ୍ଧା କମିବା ପର୍ଯ୍ୟନ୍ତ ଅଧରାତିଯାଏ ତମକୁ ଜଗି ବସି ନାହିଁ ? ଯେଉଁ ଆଖି ତମଆଡ଼କୁ କେବେବି ରାଗରେ ଥରେ ଅନାଇ ନାହିଁ, ତମେ ସେଇ ଆଖିକୁ ଫୁଟାଇ ଦେବ ?

— ହଁ, ମୁଁ ଶପଥ କରିଛି-ହ୍ୟୁବର୍ଟ ଗମ୍ଭୀର ହୋଇ କହେ - ତା' ପରେ ଜହ୍ଲାଦମାନଙ୍କୁ ଡାକେ । ସେମାନଙ୍କ ହାତରେ ଦଉଡ଼ି ଆଉ ଲୁହାକଣ୍ଟା ଦେଖି ଆର୍ଥର ଧାଇଁଯାଇ ହ୍ୟୁବର୍ଟର ପାଦ ଧରି ପକାଏ । କରୁଣ କଣ୍ଠରେ କହେ-ମତେ ବଞ୍ଚାଅ ହ୍ୟୁବର୍ଟ ।

— ଲୁହା କଣ୍ଟା ମୋତେ ଦେଇ-ତମେ ତାକୁ ବାନ୍ଧିପକାଅ-ହ୍ୟୁବର୍ଟ ଜହ୍ଲାଦମାନଙ୍କୁ ନିର୍ଦ୍ଦେଶ ଦିଏ ।

— ନା-ମୁଁ ତ ବାଧା ଦେଉ ନାହିଁ । ପଥର ଭଳି ନିଶ୍ଚଳ ହୋଇ ଠିଆହେବି । ମୋତେ ଦୟାକରି ବାନ୍ଧିବାକୁ କହ ନାହିଁ-ଆର୍ଥର ଅନୁନୟ କରେ - ହ୍ୟୁବର୍ଟ, ତମେ ସେମାନଙ୍କୁ ଯିବାକୁ କହ... ମୁଁ ଚୁପ୍ ହୋଇ ଠିଆ ହେବି-ପଦେ ବି କଥା କହିବି ନାହିଁ-ତମେ ଖାଲି ସେମାନଙ୍କୁ ଯିବାକୁ କହ-ମୁଁ ସବୁ ସହିଯିବି । ହ୍ୟୁବର୍ଟ ଜହ୍ଲାଦମାନଙ୍କୁ ଯିବାକୁ କହି ଆର୍ଥରକୁ କହେ-ଏଥର ତମେ ନିଜକୁ ପ୍ରସ୍ତୁତ କର ।

ଆର୍ଥର ଆଣ୍ଠୁ ମାଡ଼ିବସି ଅନୁନୟ କରେ-ହ୍ୟୁବର୍ଟ, ଯଦି ନିହାତି ତମର କିଛି କରିବାର କଥା, ତମେ ବରଂ ମୋର ଜିଭ କାଟି ନିଅ-ଆଖି ଦୁଇଟାକୁ ଛାଡ଼ିଦିଅ । ଆର୍ଥରର କଥା ଶୁଣୁ ଶୁଣୁ ହ୍ୟୁବର୍ଟର ହାତର ଲୁହା କଣ୍ଟା ଥଣ୍ଡା ହୋଇ ଯାଇଥାଏ । ସେ ଆଉ ଏଇ ନାରକୀୟ ଅପରାଧ କରିପାରେ ନାହିଁ । ଜନ୍ ଜାଣିଲେ, ତା'ର ଭାଗ୍ୟରେ ଚରମ ଶାସ୍ତି ଏ କଥା ଜାଣି ମଧ ସେ ପ୍ରଚାର କରିଦିଏ ଯେ, ଆର୍ଥରର ମୃତ୍ୟୁ ହୋଇଯାଇଛି । ସେ କିନ୍ତୁ ଲୁଚି ରହିଥାଏ ହ୍ୟୁବର୍ଟ ଘରେ ।

ଇଂଲଣ୍ଡ ଫେରିଆସି ଅଧିକାର ସୁନିଶ୍ଚିତ କରିବା ପାଇଁ ଜନ୍ ଆଉଥରେ ଅଭିଷେକ ଅନୁଷ୍ଠାନର ଆୟୋଜନ କରନ୍ତି । ଏଥିରେ ପେମବ୍ରୋକ୍ ଏବଂ ସାଲିସ୍‌ବରି ପ୍ରଭୃତିର ସାମନ୍ତମାନେ ଯୋଗ ଦିଅନ୍ତି । ସେମାନେ କହନ୍ତି, ବିଶୁଦ୍ଧ ସୁନାକୁ ଯେଉଁଭଳି ରଙ୍ଗ ଦେବାର ପ୍ରୟୋଜନ ହୁଏ ନାହିଁ କିମ୍ବା କଇଁଫୁଲରେ ଯେମିତି ରଙ୍ଗ ବୋଳିବାର ଆବଶ୍ୟକ ନାହିଁ, ସେମିତି ରାଜାଙ୍କର ଏଇ ଦ୍ୱିତୀୟ ଅଭିଷେକ ଉତ୍ସବର କିଛି ଦରକାର ନ ଥିଲା । ତା' ସହିତ ଥିଲା ବିଚରା ଆର୍ଥରର ଦୁଃଖଦ ପରିଣତି ସମ୍ପର୍କରେ ଗୁଞ୍ଜନ । ସେମାନଙ୍କର କି କି ସଂସ୍କାର ପ୍ରୟୋଜନ ବୋଲି ରାଜା ପଚାରିବାରୁ ପେମବ୍ରୋକ୍‌ର ସାମନ୍ତ ସାହସ କରି ଜଣାନ୍ତି-ଆର୍ଥରକୁ ମୁକ୍ତି ଦିଆଯାଉ ।

ବେଶ୍, ପ୍ରସ୍ତାବ ଗ୍ରହଣ କଲି । ରାଜା ଉତ୍ତର ଦିଅନ୍ତି । ସେ ଜାଣନ୍ତି, ଏଭଳି ପ୍ରତିଶ୍ରୁତିର କୌଣସି ଅର୍ଥ ନ ଥାଏ । ସେତିକିବେଳେ ହ୍ୟୁବର୍ଟ ପ୍ରବେଶ କରି ରାଜାଙ୍କୁ ଅନ୍ତରାଳକୁ ଡାକି ନିଅନ୍ତି । ସାମନ୍ତମାନେ ଆଶଙ୍କିତ ହୋଇ ଉଠନ୍ତି । ରାଜା ଫେରିଆସି ଘୋଷଣା କରନ୍ତି ପ୍ରିୟ ବନ୍ଧୁ ମୁଁ ଦୁଃଖର ସହିତ ଜଣାଉଛି ଯେ, ଆପଣମାନେ ଯାହା ଚାହୁଁଥିଲେ, ତା' ଆଉ ହେଲା ନାହିଁ । ଆର୍ଥର ଗତ ରାତିରେ ମୃତ୍ୟୁ ବରଣ କରିଛି ।

କିଛିକ୍ଷଣ ପାଇଁ ଅସ୍ୱାଭାବିକ ନୀରବତା ଛାଇଯାଏ । ତା' ପରେ ସାଲିସ୍‌ବରିର ସାମନ୍ତ କହନ୍ତି, ଆମର ମନେ ହୋଇଥିଲା ଯେ, ତା'ର ରୋଗ ଆଉ ଭଲ ହେବ ନାହିଁ । ଆମେ ଶୁଣିଥିଲୁ ଯେ, ସେ ମୃତ୍ୟୁର ଦ୍ୱାରଦେଶରେ ଥିଲା । କିନ୍ତୁ ତା ଅସୁସ୍ଥ ହେବା ପୂର୍ବର ଘଟଣା । ଏବେ ମୃତ୍ୟୁର କାରଣଟା ଆମକୁ ଜାଣିବାକୁ ହେବ - କହନ୍ତି ପେମବ୍ରୋକର ସାମନ୍ତ ।

ରାଜା କହନ୍ତି - ଆପଣମାନେ ମୋ ଆଡ଼କୁ ଏମିତି ଅନାଉଛନ୍ତି କାହିଁକି ? ଭାଗ୍ୟ ଉପରେ ମୋର କ'ଣ ହାତ ଅଛି ?

ଏଥର ସାଲିସ୍‌ବରିର ସାମନ୍ତ ଦୃଢ଼ତାର ସହିତ କହନ୍ତି, ଏହା ଭିତରେ କିଛି ଗଣ୍ଡଗୋଳ ଥିଲା ଭଳି ଲାଗୁଛି । ପେମବ୍ରୋକ୍ ମଧ ତାଙ୍କୁ ସମର୍ଥନ କରନ୍ତି । ସାମନ୍ତମାନେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ବିଦାୟ ନିଅନ୍ତି । ଜନ୍ ଏହିଭଳି ତରବରରେ ନିଷ୍ଠୁର ଆଦେଶଟିଏ ଦେଇଥିବାରୁ ଅନୁଶୋଚନା କରନ୍ତି । ଏହାର ଅନ୍ୟ କାରଣ ମଧ ଥିଲା । ଖବର ମିଳେ, ଫ୍ରାନ୍ସ ଇଂଲଣ୍ଡ ଆକ୍ରମଣ କରିବାପାଇଁ ବିରାଟ ପ୍ରସ୍ତୁତି ଆରମ୍ଭ କରିଦେଇଛି । ଇତିମଧରେ ଫ୍ରାନ୍ସର ଯୁବରାଜଙ୍କ ନେତୃତ୍ୱରେ ଏକ ବାହିନୀ ଇଂଲଣ୍ଡର ତଟଭୂମିରେ ପ୍ରବେଶ କରିଛି । ଜନ୍‌ଙ୍କ ମାଆ ଏଲିନୋର ଇତିମଧରେ ମୃତ୍ୟୁବରଣ କରିସାରିଥାଆନ୍ତି ଏବଂ ତାହାରି ଫଳରେ ଆର୍ଥରଙ୍କ ମାଆ କନ୍‌ଷ୍ଟାନ୍ସ ସୁସ୍ଥ ହୋଇ ଉଠିଥାଆନ୍ତି । ସାମନ୍ତମାନଙ୍କଠାରୁ ବିଶେଷ ସହଯୋଗର ଆଶା ନ ଥାଏ । ଫଲକନ୍‌ବ୍ରିଜ୍ ଯାଜକମାନଙ୍କଠାରୁ ମୋଟା ଅଙ୍କର ଅର୍ଥ ଆଦାୟରେ ବ୍ୟସ୍ତ ଥାଆନ୍ତି । ତେବେ ଫେରିଆସି ଜଣାନ୍ତି ଯେ ସମଗ୍ର ଦେଶରେ ଏକ ଆଶଙ୍କା ବ୍ୟାପିବାରେ ଲାଗିଛି । ଏଣେ ଧର୍ମ ଉପରେ ରାଜାଙ୍କର ନିଷେଧାଦେଶ ଦେଶରେ ପ୍ରତିକୂଳ ପ୍ରଭାବ ସୃଷ୍ଟି କରିଥାଏ । ଗିର୍ଜାର ଦରଜା ବନ୍ଦ ହୋଇ ତା'ର ଘଣ୍ଟାଧ୍ୱନି ଆଉ ଶୁଣାଯାଉ ନ ଥାଏ । ଏମିତି ସାମଗ୍ରିକ ଭାବରେ ବିଚାର କରିବାକୁ ଗଲେ ଦେଶର ଦୟନୀୟ ଅବସ୍ଥା ହିଁ ଦେଖାଯାଉଥାଏ । ଦେଶ ଲୋକଙ୍କ ମୁହଁରେ ସେତେବେଳେ କେବଳ ଆର୍ଥରର ନାମ । ନେତାମାନେ ତା'ର ସମାଧି ଖୋଜି ବୁଲୁଥାଆନ୍ତି ଏବଂ ସାଧାରଣ ଜନତା ଭିତରେ ତା'ର ମୃତ୍ୟୁକୁ ନେଇ ନାନାପ୍ରକାରର ଗୁଜବ ପ୍ରଚାରିତ ହେଉଥାଏ । ହ୍ୟୁବର୍ଟ ଜନ୍‌ଙ୍କୁ ସେ କଥା ଜଣାଇବାରୁ ସେ ଓଲଟି କହନ୍ତି, ଆର୍ଥରକୁ ତ ମାରିଛ ତମେ ।

- ଆପଣଙ୍କର ଆଦେଶରେ । କହନ୍ତି ହ୍ୟୁବର୍ଟ ।

- ମୁଁ କହିଲେ, ତମେ ତରବର ହୋଇ ତାକୁ ମାରିଦେବ ?

- ଏଇ ଯେ ଆପଣଙ୍କର ହାତ ଲେଖା ଚିଠି ଆଉ ଏଥିରେ ଆପଣଙ୍କ ମୋହରର ଛାପ ।

ଜନ୍ ଆନ୍ତରିକ ଭାବେ ଚାହୁଁଥାଆନ୍ତି, ଆର୍ଥର କୌଣସିମତେ ବଞ୍ଚିଉଠୁ । ହ୍ୟୁବର୍ଟ ତାଙ୍କ କଥା କାହିଁକି ମାନିଲା ? କାହିଁକି ତାଙ୍କୁ ଇସାରାରେ ବାରଣ କଲା ନାହିଁ ? ଜନ୍ ଏଇସବୁ କଥା ହ୍ୟୁବର୍ଟଙ୍କୁ କହନ୍ତି ଏବଂ ଶେଷ ପର୍ଯ୍ୟନ୍ତ ହ୍ୟୁବର୍ଟ ମଧ ସତ୍ୟ ସ୍ୱୀକାର କରନ୍ତି । ଆର୍ଥର ବଞ୍ଚିଛି ! ରାଜା ଖୁସି ହୋଇ କହନ୍ତି, ବର୍ତ୍ତମାନ ଯାଇ ସାମନ୍ତମାନଙ୍କୁ ଏ ଖବର ଜଣାଇଦିଅ । ମୁଁ ରାଗ ସମୟରେ କ'ଣ କହିଛି ମନେ ରଖ ନାହିଁ । ଶୀଘ୍ର ଯାଇ କ୍ରୁଦ୍ଧ ସାମନ୍ତଙ୍କୁ ମୋ ପାଖକୁ ନେଇଆସ ।

କିନ୍ତୁ ହ୍ୟୁବର୍ଟ ଭୁଲ୍ କରିଥିଲେ । ସେଇ ଦୁଃଖୀ ତରୁଣ କାରାଗାରରୁ ପଳାଇବାର ଯୋଜନା କରେ । ଖଲାସୀମାନଙ୍କର ପୋଷାକ ପିନ୍ଧି ସେ ଜଗୁଆଳମାନଙ୍କୁ ଫାଙ୍କି ମଧ ଦିଏ । ତେବେ ଉଚ୍ଚପାଚେରି ଉପରୁ ଡେଇଁପଡ଼ିବା ବେଳେ ପଥରରେ କଚାଡ଼ି ହୋଇ ତା'ର ମୃତ୍ୟୁ ଘଟେ । ତା' ପରେ ସେଠାରେ ପହଞ୍ଚନ୍ତି ପେମବ୍ରୋକ, ସାଲିସ୍‌ବରି ଏବଂ ବାଇଗଟ୍ ପ୍ରଭୃତି ସାମନ୍ତମାନେ । ସେମାନେ ତା'ର ଅନୁସନ୍ଧାନରେ ବାହାରିଥାଆନ୍ତି । ହ୍ୟୁବର୍ଟଠାରୁ ତା'ର ଜୀବିତ ଥିବାର ସମ୍ବାଦ ପାଇବା ପୂର୍ବରୁ ରାଜା ଫଲକନ୍ ବ୍ରିଜ୍‌କୁ ପଠାଇ ଥାଆନ୍ତି, କୌଣସିମତେ ବୁଝାଇ ସୁଝାଇ ଏମାନଙ୍କୁ ଫେରାଇ ଆଣିବାକୁ । ସେ ଦୁର୍ଗ ନିକଟକୁ ଆସି ଦେଖିଲା ବେଳକୁ ଏମାନେ ଆର୍ଥରର ମୃତ ଦେହ ଆଡ଼େ ଅନାଇ ଠିଆ ହୋଇଛନ୍ତି ।

ଫଲକନ୍ ବ୍ରିଜ୍‌କୁ ଦେଖିବା ମାତ୍ରେ ସେମାନେ କହନ୍ତି ଏଇଟା ହେଉଛି ଏକ ଜଘନ୍ୟ ହତ୍ୟାକାଣ୍ଡ । ଏହାର କୌଣସି ତୁଳନା ନାହିଁ ।

ଫଲକନ୍ ବ୍ରିଜ୍ ସମ୍ମତ ହୋଇ କହନ୍ତି - କାର୍ଯ୍ୟଟି ଅତ୍ୟନ୍ତ ନିନ୍ଦନୀୟ । ଏଇଟା ନିଶ୍ଚୟ କୌଣସି ଦୁଷ୍ଟ ଲୋକର କାର୍ଯ୍ୟ ।

- ଏହା ଅନ୍ୟ କାହାରି କାର୍ଯ୍ୟ ନୁହେଁ । ସାଲିସ୍‌ବରିର ସାମନ୍ତ ଗର୍ଜି ଉଠନ୍ତି । ଏହା ହେଉଛି ରାଜାଙ୍କ ନିର୍ଦ୍ଦେଶରେ ହ୍ୟୁବର୍ଟର କାର୍ଯ୍ୟ । ମୁଁ ପ୍ରତିଜ୍ଞା କରି କହୁଛି ଏଇ ଅନ୍ୟାୟର ପ୍ରତିଶୋଧ ନ ନେବା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ । ଅନ୍ୟମାନେ ମଧ ତାଙ୍କୁ ସମର୍ଥନ କରନ୍ତି ।

ସାମନ୍ତମାନେ  ପ୍ରତିଜ୍ଞା କରୁଥିବା ସମୟରେ ସେଠାରେ ଧଇଁସଇଁ ହୋଇ ପହଞ୍ଚି ଯାଏ ହ୍ୟୁବର୍ଟ । ସେ ଦୂରରୁ ଚିତ୍କାର କରି କହୁଥାଏ ମୋତେ ରାଜା ପଠାଇଛନ୍ତି । ଆର୍ଥର ବଞ୍ଚିଛି ।

- ଏଇ ଯେ ସଇତାନ୍ ହତ୍ୟାକାରୀ । ସାଲିସ୍‌ବରିର ସାମନ୍ତ ତରବାରି ବାହାର କରନ୍ତି । ହ୍ୟୁବର୍ଟ ପ୍ରତିବାଦ କରି କହେ ଯେ, ସେ କୌଣସି ହତ୍ୟା କରି ନାହିଁ ।

- ତାକୁ ଖଣ୍ଡ ଖଣ୍ଡ କରିଦିଅ । ପେମବ୍ରୋକର ସାମନ୍ତ କହନ୍ତି ।

ଫଲକନ୍ ବ୍ରିଜ୍ ସେମାନଙ୍କ ମଝିରେ ଠିଆହୋଇ ସାଲିସ୍‌ବରିଙ୍କୁ ଧମକ ଦେଇ କହନ୍ତି

- ଆଉ ପାଦେ ଆଗେଇଲେ ମୁଁ ଆପଣଙ୍କୁ ହତ୍ୟା କରିବି । ସାଲିସ୍‌ବରି ଆଉ ଆଗକୁ ବଢ଼ନ୍ତି ନାହିଁ । ହ୍ୟୁବର୍ଟ ବାରମ୍ବାର ତା'ର ନିର୍ଦ୍ଦୋଷତା ପ୍ରକାଶ କରେ; କିନ୍ତୁ କେହି ତା' କଥା ବିଶ୍ୱାସ କରନ୍ତି ନାହିଁ । ଏଭଳି ଗୋଟିଏ ମୁହୂର୍ତ୍ତ ଆସେ, ଯେତେବେଳେ ଫଲକନ୍ ବ୍ରିଜ୍‌ଙ୍କର ମଧ କିଛି କରିବାର ନ ଥାଏ । ହତାଶ ହୋଇ ସେ ଦେଖନ୍ତି, ଇଂଲଣ୍ଡର ସାମନ୍ତମାନେ ଇଂଲଣ୍ଡର ରାଜାଙ୍କୁ ଛାଡ଼ି ଫ୍ରାନ୍ସର ଯୁବରାଜଙ୍କ ଶିବିରରେ ଯୋଗ ଦେବା ନିମନ୍ତେ ଘୋଡ଼ା ଛୁଟାଇଛନ୍ତି ।

ସେମାନେ ଚାଲିଯିବା ପରେ ଫଲକନ୍ ବ୍ରିଜ୍ ହ୍ୟୁବର୍ଟକୁ ପଚାରନ୍ତି, ଏ ହତ୍ୟା ବିଷୟରେ ତମେ ଜାଣ  ? ଏ କାମ ଯଦି ତମର ହୁଏ, ତେବେ ତମେ ଈଶ୍ୱରଙ୍କ ପାଖରେ ମଧ କ୍ଷମା ପାଇବ ନାହିଁ । ମୁଁ ତମକୁ ସନ୍ଦେହ କରୁଛି ।

- ମୁଁ ତାଙ୍କୁ ମାରି ନାହିଁ । ଏଇ ବାଳକକୁ ଯଦି ମୁଁ ହତ୍ୟା କରିଥାଏ ତେବେ ମୁଁ ଯେମିତି ନରକ ଯନ୍ତ୍ରଣା ଭୋଗ କରେ । ତା'ପରେ ହ୍ୟୁବର୍ଟ ଆର୍ଥରଙ୍କର ମୃତ ଦେହଟିକୁ ଉଠାଇ ଦୁର୍ଗ ମଧ୍ୟକୁ ପ୍ରବେଶ କରେ । ତାକୁ ଅନୁସରଣ କରନ୍ତି ଫଲକନ୍ ବ୍ରିଜ୍ । ଯାଉ ଯାଉ ସେ ମନ୍ତବ୍ୟ କରନ୍ତି - ଏ ପୃଥିବୀର ଜଟିଳ ଯନ୍ତ୍ରଣା ଭିତରେ ମୁଁ ପଥ ହରାଇଛି ।

ଏ ଭିତରେ ରାଜାଙ୍କର ଅବସ୍ଥା ଖୁବ୍ ଶୋଚନୀୟ ହୋଇଯାଏ । ପୋପ୍ ପୂର୍ବରୁ ଆନୁଷ୍ଠାନିକ ଭାବେ ରାଜପଦ ବାତିଲ୍ କରିସାରିଥାଆନ୍ତି । ସେ ସମସ୍ତଙ୍କୁ ଇଂଲଣ୍ଡ ବିରୋଧରେ ଫ୍ରାନ୍ସ ଯୁବରାଜଙ୍କର ପତାକା ତଳେ ସମବେତ ହେବା ନିମନ୍ତେ ଆହ୍ୱାନ ଜଣାନ୍ତି । ୱେଲସ୍ ବିଦ୍ରୋହ ଘୋଷଣା କରେ । ସ୍କଟଲାଣ୍ଡ ମଧ୍ୟ ତାଙ୍କ ବିରୋଧରେ ଷଡ଼ଯନ୍ତ୍ର ଆରମ୍ଭ କରେ । ଇଂଲଣ୍ଡରେ ରାଜାଙ୍କ ଅବସ୍ଥା ଦିନକୁ ଦିନ ଶୋଚନୀୟ ହେବାରେ ଲାଗେ । ବାରନ୍‌ମାନେ ତାଙ୍କୁ ପରିତ୍ୟାଗ କରିସାରିଥାଆନ୍ତି । ଗିର୍ଜାର ଯାଜକମାନେ ତାଙ୍କୁ ଘୃଣା କରନ୍ତି, ସବୁ ଶ୍ରେଣୀର ମଣିଷଙ୍କର ସମର୍ଥନ ଏହିଭଳି ସେ ହରାଇ ସାରିଥାଆନ୍ତି । ରାଜା ବୁଝିପାରନ୍ତି, ଏଥର ତାଙ୍କ ପାଦତଳର ମାଟି ଦ୍ରୁତ ଘୁଞ୍ଚିଯିବାରେ ଲାଗିଛି ।

ଏକମାତ୍ର ଏକ ନିର୍ଲଜ କୌଶଳ ପ୍ରୟୋଗ କରିବା ବ୍ୟତୀତ ତାଙ୍କ ଆଗରେ ଆଉ ଅନ୍ୟ ବାଟ ନ ଥାଏ । ସେ ବାଟରେ ଚାଲିବା ତାଙ୍କ ପାଇଁ କିଛି ନୂଆ କଥା ନୁହେଁ । ସେ ପୋପ୍‌ଙ୍କର ଦୂତକୁ ଡାକି ପୋପ୍‌ଙ୍କ ନିକଟରେ ଆତ୍ମସମର୍ପଣର ଛଳନା କରନ୍ତି । ସର୍ତ୍ତ ଥାଏ, ପୋପ୍ ଫରାସୀମାନଙ୍କୁ ଫେରିଯିବା ପାଇଁ କହିବେ ଏବଂ ଇଂଲଣ୍ଡ ବିରୋଧରେ ଧର୍ମଯୁଦ୍ଧର ଡାକରାକୁ ଫେରାଇ ନେବେ । ଅନେକ ନାସ୍ତିକଙ୍କ ଭଳି ରାଜାଙ୍କ ମନରେ ମଧ୍ୟ ବହୁ ପ୍ରକାର କୁସଂସ୍କାର ବସା ବାନ୍ଧିଥାଏ । 'ରାଜପଦରେ ଅଭିଷିକ୍ତ ହେବା ପୂର୍ବରୁ ହିଁ ସେ ପ୍ରାଣ ହରାଇବେ' ଏଇ କଥା ତାଙ୍କ କାନରେ ପଡ଼ିଥାଏ । ତାଙ୍କର ମନେହୁଏ, ଏଇ ଦୂତ ହାତରେ ରାଜମୁକୁଟଟିକୁ ଟେକି ଦେଲେ, ଭବିତବ୍ୟ ଓ ଶତ୍ରୁ - ଉଭୟଙ୍କୁ ଫାଙ୍କି ଦିଆଯାଇପାରିବ ।

ଦୂତ ରାଜାଙ୍କୁ ମୁକୁଟଟି ଫେରାଇ ଦେଇ ଫ୍ରାନ୍ସର ଯୁବରାଜଙ୍କୁ ଯୁଦ୍ଧରୁ ନିବର୍ତ୍ତାଇବାକୁ ଧାଇଁଯାଆନ୍ତି । ସେ ଚାଲିଯିବା ପରେ ଫଲକନ୍ ବ୍ରିଜ୍ ଆସି ଜଣାନ୍ତି - ଲଣ୍ଡନ ଫରାସୀମାନଙ୍କ ପାଇଁ ତା'ର ପ୍ରବେଶ ଦ୍ୱାର ଖୋଲି ଦେଇଛି ଏବଂ ବାରନ୍‌ମାନେ ମଧ୍ୟ ଫ୍ରାନ୍ସ ପାଖରୁ ସେମାନଙ୍କର ଆନୁଗତ୍ୟ ଫେରାଇ ନେବା ନିମନ୍ତେ ପ୍ରସ୍ତୁତ ନୁହନ୍ତି ।

- କ'ଣ ହେଲା ? ଆର୍ଥର ବଞ୍ଚିଥିବା ସେମାନେ ଜାଣନ୍ତି ?

- ସେମାନେ ତାକୁ ମୃତ ଅବସ୍ଥାରେ ଦେଖିଛନ୍ତି, ତାକୁ ହତ୍ୟା କରାଯାଇଛି ।

- କିନ୍ତୁ ସଇତାନ୍ ହ୍ୟୁବର୍ଟ ମୋତେ ସେ ବଞ୍ଚିଥିବା କଥା ଜଣାଇଥିଲା ।

- ମୋର ଦୃଢ଼ ବିଶ୍ୱାସ, ହ୍ୟୁବର୍ଟ ତାକୁ ଜୀବିତ ଦେଖି ଏଠାକୁ ଆସିଥିଲା ।

ପୋପ୍‌ଙ୍କ ସହିତ ତାଙ୍କର ବୁଝାମଣା ହୋଇଯାଇଥିବା ଖବର ଜନ୍ ତାଙ୍କୁ ଦିଅନ୍ତି । ଏ କଥା ଶୁଣି ଫଲକନ୍ ବ୍ରିଜ୍ ଯଥାରୀତି ହତୋତ୍ସାହିତ ହୋଇ ପଡ଼ନ୍ତି । ତାଙ୍କ ପକ୍ଷରେ ଏ ସମ୍ବାଦକୁ ସହଜରେ ହଜମ୍ କରିବା ସମ୍ଭବ ହୁଏ ନାହିଁ । ସେ କହନ୍ତି, ସମ୍ଭବତଃ ପୋପ୍‌ଙ୍କ ଦୂତ ଶାନ୍ତି ସ୍ଥାପନ କରିବା ପାଇଁ ସକ୍ଷମ ହୋଇ ନାହାନ୍ତି । ତେବେ ଆସି ଦେଖନ୍ତୁ ଯେ, ଆମେ ଆତ୍ମରକ୍ଷା କରିବା ପାଇଁ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ । ଜନ୍‌ଙ୍କ ଅନୁମତି ନେଇ ସେ ଇଂଲଣ୍ଡର ଅବଶିଷ୍ଟ ସମ୍ମାନ ରକ୍ଷା କରିବା ନିମନ୍ତେ ଛୁଟିଯାଆନ୍ତି ।

ଇଂଲଣ୍ଡର ଫରାସୀ ଶିବିରରେ ଉପସ୍ଥିତ ହୋଇ ପୋପ୍‌ଙ୍କର ଦୂତ ଜଣାନ୍ତି ଯେ, ରାଜା ଜନ୍ ଏବେ ପୋପ୍‌ଙ୍କ ଅଧୀନତା ସ୍ୱୀକାର କରିବାକୁ ପ୍ରସ୍ତୁତ । ତେଣୁ ଏବେ ତାଙ୍କ ସହିତ ଶାନ୍ତି ସ୍ଥାପନ କରାଯାଉ । କିନ୍ତୁ ଯୁବରାଜ ଲୁଇ ତା' ମାନିବାକୁ ରାଜି ହୁଅନ୍ତି ନାହିଁ । କହନ୍ତି - ମୁଁ କୌଣସି ଦେଶର ଭୃତ୍ୟ ନୁହେଁ । ତା' ଛଡ଼ା ଆମେ ଏତେଦୂର ଆଗେଇ ଯାଇଛୁ ଯେ, ଏବେ ଆଉ ଫେରିବାର ଉପାୟ ନାହିଁ । ଯୁଦ୍ଧର ନିଆଁ ଜଳାଇଥିଲେ ଆପଣମାନେ । ମୁଁ କେବଳ ସେଥିପାଇଁ ଇନ୍ଧନ ଯୋଗାଇ ଦେଇଛି । ଏତେ ବାଟ ଯାଏ ତାକୁ ଚଳାଇ ନେଇ ଆସିଛି । ଏବେ ଯେତେବେଳେ ଇଂଲଣ୍ଡ ପରାଜୟର ପ୍ରାୟ ଦ୍ୱାରଦେଶରେ ସେତେବେଳେ ଆମକୁ ଯୁଦ୍ଧ ବନ୍ଦ କରିବାକୁ କୁହାଯାଉଛି । ପୋପ୍ ରାଜାଙ୍କ ସାଙ୍ଗରେ ଶାନ୍ତି ସ୍ଥାପନ କରିଛନ୍ତି । ମୋର କିନ୍ତୁ ଫେରିବାର ଉପାୟ ନାହିଁ । ଲୁଇ ଯୁଦ୍ଧ ବନ୍ଦ କରିବାକୁ କୌଣସିମତେ ରାଜି ହୁଅନ୍ତି ନାହିଁ । ତା'ର ଅନ୍ୟ ଏକ କାରଣ ହେଉଛି ଯେ, ଇଂଲଣ୍ଡ ସିଂହାସନର ସେ ମଧ୍ୟ ଅନ୍ୟତମ ଦାବିଦାର ।

ଯୁଦ୍ଧଭୂମିରେ ଜନ୍‌ଙ୍କ ସହିତ କଥା ହେଉଥିଲା ହ୍ୟୁବର୍ଟ । ରାଜା କହନ୍ତି ଯେ ସେ ଅସୁସ୍ଥ । ତାଙ୍କୁ ପ୍ରାୟ ଜ୍ୱର ହେଉଛି । ଏହି ସମୟରେ ଜଣେ ଦୂତ ଆସି ଜଣାଏ ଫଲକନ୍ ବ୍ରିଜ୍‌ଙ୍କର ଇଚ୍ଛା, ରାଜା ଯେମିତି ଯୁଦ୍ଧକ୍ଷେତ୍ରରୁ ଚାଲିଯାଆନ୍ତି ଏବଂ ରାଜା ଏବେ କେଉଁଆଡ଼େ ଯିବେ, ତାହା ସେ ଜାଣିବାକୁ ଚାହାନ୍ତି । ଜନ୍ କହନ୍ତି, ତାଙ୍କୁ ଯାଇ କହ ମୁଁ ସୁଇନ୍‌ଷ୍ଟେଡ୍ ଗିର୍ଜା ଆଡ଼କୁ ଯାଉଛି । ଦୂତଠାରୁ ଗୋଟିଏ ଭଲ ଖବର ଶୁଣିବାକୁ ମିଳେ । ଯୁଦ୍ଧ ପାଇଁ ନାନା ପ୍ରୟୋଜନୀୟ ଦ୍ରବ୍ୟ ନେଇ ଗୋଟାଏ ଫରାସୀ ଜାହାଜ ଇଂଲଣ୍ଡ ଆସୁଥିବା ବେଳେ ଗୁଡ୍‌ଉଇନ୍ ସାଣ୍ଡସ୍ ପଠାରେ ମାଡ଼ଖାଇ ବୁଡ଼ିଯାଇଛି । ତେବେ ଏଥିରେ ଉତ୍‌ଫୁଲ୍ଲ ହେବା ଭଳି ଅବସ୍ଥା ସେତେବେଳେ

ରାଜାଙ୍କର ନ ଥାଏ । କାରଣ ସେତେବେଳକୁ ଜ୍ୱରରେ ତାଙ୍କର ଦେହ ପୋଡ଼ି ଯାଉଥାଏ । ସେଇ ଅବସ୍ଥାରେ ସେ ସୁଇନ୍‌ଷ୍ଟେଡ୍ ଆଡ଼େ ଯାତ୍ରା କରନ୍ତି ।

ଯୁଦ୍ଧକ୍ଷେତ୍ରର ଅନ୍ୟ ଏକ ଅଂଶରେ ଥାଇ ଇଂଲଣ୍ଡର ବିଦ୍ରୋହୀ ସାମନ୍ତମାନେ ଜଣେ ଆହତ ସେନାଧକ୍ଷଙ୍କ ଠାରୁ ଏକ ମର୍ମନ୍ତୁଦ ସମ୍ବାଦ ଶୁଣିବାକୁ ପାଆନ୍ତି । ଫରାସୀମାନେ ଯୁଦ୍ଧ ଜିଣିଲେ, ସେମାନଙ୍କର ଶିରଚ୍ଛେଦ କରାଯିବ । ସେମାନଙ୍କ ବଞ୍ଚିବାର ଏକମାତ୍ର ଉପାୟ ହେଉଛି ରାଜା ଜନ୍‌ଙ୍କ ନିକଟକୁ ଯାଇ ତାଙ୍କ ପାଦ ତଳେ ଶରଣ ନେବା ।

ଫରାସୀ ଶିବିରରେ ଦୂତ ଆସି ଜଣାଏ - ଇଂଲଣ୍ଡର ସାମନ୍ତମାନେ ସେମାନଙ୍କର ସମର୍ଥନ ପ୍ରତ୍ୟାହାର କରି ନେଇଛନ୍ତି । ଯୁଦ୍ଧସାମଗ୍ରୀ ବହନକାରୀ ଜାହାଜଟି ଗୁଡଉ୍‌ଇନ୍‌ର ବାଲି ପଠାରେ ଧକ୍କା ଖାଇ ବୁଡ଼ି ଯାଇଛି । ଏ ଦୁଃସମ୍ବାଦ ପାଇ ଲୁଇ ଭାଙ୍ଗି ପଡ଼ନ୍ତି । ତଥାପି ସେ କହନ୍ତି ଯେ ପରଦିନ ଆଉଥରେ ଚେଷ୍ଟା କରି ଦେଖିବେ ।

ସୁଇନ୍‌ଷ୍ଟେଡ଼ ଗିର୍ଜାର ନିକଟବର୍ତ୍ତୀ ଅଞ୍ଚଳରେ ଜନ୍‌ଙ୍କୁ ଅଚେତନ ଅବସ୍ଥାରେ ଦେଖାଯାଏ । ତାଙ୍କୁ ବିଷ ଦିଆଯାଇଛି ବୋଲି କେହି କେହି ସନ୍ଦେହ କରନ୍ତି । ଏ କାର୍ଯ୍ୟଟି କୌଣସି ଖ୍ରୀଷ୍ଟିଆନ ସନ୍ନ୍ୟାସୀଙ୍କର ବୋଲି କୁହାଯାଏ । ସୁଇନ୍‌ଷ୍ଟେଡ଼ର ବଗିଚାକୁ ତାଙ୍କୁ ଅଣାଯାଏ । ରାଜକୁମାର ହେନେରି କହନ୍ତି - ଖୁବ୍ ବିଳମ୍ବ ହୋଇଯାଇଛି । ବିଷ ତା'ର ସମଗ୍ର ଦେହ ତଥା ମସ୍ତିଷ୍କକୁ ଚରିଯାଇସାରିଛି । ତାଙ୍କର ଅନ୍ତିମ ସମୟ ପାଖେଇ ଆସିଲାଣି । ସାଲିସ୍‌ବରି ହେନେରିଙ୍କୁ ସାନ୍ତ୍ୱନା ଦେଇ କହନ୍ତି - ଦୁଃଖ କରନ୍ତୁ ନାହିଁ । ତାଙ୍କର ଅସମ୍ପୂର୍ଣ୍ଣ କାର୍ଯ୍ୟ ଯଥାଯଥ ଭାବରେ ସମ୍ପୂର୍ଣ୍ଣ କରିବାର ଦାୟିତ୍ୱ ଏବେ ଆପଣଙ୍କର । ଅଳ୍ପ ସମୟ ପାଇଁ ରାଜାଙ୍କର ଚେତା ଫେରିଆସେ । ଫିଲିପ୍ ତାଙ୍କ ସହିତ ଦେଖା କରିବାକୁ ଆସନ୍ତି । ରାଜା କହନ୍ତି -ଆସିବାକୁ ବହୁତ ବିଳମ୍ବ କରିଦେଲ ବନ୍ଧୁ । ମୋର ଛାତି ଜଳିଯାଉଛି । କହୁ କହୁ ରାଜାଙ୍କର ପ୍ରାଣ ବାହାରିଯାଏ ।

ଜନ୍‌ଙ୍କ ମୃତ୍ୟୁ ପରେ ଇଂଲଣ୍ଡରେ ଏକ ନୂତନ ଯୁଗର ଆରମ୍ଭ ହୁଏ । ସାମନ୍ତମାନଙ୍କ ସମର୍ଥନପୁଷ୍ଟ ତରୁଣ ସମ୍ରାଟ୍‌ଙ୍କ ବିରୋଧରେ ବିଦେଶୀ ବାହିନୀ ବେଶି ଦିନଯାଏ ଇଂଲଣ୍ଡ ମାଟିରେ ସେମାନଙ୍କର ଆଧିପତ୍ୟ ବିସ୍ତାର କରିପାରନ୍ତି ନାହିଁ । ତରୁଣ ରାଜାହିଁ ବର୍ତ୍ତମାନ ଇଂଲଣ୍ଡ ଜନତାର ଏକମାତ୍ର ଭରସା ।

# କିଙ୍ଗ୍ ରିଚାର୍ଡ୍ ଦି. ସେକେଣ୍ଡ

॥ ୧ ॥

ଇଂଲଣ୍ଡର ରାଜା ତୃତୀୟ ଏଡ୍‌ୱାର୍ଡ଼ଙ୍କର ମୃତ୍ୟୁ ପରେ ତାଙ୍କର ପୌତ୍ର ରିଚାର୍ଡ୍ ସିଂହାସନରେ ବସନ୍ତି । ତାଙ୍କର ପିତା ପରିଚିତ ଥିଲେ 'ବ୍ଲାକ୍‌ପ୍ରିନ୍ସ' ନାମରେ ଏବଂ ନିଜର ଚାରିତ୍ରିକ ବୈଶିଷ୍ଟ୍ୟ ଏବଂ ବୀରତ୍ୱ ନିମନ୍ତେ ପ୍ରସିଦ୍ଧି ମଧ୍ୟ ପାଇଥିଲେ । ତାଙ୍କର ଅକାଳ ମୃତ୍ୟୁ ପାଇଁ ଦେଶବାସୀ ଦୁଃଖରେ ଭାଙ୍ଗି ପଡ଼ିଥିଲେ । ରିଚାର୍ଡ୍ ସିଂହାସନରେ ବସନ୍ତି; ମାତ୍ର ଏଗାର ବର୍ଷ ବୟସରେ ଏବଂ ଇଂଲଣ୍ଡବାସୀ ତାଙ୍କ ଠାରୁ ଅନେକ କିଛି ଆଶା କରି ବସିଥିଲେ । ତାହା ଥିଲା ମୁଖ୍ୟତଃ ତାଙ୍କର ଗୁଣବାନ୍ ପିତାଙ୍କର କାର୍ଯ୍ୟାବଳୀର ସ୍ମୃତି ନିର୍ଭର । ତେଣୁ ରିଚାର୍ଡ଼ଙ୍କ ଅଭିଷେକ ଉପଲକ୍ଷରେ ଲଣ୍ଡନରେ ଆନନ୍ଦର ବନ୍ୟା ବହିଯାଇଥିଲା । ରାସ୍ତାରେ ବହୁ ତୋରଣ ନିର୍ମିତ ହୋଇଥିଲା । ସହରର ବଣିକ ସମ୍ପ୍ରଦାୟ ନାଗରିକମାନଙ୍କର ଆନନ୍ଦ ପାଇଁ ସେଠାରେ ସ୍ଥାପନ କରିଥିଲେ ମଦର ଏକ ଫୁଆରା ।

ତେବେ ଗୁଣବାନ୍ ପିତାର ସନ୍ତାନ ଯେ ସବୁବେଳେ ସ୍ମରଣୀୟ ଗୁଣର ଅଧିକାରୀ ହେବ, ପ୍ରକୃତିର ଏଭଳି କୌଣସି ନିୟମ ନାହିଁ । ସମୟ ଯେତେ ଆଗେଇ ଚାଲିଲା, ଇଂଲଣ୍ଡର ଜନତା ସେମାନଙ୍କର ରାଜାଙ୍କ ଉପରୁ ସେତେ ଭରସା ହରାଇବାରେ ଲାଗିଲେ । ରିଚାର୍ଡ୍ ଥିଲେ ଦୁର୍ବଳ ପ୍ରକୃତିର ମଣିଷ, ତା' ଛଡ଼ା ତାଙ୍କର ଉପଯୁକ୍ତ ଶିକ୍ଷାଦୀକ୍ଷାର ବ୍ୟବସ୍ଥା ମଧ୍ୟ କରାଯାଇ ପାରି ନ ଥିଲା । ତାଙ୍କୁ ସର୍ବଦା ଘେରି ରହିଥାଆନ୍ତି ଦଳେ ଚାଟୁକାର, ନିଜର ସ୍ୱାର୍ଥସିଦ୍ଧି ବ୍ୟତୀତ ଯେଉଁମାନଙ୍କର ଅନ୍ୟ କୌଣସି ଉଦ୍ଦେଶ୍ୟ ନ ଥାଏ । ଲୋକ ଚିହ୍ନିବାର କୌଣସି ଅଭିଜ୍ଞତା ରାଜାଙ୍କର ନ ଥିବାରୁ ସେ ସେଇମାନଙ୍କୁ ନିଜର ହିତାକାଂକ୍ଷୀ ଧରି ନେଇ ତାଙ୍କରି ପରାମର୍ଶରେ ଚାଲୁଥାଆନ୍ତି । ପ୍ରଥମେ ତାଙ୍କର ଥିଲେ ବାରଜଣ ପରାମର୍ଶଦାତା । ସେମାନଙ୍କ ଉପରେ ଥିଲେ ରାଜାଙ୍କର ତିନିଜଣ କାକା । ସେମାନେ ଥିଲେ ଯଥାକ୍ରମେ ଲାଙ୍କାଷ୍ଟାର, ୟର୍କ ଓ ଗ୍ଲାଉସେଷ୍ଟରର ଡ୍ୟୁକ୍ । ତିନିଜଣ ଯାକ ଥିଲେ ଈର୍ଷାଳୁ ଏବଂ ପ୍ରାୟ ରାଜକାର୍ଯ୍ୟରେ ମୁଣ୍ଡ ପୂରୋଉଥିଲେ । ଶେଷ ପର୍ଯ୍ୟନ୍ତ ଗ୍ଲାଉସେଷ୍ଟରର ଡ୍ୟୁକ ମୁଖ୍ୟ-ପରାମର୍ଶଦାତା ପଦବୀରେ ଅଧିଷ୍ଠିତ ହୁଅନ୍ତି । ତାଙ୍କର ଅଧୀନସ୍ଥ ପାର୍ଲିଆମେଣ୍ଟକୁ ଲୋକେ 'ଭୟଙ୍କର' ଆଉ 'ନିଷ୍ଠୁର' ବିଶେଷଣରେ ସମ୍ବୋଧନ କରୁଥାଆନ୍ତି । ରିଚାର୍ଡ଼ଙ୍କର ଦୁଇବନ୍ଧୁଙ୍କୁ ଏଇ ପାର୍ଲିଆମେଣ୍ଟ ମୃତ୍ୟୁଦଣ୍ଡ ଦିଏ । ଅନେକଙ୍କର ସମ୍ପତ୍ତିକୁ ମଧ୍ୟ ଗ୍ରାସ କରେ । ଏଥିରେ ରାଜା କ୍ରୁଦ୍ଧ ହୋଇ ସୁଯୋଗର ଅପେକ୍ଷାରେ ରହନ୍ତି ଏବଂ ବାଇଶ ବର୍ଷରେ ପାଦ ଦେବା ମାତ୍ରେ ଘୋଷଣା କରିଦିଅନ୍ତି - ଏଣିକି ସେ ଆଉ କାହାରି ହାତର ଖେଳଣା ହୋଇ ରହିବେ ନାହିଁ । ଅଭିଭାବକମାନଙ୍କୁ ବିଦାୟ ଦେଇ କିଛି ଦିନ ଉତ୍ତମ ରୂପେ ରାଜକାର୍ଯ୍ୟ ପରିଚାଳନା କରନ୍ତି ।

ତେବେ ଶତ୍ରୁମାନଙ୍କୁ କ୍ଷମା କଲାଭଳି ମହତ୍ତ୍ୱ ତାଙ୍କଠାରେ ନ ଥାଏ । ହୁଏତ ଗ୍ଲାଉସେଷ୍ଟରର ଡ୍ୟୁକ୍‌ଙ୍କ ପ୍ରତି ତାଙ୍କ ମନରେ କିଛି ଭୟ ତଥାପି ରହିଯାଇଥାଏ । ଆଠ ବର୍ଷ ପରେ ସେ ହଠାତ୍ ତାଙ୍କର କକାମାନଙ୍କୁ ବନ୍ଦୀ କରନ୍ତି ଏବଂ ତାଙ୍କୁ କାଲେ ପଠାଇ ଦିଅନ୍ତି । ନରଫୋକ୍‌ର ଡ୍ୟୁକ୍ ଟମାସ୍ ଥାଆନ୍ତି ସେ ସମୟରେ ସେଠାର ଅଧିପତି । ବନ୍ଦୀଶାଳାରେ ଗ୍ଲାଉସେଷ୍ଟରର ଡ୍ୟୁକ୍‌ଙ୍କର ରହସ୍ୟଜନକ ଭାବେ ମୃତ୍ୟୁ ହୋଇଯାଏ । ଅନେକେ ଧରି ନିଅନ୍ତି ଯେ ରାଜାଙ୍କର ଆଦେଶରେ ତାଙ୍କୁ ହତ୍ୟା କରାଯାଇଛି । ରାଜାଙ୍କର ରାଜ୍ୟ ପରିଚାଳନା ନୀତିରେ ପରିବର୍ତ୍ତନ ଲକ୍ଷ୍ୟ କରି ଲୋକଙ୍କର ସେଇ ଧାରଣା ବିଶ୍ୱାସରେ ପରିଣତ ହୋଇଥିଲା । ରାଜାଙ୍କର ନୂତନ ପ୍ରିୟପାତ୍ର ହୁଅନ୍ତି ସାରଜନ୍‌ବୁଶି, ସାର ହେନେରି ଗ୍ରୀନ୍, ସାର ଉଇଲିୟମ ଗାବଟ୍ ପ୍ରଭୃତି । ପୁରୁଣାମାନେ ସ୍ୱାଭାବିକ କାରଣରୁ ରାଜ ଅନୁଗ୍ରହରୁ ବଞ୍ଚିତ ହୋଇ ଅନ୍ତରାଳକୁ ଚାଲିଯାଆନ୍ତି । ଏହା ପରେ ପାର୍ଲିଆମେଣ୍ଟ ପୂର୍ବର ସମସ୍ତ ନିୟମକୁ ବାତିଲ୍ କରି ସମସ୍ତ କ୍ଷମତା ରାଜାଙ୍କ ହାତରେ ଅପର୍ଣ କରନ୍ତି । ଫଳରେ ରିଚାର୍ଡ଼ ହୋଇ ଉଠନ୍ତି ସାର୍ବଭୌମ କ୍ଷମତାର ଅଧିକାରୀ । ଏଥିରେ ସମୂହ କ୍ଷତି ହୁଏ ଦେଶର । କାରଣ ଶାସନରେ ଦେଶର ମଙ୍ଗଳ ଚିନ୍ତା ଅପେକ୍ଷା ରାଜାଙ୍କର ରୁଚି ହିଁ ପ୍ରତିଫଳିତ ହୁଏ ଅଧିକ ।

ରାଜାଙ୍କର ଅନ୍ୟ ଦୁଇ କକା ତାଙ୍କୁ ଗ୍ଲାଉସେଷ୍ଟରଙ୍କର ହତ୍ୟାକାରୀ ରୂପେ ଅଭିଯୁକ୍ତ କରିବାର ସାହସ ରଖୁ ନ ଥିଲେ । ତେବେ ଲାଙ୍କାଷ୍ଟାର ଡ୍ୟୁକ୍‌ଙ୍କର ହେନେରି ନାମକ ପୁତ୍ରର ମନୋଭାବ ଥିଲା ସୈନିକ ସୁଲଭ । ସେ ତାର ପିତାଙ୍କ ଭଳି ଏତେ ଭୀରୁ ମଧ ନ ଥିଲା । ହେନେରିର ସ୍ତ୍ରୀ ଥିଲା ଗ୍ଲାଉସେଷ୍ଟରଙ୍କ ବିଧବା ପତ୍ନୀଙ୍କର ଭଉଣୀ । ତେଣୁ ହେନେରି ଚାହୁଁଥିଲା ତା'ର କକାଙ୍କର ହତ୍ୟାର ପ୍ରତିଶୋଧ ନେବା ପାଇଁ । ତଥାପି ଏଥିପାଇଁ ପ୍ରତ୍ୟକ୍ଷ ରୂପରେ ରାଜାଙ୍କୁ ଦୋଷାରୋପ କରିବାର ସାହସ ତା'ର ମଧ ନ ଥିଲା ।

ସେ ଅନ୍ୟ ବାଟ ବାଛିନିଏ । ପ୍ରଥମେ ସେ ବ୍ୟକ୍ତିଗତ ଭାବେ ଏବଂ ପରେ ଖୋଲାଖୋଲି ନରଫୋକର ଡ୍ୟୁକ୍‌ଙ୍କୁ ବିଶ୍ୱାସଘାତକ ବୋଲି ଅଭିଯୁକ୍ତ କରେ । ରାଜା ଉଭୟଙ୍କୁ ଡାକି ତାଙ୍କ ସାମ୍ନାରେ ଦୁହିଁଙ୍କୁ ମୁହାଁମୁହିଁ କରାଇଦିଅନ୍ତି । ରାଜାଙ୍କ ଆଗରେ ଦୁହିଁଙ୍କର ତୁମୁଳ ଝଗଡ଼ା ଚାଲେ । ହେନେରି ଡ୍ୟୁକ୍‌ଙ୍କ ନାମରେ ଅଭିଯୋଗ କରେ ଯେ ସେ ନିଜର ବ୍ୟକ୍ତି-ଗତ ସେବାପାଇଁ ଆଠହଜାର ସାମନ୍ତ ପୋଷିଛନ୍ତି । ଏହା ଏକ ଅପବ୍ୟୟ ଏବଂ ଏ ଅର୍ଥ ରାଜାଙ୍କର ସୈନ୍ୟବାହିନୀର ବେତନ ପାଇଁ ଖର୍ଚ୍ଚ କରାଯାଇପାରନ୍ତା । ପୁଣି ଗତ ଅଠର ବର୍ଷ ଧରି ରାଜ୍ୟରେ ଯେଉଁସବୁ ବିଦ୍ରୋହ ଏବଂ ବିଶ୍ୱାସଘାତକତାର ଘଟଣା ଘଟିଯାଇଛି , ତାର ମୂଳରେ ରହିଛନ୍ତି ଏଇ ବ୍ୟକ୍ତି । ତାଙ୍କରି ଷଡ଼ଯନ୍ତ୍ରରେ ଗ୍ଲାଉସେଷ୍ଟରର ଡ୍ୟୁକ୍‌ଙ୍କର ମୃତ୍ୟୁ ହୋଇଛି । ରିଚାର୍ଡ଼ ଡ୍ୟୁକ୍‌ଙ୍କୁ ପଚାରନ୍ତି, ଏଇସବୁ ଅଭିଯୋଗ ସମ୍ପର୍କରେ ତାଙ୍କର ବକ୍ତବ୍ୟ କଣ ? ହେନେରି ତାଙ୍କର ଭ୍ରାତୁଷ୍ପୁତ୍ର ବୋଲି ଭୟ ପାଇବାର କୌଣସି କାରଣ ନାହିଁ । ସେ ମଧ ତାଙ୍କର ପ୍ରଜା । ରାଜାଙ୍କର ଆଖି ଆଉ କାନ

ଦୁଇଟାଯାକ ପକ୍ଷପାତିତ୍ୱଶୂନ୍ୟ । ସେ ଅନମନୀୟ । ଉତ୍ତରରେ ଡ୍ୟୁକ୍ ଅଭିଯୋଗ ଅସ୍ୱୀକାର କରିବା ସହିତ ତାଙ୍କ ପାଟିକୁ ଯାହା ଆସେ କହିଯାଆନ୍ତି ।

ଦୁଇପକ୍ଷ ଯୁଦ୍ଧ ପାଇଁ ପ୍ରସ୍ତୁତ । ରିଚାର୍ଡ୍ ଉଭୟ ପକ୍ଷକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରନ୍ତି । ହେନେରିଙ୍କ ବୃଦ୍ଧ ପିତାଙ୍କୁ ମଧ ସାହାଯ୍ୟ କରିବାକୁ ଅନୁରୋଧ କରନ୍ତି । ଇତିମଧ୍ୟରେ ଡ୍ୟୁକ୍ ରାଜାଙ୍କର ପାଦ ଧରି ତାଙ୍କ ସମ୍ମାନ ରକ୍ଷା କରିବା ନିମନ୍ତେ ପ୍ରାର୍ଥନା କରନ୍ତି । ହେନେରି ମଧ ଅନମନୀୟ । ଶେଷ ପର୍ଯ୍ୟନ୍ତ ରାଜା ମଧ୍ୟସ୍ଥତା କରିବାର ଚେଷ୍ଟା ଛାଡ଼ିଦେଇ କହନ୍ତି ଯେ ସେ ଅନୁରୋଧ କରିବାକୁ ନୁହେଁ, ଆଦେଶ ଦେବାକୁ ଜନ୍ମ ହୋଇଛନ୍ତି । ସେ ଦୁହେଁ ଯେତେବେଳେ କୌଣସି ଆଦେଶ ମାନିବାକୁ ପ୍ରସ୍ତୁତ ନୁହନ୍ତି, ତେଣୁ ସେମାନେ ଦିନେ ଦ୍ୱନ୍ଦ୍ୱ ଯୁଦ୍ଧରେ ଅବତୀର୍ଣ୍ଣ ହୁଅନ୍ତୁ । ତରବାରି ଏବଂ ବର୍ଛା ସାହାଯ୍ୟରେ ଏଇ ଦ୍ୱନ୍ଦ୍ୱର ମୀମାଂସା ହେଉ ।

ନିର୍ଦ୍ଦିଷ୍ଟ ଦିନ କଭେଣ୍ଟ୍ରି ଉତ୍ସବମୁଖର ହୋଇଥାଏ । ସପାରିଷଦ ରାଜା ଆସନ୍ତି । ବାଦ୍ୟ ବାଜିଉଠେ । ରାଜା ବାଲକନିରେ ଆସନ ଗ୍ରହଣ କରନ୍ତି । ପ୍ରତିଦ୍ୱନ୍ଦ୍ୱୀ ଯୁଗଳ ସେତେବେଳେ ଯୁଦ୍ଧ ପାଇଁ ପ୍ରସ୍ତୁତ । ରାଜାଙ୍କର ନିର୍ଦ୍ଦେଶରେ ଏଇ ଯୁଦ୍ଧର ପରିଚାଳକ ଲର୍ଡ ମାର୍ଶାଲ ଡ୍ୟୁକ୍‌ଙ୍କଠାରୁ ତାଙ୍କର ପରିଚୟ ଓ ଅଭିଯୋଗ ଶୁଣିବାକୁ ଚାହାନ୍ତି । ଉତ୍ତର ମିଳେ, ମୋର ନାମ ଟମାସ୍ ମବ୍ରେ ଏବଂ ମୁଁ ନରଫୋକ୍‌ର ଡ୍ୟୁକ୍ । ଏଠାରେ ମୁଁ ଈଶ୍ୱରଙ୍କ ପ୍ରତି, ରାଜାଙ୍କ ପ୍ରତି ଏବଂ ମୋର ଉତ୍ତରାଧିକାରୀମାନଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିବା ପାଇଁ ହାର୍‌ଫୋର୍ଡର ଡ୍ୟୁକ୍‌ଙ୍କ ବିରୋଧରେ ଦ୍ୱନ୍ଦ୍ୱ ଯୁଦ୍ଧରେ ଅବତୀର୍ଣ୍ଣ ହେବା ପାଇଁ ଉପସ୍ଥିତ ହୋଇଛି । ଈଶ୍ୱରଙ୍କ ଆଶୀର୍ବାଦରୁ ମୁଁ ତାଙ୍କୁ ବିଶ୍ୱାସଘାତକ ପ୍ରମାଣିତ କରିବାକୁ ଚାହେଁ । ଆଶା କରୁଛି ଏ ଯୁଦ୍ଧରେ ଈଶ୍ୱର ମୋର ସହାୟ ହେବେ ।

ହେନେରିଙ୍କୁ ସେଇ ପ୍ରଶ୍ନ ପଚରାଯାଏ । ସେ ନିଜର ପରିଚୟ ଦେଇ କହନ୍ତି, ମୁଁ ଏଠାକୁ ଟମାସ୍ ମବ୍ରେଙ୍କ ବିରୋଧରେ ଯୁଦ୍ଧରେ ଅବତୀର୍ଣ୍ଣ ହେବା ପାଇଁ ଆସିଛି । ମୁଁ ପ୍ରମାଣ କରିବାକୁ ଚାହେଁ ଯେ ସେ ଈଶ୍ୱରଙ୍କ ପ୍ରତି, ରାଜାଙ୍କ ପ୍ରତି ଏବଂ ମୋ ପ୍ରତି ବିଶ୍ୱାସଘାତକତା କରିଛନ୍ତି । ଏ ଯୁଦ୍ଧରେ ଈଶ୍ୱର ମୋର ସହାୟ ହୁଅନ୍ତୁ । ଲର୍ଡ୍ ମାର୍ଶାଲ ଏହା ପରେ ଜଣାଇ ଦିଅନ୍ତି ଯେ, ଯୁଦ୍ଧର ନିୟମାନୁସାରେ କୌଣସି ପ୍ରତିପକ୍ଷ ଆହତ ହେଲେ ତାଙ୍କୁ ଆଉ ଆଘାତ କରାଯାଇପାରିବ ନାହିଁ । ଯୁଦ୍ଧ ଆରମ୍ଭ ପୂର୍ବରୁ ହେନେରି ରାଜାଙ୍କ ଆଗରେ ନତଜାନୁ ହୋଇ ରାଜାଙ୍କର ହସ୍ତ ଚୁମ୍ବନ କରିବାକୁ ଚାହେଁ ଏବଂ ତା' ସହିତ ବନ୍ଧୁମାନଙ୍କଠାରୁ ବିଦାୟ ମଧ ନିଏ । ଭ୍ରାତୃଷ୍ପୁତ୍ରର ଆବେଦନ ଗ୍ରହଣ କରି ରାଜା କହନ୍ତି ଯେ, ସେ ନିଜେ ତଳକୁ ଓହ୍ଲାଇ ତାକୁ ଆଲିଙ୍ଗନ କରିବେ । ଆଲିଙ୍ଗନ କରି ତାକୁ ଶୁଭେଚ୍ଛା ଜଣାଇ କହନ୍ତି, ଯଦି ତମେ ଠିକ୍ ବାଟରେ ଥିବ, ତେବେ ତମର ଜୟ ହେଉ । ଯଦିଓ ତମେ ମୋର ଆତ୍ମୀୟ ଏବଂ ତମର ରକ୍ତପାତରେ ମୁଁ ଦୁଃଖିତ ହେବି, ତଥାପି ପ୍ରତିଶୋଧ ନେବାର ପ୍ରଶ୍ନ ଏ କ୍ଷେତ୍ରରେ ଉଠିବ ନାହିଁ ।

- ନା' ଦୁର୍ଭାଗ୍ୟକୁ ଯଦିବା ମୋର ପରାଜୟ ହୋଇଯାଏ, ତେବେ କାହାର ଶୋକ କରିବାର ପ୍ରୟୋଜନ ନାହିଁ - ହେନେରି କହେ । 'ମୁଁ ସ୍ୱେଚ୍ଛାରେ ଏଇ ଯୁଦ୍ଧ ପାଇଁ ରାଜି ହୋଇଛି ।' ତା ପରେ ସେ ନିଜ ପିତାଙ୍କଠାରୁ ଆଶୀର୍ବାଦ କାମନା କରି କହେ - ଏ ଯୁଦ୍ଧରେ ମୋର ସମ୍ମାନ ବଜାୟ ରଖିବାର ଆଶୀର୍ବାଦ ଦିଅନ୍ତୁ ।

- ଈଶ୍ୱର ତମର ସହାୟ ହୁଅନ୍ତୁ ।' ପିତା ଉତ୍ତର ଦିଅନ୍ତି ।

ରାଜା ଟମାସ୍‌ଙ୍କୁ ମଧ୍ୟ ବିଦାୟ ଜଣାନ୍ତି । ଉତ୍ତରରେ ଟମାସ୍ କହନ୍ତି - ଈଶ୍ୱର ଏବଂ ମୋର ସୌଭାଗ୍ୟ - ଏ ଯୁଦ୍ଧରେ ଉଭୟ ମୋର ସହାୟ । ମୁଁ ଆପଣଙ୍କର ଅନୁଗତ ଏବଂ ନ୍ୟାୟନିଷ୍ଠ । ହୁଏତ ମୁଁ ଏ ଯୁଦ୍ଧରେ ଜୀବିତ ରହିପାରେ କିମ୍ବା ନ ରହିପାରେ । ମୋ ପାଇଁ ଆପଣଙ୍କର ଶୁଭେଚ୍ଛାର ପ୍ରୟୋଜନ ନାହିଁ ।

- ବିଦାୟ - ରିଚାର୍ଡ଼ କହନ୍ତି - ତମ ଆଖିରେ ମୁଁ ନିଷ୍ଠା ଆଉ ବୀରତ୍ୱ - ଏ ଦୁଇଟିକୁ ଦେଖିବାକୁ ପାଉଛି ।

ପ୍ରତିଦ୍ୱନ୍ଦ୍ୱୀମାନେ ସେମାନଙ୍କର ବର୍ଚ୍ଛା ଗ୍ରହଣ କରନ୍ତି । ଶପଥ ପାଠ କରନ୍ତି ଏବଂ ତା' ପରେ ମାର୍ଶାଲ୍ ଯୁଦ୍ଧ ଆରମ୍ଭ କରିବାର ସଂକେତ ଦିଅନ୍ତି । ଦୁଇ ପ୍ରତିଦ୍ୱନ୍ଦ୍ୱୀ ଜଣେ ଅନ୍ୟକୁ ଆକ୍ରମଣ କରିବାକୁ ଚେଷ୍ଟା କରନ୍ତି । ଘୋଡ଼ାମାନଙ୍କର ଗତି ଦ୍ରୁତତର ହୁଏ । କିନ୍ତୁ ମାର୍ଶାଲ୍ ହଠାତ୍ ଯୁଦ୍ଧ ବନ୍ଦ କରାଇ ଦିଅନ୍ତି । ରାଜା ତାଙ୍କୁ ଇସାରାରେ ସେହିଭଳି କରିବାର ନିର୍ଦ୍ଦେଶ ଦେଇଥାଆନ୍ତି ।

ଟୋପି ଆଉ ବର୍ଚ୍ଛା ରଖିଦେଇ ତାଙ୍କ ପାଖକୁ ଯିବାକୁ ରାଜା ଆଦେଶ ଦିଅନ୍ତି । ସେମାନେ ଆଦେଶ ପାଳନ କରନ୍ତି । ରାଜା ତାଙ୍କର ସଭାସଦ୍‌ଙ୍କ ସହିତ ପରାମର୍ଶ କରିସାରିବା ପରେ କହନ୍ତି, ସିଦ୍ଧାନ୍ତ କରାଗଲା ଯେ, ତମ ଦୁହିଁଙ୍କୁ ନିର୍ବାସନରେ ଯିବାକୁ ହେବ । ହେନେରିଙ୍କ ପାଇଁ ଏଇ ସମୟସୀମା ରହିବ ଦଶବର୍ଷ ଏବଂ ଟମାସ୍‌ଙ୍କ ପାଇଁ କୌଣସି ସମୟ ସୀମା ନିର୍ଦ୍ଦେଶ କରାଯାଉ ନାହିଁ ।

- ତା'ର ଅର୍ଥ ଯାବଜ୍ଜୀବନ ! ଏ ବଡ଼ କଠିନ ଶାସ୍ତି । ଚାଳିଶ ବର୍ଷ ଧରି ମୁଁ ଯେଉଁ ଭାଷା ଶିଖିଛି, ତାକୁ ଏବେ ଭୁଲିଯିବାକୁ ହେବ ? ନୂଆ ଭାଷା ଶିଖିବାର ବୟସ କ'ଣ ମୋର ଆଉ ଅଛି ? ମୋତେ ଯେଉଁ ଶାସ୍ତି ଦିଆଯାଉଛି ତା ମୃତ୍ୟୁତୁଲ୍ୟ - ଟମାସ୍ କହିଯାଆନ୍ତି ।

ଆବେଦନ ଜଣାଇବାର ସମୟ ଅତିକ୍ରାନ୍ତ - ରାଜା ସଂକ୍ଷେପରେ କହନ୍ତି । ତା' ପରେ ସେ ଉଭୟଙ୍କୁ ଡାକି ଶପଥ କରାଇ ନିଅନ୍ତି ଯେ, ସେମାନେ କେବେ ରାଜାଙ୍କ ବିରୋଧରେ ଷଡ଼ଯନ୍ତ୍ର କରିବେ ନାହିଁ । ଉଭୟେ ତରବାରି ସ୍ପର୍ଶ କରି ଶପଥ କରନ୍ତି । ହେନେରି ଶେଷ ଥର ପାଇଁ ଟମାସ୍‌ଙ୍କଠାରୁ ଏକ ସ୍ୱୀକାରୋକ୍ତି ଆଦାୟ କରିନେବା ପାଇଁ ଚେଷ୍ଟା କରେ । ଟମାସ୍ କହନ୍ତି ମୁଁ ବିଶ୍ୱାସଘାତକ ନୁହେଁ । ଏକଥା ଈଶ୍ୱର, ତମେ ଆଉ ମୁଁ ଜାଣୁ । ଅଳ୍ପ ଦିନ ମଧ୍ୟରେ ରାଜା ମଧ୍ୟ ଏ କଥା ଜାଣିବେ ।

ଟମାସ୍ ନିର୍ବାସନରେ ଚାଲିଯାଆନ୍ତି । ସେ ଚାଲିଯିବା ପରେ ଦୁର୍ବଳଚିତ୍ତ ରାଜା ହେନେରିର ବୃଦ୍ଧ ପିତାଙ୍କର ଦୁଃଖ ଦେଖି ତା'ର ଶାସ୍ତି ଚାରିବର୍ଷ କମାଇ ଦିଅନ୍ତି । ଏଥିରେ କେହି ଖୁସି ହୁଅନ୍ତି ନାହିଁ, ଏଭଳିକି ହେନେରି ତାଙ୍କୁ ସାମାନ୍ୟ ଧନ୍ୟବାଦଟିଏ ବି ଦିଏ ନାହିଁ ; କିନ୍ତୁ ତା'ର ପିତା କହନ୍ତି - ମୋ ପୁତ୍ରର ଦଣ୍ଡ ଚାରିବର୍ଷ କମାଇ ଦେଇଥିବାରୁ ରାଜାଙ୍କୁ ଧନ୍ୟବାଦ । କିନ୍ତୁ ସେଥିରେ ମୋର ଯେ ଖୁବ୍ ଉପକାର ହେବ, ଏଭଳି ଲାଗୁ ନାହିଁ । ହୁଏତ ଛ' ବର୍ଷ ପୂର୍ବରୁ ହିଁ ମୁଁ ଏ ପୃଥିବୀରୁ ବିଦାୟ ନେବି । ମୁଁ ଆଉ କୌଣସିଦିନ ତାକୁ ଦେଖିବାକୁ ପାଇବି ନାହିଁ ।

- ସେମିତି କହନ୍ତୁ ନାହିଁ କକା, ଆପଣ ଆହୁରି ଅନେକ ଦିନ ବଞ୍ଚିବେ । ରିଚାର୍ଡ଼ ତାଙ୍କୁ ଉତ୍ସାହିତ କରନ୍ତି ।

- ଯେତିକି ଆୟୁଷ ନେଇ ମୁଁ ଆସିଛି, ତାହା ଅପେକ୍ଷା ଗୋଟାଏ ମିନିଟ୍ ଅଧିକ କେହି ଦେଇପାରିବେ ନାହିଁ, ଏମିତିକି ରାଜା ମଧ ନୁହେଁ । ମୋ ଜୀବନକୁ ଦୁଃଖମୟ କରି ତମେ ମୋର ଆୟୁଷ କମାଇ ଦେଇପାର, ମୋତେ ହତ୍ୟା କରିପାର, କିନ୍ତୁ ଆୟୁ ବଢ଼ାଇପାରିବ ନାହିଁ ।

- ଆପଣଙ୍କର ସମ୍ମତି ଓ ପରାମର୍ଶ ନିଆଯାଇ ତ ଆପଣଙ୍କ ପୁଅକୁ ନିର୍ବାସନ ଦଣ୍ଡ ଦିଆଯାଇଛି - ରିଚାର୍ଡ଼ କହନ୍ତି ।

- ସେ ରାୟ ମୁଁ ବିଚାରକ ରୂପେ ଦେଇଛି, ପିତା ରୂପରେ ନୁହେଁ । ତାହାହିଁ ମୋର ଧ୍ୱଂସକୁ ଡାକି ଆଣିଛି । ଭାବିଥିଲି ଆପଣଙ୍କ ଭିତରୁ କେହି ହେଲେ କହିବେ ଯେ, ମୁଁ ମୋର ପୁତ୍ର ପ୍ରତି ଅତ୍ୟନ୍ତ କଠୋର ହୋଇଛି ବୋଲି । ମାତ୍ର ଆପଣମାନେ ତାହା କହିଲେ ନାହିଁ ଏବଂ ନିଜ ପ୍ରତି ଏଇ ଅନ୍ୟାୟଟିକୁ କରାଇଲେ । ଜନ୍‌ଙ୍କର ଏଇ ଅଭିଯୋଗର କୌଣସି ଉତ୍ତର ରିଚାର୍ଡ଼ ଦେଇପାରନ୍ତି ନାହିଁ । ସଂକ୍ଷେପରେ ସମସ୍ତଙ୍କୁ ବିଦାୟ ଜଣାଇ ସେ ଚାଲିଯାଆନ୍ତି । ଅସହାୟ ବୃଦ୍ଧ ପିତା ଶୂନ୍ୟକୁ ଅନାଇ କେବଳ ଅନୁଚ୍ଚ ସ୍ୱରରେ ଉଚ୍ଚାରଣ କରୁଥାଆନ୍ତି ଛ' ବର୍ଷ... ଛ' ବର୍ଷ !!

ହେନେରି ସମସ୍ତଙ୍କୁ ବିଦାୟ ଜଣାଇ କହନ୍ତି - 'ମୁଁ ଯେଉଁଠି ଥାଏ ନା କାହିଁକି, ଜନ୍ମଭୂମିରୁ ନିର୍ବାସିତ ହୁଏନା କାହିଁକି, ଗର୍ବର ସହିତ ସବୁବେଳେ କହୁଥିବି ମୁଁ ଜଣେ ଇଂରେଜ ।'

ଅନ୍ତରାଳରେ ରିଚାର୍ଡ଼ ନିଜର ପ୍ରିୟପାତ୍ରମାନଙ୍କୁ କହନ୍ତି ଯେ, ହେନେରି ସମସ୍ୟାରୁ ମୁକ୍ତିପାଇ ସେ ଯଥାର୍ଥରେ ଆନନ୍ଦିତ । ରାଜାଙ୍କର କୌଣସି ପୁତ୍ରସନ୍ତାନ ନ ଥାଏ । ଏଣେ ଲାଙ୍କାଷ୍ଟାରଙ୍କର ସନ୍ତାନଟି ପ୍ରତି ସାଧାରଣ ଜନତା ଅତ୍ୟନ୍ତ ପ୍ରସନ୍ନ ଥିବାରୁ ସମସ୍ତେ ଧରିନେଇଥିଲେ ଯେ, ଭବିଷ୍ୟତ୍‌ରେ ସେଇ ହିଁ ଏବେ ରାଜମୁକୁଟର ଅଧିକାରୀ ।

ରାଜାଙ୍କର ପାରିଷଦ ଗ୍ରୀନ୍ କହନ୍ତି - ଯାହାହେଉ, କଣ୍ଟାଟା ଦୂର ହୋଇଛି । ଥରେ ଆଖିରୁ ଆଢୁଆଳ ହୋଇଗଲେ କିଏ ବା କାହାକୁ ମନେ ରଖୁଛି ? ନିଶ୍ଚିତ ହୋଇ ରାଜା ଏଥର

ବିଳାସ ବ୍ୟସନ ପାଇଁ ପ୍ରଚୁର ବ୍ୟୟ କରିବାକୁ ଆରମ୍ଭ କରନ୍ତି । ଶେଷରେ ଆୟାର୍ଲାଣ୍ଡ ବିଦ୍ରୋହ ଦମନ କରିବା ନିମନ୍ତେ ଉତ୍କଟ ଅର୍ଥାଭାବ ଘଟିବା ଭଳି ଅବସ୍ଥା ଆସିଯାଏ । ଦିନେ ଏହିସବୁ ବିଷୟରେ ଆଲୋଚନା ଚାଲିଥିବା ସମୟରେ ଖବର ମିଳେ ଯେ, ଜନ୍ ଗୁରୁତର ଅସୁସ୍ଥ ହୋଇ ପଡ଼ିଛନ୍ତି । ପ୍ରିୟପାତ୍ରମାନଙ୍କ ଆଗରେ ନିଜର ମନୋଭାବ ପ୍ରକାଶ କରି ରାଜା କହନ୍ତି - ମୁଁ ଚାହେଁ ତାଙ୍କର ବର୍ତ୍ତମାନ ମୃତ୍ୟୁ ହେଉ । ତାଙ୍କର ସିନ୍ଦୁକରେ ଯାହା ସଞ୍ଚିତ ଅଛି, ତହିଁରେ ଆମର ଆୟର୍ଲାଣ୍ଡ ଯୁଦ୍ଧ ଖର୍ଚ୍ଚଟା ଚଳିଯିବ ।

ରାଜାଙ୍କ ମୁହଁରେ କୁଟିଳ ହସ ଖେଳିଯାଏ ।

॥ ୨ ॥

ଜନ୍ ପ୍ରକୃତରେ ଅସୁସ୍ଥ ହୋଇ ପଡ଼ିଥାଆନ୍ତି । ପୁତ୍ର ନିର୍ବାସନଜନିତ ଦୁଃଖ ତାଙ୍କୁ ଗଭୀର ଭାବେ ଆହତ କରିଥାଏ । ହଲବର୍ଣ୍ଣରେ ଥିବା ନିଜ ଘରେ ସେ ଶଯ୍ୟାଶାୟୀ ହୋଇପଡ଼ନ୍ତି । ବିଛଣାରେ ଶୋଇ ଶୋଇ ସେ ତାଙ୍କ ଭାଇ ୟର୍କର ଡ୍ୟୁକ୍‌ଙ୍କ ସହିତ ରିଚାର୍ଡ଼ଙ୍କୁ ଶେଷଥର ପାଇଁ ସତର୍କ କରିଦେବା ବିଷୟରେ ଆଲୋଚନା କରୁଥାଆନ୍ତି । ତାଙ୍କର ବିଶ୍ୱାସ ଥାଏ ମୃତ୍ୟୁ ପଥ ଯାତ୍ରୀ ଏଇ ଆତ୍ମୀୟର ପରାମର୍ଶକୁ ରାଜା କଦାପି ଉପେକ୍ଷା କରିବେ ନାହିଁ ।

ୟର୍କର ଡ୍ୟୁକ୍ କହନ୍ତି - ସେଭଳି ସମ୍ଭାବନା ଆଦୌ ନାହିଁ, କାରଣ ରାଜା ବର୍ତ୍ତମାନ ଚାଟୁକାରମାନଙ୍କର ବ୍ୟାଜସ୍ତୁତି ଦ୍ୱାରା ମନ୍ତ୍ରମୁଗ୍ଧ । ତାଙ୍କୁ ପରାମର୍ଶ ଦେବା ତେଣୁ ଶକ୍ତିର ଅପଚୟ ହେବ । ଜନ୍ କିନ୍ତୁ କହିବା ପାଇଁ ନିଷ୍ପତ୍ତି କରନ୍ତି । ରାଜାଙ୍କ ପାଇଁ ଅପେକ୍ଷା କରୁ କରୁ ସେ ଅନୁଚ୍ଚ ସ୍ୱରରେ କ'ଣ ସବୁ କହି ଯାଉଥାଆନ୍ତି । ତାହାରି ଭିତରୁ ପ୍ରକାଶ ପାଉଥାଏ ଜନ୍ମଭୂମି ପ୍ରତି ତାଙ୍କର ସମ୍ମାନ ଓ ଗୌରବବୋଧ । ଏତିକିବେଳେ ସେଠାରେ ପ୍ରବେଶ କରନ୍ତି ସପାରିଷଦ ରାଜଦମ୍ପତି ।

ପ୍ରବେଶ କଲା ମାତ୍ରେ ରାଣୀ ପ୍ରଶ୍ନ କରନ୍ତି - 'କେମିତି ଅଛନ୍ତି କକା ?'

- 'କକାଙ୍କ ସହ ସମୟ କିଭଳି କଟୁଛି ?' ରାଜା ୟର୍କର ଡ୍ୟୁକ୍‌ଙ୍କୁ ପ୍ରଶ୍ନ କରନ୍ତି । ଏଇ ବୃଦ୍ଧ କିନ୍ତୁ ଏବେବି ସୁପ୍ତ - ଇଂଲଣ୍ଡ କଥା ଭାବୁଛି - ଦୁର୍ବଳ ସ୍ୱରରେ ଜନ୍ କହନ୍ତି । - ଅସୁସ୍ଥ ଆଉ ମୃତ୍ୟୁ ପଥଯାତ୍ରୀଙ୍କର ଏମିତି ରସବୋଧ ଥାଏନା କ'ଣ ! ରିଚାର୍ଡ଼ ବିଦ୍ରୂପାତ୍ମକ କଣ୍ଠରେ କହନ୍ତି । ହଠାତ୍ ତକିଆରେ ଭାର ଦେଇ ଜନ୍ ମୁଣ୍ଡ ଟେକି କହନ୍ତି - ଅସୁସ୍ଥ ମୁଁ ନୁହେଁ । ତମେ - ତମେ ଅସୁସ୍ଥ । ତମର ରାଜ୍ୟ ହୋଇଛି ଆଜି ତମ ପାଇଁ ମୃତ୍ୟୁଶଯ୍ୟା । ତା'ପରେ ସେ ରାଜାଙ୍କୁ ରାଜ୍ୟ ପରିଚାଳନାର ନାନା ଦୋଷତ୍ରୁଟି ଦର୍ଶାଇ ଭର୍ତ୍ସନା କରିବାରେ ଲାଗନ୍ତି । ରିଚାର୍ଡ଼ ପ୍ରଥମେ ସାମାନ୍ୟ ଭୟ ପାଇଯାଇଥିଲେ ହେଁ ରାଗିଯାଆନ୍ତି । କହନ୍ତି - ଆପଣ କେବଳ ପାଗଳ ନୁହନ୍ତି, ମୂର୍ଖ ମଧ୍ୟ । ମୋତେ ଏଭଳି ତିରସ୍କାର କରିବାର ଅଧିକାର ଆପଣଙ୍କୁ କିଏ ଦେଲା ?

ଆପଣ ଯଦି ମହାନ୍ ଏଡ୍‌ୱାର୍ଡ୍‌ଙ୍କର ପୁତ୍ର ହୋଇ ନ ଥାନ୍ତେ, ତେବେ ଏତେବେଳକୁ ଆପଣଙ୍କ କାନ୍ଧ ଉପରେ ମୁଣ୍ଡଟା ଆଉ ନ ଥାନ୍ତା ।

- ମୋତେ ବି ଆଉ ବଞ୍ଚାଇ ରଖିବା ଦରକାର ନାହିଁ । ମୋ ଭାଇ ଗ୍ଲାଉସେଷ୍ଟରଙ୍କର ମୃତ୍ୟୁ ପରଠାରୁ ମୁଁ ବୁଝିଯାଇଛି ଯେ ତମର ପିତାମହ ଏଡ୍‌ୱାର୍ଡ୍‌ଙ୍କ ରକ୍ତପାତ ଘଟାଇବାକୁ ମଧ୍ୟ ତୁମେ ହଟିଯିବ ନାହିଁ ।' ଯାହା କହିବାକୁ ଚାହିଁ ସେ ଏତେଦିନ ଯାଏ କହିପାରି ନ ଥିଲେ । ସେଇ କଥାଟି କହିଦେବା ପରେ ଜନ୍‌ଙ୍କର ମୃତ୍ୟୁ ହୋଇଯାଏ ।

ତାଙ୍କର ମୃତ୍ୟୁରେ ଉଲ୍ଲସିତ ରାଜା ତାଙ୍କର ସମ୍ପତ୍ତି ଓ ଅର୍ଥ କିଭଳି ହସ୍ତଗତ କରାଯାଇପାରିବ, ସେଥିପାଇଁ ପ୍ରିୟପାତ୍ରମାନଙ୍କ ସହିତ ଆଲୋଚନାରେ ବସିଯାଆନ୍ତି । ଏ ଭିତରେ ୟର୍କର ବୃଦ୍ଧ ଡ୍ୟୁକ୍ ମଧ୍ୟ ରିଚାର୍ଡ୍‌ଙ୍କ ଆଚରଣରେ କ୍ଷୁବ୍ଧ ହୋଇ ପ୍ରତିବାଦ କରନ୍ତି । ଦେଶର ଏଇ ଅବମାନନାରେ ସେ ହୁଏତ ଜନ୍‌ଙ୍କ ଭଳି ବିଚଳିତ ହୋଇ ନ ଥାନ୍ତେ । ତେବେ ତାଙ୍କ ପରିବାର ପ୍ରତି ଯେଉଁ ଅନ୍ୟାୟ କରାଯାଇଥିଲା ତାହା ତାଙ୍କୁ ବ୍ୟଥିତ କରୁଥିଲା । ଅନ୍ତତଃ ଥରେ ସାହସର ସହିତ ସେ ଏକଥା ରିଚାର୍ଡ୍‌ଙ୍କୁ କହିଦେଲେ ମଧ୍ୟ ।

ରିଚାର୍ଡ୍ ଏଥିରେ ଗଭୀର ବିସ୍ମୟ ପ୍ରକାଶ କରନ୍ତି ଏବଂ ଡ୍ୟୁକ୍‌ଙ୍କୁ ଏହାର କାରଣ ପଚାରନ୍ତି । ହେନେରିକୁ ବଞ୍ଚିତ କରି ତା'ର ପିତାଙ୍କ ସମ୍ପତ୍ତିକୁ ବାଜ୍ୟାପ୍ତ କରିବାର ଫଳ ଯେ କଦାପି ଭଲ ହେବ ନାହିଁ ଏହା ବୃଦ୍ଧ ଡ୍ୟୁକ୍ ଜଣାଇ ଦିଅନ୍ତି । ରାଜା ଉତ୍ତର ଦିଅନ୍ତି ଯେ, ସେ ସମ୍ପତ୍ତି ନିଶ୍ଚୟ ବାଜ୍ୟାପ୍ତ ହେବ । ଏଥିରେ ଯିଏ ଯାହା ଭାବିବାର ଭାବିପାରେ । ଡ୍ୟୁକ୍ କହନ୍ତି ଯେ ଏ କାର୍ଯ୍ୟରେ ତାଙ୍କର ଆଦୌ ସମର୍ଥନ ନାହିଁ । ସେ ଚାଲିଯାଉ ଯାଉ କହିଯାଆନ୍ତି -ଏଭଳି ଅନ୍ୟାୟ କାର୍ଯ୍ୟକୁ ସେ କଦାପି ସମର୍ଥନ କରି ନ ପାରନ୍ତି ।

ରାଜା ନିଜର ଅସ୍ଥିରତାର ଅନ୍ୟ ଏକ ପ୍ରମାଣ ଏହି ସମୟରେ ଦିଅନ୍ତି । ଲାଙ୍କାଷ୍ଟାରଙ୍କ ସମ୍ପତ୍ତି ଗ୍ରାସ କରିବା ସହିତ ସେ ଆୟର୍ଲାଣ୍ଡ ଯୁଦ୍ଧଜନିତ ନିଜର ଅନୁପସ୍ଥିତି ସମୟରେ ୟର୍କର ଡ୍ୟୁକ୍‌ଙ୍କୁ ଗଭର୍ଣ୍ଣର ନିଯୁକ୍ତ କରନ୍ତି । ପ୍ରକୃତରେ ସେ ବଡ଼ ହୋଇଥିଲେ କକାମାନଙ୍କର ଶାସନର ଭୟ ମଧ୍ୟରେ । ତା'ର ପ୍ରଭାବ ସେଯାଏ ମଧ୍ୟ ଥିଲା । କିନ୍ତୁ କ୍ଷମତା ଭୋଗ କରିବା ୟର୍କର ଡ୍ୟୁକ୍‌ଙ୍କ ଭାଗ୍ୟରେ ନ ଥିଲା - ନରଦମ୍ବରଲାଣ୍ଡର ଆର୍ଲ ରାଜାଙ୍କର ଏଇ ସିଦ୍ଧାନ୍ତର ତୀବ୍ର ନିନ୍ଦା କରନ୍ତି ଏବଂ ଅନ୍ୟାନ୍ୟ ସାମନ୍ତମାନଙ୍କ ନିକଟରେ ରାଜାଙ୍କର ବିରୋଧରେ ଅନେକ କଥା କହନ୍ତି । ଇତିମଧ୍ୟରେ ବ୍ରିଟାନିରୁ ଶୁଣାଯାଏ ଯେ, ହେନେରି କେତେ ଜଣ ବନ୍ଧୁଙ୍କ ସହିତ ତିନିହଜାର ସୈନ୍ୟ ନେଇ ଆଠଟି ବଡ଼ ଜାହାଜରେ ଇଂଲଣ୍ଡ ଅଭିମୁଖେ ଯାତ୍ରା କରିଛନ୍ତି । ତାଙ୍କର ଇଚ୍ଛା ଇଂଲଣ୍ଡର ଉତ୍ତର ପୂର୍ବାଞ୍ଚଳରେ ଅବତରଣ କରିବେ । ସେମାନେ କେବଳ ରାଜାଙ୍କର ଅନୁପସ୍ଥିତିର ଅପେକ୍ଷାରେ ଥିଲେ ।

କଥାଟା ମିଛ ନ ଥିଲା । ହେନେରି ରାଭେନ୍ସ ପାର୍‌ଘରେ ଅବତରଣ କରନ୍ତି ଏବଂ ନର୍‌ଦମ୍‌ବରଲାଣ୍ଡ ଅନ୍ୟ କିଛି ବିକ୍ଷୁବ୍ଧ ସାମନ୍ତଙ୍କୁ ନେଇ ତାଙ୍କ ଦଳରେ ଯୋଗ ଦିଅନ୍ତି । କ୍ରମେ ଏହି ଦଳ ବଡ଼ ହେବାରେ ଲାଗେ । ରାଣୀଙ୍କ କାନରେ ଯେତେବେଳେ ଏଇ ସମ୍ବାଦ ଆସି ପହଞ୍ଚେ ସେତେବେଳେ ସେ ଦୁଇ ଜଣ ସାମନ୍ତଙ୍କ ସହିତ କଥାବାର୍ତ୍ତା ହେଉଥାଆନ୍ତି । ସ୍ୱାମୀଙ୍କର ଅନୁପସ୍ଥିତିରେ ତାଙ୍କର ମନ ଭାରାକ୍ରାନ୍ତ ଥାଏ । କାରଣ ସେ ତାଙ୍କୁ ପ୍ରକୃତରେ ଭଲ ପାଉଥିଲେ । ଏ ସମ୍ବାଦ ତାଙ୍କୁ ଦୁଷ୍ଚିନ୍ତାଗ୍ରସ୍ତ କରେ । ୟର୍କର ଡ୍ୟୁକ୍ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ନ୍ତି । ରାଣୀଙ୍କ ନିକଟକୁ ଯାଇ ଏଇ ଶାସନ କାର୍ଯ୍ୟ ଚଳାଇବା ପାଇଁ ତାଙ୍କର ଅକ୍ଷମତା ବାରମ୍ବାର ପ୍ରକାଶ କରନ୍ତି । ଆୟର୍ଲାଣ୍ଡକୁ କୌଣସି ଖବର ଦିଆଯାଇ ନ ଥାଏ । ଅନାହୂତ ଯୁଦ୍ଧ ନିମନ୍ତେ ପ୍ରଚୁର ଅର୍ଥର ଆବଶ୍ୟକତା ମଧ ଥାଏ । ଏ ଅବସ୍ଥାରେ କ'ଣ କରାଯାଇପାରିବ ବୃଦ୍ଧ ତାହା ଚିନ୍ତା କରି ପାରୁ ନ ଥାନ୍ତି । ସେ ସ୍ୱୀକାର କରନ୍ତି ଦୁଇ ଆତ୍ମୀୟଙ୍କ ମଧରେ ଥାଇ ତାଙ୍କୁ ଧର୍ମସଙ୍କଟରେ ପଡ଼ିବାକୁ ହେଉଛି । ରାଜା ଶାସନ ଦାୟିତ୍ୱ ତାଙ୍କ ହାତରେ ନ୍ୟସ୍ତ କରିଥିବାରୁ ତାହାର ସୁପରିଚାଳନା ତାଙ୍କର ଦାୟିତ୍ୱ । ଏଣେ ହେନେରି ପ୍ରତି ରାଜା ଅନ୍ୟାୟ କରିଥିବାର ମଧ ସେ ଜାଣନ୍ତି । ଏ ଟଣାଟଣିରେ ସେ ନିଜର କର୍ତ୍ତବ୍ୟ ନିର୍ଦ୍ଧାରଣ କରିପାରୁ ନାହାନ୍ତି । ତଥାପି ସେ ସଙ୍ଗୀମାନଙ୍କୁ ସୈନ୍ୟ ସହ ବାର୍କଲେରେ ତାଙ୍କ ସହିତ ମିଳିତ ହେବା ନିମନ୍ତେ କହନ୍ତି ।

ଏହା ଅବଶ୍ୟ ସ୍ପଷ୍ଟ ହୋଇସାରିଥିଲା ଯେ, ଏ ଦୁର୍ବଳ ନେତୃତ୍ୱ ଦ୍ୱାରା କିଛି କାର୍ଯ୍ୟକାରୀ ହୋଇପାରିବ ନାହିଁ । ୟର୍କର ଡ୍ୟୁକ୍ ଚାଲିଯିବା ପରେ ଉପସ୍ଥିତ ତିନି ସାମନ୍ତ ବୁଶି, ବାଗଟ୍ ଓ ଗ୍ରୀନ୍ ପଳାଇଯାଇ ଆତ୍ମରକ୍ଷା କରିବାର ସିଦ୍ଧାନ୍ତ ନିଅନ୍ତି । ଏଣେ ଆୟର୍ଲାଣ୍ଡରୁ ଖରାପ ଖବର ଆସେ । ଭୟର ଯଥେଷ୍ଟ କାରଣ ମଧ ଥିଲା । ହେନେରି ଦଳବଳ ନେଇ ବାର୍କଲେ ଆଡ଼େ ଛୁଟି ଆସୁଥାଆନ୍ତି । ବୃଦ୍ଧ ଡ୍ୟୁକ୍ ସେଠାରେ ଭ୍ରାତୁଷ୍ପୁତ୍ରକୁ ବାଧା ଦିଅନ୍ତି । କିନ୍ତୁ ହେନେରି ତାଙ୍କୁ ସାକ୍ଷାତ୍ କରି କହନ୍ତି, କକା ମୁଁ ଆପଣଙ୍କର କି କ୍ଷତି କରିଛି ? ମୁଁ ଲାଙ୍କାଷ୍ଟାରର ଡ୍ୟୁକ୍; କିନ୍ତୁ ମୋର ସମ୍ପତ୍ତି ବାଜ୍ୟାପ୍ତ କରାଯାଇ ଅନ୍ୟାୟ ଭାବରେ ତାକୁ ଖର୍ଚ୍ଚ କରାଯାଇଛି । ମୁଁ କେବଳ ମୋର ଆଇନ୍‌ସମ୍ମତ ଅଧିକାର ଚାହୁଁଛି । ଆଇନ୍‌ଜୀବୀମାନେ ଏଥିପାଇଁ ମୋତେ ସାହାଯ୍ୟ କରିବାକୁ ମନା କରି ଦେବାରୁ ମୁଁ ନିଜେ ମୋ ଅଧିକାର ଆଦାୟ କରିବା ପାଇଁ ଆସିଛି । ହେନେରିଙ୍କ ବକ୍ତବ୍ୟ ପଛରେ ସେନାଶକ୍ତିର ସମର୍ଥନ ଯେ ପ୍ରଚ୍ଛନ୍ନ ଏକଥା ବୁଝି ନେବାକୁ ବୃଦ୍ଧ ଡ୍ୟୁକ୍‌ଙ୍କୁ ବେଶି ସମୟ ଲାଗେ ନାହିଁ । ଇତସ୍ତତଃ କରି ସେ କହନ୍ତି, ସେ କଥା ମୁଁ ଜାଣେ ଏବଂ ରାଜାଙ୍କୁ ଏହା କହିଛି ମଧ । ମୁଁ ତୁମକୁ ବାଧା ଦେଉ ନାହିଁ । ମୋ ଭିତରେ କୌଣସି ପକ୍ଷପାତିତ୍ୱ ନାହିଁ । ଇଚ୍ଛା ହେଲେ ତମେ ଦୁର୍ଗକୁ ଆସି ରାତିରେ ବିଶ୍ରାମ ନେଇପାର ।

- ଆମନ୍ତ୍ରଣ ! ବେଶ୍ ମୁଁ ଏହାକୁ ଗ୍ରହଣ କରୁଛି । କିନ୍ତୁ ଆପଣଙ୍କୁ ଆଉ ଟିକିଏ ଆଗେଇ ଯିବାକୁ ପଡ଼ିବ । ଆପଣ ବରଂ ମୋ ସହିତ ବ୍ରିଷ୍ଟଲ ଦୁର୍ଗକୁ ଚାଲନ୍ତୁ । ସେଠାରେ ବୁଶି, ବାଗଟ୍

ପ୍ରଭୃତି ସାମନ୍ତମାନେ ଆଶ୍ରୟ ନେଇଥିବାର ଶୁଣୁଛି । ବାଧ ହୋଇ ସେ ହେନେରି କଥାରେ ରାଜି ହୋଇଯାଆନ୍ତି । କାରଣ ସେ ଜାଣିଥାଆନ୍ତି ଯେ, ତାକୁ ବାଧା ଦେବାର ଶକ୍ତି ତାଙ୍କର ନ ଥାଏ ।

ରିଚାର୍ଡ଼ଙ୍କର ଶେଷ ଭରସା ଥାଏ ୱେଲସ୍‌ରୁ ସଂଗ୍ରହ କରିଥିବା ଚାଳିଶହଜାର ସୈନ୍ୟଙ୍କ ଉପରେ । କିନ୍ତୁ ଏ ସେନା ମଧ୍ୟ କ୍ରମଶଃ ଦୁର୍ବଳ ହୋଇପଡ଼େ । ସେମାନଙ୍କ ମଧ୍ୟରେ ରାଜାଙ୍କର ମୃତ୍ୟୁ ସମ୍ବାଦ ପ୍ରଚାରିତ ହୋଇଯାଇଥାଏ । ଅନେକ କୁଲକ୍ଷଣ ଦେଖାଯିବା ଫଳରେ ସେମାନଙ୍କ କୁସଂସ୍କାରଗ୍ରସ୍ତ ମନ ଏହାକୁ ଗ୍ରହଣ କରି ନେଇଥାଏ ମଧ୍ୟ । ରାଜା ବିଳମ୍ବରେ ପ୍ରତ୍ୟାବର୍ତ୍ତନ କରୁଥାଆନ୍ତି । ୱେଲସ୍‌ର ସମୁଦ୍ର ତଟରେ ପହଞ୍ଚିବା ପୂର୍ବରୁ ସେଇ ସେନାବାହିନୀ ଛତ୍ରଭଙ୍ଗ ଦେଇ ସାରିଥାଆନ୍ତି ।

ରିଚାର୍ଡ଼ ଏ ସବୁ ବିପର୍ଯ୍ୟୟ ପ୍ରସଙ୍ଗ କିଛି ଜାଣି ନ ଥାନ୍ତି । ବନ୍ଦରରେ ଓହ୍ଲାଇ ଖୁସିରେ ତାଙ୍କର ଆଖିକୁ ଲୁହ ଆସିଯାଏ ଏବଂ ବାରମ୍ବାର ସେ ଇଂଲଣ୍ଡ ମାଟିକୁ ସ୍ପର୍ଶ କରୁଥାଆନ୍ତି । ନିଜକୁ ସେ ମନେକରୁଥାନ୍ତି ଅନେକ ଦିନ ପରେ ନିଜର ପୁତ୍ର ଫେରିପାଇଥିବା ବିଧୁରା ଏକ ଜନନୀ ପରି । ତାଙ୍କ ଆଖିର ଲୁହ ଆଉ ଓଠର ହସ ତାଙ୍କ ଆବେଗପୂର୍ଣ୍ଣ ଚରିତ୍ରକୁ ସ୍ପଷ୍ଟ ଭାବରେ ପ୍ରକଟିତ କରୁଥାଏ । ରାଜ୍ୟର ଏଇ ଚରମ ଦୁର୍ଗତି ସମୟରେ ରାଜାଙ୍କର ଏଭଳି ଆଚରଣ ସଭାସଦ୍‌ଙ୍କୁ କ୍ଷୁବ୍ଧ କରୁଥାଏ । ୟର୍କର ଡ୍ୟୁକ୍‌ଙ୍କ ପୁତ୍ର ଅମାରେଲ୍‌ର ଡ୍ୟୁକ୍ କହିପକାନ୍ତି ଯେ ବର୍ତ୍ତମାନ ଧୀରେ ସୁସ୍ଥେ କିଛି କହିବାର ସମୟ ନୁହେଁ । କିନ୍ତୁ ରାଜା ତାଙ୍କୁ ସାନ୍ତ୍ୱନା ଦେଇ କହନ୍ତି, ଚୋର ତସ୍କରମାନେ ଅନ୍ଧାର ଭିତରେ ସ୍ୱଚ୍ଛନ୍ଦରେ ଗତାଗତ କରୁଥାଆନ୍ତି । ତେବେ ଦିନ ଆସିବା ମାତ୍ରେ ସେମାନେ ମୁହଁ ଲୁଚାନ୍ତି । ଏଥିପାଇଁ ବ୍ୟସ୍ତ ହେବାର କାରଣ କିଛି ନାହିଁ । ମୁଁ ଯେତେବେଳେ ଆସିଗଲି ସେତେବେଳେ ଏଇ ବିଶ୍ୱାସଘାତକ ହେନେରି ନିଶ୍ଚୟ ପଳାଇଯିବ । ତାକୁ ଯେଉଁମାନେ ଏଥିରେ ସାହାଯ୍ୟ କରୁଛନ୍ତି, ସେମାନଙ୍କ ସହିତ ମୁହାଁମୁହିଁ ହେବା ଭଳି ଯୋଦ୍ଧା ମଧ୍ୟ ଆମ ସହିତ ଅଛନ୍ତି ।

ରାଜାଙ୍କ ଏଇ ପ୍ରୌଢ଼ି ହୁଏତ ଆହୁରି ଚାଲିଥାଆନ୍ତା, ତେବେ ଏତିକିବେଳେ ସେଠାରେ ପହଞ୍ଚିଯାଆନ୍ତି ସାଲିସ୍‌ବରୀର ଆର୍ଲ । ରିଚାର୍ଡ଼ ତାଙ୍କୁ ସ୍ୱାଗତ ଜଣାଇ, ତାଙ୍କର ସେନା କେତେଦୂରରେ ଅଛନ୍ତି ବୋଲି ଜାଣିବାକୁ ଚାହାନ୍ତି । ପ୍ରକୃତରେ ରାଜା ୱେଲସ୍‌ର ସେନାଙ୍କ ପ୍ରସଙ୍ଗ ପଚାରୁଥାଆନ୍ତି । ରାଜା ଗୋଟିଏ ଦିନ ବିଳମ୍ବରେ ପହଞ୍ଚିଛନ୍ତି ବୋଲି ତାଙ୍କୁ ଜଣାଇଦିଆଯାଏ । ଗତକାଲି ପର୍ଯ୍ୟନ୍ତ ଏଠାରେ ବାରହଜାର ସୈନ୍ୟ ଉପସ୍ଥିତ ଥିଲେ । ଆଜି ଜଣେ ବି ନାହାନ୍ତି, ରାଜାଙ୍କର ମୃତ୍ୟୁ ସମ୍ବାଦ ସେମାନଙ୍କ ପାଖରେ ପହଞ୍ଚିଯିବା ପରେ ସେମାନେ ହେନେରିଙ୍କ ସହିତ ମିଳିତ ହେବା ନିମନ୍ତେ ପଳାଇଛନ୍ତି ।

ଏଇ ସମ୍ବାଦରେ ରାଜା ଭୟରେ ଥରି ଉଠନ୍ତି । କହନ୍ତି ମୁଁ କ'ଣ ତେବେ ରାଜା ନୁହେଁ ? ଆଉ ରାଜା ଏକାକୀ କ'ଣ କୋଡ଼ିଏହଜାର ସୈନ୍ୟଙ୍କର ସମକକ୍ଷ ନୁହନ୍ତି ? ବନ୍ଧୁଗଣ !

ଆପଣମାନେ ମୋ ନାମରେ ଅସ୍ତ୍ର ଧରନ୍ତୁ । ୟର୍କର ଡ୍ୟୁକ୍ ମଧ୍ଯ ଆମ ସହିତ ଅଛନ୍ତି । ମୋତେ ସାହାଯ୍ୟ କଲାଭଳି ଶକ୍ତି ତାଙ୍କର ନିଶ୍ଚୟ ଅଛି ।

ଏଇ ଉତ୍ସାହ କିନ୍ତୁ ଅଧିକ ସମୟ ରହେ ନାହିଁ । ଆଉ ଜଣେ ଦୂତକୁ ପ୍ରବେଶ କରିବା ଦେଖି ରାଜା ଦୁର୍ବଳ ସ୍ୱରରେ କହନ୍ତି - ଖୁବ୍ ବେଶିରେ ମୁଁ ମୋର ରାଜ୍ୟ ହରାଇପାରେ । କିନ୍ତୁ ସେଥିରେ କ'ଣ ହେନେରି ମୋ ଭଳି ମହାନ୍ ହୋଇଯିବ ? ନା, କାରଣ ସେ ଈଶ୍ୱରଙ୍କର ସେବା କଲେ ଆମେ ମଧ୍ଯ ସେଇଆ କରିବୁ । ରାଜାଙ୍କର ଯୁକ୍ତି ଖୁବ୍ ବଳିଷ୍ଠ ଆଉ ସ୍ପଷ୍ଟ ନ ହେଲେ ମଧ୍ଯ ଦୂତଠାରୁ ଯେଉଁ ସମ୍ବାଦ ମିଳେ ତାହା ସାଂଘାତିକ । ଦେଶର ଲୋକେ ଦଳଦଳ ହୋଇ ହେନେରିଙ୍କ ପାଖକୁ ଛୁଟି ଚାଲିଛନ୍ତି - ସେ ଜଣାଇଦିଏ ।

ଆଉ ମୋ ବନ୍ଧୁମାନେ ? ବୁଶି, ଗ୍ରୀନ୍-ଏମାନେ ? ଗଭୀର ଉଦ୍‌ବେଗରେ ରାଜା ପଚାରନ୍ତି । ଦୂତ ଜଣାଏ ଯେ , ସେମାନେ ସମସ୍ତେ ହେନେରିଙ୍କ ସହିତ ଶାନ୍ତି ସ୍ଥାପନ କରିଛନ୍ତି ।

ସଇତାନ ସବୁ ଗୋଟିଏ ଗୋଟିଏ ପଶୁ - ରାଜା ସେମାନଙ୍କ ଉପରେ ଅଭିସମ୍ପାତ ବର୍ଷଣ କରିଚାଲନ୍ତି । ଦୂତ ପୁଣି ଜଣାଏ, ଏଇସବୁ ଦୁଃଖୀମାନଙ୍କୁ ବନ୍ଦୀକରି ବ୍ରିଷ୍ଟଲ ନିଆଯାଇଥିଲା । ସେଠାରେ ସେମାନଙ୍କୁ ହତ୍ୟା କରି କବର ଦିଆଯାଇଛି ।

- କିନ୍ତୁ ମୋର ବାବା କେଉଁଠି ? ଡ୍ୟୁକ୍ ଅଫ ୟର୍କଙ୍କ ପୁତ୍ର ଜାଣିବାକୁ ଚାହାନ୍ତି ।

- ଯେଉଁଠି ଥାଆନ୍ତୁ - ରାଜାଙ୍କର ବିଳାପ ଆରମ୍ଭ ହୋଇଯାଏ । ଆମେ ବର୍ତ୍ତମାନ କେବଳ ଦୁଃଖ ଆଉ ମୃତ୍ୟୁ ସମ୍ପର୍କରେ ଆଳାପ କରିବା । ମୃତ୍ୟୁ ହେଉଛି ସମ୍ରାଟ୍‌ମାନଙ୍କ ମଧ୍ଯରେ ସମ୍ରାଟ୍ ।

ରାଜାଙ୍କର ଏଇ ଉଚ୍ଛ୍ୱାସରେ ବାଧାଦେଇ କାର୍ଲାଇଲର ବିଶପ୍ କହନ୍ତି, ବୁଦ୍ଧିମାନ୍ ବ୍ୟକ୍ତି ବସି ବସି ଶୋକ କରେ ନାହିଁ । ପ୍ରତିରୋଧ କରିବାକୁ ଅଗ୍ରସର ହୁଏ ।

ଅମାରେଲ୍ କହନ୍ତି -ଏ ବିଷୟରେ ବାବାଙ୍କୁ ପଚରାଯାଇପାରେ । ଆପଣଙ୍କୁ ସାହାଯ୍ୟ କରିବାପାଇଁ ତାଙ୍କର ଗୋଟିଏ ସୈନ୍ୟବାହିନୀ ଅଛି । ରିଚାର୍ଡ଼ ପୁଣି ଆଶାବାଦୀ ହୋଇଉଠନ୍ତି । ଆତ୍ମବିଶ୍ୱାସର ସହ କହିଉଠନ୍ତି - ହଁ-ହଁ ସେତ ଆମର ନିଜର ସେନା - ତା'ପରେ ଦୂତକୁ ପଚାରନ୍ତି -କାକା କେଉଁଠି ଅଛନ୍ତି ? ଦୂତ ବିରସ ଭାବରେ କହେ- ବର୍ତ୍ତମାନ ମୋଠୁଁ ଆପଣ କେବଳ ଖରାପ ଖବର ହିଁ ପାଇବେ । ଆପଣଙ୍କର କାକା ହେନେରିଙ୍କ ସହିତ ଯୋଗ ଦେଇଛନ୍ତି । ଆପଣଙ୍କର ଉତ୍ତର-ଦୁର୍ଗ ଗୁଡ଼ିକର ପତନ ହୋଇଯାଇଛି ଏବଂ ଦକ୍ଷିଣ -ଦୁର୍ଗଗୁଡ଼ିକର ଅଧିପତିମାନେ ମଧ୍ଯ ତାଙ୍କ ସହିତ ଯୋଗ ଦେଇଛନ୍ତି ।

ଏଇ ଶେଷ ଆଘାତ ରାଜାଙ୍କୁ କିଂକର୍ତ୍ତବ୍ୟବିମୂଢ଼ କରିଦିଏ । ସେ ଅମାରେଲଙ୍କ ଆଡ଼କୁ ଶୂନ୍ୟ ଦୃଷ୍ଟିରେ ଅନାଇ କହନ୍ତି-ମୋତେ ସାନ୍ତ୍ୱନା ଦେବା ପାଇଁ ଏଇ ମୁହୂର୍ତ୍ତରେ ଯଦି ମୋତେ

କେହି ପଦେ କଥା ବି କହନ୍ତି ତେବେ ସେ ହେବେ ମୋର ଶତ୍ରୁ । ମୋର ଅନୁଚରମାନଙ୍କୁ ଛୁଟି ଦେଇଦିଅ । ସେମାନେ ବି ଯାଇ ହେନେରି ସହିତ ଯୋଗ ଦିଅନ୍ତୁ ।

ଏହିଭଳି ମାନସିକ ଅବସ୍ଥାରେ ରାଜା ଫ୍ଲିଣ୍ଟ-କାସଲ୍ ଆଡ଼କୁ ଯାତ୍ରା କରନ୍ତି । କିନ୍ତୁ ସେ ସେଠାରେ ପହଞ୍ଚିବା ପରେ ପରେ ସଦଳବଳେ ଓ ମହାସମାରୋହରେ ସେଠି ଆସି ଉପସ୍ଥିତ ହୁଅନ୍ତି ହେନେରି । ସାଙ୍ଗରେ ସୈନ୍ୟବାହିନୀ । ତହିଁରେ ଥାଆନ୍ତି ନରଦମ୍ବରଲାଣ୍ଡ ଓ ୟର୍କର ଡ୍ୟୁକ୍ । ନରଦମ୍ବରଲାଣ୍ଡଙ୍କର ପୁତ୍ର ଜଣାଏ ଯେ ରିଚାର୍ଡ୍ ଦୁର୍ଗ ମଧ୍ୟରେ ଅଛନ୍ତି । ହେନେରି ସାଙ୍ଗେ ସାଙ୍ଗେ ତାଙ୍କ ସହିତ ଦେଖା କରିବାକୁ ଚାହାନ୍ତି । ଦୁର୍ଗ ପ୍ରାଚୀରକୁ ଆସନ୍ତି ରିଚାର୍ଡ, ସାଙ୍ଗରେ କାର୍ଲାଇଲ୍‌ର ବିଶପ୍ , ଅମାରେଲ୍, ସାଲିସ୍‌ବରୀର ଡ୍ୟୁକ୍ , ଦୂତ ଏବଂ ଅନ୍ୟ ଅନୁଚର । ହେନେରି ପ୍ରାଚୀରଠାରୁ ଟିକିଏ ଦୂରରେ ଠିଆହୋଇ ନରଦମ୍ବରଲାଣ୍ଡଙ୍କୁ ତାଙ୍କର ମୁଖପାତ୍ର ରୂପେ ପଠାନ୍ତି । ଏଇ ଅମାର୍ଜିତ ସଭାସଦ୍ ଉଦ୍ଧତ ଭାବରେ ଆଗେଇ ଯାଆନ୍ତି । ତାଙ୍କୁ ଦେଖି ରାଜାଙ୍କର ରକ୍ତ ତାତି ଉଠେ, ଆଖି ଇଗଲର ଆଖି ଭଳି ଜଳି ଉଠେ । ଟିକିଏ ନୀରବ ରହି ସେ କହନ୍ତି - ଆମେ ଆପଣଙ୍କ ପାଇଁ ଅପେକ୍ଷା କରିଛୁ । ଆପଣ ବୋଧହୁଏ ଭୁଲିଯାଇଛନ୍ତି ଯେ, ରାଜାଙ୍କ ନିକଟରେ ନତଜାନୁ ହେବା ଆପଣଙ୍କର କର୍ତ୍ତବ୍ୟ । ହେନେରି ସମ୍ଭବତଃ ଟିକିଏ ଦୂରରେ ଠିଆ ହୋଇଛି । ତାକୁ ଯାଇ କହନ୍ତୁ , ମୋ ରାଜ୍ୟରେ ତା'ର ପ୍ରତିଟି ପଦକ୍ଷେପ ହେଉଛି ବେଆଇନ୍ । ସେ ଯଦି ରାଜମୁକୁଟର ପ୍ରତ୍ୟାଶା କରିଥାଏ, ତେବେ ତାକୁ ଯୁଦ୍ଧ କରିବାକୁ ହେବ । ସେଥିରେ ଅନ୍ତତଃ ଦଶହଜାର ମରିବେ - ଇଂଲଣ୍ଡ ଏକ ଅସହଣୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହେବ ।

ରାଜାଙ୍କର ଏଇ ମନ୍ତବ୍ୟର ଉତ୍ତରରେ ନରଦମ୍ବରଲାଣ୍ଡ କହନ୍ତି -ଆମ ରାଜାଙ୍କ ପକ୍ଷରେ ଏଭଳି ଉତ୍ତେଜିତ ହେବାର କୌଣସି କାରଣ ନାହିଁ । ହେନେରି ଆସିଛନ୍ତି କେବଳ ରାଜାଙ୍କ ସହିତ ସୌଜନ୍ୟମୂଳକ ସାକ୍ଷାତ୍ ପାଇଁ । ତାଙ୍କର ସମ୍ପତ୍ତି ଫେରିପାଇବା ଏବଂ ଜଣେ ସ୍ୱାଧୀନ ନାଗରିକର ସ୍ୱୀକୃତି ଆଦାୟ କରିନେବା ମଧ୍ୟ ତାଙ୍କର ଅନ୍ୟତମ ଲକ୍ଷ୍ୟ ! ଏତିକି ପାଇଗଲେ ସେ ତାଙ୍କର ଅସ୍ତ୍ର ସମ୍ବରଣ କରିବେ ।

ତା'ହେଲେ ତାକୁ ଯାଇ କହନ୍ତୁ, ତା'ର ସମସ୍ତ ଦାବି ମଞ୍ଜୁର କରାଗଲା । ଏକଥା କହିବାବେଳେ ରିଚାର୍ଡ୍‌ଙ୍କର ଅମାରେଲ୍‌ର ପରାମର୍ଶ କଥା ମନେଥାଏ । ଅମାରେଲ୍ କହିଥାଏ - ଯେତେ ଦିନପର୍ଯ୍ୟନ୍ତ ଆମର ସେନା ଏବଂ ଅସ୍ତ୍ରଶସ୍ତ୍ରର ପରିମାଣ ବଢୁ ନାହିଁ , ସେପର୍ଯ୍ୟନ୍ତ ଆମକୁ ଏହିଭଳି ସୌଜନ୍ୟପୂର୍ଣ୍ଣ କଥାବାର୍ତ୍ତାରେ ସେମାନଙ୍କୁ ଭୁଲାଇ ରଖିବାକୁ ହେବ ।

ରିଚାର୍ଡ୍ ଅନାୟାସରେ ମୁଣ୍ଡ ଥଣ୍ଡା ରଖିପାରିଥାଆନ୍ତେ । ତେବେ ନରଦମ୍ବରଲାଣ୍ଡଙ୍କୁ ଫେରିଆସିବାର ଦେଖି ସେ ପୁଣି ଉତ୍ତେଜିତ ହୋଇପଡ଼ନ୍ତି । ପାଟିକରି କହନ୍ତି - ରାଜାଙ୍କ ପକ୍ଷରେ କ'ଣ ବଶତା ସ୍ୱୀକାର କରିବା ଉଚିତ ? ଆମେ ବି ତେବେ ମାନିବୁ କାହିଁକି ?

ଅମାରେଲ ଆଡ଼କୁ ଅନାଇ ରାଜା କହନ୍ତି, ତା'ହେଲେ ମୁଁ ଏଇ ଅଳଙ୍କାର ପରିବର୍ତ୍ତେ ପନିକଣ୍ଠିର ମାଳ ପିନ୍ଧିବି । ପ୍ରାସାଦ ବଦଳରେ ଆଶ୍ରମବାସ କରିବି । ରାଜପୋଷାକ ଓ ରାଜଦଣ୍ଡ ପରିବର୍ତ୍ତେ ଭିକ୍ଷୁକର ବେଶ ଧରିବି । ମୋର ବିଶାଳ ସାମ୍ରାଜ୍ୟ ବଦଳରେ ମାଗିବି ଖଣ୍ଡେ ମାତ୍ର ଭୂମି- ଯେଉଁଠି ମୋତେ କବର ଦିଆଯିବ । ରାଜାଙ୍କ ପାଇଁ ନିର୍ଦ୍ଧାରିତ ସ୍ଥାନରେ ନୁହେଁ , ମୋତେ ବରଂ କବର ଦିଅ-ସାଧାରଣ ଜନତାର ଯାତାୟାତର ପଥରେ, ଯେଉଁଠି ପ୍ରତି ମୁହୂର୍ତ୍ତରେ ସେମାନଙ୍କର ପାଦଧୂଳି ପଡୁଥିବ । ରାଜାଙ୍କର କଥା ଶୁଣି ଅମାରେଲ୍‌ର ଆଖିକୁ ଲୁହ ଚାଲିଆସେ । ସେଆଡ଼େ ଅନାଇ ରିଚାର୍ଡ଼ କହନ୍ତି -ଆସ, ଆମେ ବରଂ ଏକାଠି କାନ୍ଦିବା । ଆମେ କ'ଣ ମୃତ୍ୟୁ ପର୍ଯ୍ୟନ୍ତ ଏମିତି କାନ୍ଦୁଥିବା ?

ରିଚାର୍ଡ଼ ଯେତେବେଳେ ଏଇଭଳି ବିଳାପ କରୁଥିଲେ, ସେତେବେଳେ ନରଦମ୍ବରଲାଣ୍ଡ ଫେରିଆସି ଜଣାନ୍ତି ଯେ ହେନେରି ତାଙ୍କ ସହିତ ତଳେ ଦେଖା କରିବାକୁ ଅପେକ୍ଷା କରିଛନ୍ତି । ରାଜା ତଳକୁ ଓହ୍ଲାଇ ଆସିବାରୁ ହେନେରି ତାଙ୍କୁ ଯଥୋଚିତ ସମ୍ମାନ ଜଣାଇ କହନ୍ତି-ଲର୍ଡ଼, ମୁଁ କେବଳ ମୋର ଅଂଶଟିକକ ପାଇବା ପାଇଁ ଆସିଛି ।

- ଯାହା ତମର ନିଜର ତା' ତମର ହିଁ ରହିଛି - ରିଚାର୍ଡ଼ କହନ୍ତି ଏବଂ ମୁଁ ମଧ୍ୟ ତମର, ତେଣୁ ସବୁ ହିଁ ତମର, ଏବେ ଆମର କାମ ହେଉଛି ଲଣ୍ଡନ ଫେରିଯିବା, ନୁହେଁ କି ? ହେନେରି ରାଜି ହୁଅନ୍ତି ।

ଲଣ୍ଡନରେ ସେ ରାଜା ରୂପରେ ଗୃହୀତ ହୁଅନ୍ତି । ତେବେ ସମର୍ଦ୍ଧନା ଅନୁଷ୍ଠାନଟି ତାଙ୍କୁ ତାଙ୍କର ପ୍ରକୃତ ସ୍ଥାନ ସମ୍ପର୍କରେ ସୂଚାଇଦିଏ । ସମସ୍ତଙ୍କର ଆଖି ଥାଏ ଘୋଡ଼ାପିଠିରେ ବସିଥିବା ହେନେରିଙ୍କ ଉପରେ । ସମସ୍ତେ ଚିତ୍କାର କରି କହୁଥାଆନ୍ତି - ଈଶ୍ୱର ହେନେରିଙ୍କର ସହାୟ ହୁଅନ୍ତୁ ଏବଂ ହେନେରି ମୁଣ୍ଡ ନୁଆଁଇ ସେମାନଙ୍କର ଅଭିନନ୍ଦନ ଗ୍ରହଣ କରୁଥାଆନ୍ତି । ମଞ୍ଚ ଉପରେ ଜନପ୍ରିୟ ନେତାଙ୍କ ନିକଟରେ ସାଧାରଣ ଅଭିନେତାର ଯେଉଁ ଅବସ୍ଥା ହୁଏ , ରିଚାର୍ଡ଼ଙ୍କର ଅବସ୍ଥା ଠିକ୍ ସେଇଭଳି ହୁଏ । ତାଙ୍କୁ କେହି ଅଭିନନ୍ଦନ ଜଣାନ୍ତି ନାହିଁ , କେହି ତାଙ୍କ ପାଇଁ ଈଶ୍ୱରଙ୍କୁ ଡାକନ୍ତି ନାହିଁ । ଏମିତିକି କେହି କେହି ତାଙ୍କ ଉପରକୁ ମୁଠାମୁଠା ଧୂଳି ସୁଦ୍ଧା ଛାଟିଦିଅନ୍ତି । ଆସ୍ତେ ଆସ୍ତେ ମୁଣ୍ଡ ହଲାଇ ସେ ସେଇ ଧୂଳିକୁ ଝାଡ଼ି ଦିଅନ୍ତି । ତା'ପରେ ସେ ନିଜର ମୁକୁଟଟିକୁ ଖୋଲି ପକାନ୍ତି ।

ଏହାହିଁ ହେବାର କଥା ଥିଲା । ୟର୍କର ଡ୍ୟୁକ୍ ୱେଷ୍ଟମିନିଷ୍ଟର ପର୍ଯ୍ୟନ୍ତ ଆସି ହେନେରିଙ୍କୁ ଖବର ଦିଅନ୍ତି ଯେ, ରିଚାର୍ଡ଼ ସ୍ୱେଚ୍ଛାରେ ରାଜପଦ ତ୍ୟାଗ କରିଛନ୍ତି ଏବଂ ରାଜଦଣ୍ଡ ଟେକି ଦେଉଛନ୍ତି ଲାଙ୍କାଷ୍ଟାରର ଡ୍ୟୁକ୍‌ଙ୍କ ହାତକୁ । ଚତୁର୍ଥ ହେନେରି ଦୀର୍ଘଜୀବୀ ହୁଅନ୍ତୁ । ଏତିକି କହି ନିଜର କଥା ଶେଷ କରନ୍ତି ଡ୍ୟୁକ୍ । 'ଈଶ୍ୱରଙ୍କ ନାମରେ ମୁଁ ସିଂହାସନ ଆରୋହଣ କଲି' କହନ୍ତି ହେନେରି ।

କେବଳ ମାତ୍ର ଗୋଟିଏ ପ୍ରତିବାଦ ଶୁଣାଯାଏ । ସେ ପ୍ରତିବାଦ ଆସେ କାର୍ଲାଇଲ୍‌ର ବିଶପ୍‌ଙ୍କ ପାଖରୁ । ସେ ସାହସର ସହିତ ଏବଂ ନିଜ ପ୍ରାଣର ମାୟା ତ୍ୟାଗ କରି ଜଣାଇ ଦିଅନ୍ତି ଯେ, ଆଇନ୍‌ସମ୍ମତ ରାଜାଙ୍କୁ ଏଇ ଭାବରେ ସିଂହାସନାଚ୍ୟୁତ କରିବା ପାପ ଏବଂ ଭବିଷ୍ୟଦ୍‌ବାଣୀ କରନ୍ତି ଯେ, ଏହାଫଳରେ ଇଂଲଣ୍ଡରେ ଯୁଦ୍ଧ ରକ୍ତପାତ ପ୍ରଭୃତି ବିପ୍ଳବ ଘଟିବା ସହିତ ରାଜପରିବାରରେ ବିଭେଦ ତଥା ବିରୋଧ ଦେଖାଦେବ । ଏହାର ଅନ୍ତିମ ପରିଣାମ ହେବ ଇଂଲଣ୍ଡର ଧ୍ୱଂସ ।

- ଆପଣ ଠିକ୍ କଥା କହୁଛନ୍ତି । ନରଦମ୍ବରଲାଣ୍ଡ କହନ୍ତି-ତେବେ ଆପଣଙ୍କର ଏଇ ମାନସିକ ଯନ୍ତ୍ରଣା ପାଇଁ ଆମେ ଆପଣଙ୍କୁ ବିଶ୍ୱାସଘାତକତାର ଅଭିଯୋଗରେ ଗିରଫ୍ କରୁଛୁ ।

ରିଚାର୍ଡ୍ ଆସନ୍ତି ଏବଂ ବିନୀତ ଭାବରେ ରାଜମୁକୁଟ ହେନେରିଙ୍କ ଆଡ଼କୁ ବଢ଼ାଇ ଦିଅନ୍ତି । 'ଆପଣ କ'ଣ ରାଜାର ଅଧିକାର ତ୍ୟାଗ କରି ଖୁସି ହୋଇଛନ୍ତି ? ହେନେରି ପଚାରନ୍ତି । ତା'ପରେ ରିଚାର୍ଡ୍ ଏକ ହୃଦୟସ୍ପର୍ଶୀ ବକ୍ତୃତା ଦିଅନ୍ତି । ନରଦମ୍ବରଲାଣ୍ଡ ଚେଷ୍ଟା କରନ୍ତି ରାଜାଙ୍କ ଦ୍ୱାରା ଦେଶର ଅପଶାସନର କଥା ସ୍ୱୀକାର କରାଇ ନେବାକୁ ! ରିଚାର୍ଡ୍ ଗୋଟିଏ ଦର୍ପଣ ମାଗନ୍ତି । ହେନେରିଙ୍କ ନିର୍ଦ୍ଦେଶରେ ତାହା ଅଣାଯାଏ । ରିଚାର୍ଡ୍ ତହିଁରେ ନିଜର ମୁହଁ ଦେଖି କହିଉଠନ୍ତି, ଏଇ ମୁହଁ - ମୋର ଏଇ ମୁହଁ ଦଶହଜାର ଲୋକଙ୍କର ଘରେ ବିରାଜୁଛି ... ଏଇ ମୁହଁ ବହୁ ମୂର୍ଖତାର ସମ୍ମୁଖୀନ ହୋଇଛି ଏବଂ ଶେଷରେ ହେନେରି ସେଇଟିରେ ନିଆଁ ଲଗାଇ ଦେଇଛି । ଏଇ ଗୌରବ ଆଉ ମୁହଁ -ଉଭୟ ତ କ୍ଷଣସ୍ଥାୟୀ । ଦର୍ପଣଟିକୁ ସେ ଚଟାଣରେ ଫିଙ୍ଗିଦିଅନ୍ତି । ମୋର ସମୟ ଶେଷ ହୋଇଛି । ମୁଁ କେବଳ ଆଉ ଗୋଟିଏ ଜିନିଷ ତମ ପାଖରୁ ଚାହିଁବି, ତା'ପରେ ଆଉ ତମକୁ କଷ୍ଟ ଦେବି ନାହିଁ । ରିଚାର୍ଡ୍ କହନ୍ତି ।

- କହନ୍ତୁ - ହେନେରି ଅପେକ୍ଷା କରନ୍ତି ।

- ମୁଁ ଏଠାରୁ ଚାଲିଯିବାକୁ ଚାହେଁ ।

- କୁଆଡ଼େ ?

- ଯେଉଁଠି ମୁଁ ତମ ଦୃଷ୍ଟିର ବାହାରେ ରହିପାରିବି ।

- କେହି ତାଙ୍କୁ ଟାୱାରରେ ପହଞ୍ଚାଇ ଦିଅ । ଆଦେଶ ଦିଅନ୍ତି ହେନେରି ।

ଏଥର ରାଣୀଙ୍କ ପ୍ରସଙ୍ଗ । ଦିନେ ସେ ଦୁଇ ପରିଚାରିକାଙ୍କ ସହ ବେଦନାର୍ତ୍ତ ହୃଦୟରେ ୟର୍କର ଡ୍ୟୁକ୍‌ଙ୍କ ଉଦ୍ୟାନରେ ବସିଥାଆନ୍ତି । ସେ ସେଠାରେ ବସି ମାଳୀମାନଙ୍କର କଥାବାର୍ତ୍ତା ଶୁଣୁଥାଆନ୍ତି । ନିଜ ନିଜ ଭିତରେ ବଗିଚା କିଭଳି ଅନାବନା ଘାସ, କୀଟପତଙ୍ଗ , ଶାଁବାଳୁଆ ଇତ୍ୟାଦିରେ ଭରିଯାଇଛି ସେ ବିଷୟରେ ସେମାନଙ୍କର ଆଲୋଚନା ଚାଲିଥାଏ । ମାଳୀସର୍ଦ୍ଦାର ସେମାନଙ୍କୁ ଧମକ୍ ଦେଇ କହେ, ଚୁପ୍‌କର, ଯେ ନିଜେ ଏଇ ଉଜୁଡ଼ା ବସନ୍ତର ସୃଷ୍ଟିକର୍ତ୍ତା ସେ ନିଜେ ଆଜି ପତ୍ରଝରା ହେମନ୍ତର ସମ୍ମୁଖୀନ ହୋଇଛନ୍ତି । ବୁଶି, ଗ୍ରୀନ୍, ଗାବଟ୍ ପ୍ରଭୃତି ଯେଉଁସବୁ ଆବର୍ଜନାକୁ ସେ ପ୍ରଶ୍ରୟ ଦେଇଥିଲେ ସେମାନଙ୍କର ଦିନ ଶେଷ ହୋଇଯାଇଛି ।

- ସେମାନେ କ'ଣ ମୃତ ?

- ହଁ । ଆଉ ନିଜେ ସେ ହେନେରିଙ୍କ ହାତରେ ବନ୍ଦୀ । ତାଙ୍କୁ ମଧ୍ୟ ହୁଏତ ଖୁବ୍ ଶୀଘ୍ର ହତ୍ୟା କରାଯିବ । ଗତରାତିରେ ୟର୍କର ଡ୍ୟୁକ୍‌ଙ୍କର ଜଣେ ବନ୍ଧୁ ଏଇ ଖବର ଆଣିଛନ୍ତି । ଛାଇ ତଳେ ବସି ରାଣୀ ଏଇ ସବୁ କଥା ଶୁଣି ବାହାରିଆସି ମାଳୀସର୍ଦ୍ଦାରକୁ ପଚାରନ୍ତି -ବଦମାସ, ଏସବୁ ଗୁଜବ ତୁ କାହାଠୁ ଶୁଣିଛୁ କହ ।

- ମୋତେ କ୍ଷମା କରନ୍ତୁ । କିନ୍ତୁ ଖବରଟା ସତ୍ୟ, ମାଳୀସର୍ଦ୍ଦାର କହେ । ସତ! ଏ ଖବର ତେବେ ସତ ! କେଇ ଜଣ ଅନୁଚରଙ୍କୁ ସାଙ୍ଗରେ ନେଇ ରାଣୀ ଲଣ୍ଡନ ଚାଲିଆସନ୍ତି । ଠିକ୍ ସେଇ ବାଟରେ ପ୍ରହରୀମାନେ ରିଚାର୍ଡ଼୍‌ଙ୍କୁ ନେଇ ଟାୱାର ଆଡ଼େ ଯାତ୍ରା କରୁଥାଆନ୍ତି । ରାଣୀଙ୍କ ଆଖିରେ ସେ ସେତେବେଳ ପର୍ଯ୍ୟନ୍ତ ସେଇ ରାଜା ହିଁ ଥାଆନ୍ତି । ତାଙ୍କୁ ଦେଖି ରାଣୀ ଅନୁଚରମାନଙ୍କୁ କହନ୍ତି - ଦେଖ, ନା ବରଂ ଦେଖନା ... ମୋର ପ୍ରସ୍ଫୁଟିତ ଗୋଲାପ ଶୁଖିଯାଇଛି । ନା - ତାଙ୍କ ଆଡ଼କୁ ଅନାଅ ... ତମମାନଙ୍କର ଆଖିର ଲୁହ ଶିଶିରରେ ପରିଣତ ହୋଇ ମୋର ଗୋଲାପକୁ ସ୍ନାନ କରାଇ ଯେମିତି ପୂର୍ବଭଳି ସତେଜ କରିଦିଏ । ସ୍ତ୍ରୀଙ୍କୁ ଦେଖି ରିଚାର୍ଡ଼୍ ଟିକିଏ ଅଟକି ଯାଆନ୍ତି । କହନ୍ତି -ଯାହା କରିଛି ତା'ର ଦରକାର ଥିଲା । ତମେ ଅତୀତକୁ ଭୁଲି ଫ୍ରାନ୍ସ ଚାଲିଯାଅ । ସେଠି କୌଣସି ମଠ କିମ୍ବା ଆଶ୍ରମରେ ଆଶ୍ରୟ ନିଅ । ଯେଉଁ ମୁକୁଟ ମୁଁ ଦାନ କରିଦେଇଛି, ତା' ବଦଳରେ ଆମକୁ ସ୍ୱର୍ଗୀୟ ମୁକୁଟ ଜିତିବାକୁ ହେବ ।

ଏ କ'ଣ ମୋର ସେଇ ସମ୍ରାଟ୍ ସ୍ୱାମୀ, ଯେ କି ଏତେ ମୃଦୁ ସ୍ୱରରେ କଥା କହୁଛନ୍ତି ! ରାଣୀ ବିସ୍ମିତ ହୋଇଯାଆନ୍ତି । ତାଙ୍କର ମନେହୁଏ ଯେ ରିଚାର୍ଡ଼୍ ସମ୍ପୂର୍ଣ୍ଣ ରୂପେ ବଦଳି ଯାଇଛନ୍ତି । କ୍ଷୁବ୍ଧ ହୋଇ ସେ ସ୍ୱାମୀଙ୍କୁ ପଚାରନ୍ତି - ତମେ କ'ଣ ତମର ବୁଦ୍ଧି ବୃତ୍ତି ହରାଇ ସାରିଲଣି ? ହେନେରି କ'ଣ ତମର ହୃଦୟବି ଦଖଲ କରିନେଇଛି ? ମୁମୂର୍ଷ ସିଂହ କ'ଣ ତା'ର ଶେଷ ପଂଝାଟା ପୃଥିବୀ ବୁକୁରେ ବସାଇ ଦିଏ ନାହିଁ ? ତମେ ଇଂଲଣ୍ଡର ସିଂହ ହୋଇ ସବୁ କିଛି ଏତେ ସହଜରେ ମାନିନେବ ?

ରାଣୀଙ୍କର ଉତ୍ସାହ ବାକ୍ୟ ରାଜାଙ୍କର ସୁପ୍ତ ଚେତନାକୁ ଜାଗ୍ରତ କରିପାରେ ନାହିଁ । ସେ ରାଣୀଙ୍କୁ କହନ୍ତି , ତମେ ଧରିନିଅ ଯେ ମୋର ମୃତ୍ୟୁ ହୋଇଯାଇଛି । ମୋର ମୃତ୍ୟୁ ଶଯ୍ୟା ନିକଟରୁ ଶେଷ ବିଦାୟ ନେଇ ତମେ ଚାଲିଯାଅ । ରାଜା ପୁଣି କଳ୍ପନା ଜଗତ୍‌କୁ ଫେରିଯାଇ ନିଜର ଭବିଷ୍ୟତ୍ ଚିତ୍ର ଆଙ୍କିବାରେ ଲାଗନ୍ତି । ସେ ଭାବିଚାଲନ୍ତି, ତାଙ୍କର -ବିଷାଦପୂର୍ଣ୍ଣ ଜୀବନଗାଥା ଦିନେ ନିଶ୍ଚୟ ବିଦେଶୀମାନଙ୍କର ହୃଦୟକୁ ସ୍ପର୍ଶ କରିବ । ତାଙ୍କର ସ୍ତ୍ରୀ ଯେତେବେଳେ ନିଆଁ ପାଖରେ ବସି ରାଜାଙ୍କର ଦୁଃଖପୂର୍ଣ୍ଣ କାହାଣୀ ବର୍ଣ୍ଣନା କରିବେ, ସେତେବେଳେ ଗ୍ରାମୀଣମାନେ କାନ୍ଦୁ କାନ୍ଦୁ ଶୋଇବାକୁ ଯିବେ । ଏମିତିକି ଆଇନ୍‌ସମ୍ମତ ରାଜାଙ୍କର ଏଇ ସିଂହାସନଚ୍ୟୁତିର ଘଟଣାରେ ଜାଳେଣିଗୁଡ଼ିକ ମଧ୍ୟ ଲୁହ ରୋକିପାରିବେ ନାହିଁ । କାନ୍ଦି କାନ୍ଦି କେହି ପରିଣତ ହେବେ ପାଉଁଶରେ, କେହି ବନିଯିବେ କୋଇଲା ।

ସେମାନଙ୍କ କଥାବାର୍ତ୍ତା ଭିତରେ ନରଦମ୍ବରଲାଣ୍ଡ ଆସି ଖବର ଦିଅନ୍ତି ଯେ,ହେନେରି ତାଙ୍କର ମତ ବଦଳାଇଛନ୍ତି ଏବଂ ରିଚାର୍ଡ୍‌ଙ୍କୁ ବର୍ତ୍ତମାନ ଟାୱାର ନୁହେଁ, ୟର୍କସାୟାରର ପମଫ୍ରେଟ୍ ଦୁର୍ଗକୁ ଯିବାକୁ ହେବ। ରାଣୀଙ୍କ ପ୍ରତି ଆଦେଶ ହୋଇଛି ଯେ, ତାଙ୍କୁ ବର୍ତ୍ତମାନ ଫ୍ରାନ୍ସ ଚାଲିଯିବାକୁ ହେବ ।

ଡ୍ୟୁକ୍‌ଙ୍କୁ ରାଜା କହନ୍ତି ; ଆପଣ ଏଇ ଅବୈଧ ରାଜାଙ୍କୁ ଗାଦିରେ ବସାଇଛନ୍ତି। ଅଳ୍ପଦିନ ଭିତରେ ଆପଣ ହିଁ ତାଙ୍କୁ ସିଂହାସନାଚ୍ୟୁତ କରିବାକୁ ଚାହିଁବେ।

- ମୋ ଉପରେ ଅପରାଧର ବୋଝ ରହିଲା ; ଏତିକି କହି ଡ୍ୟୁକ୍ ବିଦାୟ ମାଗନ୍ତି। ରିଚାର୍ଡ୍ ସ୍ତ୍ରୀଙ୍କ ଆଡ଼କୁ ଅନାଇ କହନ୍ତି-ଆମେ ବି ଏଥର ପରସ୍ପରଠାରୁ ବିଦାୟ ନେବା। ମୁଁ ଯିବି ଉତ୍ତରର ଶୀତର ରାଜ୍ୟକୁ ଆଉ ତମେ ଯିବ ଫ୍ରାନ୍ସ।

- ଆମକୁ କ'ଣ ନିତାନ୍ତ ପୃଥକ୍ ହେବାକୁ ପଡ଼ିବ ? ଆମ ଦୁହିଁକୁ ନିର୍ବାସନ ଦିଆଯାଇ ପାରନ୍ତା ନାହିଁ ? କିମ୍ବା ରାଜା ଯେଉଁଠି ରହିବେ, ମୋତେ ମଧ୍ୟ ସେଠାରେ ରହିବାକୁ ଅନୁମତି ଦିଆଯାଉ। ରାଣୀ ଅନୁନୟ କରନ୍ତି। ତେବେ ସେ ସୁଯୋଗ ତାଙ୍କୁ ଦିଆଯାଏ ନାହିଁ। ଅଳ୍ପ କିଛି କଥାବାର୍ତ୍ତା ପରେ ବିଷଣ୍ଣ ମନରେ ରାଜା ଓ ରାଣୀ ପରସ୍ପରଠାରୁ ବିଦାୟ ନିଅନ୍ତି।

ରିଚାର୍ଡ୍ ବନ୍ଦିଶାଳାରେ ଥିବାବେଳେ ହେନେରି ଯେ ଖୁବ୍ ନିରାପଦରେ ଥିଲେ ଏହା ନୁହେଁ। ଅନ୍ତତଃ ତାଙ୍କର ବନ୍ଧୁମାନଙ୍କର ଏଇ ଧାରଣା ଥିଲା। ୱେଷ୍ଟମିନିଷ୍ଟରର ଆବଟ୍, ଅମାରେଲ୍, ସାଲିସ୍‌ବରିର ଡ୍ୟୁକ୍ ଏବଂ ରିଚାର୍ଡ୍‌ଙ୍କ ଅନ୍ୟ ବନ୍ଧୁମାନେ ଇତିମଧ୍ୟରେ ନୂଆ ରାଜାଙ୍କ ବିରୋଧରେ ଷଡ୍‌ଯନ୍ତ୍ର ଆରମ୍ଭ କରିଦେଇଥାଆନ୍ତି। ଅବଶ୍ୟ ଫଳ କିଛି ହୁଏ ନାହିଁ। ୟର୍କର ବୃଦ୍ଧ ଡ୍ୟୁକ୍ ଯେତେବେଳେ ଜାଣନ୍ତି ଯେ, ତାଙ୍କ ନିଜ ପୁଅ ଅମାରେଲ୍ ଏଇ ଷଡ୍‌ଯନ୍ତ୍ର ସହ ସମ୍ପୃକ୍ତ, ସେ ତରବର ହୋଇ ହେନେରିଙ୍କୁ ଏକଥା ଜଣାଇଦିଅନ୍ତି ଏବଂ ଖୋଲାଖୋଲି ଭାବରେ ପୁଅର ନିନ୍ଦା କରନ୍ତି। କେବଳ ସେତିକି ନୁହେଁ, ଦୁଃଖ ହେଲେବି ପୁଅର ନିର୍ବାସନ ପ୍ରାର୍ଥନା କରନ୍ତି। ଏ ଧରଣର ଷଡ୍‌ଯନ୍ତ୍ର ହେନେରିଙ୍କୁ ଆଦୌ ଭୟଭୀତ କରେ ନାହିଁ। ୟର୍କର ଡଚେସ୍‌ଙ୍କ ଅନୁରୋଧରେ ସେ ଅମାରେଲ୍‌କୁ କ୍ଷମା ମଧ୍ୟ କରିଦିଅନ୍ତି। ପରବର୍ତ୍ତୀ କାଳରେ ଅମାରେଲ୍ ୟର୍କର ଡ୍ୟୁକ୍ ରୂପେ ନିଯୁକ୍ତି ପାଏ ଏବଂ ଆଗିନ୍‌କୋର୍ଟ ଯୁଦ୍ଧରେ ଯଥେଷ୍ଟ ବୀରତ୍ୱର ପରିଚୟ ଦେଖାଏ। କାର୍ଲାଇଲ୍‌ର ବିଶପ୍‌ଙ୍କୁ ମଧ୍ୟ କ୍ଷମା କରିଦିଆଯାଏ। ଭବିଷ୍ୟତ୍‌ରେ ତାଙ୍କର ରାଜଭକ୍ତି ଅକ୍ଷୁଣ୍ଣ ରହିବ - ଏଇ ପ୍ରତିଶ୍ରୁତି ସେ ଦିଅନ୍ତି। ଆବଟ୍‌ଙ୍କର ମୃତ୍ୟୁ ଏବଂ ସାଲିସ୍‌ବରିର ଡ୍ୟୁକ୍‌ଙ୍କର ପ୍ରାଣଦଣ୍ଡରେ ବିଦ୍ରୋହର ସତ୍ତା ରହେ ନାହିଁ।

ତେବେ ରିଚାର୍ଡ୍ ବଞ୍ଚିଥିବା ପର୍ଯ୍ୟନ୍ତ ହେନେରିଙ୍କର ଭୟ ପୂରାପୂରି ଯାଏ ନାହିଁ। କେଉଁଠି କୌଣସି ବିଦ୍ରୋହ ହେଲେ ବିଚ୍‌ରା ବନ୍ଦୀ ରିଚାର୍ଡ୍‌ଙ୍କ ପ୍ରସଙ୍ଗ ଆପେ ଆପେ ଆସି ଯାଉଥାଏ। ଶେଷରେ ଏକ୍ସଟନ୍‌ର ସାର୍ ପିୟାର୍ସ ନାମକ ଜଣେ ସୈନିକ ସାମାନ୍ୟ କାରଣରୁ ରିଚାର୍ଡ୍‌ଙ୍କୁ ଚିର ବିଦାୟ ଦେବାର ସିଦ୍ଧାନ୍ତ ନିଅନ୍ତି।

ପମଫ୍ରେଟର ବନ୍ଦିଶାଳାରେ ରିଚାର୍ଡ଼ ନିଜର ଦୁଃଖ ସହିତ ଏକପ୍ରକାର ବୁଝାମଣା କରି ନେଇଥାଆନ୍ତି । ତାଙ୍କ ସହିତ ସାକ୍ଷାତ୍ କରିବାକୁ ଆସିବା ଭଳି ବନ୍ଧୁ କେହି ନ ଥାନ୍ତି । ଏକମାତ୍ର ତାଙ୍କ ଅସ୍ତାବଲ୍‌ର ଜଣେ ବିଶ୍ୱାସୀ ଭୃତ୍ୟ ଅତି କଷ୍ଟରେ କିଛି ଛୁଟିର ବ୍ୟବସ୍ଥା କରି କେବେ କେମିତି ପୁରୁଣା ମୁନିବଙ୍କ ସହିତ ଦେଖା କରିବାକୁ ଆସୁଥାଏ । ଅନେକ ଦୋଷ ତ୍ରୁଟି ସତ୍ତ୍ୱେ ରିଚାର୍ଡ଼ ଥିଲେ ଜଣେ ସ୍ନେହପ୍ରବଣ ମଣିଷ । ସେଇ ସ୍ୱଳ୍ପଶିକ୍ଷିତ ଭୃତ୍ୟଟି କେବଳ ଘୋଡ଼ାଛଡ଼ା ଅନ୍ୟ କୌଣସି ବିଷୟରେ କଥାବାର୍ତ୍ତା କରି ପାରୁ ନ ଥାଏ । ତଥାପି ରିଚାର୍ଡ଼ ତାହା ପ୍ରତି ସଦୟ ଓ କୃତଜ୍ଞ ହୋଇଥାଆନ୍ତି । ଦିନେ ଯେତେବେଳେ ଦୁହେଁ କଥାବାର୍ତ୍ତାରେ ବ୍ୟସ୍ତ , ସେତିକିବେଳେ କାରାଗାରର ଜଣେ ପ୍ରହରୀ ଗୋଟିଏ ପାତ୍ରରେ କିଛି ତରଳ ପଦାର୍ଥ ଆଣି ରିଚାର୍ଡ଼ଙ୍କୁ ପିଇଦେବା ପାଇଁ କହେ । ରିଚାର୍ଡ଼ ଅନୁମାନ କରନ୍ତି ତହିଁରେ ବିଷ ରହିଛି । ସେଥିପାଇଁ ସେ ପ୍ରହରୀକୁ ପ୍ରଥମେ ପିଇବାକୁ କହନ୍ତି । ଏହାହିଁ ଥାଏ ସେକାଳରେ କାରାଗାରର ନିୟମ । ସେ ଦିନ କିନ୍ତୁ ସେଇ ଲୋକଟି ତାହା ପିଇବାକୁ ସାହସ କରେ ନାହିଁ । କହେ - ନିକଟରେ ଏକ୍ସଟନ୍‌ର ସାର୍ ପିୟର୍ସ ଆସିଥିଲେ । ସେ ବାରଣ କରିଛନ୍ତି । ହେନେରି ଓ ପିୟର୍ସଙ୍କ ଉପରେ ରାଗିଯାଇ ରିଚାର୍ଡ଼ ଲୋକଟିକୁ ପ୍ରଚଣ୍ଡ ମାଡ଼ ଦିଅନ୍ତି । ଏହି ସମୟରେ ତାଙ୍କ ପ୍ରକୋଷ୍ଠର ଦରଜା ଖୋଲାଯାଏ ଏବଂ ପିୟର୍ସ ତଥା ତାଙ୍କର ସଶସ୍ତ୍ର ଅନୁଚରମାନେ ଭିତରକୁ ପ୍ରବେଶ କରନ୍ତି ।

ଏଇଭଳି ଏକ ସମୟ ଯେ ଆସିବ, ଏହା ରିଚାର୍ଡ଼ ଜାଣିଥାଆନ୍ତି । ତାଙ୍କର ଶାରୀରିକ ଶକ୍ତିର ଅଭାବ ନ ଥାଏ । ସେ ଜଣେ ସୈନିକଠାରୁ ତା'ର କୁଠାରଟି ଛଡ଼ାଇ ନେଇ ସେମାନଙ୍କ ବିରୋଧରେ ଛାତିଫୁଲାଇ ଠିଆ ହୁଅନ୍ତି । ଦୁଇଜଣ ସୈନିକଙ୍କୁ ହତ୍ୟା ମଧ କରନ୍ତି, କିନ୍ତୁ ଶେଷରେ ପିୟର୍ସଙ୍କ ଅସ୍ତ୍ରାଘାତରେ ତାଙ୍କର ଦୁଃଖପୂର୍ଣ୍ଣ ଜୀବନର ଅନ୍ତ ଘଟେ ।

ଜୀବନରେ ଅନେକ ଦୁର୍ବଳତା ଦେଖାଇଥିଲେ ହେଁ, ଶେଷ ସମୟରେ ସେ ତାଙ୍କର ହୃତ ସମ୍ମାନର କିଛି ଅନ୍ତତଃ ପୁନରୁଦ୍ଧାର କରିଯାଆନ୍ତି । ରିଚାର୍ଡ଼ଙ୍କର ମୃତ ଶରୀର ଉଇଣ୍ଡସର୍ ଅଣାଯିବା ପରେ ହେନେରି ମନ୍ତବ୍ୟ କରନ୍ତି - ମୁଁ ହତ୍ୟାକାରୀକୁ ଘୃଣା କରେ ! ବରଂ ଏଇ ମୃତ ବ୍ୟକ୍ତିଙ୍କ ପ୍ରତି ମୋର ସମ୍ମାନ ରହିଛି ।

ସେ ସମୟରେ ଇଂଲଣ୍ଡ ପାଇଁ ପ୍ରୟୋଜନ ଥିଲା ଜଣେ ସାହସୀ ଓ ଶକ୍ତିଶାଳୀ ରାଜାଙ୍କର । ତାହା ତାଙ୍କୁ ମିଳି ଯାଇଥାଏ । ତେବେ ଭୀଷଣ ରକ୍ତପାତ ଭିତରେ ହିଁ ଏଇ ରାଜମୁକୁଟ ପ୍ରାପ୍ତି ଘଟିଥିଲା । ଯେଉଁମାନେ ଭବିଷ୍ୟତ୍ ସମ୍ପର୍କରେ ପ୍ରଶ୍ନ ଉଠାଇଥିଲେ , ସେମାନଙ୍କ ଭାଗ୍ୟରେ ଥିଲା ପ୍ରଚଣ୍ଡ ଶାସ୍ତି ।

# କିଙ୍ଗ୍ ରିଚାର୍ଡ଼ ଦି ଥାର୍ଡ଼

ବହୁଦିନ ପରେ ଇଂଲଣ୍ଡରେ ଶାନ୍ତି ସ୍ଥାପିତ ହୁଏ । ଦୀର୍ଘକାଳର ଗୋଲାପ ଯୁଦ୍ଧ (War of Roses) ରେ ଇଂଲଣ୍ଡର ପ୍ରଭୂତ କ୍ଷୟକ୍ଷତି ଘଟିଯାଏ । ଯେତେବେଳେ ପାର୍ଲିଆମେଣ୍ଟ ବସେ, ଦେଖାଯାଏ ଯେ, ଅନେକ ଆସନ ଶୂନ୍ୟ ହୋଇ ପଡ଼ିଛି । ଇଂଲଣ୍ଡକୁ ଯେ କେତେ ମୂଲ୍ୟ ଦେବାକୁ ହୋଇଛି, ତାହା ଏଇ ଗୋଟିଏ ଘଟଣାରୁ ଜଣାପଡ଼ିଯାଏ । ଏ ବିଷୟରେ ରାଜା ଏଡ଼ୱାର୍ଡ଼ଙ୍କର କିନ୍ତୁ କୌଣସି ଚିନ୍ତା ନ ଥାଏ । ସେ ଆମୋଦ ପ୍ରମୋଦରେ ବ୍ୟସ୍ତ ରହୁଥାଆନ୍ତି ଏ ସବୁ ସେ କରୁଥାଆନ୍ତି, ସମସ୍ତଙ୍କର ଜ୍ଞାତସାରରେ । ଭିତରେ ଭିତରେ ସେ ଅବଶ୍ୟ ନିଜର କ୍ଷମତାକୁ ବଢ଼ାଇନେଇ ଥାଆନ୍ତି । ଯୁଦ୍ଧକ୍ଷେତ୍ରରେ ସେ ଗୋଟିଏ ବି ଯୁଦ୍ଧ ହାରି ନ ଥାନ୍ତି ସତ୍ୟ, ତେବେ ଠକାମିରେ ସେ ତାଙ୍କର ଗୁରୁ ୱାରଉଇକ୍‌କୁ ମଧ ଅତିକ୍ରମ କରିଯାଇଥାଆନ୍ତି । ଅଳ୍ପ ସମୟ ମଧରେ ଦେଶର ଏକପଞ୍ଚମାଂଶ ଜମି ଅଭିଜାତମାନଙ୍କ ହାତରୁ ତାଙ୍କ ହାତକୁ ଚାଲିଆସେ । ଆପାତଃ ଦୃଷ୍ଟିରେ ବିଳାସ ବ୍ୟସନରେ ମଗ୍ନ ଥିବାର ମନେ ହେଉଥିଲେ ମଧ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଚାରିଆଡ଼େ ବୁଲୁଥାଏ । ବିତ୍ତ-ସଂଗ୍ରହର ନୂଆ ନୂଆ ଉପାୟମାନ ଖୋଜି ବାହାର କରାଯାଉଥାଏ । ଜାହାଜର ସଂଖ୍ୟା ଅନେକ ବଢ଼ାଇ ଦିଆଯାଇଥାଏ ଏବଂ ବିଚାରାଳୟର ବିଚାର ସୁଦ୍ଧା ଅନେକାଂଶରେ ତାଙ୍କର ମର୍ଜି ଉପରେ ନିର୍ଭର କରୁଥାଏ । ତାଙ୍କର ଚିନ୍ତା ଥାଏ ସ୍ପଷ୍ଟ ଏବଂ ସଦା କ୍ରିୟାଶୀଳ । ଅନେକ ପୂର୍ବରୁ ତାଙ୍କର ଉଚ୍ଚାକାଂକ୍ଷାର ପରିପୂର୍ତ୍ତି ଘଟିସାରିଥାଏ । ଜଣେ ଅତି ସ୍ୱାର୍ଥପର ମଣିଷ ଭାବେ ସେ ଯାହା ଇଚ୍ଛା କରୁଥାଆନ୍ତି ତାହା ଆଦାୟ କରି ନେଉଥାଆନ୍ତି । କୌଣସି ବାଧା ମାନୁ ନ ଥାନ୍ତି । ଏଲିଜାବେଥ୍ ଗ୍ରେକୁ ତାଙ୍କର ବିବାହ କରିବାର ଇଚ୍ଛା ସଫଳ ହୋଇସାରିଥାଏ । ଅବଶ୍ୟ ଏ ବିବାହରେ ଫ୍ରାନ୍ସର ରାଜା ଅପମାନିତ ହୋଇଥାଆନ୍ତି ।

ଉଡ଼୍‌ଭିଲ ପରିବାର ଏଡ଼ୱାର୍ଡ଼ଙ୍କର ଆତ୍ମୀୟ । ସେମାନେ ଲୋଭୀ ଓ ମଣିଷ ହିସାବରେ ଅତ୍ୟନ୍ତ ହୀନ । ଏଡ଼ୱାର୍ଡ଼ ସେମାନଙ୍କର ପ୍ରତ୍ୟେକଙ୍କର ସମ୍ପତ୍ତି ବୃଦ୍ଧି କରାଇଦେଇଥାଆନ୍ତି । ଅବଶ୍ୟ ଏଥିରେ କ୍ଲାରେନ୍ସ ଓ ୱାରଉଇକ୍ ପରିବାର ବିଶେଷ କ୍ଷୁଣ୍ଣ ହୁଅନ୍ତି । ନିଜର ସନ୍ତାନମାନଙ୍କ ସମ୍ପର୍କରେ ସେ ବିଶେଷ ଚିନ୍ତିତ ଥାଆନ୍ତି । ତାଙ୍କର ଥିଲେ ଦୁଇପୁତ୍ର ଓ ପାଞ୍ଚକନ୍ୟା । ସେମାନଙ୍କ ଶୈଶବରୁ ହିଁ ସେ ସେମାନଙ୍କର ବିବାହର ପରିକଳ୍ପନା କରିଥିଲେ । ତେବେ ତାଙ୍କର ଅନ୍ୟାନ୍ୟ ପରିକଳ୍ପନା ସବୁ ଶତପ୍ରତିଶତ ସଫଳ ହୋଇଥିଲେ ହେଁ ଏ ବିବାହ କ୍ଷେତ୍ରରେ ତାହା ସମ୍ପୂର୍ଣ୍ଣ ଭାବରେ ବ୍ୟର୍ଥ ହୋଇଯାଏ । ଶେଷକୁ ତାଙ୍କର ଆଉ ପାଇବାକୁ କିଛି ବାକି ନ ଥାଏ । କେବଳ ଖିଆପିଆ, ଭୋଗ ବିଳାସ ଭିତରେ ତାଙ୍କର ସମୟ କଟିଯାଉଥାଏ । ତାଙ୍କ ଭାଇ ରିଚାର୍ଡ଼ ଭାଇଙ୍କ ପାଖେ ପାଖେ ରହି ସବୁ କିଛି ଉପରେ ଦୃଷ୍ଟି ରଖୁଥାଏ । ତାଙ୍କର କିନ୍ତୁ ଉଚ୍ଚାକାଂକ୍ଷା ଅନେକ ଥାଏ ।

ୟୁରୋପରେ ସେତେବେଳେ ମଧ୍ୟଯୁଗର ପରିସମାପ୍ତି ଘଟିବାକୁ ଯାଉଛି । କାକ୍ସଟନ ଓ୍ୱେଷ୍ଟମିନିଷ୍ଟରଠାରେ ଛାପାଖାନା ବସାଇଛନ୍ତି । ତୁର୍କୀମାନେ କନଷ୍ଟାଣ୍ଟିନୋପଲ୍ ଅଧିକାର କରିଛନ୍ତି । ଗ୍ରୀକ୍ ଚିନ୍ତାବିତ୍ ଓ ପଣ୍ଡିତମାନେ ରାଜ୍ୟ ଛାଡ଼ି ଇଟାଲୀ ଓ ପଶ୍ଚିମ ୟୁରୋପ ଚାଲିଯାଉଛନ୍ତି । ପୁରୁଣା ଗ୍ରୀକ୍ ଚିନ୍ତାର ପୁନରୁଦ୍ଧାର ନିମନ୍ତେ ଉଦ୍ୟମ ଚାଲିଛି । ଇତିହାସର ଏଇ ସନ୍ଧିକ୍ଷଣରେ ଏଭଳି ଅନେକ ଜନ୍ମ ଗ୍ରହଣ କରିଥାଆନ୍ତି ଯେଉଁମାନଙ୍କର ଈଶ୍ୱର ନିଷ୍ଠା ଦୁର୍ବଳ । ଈଶ୍ୱରବିଶ୍ୱାସକୁ ସେମାନେ ତାଚ୍ଛଲ୍ୟ ଦୃଷ୍ଟିରେ ଦେଖୁଥାଆନ୍ତି । ସେମାନେ ପ୍ରକୃତି ଦୃଷ୍ଟିରୁ ଖରାପ ସ୍ୱଭାବର ମଣିଷ । ନିଜକୁ ମନ୍ଦ ବୋଲି ଜାଣିଥାଆନ୍ତି ଏବଂ ସେଥିପାଇଁ ବ୍ୟଙ୍ଗ ବିଦ୍ରୂପ ମଧ୍ୟ କରୁଥାଆନ୍ତି । ଏଇ ମନ୍ଦ ସ୍ୱଭାବକୁ ନେଇ ସେମାନେ ଏଭଳି ଅହଙ୍କାର କରୁଥାଆନ୍ତି, ଯେମିତି ସେଇଟା ହେଉଛି ଗୋଟିଏ ଶିଳ୍ପକଳା ! ଇଟାଲୀରେ ଏ ଧରଣର ଲୋକଙ୍କର ଅଭାବ ନ ଥିଲା । ତେବେ ନାନା କାରଣରୁ ଏ ସଇତାନ୍‌ମାନଙ୍କ ସଂଖ୍ୟା ଇଂଲଣ୍ଡରେ ଖୁବ୍ ବେଶି ନ ଥିଲା । ଯେତିକି ବା ଥିଲେ ତା ଭିତରୁ ରିଚାର୍ଡ଼ ହେଉଛନ୍ତି ଜଣେ ।

ତାଙ୍କର ଚେହେରାଟି ଥିଲା ଅତ୍ୟନ୍ତ କଦାକାର, ଦାନବୀୟ ବୋଲି କୁହାଯାଇପାରେ । ରାସ୍ତାର କୁକୁର ମଧ୍ୟ ତାଙ୍କ ଉପରେ ନଜର ପଡ଼ିବା ମାତ୍ରେ 'ଭୋ' 'ଭୋ' ଶବ୍ଦକରି ତାଙ୍କ ଆଡ଼େ ଧାଇଁ ଆସୁଥାନ୍ତି । ସେ ସମ୍ପର୍କରେ ସେ ସଚେତନ ଥାଇ ଦିନେ ସିଦ୍ଧାନ୍ତ ନେଇଯାଆନ୍ତି, ଏଇ ଚେହେରାଟିକୁ ଯେତେବେଳେ ଲୋକେ ଘୃଣା କରୁଛନ୍ତି, ତାଙ୍କର ସ୍ୱଭାବଟିକୁ ତେଣୁ ତା'ର ଅନୁରୂପ କରି ପ୍ରସ୍ତୁତ କରିବାକୁ ପଡ଼ିବ । ରୁଦ୍ରତା ମଧ୍ୟରେ ଯେ ସୌନ୍ଦର୍ଯ୍ୟ ଥାଏ, ତାହା ତାଙ୍କୁ ଜଣା ନ ଥାଏ । ଚେହେରାର ବିସଦୃଶତା ବିକର୍ଷଣ କରିବା ସହିତ ଆକର୍ଷଣ ମଧ୍ୟ କରିପାରେ - ଏଇ ସାଧାରଣ ସତ୍ୟଟି ତାଙ୍କୁ ଜଣା ନ ଥିଲା ।

ସମ୍ରାଟ୍ ଷଷ୍ଠ ହେନେରିଙ୍କର ମୃତ୍ୟୁ ପରେ ତାଙ୍କର ମରଶରୀରକୁ ନଦୀ କୂଳକୁ ଅଣାଯାଉଥାଏ । ନିର୍ଦ୍ଦିଷ୍ଟ ସମାଧିକ୍ଷେତ୍ର ଥାଏ ନଦୀର ଆରକୂଳରେ । ରିଚାର୍ଡ଼ ରାସ୍ତାରେ ଘୂରିବୁଲୁ ଥାଆନ୍ତି । ଶବଯାତ୍ରା ଉପରେ ତାଙ୍କର ନଜର ରହିଥାଏ । ସେଇ ଭିଡ଼ ଭିତରେ ଥାଆନ୍ତି ହେନେରିଙ୍କ ପୁତ୍ରବଧୂ ଲେଡି ଆନ୍ । ଶ୍ୱଶୁରଙ୍କ ମୃତ୍ୟୁରେ ସେ ଶୋକାହତ । ଶ୍ୱଶୁର ଓ ସ୍ୱାମୀଙ୍କର ହତ୍ୟାକାରୀକୁ ସେ ଅଭିଶାପ ଦେଉଥାଆନ୍ତି, ରିଚାର୍ଡ଼ ତାଙ୍କ ଆଗରେ ଠିଆ ହୋଇଯାଆନ୍ତି । ' ଶବ ଏଇଠି ରଖ ' ସେ ଆଦେଶ ଦିଅନ୍ତି । ଶବବାହକମାନେ ଇତସ୍ତତଃ କରିବାରୁ ସେ ଗର୍ଜି ଉଠନ୍ତି - 'ଯିଏ ମୋର ଆଦେଶ ନ ମାନିବ, ତା'ର ମୃତ୍ୟୁ ଅନିବାର୍ଯ୍ୟ । ' ଜଣେ ଭଦ୍ରଲୋକ ଆଗେଇ ଆସି କହନ୍ତି, 'ଲର୍ଡ଼' ଘୁଞ୍ଚିଯାଆନ୍ତୁ । ଶବାଧାରକୁ ଯିବାକୁ ଦିଅନ୍ତୁ । 'ତୁ ଘୁଞ୍ଚିଯା' - ଅସଭ୍ୟ କୁକୁର । ପୁଣି ଚିତ୍କାର କରନ୍ତି ରିଚାର୍ଡ । 'କଫିନ୍ ଏଠି ରଖ, ନ ହେଲେ ତମମାନଙ୍କୁ ମୁଁ ଏଇଠି ପାଦରେ ଦଳିଦେବି । '

ଏଥର ଆଗେଇ ଆସନ୍ତି ଲେଡ଼ି ଆନ୍। ଅନ୍ୟମାନଙ୍କ ଆଡ଼କୁ ଅନାଇ କହନ୍ତି ଏତିକିରେ ଆପଣମାନେ ଡରିଗଲେ ? ଅବଶ୍ୟ ଏଥିପାଇଁ ଆପଣମାନଙ୍କୁ ଦୋଷ ଦିଆଯାଇ ପାରିବ ନାହିଁ। ଏଇ ସଇତାନ୍‌ର ମୁହଁକୁ ଅନାଇ ହେବ ନାହିଁ। ଆପଣମାନେ ଯେ ଭୟ ପାଇବେ, ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ତା'ପରେ ରିଚାର୍ଡ଼ଙ୍କ ଆଡ଼କୁ ଅନାଇ ସେ କହନ୍ତି - ନରକର କୀଟ! ତୁ ତାଙ୍କ ଦେହଟାକୁ ହତ୍ୟା କରିଛୁ ସିନା, ତେବେ ତାଙ୍କର ଆତ୍ମାକୁ କଦାପି ଜୟ କରିପାରିବୁ ନାହିଁ।

- 'ଏତେ ରାଗିଗଲେ ଚଳିବ ପରୀରାଣୀ !' ରିଚାର୍ଡ଼ଙ୍କ ମୁହଁରେ କ୍ରୂରହସ ଫୁଟି ଉଠେ। ଆନ୍ ହେନେରିଙ୍କର କ୍ଷତସ୍ଥାନ ଦେଖାଇ ରିଚାର୍ଡ଼ଙ୍କୁ ଭର୍ତ୍ସନା କରିବାରେ ଲାଗନ୍ତି। ଅନେକ ବେଳଯାଏ ଶୁଣିବା ପରେ ଶେଷରେ ରିଚାର୍ଡ଼ କହନ୍ତି - ତମେ ସୁନ୍ଦରୀ ହେଲେ ମଧ କଣ୍ଟକଜିହ୍ୱ। ମୋତେ ମୋ କଥାଟା କହିବାକୁ ଦିଅ -

- ତୋ' କଥା! ତୁ ତ ପଶୁଟାଏ। ଗଳାରେ ଦଉଡ଼ି ଦେଇ ମରିବା ଛଡ଼ା ତୋ'ର ବା କ'ଣ କହିବାର ଅଛି ?

- ଧର ଯଦି ମୁଁ ଏହାକୁ ମାରି ନ ଥାଏ ? ମୁଁ ତମର ସ୍ୱାମୀକୁ ମାରି ନାହିଁ, ମାରିଛି ଏଡ଼ୱାର୍ଡ଼।

- ମିଥ୍ୟାବାଦୀ ! ମାର୍ଗାରେଟ୍ ନିଜେ ଦେଖିଛନ୍ତି, ତାଙ୍କ ରକ୍ତରେ ତୋର ଛୁରୀ ସେତେବେଳଯାଏ ବି ଗରମ, ଆଉ ସେଇ ଛୁରୀର ମୁହଁ ତୁ ତାଙ୍କ ଛାତି ଆଡ଼କୁ ବୁଲାଇ ଦେଇଥିଲୁ। ତୋ' ଭାଇମାନେ ତାକୁ ଅନ୍ୟ ଆଡ଼କୁ ବୁଲାଇ ଦେଇଥିଲେ।

- ଭଦ୍ରମହିଳା ଭାରି କଟୁଭାଷିଣୀ-କାନ୍ଧ ନଚାନ୍ତି ରିଚାର୍ଡ଼।

- ସେ ନୁହେଁ। ତୋର ଜଘନ୍ୟ ମନ ହିଁ ତୋ' ହାତ ଦେଇ ଏଇ ହତ୍ୟାକାଣ୍ଡଟି ଘଟାଇଛି। ତୁ ହେନେରିଙ୍କୁ ଖୁନ୍ କରି ନାହୁଁ ?

- ମାନି ନେଉଛି।

- ମାନି ନେଉଛୁ ! ତୁ ନରକରେ ପଡ଼ିବୁ। ଓଃ- ସେ କେତେ ଭଦ୍ର, ବିନୟୀ ଆଉ ଗୁଣୀ ଥିଲେ !

- 'ହଁ, ପୂରାପୂରି ସ୍ୱର୍ଗରେ ରହିବା ଭଳି। ଏ ଧୂଳିମାଟିର ଧରଣୀ ଅପେକ୍ଷା ସ୍ୱର୍ଗ ହିଁ ହେବ ତାଙ୍କ ପାଇଁ ଆଦର୍ଶ ସ୍ଥାନ।' ରିଚାର୍ଡ଼ ଅଦ୍‌ଭୁତ ହସ ହସନ୍ତି।

- ଆଉ ଏକମାତ୍ର ନରକ ଛଡ଼ା ଅନ୍ୟ କେଉଁଠି ତୋ'ର ସ୍ଥାନ ହେବ ନାହିଁ।

- ସେଇଆ ନ ହେଲେ ହେଉ କିନ୍ତୁ ଲେଡ଼ି, ଟିକିଏ ଥଣ୍ଡାହୋଇ ଭାବନ୍ତୁ , ସେମାନଙ୍କ ଅକାଳ ମୃତ୍ୟୁ ପାଇଁ ସେମାନଙ୍କ ଅପେକ୍ଷା କ'ଣ ହତ୍ୟାକାରୀ ଅଧିକ ଦାୟୀ ?

- 'ସେମାନଙ୍କ ମୃତ୍ୟୁର କାରଣ ତ ତୁ । '

- 'ନା, ମାଡ଼ାମ୍ । ' ଆନ୍‌ଙ୍କ ଆଡ଼କୁ ସ୍ଥିର ଦୃଷ୍ଟିରେ ଅନାଇ ରିଚାର୍ଡ଼ ଧୀରେ ଧୀରେ କହନ୍ତି, ତା'ର କାରଣ ତମର ଏଇ ରୂପ । ତମର ରୂପପାଇଁ ମୋର ରାତିର ନିଦ ହଜିଯାଇଛି । ତମ ବୁକୁରେ ମଥା ରଖି ମାତ୍ର ଘଣ୍ଟାଏ ନିଦ୍ରା ଯିବା ପାଇଁ ମୁଁ ପୃଥିବୀର ସବୁ ମଣିଷଙ୍କୁ ହତ୍ୟା କରିପାରେ ।

ଆନ୍ ଦୁଇପାଦ ପଛକୁ ଘୁଞ୍ଚିଯାଇ ହାତ ଦେଇ ନିଜ ମୁହଁକୁ ଆବୃତ କରନ୍ତି । ମୁଁ ଯଦି ତାହା ଜାଣିଥାଆନ୍ତି, ତେବେ ନଖରେ ମୋର ଏଇ ସୌନ୍ଦର୍ଯ୍ୟକୁ ତିଳ ତିଳ କରି ନଷ୍ଟ କରି ଦେଇଥାଆନ୍ତି ।

- ନା ମାଡ଼ାମ୍, ଖୋସାମତି ସ୍ବରରେ ରିଚାର୍ଡ଼ କହନ୍ତି ; ସେମିତି କରିବ ନାହିଁ । ଅନ୍ତତଃ ମୁଁ ପାଖରେ ଥିବାଯାଏ ତ କେବେ ନୁହେଁ । ମୋ ଜୀବନର ଆଲୋକ ଶିଖାକୁ ନିର୍ବାପିତ ହେବାର ମୁଁ ଦେଖିପାରିବି ନାହିଁ ।

ଏସବୁ ଆନ୍‌ଙ୍କୁ ଖରାପ ଲାଗୁଥାଏ ସତ, ତେବେ ସେ ରିଚାର୍ଡ଼ଙ୍କ ମୁହଁ ଉପରୁ ଦୃଷ୍ଟି ଫେରାଇ ପାରୁ ନ ଥାନ୍ତି । ତଥାପି ସେ ତାଙ୍କୁ ଅଭିଶାପ ଦେଇ ଚାଲିଥାଆନ୍ତି । ଓଃ- ମୋର ଏଇ ନଜରରେ ଯଦି ତୁ ଭସ୍ମ ହୋଇଯାଇପାରନ୍ତୁ ।

- ଯଦି ତାହା ପାରନ୍ତ, ତେବେ ତ ମୁଁ ସାଙ୍ଗେ ସାଙ୍ଗେ ମରିଯାଆନ୍ତି । ଏବେ କିନ୍ତୁ ତମର ଦୃଷ୍ଟି ମୋତେ ତିଳ ତିଳ କରି ଦଗ୍ଧ କରୁଛି ।' ବିରାଡ଼ି ଯେମିତି ମୂଷା ସହିତ ଖେଳେ ରିଚାର୍ଡ଼, ସେମିତି ଆନ୍‌ଙ୍କ ସହିତ ଖେଳ ଆରମ୍ଭ କରିଦେଇଥାଆନ୍ତି । ଆନ୍ ବିଦ୍ରୂପରେ ହସି ଉଠନ୍ତି । ତାଙ୍କୁ ଦେଖି ରିଚାର୍ଡ଼ ମନ୍ତବ୍ୟ ଦିଅନ୍ତି - ତମର ଏଇ ଚମତ୍କାର ଓଷ୍ଠକୁ ଘୃଣା କରିବାକୁ ଶିଖାଅ ନାହିଁ । ଓଷ୍ଠାଧରର ସୃଷ୍ଟି ଚୁମ୍ବନ ନିମନ୍ତେ ।

ହଠାତ୍ ନିଜର ତରବାରି କୋଷମୁକ୍ତ କରି ରିଚାର୍ଡ଼ କହନ୍ତି, 'ଯଦି ତମର ପ୍ରଚଣ୍ଡ ପ୍ରତିଶୋଧ ସ୍ପୃହା ଜାଗିଥାଏ, ତେବେ ଏଇ ନିଅ ତରବାରି, ବିଦ୍ଧକର ମୋ ଦେହରେ, ସେତେବେଳେ ମୋର ଆତ୍ମା ତମକୁ ଭଲପାଇବ ' ଆଣ୍ଠୁମାଡ଼ି ବସି ରିଚାର୍ଡ଼ ନିଜର ଅଙ୍ଗବସ୍ତ୍ର ଖୋଲିଦିଅନ୍ତି । ଆନ୍‌କୁ ଇତସ୍ତତଃ କରୁଥିବାର ଦେଖି କହନ୍ତି, ଅପେକ୍ଷା କର ନାହିଁ । ରାଜା ହେନେରିଙ୍କୁ ମୁଁ ହତ୍ୟା କରିଛି । ତମର ରୂପର ମୋହ ହିଁ ହେଉଛି ଏହାର କାରଣ । ମୁଁ ହିଁ ତାଙ୍କର ପୁତ୍ର ଏଡ଼ୱାର୍ଡ଼ଙ୍କୁ ମାରିଛି, ତା'ର କାରଣ ମଧ ତମର ଏଇ ସ୍ୱର୍ଗୀୟ ସୁଷମା ।

ଆନ୍‌ଙ୍କ ହାତରୁ ତରବାରି ପଡ଼ିଯାଏ । ରିଚାର୍ଡ଼ କହନ୍ତି, ଏଇ ତରବାରି ଉଠାଅ ନ ହେଲେ ମୋତେ ଗ୍ରହଣ କର । ଥର ଥର ହୋଇ କମ୍ପୁଥାଆନ୍ତି ଆନ୍ । ନିଜକୁ କୌଣସିମତେ

ସମ୍ବରଣ କରିନେଇ କହନ୍ତି- ଓଠ ମୁଁ ତମର ମୃତ୍ୟୁ ଚାହେଁ, ଏହା ସତ୍ୟ । କିନ୍ତୁ ନିଜ ହାତରେ ସେଇ ଅମାନୁଷିକ କାର୍ଯ୍ୟ ମୁଁ କରିପାରିବି ନାହିଁ ।

- ତା' ହେଲେ ମୋତେ ଅନୁମତି ଦିଅ । ନିଜ ହାତରେ ମୁଁ ସେଇ କାର୍ଯ୍ୟଟି କରେ ।

- ମୁଁ ତ ତା କହିସାରିଛି ।

- କହିଛ, କିନ୍ତୁ କ୍ରୋଧରେ । ଏଥର ଆଉ ଥରେ କହ । ଯେଉଁ ହାତରେ ତୁମକୁ ପାଇବା ପାଇଁ ତମର ସ୍ୱାମୀଙ୍କୁ ହତ୍ୟା କରିଛି, ସେଇ ହାତରେ ମୁଁ ନିଜକୁ ଶେଷ କରିଦେବି । ତେବେ ଏ ଦୁଇଟିଯାକ ହତ୍ୟାର କାରଣ ହେବ ତମେ ।

- 'ତମ କଥା ମୁଁ ବୁଝିପାରୁ ନାହିଁ । ' ହତବାକ୍ ଆନ୍ ସ୍ଥାଣୁ ହୋଇ ଠିଆ ହୋଇ ରହନ୍ତି ।

- ସବୁ କଥା ତ କହିଲି ।

- ବେଶ୍ ତରବାରି ରଖ ।

- ତେବେ ପ୍ରତିଶ୍ରୁତି ଦିଅ ଆଉ ଭର୍ତ୍ସନା ନୁହଁ, ଏଥର ବନ୍ଧୁତ୍ୱ ।

- ପରେ କହିବି । ଆନ୍ ବୁଝିପାରନ୍ତି, ସେ ହାରି ଯାଇଛନ୍ତି । ତଥାପି କିଛି ସମୟ ଚାହାନ୍ତି । କିନ୍ତୁ ରିଚାର୍ଡ଼ ତାଙ୍କର ହାତ ଧରନ୍ତି, ନିଜର ମୁଦି ତାଙ୍କ ଆଙ୍ଗୁଳିରେ ପିନ୍ଧାଇ ଦିଅନ୍ତି । କହନ୍ତି, ଏଇ ମୁଦ୍ରିକା ଆଉ ମୋର ହୃଦୟ - ଆଜି ଠାରୁ ଏ ଉଭୟ ତମର । ବର୍ତ୍ତମାନ ମୋର ଗୋଟିଏ କଥା ଶୁଣ । ଅନ୍ତ୍ୟେଷ୍ଟି କ୍ରିୟାର ପୂର୍ଣ୍ଣ ଦାୟିତ୍ୱ ମୋ ହାତରେ ଛାଡ଼ିଦିଅ । ତମେ ଚାଲିଯାଅ ବିଶପ୍ ଗେଟ୍ ସ୍ଥିତ ମୋ ପ୍ରାସାଦକୁ । ଏଠାର କାର୍ଯ୍ୟ ଯେତେ ଶୀଘ୍ର ହୁଏ, ଶେଷ କରି ମୁଁ ସେଠାକୁ ଫେରିବି । ମୋ କଥା ଶୁଣ, କାରଣ ଅଛି ବୋଲି କହୁଛି ।

ଆନ୍ ରିଚାର୍ଡ଼ଙ୍କ ନିର୍ଦ୍ଦେଶ ପାଳନ କରନ୍ତି । ନିଜକୁ ରିଚାର୍ଡ଼ଙ୍କ ହାତରେ ସମର୍ପଣ କରିଦେବା ବ୍ୟତୀତ ତାଙ୍କର ଆଉ କିଛି କରିବାର ସାମର୍ଥ୍ୟ ନ ଥାଏ ।

ରିଚାର୍ଡ଼ ଆନ୍‌ଙ୍କର ଚାଲିଯିବା ଦେଖନ୍ତି । ତା'ପରେ ଶବବାହକମାନଙ୍କୁ ନିର୍ଦ୍ଦେଶ ଦିଅନ୍ତି, ସେମାନେ ଶବକୁ ନେଇ ଚାର୍ଟସ୍ ବଦଳରେ ହ୍ୱାଇଟ୍ ଫ୍ଲାଓ୍ୱାର ସମାଧି କ୍ଷେତ୍ରକୁ ଯାଆନ୍ତୁ ଏବଂ ନଦୀକୂଳରେ ତାଙ୍କୁ ଅପେକ୍ଷା କରନ୍ତୁ । ଶବଯାତ୍ରୀମାନେ ଚାଲିଯାଆନ୍ତି । ରିଚାର୍ଡ଼ ଭାବନ୍ତି - ଏହିପରି କିଏ କ'ଣ କେବେ କୌଣସି ତରୁଣୀକୁ ପାଇଛି ? ତାକୁ ମୋର ପ୍ରୟୋଜନ, ତେବେ ଖୁବ୍ ବେଶି ଦିନ ପାଇଁ ନୁହେଁ ।

ରିଚାର୍ଡ଼ କାହିଁକି ଲେଡିଆନ୍‌କୁ ଚାହାନ୍ତି ? ଉତ୍ତରଟା ଖୁବ୍ କଠିନ ନୁହେଁ । ପ୍ରଥମତଃ, ଆନ୍ ହେଉଛନ୍ତି ଇଂଲଣ୍ଡର ସବୁଠାରୁ ଧନୀ ମହିଳାମାନଙ୍କ ମଧ୍ୟରୁ ଜଣେ । ସେ ଆଉ ତାଙ୍କର ଭଉଣୀ ( ରିଚାର୍ଡ଼ଙ୍କ ଭାଇ କ୍ଲରେନ୍‌ସଙ୍କ ସ୍ତ୍ରୀ) ସେମାନଙ୍କ ପିତାଙ୍କର ପ୍ରଭୂତ ସମ୍ପଦର

ଉତ୍ତରାଧିକାରିଣୀ। ସମାଜରେ ସେମାନଙ୍କର ପିତାଙ୍କର ଯଥେଷ୍ଟ ପ୍ରତିପତ୍ତି ଥିଲା। ସିଂହାସନରେ କିଏ ବସିବେ, ସେ ବ୍ୟାପାରରେ ତାଙ୍କର ମତାମତ ହିଁ ଥିଲା ଚୂଡ଼ାନ୍ତ । ସୁତରାଂ ବର୍ତ୍ତମାନ କ୍ଲରେନ୍ସଙ୍କ କ୍ଷତି ହେବ ସବୁଠାରୁ ଅଧିକ ଏବଂ ତାଙ୍କ କ୍ରୋଧ ହେବ ଦେଖିବା ଭଳି । ହଁ, କ୍ଲରେନ୍ସଙ୍କ ବ୍ୟାପାରରେ କିଛି ଗୋଟିଏ କରିବାକୁ ହେବ । ଏଇସବୁ ଚିନ୍ତା ରିଚାର୍ଡ୍‌ଙ୍କ ମନରେ ଖେଳୁଥିଲା । କି ବିଚିତ୍ର କଥା ! ମୁଁ ତା'ର ସ୍ୱାମୀ ଆଉ ଶ୍ୱଶୁର ଉଭୟଙ୍କୁ ହତ୍ୟା କଲି- ତା'ର ଘୃଣା ଓ ଅଭିଶାପ ଦୁଇଟିଯାକ ପାଇଲି । ତା'ର ଆଖିରୁ ଲୁହ ଝରିଲା-ଅଥଚ୍ କେବଳ ଆଖିର ମୋହମୟ ପ୍ରଭାବରେ ମୁଁ ତା'ର ମନ ଜୟ କରିନେଲି ! ସେ କ'ଣ ଏଇ ଅଳ୍ପ ଦିନ ଭିତରେ ଏଡ଼ୱାର୍ଡ୍‌କୁ ସମ୍ପୂର୍ଣ୍ଣ ଭୁଲିଯାଇଛି ?

ଆନ୍‌କୁ ବିବାହ କଲେ ତାଙ୍କୁ କ୍ଲରେନ୍ସର ମୁହାଁମୁହିଁ ହେବାକୁ ପଡ଼ିବ । ତାହା ଅବଶ୍ୟ ଖୁବ୍ ଏକ ଜଟିଳ ବ୍ୟାପାର ନୁହେଁ । ମନରେ ରିଚାର୍ଡ୍ କ୍ଲରେନ୍ସଙ୍କୁ ଘୃଣା କରୁଥାଆନ୍ତି । ତାଙ୍କ ସ୍ୱଭାବରେ ନାନା ତ୍ରୁଟି ଥିଲେ ମଧ ସେ ଏଡ଼୍‌ୱାର୍ଡ୍‌ଙ୍କ ଭାଗ୍ୟ ସହିତ ନିଜକୁ ଜଡ଼ିତ କରି ପକାଇ ଥାଆନ୍ତି । ଅନ୍ୟ ଆଡ଼େ କ୍ଲରେନ୍ସ ଥରେ ରାଜମୁକୁଟ ଲୋଭରେ ଭାଇଙ୍କ ପ୍ରତି ବିଶ୍ୱାସଘାତକତା କରିଥାଆନ୍ତି ଏବଂ ପୁଣି ଷଡ଼ଯନ୍ତ୍ର ମଧ କରନ୍ତି ।

କ୍ଲରେନ୍ସ ଯାହା ଭାବିଥାଆନ୍ତି, ତା' ପଛରେ ଗୋଟାଏ ଘଟଣା ଥାଏ । ଏଡ଼ୱାର୍ଡ୍ ଯେତେବେଳେ ଡେମ୍ ଏଲିଜାବେଥ୍ ଗ୍ରେଙ୍କ ସହିତ ନିଜର ବିବାହର କଥା ଘୋଷଣା କରନ୍ତି ସେତେବେଳେ ଏହା ତାଙ୍କର ମାଆଙ୍କର ପସନ୍ଦ ହୁଏ ନାହିଁ ଏବଂ ଏଥିପାଇଁ ସେ ଲେଡି ଏଲିଜାବେଥ୍ ଲୁସିଙ୍କର ସାହାଯ୍ୟ ନିଅନ୍ତି । ଲୁସି କହେ, ତା' ସହିତ ରାଜାଙ୍କର ଗୁପ୍ତ ବିବାହ ହୋଇଥିଲା । ପରେ ଅବଶ୍ୟ ସେ ସ୍ୱୀକାର କରେ ସେ ସମ୍ପର୍କ ନିୟମାନୁଗ ନ ଥିଲା । ଏବେ ଯଦି ପ୍ରମାଣ କରିଦିଆଯାଏ ଯେ ଲୁସି ସହିତ ଏଡ଼ୱାର୍ଡ୍‌ଙ୍କ ବିବାହ ଆଇନ୍‌ସମ୍ମତ ଥିଲା ତେବେ ଏଲିଜାବେଥ୍‌ଙ୍କ ଦ୍ୱିତୀୟ ବିବାହଟା ବାତିଲ୍ ହୋଇଯିବ । ସେମାନଙ୍କର ସନ୍ତାନମାନଙ୍କୁ ବୈଧ ବୋଲି ସ୍ୱୀକାର କରାଯିବ ନାହିଁ । ସୁତରାଂ ଏଡୱାର୍ଡଙ୍କର ମୃତ୍ୟୁ ପରେ ସ୍ୱାଭାବିକ ଭାବେ କ୍ଲରେନ୍ସ ହିଁ ହେବେ ସିଂହାସନର ଉତ୍ତରାଧିକାରୀ । ସେ ସେଇ ଚେଷ୍ଟା ହିଁ କରୁଥିଲେ ।

ସୁତରାଂ କ୍ଲରେନ୍ସ ଯେତେବେଳେ ଏହିସବୁ ଜଟିଳତା ସୃଷ୍ଟି କରି ତହିଁରୁ ଫାଇଦା ଉଠାଇବାକୁ ଚେଷ୍ଟା କରୁଥିଲେ, ରିଚାର୍ଡଙ୍କର ଏକମାତ୍ର କରଣୀୟ ଥିଲା ରାଜାଙ୍କୁ ଏ ସମ୍ପର୍କରେ ପୂର୍ବ ସୂଚନା ଦେବା । ସେ ସେଇଆ କରନ୍ତି । ଏଡ଼୍‌ୱାର୍ଡଙ୍କର ବୟସ ହୋଇଥାଏ, ସେ ଜାଣୁଥାଆନ୍ତି ଯେ, ତାଙ୍କର ଦିନ ଶେଷ ହୋଇ ଆସୁଛି । ତେଣୁ ତାଙ୍କର ସନ୍ତାନମାନଙ୍କର ବୈଧତାକୁ ନେଇ ପ୍ରଶ୍ନ ଉଠାଗଲେ ସେ ରାଗି ଯାଉଥାଆନ୍ତି । ଏ ମଧରେ ଗୋଟିଏ ଘଟଣା ଘଟିଯାଏ । କେହି ଗଣନା କରି କହନ୍ତି ଯେ, ରାଜାଙ୍କ ପରେ ତାଙ୍କର ଉତ୍ତରାଧିକାରୀମାନଙ୍କର ଅଧିକାର 'ଜି' ଆଦ୍ୟ ନାମାକ୍ଷରଧାରୀ କୌଣସି ବ୍ୟକ୍ତି ଦ୍ୱାରା ଅପହୃତ ହେବ । ଏଣେ କ୍ଲରେନ୍ସଙ୍କ ପ୍ରଥମ

ନାମ 'ଜର୍ଜ' । ସୁତରାଂ କେବଳ ରାଜା ନୁହେଁ, ରାଣୀ ଏବଂ ତାଙ୍କର ଆତ୍ମୀୟମାନେ ମଧ କ୍ଲରେନ୍ସଙ୍କ ଉପରେ ପ୍ରଚଣ୍ଡ ରାଗି ଯାଆନ୍ତି ।

ସବୁ କିଛି ଘଟୁଥାଏ ରିଚାର୍ଡ୍‌ଙ୍କ ପରିକଳ୍ପନା ଅନୁସାରେ । କ୍ଲରେନ୍ସକୁ ବନ୍ଦୀକରି ଲଣ୍ଡନ ଟାୱାରର କାରାଗାରକୁ ପଠାଇ ଦିଆଯାଏ । ଏଥର ରିଚାର୍ଡ୍ ଏକ ଚମକ ସୃଷ୍ଟି କରନ୍ତି । ସେ କ୍ଲରେନ୍ସଙ୍କର ଟାୱାର ଯିବା ବାଟରେ ଅପେକ୍ଷା କରିଥାଆନ୍ତି । ତାଙ୍କୁ ଖବର ଦିଅନ୍ତି, ସେ ତାଙ୍କର ମୁକ୍ତି ନିମନ୍ତେ ଯଥାସାଧ ଉଦ୍ୟମ କରିବେ । କ୍ଲରେନ୍ସ ଚାଲିଯିବା ପରେ ସେ ପ୍ରାସାଦକୁ ଫେରିଆସନ୍ତି । ଏଡ଼ୱାର୍ଡ୍ ଅସୁସ୍ଥ ଅବସ୍ଥାରେ ତାଙ୍କୁ ଅପେକ୍ଷା କରୁଥାଆନ୍ତି । ଉଦ୍ଦେଶ୍ୟ ମୃତ୍ୟୁ ପୂର୍ବରୁ ରାଣୀ ଏବଂ ତାଙ୍କର ଆତ୍ମୀୟମାନଙ୍କ ସହିତ ରିଚାର୍ଡଙ୍କର ମନର ମିଳନ ଘଟାଇବା । ଯାହା ଫଳରେ ତାଙ୍କ ମୃତ୍ୟୁ ପରେ ସମସ୍ତେ ମିଶି ତାଙ୍କର ଉତ୍ତରାଧିକାରୀକୁ ସିଂହାସନରେ ବସାଇବାକୁ ସାହାଯ୍ୟ କରିବେ ।

ରାଜାଙ୍କ ପାଖ ପ୍ରକୋଷ୍ଠରେ ଅନେକେ ଏକତ୍ରିତ ହୋଇଥାଆନ୍ତି । ଜଣ ଜଣଙ୍କର ଗୋଟିଏ ଗୋଟିଏ ମତ । ସୁତରାଂ ରିଚାର୍ଡ୍‌ଙ୍କ ସହିତ ରାଣୀଙ୍କର ବୁଝାମଣାର କୌଣସି ଆଶା ନ ଥାଏ । କଥାବାର୍ତ୍ତା ଚାଲୁଥିବା ସମୟରେ ସେଠାକୁ ଆସନ୍ତି ଇଂଲଣ୍ଡର ପ୍ରାକ୍ତନ ରାଣୀ ମାର୍ଗାରେଟ୍ । ନିର୍ବାସନରୁ ସେ ଇଂଲଣ୍ଡ ଫେରିଥାଆନ୍ତି । କିନ୍ତୁ ସେ ଆଉ ପୂର୍ବଭଳି ନ ଥାନ୍ତି । ଗୋଟିଏ ପ୍ରେତାତ୍ମା ଭଳି ଦେଖା ଯାଉଥାଆନ୍ତି । ଦେଖିଲେ ମନେ ହେଉଥାଏ, ତାଙ୍କ ଠାରୁ ମାୟା, ମମତା, ଆଶା ସବୁ ଚାଲିଯାଇ ବାକି ରହିଯାଇଛି କେବଳ ଘୃଣା । ଏବେ ସେ ବଞ୍ଚିଛନ୍ତି କେବଳ ସମସ୍ତଙ୍କ ଉପରେ ଈଶ୍ୱରଙ୍କର ପ୍ରତିଶୋଧ ଲୀଳା ନିଜ ଆଖିରେ ଦେଖି ଯିବାକୁ । ଘରେ ଯେଉଁମାନେ ଥାଆନ୍ତି, ସମସ୍ତଙ୍କ ଉପରେ ଯେମିତି ମାର୍ଗାରେଟ୍‌ଙ୍କର ପ୍ରତିହିଂସାର ଛାଇ ପଡ଼େ । ମାର୍ଗାରେଟ୍ ସମସ୍ତଙ୍କୁ ଅଭିଶାପ ଦେଉଥାଆନ୍ତି ।

ରିଚାର୍ଡ୍ ପ୍ରଥମେ ପରିସ୍ଥିତିଟାକୁ ସମ୍ଭାଳି ନେବାକୁ ଚେଷ୍ଟା କରନ୍ତି । କହନ୍ତି ଡାହାଣୀ, ଏଠାକୁ କ'ଣ ପାଇଁ ଆସିଛୁ ? କ'ଣ ପାଇଁ ତୋତେ ନିର୍ବାସନ ଦଣ୍ଡ ଦିଆଯାଇଥିଲା, ତାହା ଭୁଲିଗଲୁଣି କି ?

— ନା, ଭୁଲି ନାହିଁ । ମୋ ସ୍ୱାମୀ କାହାନ୍ତି, କାହାନ୍ତି ବା ମୋର ସନ୍ତାନ ? କୁଆଡ଼େ ଗଲା ମୋର ରାଜ୍ୟ ? ମୁଁ ଯେଉଁ ଦୁଃଖ ପାଉଛି ସେ ଦୁଃଖ ତମେ ସମସ୍ତେ ପାଇବା ଉଚିତ ।

ମୁହୂର୍ତ୍ତକ ମଧ୍ୟରେ ଉପସ୍ଥିତ ସମସ୍ତେ ନିଜ ଭିତରର କଳହ ଭୁଲିଯାଇ ସମସ୍ତଙ୍କର ଶତ୍ରୁ ଏଇ ନାରୀଟି ଉପରେ କ୍ରୋଧ ବର୍ଷଣ କରିବାରେ ଲାଗନ୍ତି ।

— ମୁଁ ଆସିବା ପୂର୍ବରୁ ତମେମାନେ ନିଜ ନିଜ ଭିତରେ କଳହରତ ଥିଲ । ଜଣେ ଅନ୍ୟର ଗଳା କାଟିବା ପାଇଁ ପ୍ରସ୍ତୁତ ହୋଇଥିଲ । ଏବେ ସମସ୍ତେ ମୋ ଉପରେ ଡେଇଁ ପଡୁଛ !

ତମେ ମୋତେ ଅଭିଶାପ ଦେଲେ ମଧ ତା' କ'ଣ ଈଶ୍ୱରଙ୍କ ଦ୍ୱାରା ଗୃହୀତ ହେବ ? କେବେ ନୁହେଁ । ବରଂ ମୋ କଥା ଶୁଣ । ମୋ ପୁଅ ଏଡ଼ୱାର୍ଡ ପ୍ରିନ୍ସ ଅଫ ୱେଲ୍ସ । ସେ ଅକାଳରେ ମୃତ୍ୟୁ ବରଣ କରିଛି । ତା' ବଦଳରେ ବର୍ତ୍ତମାନର ପ୍ରିନ୍ସ ଅଫ ୱେଲ୍ସ- ଏଇ ଏଡ଼ୱାର୍ଡ- ସେ ମଧ ମରିବ- ତୋର ରାଣୀ ହେବାର ଗୌରବ ଲୁଚିଯିବ । ମୋରି ଭଳି ପୁତ୍ର ଶୋକରେ ଅଧୀର ହୋଇ ଘୂରିବୁଲିବୁ ।

କଥା ଶେଷ କର - ରିଚାର୍ଡ଼ ଆଦେଶ ଦିଅନ୍ତି ।

କିନ୍ତୁ ମାର୍ଗାରେଟ୍ ସେତେବେଳେ ଆଉ ଅଟକି ରହିବା ଅବସ୍ଥାରେ ନ ଥାନ୍ତି । କହି ଚାଲିଥାଆନ୍ତି, ତୋତେ ମଧ ମୁଁ ଛାଡ଼ିବି ନାହିଁ । ମୋ କଥା ତୋତେ ଶୁଣିବାକୁ ହେବ ! ସବୁଠାରୁ ବଡ଼ ଧର୍ମ ଦଣ୍ଡ ତୁ ପାଇବୁ । ତୋର ପାପର ମାତ୍ରା ଏଥର ପୂର୍ଣ୍ଣ ହେଲାଣି । ଦେଖିବୁ ରେ କୁକୁର । ରାତିରେ ତୋର ନିଦ ହେବ ନାହିଁ । ଦିନରେ ତୁ ବସି ଉଠିପାରିବୁ ନାହିଁ । ଅତ୍ୟନ୍ତ କଟୁ ଭାଷାରେ ମାର୍ଗାରେଟ୍ ଗାଳି ଦେଇ ଚାଲିଥାଆନ୍ତି । ହଠାତ୍ ରିଚାର୍ଡ଼ ଖୁବ୍ ଜୋରରେ ହସି ଉଠନ୍ତି । ମାର୍ଗାରେଟ୍ ଚମକିପଡ଼ି ଚୁପ୍ ହୋଇଯାଆନ୍ତି । ବକିଂହାମ୍ ମଧ ତାଙ୍କୁ ନୀରବ ରହିବାକୁ କହନ୍ତି ।

— ତୋ' ସହିତ ମୋର କିଛି ମନାନ୍ତର ନାହିଁ - ବକିଂହାମ୍‌ଙ୍କ ଆଡ଼କୁ ଅନାଇ ସେ କହନ୍ତି- ତୋ' ପରିବାରର ମଙ୍ଗଳ ହେଉ । ତା' ପରେ ରିଚାର୍ଡ଼ଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହନ୍ତି- କେବଳ ଏଇ କୁକୁରଟା ପ୍ରତି ସତର୍କ ରହିବୁ । ତୋ' ଆଡ଼କୁ କଟମଟ କରି ଚାହିଁଲେ ବୁଝିଯିବୁ, ସେ କାମୁଡ଼ିବ । ତା'ର ଦାନ୍ତରେ ଯେଉଁ ବିଷ ଅଛି, ତା'ର ପରିଣାମ ହେଉଛି ମୃତ୍ୟୁ । ବକିଂହାମ୍ କାନ୍ଧ ନଚାଇବାରୁ ମାର୍ଗାରେଟ୍ ପୁଣି ଚିତ୍କାର କରି କହନ୍ତି- କ'ଣ ହେଲା ତୁ ମୋ କଥାକୁ ତାଚ୍ଛଲ୍ୟ କରୁଛୁ ! ଯେଉଁଦିନ ଦୁଃଖରେ ତୋ'ର ହୃଦୟ ଫାଟିଯିବ, ସେଦିନ ଯାଇ ଏଇ ବୁଢ଼ୀ କଥା ମନେ ପଡ଼ିବ । ଘୃଣାରେ ସମସ୍ତଙ୍କ ଆଡ଼କୁ ତୀବ୍ର ଦୃଷ୍ଟି ପକାଇ ସେ ବିଦାୟ ନିଅନ୍ତି ।

ଏତେବେଳଯାଏ ସମସ୍ତେ ମାର୍ଗାରେଟ୍‌ଙ୍କ କଥା ଚୁପ୍‌ଚାପ୍ ଶୁଣୁଥାଆନ୍ତି । ରିଚାର୍ଡ଼ ଦୀର୍ଘଶ୍ୱାସ ପକାଇ କହନ୍ତି - ବିଚାରୀ । ତାଙ୍କ ପ୍ରତି ଅନ୍ୟାୟ କରାଯାଇଛି । ସେଥିରେ ମୋର ମଧ କିଛି ଭୂମିକା ଅଛି ଏବଂ ସେଥିପାଇଁ ମୁଁ ଦୁଃଖୀ କରୁଛି ।

— ଜାଣିଶୁଣି ମୁଁ ତ ତାଙ୍କ ପ୍ରତି କୌଣସି ଅନ୍ୟାୟ କରି ନାହିଁ- ରାଣୀ କହନ୍ତି ।

ରିଚାର୍ଡ଼ କହନ୍ତି- କିନ୍ତୁ ଆପଣମାନେ ଲାଭବାନ୍ ହୋଇଛନ୍ତି । ମୋ ଆଡୁ ମୁଁ ତରବରରେ ଏମିତି ଜଣକୁ ସାହାଯ୍ୟ କରିବାକୁ ଆଗେଇ ଯାଇଥିଲି, ଯେ ମୋ ସାହାଯ୍ୟ କଥା ପୂରା ଭୁଲି ଯାଇଛନ୍ତି । ଅଥଚ ସେଇ କ୍ଲରେନ୍ସ ଉପକୃତ ହେବେ । ସେଥିପାଇଁ ଯେଉଁମାନେ ଦୋଷୀ, ଈଶ୍ୱର ସେମାନଙ୍କୁ କ୍ଷମା କରନ୍ତୁ ।

ରିଚାର୍ଡ଼ଙ୍କୁ ଛାଡ଼ି ସମସ୍ତେ ରାଜାଙ୍କୁ ଦେଖିବାକୁ ଯାଆନ୍ତି । ଦୁଇ ଜଣ ଗୁଣ୍ଡା ଧରଣର ଲୋକ ବାହାରେ ଅପେକ୍ଷା କରୁଥାଆନ୍ତି । ସେ ରାଜାଙ୍କ ନିର୍ଦ୍ଦେଶନାମାଟିକୁ ବଦ୍ଳାଇ ଦେଇ ନିର୍ଦ୍ଦେଶ ଦିଅନ୍ତି କ୍ଲରେନ୍ସଙ୍କୁ ରାସ୍ତାରୁ ହଟାଇ ଦେବାକୁ । ତା' ପରେ ସେ ମଧ୍ୟ ଅସୁସ୍ଥ ରାଜାଙ୍କ ଘରେ ପ୍ରବେଶ କରନ୍ତି ।

ଟାୱାରର ହାଜତରେ ବସି କ୍ଲରେନ୍ସ ତଥାପି ଆଶା କରି ବସିଥାଆନ୍ତି ଯେ, ରିଚାର୍ଡ଼ ତାଙ୍କ ମୁକ୍ତିର ବ୍ୟବସ୍ଥା କରିବେ । ରିଚାର୍ଡ଼ଙ୍କ ବିଶ୍ୱାସଘାତକତା ସମ୍ପର୍କରେ ସେ କିଛି ଜାଣି ନ ଥାନ୍ତି । କେବଳ ନିଦ୍ରାବସ୍ଥାରେ ଭୟଙ୍କର ସ୍ୱପ୍ନ ସବୁ ଦେଖୁ ଥାଆନ୍ତି । ବ୍ରାକେନ୍‌ବେରି ଥରେ ତାଙ୍କୁ ସ୍ୱପ୍ନର ବର୍ଣ୍ଣନା କରିବାକୁ କହିଲାରୁ କ୍ଲରେନ୍ସ କହନ୍ତି, ମୁଁ ଦେଖିଲି ଯେ ଜେଲ୍ ଭାଙ୍ଗି ମୁଁ ବାହାରକୁ ଚାଲିଆସିଛି । ବର୍ଗଣ୍ଡି ଯିବା ପାଇଁ ଜାହାଜରେ ବସିଛି । ସାଙ୍ଗରେ ଅଛି ମୋର ଭାଇ ଗ୍ଲଷ୍ଟର । ସେ ମୋତେ କାବିନ୍ ବାହାରକୁ ଆସି ବୁଲିବା ପାଇଁ କହୁଛି । ସେଇଠି ଠିଆହୋଇ ପଛକୁ ମୁହଁ ବୁଲାଇ ମୁଁ ମାତୃଭୂମି ଇଂଲଣ୍ଡକୁ ଦେଖେ । ଧାରରେ ଚାଲୁଥିବା ସମୟରେ ଗ୍ଲଷ୍ଟର ପଡ଼ି ଯାଉଥାଏ । ମୁଁ ତାକୁ ବଞ୍ଚାଇବାକୁ ଚେଷ୍ଟା କରେ । କିନ୍ତୁ ଗୋଟାଏ ବଡ଼ ଢେଉ ଆସି ମୋ ଦେହରେ ବାଡ଼େଇ ହୋଇଯାଏ । ମୁଁ ବୁଡ଼ିଯାଉଥାଏ । କାନରେ କେବଳ ପଡୁଥାଏ ପାଣିର କଳ କଳ ଶବ୍ଦ । ତା' ପରେ ମୁଁ ଦେଖିଲି ମୃତ୍ୟୁର ଭୟଙ୍କର ରୂପ । ଦେଖିଲି ମୋ ଚାରିପଟେ ଦଶହଜାର ମୃତଦେହ ମାଛମାନଙ୍କର ଭୋଜିରେ ଲାଗିଛି । ନାନା ପ୍ରକାର ମୁକ୍ତା, ଦାମୀ ପଥର ସବୁ ସମୁଦ୍ର ତଳେ ବିଛେଇ ହୋଇ ପଡ଼ିଛି । ତା' ଭିତରୁ ପୁଣି କେଇଟା ମଣିଷ ମୁଣ୍ଡର କଙ୍କାଳ ଭିତରେ ରହିଛି ।

— ମୃତ୍ୟୁର ରୋମାଞ୍ଚକର ମୁହୂର୍ତ୍ତରେ ଆପଣ ଏଇଆ ସବୁ ଦେଖିଲେ ?

— ମୋର ତ ସେଇଆ ମନେହେଲା । ସ୍ୱପ୍ନ କିନ୍ତୁ ସେଇଠି ଶେଷ ହେଲା ନାହିଁ । ମୋର ଆତ୍ମା ଦେହ ଭିତରୁ ବାହାରି ଆସି ପହଞ୍ଚିଗଲା ଗାଢ଼ ଅନ୍ଧକାର ଭିତରେ । ସେଠାରେ ମୋତେ ପ୍ରଥମ ଅଭିନନ୍ଦନ ଜଣାନ୍ତି ମୋର ପୂଜ୍ୟ ଶ୍ୱଶୁର । ସେ ଚିତ୍କାର କରି କହନ୍ତି- ନରକରେ କ'ଣ କ୍ଲରେନ୍ସ ଭଳି ଲୋକକୁ କୌଣସି ଶାସ୍ତି ଦିଆଯାଇପାରେ ? ତା' ପରେ ସେ ଅଦୃଶ୍ୟ ହୋଇଯାଆନ୍ତି । ତା' ପରେ ଆବିର୍ଭୂତ ହୁଅନ୍ତି ଆଉ ଏକ ଛାୟାମୂର୍ତ୍ତି । ତାଙ୍କର କେଶ ରକ୍ତରଞ୍ଜିତ । ସେ ସରୁ ଗଳାରେ କହନ୍ତି କ୍ଲରେନ୍ସ ଆସିଛି । - ମିଥ୍ୟାବାଦୀ, ଷଡ଼୍‌ଯନ୍ତ୍ରକାରୀ କ୍ଲରେନ୍ସ, ସେଇ ମୋତେ ହତ୍ୟା କରିଥିଲା । ଏଥର ଆସନ୍ତି ନରକର ଦଳେ ସଇତାନ୍ । ମୋ କାନ ପାଖରେ ଚିତ୍କାର କରିଉଠନ୍ତି । ସେଇଥିରେ ମୁଁ ଜାଗିଉଠେ । ମୁଁ ସେତେବେଳେ ବି ଭୟରେ ଥରୁଥାଏ । ମନେ ହେଉଥାଏ, ମୁଁ ପ୍ରକୃତରେ ନରକରେ ରହିଛି ।

— ଲର୍ଡ଼, ଆପଣଙ୍କ ଭୀତି ଅମୂଳକ ନୁହଁ, ମୋତେ ତ ଏ ସବୁ ଶୁଣିବା ମାତ୍ରେ ଭୟ ଲାଗୁଛି । ବ୍ରାକେନ୍‌ବେରି କହନ୍ତି ।

— ଶୁଣ ବ୍ରାକେନ୍‌ବେରି, ଅତୀତର ଯେଉଁସବୁ ଘଟଣା ମୋର ବିବେକକୁ ଦଂଶନ କରୁଛି, ଆତ୍ମାକୁ ପୀଡ଼ିତ କରୁଛି, ସେ ସବୁ ମୁଁ କରିଛି, ମୋର ଭାଇ ଏଡ଼ୱାର୍ଡର ସ୍ୱାର୍ଥରକ୍ଷା ପାଇଁ । ଦେଖ, ବଦଳରେ ସେ ମୋତେ କ'ଣ ଦେଲା ? ଈଶ୍ୱର ମୋର ପ୍ରାର୍ଥନା ନିଶ୍ଚୟ ଶୁଣିବେ ବୋଲି ବିଶ୍ୱାସ । ତମେ ଯଦି ମୋତେ କ୍ଷମା ନ କରିପାର— ତେବେ ମୋର ଅନୁରୋଧ, ମୋ ସ୍ତ୍ରୀ ଓ ପିଲାମାନଙ୍କୁ ଭଲ ଭାବରେ ଦେଖାଶୁଣା କରିବ ।

ବ୍ରାକେନ୍‌ବେରୀ ତାଙ୍କ ପାଖରେ ବସି ଏ ସବୁ ଶୁଣୁଥାଆନ୍ତି । କଥା କହୁ କହୁ କ୍ଲରେନ୍ସ ଶୋଇପଡ଼ନ୍ତି ।

ହଠାତ୍ ଦରଜାରେ ଦେଖାଯାଆନ୍ତି ଦୁଇଜଣ ଦୁର୍ବୃତ୍ତ । ସେମାନେ ବ୍ରାକେନ୍‌ବେରିଙ୍କୁ ରାଜାଙ୍କର ନିର୍ଦ୍ଦେଶନାମା ଦେଖାନ୍ତି । କ୍ଲରେନ୍ସଙ୍କୁ ସେମାନଙ୍କ ହାତରେ ସମର୍ପି ଦେବାକୁ ତହିଁରେ କୁହାଯାଇଥାଏ । ଏ ନିର୍ଦ୍ଦେଶର ମର୍ମ ବ୍ରାକେନ୍‌ବେରିଙ୍କୁ ଅଛପା ନ ଥାଏ । ତଥାପି ସେ କୌଣସି ପ୍ରଶ୍ନ ନ କରି ଘରର ଚାବି ସେମାନଙ୍କୁ ଦେଇଦିଅନ୍ତି । ତା' ପରେ ସେ ସେଠାରୁ ଚାଲିଯାଆନ୍ତି ।

ଶୋଇଥିବା ଅବସ୍ଥାରେ କ୍ଲରେନ୍ସଙ୍କୁ ହତ୍ୟା କରିବା ଠିକ୍ ହେବ କିମ୍ବା ନାହିଁ ଆଗନ୍ତୁକ ଦୁହେଁ ଆଲୋଚନା କରୁଥାଆନ୍ତି । ଏହି ସମୟରେ ତାଙ୍କର ନିଦ ଭାଙ୍ଗିଯାଏ । ସେ ଏମାନଙ୍କ ପରିଚୟ ଜାଣିବାକୁ ଚାହାନ୍ତି । ପଚାରନ୍ତି- ତମେମାନେ କ'ଣ ମୋତେ ହତ୍ୟା କରିବାକୁ ଆସିଛ ?

— ହଁ । ଉତ୍ତର ମିଳେ । - ମୁଁ ତମମାନଙ୍କର କି ଅପରାଧ କରିଛି ?

— ଆମର କିଛି କରି ନାହାନ୍ତି । ତେବେ ରାଜାଙ୍କର କରିଛନ୍ତି ।

— ମୁଁ ତାଙ୍କ ସହିତ ମିଳାମିଶା କରିନେବି ।

— ତା' ଆଉ ସମ୍ଭବ ନୁହେଁ । ଆପଣ ମୃତ୍ୟୁ ପାଇଁ ପ୍ରସ୍ତୁତ ହୁଅନ୍ତୁ ।

— କିନ୍ତୁ ମୋର ଦୋଷ କ'ଣ ? ମୁଁ ମୋର ଭାଇ ଏଡ଼ୱାର୍ଡ଼କୁ ଭଲ ପାଏ । ଯଦି ତମେମାନେ ଭଡ଼ାଟିଆ, ତେବେ ମୋର ଅନୁରୋଧ, ପ୍ରଥମେ ମୋ ଭାଇ ଗ୍ଲଷ୍ଟର୍‌କୁ ଖୋଜ । ମୋତେ ମାରିବା ପାଇଁ ରାଜା ତମମାନଙ୍କୁ ଯେତିକି ଟଙ୍କା ଦେବେ, ମୋ ଜୀବନ ରକ୍ଷା ପାଇଁ ସେ ଆହୁରି ବେଶି ଟଙ୍କା ଦେବ ।

ଅପେକ୍ଷାକୃତ ଭଦ୍ରଗୁଣାଟି କହେ - ଆପଣ ପ୍ରତାରିତ ହୋଇଛନ୍ତି । ଗ୍ଲଷ୍ଟର ଆପଣଙ୍କୁ ଘୃଣା କରନ୍ତି ।

କ୍ଲରେନ୍ସ ତାହା ବିଶ୍ୱାସ କରନ୍ତି ନାହିଁ । କହନ୍ତି, 'ମୁଁ ଏଠାକୁ ଆସିବା ସମୟରେ ସେ ମୋତେ କୁଣ୍ଢେଇ ଧରି କହିଥିଲା ଯେ, ସେ ମୋର ମୁକ୍ତି ପାଇଁ ଚେଷ୍ଟା କରିବ ।

— ଲର୍ଡ, ଆପଣ ଇଷ୍ଟ ସ୍ମରଣ କରନ୍ତୁ ।

କୌଣସି କାକୁତି ମିନତି ଫଳ ଦିଏ ନାହିଁ । କ୍ଲରେନ୍ସଙ୍କୁ ପ୍ରାଣ ବିସର୍ଜନ ଦେବାକୁ ହୁଏ ।

ଅନ୍ତିମ ସମୟରେ ଏଡୱାର୍ଡ଼ ଶାନ୍ତି ଚାହୁଁଥାଆନ୍ତି । କ୍ଲରେନ୍ସଙ୍କ ମୃତ୍ୟୁ ଦଣ୍ଡ ମଧ ସେ ପ୍ରତ୍ୟାହାର କରିନେବାକୁ ଚାହୁଁଥାଆନ୍ତି । ତେବେ ସେତେବେଳକୁ ଅନେକ ବିଳମ୍ବ ହୋଇ ଯାଇଥାଏ । ରାଜାଙ୍କ ଅନୁରୋଧରେ ସଭାସଦ୍‌ମାନଙ୍କର ପାରସ୍ପରିକ ବିରୋଧର ଅବସାନ ଘଟେ । ରାଣୀ ରାଜାଙ୍କୁ କ୍ଲରେନ୍ସଙ୍କୁ ଫେରାଇ ଆଣିବା ନିମନ୍ତେ ଅନୁରୋଧ କରନ୍ତି । କିନ୍ତୁ ଅବାକ୍ ହେବାର ଛଳନା କରି ରିଚାର୍ଡ଼ କହନ୍ତି, 'ମାଡ଼ାମ୍, ଆପଣ କ'ଣ ମୋତେ ଥଟ୍ଟା କରୁଛନ୍ତି ? ଜାଣନ୍ତି ନାହିଁ କ୍ଲରେନ୍ସଙ୍କର ମୃତ୍ୟୁ ହୋଇସାରିଛି ?

ଅନ୍ୟମାନେ ଅବାକ୍ ହୋଇ ପରସ୍ପରକୁ ଅନାଇ ରହନ୍ତି ।

— କ୍ଲରେନ୍ସର ମୃତ୍ୟୁ ହୋଇସାରିଛି ? କିନ୍ତୁ ସେ ଆଦେଶ ତ ପ୍ରତ୍ୟାହାର କରାଯାଇଥିଲା । ମୁମୂର୍ଷ ରାଜା ଅତ୍ୟନ୍ତ ଦୁଃଖରେ କହନ୍ତି ।

— ଦୂତର ପହଞ୍ଚିବାରେ କିଛି ବିଳମ୍ବ ହୋଇଗଲା ।

— ଏହାର ଅଳ୍ପ ସମୟ ମଧ୍ୟରେ ରାଜାଙ୍କର ମୃତ୍ୟୁ ଘଟେ । କିଛି ଦିନ ପରେ ରାଣୀ ସ୍ୱୟଂ ଏଡ଼ୱାର୍ଡଙ୍କ ମାଆଙ୍କୁ ଦୁଃସମ୍ବାଦଟି ଦିଅନ୍ତି । ସେ ସେତେବେଳେ ସଦ୍ୟ ମୃତ୍ୟୁବରଣ କରିଥିବା ନିଜର ସନ୍ତାନ କ୍ଲରେନ୍ସ ପାଇଁ ଶୋକ କରୁଥାଆନ୍ତି । ତାଙ୍କୁ ଘେରି ବସିଥାଆନ୍ତି କ୍ଲରେନ୍ସଙ୍କର ସନ୍ତାନମାନେ । ଏଲିଜାବେଥ୍‌ଙ୍କ ବାଳକ - ପୁତ୍ର ରିଚାର୍ଡ଼ ଥାଆନ୍ତି ଲଣ୍ଡନରେ ନିଜ ଘରେ । କିନ୍ତୁ ସିଂହାସନର ନ୍ୟାଯ୍ୟ ଉତ୍ତରାଧିକାରୀ ପ୍ରିନ୍ସ ଅଫ୍ ୱେଲସ୍‌ଙ୍କୁ ପଠାଯାଇଥାଏ ଷ୍ଟ୍ରପ୍‌ଶାୟାରର ଦୁର୍ଗକୁ । ଅଭିଷେକ ପାଇଁ ତାଙ୍କର ଉପସ୍ଥିତି ଜରୁରୀ ହୋଇଥାଏ । ବକିଂହାମ୍‌ଙ୍କୁ ଅନୁଚ୍ଚ ସ୍ୱରରେ ନିଜର ଯୋଜନା ସମ୍ପର୍କରେ ସୂଚନା ଦେଇ ଗ୍ଲଷ୍ଟର ନିଜେ ସେ ଦାୟିତ୍ୱ ଗ୍ରହଣ କରନ୍ତି ।

ବକିଂହାମ୍ କହନ୍ତି - ଅଳ୍ପ କେଇଜଣ ପ୍ରହରୀଙ୍କ ଗହଣରେ ତାଙ୍କୁ ଅଣାଯାଇପାରିବ ।

- ଅଳ୍ପ କେଇଜଣ କାହିଁକି ? ରାଣୀଙ୍କ ଭାଇ ରିଭର୍ସ ଜାଣିବାକୁ ଚାହାନ୍ତି ।

- ଏଭଳି ସମୟରେ ଅଧିକ ସୈନ୍ୟ ପଠାଇଲେ ଆମେ ଭୟ ପାଇଯାଇଛୁ ବୋଲି ଆମର ଶତ୍ରୁପକ୍ଷ ସନ୍ଦେହ କରିପାରନ୍ତି ।

- ହଁ, ବଡ଼ ଦଳ ହୋଇଥିଲେ ଆମ ଭିତରେ ଦ୍ୱନ୍ଦ୍ୱ ଉପୁଜିଛି ବୋଲି ମଧ ମନେ କରାଯାଇପାରେ । ରିଭର୍ସ ଏହା ସ୍ୱୀକାର କରନ୍ତି । ଠିକ୍ ହୁଏ ଯେ, ଦଳରେ କୁମାରଙ୍କର ଦୁଇ ମାତୁଳ ରିଭର୍ସ, ଗ୍ରେ ଏବଂ କାକା ଗ୍ଲଷ୍ଟର ରହିବେ ।

କିନ୍ତୁ ଉଭୟ ମାତୁଳ ଆଉ ଫେରନ୍ତି ନାହିଁ । ରାଣୀ ଓ୍ୱେଷ୍ଟମିନିଷ୍ଟରରେ ଅପେକ୍ଷା କରୁଥାଆନ୍ତି । ତାଙ୍କୁ ଖବର ମିଳେ - ରିଭର୍ସ, ଗ୍ରେ ଏବଂ ସାର୍ ଟମାସ୍‌ଙ୍କୁ ବନ୍ଦୀ କରି ପମଫ୍ରେଟ୍ ଦୁର୍ଗକୁ ପଠାଇ ଦିଆଯାଇଛି । ରିଚାର୍ଡ ଓ ବକିଂହାମ୍ ସେମାନଙ୍କ ପ୍ରଥମ ଆଘାତ ଏଇମାନଙ୍କ ଉପରେ କରିଛନ୍ତି । ଏଲିଜାବେଥ୍‌ଙ୍କର ମନେହୁଏ, ଆହୁରି ଆଘାତ ଆସୁଛି । ସେ କାନ୍ଦିଉଠି କହନ୍ତି, ମୁଁ ସ୍ପଷ୍ଟ ଦେଖିପାରୁଛି, ଆମ ପରିବାରର ଧ୍ୱଂସ ଆସନ୍ନ । ସେ ତାଙ୍କର କନିଷ୍ଠପୁତ୍ରକୁ ନେଇ ଗିର୍ଜାରେ ଆଶ୍ରୟ ନିଅନ୍ତି ।

ରାଜଧାନୀ ଯେତେ ନିକଟ ହୋଇ ଆସୁଥାଏ ତରୁଣ ରାଜକୁମାର ଏଡଓ୍ୱାର୍ଡଙ୍କ ମନ ଦୁଃଖ ଓ ଆଶଙ୍କାରେ ସେତେ ଭରି ଯାଉଥାଏ । ତାଙ୍କର ମନେହେଉଥାଏ, ସେ ଧ୍ୱଂସଆଡ଼କୁ ପାଦ ବଢ଼ାଉଛନ୍ତି । ଦୁଇ ମାତୁଳଙ୍କ କଥା ମନେପକାଇ ତାଙ୍କୁ ଖରାପ ଲାଗୁଥାଏ । ରିଚାର୍ଡ଼ ତାଙ୍କୁ ସାନ୍ତ୍ୱନା ଦେଇ କହନ୍ତି - ତମେ ଦୁନିଆକୁ ଏ ପର୍ଯ୍ୟନ୍ତ ମଧ ଚିହ୍ନିପାରି ନାହିଁ । ତମର ଏଇ ମାମୁମାନେ ଜଣେ ଜଣେ ସାଂଘାତିକ ଲୋକ । ଈଶ୍ୱର ତମକୁ ଏଇ ବନ୍ଧୁବେଶୀ ଶତ୍ରୁମାନଙ୍କ କବଳରୁ ରକ୍ଷା କରନ୍ତୁ । ସହରର ପ୍ରବେଶ ଦ୍ୱାରରେ ମେୟର ତାଙ୍କୁ ସ୍ୱାଗତ ଜଣାନ୍ତି । ମାଆ ଓ ଭାଇମାନଙ୍କ ସମ୍ପର୍କରେ ରାଜକୁମାର ଜାଣିବାକୁ ଚାହାନ୍ତି । ଏହି ସମୟରେ ଦୂତଠାରୁ ଖବର ମିଳେ ଯେ ସେମାନେ ଗିର୍ଜାରେ ଆଶ୍ରୟ ନେଇଛନ୍ତି ।

ବକିଂହାମ୍ ଅବାକ୍ ହୋଇ କହନ୍ତି - ରାଣୀଙ୍କର ଏ ପୁଣି କି ଖିଆଲ୍ ? ସେ କାଣ୍ଟରବରିର ଆର୍ଚ୍ଚ ବିଶପ୍‌ଙ୍କୁ ଅନୁରୋଧ କରନ୍ତି ସେମାନଙ୍କୁ କୁମାରଙ୍କ ପାଖକୁ ଅଣାଯାଉ । ଯଦି ରାଣୀ ଆସିବାକୁ ରାଜି ନ ହୁଅନ୍ତି, ତେବେ ତାଙ୍କର ବାଳକପୁତ୍ରକୁ ତାଙ୍କ ପାଖରୁ ନେଇଆସନ୍ତୁ ।

ଆର୍ଚ୍ଚବିଶପ୍ ଏଥିରେ ରାଜି ହୁଅନ୍ତି ନାହିଁ । କହନ୍ତି - 'ଯଦି ମୁଁ ତାଙ୍କୁ ବୁଝାଇପାରେ ତ ଭଲ । କିନ୍ତୁ ଗିର୍ଜାରେ ଆଶ୍ରୟ ଦାନର ଯେଉଁ ପବିତ୍ର କର୍ତ୍ତବ୍ୟ, ତାହା ମୁଁ କୌଣସି ମତେ ଲଂଘନ କରିପାରିବି ନାହିଁ ।'

- ଏତେ ନିୟମ କାନୁନ୍ ମାନି ଚଳିବାର ସମୟ ଏଇଟା ନୁହେଁ ବିଶପ୍ ମହାଶୟ । ଗିର୍ଜାରେ ଆଶ୍ରୟ ନେବାର ସୁଯୋଗ ସମସ୍ତଙ୍କ ପାଇଁ ନୁହେଁ ।

ଆର୍ଚ୍ଚବିଶପ୍ ଏ ଯୁକ୍ତିକୁ ଗ୍ରହଣ କରିନିଅନ୍ତି । ତରୁଣ ରାଜା ଗ୍ଲଷ୍ଟର୍‌ଙ୍କୁ ପଚାରନ୍ତି - କାକା, ମୋ ଭାଇ ଆସିଲେ, ଅଭିଷେକ ପୂର୍ବରୁ ଆମେ ରହିବୁ କେଉଁଠି ?

-ଯେଉଁଠି ଇଚ୍ଛା, ମୋର ମନେହୁଏ, ଦିନେ ଦି'ଦିନ ପାଇଁ ତମେମାନେ ଟାଓ୍ୱାର ଦୁର୍ଗରେ ରହିପାର । ତା'ପରେ ଯେଉଁଠି ତମର ସ୍ୱାସ୍ଥ୍ୟ ଏବଂ ଆମୋଦ ପ୍ରମୋଦ ପାଇଁ ସୁବିଧା ହେବ, ସେଠାକୁ ଯିବ ।

- ଏତେ ଜାଗା ଥାଉଁ ଥାଉଁ ସେ ଦୁର୍ଗକୁ କାହିଁକି ? ମୋତେ ସେଠି ଭଲ ଲାଗିବ ନାହିଁ । ଜୁଲିୟସ୍ ସିଜର୍ ତାକୁ ନିର୍ମାଣ କରିଥିଲେ, ନୁହେଁ ?

ବକିଂହାମ୍ କହନ୍ତି - ସେ ଆରମ୍ଭ କରିଥିଲେ । ପରେ ସେଥିରେ ଅନେକ କିଛି ଯୋଗ କରାଯାଇଛି । କିଛି ଅଂଶ ନୂଆ ବି ତିଆରି ହୋଇଛି ।

- ସିଜର ଜଣେ ବିଖ୍ୟାତ ଯୋଦ୍ଧା ଥିଲେ । ବଞ୍ଚିଥିଲେ, ଫ୍ରାନ୍ସ ଉପରେ ଆମର ପୁରୁଣା ଅଧିକାରକୁ ପୁଣି ଫେରାଇ ଆଣିବି କିମ୍ବା ଜଣେ ସୈନିକ ଭଳି ମୃତ୍ୟୁ ବରଣ କରିବି ।

ଦୂତ ଏବଂ ଆର୍ଚ୍ଚବିଶପ୍ ଗିର୍ଜାରୁ ବାଳକ ରିଚାର୍ଡ଼ଙ୍କୁ ନେଇଆସନ୍ତି । ରିଚାର୍ଡ଼ ଭାବାବେଗଶୂନ୍ୟ ଶାଣିତ ବାକ୍‌ଚାତୁର୍ଯ୍ୟ ବିଶିଷ୍ଟ ବାଳକ । ଆସିବା ମାତ୍ରେ ସେ ଗ୍ଲଷ୍ଟରଙ୍କ ପ୍ରତି ନିଜର ଅପ୍ରୀତି ପ୍ରକାଶ କରନ୍ତି ।

ରିଚାର୍ଡ଼ ଏଥର ଭାବୀ ରାଜାଙ୍କୁ କହନ୍ତି - ତମେମାନେ ଟାୱାରକୁ ଚାଲିଯାଅ । ବକିଂହାମ୍ ଓ ମୁଁ ତମର ମାଆଙ୍କୁ ବୁଝାସୁଝା କରି ସେଠାକୁ ନେଇଆସୁଛୁ ।

- ଟାୱାର ! ଆମେ ଟାୱାରକୁ ଯିବୁ ? ପ୍ରଶ୍ନ କରନ୍ତି ବାଳକ ରିଚାର୍ଡ଼ ।

- କାକାଙ୍କର ତାହାହିଁ ଇଚ୍ଛା । ଏଡୱାର୍ଡ ଉତ୍ତର ଦିଅନ୍ତି ।

ବାଳକ ରିଚାର୍ଡ଼ କହନ୍ତି - ଟାୱାରରେ ମୋତେ ନିଦ ହେବ ନାହିଁ ।

- କାହିଁକି ? ସେଠାରେ ଡରିବାର କ'ଣ ଅଛି ? ଗ୍ଲଷ୍ଟର୍ ପଚାରନ୍ତି ।

- ସେଠି ଅଛି କାକା କ୍ଲରେନ୍ସଙ୍କ ପ୍ରେତାତ୍ମା । ମୋର ଜେଜେମା କହିଛନ୍ତି ଯେ, ସେଠି ତାଙ୍କୁ ହତ୍ୟା କରାଯାଇଛି ।

- ଏ ଟୋକା ଦେଖୁଛି ଠିକ୍ ତା'ମାଆଙ୍କ ଭଳି ! ମନେ ମନେ କୁହୁଳନ୍ତି ଗ୍ଲଷ୍ଟର । ସମସ୍ତେ ଆଗେଇ ଚାଲନ୍ତି । ରିଚାର୍ଡ଼ ଭାବନ୍ତି, ଯଥାସମୟରେ ଏ ଦୁହିଁଙ୍କର ବ୍ୟବସ୍ଥା କରାଯିବ । ଆପାତତଃ, ଗୋଟିଏ କୋଠରିରେ ବନ୍ଦ କରି ରଖିବା ହିଁ ସେମାନଙ୍କ ପାଇଁ ଯଥେଷ୍ଟ । ସେ ଜାଣନ୍ତି, ବକିଂହାମ୍ ଏଥିରେ ତାଙ୍କୁ ସାହାଯ୍ୟ କରିବେ । ଆଉ ଜଣେ ଓକିଲଙ୍କ ସାହାଯ୍ୟ ବି ମିଳିବ । ରିଚାର୍ଡ଼ ଓକିଲଙ୍କୁ କହନ୍ତି - ଆପଣ ଲର୍ଡ ହେଷ୍ଟିଂସ୍‌ଙ୍କ ପାଖକୁ ଯାଆନ୍ତୁ ଏବଂ ତାଙ୍କୁ ଜଣାଇଦିଅନ୍ତୁ ଯେ, ଆଗାମୀ କାଲି ପମ୍‌ଫ୍ରେଟ୍ ଦୁର୍ଗରେ ତାଙ୍କର ପୁରୁଣା ଶତ୍ରୁ ଉଡ୍‌ଭିଲ୍‌ମାନଙ୍କୁ ହତ୍ୟା କରାଯିବ ।

ଓକିଲ ଯିବା ପୂର୍ବରୁ କହିଯାଆନ୍ତି ଯେ, ସେ ସଂଧ୍ୟା ଆଗରୁ ଫେରିଆସି ସବୁ କଥା କହିଯିବେ । ବକିଂହାମ୍ ରିଚାର୍ଡ଼ଙ୍କୁ ପଚାରନ୍ତି, ହେଷ୍ଟିଂସ୍ ଯଦି କଠୋର ମନୋଭାବ ଦେଖାନ୍ତି, ତେବେ କ'ଣ କରାଯିବ ?

-ତାଙ୍କର ମୁଣ୍ଡକାଟ କରିବେ । ରିଚାର୍ଡ଼ର ସଂକ୍ଷିପ୍ତ ଉତ୍ତର । 'ଶୁଣନ୍ତୁ, ମୁଁ ରାଜଗାଦିରେ ବସିଲେ, ହିୟରଫୋର୍ଡ଼ର ଜମିଦାରୀଟା ହେବ ଆପଣଙ୍କର । ତାହା ଏବେ ମୋ ଭାଇଙ୍କ ଦଖଲରେ ରହିଛି ।

- ଠିକ୍ ଅଛି । ବକିଂହାମ୍ କହନ୍ତି । ତା'ପରେ ଉଭୟ ମଧ୍ୟାହ୍ନ ଭୋଜନ ନିମନ୍ତେ ଯାଆନ୍ତି । ସେଠି ଖାଇବା ଟେବୁଲ୍‌ରେ ବସି ସେମାନେ ଅନ୍ୟାନ୍ୟ ବିଷୟ ଠିକ୍ କରିନେବେ ।

ରାତିରେ ହେଷ୍ଟିଂସ୍ ଗୋଟାଏ ଦୁଃସ୍ୱପ୍ନ ଦେଖନ୍ତି ।

ଭୋର୍ ଆଡ଼କୁ ଓକିଲ ମହାଶୟ ଆସନ୍ତି । ହେଷ୍ଟିଂସ୍ ତାଙ୍କଠାରୁ ରାଜ୍ୟର ଖବର ନେବା ପାଇଁ ଉଦ୍ୟମ କରନ୍ତି ।

- ଶାସନ ବ୍ୟବସ୍ଥା ପ୍ରାୟ ଟଳମଳ ହେବାରେ ଲାଗିଛି । ଗମ୍ଭୀର ଭାବେ ଜବାବ ଦିଅନ୍ତି ଓକିଲ ମହାଶୟ । ମୋର ବିଶ୍ୱାସ ରିଚାର୍ଡ଼ ଇଂଲଣ୍ଡର ରାଜା ନ ହେବା ପର୍ଯ୍ୟନ୍ତ ଶାସନ ବ୍ୟବସ୍ଥା ଆଉ ଉନ୍ନତ ହେବ ନାହିଁ ।

-ରିଚାର୍ଡ଼ -ପୁଣି ଇଂଲଣ୍ଡର ରାଜା ? ତା'ହେଲେ ତ ମୋରି ମୁଣ୍ଡ ପ୍ରଥମେ କଟିବ । - ତାହାହିଁ ରିଚାର୍ଡର ଲକ୍ଷ୍ୟ ବୋଲି ତମର ମନେହୁଏ ?

- ଏ ବ୍ୟାପାରରେ ମୁଁ ନିଶ୍ଚିତ । ସେଥିପାଇଁ ସେ ଆପଣଙ୍କର ସାହାଯ୍ୟ ଆଶା କରନ୍ତି । ସେଇ ଭରସାରେ ସେ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି । ଆପଣଙ୍କୁ ଜଣାଇ ଦେବାକୁ କହିଛନ୍ତି ଯେ, ଆପଣଙ୍କର ଶତ୍ରୁ ରାଣୀଙ୍କର ଆତ୍ମୀୟମାନେ ପମଫ୍ରେଟ୍ ଦୁର୍ଗରେ ଆଜି ମୃତ୍ୟୁବରଣ କରିବେ ।

- ଏ କଥା ଶୁଣି ମୋତେ ଭଲ ଲାଗୁଛି । ଶତ୍ରୁ ନିଧନ କାହାକୁ ଆନନ୍ଦ ନ ଦିଏ ? କିନ୍ତୁ ରିଚାର୍ଡ଼ ଯଦି ମନେକରନ୍ତି ଯେ, ମୃତରାଜାଙ୍କର ଉତ୍ତରାଧିକାରୀମାନଙ୍କୁ ଶେଷ କରିଦେବାରେ ମୁଁ ତାଙ୍କୁ ସାହାଯ୍ୟ କରିବି ବୋଲି ତେବେ ସେ ଭୁଲ୍ କରୁଛନ୍ତି ।

କାଉନ୍‌ସିଲ୍ ବୈଠକରେ ଯୋଗ ଦେବା ପାଇଁ ହେଷ୍ଟିଂସ୍ ସାର୍ ଷ୍ଟାନ୍‌ଲିଙ୍କୁ ସାଙ୍ଗରେ ନେଇ ବେଶ୍ ଖୁସି ମନରେ ଟାୱାର ଦୁର୍ଗ ଆଡ଼େ ବାହାରିଥାଆନ୍ତି । ରାସ୍ତାରେ ଦେଖାହୁଏ ଜଣେ ପ୍ରହରୀ ସହିତ । ଗତଥର ସେ ହିଁ ରାଣୀଙ୍କ ଆଦେଶରେ ବନ୍ଦୀ ହେଷ୍ଟିଂସ୍‌ଙ୍କୁ ଟାୱାର ଦୁର୍ଗରେ ପହଞ୍ଚାଇ ଦେଇଥିଲା । ହେଷ୍ଟିଂସ୍ ତାକୁ କହନ୍ତି - ଶୁଣ ହେ - ଏଥର କିନ୍ତୁ ମୁଁ ବନ୍ଦୀ ହେବା ପାଇଁ ଟାୱାରକୁ ଯାଉ ନାହିଁ । କିନ୍ତୁ ଗୋଟାଏ ଗୁପ୍ତ କଥା ତମକୁ କହୁଛି । କାହାକୁ କହିବ ନାହିଁ । ଆଜି ରାତିରେ ମୋର ପୁରୁଣା ଶତ୍ରୁମାନେ ମରିବାକୁ ଯାଉଛନ୍ତି ।' ତା'ପରେ ତା'ଆଡ଼କୁ ଟଙ୍କା ଥଳିଟିଏ ଫିଙ୍ଗି ଦିଅନ୍ତି ।

କିଛିଦୂର ଗଲା ପରେ ଜଣେ ପୁରୋହିତଙ୍କ ସହିତ ତାଙ୍କର ଦେଖାହୁଏ । ତାଙ୍କ ସହିତ ସେ ଗୋଟିଏ ପ୍ରାର୍ଥନାସଭା ଆୟୋଜନ ସମ୍ପର୍କରେ ଆଲୋଚ଼ନା କରନ୍ତି । ଏତିକିବେଳେ ସେଠାରେ ପହଞ୍ଚନ୍ତି ବକିଂହାମ୍ । ଉଭୟେ ଟାୱାର ଦୁର୍ଗ ଆଡ଼େ ଯାତ୍ରା କରନ୍ତି ।

ୟର୍କସାୟାରର ସେଇ ଶୀତାର୍ତ୍ତ ପ୍ରତ୍ୟୁଷରେ ରିଭର୍ସ, ଗ୍ରେ ଏବଂ ଟମାସ୍‌ଙ୍କୁ ବଧଭୂମିକୁ ଅଣାଯାଏ । ରିଭର୍ସ ନିଜର ସ୍ୱଭାବ ଅନୁସାରେ ଶାନ୍ତ ଥାଆନ୍ତି । ଅନ୍ୟ ଦୁହେଁ ରିଚାର୍ଡ ଓ ବକିଂହାମ୍‌ଙ୍କୁ ତୀବ୍ର ସ୍ୱରରେ ଭର୍ତ୍ସନା କରି ଚାଲିଥାଆନ୍ତି । ସେମାନଙ୍କର ସେଇ ମୁହୂର୍ତ୍ତରେ ବାରମ୍ବାର ମନେ ପଡ଼ିଯାଉଥାଏ, ମାର୍ଗାରେଟ୍‌ଙ୍କର ଅଭିଶାପ କଥା । ସେମାନେ କହନ୍ତି, ହେ ଈଶ୍ୱର, ଆମଭଳି ହେଷ୍ଟିଂସ୍, ରିଚାର୍ଡ ଏବଂ ବକିଂହାମ୍ ପ୍ରଭୃତିଙ୍କ ଜୀବନରେ ମଧ ମାର୍ଗାରେଟ୍‌ଙ୍କର ଅଭିଶାପ ସଫଳ ହେଉ ।

ଲଣ୍ଡନର ଏକ କାଉନ୍‌ସିଲ୍‌ରେ ମିଳିତ ହୁଅନ୍ତି ବକିଂହାମ୍, ଷ୍ଟାନଲୀ, ହେଷ୍ଟିଂସ୍ ଏବଂ ଅନ୍ୟାନ୍ୟ ସଭାସଦ୍ । ରିଚାର୍ଡ଼ଙ୍କ ଆସିବା ବିଳମ୍ବ ହେବାରୁ ସେମାନେ ପୂର୍ବରୁ ଆଲୋଚ଼ନା ଆରମ୍ଭ କରି ଦେଇଥାଆନ୍ତି । ସେମାନେ ତରୁଣ-ରାଜାଙ୍କର ଅଭିଷେକର ଦିନ ସ୍ଥିର କରିବା ନିମନ୍ତେ କଥାବାର୍ତ୍ତା ହେଉଥାଆନ୍ତି । ସେଥିପାଇଁ ପ୍ରସ୍ତୁତି ପୂର୍ଣ୍ଣାଙ୍ଗ ହୋଇଛି ତ ? ବକିଂହାମ୍ ଜାଣିବାକୁ ଚାହାନ୍ତି ।

ଷ୍ଟାନ୍‌ଲି ଉତ୍ତର ଦିଅନ୍ତି - ସେ ସବୁ ଶେଷ ହୋଇଛି । ବର୍ତ୍ତମାନ କେବଳ ଦିନଟା ସ୍ଥିର ହେବାକୁ ଅପେକ୍ଷା । ବିଶପ ମର୍ଟନ କହନ୍ତି - ତେବେ କାଲି ହୋଇପାରେ । ଏତିକିବେଳେ ରିଚାର୍ଡ଼ ଆସି ଉପସ୍ଥିତ ହୁଅନ୍ତି । ସମସ୍ତଙ୍କ ଅଗୋଚ଼ରରେ ବକିଂହାମ୍‌ଙ୍କୁ ଜଣାଇ ଦିଅନ୍ତି - ଓକିଲ ମହାଶୟଙ୍କଠାରୁ ସେ ଯାହା ଶୁଣିଲେ, ହେଷ୍ଟିଂସ୍ ତରୁଣ ରାଜାଙ୍କ ବିରୋଧରେ ଆଦୌ ସେମାନଙ୍କୁ ସାହାଯ୍ୟ କରିବେ ନାହିଁ ।

ତା'ପରେ ଦୁହେଁ ସଭାଗୃହ ଛାଡ଼ି ଚାଲିଯାଆନ୍ତି । ଅଳ୍ପ ସମୟ ପରେ ଅବଶ୍ୟ ଫେରିଆସନ୍ତି । ରିଚାର୍ଡ଼ ରାଗରେ ନାଲି ପଡ଼ିଯାଇଥାଆନ୍ତି । ସଭ୍ୟମାନଙ୍କୁ ପଚାରନ୍ତି, ଯେଉଁମାନେ ଗୁଣିଗାରେଡ଼ି, ମନ୍ତ୍ରତନ୍ତ୍ର ସାହାଯ୍ୟରେ ମୋର କ୍ଷତି କରିବାକୁ ଚାହାନ୍ତି, ସେମାନଙ୍କୁ କି ପ୍ରକାର ଦଣ୍ଡ ଦିଆଯାଇପାରେ, ତାହା ଆପଣମାନେ କହନ୍ତୁ ।

ରିଚାର୍ଡ଼ଙ୍କର ଏଇ ଆକସ୍ମିକ ଉଦ୍‌ଗାରରେ ସ୍ତମ୍ଭିତ ସଦସ୍ୟମାନେ କ'ଣ କହିବେ କିଛି ଭାବିପାରନ୍ତି ନାହିଁ । ନୀରବତା ଭାଙ୍ଗି ହେଷ୍ଟିଂସ୍ କହନ୍ତି - ସେମାନଙ୍କର ଶାସ୍ତି ମୃତ୍ୟୁ ।

- ତେବେ ଦେଖନ୍ତୁ । ଅଙ୍ଗବସ୍ତ୍ରର ହାତଟିକୁ ମୋଡ଼ି ଦେଇ ରିଚାର୍ଡ଼ ତାଙ୍କର ଶୁଖିଯାଇଥିବା ବାହୁଟିକୁ ଦେଖାନ୍ତି - ଦେଖନ୍ତୁ ଆପଣମାନେ - ନିଆଁ ଧାସରେ ସିଝିଯାଇଥିବା ଚାରା - ଗଛ ଭଳି ମୋ ହାତଟା କେମିତି କୁଞ୍ଚି ହୋଇଯାଇଛି । ଏଡ଼ୱାର୍ଡଙ୍କ ସ୍ତ୍ରୀ ଏଇ କାମ କରିଛନ୍ତି - ସେ ଜଣେ ଡାହାଣୀ ।

- ସେ ଯଦି କରିଥାଆନ୍ତି... ହେଷ୍ଟିଂସ୍ .... କହୁ କହୁ ରହିଯାଆନ୍ତି ।

- ଯଦି ! ରିଚାର୍ଡ଼ ଗର୍ଜନ କରି ଉଠନ୍ତି । ଆପଣ କହୁଛନ୍ତି - ଯଦି! ଆପଣ ବିଶ୍ୱାସଘାତକ । ଆପଣଙ୍କର ମୁଣ୍ଡକଟା ହେବ । ଆପଣଙ୍କର ମୃତ୍ୟୁ ନ ହେବା ପର୍ଯ୍ୟନ୍ତ ମୁଁ ଅନ୍ନସ୍ପର୍ଶ କରିବି ନାହିଁ । ଆପଣ - ଯେଉଁମାନେ ମୋର ବନ୍ଧୁ । ସେମାନେ ମୋତେ ଅନୁସରଣ କରନ୍ତୁ ।

ରିଚାର୍ଡ଼ ଦ୍ରୁତ ଗତିରେ ଚାଲିଯାଆନ୍ତି । ହେଷ୍ଟିଂସ୍ ଭଲ ଭାବରେ ବୁଝିପାରନ୍ତି ତାଙ୍କୁ ଫାନ୍ଦରେ ପକାଯାଇଛି । କିନ୍ତୁ ସେତେବେଳେ ଆଉ କିଛି କରିବାର ନ ଥାଏ । ଜହ୍ଲାଦମାନେ ତାଙ୍କୁ ଧରି ବଧଭୂମିକୁ ନେଇଯାଆନ୍ତି । ଏ ଭିତରେ ରିଚାର୍ଡ଼ ଆଉ ବକିଂହାମ୍ ଓକିଲଙ୍କୁ ଆଦେଶ ଦିଅନ୍ତି ଶୀଘ୍ର ମେୟରଙ୍କୁ ଡାକି ଆଣିବାକୁ । ତା'ପରେ ନିଜ ନିଜର ବେଶ ପୋଷାକକୁ ଛିଣ୍ଡାଇ ଏଭଳି କରିଦିଅନ୍ତି ଯେ ସେମାନଙ୍କୁ ଡାହାଣୀ ଗ୍ରସ୍ତ ବୋଲି ମନେ ହୁଏ । ମେୟର ଆସିଯାଆନ୍ତି । ଇତିମଧ୍ୟରେ ଜହ୍ଲାଦ ବାହିତ ହୋଇ ହେଷ୍ଟିଂସ୍‌ଙ୍କର ଛିନ୍ନ ଶିର ମଧ୍ୟ ସେଠାକୁ ଆସିଯାଏ । ଲମ୍ବା ଦୀର୍ଘଶ୍ୱାସଟିଏ ପକାଇ ରିଚାର୍ଡ଼ କହନ୍ତି - ମୁଁ ତାଙ୍କୁ କେତେ ଭଲ ପାଉଥିଲି! ଜଣେ ସହଜ ସରଳ ମଣିଷ ବୋଲି କେତେ ଶ୍ରଦ୍ଧା କରୁଥିଲି ! ଅଥଚ଼ ଏହାଙ୍କ ଭଳି ପ୍ରତାରକ ପ୍ରକୃତରେ ବିରଳ ।

ବକିଂହାମ୍ ଯୋଗ କରନ୍ତି - ଲର୍ଡ ମେୟର୍, ଆମେ ଈଶ୍ୱରଙ୍କ କୃପାରୁ ବଞ୍ଚିଯାଇଛୁ । ଏଇ ଲୋକ ଆଜି କାଉନ୍‌ସିଲ୍ ବୈଠକରେ ମୋତେ ଆଉ ଗ୍ଲୁଷ୍ଟରଙ୍କୁ ହତ୍ୟା କରିବାକୁ ଚେଷ୍ଟା କରିଥିଲା ।

-ଏଁ !! ସତରେ ନା କ'ଣ ? ମେୟରଙ୍କ ପାଟିରୁ କଥା ବାହାରେ ନାହିଁ ।

- ଆମେ ଯଦି ସେମିତି ବାଧ ହୋଇ ନ ଥାନ୍ତୁ, ତେବେ କ'ଣ ଆଇନ୍‌କୁ ଏଭଳି ନିଜ ହାତକୁ ନେଇଯାଇପାରିଥାଆନ୍ତୁ ! ରିଚାର୍ଡ଼ କହନ୍ତି ।

- କି ସାଂଘାତିକ ! ଆପଣମାନେ ଯାହା କରିଛନ୍ତି ଠିକ୍ କରିଛନ୍ତି । ମେୟର୍ ସେମାନଙ୍କ କାର୍ଯ୍ୟକୁ ସମର୍ଥନ ଜଣାନ୍ତି ।

ରିଚାର୍ଡ଼ କହୁଥାଆନ୍ତି- ତଥାପି ଆପଣ ଆସିବା ପୂର୍ବରୁ ତାଙ୍କର ମୃତ୍ୟୁ ହେଉ ବୋଲି ଆମେ ଚାହିଁ ନ ଥିଲୁ । କିନ୍ତୁ ଆମର ବନ୍ଧୁମାନେ ଅତ୍ୟନ୍ତ କ୍ରୋଧାନ୍ଧ ହୋଇପଡ଼ିବାରୁ ତାହା ସମ୍ଭବ ହୋଇପାରି ନାହିଁ । ଆମର ଏକାନ୍ତ ଇଚ୍ଛା ଥିଲା, ସେ ନିଜେ ଆପଣଙ୍କ ସାମ୍ନାରେ ନିଜର ବିଶ୍ୱାସଘାତକତାର କଥା ସ୍ୱୀକାର କରନ୍ତୁ । ତା'ହେଲେ ଆପଣ ନାଗରିକମାନଙ୍କୁ ଏ କଥା କହିପାରିଥାଆନ୍ତେ । ନ ହେଲେ ସେମାନେ ଭୁଲ୍ ବୁଝିପାରନ୍ତି ।

- ନା' ନା... ଆପଣମାନେ ଯେତେବେଳେ କହୁଛନ୍ତି... ସେ କଥା ହିଁ ମୋ କଥା - ନିର୍ବୋଧ ମେୟର୍ କହନ୍ତି । ମୁଁ ସହରର ଲୋକଙ୍କୁ ଏହା ବୁଝାଇ ଦେବି । ମେୟର ବିଦାୟ ନିଅନ୍ତି ।

ଏହା ପରେ ଆରମ୍ଭ ହୁଏ ରିଚାର୍ଡ୍‌ଙ୍କ ପରିକଳ୍ପନାର ଦ୍ୱିତୀୟ ପର୍ଯ୍ୟାୟ । ସେ ନିଜେ ଚାଲିଯାଆନ୍ତି, ଟେମସ୍ ନଦୀ ତୀରରେ ଥିବା ବେନାର୍ଡେ ଦୁର୍ଗକୁ । ସେଠାରେ ବସି ନିଜ ଯୋଜନାର ପରିଣତି ପାଇଁ ଅପେକ୍ଷା କରନ୍ତି । ଭବିଷ୍ୟତ୍ ସ୍ଥିତିର ଏକ ସ୍ପଷ୍ଟ ରୂପ ତାଙ୍କ ଆଗରେ ନାଚି ଯାଉଥାଏ ।

ତାଙ୍କ ନିର୍ଦ୍ଦେଶରେ ବକିଂହାମ୍ ଯୋଗ ଦିଅନ୍ତି ଗିଲ୍ଡର ଜନସଭାରେ । ନାଗରିକମାନଙ୍କୁ ବୁଝାଇ ଦିଅନ୍ତି ଯେ, ଏଡ୍‌ୱାର୍ଡଙ୍କର ପ୍ରଥମ ବିବାହଟି ଆଦୌ ବୈଧ ନ ଥିଲା । ଦୁଇ ରାଜକୁମାର ତେଣୁ ରାଜାଙ୍କର ବୈଧ ସନ୍ତାନ ହୋଇ ନ ପାରନ୍ତି । ସେମାନେ କେହି ଇଂଲଣ୍ଡ ସିଂହାସନର ନ୍ୟାଯ୍ୟ ଦାବିଦାର ନୁହନ୍ତି । ନାଗରିକମାନେ ପ୍ରତିବାଦ କରନ୍ତି ନାହିଁ । ସେମାନଙ୍କର ଅନ୍ୟ ଭୟ ମଧ ଥାଏ । ଦେଶର ଏଇ ଅରାଜକ ଅବସ୍ଥା । ଜାତି ଯୁଦ୍ଧରେ ପରିଶ୍ରାନ୍ତ ଓ ରିକ୍ତ, ରାଜା ବାଳକ - ଏଥିରେ କେତେବେଳେ କ'ଣ ଘଟିଯିବ ଏଇ ଆଶଙ୍କାରେ ସେମାନେ ତ୍ରସ୍ତ । ବକ୍ତୃତା ଶେଷ କରି ବକିଂହାମ୍ ଯେତେବେଳେ ଦୁହା ଉଠାନ୍ତି - ଈଶ୍ୱର ରାଜା ରିଚାର୍ଡ୍‌ଙ୍କର ସହାୟ ହୁଅନ୍ତୁ, ସେତେବେଳେ ବି ସେମାନେ ନୀରବ ରହନ୍ତି । ଏତିକିବେଳେ ବକିଂହାମ୍‌ଙ୍କର କିଛି ଭଡ଼ାଟିଆ ଶ୍ରୋତା ଟୋପି ହଲାଇ ପାଟିତୁଣ୍ଡ କରି ତାଙ୍କୁ ସମର୍ଥନ ଜଣାନ୍ତି । ସେଇ ସୁଯୋଗରେ ବକିଂହାମ୍ କହନ୍ତି ଆପଣମାନଙ୍କୁ ଧନ୍ୟବାଦ୍, ଆପଣମାନଙ୍କର ଉଚ୍ଛ୍ୱାସରୁ ରିଚାର୍ଡ୍‌ଙ୍କ ପ୍ରତି ଅନୁରାଗ ପ୍ରକାଶ ପାଉଛି । ଏହା ପରେ ବକିଂହାମ୍‌ଙ୍କ ପ୍ରରୋଚନାରେ ମେୟର୍ ଦଳେ ଅନୁଗାମୀଙ୍କୁ ନେଇ ରିଚାର୍ଡ୍‌ଙ୍କ ସହିତ କଥାବାର୍ତ୍ତା କରିବାକୁ ବେନାର୍ଡ ଦୁର୍ଗକୁ ଚାଲିଯାଆନ୍ତି ।

ମେୟରଙ୍କ ସାକ୍ଷାତ୍ କରିବାର ଆବେଦନକୁ ପ୍ରଥମେ ରିଚାର୍ଡ୍ ପ୍ରତ୍ୟାଖ୍ୟାନ କରିଦିଅନ୍ତି । କହିପଠାନ୍ତି, ଏବେ ସେ ଆଧାତ୍ମିକ-ଚର୍ଚ୍ଚାରେ ବ୍ୟସ୍ତ ଅଛନ୍ତି । ବୈଷୟିକ ପ୍ରସଙ୍ଗ ଚର୍ଚ୍ଚା ପାଇଁ ତାଙ୍କର ବିନ୍ଦୁମାତ୍ର ଆଗ୍ରହ ନାହିଁ । ପରେ କୌଣସି ସମୟରେ ଦେଖା କରିପାରନ୍ତି । ବକିଂହାମ୍ ଓକିଲଙ୍କ ମାଧମରେ ଆଉଥରେ ଅନୁରୋଧ ଜଣାନ୍ତି । କହନ୍ତି, ବିଷୟଟି ଅତ୍ୟନ୍ତ ଜରୁରୀ ହୋଇଥିବାରୁ ସାକ୍ଷାତ୍ ହେବାଟା ନିତାନ୍ତ ଆବଶ୍ୟକ । ଶେଷରେ ଅନିଚ୍ଛାସତ୍ତ୍ୱେ ରିଚାର୍ଡ୍ ଦୁର୍ଗର ବାଲକନିରେ ଆସି ଠିଆ ହୁଅନ୍ତି, ହାତରେ ଥାଏ ପବିତ୍ର ବାଇବେଲ୍ - ଦୁଇପାଖରେ ଦୁଇ ବିଶପ୍ । ଏ ସବୁ ଦେଖି ମେୟର ଗଭୀର ଭକ୍ତିରେ ବିଗଳିତ ହୋଇ ପଡ଼ନ୍ତି । ଧର୍ମ କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି କରିଥିବାରୁ ବକିଂହାମ୍ ପ୍ରଥମେ କ୍ଷମା ମାଗି ନିଅନ୍ତି ଏବଂ ଜଣାଇ ଦିଅନ୍ତି- ଜନତାର ଏକାନ୍ତ ଇଚ୍ଛା ରିଚାର୍ଡ୍ ରାଜ୍ୟର ଦାୟିତ୍ୱ ଗ୍ରହଣ କରନ୍ତୁ । ଗ୍ଲଷ୍ଟର ତାଙ୍କୁ ଧମକ୍ ଦିଅନ୍ତି । ତେବେ ଜନତାର ଏଇ ଅକୁଣ୍ଠ ଶ୍ରଦ୍ଧା ନିମନ୍ତେ ସେମାନଙ୍କୁ ଧନ୍ୟବାଦ ଦିଅନ୍ତି । ବିନୟର ସହ କହନ୍ତି ଯେ ଦେଶର ଦାୟିତ୍ୱ ଗ୍ରହଣ କଲାଭଳି ଯୋଗ୍ୟତା ତାଙ୍କର ନାହିଁ ବୋଲି ସେ ମନେକରନ୍ତି । ତାଙ୍କ ଭିତରେ ଓଜସ୍ୱିତା ଓ ଉଦ୍ୟମର ଘୋର ଅଭାବ ରହିଛି । ନିଜର ତ୍ରୁଟି ବିଚ୍ୟୁତି ସମ୍ପର୍କରେ ତାଙ୍କର ସ୍ପଷ୍ଟ ଧାରଣା ରହିଛି । ତେବେ ଈଶ୍ୱରଙ୍କ ଅପାର କରୁଣା

ଯେ, ସ୍ୱର୍ଗତ ରାଜାଙ୍କର ଉତ୍ତରାଧିକାରୀ ରହିଛନ୍ତି । ବର୍ତ୍ତମାନ ଅବଶ୍ୟ ତାଙ୍କର ବୟସ ଅଳ୍ପ - ତେବେ ସମୟ ସହିତ ସେ ନିଜ ଦାୟିତ୍ୱର ଉପଯୁକ୍ତ ମଧ୍ୟ ହୋଇଯିବେ ।

ଏଥର ବକିଂହାମ୍ ତରୁଣ-ରାଜାଙ୍କର ଜନ୍ମର ବୈଧତା ସମ୍ପର୍କରେ ପ୍ରଶ୍ନ ଉଠାଇ ଏକ କ୍ଷୁଦ୍ର ବକ୍ତୃତା ଦେଇ ବସନ୍ତି । ତା'ପରେ ରିଚାର୍ଡ଼ଙ୍କୁ ରାଜମୁକୁଟ ଗ୍ରହଣ କରିବା ନିମନ୍ତେ ପୁନର୍ବାର ଆବେଦନ ଜଣାନ୍ତି । ମେୟର୍ ମଧ୍ୟ ତାଙ୍କୁ ସମର୍ଥନ କରନ୍ତି । ରିଚାର୍ଡ଼ ଏଥର ସେମାନଙ୍କ ପ୍ରାର୍ଥନା ପୂରଣ କରନ୍ତି ନାହିଁ । ବକିଂହାମ ଦୃଢ଼ କଣ୍ଠରେ କହନ୍ତି - ଆପଣ ଆମର ଆବେଦନ ଗ୍ରହଣ କରନ୍ତୁ ବା ନ କରନ୍ତୁ ; ଆପଣଙ୍କର ଏଇ ଭ୍ରାତୁଷ୍ପୁତ୍ରଙ୍କୁ ଆମେ ଇଂଲଣ୍ଡ ସିଂହାସନରେ ବସାଇ ଦେବୁ ନାହିଁ ।

- ନା ବକିଂହାମ୍ - ସେଭଳି ଶପଥ କରନ୍ତୁ ନାହିଁ । ରିଚାର୍ଡ଼ ଘୋର ମର୍ମାହତ ହୋଇଥିବା ଭଳି ଦେଖାଯାଆନ୍ତି । ଶେଷରେ କହନ୍ତି - ଆପଣମାନେ ଯେହେତୁ ଏଇ ଗୁରୁଦାୟିତ୍ୱ ମୋ ଉପରେ ନ୍ୟସ୍ତ କରିବା ପାଇଁ ବଦ୍ଧପରିକର, ମୋତେ ତାହା ବହନ କରିବାକୁ ହିଁ ହେବ । କିନ୍ତୁ ଭବିଷ୍ୟତ୍‌ରେ ଯଦି ଏହାକୁ ନେଇ କୌଣସି ପ୍ରଶ୍ନ ଉଠେ, ତେବେ ଜାଣିବେ, ଏଥିପାଇଁ ଆପଣମାନେ ହିଁ ଦାୟୀ । ଈଶ୍ୱର ଜାଣନ୍ତି ଏବଂ ଆପଣମାନେ ମଧ୍ୟ ଅନୁଭବ କରିଥିବେ, ଏଥିପାଇଁ ମୋର ତିଳେମାତ୍ର ଆଗ୍ରହ ନାହିଁ ।

ରିଚାର୍ଡ଼ଙ୍କ ସିଦ୍ଧାନ୍ତରେ ବକିଂହାମ୍, ମେୟର୍ ଓ ସମବେତ ଜନତା ଉଲ୍ଲସିତ ହୋଇ ଟୋପି ଖୋଲି ହଲାଇବାରେ ଲାଗନ୍ତି । ବକିଂହାମ୍ ପ୍ରସ୍ତାବ ଦିଅନ୍ତି - ଶୁଭ କାର୍ଯ୍ୟରେ ବିଳମ୍ବ ଅନୁଚିତ । ଅଭିଷେକ ଉତ୍ସବ କାଲି ହିଁ ସମ୍ପନ୍ନ ହେଉ ।

-ଯାହା ଆପଣମାନଙ୍କର ଇଚ୍ଛା- ରିଚାର୍ଡ଼ ଉତ୍ତର ଦିଅନ୍ତି । ତା'ପରେ ବିଶପ୍‌ମାନଙ୍କୁ କହନ୍ତି-ଚାଲନ୍ତୁ, ଆମେ ପୁଣି ଈଶ୍ୱରଙ୍କ ସେବାରେ ନିମଗ୍ନ ହୋଇଯିବା ।

ପରଦିନ ପ୍ରତ୍ୟୁଷରୁ ରାଣୀ, ୟର୍କର ବୃଦ୍ଧା ଡଚେସ୍, ରିଚାର୍ଡ଼ଙ୍କ ସ୍ତ୍ରୀ ଲେଡ଼ିଆନ୍ ପ୍ରମୁଖ ଆସି ଉପସ୍ଥିତ ହୁଅନ୍ତି ଟାୱାରଦୁର୍ଗର ତୋରଣ ଦ୍ୱାରରେ । ସେମାନେ ଆସିଛନ୍ତି - ରାଜକୁମାରଙ୍କୁ ଅଭିନନ୍ଦନ ଜଣାଇବାକୁ । ସେଇଦିନ ରାଜକୁମାର ଏଡ଼ୱାର୍ଡଙ୍କର ଅଭିଷେକ ସମ୍ପନ୍ନ ହେବାର କଥା । କିନ୍ତୁ ବ୍ରାକେନ୍‌ବେରି ସେମାନଙ୍କୁ ବାଧା ଦିଅନ୍ତି - ନା- ସେମାନଙ୍କ ସହିତ ଦେଖା ହୋଇପାରିବ ନାହିଁ, ରାଜାଙ୍କର ଅନୁମତି ନାହିଁ ।

- ରାଜା !! ରାଜା କିଏ ?

- 'ରାଜା ରିଚାର୍ଡ଼, କୁମାରମାନଙ୍କର ଅଭିଭାବକ ।'

- ମୁଁ ଏଡ଼ୱାର୍ଡର ମାଆ...

- ଆଉ ମୁଁ ଜେଜେମାଆ...

ଲେଡିଆନ୍ କହନ୍ତି - ମୁଁ ସେମାନଙ୍କର ପିଉସୀ । ସେ ମୋ ପୁଅ ଭଳି ।

ତଥାପି ବ୍ରାକେନ୍‌ବେରି ମୁଣ୍ଡ ହଲାନ୍ତି । ଅନୁମତି ନାହିଁ । ଏହି ସମୟରେ ଷ୍ଟାନ୍‌ଲି ଆସି ଲେଡିଆନ୍‌ଙ୍କୁ କହନ୍ତି - ଆପଣଙ୍କୁ ୱେଷ୍ଟମିନିଷ୍ଟର ନେଇଯିବା ପାଇଁ ମୋତେ ପଠାଯାଇଛି । ସେଠାରେ ଆପଣ ରାଜା ରିଚାର୍ଡ଼ଙ୍କ ପତ୍ନୀରୂପେ ରାଣୀଙ୍କ ମୁକୁଟ ପିନ୍ଧିବେ ।

ତେବେ ଏ ସମ୍ବାଦରେ ଆନ୍ ସୁଖୀ ହୁଅନ୍ତି ନାହିଁ । କହନ୍ତି- 'ଦିନେ ହେନେରିଙ୍କର ମରଦେହ ନିକଟରେ ଠିଆ ହୋଇ ମୁଁ ତାଙ୍କୁ ଅଭିଶାପ ଦେଇଥିଲି । ମୁଁ ଏଭଳି ହତଭାଗିନୀ ଯେ, ଆଜି ମୋତେ ତାଙ୍କର ସ୍ତ୍ରୀ ହେବାକୁ ପଡୁଛି । ବିବାହ ପରେ ଗୋଟାଏ ଘଣ୍ଟା ମଧ ମୁଁ ତାଙ୍କ ପାଖରେ ନିଶ୍ଚିନ୍ତ ବିଶ୍ରାମରେ କଟାଇପାରି ନାହିଁ । ସବୁ କିଛିକୁ ଗ୍ରହଣ କରିନେବାକୁ ହୋଇଛି । ସେ ମତେ ଘୃଣା କରନ୍ତି, ମୁଁ ଜାଣେ ଶୀଘ୍ର ମୋତେ ହତ୍ୟା ମଧ କରିବେ । ଏହାହିଁ ମୋର ନିୟତି ।' ରାଣୀ ଓ ଆନ୍ ପରସ୍ପରଠାରୁ ବିଦାୟ ନେଇ ଚାଲିଯାଆନ୍ତି । ଜଣେ ହରାଇଛନ୍ତି ରାଣୀର ମର୍ଯ୍ୟାଦା, ଆଉ ଜଣେ ସେଇ ଆସନରେ ବସିବାକୁ ଯାଉଛନ୍ତି । ଉଭୟେ ସମଭାବରେ ଦୁଃଖୀ ।

ରିଚାର୍ଡ଼ ଯାହା ଚାହିଁଥିଲେ ତାହା ପାଇଯାଆନ୍ତି, ସେ ହୁଅନ୍ତି ଇଂଲଣ୍ଡର ସର୍ବ ଶକ୍ତିମାନ୍ ରାଜା । ତଥାପି ତାଙ୍କ ମନରେ ଶାନ୍ତି ନ ଥାଏ । ସିଂହାସନର ନ୍ୟାଯ୍ୟ ଅଧିକାରୀ ସେଇ ବାଳକ- ତଥାପି ବଞ୍ଚି ରହିଛି । ବକିଂହାମ୍ କ'ଣ ଏଡ଼ୱାର୍ଡ଼ଙ୍କୁ ଶେଷ କରିଦେବା କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବେ ? ରିଚାର୍ଡ଼ ଏ ସମ୍ପର୍କରେ ଥରେ / ଦୁଇଥର ଇସାରା ମଧ ଦେଇ ସାରିଲେଣି । ତେବେ ବକିଂହାମ୍ ଉଦାସୀନ ରହିଛନ୍ତି । ଏଥର ସେ ହୁଏତ ନିଜର ପୁରସ୍କାର କଥା ଭାବୁଛନ୍ତି । ଦିନେ ରିଚାର୍ଡ଼ ନିଜର ଲକ୍ଷ୍ୟ ପ୍ରକାଶ୍ୟ ଭାବରେ ତାଙ୍କୁ ଜଣାଇ ଦିଅନ୍ତି । କହନ୍ତି-ବନ୍ଧୁ, ତମେ ଏତେ ବୋକା ନୁହଁ ଯେ ସବୁକଥା ତମକୁ ସ୍ପଷ୍ଟ କରି କହିବାକୁ ହେବ । ପିଲାଦୁଇଟା ଆଉ ମୁହୂର୍ତ୍ତକପାଇଁ ବଞ୍ଚିରହନ୍ତୁ, ଏହା ମୋର ଇଚ୍ଛା ନୁହେଁ । ତମେ କ'ଣ କହୁଛ ?

- ଆପଣ ଯାହା ଭଲ ଭାବିବେ, ତା' କରିବେ । ଯତ୍ନର ସହିତ ନିଜସ୍ୱ ମତାମତ ପ୍ରସଙ୍ଗକୁ ବକିଂହାମ୍ ଏଡ଼ାଇ ଯାଆନ୍ତି ।

- ମନେହେଉଛି, ତମ ଉତ୍ସାହର ଜୁଆରରେ ଏବେ ଭଟ୍ଟା ପଡ଼ି ଆସିଲାଣି । 'ହଁ' କିମ୍ବା 'ନା' ସ୍ପଷ୍ଟ କରି କହ ।

- ମତେ ଟିକିଏ ଭାବିବାକୁ ସମୟ ଦିଅନ୍ତୁ । ବକିଂହାମ୍ ପଳାୟନ କରନ୍ତି ।

ଭ୍ରୂ କୁଞ୍ଚାଇ ରାଜା ଭାବୁଥାଆନ୍ତି - ବକିଂହାମ୍ ସାବଧାନୀ ହୋଇଗଲେଣି । ଏଥିରେ ସତ୍ୟ ମଧ ଥାଏ । ବକିଂହାମ୍‌ଙ୍କ ଦୁଷ୍ଟତା ସୀମାବଦ୍ଧ । ଅନିଚ୍ଛାରୁ ହେଉ କିମ୍ବା ସାହସର ଅଭାବରୁ

ହେଉ । ଆଗରେ ଥିବା ବିପଦକୁ ରିଚାର୍ଡ୍ ତଳେଇ କରି ଦେଖନ୍ତି । ଅବଶ୍ୟ ବକିଂହାମ୍‌ଙ୍କ ବିନା ସାହାଯ୍ୟରେ ସେ ଏ ଦୁଇ ରାଜକୁମାରଙ୍କର ବ୍ୟବସ୍ଥା କରି ନେଇପାରିବେ । କିନ୍ତୁ ତା'ପରେ ରହି ଯାଉଛନ୍ତି ସେମାନଙ୍କ ଭଉଣୀ ଏଲିଜାବେଥ୍ । ସବୁରି ଉପରେ ଅଛନ୍ତି କ୍ଲରେନ୍ସଙ୍କର ଦୁଇ ପୁତ୍ର କନ୍ୟା । ପୁଅଟା କିଛି ନିର୍ବୋଧ ଟାଇପ୍, ତେଣୁ ଆଜିକାଲିକା ଦୃଷ୍ଟିରୁ ଆଦୌ ବିପଜ୍ଜନକ ନୁହେଁ । ଝିଅଟାର ବାହାଘର ହୋଇଗଲେ ସେ ଦୂରକୁ ଚାଲିଯିବ । କିନ୍ତୁ ଏଲିଜାବେଥ୍‌ଙ୍କ ସମସ୍ୟା ? ସେ ବିଷୟରେ କ'ଣ କରାଯିବ ? ଉପାୟ ଗୋଟିଏ ଅବଶ୍ୟ ଦେଖାଯାଉଛି । ତାକୁ ବିବାହ କରିନେଲେ ସକଳ ସମସ୍ୟାର ଅନ୍ତ ଘଟିବ । ତେବେ ସେ ତାଙ୍କର ଭ୍ରାତୃଷ୍ପୁତ୍ରୀ ଏବଂ ତାଙ୍କର ସ୍ତ୍ରୀ ମଧ ବିଦ୍ୟମାନ । ତା'ର ପ୍ରତିକାର ହେଉଛି-ଆନ୍‌ର ମୃତ୍ୟୁ । ରିଚାର୍ଡ୍ ଓକିଲକୁ ଡକାଇପଠାନ୍ତି । କହନ୍ତି- ସହରରେ ପ୍ରଚାର କରିଦିଅ ଯେ ରାଣୀ ଆନ୍ ଭୀଷଣ ଅସୁସ୍ଥ । ସାମାନ୍ୟ ଇତସ୍ତତଃ କରିବା ପରେ ଓକିଲ ରିଚାର୍ଡ୍‌ଙ୍କ ନିର୍ଦ୍ଦେଶ ପାଳନ କରନ୍ତି ।

ଭ୍ରାତୃଷ୍ପୁତ୍ରୀକୁ ବିବାହ ଏକ ଲଜ୍ଜାଜନକ ଘଟଣା । ରିଚାର୍ଡ୍ ଠିକ୍ କରନ୍ତି ଏ ବିବାହ ପୂର୍ବରୁ ଦୁଇ ରାଜକୁମାରଙ୍କୁ ବିଦାୟ ନେବାକୁ ହେବ । ସେ ଟାଇରେଲ୍ ନାମକ ଏକ ଗରିବ କିନ୍ତୁ ଜଘନ୍ୟ ଚରିତ୍ରର ଲୋକକୁ ଏଥିପାଇଁ ଭଡ଼ା କରନ୍ତି । ସେଇଦିନ ରାତିରେ ଟାଇରେଲ୍ ଦୁଇ ସହଚରଙ୍କୁ ନେଇ ଟାୱାର-ଦୁର୍ଗରେ ପ୍ରବେଶ କରେ ଏବଂ ସିଧା ରାଜକୁମାରମାନଙ୍କ ଶୟନ କକ୍ଷରେ ଉପସ୍ଥିତ ହୁଏ । ଟାଇରେଲ୍‌ର ସାଥୀ ଦୁହେଁ ମୁହଁରେ ତକିଆ ଚାପି ଦୁଇ କୁମାରଙ୍କୁ ହତ୍ୟା କରନ୍ତି । ଟାଇରେଲ୍ ଦୁଇ ମୃତ ଦେହକୁ ଦୁର୍ଗରକ୍ଷକ ହାତରେ ଦିଏ ଏବଂ ସେ ଗୋପନରେ ସେମାନଙ୍କୁ କବର ଦେଇଦିଏ ।

ତା'ପରେ ବକିଂହାମ୍ ଆସନ୍ତି ରିଚାର୍ଡ୍‌ଙ୍କ ସହିତ ଆଲୋଚନା କରିବାପାଇଁ । ସେ ରିଚାର୍ଡ୍‌ଙ୍କୁ ତାଙ୍କର ପୂର୍ବ ପ୍ରତିଶ୍ରୁତି କଥା ମନେ ପକାଇଦେଇ ପୂର୍ବ ରାଜାଙ୍କ ଜମିଦାରୀ ଦାବି କରନ୍ତି । ରିଚାର୍ଡ୍ ସେତେବେଳେ ଷ୍ଟାନ୍‌ଲିଙ୍କ ସହିତ ଅନ୍ୟ ଆଲୋଚନାରେ ବ୍ୟସ୍ତ । ବକିଂହାମ୍‌ଙ୍କୁ ସ୍ପଷ୍ଟ ଜଣାଇଦିଅନ୍ତି -ବର୍ତ୍ତମାନ ସେ ସବୁକଥା ପାଇଁ ତାଙ୍କର ସମୟ ନାହିଁ । ଫ୍ରାନ୍ସରେ ରିଚମଣ୍ଡ ପ୍ରଶାସନ ବିରୋଧରେ ବିଦ୍ରୋହ କରିଛି । ତା'ପରେ ଷ୍ଟାନ୍‌ଲିଙ୍କୁ ପଚାରନ୍ତି- ରିଚମଣ୍ଡ ଆପଣଙ୍କର ପତ୍ନୀଙ୍କର ପୂର୍ବତନ ସ୍ୱାମୀଙ୍କର ପୁତ୍ର-ନୁହେଁ କି ? ଆପଣ ଏ ବ୍ୟାପାରରେ ସତର୍କ ରହିବେ ।

- ମାନ୍ୟବର, ମୁଁ କେବଳ ମୋର ପୁରସ୍କାର ପାଇବା ପାଇଁ ଆସିଛି । ହିୟର- ଫୋର୍ଡ୍‌ର ସେଇ ଜମିଦାରୀ-ଯାହା ଆପଣ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ବକିଂହାମ୍ ପୁଣି ମନେ ପକାଇ ଦିଅନ୍ତି ।

ରିଚାର୍ଡ୍ ବକିଂହାମ୍‌ଙ୍କ କଥା ନ ଶୁଣିଥିବାର ଛଳନା କରି ଷ୍ଟାନ୍‌ଲିଙ୍କ ସହିତ ଆଲୋଚନା ଚଳାଇ ଯାଆନ୍ତି । ଷ୍ଟାନ୍‌ଲି-ଆପଣଙ୍କ ସ୍ତ୍ରୀଙ୍କ ଉପରେ ଦୃଷ୍ଟି ରଖନ୍ତୁ । ଯଦି ସେ ରିଚମଣ୍ଡଙ୍କୁ

ଚିଠିପତ୍ର ଲେଖନ୍ତି, ତେବେ ମୋ ପାଖରେ ସେଥିପାଇଁ ଆପଣ ଉତ୍ତରଦାୟୀ ହେବେ । ରିଚାର୍ଡ୍‌ଙ୍କୁ ପୁଣି ବାଧା ଦିଅନ୍ତି ବକିଂହାମ୍ - ମୋ କଥାର ଉତ୍ତର ଦେବେ ?

ତଥାପି ରିଚାର୍ଡ୍ ତାଙ୍କ କଥାରେ ଗୁରୁତ୍ୱ ଦିଅନ୍ତି ନାହିଁ । ତାଙ୍କର କଥାବାର୍ତ୍ତା ପୂର୍ବଭଳି ଚାଲେ । କିନ୍ତୁ ତା ପରେ ମଧ୍ୟ ଯେତେବେଳେ ବକିଂହାମ୍ ନିଜ ଦାବିର କଥା କହିବାକୁ ଯାଆନ୍ତି- ରାଜା ସିଧାସଳଖ ତାଙ୍କ ଆଡ଼କୁ ଅନେଇ କହନ୍ତି ତମେ ବାରମ୍ବାର ମୋତେ ବିରକ୍ତ କରୁଛ । ଆଜି ମୁଁ କିଛି ଦେବାର ସ୍ଥିତିରେ ନାହିଁ । ବକିଂହାମ୍‌ଙ୍କୁ ସେଇଠି ଅପେକ୍ଷା କରାଇ ରାଜା ଚାଲିଯାଆନ୍ତି ।

ଏଥିପାଇଁ ମୁଁ ତାଙ୍କୁ ରାଜା କରାଇଥିଲି । ହତାଶ ହୋଇ ବକିଂହାମ୍ କହନ୍ତି । ହଠାତ୍ ଏହି ସମୟରେ ତାଙ୍କର ହେଷ୍ଟିଂସ୍‌ଙ୍କ କଥା ମନେପଡ଼ିଯାଏ । ଘୋଡ଼ାରେ ଚଢ଼ି ସେ ତାଙ୍କ ଜମିଦାରୀ ଆଡ଼େ ଯାତ୍ରା କରନ୍ତି ।

ବ୍ରେକ୍‌ନକ୍‌ର କାରାଗାରରେ ବନ୍ଦୀ ଥିଲେ ଏଲିର ବିଶପ୍ ମର୍ଟନ । ତାଙ୍କୁ ରିଚାର୍ଡ୍ ନିଜର ପ୍ରତିବନ୍ଧକ ମନେକରି ବକିଂହାମ୍‌ଙ୍କର କାରାଗାରରେ ବନ୍ଦୀକରି ରଖିଥିଲେ । ବର୍ତ୍ତମାନ ବିଶପ୍ ଆଉ ବକିଂହାମ୍ - ଏ ଦୁହିଁଙ୍କର ବାଟ ମିଶି ଗୋଟିଏ ହୋଇଯାଇଥିଲା । ଦୁହେଁ ଏକତ୍ର ଗୋଟିଏ ଷଡ଼ଯନ୍ତ୍ରର ନକ୍‌ସା ପ୍ରସ୍ତୁତ କରିପକାନ୍ତି । ବିଶପ୍ ଫ୍ରାନ୍ସ ଯାଇ ସେଠାରେ ରିଚମଣ୍ଡ ସହିତ ଯୋଗ ଦିଅନ୍ତି । ବକିଂହାମ୍ ଯାଆନ୍ତି ୱେଲ୍‌ସ୍, ସେଠାରୁ ଗୋଟିଏ ବିଦ୍ରୋହ ସୃଷ୍ଟି କରିବାର ଲକ୍ଷ୍ୟ ନେଇ । ରିଚମଣ୍ଡର ଉଦ୍ଦେଶ୍ୟ ଥାଏ, ଏକ ସେନାଦଳ ନେଇ ବ୍ରିଟାନିରୁ ଯାତ୍ରା କରି ଇଂଲଣ୍ଡ ଆସିବା ଏବଂ ସେଠାରେ ରାଜକୁମାରୀ ଏଲିଜାବେଥ୍‌ଙ୍କୁ ବିବାହ କରି ଇଂଲଣ୍ଡର ସିଂହାସନ ଦାବି କରିବା ।

ଏଣେ ରିଚାର୍ଡ୍‌ଙ୍କ ପରିକଳ୍ପନା ଅନୁସାରେ କେତେଦିନ ଭିତରେ ଇଂଲଣ୍ଡବାସୀ ଜାଣନ୍ତି ଯେ, ରାଣୀ ଆନ୍‌ଙ୍କର ମୃତ୍ୟୁ ହୋଇଛି । ଏହି ସମୟରେ ହତ୍ୟା ଥିଲା ଏକ ସାଧାରଣ ଏବଂ ନୈମିତିକ ବ୍ୟାପାର । ମାର୍ଗାରେଟ୍, ଏଲିଜାବେଥ୍ ଓ ବୃଦ୍ଧା ଡଚେସ୍ ଏକାଠି ବସି ନିଜ ଦୁଃଖର କାହାଣୀ ଚର୍ଚ୍ଚା କରୁଥାଆନ୍ତି ଆଉ ରଚାର୍ଡ୍‌ଙ୍କ ଉପରେ ଅଭିଶାପ ବର୍ଷଣ କରୁଥାଆନ୍ତି । ଏହିଭଳି ଗୋଟିଏ ସମୟରେ ରିଚାର୍ଡ୍ ସେଠାକୁ ଆସନ୍ତି । ରିଚାର୍ଡ୍‌ଙ୍କୁ ଦେଖି ସେମାନେ ପ୍ରଶ୍ନର ଝଡ଼ ସୃଷ୍ଟି କରନ୍ତି । କ୍ଲରେନ୍ସ ଆଉ ଏଡ଼ୱାର୍ଡ୍ କାହାନ୍ତି ? କୁଆଡ଼େ ଗଲେ ହେଷ୍ଟିଂସ୍, ରିଭର୍ସ, ଟମାସ୍ ଆଉ ଗ୍ରେ ?

ଉତ୍ତରରେ ପ୍ରଚଣ୍ଡ ଏକ ଧମକ ଦିଅନ୍ତି ରିଚାର୍ଡ । 'ହୁଏତ ମୋ ସହିତ ଭଲରେ କଥା କହିବ, ନ ହେଲେ ତମମାନଙ୍କର କଣ୍ଠସ୍ୱରକୁ ମଧ୍ୟ ସବୁଦିନ ପାଇଁ ନୀରବ କରି ଦିଆଯିବ ।'

ରିଚାର୍ଡ୍‌ଙ୍କ ମାଆ ବୃଦ୍ଧା ଡଚେସ୍ ତାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ କହନ୍ତି - ଏ ମୋର ଦୁର୍ଭାଗ୍ୟ ଯେ, ମୋ ଠାରୁ ତୋ'ର ଜନ୍ମ, ପିଲାବେଳେ ତୁ ଥିଲୁ ସଇତାନ୍, ସ୍କୁଲରେ ଭୟଙ୍କର,

ଯୌବନରେ ଦୁଃସାହସୀ ଆଉ ଦୁର୍ଦ୍ଧାନ୍ତ । ଏବେ ତୁ ପରିଣତ ହୋଇଛୁ ଗୋଟିଏ ଅହଙ୍କାରୀ, ଧୂର୍ତ୍ତ, ହତ୍ୟାକାରୀ ଆଉ ପ୍ରତାରକରେ । ତୋର ଏଇ ମାୟାବୀ ଦୁଇ ଆଖି ତୋ'ର ଭିତରର ନାରକୀୟତାକୁ ଘୋଡ଼ାଇ ରଖେ! ଜୀବନରେ କେବେ କ'ଣ ତୁ ମୁହୂର୍ତ୍ତକ ପାଇଁ ହେଲେ ମୋତେ ଆନନ୍ଦ ଦେଇଛୁ ? ଶେଷଥର ପାଇଁ ତୋତେ କହିବାର ସୁଯୋଗ ମୋତେ ମିଳିଛି । ଶୁଣିଯାଆ - ତୁ ଯୁଦ୍ଧକୁ ବାହାରିଛୁ । ହୁଏତ ସେଇଠି ତୋ'ର ମୃତ୍ୟୁ ହେବ କିମ୍ବା ଫେରିଆସି ମୋର ମୃତ୍ୟୁ ସମ୍ବାଦ ପାଇବୁ । ଏ ଯୁଦ୍ଧରେ ମାଆ ହୋଇ ମଧ ମୁଁ ତୋର ମୃତ୍ୟୁ କାମନା କରୁଛି । ତୋ' ଶତ୍ରୁର ବିଜୟ ପାଇଁ ପ୍ରାର୍ଥନା କରୁଛି । ତୁ ଗୋଟାଏ ହତ୍ୟାକାରୀ ଆଉ ତୋ' ଜୀବନର ସମାପ୍ତି ମଧ ହେବ ସେଇ ହତ୍ୟାରେ । ତୋ'ର ଜୀବନଭଳି ତୋ'ର ହତ୍ୟା ମଧ ହେବ ଲଜ୍ଜାଜନକ ଭାବେ ।

ଡଚେସ୍ ଟଳି ଟଳି ଚାଲିଯାଆନ୍ତି । ରହିଯାଆନ୍ତି ରିଚାର୍ଡ଼ ଆଉ ମାର୍ଗାରେଟ୍ । ମାର୍ଗାରେଟ୍ ଚାଲିଯାଉଥିଲା ବେଳେ ରିଚାର୍ଡ଼ ତାଙ୍କୁ ଅଟକାନ୍ତି । ତାଙ୍କୁ ମିଠାମିଠା କଥା କହି ଖୁସି କରିବାକୁ ଚେଷ୍ଟା କରନ୍ତି । ତାଙ୍କର ଝିଅ ବର୍ତ୍ତମାନ ଏହାଙ୍କର ପ୍ରୟୋଜନ । ଠିକ୍ ଏମିତି ଦିନେ ସେ ଲେଡି ଆନ୍‌କୁ ଖୁସି କରିଥିଲେ । ଏଥର ବି ସେ ସଫଳ ହୁଅନ୍ତି ମାର୍ଗାରେଟ୍ ପ୍ରଥମେ ତାଙ୍କୁ ଅଭିଶାପ ଦିଅନ୍ତି । ପରେ ରିଚାର୍ଡ଼ଙ୍କ ଅନୁରୋଧ ଉପରୋଧରେ ଦୁର୍ବଳ ହୋଇପଡ଼ନ୍ତି । ସେ ଜାଣନ୍ତି, ରିଚାର୍ଡ଼ ତାଙ୍କର ଘନିଷ୍ଠ ଆତ୍ମୀୟମାନଙ୍କୁ ଜଣକ ପରେ ଜଣେ ହତ୍ୟା କରିଛନ୍ତି । ରିଚାର୍ଡ଼ ଅପରିସୀମ ଧୈର୍ଯ୍ୟର ସହିତ ଅନୁନୟ କରି ଚାଲନ୍ତି ଏବଂ ଶେଷ ପର୍ଯ୍ୟନ୍ତ ଠେକୁଆଟିକୁ ବଶ କରିବା ଭଳି ସେ ମାର୍ଗାରେଟ୍‌କୁ ବଶ କରିପକାନ୍ତି । ସେ କଥା ଦିଅନ୍ତି ଯେ, ଏ ବିବାହ ପାଇଁ ସେ ଝିଅକୁ ରାଜି କରାଇବେ । ପ୍ରକୃତରେ ପୁରୁଣା ଦିନର ସେଇ ଉଚ୍ଚାକାଂକ୍ଷିଣୀ ମାର୍ଗାରେଟ୍‌ଙ୍କର ଆଉ କିଛି ନ ଥାଏ । ଦୁର୍ବହ ଜୀବନ ଯନ୍ତ୍ରଣା ତାଙ୍କର ସବୁ କିଛି ଅପହରଣ କରି ନେଇଥାଏ । ଅବଶିଷ୍ଟ ଥାଏ କେବଳ ମାତୃ ହୃଦୟଟି । ମାର୍ଗାରେଟ୍ ରିଚାର୍ଡ଼ଙ୍କ କଥା ଶୁଣନ୍ତି, ଶପଥ କରନ୍ତି, ତା'ପରେ ନିଜ ବାଟରେ ଅଗ୍ରସର ହୁଅନ୍ତି... ରିଚମଣ୍ଡ ସହିତ ସେ ନିଜ ଝିଅର ବିବାହ ଦେବେ... ଏ ସିଦ୍ଧାନ୍ତ ତାଙ୍କର ଅପରିବର୍ତ୍ତନୀୟ ।

ରିଚମଣ୍ଡ ସେତେବେଳେ ଇଂଲଣ୍ଡ ପଥରେ । ଡେଭନ୍ ଓ କେଣ୍ଟବାସୀ ବିଦ୍ରୋହ ପାଇଁ ପ୍ରସ୍ତୁତ ଥିଲେ । ବକିଂହାମ ମଧ ଖୋଲାଖୋଲି ଭାବେ ବିଦ୍ରୋହ ଘୋଷଣା କରି ଓ୍ୱେଲସ୍‌ରୁ ଯାତ୍ରାରମ୍ଭ କରି ସାରିଥାଆନ୍ତି । କିନ୍ତୁ ସମୁଦ୍ର ମଝିରେ ଆସେ ପ୍ରଚଣ୍ଡ ଝଡ଼ । ସେ ଝଡ଼ କେତେଦିନ ଧରି ଚାଲେ । ସମସ୍ତ ପରିକଳ୍ପନା ବ୍ୟର୍ଥ ହୋଇଯାଏ । ରିଚମଣ୍ଡର ଜାହାଜ ଫ୍ରାନ୍ସ ଫେରିଯାଏ । ଗୋଟାଏ ଚନ୍ଦ୍ରଗ୍ରହଣ ହେବାରୁ କୁସଂସ୍କାର ପରାୟଣ ଓ୍ୱେଲସ୍ - ବାହିନୀ ଭୟ ପାଇ ଛତ୍ରଭଙ୍ଗ ଦିଅନ୍ତି । ବକିଂହାମ୍ ପଳାଇଯାଇ ଜଣେ ପରିଚିତଙ୍କ ବାସଗୃହରେ ଆତ୍ମଗୋପନ କରନ୍ତି, କିନ୍ତୁ ସମ୍ଭବତଃ ବିଶ୍ୱାସଘାତକତା ହେତୁ ଧରାପଡ଼ିଯାଆନ୍ତି । ସାଲିସ୍‌ବରି ରାଜ୍ୟରେ ତାଙ୍କର ମୃତ୍ୟୁଦଣ୍ଡ

କାର୍ଯ୍ୟାକାରୀ ହୁଏ । ଏହିଭଳି ରିଚାର୍ଡ଼ଙ୍କର ଗୋଟିଏ ସମୟର ସବୁଠାରୁ ନିକଟତମ ବ୍ୟକ୍ତିଟିର ଜୀବନର ପରିସମାପ୍ତି ଘଟେ ।

୧୪୮୩ରେ ରିଚମଣ୍ଡ ଫେରିଯାଇଥିଲେ । ୧୪୮୫ରେ ପୁନର୍ବାର ସୈନ୍ୟବାହିନୀ ନେଇ ସେ ଇଂଲଣ୍ଡ ଯାତ୍ରା କରନ୍ତି । ନଟିଂହାମ ଠାରେ ରିଚାର୍ଡ଼ ତାଙ୍କର ଶିବିର ସ୍ଥାପନ କରନ୍ତି । ତାଙ୍କର ଆଶଙ୍କା ଥାଏ ବିଶ୍ୱାସଘାତକତାର ଏବଂ ଏଥିପାଇଁ ସେ ବିଶେଷ ଭାବରେ ରିଚମଣ୍ଡର ସାବତ-ପିତା ଷ୍ଟାନ୍‌ଲିଙ୍କୁ ଦୃଷ୍ଟିରେ ରଖିଥାଆନ୍ତି । ଭିତରେ ରିଚମଣ୍ଡ ପ୍ରତି ତାଙ୍କର ପୂର୍ଣ୍ଣ ସହାନୁଭୂତି ଥିଲେ ମଧ ଚତୁର ଷ୍ଟାନ୍‌ଲି ବାହାରେ କୌଣସିମତେ ତାହା ପ୍ରକାଶ କରୁ ନ ଥିଲେ । ବରଂ ଜଣେ ଅତି ବିଶ୍ୱସ୍ତ ଅନୁଚର ରୂପରେ ରିଚାର୍ଡ଼ଙ୍କୁ ସର୍ବତ୍ର ଅନୁସରଣ କରୁଥିଲେ ।

ପନ୍ଦର ଦିନ ଭିତରେ ରିଚମଣ୍ଡର ଜାହାଜ ଇଂଲଣ୍ଡ ଉପକୂଳରେ ଆସି ପହଞ୍ଚିଯାଏ । ଦୁଇ ବାହିନୀ ମୁହାଁମୁହିଁ ହୁଅନ୍ତି ବସଓ୍ୱାର୍ଥ ପ୍ରାନ୍ତରରେ । ସୈନ୍ୟସଂଖ୍ୟାର ପରିମାଣ ଦୃଷ୍ଟିରୁ ରିଚାର୍ଡ଼ ଶକ୍ତିଶାଳୀ ଥିଲେ । ପୁଣି ତାଙ୍କର ଥିଲା ଅପ୍ରତିରୋଧ ସାହସ, ଯାହା ତାଙ୍କୁ ବିପଦର ଶତ ଝଡ଼ଝଞ୍ଜା ମଧ୍ୟରୁ ସର୍ବଦା ରକ୍ଷା କରି ଆସୁଥିଲା । ତେବେ ଏହା ଭିତରେ କିଛି ପାର୍ଥକ୍ୟ ସୃଷ୍ଟି ହୋଇସାରିଥିଲା । ଏତେଦିନ ପର୍ଯ୍ୟନ୍ତ ରିଚାର୍ଡ଼ ଈଶ୍ୱର, ମଣିଷ, ସଇତାନ କାହାକୁ ହିଁ ଭୟ କରୁ ନ ଥିଲେ । କିନ୍ତୁ ବର୍ତ୍ତମାନ ଈଶ୍ୱରଙ୍କ ଉଲ୍ଲେଖରେ ତାଙ୍କର ମନ କେମିତି ଏକ ଅସ୍ୱସ୍ତିରେ ଭରି ଯାଉଥିଲା । ଯୁଦ୍ଧ ପୂର୍ବଦିନ ରାତିରେ ସେ କିଛି ଖାଇଲେ ନାହିଁ, କେବଳ ମଦ୍ୟପାନ କଲେ । ତା'ପରେ ସେନାଧକ୍ଷମାନଙ୍କୁ ପ୍ରୟୋଜନୀୟ ନିର୍ଦ୍ଦେଶ ଦେଇ ଶୋଇବାକୁ ଚାଲିଗଲେ ।

କିନ୍ତୁ ଶାନ୍ତିରେ ନିଦ ଯିବା ଯେମିତି ତାଙ୍କ ଭାଗ୍ୟରେ ନ ଥାଏ । ସେ ଏକ ଭୟଙ୍କର ଦୁଃସ୍ୱପ୍ନ ଦେଖନ୍ତି । ଯେଉଁମାନଙ୍କୁ ସେ ହତ୍ୟା କରିଥାଆନ୍ତି, ସେମାନେ ଜଣକ ପରେ ଜଣେ ଆସି ତାଙ୍କ ବିଛଣା ପାଖରେ ଜୁଣ୍ଡ ହୁଅନ୍ତି । ଏଡ଼ଓ୍ୱାର୍ଡ, କ୍ଲରେନ୍ସ, ରିଭର୍ସ, ଗ୍ରେ ଥମାସ୍, ହେଷ୍ଟିଂସ, ଦୁଇ ରାଜକୁମାର, ଆନ୍ ଏବଂ ବକିଂହାମ୍ - ସମସ୍ତେ ଆସି ସେଠି ଏକତ୍ରିତ ହୁଅନ୍ତି । 'ଆଗାମୀ କାଲି ତୋ'ର ମୃତ୍ୟୁ ହେବ'-ସେମାନେ ସମସ୍ତେ ଏଇ କଥାଟିକୁ ଜଣାଇ ଅଦୃଶ୍ୟ ହୋଇଯାଆନ୍ତି ।

- ପ୍ରଭୁ, ମୋତେ ଦୟାକର । ପ୍ରଚଣ୍ଡ ଭୟରେ ରିଚାର୍ଡ଼ ବିଛଣାରୁ ତଳକୁ ଡେଇଁପଡ଼ନ୍ତି । ଶୂନ୍ୟ ଶିବିରରେ ମହମବତିର ମୃଦୁ ଆଲୋକରେ ସେ ପ୍ରଥମ ଥର ପାଇଁ ବିବେକର ତୀବ୍ର ଯନ୍ତ୍ରଣାର ଦହନ ଅନୁଭବ କରନ୍ତି । ମୁଁ ସଇତାନ୍, ମୁଁ ପାପୀ, କେହି ଜଣେ ବି ମୋତେ ଭଲ ପାଆନ୍ତି ନାହିଁ । ମୋ ମୃତ୍ୟୁରେ ଜଣେ ବି ଶୋକ କରିବେ ନାହିଁ । ରିଚାର୍ଡ଼ କପାଳର ଝାଳ ପୋଛି ପକାନ୍ତି । ତମ୍ବୁର ପର୍ଦ୍ଦା ଟେକି କିଏ ଜଣେ ଡାକନ୍ତି - ଲର୍ଡ଼ !

- କି..ଏ ? ରିଚାର୍ଡ଼ ଚମକି ଉଠନ୍ତି ।

- ମୁଁ ରାଟକ୍ଲିଫ୍, ହଜୁର । ଭୋର ହୋଇଗଲାଣି । କୁକୁଡ଼ା ଡାକିଲେଣି । ଆପଣଙ୍କ ବନ୍ଧୁମାନେ ଯୁଦ୍ଧଯାତ୍ରା ପାଇଁ ପ୍ରସ୍ତୁତି ଆରମ୍ଭ କରି ଦେଲେଣି ।

- ଓ ରାଟକ୍ଲିଫ୍, ତମେ ! ମୁଁ ଭୟଙ୍କର ଏକ ଦୁଃସ୍ୱପ୍ନ ଦେଖିଛି । ଆଚ୍ଛା ତମେ କ'ଣ ଭାବୁଛ ଯେ, ଆମର ବନ୍ଧୁମାନେ ଶେଷ ପର୍ଯ୍ୟନ୍ତ ଆମ ସହିତ ରହିବେ ?

- ଏ ବିଷୟରେ ମୋର ତିଳେ ମାତ୍ର ସନ୍ଦେହ ନାହିଁ ହଜୁର୍ ।

- ତଥାପି ମୋର ଭୟ ହେଉଛି ରାଟକ୍ଲିଫ୍ ।

- ନା ହଜୁର, ଛାଇକୁ କ'ଣ କେହି ଭୟ କରେ ?

- ରିଚମଣ୍ଡର ଦଶହଜାର ସେନା ମୋତେ ସାମାନ୍ୟ ଭାବରେ ମଧ୍ୟ ଭୟଭୀତ କରିପାରି ନାହାନ୍ତି । ତେବେ ଗତ ରାତିର ସେଇ ସବୁ ଭୟଙ୍କର ଛାୟା...

ରିଚାର୍ଡ୍ ଯୁଦ୍ଧର ପୋଷାକ ପିନ୍ଧିନିଅନ୍ତି । ଅଶୁଭ - ଭବିଷ୍ୟତ୍‌ର ସୂଚନା ଦେଇ ଦିନବେଳେ ବି ରାତିର ଅନ୍ଧାର ମାଡ଼ିଆସେ । ରିଚାର୍ଡ୍ ଘୋଡ଼ାରେ ବସି ସେନାର ମଧ୍ୟଭାଗକୁ ଚାଲିଆସନ୍ତି । ଶତ୍ରୁ ପକ୍ଷର ବାଦ୍ୟରୋଳ ଶୁଣାଯାଏ । ସେମାନେ ଆଗେଇ ଆସୁଛନ୍ତି !

- ଷ୍ଟାନ୍‌ଲି କାହାନ୍ତି ? ରିଚାର୍ଡ୍ ପଚାରନ୍ତି ।

- ସେ ଆସିବେ ନାହିଁ ହଜୁର୍ । ଜଣେ ଦୂତ ତାଙ୍କୁ ଜଣାଇ ଦିଅନ୍ତି । କେବଳ ଷ୍ଟାନ୍‌ଲି ନୁହନ୍ତି ନରଦମ୍ବରଲାଣ୍ଡର ଡ୍ୟୁକ୍ ମଧ୍ୟ ରିଚମଣ୍ଡଙ୍କ ଦଳରେ ଯୋଗ ଦିଅନ୍ତି । ଜୀବନ ପଣ କରି ରିଚାର୍ଡ୍ ଲଢ଼ିଯାଆନ୍ତି । ତାଙ୍କ ଘୋଡ଼ାଟି ଆଘାତପ୍ରାପ୍ତ ହୋଇ ମୃତ୍ୟୁ ବରଣ କରେ । ଆଉ ଗୋଟାଏ ଘୋଡ଼ା ଦରକାର - ମୋର ସମସ୍ତ ରାଜତ୍ୱର ବିନିମୟରେ ଘୋଡ଼ାଟିଏ ଦରକାର - ରିଚାର୍ଡ୍ ଚିତ୍କାର କରିଉଠନ୍ତି ।

ଏକା ଏକା ସେ ରିଚମଣ୍ଡର ମୁହାଁମୁହିଁ ହୁଅନ୍ତି । ତେବେ ସେ ତାକୁ ଆଘାତ କରିବା ପୂର୍ବରୁ ତା'ର ସୈନ୍ୟମାନେ ରାଜାଙ୍କୁ ଧରାଶାୟୀ କରିଦିଅନ୍ତି । ଶେଷରେ ସେଇମାନଙ୍କ ଅସ୍ତ୍ରାଘାତରେ ସେ ମୃତ୍ୟୁବରଣ କରନ୍ତି । ପଡ଼ିଯିବା ସମୟରେ ତାଙ୍କ ମୁକୁଟ ମଥାରୁ ଖସିପଡ଼ି ଗୋଟାଏ ବୁଦାଆଡ଼କୁ ଗଡ଼ିଯାଏ । ଷ୍ଟାନ୍‌ଲି ସେଇଟିକୁ ଉଠାଇ ଆଣି ବିଜୟୀଙ୍କ ମଥାରେ ପିନ୍ଧାଇ ଦିଅନ୍ତି ।

ଇଂଲଣ୍ଡ ପାଇଁ ନବଯୁଗର ସୂଚନା ମିଳେ ।

---



ଡକ୍ଟର ହେମନ୍ତ କୁମାର ଦାସ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅପରିଚିତ ନୁହନ୍ତି । ନାଟକ, ଗଳ୍ପ, ଉପନ୍ୟାସ, ଶିଶୁସାହିତ୍ୟ ନବସାକ୍ଷର ସାହିତ୍ୟ ଏବଂ ଆଲୋଚନା କ୍ଷେତ୍ରରେ ଲେଖନୀ ଚାଳନା କରିଥିଲେ ହେଁ, ମୁଖ୍ୟତଃ ଜଣେ ଆଲୋଚକ - ବିଶେଷକରି ନାଟକ ସମ୍ପର୍କୀୟ ଆଲୋଚନାରେ ସେ ନିଜର ବୈଶିଷ୍ଟ୍ୟର ସ୍ୱାକ୍ଷର ରଖିପାରିଛନ୍ତି । ନିଜର ସାହିତ୍ୟିକ ଦର୍ଶନ ସମ୍ପର୍କରେ ସୂଚନା ଦେଇ ଡକ୍ଟର ଦାସ କହନ୍ତି, 'ଉଡ଼ିବା ପାଇଁ ଆକାଶ ଭଲ । ବିଶ୍ରାମ ନେବାପାଇଁ ମାଟି ପାଖକୁ କିନ୍ତୁ ଫେରିବାକୁ ହିଁ ହେବ । ଯାହାକୁ ଅବଲମ୍ବନ କରି ଉଡ଼ିବାର ସ୍ୱପ୍ନ ଦେଖାଯାଏ, ତାକୁ ଭୁଲିଗଲେ ଚଳିବ ନାହିଁ । ତାହାରି କଥା ହିଁ କହିବାକୁ ପଡ଼ିବ ।' ସେ ହେଉଛନ୍ତି ପ୍ରକୃତରେ ମାଟି ଓ ମଣିଷର ବିମୁଗ୍ଧ ଚାରଣ । ସତୁରିରୁ ଊର୍ଦ୍ଧ୍ୱ ପୁସ୍ତକର (ଉଭୟ ଇଂରାଜୀ ଓଡ଼ିଆ ଭାଷାରେ) ରଚୟିତା ତଥା ବହୁ ସମ୍ମାନ ଓ ମର୍ଯ୍ୟାଦାଜନକ ପୁରସ୍କାର ଦ୍ୱାରା ଭୂଷିତ ଏହି ସ୍ରଷ୍ଟା ପ୍ରସ୍ତୁତ ଗ୍ରନ୍ଥରେ ସେକ୍ସପିୟର ନାଟକାବଳୀର ରହସ୍ୟ-ଗମ୍ଭୀର ଇଲାକା ସହିତ ଓଡ଼ିଆ ପାଠକମାନଙ୍କୁ ପରିଚିତ କରାଇବା ନିମନ୍ତେ ଉଦ୍ୟମ କରିଛନ୍ତି ।



ବିଶ୍ୱ ନାଟ୍ୟସାହିତ୍ୟ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କରିଥିବା ଉଇଲିୟମ୍ ସେକ୍ସପିୟରଙ୍କର ଜନ୍ମ ୧୫୬୪ ଖ୍ରୀ: ଏପ୍ରିଲ୍ ୨୩ ତାରିଖ ଏଭନ୍ ନଦୀ ତୀରସ୍ଥ ଷ୍ଟ୍ରାଟ୍‌ଫୋର୍ଡ ଠାରେ । ତାଙ୍କ ସମୟରେ ଇଂଲଣ୍ଡର ରାଣୀ ଥିଲେ ଏଲିଜାବେଥ୍ । ଏହି ସମୟରେ ସେଠାର ରାଜନୀତିକ ଆକାଶ ଘନଘଟା ପୂର୍ଣ୍ଣ ହୋଇଥିଲେ ମଧ୍ୟ ସାହିତ୍ୟ, ସଙ୍ଗୀତ ତଥା କଳା ଚରମ ଉତ୍କର୍ଷ ଲାଭ କରିଥିଲା । ସେକ୍ସପିୟର ଏହାର ସୁଯୋଗ ଗ୍ରହଣ କରି ତାଙ୍କର କାଳଜୟୀ କୀର୍ତ୍ତିଗୁଡ଼ିକୁ ସୃଷ୍ଟି କରିଥିଲେ । ବିଶ୍ୱର ପ୍ରାୟ ପ୍ରତ୍ୟେକ ଦେଶରେ ତାଙ୍କର ନାଟକଗୁଡ଼ିକ ଅଭିନୀତ ହୋଇଛି ଏବଂ ଏହାକୁ ନୂତନ ରୂପରେ ବିଶ୍ଳେଷଣ କରାଯାଉଛି । ବହୁ ଭାଷାରେ ଏହାର ଅନୁବାଦ-ନାଟକଗୁଡ଼ିକର ଲୋକପ୍ରିୟତାର ବଳିଷ୍ଠ ପ୍ରମାଣ ।

ଆଧୁନିକ ଓଡ଼ିଆ ନାଟକର ଜନ୍ମଲଗ୍ନରୁ ସେକ୍ସପିୟର ଆମ ନାଟ୍ୟକାରମାନଙ୍କର ଆଦର୍ଶ ହୋଇ ରହିଆସିଥିଲେହେଁ ଏଠାରେ ତାଙ୍କ କୃତିର ଅନୁବାଦ ସଂଖ୍ୟା ଖୁବ୍ ବେଶି ନୁହେଁ । ମୁଖ୍ୟତଃ ପାଠ୍ୟପୁସ୍ତକ ମାଧ୍ୟମରେ ହିଁ ଓଡ଼ିଆ ଶିକ୍ଷିତ ଗୋଷ୍ଠୀ ସେକ୍ସପିୟରଙ୍କ ସହିତ ପରିଚିତ ହେଉଛନ୍ତି । ବସ୍ତୁତଃ, ସେକ୍ସପିୟର ହେଉଛନ୍ତି ଏକ ଅନାବିଷ୍କୃତ-ରତ୍ନଖଣି । ଜଣେ ଏହାର ଯେତେ ଗଭୀରତାକୁ ପ୍ରବେଶ କରିପାରିବ, ସେତେ ଅମୂଲ୍ୟ ରତ୍ନ ଲାଭ କରିବ । ରହସ୍ୟ-ଗମ୍ଭୀର ମାନବ ଅନ୍ତର୍ଲୋକର ଏଭଳି ଚମତ୍କାର ବିଶ୍ଳେଷଣ ଖୁବ୍ କମ୍ ସାହିତ୍ୟିକ କରିପାରିଛନ୍ତି ।

ଓଡ଼ିଆ ପାଠକମାନଙ୍କୁ ବିଶ୍ୱ ସାହିତ୍ୟର ସେହି ମହାନ୍ ପ୍ରତିଭା ସହିତ ପରିଚିତ କରାଇବା ନିମନ୍ତେ ପ୍ରସ୍ତୁତ ପୁସ୍ତକରେ ତାଙ୍କ ରଚନାର କୋଡ଼ିଏଟି ନାଟକର ସଂକ୍ଷିପ୍ତ କାହାଣୀ ରୂପ ପ୍ରସ୍ତୁତ କରାଯାଇଛି । ଏଥିମଧ୍ୟରୁ ଦଶଟି ହେଉଛି ସୁଖାନ୍ତ,ସାତଟି ଦୁଃଖାନ୍ତ ଏବଂ ଅବଶିଷ୍ଟ ତିନୋଟି ଐତିହାସିକ । ଆମ ଭାଷାରେ ଏହା ହେଉଛି, ଏହି ଧରଣର ପ୍ରଥମ ଉଦ୍ୟମ । ସେକ୍ସପିୟର ଚରିତ୍ର ଚିତ୍ରଶାଳାର ବିଚିତ୍ର ତଥା ବର୍ଣ୍ଣାଢ଼୍ୟ ରୂପ ସହିତ ବୃହତ୍ତର ପାଠକ ଗୋଷ୍ଠୀର ଅନ୍ତରଙ୍ଗ ପରିଚୟ ଘଟାଇ ତାଙ୍କ ସୃଷ୍ଟି ସହିତ ଆମର ସମ୍ପର୍କ ଦୃଢ଼ କରିବା ହିଁ ହେଉଛି ଏହି ପୁସ୍ତକ ରଚନାର ମୂଳ ଲକ୍ଷ୍ୟ । ଏହା ତା'ର ଲକ୍ଷ୍ୟଭେଦରେ ସଫଳ ହେବ ବୋଲି ଆଶା ।

---



**ବିଦ୍ୟାପୁରୀ**
ବାଲୁବଜାର, କଟକ ୭୫୩ ୦୦୨
ISBN 81-7411-564-1